# ଚରିତ ଚିନ୍ତାମଣି

(ପୌରାଣିକ ଶବ୍ଦକୋଷ)

ସଂକଳକ : ପଣ୍ଡିତ ନୀଳକଣ୍ଠ ରଥ

ଓଡ଼ିଶା ସାହିତ୍ୟ ଏକାଡେମୀ

# ଚରିତ ଚିନ୍ତାମଣି

( ପୌରାଣିକ ଶବ୍ଦକୋଷ )

ସଂକଳକ : ପଣ୍ଡିତ ନୀଳକଣ୍ଠ ରଥ




ଓଡ଼ିଶା ସାହିତ୍ୟ ଏକାଡେମୀ

# ଚରିତ ଚିନ୍ତାମଣି

ସଙ୍କଳକ :
ପଣ୍ଡିତ ନୀଳକଣ୍ଠ ରଥ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର—୭୫୧୦୧୪

ମୁଦ୍ରଣ :
କିରଣ ପ୍ରକାଶିନୀ
ରାଜେନ୍ଦ୍ର ନଗର, କଟକ-୧୦

ପ୍ରଥମ ମୁଦ୍ରଣ : ୧୯୬୨
ଦ୍ୱିତୀୟ ମୁଦ୍ରଣ : ୧୯୮୭

ମୂଲ୍ୟ : ଏକଷଠି ଟଙ୍କା

# CHARITA CHINTAMANI

*Compiled by*
**Pandit Nilakantha Rath**

*Published by*
**Orissa Sahitya Akademi**
**Bhubaneswar—751014**

*Printed at*
**Kiran Prakasini**
**Rajendra Nagar,**
**Cuttack-10**

*First Edition* : *1962*
*Second Edition* : *1987*

**Price : Sixty-one Rupees.**

# ଦ୍ୱିତୀୟ ସଂସ୍କରଣ ଅବସରରେ

'ଚରିତ ଚିନ୍ତାମଣି', ପୁରାଣମାନଙ୍କରେ ବର୍ଣ୍ଣିତ ଚରିତ୍ରମାନଙ୍କର ପରିଚୟାତ୍ମକ ସଂକ୍ଷିପ୍ତ ବିବରଣର ସଙ୍କଳନ । ଏହାକୁ ଏକ ପୌରାଣିକ ଅଭିଧାନ ବା ଶବ୍ଦକୋଷ କହିଲେ ବରଂ ଠିକ୍ ହେବ । ଏହାର କଳେବର ଅତି ବୃହତ୍ ନ ହେଲେ ବି ଏହାର ଉପାଦେୟତା ଯେ ଖୁବ୍ ବେଶୀ ଏଥିରେ କେହି ଦ୍ୱିମତ ହେବେ ନାହିଁ । ବିଭିନ୍ନ ପୁରାଣରେ ଗୋଟିଏ ଗୋଟିଏ ଚରିତ୍ରକୁ ଭିନ୍ନଭିନ୍ନ ଭାବରେ ଚିତ୍ରିତ କରାଯାଇଛି । ଏପରି ସ୍ଥଳେ ସମସ୍ତ ପୁରାଣଶାସ୍ତ୍ର ଅଧ୍ୟୟନ କରି ଚରିତ୍ରମାନଙ୍କ ସମ୍ବନ୍ଧରେ ସଠିକ ଜ୍ଞାନଲାଭ କରିବା ସାଧାରଣ ପାଠକ ପକ୍ଷରେ ଆଦୌ ସମ୍ଭବ ବା ସହଜ ନୁହେଁ । ତେଣୁ ଚରିତ୍ରମାନଙ୍କ ବିଷୟରେ ତୁରନ୍ତ ସମ୍ୟକ୍ ଓ ନିର୍ଭୁଲ ଜ୍ଞାନ ଆହରଣ ପାଇଁ ଚରିତ ଚିନ୍ତାମଣି ପରି ପୌରାଣିକ ଶବ୍ଦକୋଷର ଆବଶ୍ୟକତା ଯଥେଷ୍ଟ ଉପଲବ୍ଧ ହୁଏ ।

ପଣ୍ଡିତ ନୀଳକଣ୍ଠ ରଥଙ୍କ ଦ୍ୱାରା ସଂଗୃହୀତ ଓ ସଙ୍କଳିତ ଏହି ପୁସ୍ତକଟି ୧୯୭୨ ମସିହାରେ ସର୍ବପ୍ରଥମେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇ ପାଠକମାନଙ୍କ ଦ୍ୱାରା ବିଶେଷ ଆଦୃତ ଲାଭ କରିଥିଲା । ଏବେ ଉକ୍ତ ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ଏହା ପୂର୍ବ ସଂସ୍କରଣ ତୁଲ୍ୟ ସୁଧୀ-ସମାଜରେ ସମାଦୃତ ହେବ ବୋଲି ଆଶା ଓ ବିଶ୍ୱାସ ।

ଅକ୍ଷୟ ତୃତୀୟା
୧-୫-୧୯୮୭



**ସୁରେନ୍ଦ୍ରନାଥ ଶତପଥୀ**
ସମ୍ପାଦକ
**ଓଡ଼ିଶା ସାହିତ୍ୟ ଏକାଡେମୀ**

# ଅଗ୍ରଲେଖ

'ଚରିତ ଚନ୍ଦ୍ରମଣି' ପରି ଏକ ଅଭିଧାନ ଯେକୌଣସି ଭାଷା ଓ ସାହିତ୍ୟ ପକ୍ଷେ ଆବଶ୍ୟକ । ଓଡ଼ିଆରେ ଏଭଳି ଗ୍ରନ୍ଥ ପ୍ରକାଶ ପାଇ ନ ଥିଲା । ଅବଶ୍ୟ, 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ଏହି 'ଚରିତ ଚନ୍ଦ୍ରମଣି'ର ଉଦ୍ଦେଶ୍ୟ କେତେକ ପରିମାଣରେ ଚରିତାର୍ଥ ହୋଇଥିଲା, କିନ୍ତୁ ଏଭଳି ଏକ ସ୍ୱତନ୍ତ୍ର ପୁସ୍ତକ ସାଧାରଣ ବ୍ୟବହାର ଲାଗି ଯେତେଦୂର ଉପାଦେୟ ଓ ସହଜ, ତାହା 'ଭାଷାକୋଷ' ପକ୍ଷରେ ସମ୍ଭବପର ନୁହେଁ । ଆଗେ ପୁରାଣ ପ୍ରଭୃତିର ବ୍ୟାପକ ଚର୍ଚ୍ଚା ହେଉଥିଲା । ସେତେବେଳେ ହୁଏତ ପୌରାଣିକ ସ୍ଥାନ, ବ୍ୟକ୍ତି ପ୍ରଭୃତିଙ୍କୁ ଲୋକେ ସହଜରେ ଜାଣି ପାରୁଥିଲେ । ଆଜିକାଲି ଯୁଗରେ ସେ ଧାରା ବଦଳିଯାଇଛି । ପ୍ରାଚୀନ କଥାଟିଏ ଜାଣିବାକୁ ହେଲେ ଅଭିଧାନ ନିତାନ୍ତ ଦରକାର ହେଉଛି । ସେହି ଦୃଷ୍ଟିରୁ ଓଡ଼ିଶା ସାହିତ୍ୟ ଏକାଡେମୀ ଏହି ପୁସ୍ତକ ପ୍ରକାଶ କରିଅଛନ୍ତି । ଏଥିଲାଗି କେନ୍ଦ୍ର ସରକାର, ଆର୍ଥିକ ସାହାଯ୍ୟ ଦେଇଥିବାରୁ ଏକାଡେମୀ କୃତଜ୍ଞତା ଜଣାଉଅଛି ।

ଭୁବନେଶ୍ୱର
ତା ୪-୭-୧୯୭୨

ଶ୍ରୀ ହରେକୃଷ୍ଣ ମହତାବ
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

---

# ଦୁଇପଦ

'ଚରିତ ଚନ୍ଦ୍ରମଣି' ପରି ଏକ ଅଭିଧାନ ଗ୍ରନ୍ଥର ଆବଶ୍ୟକତା ଗଭୀର ଭାବରେ ଅନୁଭୂତ ହେଉଥିଲା । ପୁସ୍ତକର ପାଣ୍ଡୁଲିପି ଏକାଡେମୀର ହସ୍ତଗତ ହେଲା ବେଳକୁ ସୌଭାଗ୍ୟକ୍ରମେ କେନ୍ଦ୍ରସରକାରଙ୍କ ସାହାଯ୍ୟର ଏକ ପ୍ରସ୍ତାବ ମଧ୍ୟ ଉପଗତ ହୋଇଥାଏ । ଏହି ପୁସ୍ତକ ଲାଗି ତେଣୁ କେନ୍ଦ୍ର ସାହାଯ୍ୟ ସହଜଲଭ୍ୟ ହେଲା । ସଂଗ୍ରାହକ, ଶ୍ରମ ସ୍ୱୀକାର କରି ନାନା ଅଭିଧାନରୁ ତଥ୍ୟମାନ ସଂଗ୍ରହ କରିଛନ୍ତି । ତଥ୍ୟ ପରିବେଷଣର ବ୍ୟାପ୍ତି ଓ ପରିସର ଯାହାହେଉ ପଛେ, ଏଭଳି ଏକ ଗ୍ରନ୍ଥର ପ୍ରକାଶ ଦ୍ୱାରା ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ଦିଗରେ ନୂତନ ପଦକ୍ଷେପ କରାଯାଇଥିବା ଅବଶ୍ୟ ସ୍ୱୀକାର୍ଯ୍ୟ । । ଇତି ।

ଭୁବନେଶ୍ୱର
ତା ୪-୭-୧୯୭୨

**ଶ୍ରୀ ଗୌରୀକୁମାର ବ୍ରହ୍ମା**
ସେକ୍ରେଟାରୀ
ଓଡ଼ିଶା ସାହିତ୍ୟ ଏକାଡେମୀ

# ଚରିତ-ଚିନ୍ତାମଣି

## ( ପୌରାଣିକ ଶବ୍ଦକୋଷ )

## ଅ

**ଅଂଶ**—ଏହାଙ୍କର ପିତା କଶ୍ୟପ ଓ ମାତା ଅଦିତି । ଦ୍ୱାଦଶ ଆଦିତ୍ୟ ମଧ୍ୟରୁ ଏ ଜଣେ । ଆଦିତ୍ୟମାନେ ସ୍ୱାରୋଚିଷ ମନ୍ୱନ୍ତରରେ ତୁଷିତ ବୋଲି ଅଭିହିତ ହେଉଥିଲେ । ପରେ ବୈବସ୍ୱତ ମନ୍ୱନ୍ତରରେ ଏମାନଙ୍କର ଆଦିତ୍ୟ ବୋଲି ନାମ ହେଲା । (ବିଷ୍ଣୁପୁରାଣ)

**ଅଂଶୁ**—ପୁରୁହୋତ୍ରଙ୍କ ପୁତ୍ର । (ବିଷ୍ଣୁପୁରାଣ) ଅନୁଙ୍କର ପୁଅ । ଏ ଜଣେ ପ୍ରସିଦ୍ଧ ରାଜା । (କୂର୍ମପୁରାଣ)

**ଅଂଶୁଧର**—ସୂର୍ଯ୍ୟବଂଶୀୟ ଜଣେ ପ୍ରସିଦ୍ଧ ରାଜା । ଏହାଙ୍କର ଅନ୍ୟ ନାମ ଅସମଞ୍ଜ । ଏହାଙ୍କର ପିତା ସଗର ଓ ମାତା କେଶିନୀ । ଏ ପ୍ରଜାପୀଡ଼କ ଥିବାରୁ ପିତା ଏହାଙ୍କୁ ରାଜ୍ୟରୁ ବହିଷ୍କୃତ କରି ଦେଇଥିଲେ । (ରାମାୟଣ)

**ଅଂଶୁମତୀ**—ଯମୁନା ନଦୀ । ଏ ସୂର୍ଯ୍ୟକନ୍ୟା । ଯମ ଏହାଙ୍କର ଭାଇ । (ମହାଭାରତ)

**ଅଂଶୁମାନ୍**—ସୂର୍ଯ୍ୟବଂଶୀୟ ସଗର ରାଜାଙ୍କ ନାତି । ଏହାଙ୍କ ପିତା ଅସମଞ୍ଜ । ସଗରଙ୍କ ଯଜ୍ଞ ଅଶ୍ୱ ଅପହୃତ ହେବାରୁ ସେ ତାଙ୍କର ଷାଠିଏ ସହସ୍ର ପୁତ୍ରଙ୍କୁ ତାହା ଖୋଜି ଆଣିବାକୁ ପଠାଇଲେ । ସେମାନେ ପାତାଳକୁ ଯାଇ

କପିଳ କୋପାନଳରେ ଭସ୍ମୀଭୂତ ହେଲେ । ସେଥିଲାଗି ପୁଣି ସଗର, ନାତି ଅଂଶୁମାନ୍‌ଙ୍କୁ ପଠାଇଲେ । ଅଂଶୁମାନ୍ ପାତାଳକୁ ଯାଇ କପିଳ ଋଷିଙ୍କୁ ସ୍ତବରେ ସନ୍ତୁଷ୍ଟ କରି ଯଜ୍ଞାଶ୍ୱ ନେଇ ଆସିଲେ । ପରେ ସଗର ଏହାଙ୍କୁ ରାଜ୍ୟ ଦେଇ ହିମାଳୟକୁ ତପସ୍ୟାର୍ଥେ ଗମନ କଲେ । ଅଂଶୁମାନ୍ ରାଜ୍ୟ ଲାଭ କରିବା ପରେ ତପର ଗଙ୍ଗାଙ୍କୁ ଆଣିଲେ ପିତୃପୁରୁଷ ଉଦ୍ଧାର ହୋଇପାରିବେ ସେ ବିଷୟରେ ପକ୍ଷୀରାଜ ଗରୁଡ଼ଙ୍କଠାରୁ ଉପଦେଶ ଲାଭ କରିଥିଲେ ।
(ହରିବଂଶ, ମହାଭାରତ)

**ଅକମ୍ପନ**—ଲଙ୍କେଶ୍ୱର ରାବଣଙ୍କ ମାତୁଳ ଓ ପ୍ରଧାନ ଯୋଦ୍ଧା । ବାନରଶ୍ରେଷ୍ଠ ହନୁମାନ ଏହାଙ୍କୁ ବଧ କରିଥିଲେ । ଏହାଙ୍କ ପିତା ସୁମାଳି ଓ ମାତା କେତୁମାଳୀ । ପ୍ରହସ୍ତ ଓ ଧୂମ୍ରାକ୍ଷ ଏ ଦୁହେଁ ଏହାଙ୍କର ଭାଇ । କୈକସୀ ବା ନିକଷା ଏହାଙ୍କର ଭଗିନୀ । (ରାମାୟଣ)

**ଅକାୟ**—ରାହୁଗ୍ରହର ଅନ୍ୟନାମ । ଶରୀର ନ ଥିବାରୁ ରାହୁଙ୍କୁ ଏପରି ନାମ ଦିଆଯାଇଛି ।

**ଅକୃଶାଶ୍ୱ**—ସଂହତାଶ୍ୱ ଏହାଙ୍କର ପିତା । ଏ ଜଣେ ସୂର୍ଯ୍ୟବଂଶୀୟ ରାଜା ଥିଲେ । (ହରିବଂଶ)

**ଅକ୍ରୂର**—ଏହାଙ୍କ ପିତା ଶ୍ୱଫଲ୍‌କ ଓ ମାତା ଗାନ୍ଧିନୀ । ଲୋକେ ଏହାଙ୍କୁ ଶ୍ରୀକୃଷ୍ଣଙ୍କ ପିତୃବ୍ୟ ବୋଲି କହନ୍ତି । କଂସ ଆଦେଶରେ ଏଇ ଅକ୍ରୂର ଶ୍ରୀକୃଷ୍ଣଙ୍କୁ ଗୋପରୁ ନେବାପାଇଁ ଆସିଥିଲେ । ଏହାଙ୍କ ପରାମର୍ଶକ୍ରମେ ଶତଧନ୍ୱା ସତ୍ୟଭାମାଙ୍କ ପିତା ସତ୍ରାଜିତଙ୍କୁ ବଧକରି ସ୍ୟମନ୍ତକମଣି ଅପହରଣ କରି ନେଇଥିଲେ । ଶ୍ରୀକୃଷ୍ଣ ଏହା ଜାଣିବାରୁ ଶତଧନ୍ୱା ଅକ୍ରୂରଙ୍କୁ ସ୍ୟମନ୍ତକମଣି ଦେଇ ପ୍ରାଣ ଭୟରେ ପଳାଇବାକୁ ଚେଷ୍ଟା କଲେ ସୁଦ୍ଧା ନିହତ ହେଲେ । ମଣିଟି ଅକ୍ରୂରଙ୍କ ହସ୍ତଗତ ହେଲା । ସେଇ ମଣି ବଳରେ ଅକ୍ରୂର ବହୁ ବ୍ୟୟସାଧ୍ୟ ନାନାବିଧ ଯାଗଯଜ୍ଞ କରି ପାରିଥିଲେ । ଘଟଣାକ୍ରମେ ତାଙ୍କୁ ଦ୍ୱାରକା ତ୍ୟାଗ କରିବାକୁ ପଡ଼ିଲା । ସେଥିଲାଗି ଦ୍ୱାରକାରେ ଅନାବୃଷ୍ଟି ଓ ଲୋକକ୍ଷୟ ହୋଇଥିବା କଥା ପୁରାଣରେ ଲେଖାଅଛି । (ଭାଗବତ)

**ଅକ୍ରୋଧନ**—ପିତାଙ୍କ ନାମ ଅୟୁତାୟୁଷ । ଏ କୁରୁବଂଶର ଜଣେ ପ୍ରସିଦ୍ଧ ରାଜପୁତ୍ର ।

**ଅକ୍ଷପାଦ**—ପ୍ରସିଦ୍ଧ ଦାର୍ଶନିକ ଋଷି ଗୌତମଙ୍କର ଅନ୍ୟ ନାମ । ବେଦବ୍ୟାସ, ଗୌତମପ୍ରଣୀତ ନ୍ୟାୟଶାସ୍ତ୍ରକୁ ନିନ୍ଦା କରିବାରୁ ଗୌତମ ବ୍ୟାସଙ୍କ

ମୁଖାବଲୋକନ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ପରେ କିନ୍ତୁ ବ୍ୟାସଙ୍କ ଅନୁନୟରେ ତୃପ୍ତିଲାଭ କରି ତାଙ୍କୁ ଦେଖିବା ପାଇଁ ଆପଣା ପାଦରେ ଚକ୍ଷୁ ସୃଷ୍ଟି କଲେ । ସେଇ ଚକ୍ଷୁ ସାହାଯ୍ୟରେ ସେ ବ୍ୟାସଙ୍କୁ ଦେଖିଲେ ଏବଂ ଋଷିମାନେ ସେହିଦିନୁ ତାଙ୍କୁ ଅକ୍ଷପାଦ ନାମ ଦେଲେ । ନ୍ୟାୟ ଦର୍ଶନ ଏହାଙ୍କ ପ୍ରଣୀତ । ଏହାର ଅପର ନାମ ଅକ୍ଷପାଦ ଦର୍ଶନ । ପଣ୍ଡିତ ମ୍ୟାକ୍‌ସମୁଲାରଙ୍କ ମତରେ ଏହାଙ୍କ ଆବିର୍ଭାବକାଳ ଖ୍ରୀ: ପୂ: ୬୦୦ ଠାରୁ ୭୦୦ ମଧ୍ୟରେ ।

**ଅକ୍ଷମାଳୀ**—ବଶିଷ୍ଠଙ୍କ ସ୍ତ୍ରୀ ଅରୁନ୍ଧତୀ ।

**ଅକ୍ଷୟ, ଅକ୍ଷୟକୁମାର**—ଲଙ୍କାର ରାଜା ରାବଣଙ୍କର ସର୍ବ କନିଷ୍ଠ ପୁତ୍ର । ହନୁମାନ୍ ସୀତା ଅନ୍ୱେଷଣାର୍ଥେ ଲଙ୍କାକୁ ଗମନକରି ଯେତେବେଳେ ଅଶୋକବନ ଧ୍ୱଂସ କଲେ, ସେହି ସମୟରେ ଅକ୍ଷୟ ହନୁମାନଙ୍କ ସହିତ ଯୁଦ୍ଧକରି ନିହତ ହେଲେ । (ରାମାୟଣ)

**ଅକ୍ଷୟ ତୂଣ**—ମହାଦେବ, ଅର୍ଜୁନଙ୍କ ତପସ୍ୟାରେ ତୁଷ୍ଟ ହୋଇ ତାଙ୍କୁ ଏହା ଦେଇଥିଲେ । ଏଥିରୁ ମୋଟେ ଅସ୍ତ୍ର ସରେ ନାହିଁ । (ମହାଭାରତ)

**ଅଗସ୍ତି, ଅଗସ୍ତ୍ୟ**—ମହର୍ଷି ମିତ୍ରାବରୁଣ ଏହାଙ୍କର ପିତା । ମିତ୍ରାବରୁଣ ଆଦିତ୍ୟଙ୍କ ଯଜ୍ଞକୁ ନିମନ୍ତ୍ରିତ ହୋଇଯାଇଥିଲେ । ଯଜ୍ଞସ୍ଥଳରେ ସ୍ୱର୍ଗବେଶ୍ୟା ଉର୍ବଶୀଙ୍କୁ ଦେଖି ତାଙ୍କର ରେତଃ ସ୍ଖଳିତ ହେଲା । କୁମ୍ଭରେ ପଡ଼ିବା ରେତଃରୁ ଅଗସ୍ତି ଜାତ ହେଲେ । ସେଥିପାଇଁ ଅଗସ୍ତିଙ୍କର ଅନ୍ୟ ନାମ କୁମ୍ଭସୁତ ବା କୁମ୍ଭଯୋନି । ତଳେ ପଡ଼ିବା ରେତଃରୁ ମହର୍ଷି ବଶିଷ୍ଠ ଜାତ ହେଲେ । (ବୃହତ୍-ସଂହିତା) ଅଗସ୍ତିଙ୍କର ଅସାଧାରଣ ତପୋବଳ । ବୃତ୍ର ସଂହାର ପରେ କାଳକେୟମାନେ ଦେବତାମାନଙ୍କୁ ଡରି ସମୁଦ୍ରରେ ଲୁଚି ରହିଲେ । କିନ୍ତୁ ରାତିରେ ସମୁଦ୍ର ଭିତରୁ ବାହାରି ମୁନିଋଷିମାନଙ୍କୁ ବଧ କଲେ ଏବଂ ଯାଗଯଜ୍ଞ ଧ୍ୱଂସ କରିବାକୁ ଲାଗିଲେ । ଦେବତାମାନଙ୍କ ଅନୁରୋଧରେ ପୃଥିବୀ ରକ୍ଷାଲାଗି ଅଗସ୍ତି ସମୁଦ୍ର ଚଳୁ କରିଦେଲେ । ଇଲ୍ୱଳ ଓ ବାତାପି ନାମକ ଦୁଇ ଅସୁରଙ୍କ ଗର୍ବ ଖର୍ବ କରିଥିଲେ । ବିନ୍ଧ୍ୟ ପର୍ବତକୁ ପ୍ରତିଜ୍ଞାବଦ୍ଧ କରାଇଥିଲେ । ରାମଚନ୍ଦ୍ରଙ୍କୁ ଏହି ଅଗସ୍ତି ରାବଣ ବଧ ନିମିତ୍ତ ବ୍ରହ୍ମାସ୍ତ୍ର ପ୍ରଦାନ କରିଥିଲେ । ଅଗସ୍ତ୍ୟ ସଂହିତା ଏହାଙ୍କ ଦ୍ୱାରା ରଚିତ । (ରାମାୟଣ)

**ଅଗ୍ନି**—ଋଗ୍‌ବେଦମତେ ଅଗ୍ନି ପରମପୁରୁଷଙ୍କ ମୁଖରୁ ଉତ୍ପନ୍ନ । ଆହୁରି କେହି କେହି ପୁରାଣବିତ୍ ପଣ୍ଡିତଙ୍କ ମତରେ ଧର୍ମ ଏହାଙ୍କ ପିତା ଓ ବସୁଭାର୍ଯ୍ୟା ଏହାଙ୍କର

ମାତା ବୋଲି ପ୍ରମାଣ ମିଳେ । କୌଣସି କୌଣସି ପୁରାଣରେ ମଧ୍ୟ କଶ୍ୟପଙ୍କ ଔରସରେ ଅଦିତିଙ୍କ ଗର୍ଭରୁ ଅଗ୍ନିଙ୍କର ଜନ୍ମ ବୋଲି ଜଣାପଡ଼େ । ଦକ୍ଷ-ଦୁହିତା ସ୍ୱାହା, ସ୍ୱଧା ଏହାଙ୍କର ପତ୍ନୀ । ଏ ଜଣେ ଦିକ୍‌ପାଳ । ଦକ୍ଷିଣ-ପୂର୍ବ ଦିଗର ଏ ଅଧିପତି ଅଟନ୍ତି । ଅଗ୍ନି ସ୍ଥୂଳକାୟ, ଲମ୍ବୋଦର ଓ ରକ୍ତବର୍ଣ୍ଣ ବିଶିଷ୍ଟ । ଏହାଙ୍କର ଚକ୍ଷୁ, ଭ୍ରୂଲତା ଓ କେଶ ପିଙ୍ଗଳବର୍ଣ୍ଣ; ଆୟୁଧ, ଶକ୍ତି ଓ ଅକ୍ଷସୂତ୍ର; ବାହନ ଛାଗଳ । କୌଣସି କୌଣସି ସ୍ଥଳରେ ଅଗ୍ନି ତିନି ପାଦ, ସପ୍ତ ବାହୁ, ଦୁଇ ମୁଖ ଏବଂ ବାଳାରୁଣ ତୁଲ୍ୟ ତେଜସ୍ୱର ବୋଲି ବର୍ଣ୍ଣନା କରାଯାଇଛି ।

ଅଗ୍ନିଙ୍କର ପୁତ୍ର ସଂଖ୍ୟା ୪୮ । ତେଣୁ ଅଗ୍ନିଦେବଙ୍କୁ ମିଶାଇ ମୋଟ ଅଗ୍ନି ସଂଖ୍ୟା ୪୯ । (ଭାଗବତ)

ବିଭିନ୍ନ ହୋମରେ ବିଭିନ୍ନ ପ୍ରକାର ଅଗ୍ନିଙ୍କର ନାମ ଗୋତ୍ର ଓ ପ୍ରବର ଥିବାର ସ୍ପଷ୍ଟ ପ୍ରମାଣ ମିଳେ । ଅମରକୋଷ ମତରେ ଅଗ୍ନି ତ୍ରିବିଧ—ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ । ନ୍ୟାୟ ମତରେ ଦ୍ୱିବିଧ, ଜାର୍ଣ୍ଣ ଓ ଅଜାର୍ଣ୍ଣ ।

ସ୍ୱାହାଙ୍କ ଗର୍ଭରୁ ପାବକ (ବୈଦ୍ୟୁତାଗ୍ନି) ପବମାନ (ଘର୍ଷଣୋତ୍ପନ୍ନ ଅଗ୍ନି) ଏବଂ ଶୁଚି (ସୌରାଗ୍ନି) ନାମରେ ଏହିପରି ତିନିପୁଅ ଜାତ ହୋଇଥିଲେ । ପାବକଙ୍କ ପୁତ୍ର କବ୍ୟବାହନ (ପିତୃଗଣଙ୍କ ଅଗ୍ନି), ଶୁଚିପୁତ୍ର ହବ୍ୟବାହନ (ଦେବଗଣଙ୍କ ଅଗ୍ନି) ଏବଂ ପବମାନ ପୁତ୍ର ସହରକ୍ଷ (ଅସୁରଗଣଙ୍କ ଅଗ୍ନି) । ବହୋଧାସ୍ୱା ବା ସ୍ୱଧାଙ୍କ ଗର୍ଭରୁ ୪୫ଟି ପୁତ୍ର ଜାତ ହୋଇଥିଲେ । (ଅଗ୍ନିପୁରାଣ)

**ଅଗ୍ନିକଳା**—ଅଗ୍ନିଦେବତାଙ୍କର ଦଶୋଗୋଟି ଅଙ୍ଗ—ଧୂମ୍ର, ଅର୍ଚ୍ଚି, ଲକ୍ଷ୍ମା, ଜ୍ୱଳନୀ, ଜ୍ୱାଳିନୀ, ବିସ୍ଫୁଲିଙ୍ଗିନୀ, ସୁଶ୍ରୀ, ସୁରୂପା କପିଳା, ହବ୍ୟକବ୍ୟ । (ଅଗ୍ନିପୁରାଣ)

**ଅଗ୍ନିକା**—ଜଣେ ଋଷି । ପୁତ୍ର ଉଦ୍ଦେଶ୍ୟରେ ମୃଗୀକୁ ରମଣ କରୁଥିବା ବେଳେ ପାଣ୍ଡୁଙ୍କ ଶର ଆଘାତରେ ପ୍ରାଣତ୍ୟାଗ କରିବା କଥା ମହାଭାରତରେ ଅନୁସନ୍ଧେୟ ।

**ଅଗ୍ନିକୁମାର**—କାର୍ତ୍ତିକେୟ । ଏ ବିଷୟରେ ପୁରାଣରେ ବିଭିନ୍ନମତ ଦେଖାଯାଏ । ପ୍ରଥମତଃ ଅଗ୍ନି ସପ୍ତର୍ଷିମାନଙ୍କ ସ୍ତ୍ରୀମାନଙ୍କର ରୂପରେ ମୁଗ୍ଧ ହୋଇଛନ୍ତି ଜାଣି ତାଙ୍କ ସ୍ତ୍ରୀ ସ୍ୱାହା, ଅରୁନ୍ଧତୀଙ୍କ ଛଡ଼ା ଅନ୍ୟ ଛଅ ଜଣ ଋଷିପତ୍ନୀଙ୍କ ରୂପ ଧରି ଅଗ୍ନିଙ୍କ ସହିତ ଛଅ ଥର ବିହାର କଲେ । ଅଗ୍ନିଙ୍କ ରେତଃ ସୁନା କୁଣ୍ଡରେ ପଡ଼ିବାରୁ ସେହି ତେଜୋମୟ ରେତରୁ କାର୍ତ୍ତିକେୟ ଜନ୍ମିଲେ । ଦ୍ୱିତୀୟତଃ ଶିବପାର୍ବତୀଙ୍କ ସଙ୍ଗମ ସମୟରେ ଅଗ୍ନି କପୋତ ରୂପ ଧରି

ଲୁଚିଥିଲେ । ପାର୍ବତୀ ଶିବଙ୍କ ରେତଃ ଧାରଣରେ ଅକ୍ଷମ ହେବାରୁ ଅଗ୍ନି ତାହା ଧରି ନେଲେ । ସେଥିରୁ କାର୍ତ୍ତିକେୟଙ୍କ ଜନ୍ମ ହୋଇଥିଲା ।

**ଅଗ୍ନିକେତୁ**– ଲଙ୍କାରାଜ ରାବଣଙ୍କ ସେନାପତି । ରାମାୟଣ ଯୁଦ୍ଧରେ ଏହାଙ୍କର ମୃତ୍ୟୁ ଘଟିଲା । (ରାମାୟଣ)

**ଅଗ୍ନିବର୍ଣ୍ଣ**—ସୂର୍ଯ୍ୟବଂଶୀୟ ରାଜା ସୁଦର୍ଶନଙ୍କ ପୁତ୍ର । ପିତାଙ୍କ ଅନ୍ତେ ରାଜ୍ୟଭାର ଗ୍ରହଣ କରି ଅଗ୍ନିବର୍ଣ୍ଣ ନିତାନ୍ତ ଇନ୍ଦ୍ରିୟପରାୟଣ ହୋଇପଡ଼ିଲେ । ସର୍ବଦା ଅନ୍ତଃପୁର ମଧ୍ୟରେ ରହିବା (ମନ୍ତ୍ରୀମାନଙ୍କ ଉପରେ ରାଜ୍ୟଭାର ଅର୍ପଣ କରି) ଦ୍ୱାରା ସେ ଯକ୍ଷ୍ମା ରୋଗାକ୍ରାନ୍ତ ହୋଇପଡ଼ିଲେ । ଏହି ରୋଗରେ ତାଙ୍କର ମୃତ୍ୟୁ ଘଟିଲା । (ରାମାୟଣ)

**ଅଗ୍ନିବାହୁ**—ସୂର୍ଯ୍ୟବଂଶୀୟ ରାଜା ପ୍ରିୟବ୍ରତ ଏହାଙ୍କର ପିତା । କାମ୍ୟା ମାତା । ଏ ଆଜୀବନ ବ୍ରହ୍ମଚାରୀ ଥିଲେ । (ବିଷ୍ଣୁପୁରାଣ)

**ଅଗ୍ନିବେଶ**– ଆୟୁର୍ବେଦ ସଂହିତା ଏହାଙ୍କ ଦ୍ୱାରା ରଚିତ । ମହର୍ଷି ଆତ୍ରେୟଙ୍କ ଠାରୁ ଅଗ୍ନିବେଶ ଆୟୁର୍ବେଦ ଶାସ୍ତ୍ର ଅଧ୍ୟୟନ କରିଥିଲେ ।

**ଅଗ୍ନିବେଶ୍ମନ**—ଜଣେ ଗୋତ୍ରପ୍ରବର୍ତ୍ତକ ଋଷି ।

**ଅଗ୍ନିବେଶ୍ୟ**—ଅଗ୍ନିଙ୍କ ପୁତ୍ର । ଏ ଧନୁର୍ବିଦ୍ୟାରେ ଅତ୍ୟନ୍ତ ଧୁରନ୍ଧର ଥିଲେ । ଦ୍ରୋଣାଚାର୍ଯ୍ୟଙ୍କ ପିତା ଭରଦ୍ୱାଜ ଏହାଙ୍କୁ ଧନୁର୍ବିଦ୍ୟା ଶିକ୍ଷା ଦେଇଥିଲେ । ଭରଦ୍ୱାଜ ସନ୍ତୁଷ୍ଟ ହୋଇ ଏହାଙ୍କୁ ଆଗ୍ନେୟାସ୍ତ୍ର ପ୍ରଦାନ କରିଥିଲେ । ଦ୍ରୋଣାଚାର୍ଯ୍ୟ ଏହି ଅଗ୍ନିବେଶ୍ୟଙ୍କଠାରୁ ଧନୁର୍ବିଦ୍ୟା ଅଧ୍ୟୟନ କରି ପୂର୍ବୋକ୍ତ ଆଗ୍ନେୟାସ୍ତ୍ର ପୁରସ୍କାର ସ୍ୱରୂପ ଲାଭ କରିଥିଲେ ।

**ଅଗ୍ନିଶର୍ମା, ଅଗ୍ନିଶର୍ମନ୍**— ଜଣେ କ୍ରୋଧପରାୟଣ ଋଷି ।

**ଅଗ୍ନିଶିଖ**—କବି ବରରୁଚିଙ୍କ ପିତା ।

**ଅଗ୍ନିଧ୍ର**—ସ୍ୱାୟମ୍ଭୁବ ମନୁଙ୍କ ନାତି । ପ୍ରିୟବ୍ରତଙ୍କ ଜ୍ୟେଷ୍ଠ ପୁତ୍ର । ଏହାଙ୍କ ମାତାଙ୍କ ନାମ କାମ୍ୟା । ପ୍ରିୟବ୍ରତ ସପ୍ତଦ୍ୱୀପର ରାଜା ଥିଲେ । ତାଙ୍କର ସାତ ପୁଅଙ୍କୁ ଏଇ ସାତ ଦ୍ୱୀପ ବାଣ୍ଟି ଦେଇଥିଲେ । ଅଗ୍ନିଧ୍ରଙ୍କ ଭାଗରେ ଜମ୍ବୁଦ୍ୱୀପ ପଡ଼ିଥିଲା । ଏହାଙ୍କର ନଅ ପୁଅ—ନାଭି, କିଂପୁରୁଷ, ହରି, ଇଳାବୃତ, ରମ୍ୟ, ହିରଣ୍ମାନ୍, କୁରୁ, ଭଦ୍ରାଶ୍ୱ, ଓ କେତୁମାନ୍ । ଏମାନେ ଜମ୍ବୁଦ୍ୱୀପକୁ ନଅ ଭାଗରେ ବିଭକ୍ତ କରି ଶାସନ କରୁଥିଲେ । ନିଜ ନିଜ ନାମାନୁସାରେ ରାଜ୍ୟମାନଙ୍କର ନାମ ଦେଇଥିଲେ ।

**ଅଗ୍ନିଷ୍ୱାତ୍ତ**—ଏ ପିତୃଗଣ ମଧ୍ୟରୁ ଜଣେ । ପିତୃଲୋକମାନେ ତିନି ଶ୍ରେଣୀରେ ବିଭକ୍ତ । ତର୍ପଣରେ ଏମାନଙ୍କୁ ପୃଥକ୍ ପୃଥକ୍ ତିଳୋଦକ ଦିଆଯାଏ । ଏମାନେ ସମସ୍ତେ ମରୀଚି ଋଷିଙ୍କ ପୁଅ । ଏମାନଙ୍କ ନାମ—ଅଗ୍ନିଷ୍ୱାତ୍ତ, ସୋମପା, ବର୍ହିଷଦ ।

**ଅଗ୍ରବକ୍ତ୍ର**—ସୁଶ୍ରୁତରେ ଲେଖାଯାଇଥିବା ପ୍ରାଚୀନ ଚିକିତ୍ସା ଶସ୍ତ୍ର ।

**ଅଗ୍ରମନ୍ଦିର**—ସାମୁଦ୍ରିକ ପ୍ରାଚୀନ ଗୋବିଶେଷ ।

**ଅଘାସୁର**—ବକାସୁର ଏହାର ସାନଭାଇ ଓ ପୂତନା ଜ୍ୟେଷ୍ଠା ଭଗିନୀ । ପୂତନାର ମୃତ୍ୟୁ ପରେ ରାକ୍ଷସରାଜ କଂସ ଏହାକୁ ଶ୍ରୀକୃଷ୍ଣଙ୍କ ବଧ ନିମିତ୍ତ ବୃନ୍ଦାବନକୁ ପ୍ରେରଣ କରିଥିଲେ । ଶ୍ରୀକୃଷ୍ଣ ଯେତେବେଳେ ଗୋପ ବାଳକମାନଙ୍କ ସହିତ ଗୋଚାରଣ କରୁଥିଲେ, ସେତେବେଳେ ଏହି ଅଘାସୁର ଅଜଗର ସାପ ହୋଇ ପାଟି ମେଲି କରି ପଡ଼ି ରହିଥିଲା । ଗୋପ ଶିଶୁମାନେ ନ ଜାଣି ଏ ସାପର ଗର୍ଭରେ ପଡ଼ି ପ୍ରାଣ ହରାଇଲେ । ଶ୍ରୀକୃଷ୍ଣ ଏହା ଜାଣିପାରି ଅସୁରର ଗର୍ଭ ମଧ୍ୟରେ ପଶି ଏପରି ଭାବରେ ଫୁଲି ଉଠିଲେ ଯେ ରାକ୍ଷସର ପେଟ ଫାଟିଗଲା । ସେ ମରିବା ସଙ୍ଗେ ସଙ୍ଗେ ଗୋପ ଶିଶୁମାନେ ମୃତ ଅବସ୍ଥାରେ ପଡ଼ି ରହିଲେ । ଶ୍ରୀକୃଷ୍ଣ ନିଜର ଅମୃତ ଦୃଷ୍ଟି ବଳରେ ସଖାମାନଙ୍କୁ ଜୀବନଦାନ କଲେ ।

(ଶ୍ରୀମଦ୍‌ଭାଗବତ)

**ଅଘୋର**—ମହାଦେବଙ୍କର ଅନ୍ୟନାମ । ଅଘୋରୀ ବା ଅଘୋରପନ୍ଥୀ ବୋଲି ଗୋଟିଏ ସମ୍ପ୍ରଦାୟ ଅଛନ୍ତି । ଏମାନେ ସମସ୍ତେ ଶୈବ । ଘୃଣା କିମ୍ବା ବିକାର ଏମାନଙ୍କର ମୋଟେ ନାହିଁ । କଞ୍ଚା ମାଂସ, ମଦ, ପଚା ସଢ଼ା ଖାଦ୍ୟ, ଅଖାଦ୍ୟ ପଦାର୍ଥ ଏପରି କି ମଳମୂତ୍ର ମଧ୍ୟ ଏମାନଙ୍କର ଆହାର । ବିକାରଶୂନ୍ୟତା ଏମାନଙ୍କ ଧର୍ମର ମୂଳମନ୍ତ୍ର ।

**ଅଙ୍କାନା, ମାଧନା**—ଏ ଦୁଇ ସହୋଦର ଗୋଦାବରୀ ତୀରସ୍ଥ ରାଜମନ୍ଦର (ଆଧୁନିକ ରାଜମହେନ୍ଦ୍ରୀ) ସହରରେ ବାସ କରୁଥିଲେ । ଭିନ୍ନ ଭିନ୍ନ ତୀର୍ଥରେ ସଦାବ୍ରତ ଦେବା ଏମାନଙ୍କର କାର୍ଯ୍ୟ । ପ୍ରତିଦିନ ଏ ଦୁହେଁ ଶହେ ଆଠ ବ୍ରାହ୍ମଣଙ୍କୁ ଅନ୍ନ ଭୋଜନ ଦେଉଥିଲେ । ଦିନେ ଭଗବାନ୍ ମାୟା କରି ଏମାନଙ୍କ ଦାତାପଣ ବୁଝିବାକୁ ଆସିଲେ । ଦଶ ହଜାର ବ୍ରାହ୍ମଣଙ୍କ ଉଦ୍ଦେଶ୍ୟରେ ହୋଇଥିବା ସାମଗ୍ରୀ, ଜଣେ ବ୍ରାହ୍ମଣ ଖାଇ ଦେବାରୁ ଅଙ୍କାନା, ମାଧନା ତାଙ୍କୁ ଭଗବାନ୍ ବୋଲି ଜାଣି ଶରଣାପ୍ରାର୍ଥୀ ହେଲେ । ଭଗବାନ୍ ପ୍ରସନ୍ନ ହେଲେ । ସେମାନେ ସ୍ୱର୍ଗଲାଭ କଲେ । (୬ରାମଦାସଙ୍କ ଦାର୍ଢ୍ୟତାଭକ୍ତି)

**ଅଙ୍ଗ**—ଜନ୍ମାନ୍ଧ ମହର୍ଷି ଦୀର୍ଘତମାଙ୍କ ଔରସରେ ବଳିରାଜ ମହିଷୀ ସୁଦେଷ୍ଣାଙ୍କ ଗର୍ଭରୁ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ଏଇ ପାଞ୍ଚ ପୁତ୍ରଙ୍କର ଜନ୍ମ । ଗଙ୍ଗା ଓ ସରଯୂ ନଦୀର ସଙ୍ଗମସ୍ଥଳ ବୋଧହୁଏ ଅଙ୍ଗଦେଶ ନାମରେ ଖ୍ୟାତ । ଏହା ପୂର୍ବେ ଅରଣ୍ୟସମାକୀର୍ଣ୍ଣ ଥିଲା । ରାମାୟଣ ଯୁଗରେ ଏହା ତାଡ଼କା ବନ ନାମରେ ପରିଚିତ । ତାକୁ ଲାଗି ରହିଥିଲା ସିଦ୍ଧବନ, ବିପୁଳବନ ଇତ୍ୟାଦି । ମହାଭାରତରେ ଏଇ ଜଙ୍ଗଲପୂର୍ଣ୍ଣ ରାଜ୍ୟ ଅଙ୍ଗ ନାମରେ ଅଭିହିତ ହୋଇଥିଲା । ଦାତା କର୍ଣ୍ଣ ଏ ଦେଶର ଅଧିପତି ଥିଲେ । ଏ ସାମ୍ରାଜ୍ୟ ଆଧୁନିକ ବିହାରର ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଥିଲା ବୋଲି ମଧ୍ୟ ପ୍ରମାଣ ମିଳେ । (ମହାଭାରତ)

**ଅଙ୍ଗଦ**—ବାନରରାଜ କିଷ୍କିନ୍ଧ୍ୟାଧିପତି ବାଳିଙ୍କ ଜ୍ୟେଷ୍ଠ ପୁତ୍ର । ବାଳି ବଧ ପରେ ତଦୀୟ ଭ୍ରାତା ସୁଗ୍ରୀବ କିଷ୍କିନ୍ଧ୍ୟା ସିଂହାସନ ଅଳଂକୃତ କରିଥିଲେ । ଅଙ୍ଗଦ ଯୌବରାଜ୍ୟ ପଦରେ ଅଭିଷିକ୍ତ ହେଲେ । ସୁଗ୍ରୀବଙ୍କ ମର୍କଟ ବାହିନୀରେ ଏ ଜଣେ ପ୍ରସିଦ୍ଧ ସେନାପତି । ରାମାୟଣ ଯୁଦ୍ଧରୁ ଏହାଙ୍କ ବୀରତ୍ୱର ଯଥେଷ୍ଟ ପରିଚୟ ମିଳେ । ଶ୍ରୀରାମଚନ୍ଦ୍ରଙ୍କ ଦୂତରୂପେ ସେ ରାକ୍ଷସରାଜ ରାବଣଙ୍କ ରାଜସଭାକୁ ଯାଇ ତାଙ୍କର କିରୀଟକୁଣ୍ଡଳ ଜଗଢଗୃଳ ସହିତ ଉପାଡ଼ି ଧରି ଆସିଥିଲେ । ଅଙ୍ଗଦ ଥରେ ମହାବୀର ଇନ୍ଦ୍ରଜିତଙ୍କୁ ମଧ୍ୟ ଯୁଦ୍ଧରେ ପରାସ୍ତ କରିଥିଲେ । (ରାମାୟଣ)

-ଲକ୍ଷ୍ମଣଙ୍କ ଜ୍ୟେଷ୍ଠ ପୁତ୍ର ।

**ଅଙ୍ଗାରପର୍ଣ୍ଣ**—ଇନ୍ଦ୍ରଙ୍କ ସଖା ଚିତ୍ରରଥ । ଏ ଗନ୍ଧର୍ବମାନଙ୍କର ରାଜା ଅଟନ୍ତି ।

**ଅଙ୍ଗାରସେତୁ**—ଗାନ୍ଧାରଙ୍କ ପିତା । ଜଣେ ପ୍ରସିଦ୍ଧ ରାଜା ।

**ଅଙ୍ଗିରସ ବା ଅଙ୍ଗିରା**—ବ୍ରହ୍ମାଙ୍କର ମାନସ ପୁତ୍ର । କର୍ଦ୍ଦମ ଋଷିଙ୍କ କନ୍ୟା ଶୁଭା ବା ଶ୍ରଦ୍ଧା ଏହାଙ୍କର ପତ୍ନୀ । ଉତଥ୍ୟ ଓ ବୃହସ୍ପତି ଏ ଦୁହେଁ ଏହାଙ୍କ ପୁତ୍ର । ଅଙ୍ଗିରା ଜଣେ ଧର୍ମଶାସ୍ତ୍ର ପ୍ରବର୍ତ୍ତକ ମହର୍ଷି । ଏହାଙ୍କ ପ୍ରଣୀତ ଆଙ୍ଗିରସ-ସଂହିତା ଗୋଟିଏ ପ୍ରଧାନ ସ୍ମୃତି ଗ୍ରନ୍ଥ । ଆଉ ଗୋଟିଏ ଜ୍ୟୋତିଷଗ୍ରନ୍ଥ ମଧ୍ୟ ଏ ରଚନା କରିଥିଲେ । ସପ୍ତର୍ଷିମାନଙ୍କ ମଧ୍ୟରେ ଅଙ୍ଗିରା ଅନ୍ୟତମ ।
(ମହାଭାରତ)

**ଅଚଲ୍ଲା ପହଣ୍ଡ**—ଜଗନ୍ନାଥଙ୍କ ନାଟ ମନ୍ଦିର ମଧ୍ୟସ୍ଥ ସ୍ଥାନ । ଏଠାରେ ବସି ଭକ୍ତମାନେ ଭଜନ ଓ ସ୍ତୁତିପାଠ କରନ୍ତି । ବୋଧହୁଏ ଏଠାରେ ବସି ଭଜନାଦି କରିବା ଦ୍ୱାରା ସହାଉ ଚଲ୍ଲା ବାଧେ ନାହିଁ ବୋଲି ଏପରି ନାମ ଦିଆଯାଇଛି ।

**ଅଚ୍ୟୁତ**—ଭଗବାନ ଶ୍ରୀକୃଷ୍ଣଙ୍କ ଅନ୍ୟ ନାମ ।

**ଅଚ୍ୟୁତାଗ୍ରଜ**—ଶ୍ରୀକୃଷ୍ଣଙ୍କ ବଡ଼ ଭାଇ ବଳରାମ, ଇନ୍ଦ୍ର ।

**ଅଜ**—ଅଯୋଧ୍ୟାଧିପତି ସୂର୍ଯ୍ୟବଂଶୀୟ ପୁଣ୍ୟଶ୍ଳୋକ ମହାରାଜ ରଘୁଙ୍କ ପୁତ୍ର । ବିଦର୍ଭ ରାଜକୁମାରୀ ଇନ୍ଦୁମତୀ ଏହାଙ୍କୁ ସ୍ୱୟମ୍ବର ପ୍ରଥାନୁସାରେ ବରଣ କରିଥିଲେ । ଅଜ ଇନ୍ଦୁମତୀଙ୍କ ସହ ରାଜ୍ୟକୁ ଫେରିବାବେଳେ ସ୍ୱୟମ୍ବରକୁ ଆସିଥିବା ରାଜାମାନଙ୍କ ସହିତ ପଥ ମଧ୍ୟରେ ଘୋର ଯୁଦ୍ଧ ହେଲା । ଅଜ ବିପକ୍ଷ ରାଜାମାନଙ୍କୁ ମୋହନ ଅସ୍ତ୍ରରେ ଅଚେତନ କରି ଅଯୋଧ୍ୟାକୁ ପ୍ରତ୍ୟାଗମନ କଲେ । ମହାରାଜା ରଘୁ ପୁତ୍ରଙ୍କର ବିଜୟବାର୍ତ୍ତା ଶ୍ରବଣ କରି ମହାସମାଦର-ପୂର୍ବକ ପୁତ୍ର ଓ ପୁତ୍ରବଧୂଙ୍କୁ ରାଜଧାନୀକୁ ନେଇଗଲେ । ପରେ ଅଜଙ୍କୁ ରାଜ୍ୟଭାର ଅର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କଲେ । ଦଶରଥ ଏଇ ଅଜଙ୍କ ପୁତ୍ର । ଏହାଙ୍କ ବାଲ୍ୟାବସ୍ଥାରେ ଇନ୍ଦୁମତୀ ପ୍ରାଣତ୍ୟାଗ କରିଥିଲେ । ଅଜ ପୁତ୍ରର ଯୌବନ ପ୍ରାପ୍ତି ପର୍ଯ୍ୟନ୍ତ ଦ୍ୱିତୀୟ ବାର ପରିଗ୍ରହ ନକରି ଶାସନ କାର୍ଯ୍ୟ ଚଳାଇଲେ । ପରେ ଦଶରଥଙ୍କୁ ରାଜ୍ୟଭାର ସମର୍ପଣ କରି ଅନଶନ-ବ୍ରତ ଅବଲମ୍ବନ ପୂର୍ବକ ଗଙ୍ଗା-ସରଯୂ ସଙ୍ଗମରେ ଦେହତ୍ୟାଗ କରିଥିଲେ ।

(ରାମାୟଣ, ରଘୁବଂଶ)

(୨) ଏ ଜଣେ ରୁଦ୍ର ବୋଲି ଭାଗବତରେ ଲେଖା ଅଛି କିନ୍ତୁ ବିଷ୍ଣୁ, ବାୟୁ ଓ ମତ୍ସ୍ୟପୁରାଣରେ ଅଜଙ୍କ ନାମ ସୁଦ୍ଧା ଦୃଷ୍ଟି ହୁଏ ନାହିଁ ।

(୩) ବ୍ରହ୍ମା, ବିଷ୍ଣୁ ଓ ମହାଦେବଙ୍କର ଅନ୍ୟ ନାମ ।

**ଅଜମୀଢ଼**—ଚନ୍ଦ୍ରବଂଶୀୟ ରାଜା ହସ୍ତୀଙ୍କ ପୁତ୍ର । ଏହି ହସ୍ତୀ ରାଜାଙ୍କ ନାମାନୁସାରେ ତାଙ୍କ ରାଜଧାନୀର ନାମ ହୋଇଥିଲା ହସ୍ତିନାପୁର । ହସ୍ତିନାପୁର ଆଧୁନିକ ଦିଲ୍ଲୀନଗରୀ ନିକଟରେ ଅବସ୍ଥିତ । ବିଖ୍ୟାତ କୌରବ ଦୁର୍ଯ୍ୟୋଧନ ଏଠାର ରାଜାଥିଲେ ।

**ଅଜମୁଖ**—ଦକ୍ଷ ପ୍ରଜାପତିଙ୍କର ଅନ୍ୟ ନାମ । ଦକ୍ଷ ଯଜ୍ଞଭଙ୍ଗ ବେଳେ ଶିବ କ୍ରୋଧାନ୍ୱିତ ହୋଇ ଯଜ୍ଞ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ଦକ୍ଷଙ୍କୁ ତ୍ରିଶୂଳା-ଘାତରେ ଛିନ୍ନ କରିଦେଲେ । ପରେ ଦକ୍ଷପତ୍ନୀଙ୍କ ସ୍ତୁତି ପାଠରେ ସନ୍ତୁଷ୍ଟ ହୋଇ ଦକ୍ଷଙ୍କୁ ପୁନର୍ଜୀବନ ଦାନ କଲେ ଏବଂ ତାଙ୍କ ମୁଣ୍ଡ ପରିବର୍ତ୍ତେ ଗୋଟିଏ ଛାଗମୁଣ୍ଡ କଣ୍ଠଦେଶରେ ଯୋଡ଼ି ଦେଲେ । ସେହିଦିନଠାରୁ ଦକ୍ଷଙ୍କର ଅନ୍ୟ ନାମ ଅଜମୁଖ ହେଲା ।

**ଅଜାତଶତ୍ରୁ**—ପାଣ୍ଡବରାଜା ଯୁଧିଷ୍ଠିର କାହାରିକୁ ଶତ୍ରୁ ଜ୍ଞାନ କରୁ ନ ଥିବାରୁ ତାଙ୍କର ନାମ ଥିଲା ଅଜାତଶତ୍ରୁ ।

(୨) ଉପନିଷଦରେ ଏହିପରି ଆଉ ଜଣେ ରାଜାଙ୍କ ନାମର ପରିଚୟ ମିଳେ । ବାରାଣସୀ ଏହାଙ୍କର ରାଜଧାନୀ ଥିଲା । ମହର୍ଷି ଗାର୍ଗ୍ୟଙ୍କଠାରୁ ସେ ବ୍ରହ୍ମଜ୍ଞାନ ଶିକ୍ଷା କରି ଦକ୍ଷିଣା ସ୍ୱରୂପ ସହସ୍ରେ ଧେନୁ ଦାନ କରିଥିଲେ । ଅଜାତଶତ୍ରୁ ଜଣେ ଅସାଧାରଣ ପଣ୍ଡିତ ଥିଲେ । କେହି କେହି କହନ୍ତି, ଗାର୍ଗ୍ୟ ମଧ୍ୟ ଏହାଙ୍କଠାରୁ ଅନେକ ବିଷୟ ଶିକ୍ଷା କରିଥିଲେ ।

**ଅଜାମିଳ**—କାନ୍ୟକୁବ୍ଜ (ଆଧୁନିକ କନୌଜ)ର ଜଣେ ମହାପାପୀ ବ୍ରାହ୍ମଣ । ସେ ପ୍ରଥମେ ସାଧୁ, ଶାସ୍ତ୍ରବିତ୍ ଓ ଜିତେନ୍ଦ୍ରିୟ ଥିଲେ । ସର୍ବଦା ଗୁରୁ, ଅତିଥି, ଅଗ୍ନି ପ୍ରଭୃତିଙ୍କୁ ଯଥୋଚିତ ଆରାଧନା କରୁଥିଲେ । ପରେ କିନ୍ତୁ କୁମାର୍ଗଗାମୀ ହୋଇ ଦୁର୍ବୃତ୍ତ ହୋଇଉଠିଲେ । ଦାସୀ ଗର୍ଭରୁ ଏହାଙ୍କର ଦଶୋଟି ପୁତ୍ର ସନ୍ତାନ ଲାଭ ହୋଇଥିଲା । ସବା ସାନ ପୁଅର ନାମ ଥିଲା ନାରାୟଣ । ମୃତ୍ୟୁ ଯନ୍ତ୍ରଣାରେ ଛଟପଟ ହେଉଥିବା ବେଳେ ଅଜାମିଳ ଏଇ ନାରାୟଣଙ୍କୁ ଡାକି ଡାକି ପ୍ରାଣ ହରାଇଲେ । ଫଳତଃ ତାଙ୍କର ସ୍ୱର୍ଗଲାଭ ହେଲା ।

**ଅଜିତ**—ବ୍ରହ୍ମା ପ୍ରଥମତଃ ଜୟ ନାମରେ ବାର ଜଣ ଦେବତାଙ୍କୁ ସୃଷ୍ଟି କରିଥିଲେ । କିନ୍ତୁ ଏମାନେ ସର୍ବଦା ତପସ୍ୟା କରିବାରୁ ସୃଷ୍ଟି କାର୍ଯ୍ୟ ହୋଇପାରିଲା ନାହିଁ । ପ୍ରଜା ବୃଦ୍ଧି ନ ହେବାରୁ ବ୍ରହ୍ମା ଏମାନଙ୍କୁ ଶାପ ଦେଲେ । ଏହି ଶାପ ଯୋଗେ ଏମାନେ ସାତ ମନ୍ୱନ୍ତର ଯାଏ ଜନ୍ମଲାଭ କରିଥିଲେ । ଏମାନଙ୍କର ନାମ ହେଲା—ଅଜିତଗଣ, ତୁଷିତଗଣ, ସତ୍ୟଗଣ, ହରିଗଣ ଓ ଆଦିତ୍ୟଗଣ ।

**ଅଜୀଗର୍ତ୍ତ**—ଶୁନଃଶେଫ ଋଷିଙ୍କ ପିତା । ରାଜା ହରିଶ୍ଚନ୍ଦ୍ର ବରୁଣଙ୍କ ପାଖେ ବଳି ଦେବାପାଇଁ ଶୁନଃଶେଫଙ୍କୁ କିଣି ଆଣିଥିଲେ । ଏଥିପାଇଁ ଅଜୀଗର୍ତ୍ତଙ୍କୁ ସେ ଶହେଟି ଗାଈ ଦେଇଥିଲେ । ମାତ୍ର ଶୁନଃଶେଫ ବରୁଣଙ୍କୁ ସ୍ତୁତିରେ ସନ୍ତୁଷ୍ଟ କରି ରକ୍ଷା ପାଇଥିଲେ ।

**ଅଞ୍ଜନପର୍ବା**—ପାଣ୍ଡବପକ୍ଷୀୟ ଯୋଦ୍ଧା ।

**ଅଞ୍ଜନା**—ମହାବୀର ହନୁମାନଙ୍କ ମାତା । କେଶରୀବାନର ଏହାଙ୍କର ସ୍ୱାମୀ । ଅଞ୍ଜନା, ମହର୍ଷି ଗୌତମଙ୍କ ଔରସରେ ଅହଲ୍ୟାଙ୍କ ଗର୍ଭରୁ ଜାତ ହୋଇଥିଲେ । ମାତୃ ଅଭିଶାପବଶତଃ ବାନରୀ ହୋଇଯିବା କଥା ପୁରାଣ ସମ୍ମତ ।

**ଅଣିମାଣ୍ଡବ୍ୟ**—ଜଣେ ସତ୍ୟବାଦୀ, ଜିତେନ୍ଦ୍ରିୟ ତପସ୍ୱୀ । ମୌନାବଲମ୍ବନ ଏହାଙ୍କର ପ୍ରଧାନ ଗୁଣ ଥିଲା । ଏ ସର୍ବଦା ଯୋଗନିରତ ରହୁଥିଲେ । ଥରେ ଦଳେ ଚୋର ରାଜାଙ୍କ ନଗରରୁ ଅନେକ ପଦାର୍ଥ ଚୋରି କରି ନେଇ ଯିବାବେଳେ ଅସୁବିଧାବଶତଃ ମାଣ୍ଡବ୍ୟଙ୍କ ଆଶ୍ରମରେ ଫିଙ୍ଗି ଦେଇ ବାହାରିଗଲେ । ରାଜପୁରୁଷମାନେ ଚୋରି ମାଲ ମାଣ୍ଡବ୍ୟଙ୍କ ଆଶ୍ରମରେ ଦେଖି ତାଙ୍କୁ ଧରିନେଇ ରାଜାଦେଶ ଅନୁଯାୟୀ ଶୂଳରେ ବସାଇ ଦେଲେ । ମାଣ୍ଡବ୍ୟ କିନ୍ତୁ ଶୂଳ ପାଇ ନିଜ ତପୋବଳରେ ବହୁକାଳ ସେହି ଶୂଳରେ ବସି ରହିଲେ । ରାଜା ଏ ଆଶ୍ଚର୍ଯ୍ୟକର ସମ୍ବାଦ ପାଇ ସେଠାକୁ ଆସି ଦେଖିଲେ ପ୍ରକୃତରେ ମାଣ୍ଡବ୍ୟଙ୍କ ବ୍ରହ୍ମତେଜ ଓ ତପସ୍ୟା ତାଙ୍କୁ ଏତେ କାଳ ବଞ୍ଚାଇ ରଖିଛି । ସ୍ୱୀୟ ଦୁଷ୍କୃତ ଲାଗି କ୍ଷମା ଭିକ୍ଷା କରି ରାଜା ମାଣ୍ଡବ୍ୟଙ୍କୁ ଶୂଳ ଉପରୁ ବାହାରି ଆସିବାପାଇଁ ପ୍ରାର୍ଥନା କଲେ । ଋଷି କିନ୍ତୁ ଶୂଳରୁ ବାହାରି ପାରିଲେ ନାହିଁ । ଅଗତ୍ୟା ରାଜାଦେଶରେ ଶୂଳଟି କାଟି ଦିଆଗଲା । ମାଣ୍ଡବ୍ୟ ବାକିଅଂଶକୁ ବହନ କରି ତୀର୍ଥାଟନରେ ବୁଲିଲେ । ଅଣି ବା ଶୂଳାଗ୍ର ବହନ କରିଥିବାରୁ ତାଙ୍କର ନାମ ହେଲା ଅଣିମାଣ୍ଡବ୍ୟ । ମଲା ପରେ ସେ ଯମଙ୍କୁ ପଚାରିଲେ ମୋ ପ୍ରତି ଏ ଯେ କଠିନ ଦଣ୍ଡବିଧାନ କରାଗଲା, ଏହାର କାରଣ କ'ଣ ? ଯମରାଜ କହିଲେ, ଆପଣ ପିଲାଦିନେ ଖେଳୁଥିବା ଗୋଟିଏ ଝିଣ୍ଟିକାକୁ କଣ୍ଟା ଦେହରେ ଫୋଡ଼ି ଦେଇଥିବାରୁ ଏସବୁ ଦୁର୍ଘଟଣା ଘଟିଲା । ଋଷି କହିଲେ ତୁମେ ଧର୍ମରାଜ ଆଖ୍ୟା ଲାଭ କରି ଏ ସାମାନ୍ୟ ପାପ ଲାଗି ଯେ କଠୋର ଦଣ୍ଡବିଧାନ କଲ ସେଥିଲାଗି ତୁମକୁ ଶୂଦ୍ର ଯୋନିରେ ଦେହଧାରଣ କରିବାକୁ ହେବ । ଫଳତଃ ମୁନି ଶାପରେ ଯମ ବିଦୁର ହୋଇ ଜନ୍ମ ହୋଇଥିଲେ । (ମହାଭାରତ)

**ଅତନୁ**—କାମଦେବ, ମଦନ ।

**ଅତିକାୟ**—ଲଙ୍କାର ରାଜା ରାବଣଙ୍କ ପୁତ୍ର । ବ୍ରହ୍ମା ଏହାଙ୍କୁ ଗୋଟିଏ କବଚ ଦାନ କରିଥିଲେ । କବଚ ବଳରେ ଅତିକାୟ ଦେବତା ଓ ଅସୁରମାନଙ୍କୁ ଜିଣି ପାରିଥିଲେ । ରାମାୟଣ ଯୁଦ୍ଧରେ ଲକ୍ଷ୍ମଣ ଏହାଙ୍କୁ ବଧ କଲେ ।

(ରାମାୟଣ)

**ଅତିଧନ୍ୱା**—ଜଣେ ପ୍ରାଚୀନ ରାଜା, ସୁନାକ ରାଜାଙ୍କ ବଂଶଧର ।

**ଅତିନାଭ**—ହିରଣ୍ୟାକ୍ଷ ଅସୁରଙ୍କ ପୁତ୍ର

**ଅତିଥି**—ମହାରାଜ କୁଶଙ୍କ ପୁଅ । ରାମଚନ୍ଦ୍ରଙ୍କ ନାତି । କୁମୁଦ ନାମକ ନାଗଙ୍କ ଭଗିନୀ କୁମୁଦ୍ୱତୀ ଏହାଙ୍କର ମାତା । ଏହାଙ୍କର ଅନ୍ୟ ନାମ ସୁହୋତ୍ର ।

**ଅତ୍ରି**—ବ୍ରହ୍ମାଙ୍କ ମାନସ ପୁତ୍ର । ଅତ୍ରି ସପ୍ତର୍ଷିମାନଙ୍କ ମଧ୍ୟରେ ଅନ୍ୟତମ । କର୍ଦ୍ଦମ କନ୍ୟା ଅନସୂୟା ଏହାଙ୍କର ପତ୍ନୀ । ମହର୍ଷି ଦୁର୍ବାସା ଓ ଚନ୍ଦ୍ର ଏହାଙ୍କର ପୁତ୍ର । ରାମ ଓ ସୀତାଙ୍କ ବନବାସ ସମୟରେ ଏହି ଋଷି ଦମ୍ପତିଙ୍କ ଦ୍ୱାରା ଅଭିନନ୍ଦିତ ହୋଇଥିଲେ । ଅନେକ ଗୁଡ଼ିଏ ବୈଦିକମନ୍ତ୍ର, ସଂହିତା ଓ ସ୍ମୃତି ଅତ୍ରିଙ୍କ ଦ୍ୱାରା ରଚିତ ହୋଇଥିଲା । ମନୁ ସଂହିତାରୁ ଜଣାଯାଏ ଯେ ମନୁଷ୍ୟଙ୍କଠାରୁ ଯେଉଁ ଦଶ ପ୍ରଜାପତି ଜାତ ହୋଇଥିଲେ ତନ୍ମଧ୍ୟରେ ଅତ୍ରି ଅନ୍ୟତମ । ଏଇ ଅତ୍ରିଙ୍କ ନେତ୍ରରୁ ଚନ୍ଦ୍ରଙ୍କର ଉତ୍ପତ୍ତି—

ନେତ୍ରାଭ୍ୟାଂ ବାରି ସୁସ୍ରାବ ଦଶଧାଦ୍ୟୋତୟନ୍ଦିଶଃ ।
ପପାତ ଭୂପସ୍ତନ୍ ଲୋକାନ୍ ଶୀତାଂଶୁଃ ସର୍ବଭାବନଃ ॥ (ହରିବଂଶ)

**ଅଥର୍ବ, ଅଥର୍ବା**—ବ୍ରହ୍ମାଙ୍କର ଜ୍ୟେଷ୍ଠ ପୁତ୍ର । ଏହାଙ୍କ ସ୍ତ୍ରୀ ଶାନ୍ତି ଓ ଚିତ୍ତି । ପ୍ରଥମେ ପିତାଙ୍କଠାରୁ ବ୍ରହ୍ମବିଦ୍ୟା ଶିକ୍ଷା କରି ଅଗ୍ନି ସୃଷ୍ଟିପୂର୍ବକ ଅଥର୍ବ ବେଦର ରଚନା କରିଥିଲେ । ଯଜ୍ଞାଦି ପ୍ରତ୍ୟକ୍ଷ ଫଳପ୍ରଦ କର୍ମକାଣ୍ଡ ଏହାଙ୍କ ଦ୍ୱାରା ପ୍ରଚଳିତ ହୋଇଥିଲା । ପ୍ରଥମେ ବେଦର ମନ୍ତ୍ରଗୁଡ଼ିକ ପଦ୍ୟ, ଗଦ୍ୟ ଓ ଗୀତମୟ ଥିଲା । ସେତେବେଳେ ଏକ ବୈଦିକ ମନ୍ତ୍ରଗୁଡ଼ିକୁ ତ୍ରୟୀ ନାମରେ ଅଭିହିତ କରାଯାଉଥିଲା । ମହର୍ଷି ଅଥର୍ବ କିନ୍ତୁ ସେଥିରୁ ଐହିକ ପ୍ରତ୍ୟକ୍ଷ ଫଳପ୍ରଦ ଯାଗଯଜ୍ଞ ଓ ଶତ୍ରୁ ମାରଣାଦି ଉପଯୋଗୀ ପ୍ରକରଣଗୁଡ଼ିକ ଏକତ୍ର କରି ନିଜ ନାମରେ ସଂକଳନ କଲେ । ତାର ନାମ ହେଲା ଅଥର୍ବ ବେଦ । ସେହିଦିନଠାରୁ ବେଦ ଦୁଇଭାଗରେ ବିଭକ୍ତ ହେଲା—ତ୍ରୟୀ ଓ ଅଥର୍ବ । ପରେ ମହର୍ଷି କୃଷ୍ଣଦ୍ୱୈପାୟନ ଏହି ତ୍ରୟୀଗୁଡ଼ିକୁ ଋକ୍, ଯଜୁଃ ଓ ସାମ ତିନି ଭାଗରେ ବିଭକ୍ତ କରିଦେଲେ । ସେହିଦିନଠାରୁ ବେଦ ଚାରି ଭାଗରେ ବିଭକ୍ତ ହୋଇଅଛି—ଋକ୍, ଯଜୁଃ, ସାମ ଓ ଅଥର୍ବ ।

**ଅଦନ୍ତ**—ଦ୍ୱାଦଶ ଆଦିତ୍ୟ ମଧ୍ୟରୁ ଏକତମ । ବୀରଭଦ୍ର ଯେତେବେଳେ ଦକ୍ଷ ଯଜ୍ଞ ଧ୍ୱଂସ କଲେ ସେତେବେଳେ ସେହି ଯୁଦ୍ଧ ଓ କଳହରେ ଏହାଙ୍କର ସବୁ ଦାନ୍ତ ଭାଙ୍ଗି ଯାଇଥିଲା । ସେହିଦିନଠାରୁ ପୂଷା ନାମକ ଆଦିତ୍ୟଙ୍କର ନାମ ହେଲା ଅଦନ୍ତ ।

**ଅଦିତି**—ଦକ୍ଷ ପ୍ରଜାପତିଙ୍କ କନ୍ୟା । ମହର୍ଷି କଶ୍ୟପ ଏହାଙ୍କ ସ୍ୱାମୀ । ଇନ୍ଦ୍ରାଦି ଦେବତାମାନେ ଏହାଙ୍କ ଗର୍ଭରୁ ଜନ୍ମିଥିଲେ । ନାରକାସୁର ବଧ ପରେ ଶ୍ରୀକୃଷ୍ଣ ଯେ କୁଣ୍ଡଳ ପାଇଥିଲେ ତାହା ଅଦିତିଙ୍କୁ ମିଳିଥିଲା । ପାରିଜାତ ହରଣରେ ଶ୍ରୀକୃଷ୍ଣ ଓ ଇନ୍ଦ୍ରଙ୍କ ଯୁଦ୍ଧ ବେଳେ ଏଇ ଅଦିତି ଉଭୟଙ୍କୁ ମିଳାମିଶା କରି ଦେଇଥିଲେ ।

**ଅଦୃଶ୍ୟନ୍ତୀ**—ମହର୍ଷି ବଶିଷ୍ଠଙ୍କ ପୁତ୍ରବଧୂ । ଶକ୍ତି ମୁନିଙ୍କ ପତ୍ନୀ, ପରାଶରଙ୍କ ମାତା ।

**ଅଦ୍ର**—ପୃଥୁରାଜଙ୍କ ନାତି ।

**ଅଦ୍ରିକା**—ଅପ୍ସରା ବିଶେଷ । ବ୍ରହ୍ମାଙ୍କ ଶାପରେ ସେ ଯମୁନାରେ ମତ୍ସ୍ୟରୂପ ଧରିଥିଲେ । (ମହାଭାରତ)

**ଅଧର୍ମ**—ଏହାଙ୍କର ଉତ୍ପତ୍ତି ବ୍ରହ୍ମାଙ୍କର ପୃଷ୍ଠଭାଗ । ବ୍ରହ୍ମାଙ୍କ ବାମଭାଗରୁ ଅଲକ୍ଷ୍ମୀ ଜାତ ହେବା ପରେ ଅଧର୍ମ ଏହାଙ୍କୁ ବିବାହ କରିଥିଲେ ।(ବ୍ରହ୍ମବୈବର୍ତ୍ତ)

**ଅଧିରଥ**—ଅଙ୍ଗଦେଶବାସୀ କ୍ଷତ୍ରିୟ, ସତ୍ୟଧର୍ମଙ୍କ ପୁଅ । କ୍ଷତ୍ରିୟ ହେଲେ ହେଁ ସେ ସାରଥି କାର୍ଯ୍ୟ କରି ଜୀବିକା ନିର୍ବାହ କରୁଥିଲେ । ରାଧା ଏହାଙ୍କର ପତ୍ନୀ । ଦିନେ ନଦୀକୂଳରେ ପତ୍ନୀଙ୍କ ସହିତ ଭ୍ରମଣ କରୁ କରୁ ସେ ଗୋଟିଏ କାଠ ସିନ୍ଦୁକ ଜଳ ସ୍ରୋତରେ ଭାସି ଆସୁଥିବାର ଦେଖିଲେ । ରାଧାଙ୍କ ପରାମର୍ଶ ମତେ ଅଧିରଥ ତାହା ଟେକି ଆଣିଲେ । ସିନ୍ଦୁକ ଫିଟାଇ ଦେଖିଲେ ତା ଭିତରେ ଗୋଟିଏ ମାନବ ଶିଶୁ । ଶିଶୁର ଦେହରେ ନାନାବିଧ ସୁଲକ୍ଷଣ ଦେଖି ଉଭୟେ ତାହାକୁ ପୁତ୍ର ନିର୍ବିଶେଷରେ ପାଳନ କରିଥିଲେ । ଏହି ଶିଶୁର ନାମ ବସୁଷେଣ । ପରେ ଏହାଙ୍କର ନାମ ହେଲା କର୍ଣ୍ଣ । ଏହି କର୍ଣ୍ଣ ଅଙ୍ଗ ରାଜ୍ୟର ଅଧିପତି ହୋଇ ମହାଦାନୀରୂପେ ଆଜି ଜଗତ୍‌ପୂଜ୍ୟ । (ମହାଭାରତ)

**ଅନଂଶା**—ବ୍ରଜରାଜ ନନ୍ଦଙ୍କ ଔରସରେ ଯଶୋଦାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଥିଲେ । ଜ୍ୟେଷ୍ଠା ଭଗିନୀ ବୋଲି ଶ୍ରୀକୃଷ୍ଣ ଏହାଙ୍କୁ ଅଧିକ ଆଦର କରୁଥିଲେ ।

**ଅନଘ**—ମହର୍ଷି ବଶିଷ୍ଠଙ୍କ ପୁତ୍ର । ଊର୍ଜ୍ଜା ଏହାଙ୍କର ମାଆ ।

**ଅନଙ୍ଗ**—କାମଦେବ । ତାରକାସୁର ଅତ୍ୟାଚାରରେ ଦେବତାମାନେ ବ୍ୟସ୍ତ ହୋଇ ବ୍ରହ୍ମାଙ୍କୁ ଜଣାଇବାରୁ ବ୍ରହ୍ମା କହିଲେ, କାର୍ତ୍ତିକେୟ ମହାଦେବଙ୍କ ଔରସରେ ଜାତ ହେଲେ ଦେବ ସେନାପତି ରୂପେ ଏହି ଦୁଷ୍ଟ ରାକ୍ଷସକୁ ବଧ କରି ପାରିବେ । ଦେବତାମାନେ ଏହା ଜାଣିପାରି ମହାଦେବଙ୍କୁ ସୃଷ୍ଟି କାର୍ଯ୍ୟରେ ପ୍ରବର୍ତ୍ତାଇବା ପାଇଁ କନ୍ଦର୍ପଙ୍କ ସହିତ ହିମାଳୟକୁ ଗଲେ । ମହାଦେବ ସେତେବେଳେ ଯୋଗମଗ୍ନ ଥିଲେ । ପାର୍ବତୀଙ୍କୁ ଶିବଙ୍କ ସମ୍ମୁଖରେ ରଖି କନ୍ଦର୍ପ ପୁଷ୍ପ ଧନୁ ଆମୁଞ୍ଚନ କରିଦେଲେ । ହଠାତ୍ ମହାଦେବ ଚଞ୍ଚଳମନା ହୋଇ ଆଖି ଫିଟାଇ ଦେଖିଲେ, ଆଗରେ କନ୍ଦର୍ପ । କ୍ରୁଦ୍ଧ ମହାଦେବଙ୍କ ନୟନରୁ ଅଗ୍ନିକଣା ନିର୍ଗତ ହୋଇ କନ୍ଦର୍ପଙ୍କୁ ଭସ୍ମ କରିଦେଲା ।

ଶାପାନ୍ତେ ମଦନ ଦଗ୍ଧ ଶରୀର ଧାରଣ କରିବାରୁ ଏହାଙ୍କର ନାମ ହେଲା ଅନଙ୍ଗ । ଏହି ଅନଙ୍ଗ ପ୍ରଦ୍ୟୁମ୍ନରୂପେ ଓ ରତି ମାୟାବତୀରୂପେ ଯଥାକ୍ରମେ ଶ୍ରୀକୃଷ୍ଣଙ୍କ ପୁତ୍ର ଓ ପୁତ୍ରବଧୂ ହୋଇଥିଲେ ।

**ଅନନ୍ତ**—ନାଗରାଜ । ଏହାଙ୍କର ଅପର ନାମ—ଶେଷ, ବାସୁକୀ, ଗୋନସ । ମହାମୁନି କଶ୍ୟପ ଏହାଙ୍କର ପିତା, ଦକ୍ଷ ନନ୍ଦନୀ କଦ୍ରୁ ମାତା । ଶେଷ ମାତାଙ୍କୁ ପରିତ୍ୟାଗ କରି ବାୟୁ ଭକ୍ଷ ବ୍ରତ ଅବଲମ୍ବନ କରିଥିଲେ । ସେ ଜଟା ବଲ୍‌କଲ ଧାରଣ କରି ଜିତେନ୍ଦ୍ରିୟ ହୋଇ ଗନ୍ଧମାର୍ଦନ, ବଦରିକାଶ୍ରମ ଓ ଗୋକର୍ଣ୍ଣ ପ୍ରଭୃତି ପୁଣ୍ୟ ତୀର୍ଥ ପର୍ଯ୍ୟଟନ ପୂର୍ବକ ଅତି କଠୋର ତପସ୍ୟାଚରଣ କରିଥିଲେ । ବ୍ରହ୍ମା ତାଙ୍କର ଏ ତପସ୍ୟାରେ ସନ୍ତୁଷ୍ଟ ହୋଇ ଅଭୟ ଦେଲେ । ପୁଣି ଅନୁରୋଧ କଲେ ଯେ, 'ଧରଣୀ ମଣ୍ଡଳ ତୁମେ ମସ୍ତକରେ ବହନ କଲେ ତାହା ଆଉ ବିଚଳିତ ହେବ ନାହିଁ ।' ସେହି ଦିନଠାରୁ ଅନନ୍ତ ପାତାଳ ପୁରରେ ରହି ପୃଥିବୀ ବହନ କରିଛନ୍ତି । ବ୍ରହ୍ମାଙ୍କ ଅନୁଗ୍ରହରୁ ନାଗାରି ଗରୁଡ଼ ତାଙ୍କର ପରମବନ୍ଧୁ ହୋଇଛନ୍ତି ।

(ହରିବଂଶ)

**ଅନଳ**—ଅଗ୍ନିଦେବଙ୍କର ଅନ୍ୟ ନାମ । ପରାକ୍ରମଶାଳୀ ହୋଇଥିବାରୁ ଅଗ୍ନି ବସୁମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । (ବିଷ୍ଣୁପୁରାଣ)

ପଦ୍ମ ପୁରାଣରୁ ପ୍ରମାଣ ମିଳେ, ଯେ ସମସ୍ତ ଦେବତାଙ୍କ ତେଜୋବଳରେ ସର୍ବଦିଗ୍‌ବ୍ୟାପୀ ତାଙ୍କୁ ବସୁ ସଙ୍ଘରେ ଅଭିହିତ କରାଯାଏ ।

**ଅନଳସେନ**—ଯକ୍ଷମାନଙ୍କର ରାଜା । ଏହାଙ୍କ କନ୍ୟା ବୃଦ୍ଧିକାଙ୍କୁ ଶନି ବିବାହ କରିଥିଲେ ।

**ଅନରଣ୍ୟ**—ଅଯୋଧ୍ୟାର ସୂର୍ଯ୍ୟବଂଶୀୟ ରାଜା । ଲଙ୍କାରାଜ ରାବଣ ଦିଗ୍‌ବିଜୟ ସମୟରେ ଏହାଙ୍କୁ ମାୟା ଯୁଦ୍ଧରେ ବଧ କରିବାରୁ ଅନରଣ୍ୟ ଅଭିଶାପ ଦେଲେ ଯେ ତୁମେ ମୋ ବଂଶଧରଙ୍କ ଦ୍ୱାରା ପ୍ରାଣତ୍ୟାଗ କରିବ, ପରିଣାମରେ ତାହାହିଁ ହେଲା । ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଶରାଘାତରେ ରାବଣ ସବଂଶରେ ପ୍ରାଣତ୍ୟାଗ କରିଥିଲେ । (ରାମାୟଣ)

**ଅନସୂୟା**—ଅତ୍ରି ମହର୍ଷିଙ୍କ ପତ୍ନୀ । ପିତା ଦକ୍ଷ ପ୍ରଜାପତି, ମାତା ପ୍ରସୂତି । ଏହାଙ୍କର ଅତିମାନୁଷ ଧର୍ମଶକ୍ତି ପୁରାଣର ପଦେ ପଦେ ବର୍ଣ୍ଣିତ କରାଯାଇଛି ।

ବନବାସ ସମୟରେ ସୀତାଙ୍କୁ ଅମଳାନ ବସ୍ତ୍ର, ଅଙ୍ଗରାଗ ଇତ୍ୟାଦି ଦେବା କଥା ରାମାୟଣରୁ ଜଣା ପଡ଼େ ।

( ରାମାୟଣ ଓ ୬ ରାମଚନ୍ଦ୍ର ଆଚାର୍ଯ୍ୟ ପ୍ରଣୀତ ଅନସୂୟା )

**ଅନିରୁଦ୍ଧ**—ପ୍ରଦ୍ୟୁମ୍ନ କୁମାର ଶ୍ରୀକୃଷ୍ଣଙ୍କ ନାତି । ଦୈତ୍ୟପତି ବାଣଙ୍କ କନ୍ୟା ଉଷା ଏହାଙ୍କୁ ବିବାହ କରିଥିଲେ । ପାର୍ବତୀଙ୍କ ବର ପ୍ରଭାବରୁ ଉଷା ଅନିରୁଦ୍ଧଙ୍କୁ ସ୍ୱପ୍ନରେ ଦେଖି ବିଚଳିତା ହୋଇ ପଡ଼ିଲେ । ପରିଶେଷରେ ସଖି ଚିତ୍ରଲେଖା ଦ୍ୱାରକା ଯାଇ ନାରଦଙ୍କ ପ୍ରଦତ୍ତ ତାମସୀ ବିଦ୍ୟା ପ୍ରଭାବରେ ସମସ୍ତଙ୍କୁ ମୋହାଚ୍ଛନ୍ନ କରି ଅନିରୁଦ୍ଧଙ୍କୁ ନେଇ ଆସିଲେ । ଗାନ୍ଧର୍ବ ବିଧିରେ ଉଷା ଓ ଅନିରୁଦ୍ଧଙ୍କର ବିବାହ ହୋଇଗଲା । ଅସୁର ଅଧିପତି ଏହା ଜାଣିପାରି ଅନିରୁଦ୍ଧଙ୍କୁ ବନ୍ଦୀ କରିବା ଅଭିପ୍ରାୟରେ ସୈନ୍ୟ ପ୍ରେରଣ କଲେ । ମହାବୀର ଅନିରୁଦ୍ଧ ଯୁଦ୍ଧରେ ଏମାନଙ୍କୁ ପରାସ୍ତ ଓ ନିହତ କରିବାରୁ ବାଣ କ୍ରୋଧ-ପରବଶ ହୋଇ ଅନିରୁଦ୍ଧଙ୍କୁ ଆକ୍ରମଣ କଲେ । ଅନିରୁଦ୍ଧ ବୀରୋଚିତ ଧୈର୍ଯ୍ୟ ସହକାରେ ଦୈତ୍ୟରାଜଙ୍କ ସମ୍ମୁଖୀନ ହେଲେ । ପରିଶେଷରେ କିନ୍ତୁ ମାୟା ଯୁଦ୍ଧରେ ପରାଭବ ସ୍ୱୀକାର କଲେ । ଅନିରୁଦ୍ଧଙ୍କର ଏ ଦୁଃସମ୍ବାଦ ଦ୍ୱାରକାରେ ପ୍ରଚାରିତ ହୁଅନ୍ତେ ଶ୍ରୀକୃଷ୍ଣ ଓ ବଳରାମ ଯଦୁସେନା ପରିବୃତ ହୋଇ ବାଣ ରାଜଧାନୀ ଶୋଣିତ ନଗରୀ ଆଡ଼କୁ ଧାବମାନ ହେଲେ । ଘୋର ଯୁଦ୍ଧରେ ବାଣ ପରାଭୂତ ହୋଇ ଶ୍ରୀକୃଷ୍ଣଙ୍କ ଶରଣପ୍ରାର୍ଥୀ ହେଲେ । ଉଷା ଓ ଅନିରୁଦ୍ଧଙ୍କ ପରିଣୟ କ୍ରିୟା ମହାସମାରୋହରେ ସମାହିତ ହେଲା ।

ରୋଚନା ନାମ୍ନୀ ଅନ୍ୟ ସ୍ତ୍ରୀ ଗର୍ଭରୁ ଅନିରୁଦ୍ଧଙ୍କ ଔରସରେ ବଜ୍ର ନାମକ ପୁତ୍ର ଜାତ ହୋଇଥିଲେ । (ହରିବଂଶ, ଭାଗବତ)

**ଅନିଳ**—ପବନ ଦେବତା ।

**ଅନିଳକ**—ବିଷ୍ଣୁଭଦ୍ର ବଂଶୀୟ ରାଜା । ବିଶ୍ୱାମିତ୍ର ଋଷି ଏହାଙ୍କର ବଂଶଧର ।

**ଅନୁମତି**—ଅଙ୍ଗିରା ମହର୍ଷିଙ୍କର କନ୍ୟା । ଏହାଙ୍କ ମାତାଙ୍କ ନାମ ସ୍ମୃତି ।

(ବିଷ୍ଣୁପୁରାଣ)

**ଅନୁଶାଲ୍ୱ**—ଜନୈକ ଦୈତ୍ୟ ବଂଶଧର । ଶ୍ରୀକୃଷ୍ଣଙ୍କ ପ୍ରତି ଏହାଙ୍କର ପ୍ରବଳ ବିଦ୍ୱେଷ ଥିଲା । ଏଇ ଅସାଧାରଣ ବଳଶାଳୀ ଅସୁରକୁ ଶ୍ରୀକୃଷ୍ଣ ସୁଦ୍ଧା ଭୟ କରୁଥିଲେ । ଦିନେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ସହିତ ହସ୍ତିନାରେ ଅବସ୍ଥାନ କରୁଥିବାବେଳେ ଅନୁଶାଲ୍ୱ ହଠାତ୍ ହସ୍ତିନା ଅବରୋଧ କଲେ । ଭୀମାର୍ଜୁନ

ଏହା ସହିତ ଯୁଦ୍ଧ କରି ପରାସ୍ତ ହେଲେ । ପରିଶେଷରେ କର୍ଣ୍ଣ—ନନ୍ଦନଙ୍କ ବୃଷକେତୁ ଅନୁଶାଲ୍ୱଙ୍କୁ ପରାସ୍ତ କରି ବନ୍ଦୀଭାବରେ ଶ୍ରୀକୃଷ୍ଣଙ୍କ ସମୀପକୁ ଆନୟନ କଲେ । କୃଷ୍ଣଙ୍କ ଉପଦେଶ କ୍ରମେ ଅନୁଶାଲ୍ୱ ଅସୁର ପ୍ରକୃତି ଛାଡ଼ି ତପସ୍ୟା କରିବାପାଇଁ ବନ ଗମନ କଲେ । (ମହାଭାରତ ଓ ଜୈମିନିଭାରତ)

**ଅନୁହ୍ଲ**—ବିଭ୍ରାଜଙ୍କ ପୁତ୍ର । ବ୍ୟାସଦେବଙ୍କ ନାତୁଣୀ ଶୁକଦେବଙ୍କ କନ୍ୟା କୃତି ଏହାଙ୍କର ପତ୍ନୀ । ବ୍ରହ୍ମଦତ୍ତ ଏଇ ଦମ୍ପତିର ଏକମାତ୍ର ସନ୍ତାନ । (ବିଷ୍ଣୁପୁରାଣ)

**ଅନ୍ତରୀକ୍ଷ**—ଦ୍ୱାପର ଯୁଗର ବୈବସ୍ୱତ ମନ୍ୱନ୍ତରରେ ଯେଉଁମାନେ ବେଦ ବିଭାଗ କରିଥିଲେ, ସେମାନଙ୍କୁ ବ୍ୟାସ ବୋଲି କହନ୍ତି । ଅନ୍ତରୀକ୍ଷ ତନ୍ମଧ୍ୟରେ ଜଣେ । ଏହାଙ୍କୁ ତ୍ରୟୋଦଶ ବ୍ୟାସ ବୋଲାଯାଏ । ବ୍ୟାସ ୨୮ ସଂଖ୍ୟକ—ସ୍ୱୟମ୍ଭୂ, ପ୍ରଜାପତି, ଉଶନା, ବୃହସ୍ପତି, ସବିତା, ମୃତ୍ୟୁ, ଇନ୍ଦ୍ର, ବଶିଷ୍ଠ, ସାରସ୍ୱତ, ତ୍ରିଧାମା, ତ୍ରିବୃଷା, ଭରଦ୍ୱାଜ, ବପ୍ର, ଏଷ୍ୟାରୁଣି, ଧନଞ୍ଜୟ, କୃତଞ୍ଜୟ, ଋଣ, ଭରଦ୍ୱାଜ, ଗୌତମ, ଉତ୍ତମ, ବେଣ (ରାଜଶ୍ରବା), ତୃଣବିନ୍ଦୁ, ଋକ୍ଷ ବା ବାଲ୍ମୀକି, ଶକ୍ତି, ପରାଶର, ଜରତ୍କାରୁ, କୃଷ୍ଣ ଦ୍ୱୈପାୟନ ।

(ବିଷ୍ଣୁ, ବାୟୁ ଓ କୂର୍ମପୁରାଣ)

**ଅନ୍ତକ**—ଯମଦେବତା । ଏ ମୃତ୍ୟୁଲୋକର ଅଧିକାରୀ; ଛାୟା ଏହାଙ୍କର ମାତା ଓ ସୂର୍ଯ୍ୟ ପିତା । ମାତୃ ଅଭିଶାପରେ ଏହାଙ୍କର ବାତରୋଗ ହୋଇଥିବାର ପୁରାଣରୁ ପ୍ରମାଣ ମିଳେ ।

**ଅନ୍ଧ**—ଅଯୋଧ୍ୟାର ସରଯୂତୀରବାସୀ ବୈଶ୍ୟ ମୁନିଙ୍କର ନାମ । ଶୂଦ୍ର କନ୍ୟାର ପାଣିପୀଡ଼ନ କରି ସେ ତପସ୍ୟା ରତ ଥିଲେ । ଅନ୍ଧ ଋଷି ପ୍ରକୃତରେ ଅନ୍ଧ ଓ ତାଙ୍କ ପତ୍ନୀ ଅନ୍ଧୁଣୀ ଥିଲେ । ଏ ଦମ୍ପତିର ଏକମାତ୍ର ପୁତ୍ର ହିଁ ସମ୍ବଳ ଥିଲା । ଥରେ ରାଜା ଦଶରଥ ମୃଗୟା ଉଦ୍ଦେଶ୍ୟରେ ବନକୁ ଯାଇଥିଲେ । ଅନ୍ତରାଳରୁ ଏଇ ଋଷିକୁମାର କୁମ୍ଭରେ ଜଳ ପୂରଣ କରୁଥିବାବେଳେ ସେ ତାଙ୍କୁ ହସ୍ତୀ ଭ୍ରମରେ ଶବ୍ଦଭେଦୀ ବାଣ ନିକ୍ଷେପକରି ବଧ କଲେ । ଅନ୍ଧମୁନି ବାଣବିଦ୍ଧ ପୁତ୍ରକୁ ଧରି ସ୍ତ୍ରୀ ସହିତ ବହୁତ କାନ୍ଦିଲେ । ପରେ ନିଆଁ ଜାଳି ପତ୍ନୀ ଓ ପୁତ୍ର ସହିତ ଚିତାରୋହଣ କରିବା ପୂର୍ବରୁ ଦଶରଥଙ୍କୁ ଶାପ ଦେଲେ, ମୋ ପରି ତୁମେ ପୁତ୍ର ଶୋକରେ ହିଁ ପ୍ରାଣତ୍ୟାଗ କରିବ । ସେହି କାରଣରୁ ଦଶରଥ ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନାଦି ଚାରି ପୁତ୍ରର ପିତା ହୋଇଥିଲେ ମଧ୍ୟ ଅନ୍ତିମ ସମୟରେ କୌଣସି ପୁତ୍ରର ମୁଖାବଲୋକନ କରି ପାରିଲେ ନାହିଁ ।

(ରାମାୟଣ)

**ଅନ୍ଧକ**—ଦେବତାମାନଙ୍କ ଦ୍ୱାରା ଦଇତଙ୍କର ପୁତ୍ରଗୁଡ଼ିକ ମୃତ ହୋଇଯିବାରୁ ଦିତି, ସ୍ୱାମୀ କଶ୍ୟପଙ୍କୁ ଦେବ ଅବଧ ଗୋଟିଏ ପୁତ୍ର ଦାନ କରିବା ପାଇଁ ଭିକ୍ଷା କଲେ । କଶ୍ୟପ ପତ୍ନୀଙ୍କ ଅଭିଳାଷ ପୂର୍ଣ୍ଣ କରିବା ପାଇଁ ତାଙ୍କୁ ଆଲିଙ୍ଗନ କଲେ । ତାଙ୍କର ଅଙ୍ଗୁଳି ଗର୍ଭରୁ ହଠାତ୍ ଏକ ପୁତ୍ର ଜାତ ହେଲା । ତାର ନାମ ଅନ୍ଧକ । ଫଳତଃ ଦିତି ମାତା ଓ କଶ୍ୟପ ଏହାଙ୍କର ପିତା । ପୁତ୍ର ଅନ୍ଧ ନ ଥିଲେ ମଧ୍ୟ ଅନ୍ଧ ଭଳି ଯିବା ଆସିବାକୁ ଭଲ ପାଉଥିବାରୁ ସମସ୍ତେ ତାଙ୍କୁ ଅନ୍ଧକ ବୋଲି କହୁଥିଲେ । ଏଇ ଅନ୍ଧକ ସହସ୍ର ବାହୁ, ସହସ୍ର ଶୀର୍ଷ ଓ ଦୁଇ ସହସ୍ର ପଦବିଶିଷ୍ଟ ଥିଲେ । କାଳକ୍ରମେ ଏଇ ଦୁର୍ଦ୍ଦାନ୍ତ ରାକ୍ଷସର ଅତ୍ୟାଚାରରେ ତ୍ରିଲୋକ ଥରହର ହୋଇପଡ଼ିଲା । ଦେବତାମାନଙ୍କ ପ୍ରାର୍ଥନାରେ ମହାଦେବ ମନ୍ଦର ପର୍ବତକୁ ଯାଇ ଅନ୍ଧକକୁ ବଧ କଲେ । ସେହି ଦିନଠାରୁ ମହାଦେବଙ୍କର ଅନ୍ୟ ନାମ ଅନ୍ଧକାରି ବା ଅନ୍ଧକାନ୍ତକ ହୋଇଛି । (ହରିବଂଶ)

(୨) ଉତ୍କଳ ବ୍ୟାସ ଶାରଳାଦାସ ତାଙ୍କର ଚଣ୍ଡୀପୁରାଣରେ ଆଉ ଜଣେ ଅନ୍ଧକଙ୍କ ନାମ ଦର୍ଶାଇଛନ୍ତି । ଏଇ ଅନ୍ଧକ ମହିଷାସୁରଙ୍କ ମନ୍ତ୍ରୀ ଥିଲେ । ସେ ଜନ୍ମାନ୍ଧ କିନ୍ତୁ ତପସ୍ୟା ବଳରେ ତ୍ରିକାଳର କଥା ଜାଣି ପାରୁଥିଲେ ।

(୩) ଯଦୁବଂଶାବତଂସ ସାତ୍ତ୍ୱତଙ୍କର ସାତୋଟି ପୁତ୍ର ଥିଲେ । ତନ୍ମଧ୍ୟରେ ଜଣକର ନାମ ଅନ୍ଧକ ବୋଲି ପ୍ରମାଣ ମିଳେ ।

**ଅନ୍ନପୂର୍ଣ୍ଣା**—ପାର୍ବତୀଙ୍କର ଅବତାର ବିଶେଷ । କାଶୀରେ ଏ ମୂର୍ତ୍ତି ପ୍ରତିଷ୍ଠିତ । ଦିନେ ମହାଦେବ ପାର୍ବତୀଙ୍କ ସହିତ କଳହ କରି ଭିକ୍ଷାର୍ଥ ଭିକ୍ଷାପାତ୍ର ଧରି ତ୍ରିଲୋକ ଭ୍ରମଣ କଲେ । ଏଣେ ଭଗବତୀ ମାୟା ପ୍ରକାଶ କରି ଅନ୍ନପୂର୍ଣ୍ଣା ମୂର୍ତ୍ତି ଧାରଣପୂର୍ବକ କାଶୀରେ ବର୍ଣ୍ଣ, ଧର୍ମ, ଜାତି ନିର୍ବିଶେଷରେ ଅନ୍ନଦାନ କରିବାକୁ ଲାଗିଲେ । ଅକସ୍ମାତ୍ ମହାଦେବ ଅନ୍ନପୂର୍ଣ୍ଣାଙ୍କ ସମୀପରେ ଉପସ୍ଥିତ ହୋଇ ଅନ୍ନ ଭିକ୍ଷା ଗ୍ରହଣ କଲେ । ଦୁର୍ଗାଙ୍କର ଏଇ ଅନ୍ନପୂର୍ଣ୍ଣା ମୂର୍ତ୍ତି ବହୁ ସହସ୍ର ବର୍ଷ ହେଲା କାଶୀରେ ପ୍ରତିଷ୍ଠା କରାଯାଇଛି । ଅନ୍ନପୂର୍ଣ୍ଣା ପଦ୍ମାସନରେ ଉପବିଷ୍ଟା, ବାମ ହସ୍ତରେ ଅନ୍ନ ବ୍ୟଞ୍ଜନାଦିର ଥାଳି, ଦକ୍ଷିଣ ହସ୍ତରେ ଦର୍ବି, ସମ୍ମୁଖରେ ଭିକ୍ଷାର୍ଥୀ ପଞ୍ଚାନନ ଶିବ ଦଣ୍ଡାୟମାନ । ପ୍ରବାଦ ଅଛି କାଶୀରେ ଅନ୍ନପୂର୍ଣ୍ଣାଙ୍କ ଅନୁଗ୍ରହରୁ କେହି ଉପବାସ ରହନ୍ତି ନାହିଁ ।

**ଅପରାଜିତ**—ଏକାଦଶ ରୁଦ୍ର ମଧ୍ୟରେ ଅନ୍ୟତମ ।

**ଅପର୍ଣ୍ଣା**—ପାର୍ବତୀ; ଶିବଙ୍କୁ ସ୍ୱାମୀରୂପେ ପାଇବା ପାଇଁ ପାର୍ବତୀ ହିମାଳୟରେ କଠୋର ତପସ୍ୟା କରିଥିଲେ । ଏହି ତପସ୍ୟାରେ ସେ ପର୍ଣ୍ଣ ବା ପତ୍ର ସୁଦ୍ଧା ଆହାର କଲେ ନାହିଁ । ସେହିକାରଣରୁ ତାଙ୍କ ନାମ ଅପର୍ଣ୍ଣା ଦିଆଯାଇଥିଲା ।

**ଅପ୍ସରା**—ସ୍ୱର୍ଗର ବେଶ୍ୟା । ଏମାନେ ଇନ୍ଦ୍ରଙ୍କ ରାଜସଭା ସୁଧର୍ମାରେ ଗୀତ ଗାଇ ନାଚନ୍ତି । ଗନ୍ଧର୍ବମାନେ ଏମାନଙ୍କର ସ୍ୱାମୀ, କୌଣସି ଲୋକ ଇନ୍ଦ୍ରପଦ ପ୍ରାପ୍ତି ଲାଳସାରେ ତପସ୍ୟା କଲେ ତପସ୍ୟା ଭଙ୍ଗ କରିବା ପାଇଁ ଇନ୍ଦ୍ର ଏମାନଙ୍କୁ ପଠାନ୍ତି । ଏମାନେ ଅତି ସୁନ୍ଦରୀ ଓ ନୃତ୍ୟଶୀଳା । ଇଚ୍ଛା କଲେ ନିଜର ରୂପ ମଧ୍ୟ ବଦଳାଇ ପାରନ୍ତି । ଏ ସମସ୍ତେ ସମୁଦ୍ର ମନ୍ଥନରୁ ଉଦ୍ଭୂତ । ଏମାନଙ୍କ ମଧ୍ୟରେ ଉର୍ବଶୀ, ମେନକା, ରମ୍ଭା, ମିଶ୍ରକେଶୀ, ତିଲୋତ୍ତମା, ସୁକେଶୀ, ବିଶ୍ୱାଚୀ, ବିଦ୍ୟୁତ୍‌ପର୍ଣ୍ଣା, ପୁଣ୍ଡରୀକା, ସୁବାହୁ, ଘୃତାଚୀ, ସୁରଥା, ପ୍ରମାଥିନୀ, ରୁଚିରା, ପୁଞ୍ଜିକାସ୍ଥଳା, ଅଲମ୍ବୁଷା, ସୁମଧ୍ୟା, ହେମା, ନାଗଦତ୍ତା, କ୍ଷେମା ବା ପଦ୍ମା ପ୍ରଧାନ ।

**ଅବଧୂତ**—ଶୈବ ସମ୍ପ୍ରଦାୟ ବିଶେଷ । ଅବଧୂତ ନାମକ ଜଣେ ସନ୍ନ୍ୟାସୀ ଯଦୁରାଜାଙ୍କୁ ବହୁ ଧର୍ମୋପଦେଶ ଦେବା କଥା ଭାଗବତରେ ଉଲ୍ଲେଖ ଅଛି । ଏଇ ଅବଧୂତଙ୍କର ୨୪ଟି ଗୁରୁଥିବା କଥା ମଧ୍ୟ ଭାଗବତରୁ ଜଣାଯାଏ ।

ଅବଧୂତମାନେ ସଂସାର-ତ୍ୟାଗୀ । ଏମାନଙ୍କର କୌଣସି ଆଶ୍ରମ ଥିଲା ପରି ଜଣାଯାଏ ନାହିଁ । ତନ୍ତ୍ରମତେ ଏମାନଙ୍କର ଚାରୋଟି ଶାଖା—ବ୍ରହ୍ମାବଧୂତ, ଶୈବାବଧୂତ, ଭକ୍ତାବଧୂତ, ଓ ହଂସାବଧୂତ । କପିଳ ମହର୍ଷିଙ୍କ ପୁତ୍ରର ନାମ ମଧ୍ୟ ଅବଧୂତ ଥିଲା ।

**ଅବନ୍ତି**—ପ୍ରାଚୀନ ସୂର୍ଯ୍ୟବଂଶୀୟ ରାଜା । ବିଦିଶାଧିପତି ବିଶାଳଙ୍କ ଦୁହିତା ଭାମିନୀ ଏହାଙ୍କର ମହିଷୀ । ବହୁକାଳ ରାଜତ୍ୱ ପରେ ପୁତ୍ରଙ୍କୁ ସିଂହାସନ ପ୍ରଦାନ କରି ଅବନ୍ତି ସପତ୍ନୀକ ବାନପ୍ରସ୍ଥ ଅବଲମ୍ବନ କରିଥିଲେ ।

**ଅବୀକ୍ଷିତ**—ମହାରାଜ କରନ୍ଧମ ଏହାଙ୍କର ପିତା । ଅବୀକ୍ଷିତ ବିଦିଶାଧିପତି ବିଶାଳଙ୍କ କନ୍ୟା ବୈଶାଳିନୀଙ୍କୁ ସ୍ୱୟମ୍ବର ସଭାରୁ ହରଣ କରି ନେଇ ଆସୁଥିବା ବେଳେ ନିମନ୍ତ୍ରିତ ରାଜନ୍ୟମଣ୍ଡଳୀ ଦ୍ୱାରା ଆକ୍ରାନ୍ତ ହୋଇ ପରାଜିତ ଓ ବନ୍ଦୀ ହୋଇଥିଲେ । ମହାରାଜ କରନ୍ଧମ ଏ ସମ୍ବାଦ ପ୍ରାପ୍ତି ମାତ୍ରେ ସସୈନ୍ୟ ଘଟନାସ୍ଥଳକୁ ଆସି ରାଜାମାନଙ୍କ ସହିତ ଯୁଦ୍ଧ କଲେ । ପରିଣାମରେ କରନ୍ଧମ ବିଜୟୀ ହୋଇ ପୁତ୍ରକୁ ମୁକ୍ତ କରିନେଲେ । ବିଶାଳ ଅବୀକ୍ଷିତଙ୍କୁ କନ୍ୟା

ପ୍ରଦାନ କରିବାପାଇଁ ସମ୍ମତି ପ୍ରଦାନ କଲେ ମଧ୍ୟ ଅବୀକ୍ଷିତ ପରାସ୍ତ ହୋଇ-ଥିବାରୁ ବୈଶାଳିନୀଙ୍କୁ ବରଣ କଲେନାହିଁ । ବୈଶାଳିନୀ ଅବୀକ୍ଷିତଙ୍କ ପ୍ରତି ଅନୁରାଗିଣୀ ଥିଲେ ମଧ୍ୟ ବର୍ତ୍ତମାନ ତାଙ୍କ ଦ୍ୱାରା ପରିତ୍ୟକ୍ତା ହେବାରୁ ମନ ଦୁଃଖରେ ଅରଣ୍ୟକୁ ପଳାଇଗଲେ । ସେଠାରେ ସେ ତପସ୍ୟାରତ ଥିବା ବେଳେ ହଠାତ୍ ଜଣେ ରାକ୍ଷସ ତାଙ୍କୁ ଆକ୍ରମଣ କଲା । ବୈଶାଳିନୀ କାତର କଣ୍ଠରେ ଅବୀକ୍ଷିତ ରକ୍ଷା କର, ରକ୍ଷା କର ବୋଲି ଚିତ୍କାର କରିବାକୁ ଲାଗିଲେ । ଘଟନାକ୍ରମେ ଅବୀକ୍ଷିତ ସେଠାରେ ଉପସ୍ଥିତ ହେଲେ । ଯୁଦ୍ଧରେ ରାକ୍ଷସକୁ ବଧ କରି ସେ ବୈଶାଳିନୀଙ୍କୁ ଉଦ୍ଧାର କଲେ । ପରିଣୟ ଯଥାବିଧି ସମ୍ପାଦିତ ହେଲା । ମରୁତ ଏହି ଦମ୍ପତିର ସନ୍ତାନ । (ମାର୍କଣ୍ଡେୟ)

**ଅବ୍ୟୟ**— ରୈବତ ମନୁଙ୍କ ପୁତ୍ର ।

**ଅଭିମନ୍ୟୁ**—ସୁଭଦ୍ରାଙ୍କ ଗର୍ଭରେ ଅର୍ଜୁନଙ୍କ ଔରସରୁ ଜନ୍ମିଥିଲେ । ଶ୍ରୀକୃଷ୍ଣ ଏହାଙ୍କର ମାତୁଳ । ମହାଭାରତ ଯୁଦ୍ଧରେ ଏକାକୀ ଦ୍ରୋଣଙ୍କ ବ୍ୟୂହ ଭେଦ କରି ଅଦ୍ଭୁତ ରଣ କୁଶଳତା ପ୍ରଦର୍ଶନ କରିଥିଲେ । କୌରବପକ୍ଷୀୟ ପ୍ରଧାନ ପ୍ରଧାନ ବୀରମାନେ ଏହାଙ୍କ ଦ୍ୱାରା ପରାସ୍ତ ହେବା ପରେ ସପ୍ତରଥୀ ଏହାଙ୍କୁ ଅନ୍ୟାୟ ଭାବରେ ବଧ କଲେ । ମତ୍ସ୍ୟଦେଶାଧିପତି ବିରାଟକନ୍ୟା ଉତ୍ତରା ଏହାଙ୍କର ପତ୍ନୀ । ପରମ ଭାଗବତ ପୁଣ୍ୟଶ୍ଳୋକ ମହାରାଜ ପରୀକ୍ଷିତ ଏହି ଦମ୍ପତିର ସନ୍ତାନ ।

(୨) ବିଷ୍ଣୁପୁରାଣରେ ଯେଉଁ ଅଭିମନ୍ୟୁଙ୍କ କଥା ଉଲ୍ଲେଖ ଅଛି ସେ ହେଉଛନ୍ତି ସ୍ୱାୟମ୍ଭୁବବଂଶୀୟ ଚକ୍ଷୁଙ୍କ ପୁତ୍ର । ନଡ୍ୱଲା ଏହାଙ୍କର ମାତା ।

**ଅଭୂତରଜାଃ** – ବୈବସ୍ୱତ ମନ୍ୱନ୍ତରରେ ଦେବତାମାନେ ଅମିତାଭ, ଅଭୂତରଜାଃ, ବୈକୁଣ୍ଠ ଓ ସୁମେଧା ଏହି ଚାରି ଶ୍ରେଣୀରେ ବିଭକ୍ତ ହୋଇଥିଲେ । (ବିଷ୍ଣୁପୁରାଣ) କନ୍ତୁ ସାବର୍ଣ୍ଣି ମନ୍ୱନ୍ତରରେ ସୁତପ, ଅମିତାଭ ଓ ମୁଖ୍ୟ ଏହି ତିନୋଟି ଶ୍ରେଣୀ ବିଭାଗ ହେଲା । ପ୍ରତ୍ୟେକ ବିଭାଗରେ ୨୦ଟି ଦେବତା ଥିଲେ ।

**ଅମର୍କ** – ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର । ଭକ୍ତ ପ୍ରହ୍ଲାଦଙ୍କର ଏ ବିଦ୍ୟାଗୁରୁ ଥିଲେ ।

**ଅମାବସୁ**—ଚନ୍ଦ୍ରବଂଶୀୟ ମହାରାଜ କୁଶଙ୍କ ପୁତ୍ର । (ବିଷ୍ଣୁପୁରାଣ)

**ଅମିତଧ୍ୱଜ**—ଧର୍ମଧ୍ୱଜଙ୍କ ପୁତ୍ର । ଏ ଚନ୍ଦ୍ରବଂଶୀୟ । (ବିଷ୍ଣୁପୁରାଣ)

**ଅମିତ୍ରଜିତ୍**—ସୁବର୍ଣ୍ଣଙ୍କ ପୁତ୍ର । ଏ ଇକ୍ଷ୍ୱାକୁ ବଂଶରେ ଜନ୍ମଗ୍ରହଣ କରିଥିଲେ ।
(ବିଷ୍ଣୁପୁରାଣ)

**ଅମୁର୍ତ୍ତରୟ୍ୟା**—ପୁରୁବଂଶୀୟ ରାଜା କୁଶଙ୍କ ତୃତୀୟ ପୁତ୍ର । (ବିଷ୍ଣୁପୁରାଣ)

**ଅମୋଘା**—ବ୍ରହ୍ମପୁତ୍ର ନଦଙ୍କ ମାତା । ଶାନ୍ତନୁ ମହର୍ଷି ଏହାଙ୍କର ସ୍ୱାମୀ ।

**ଅମୃତ**—ଦେବତା ଓ ଅସୁରମାନେ ସମୁଦ୍ର ମନ୍ଥନ କରିବା ସମୟରେ ସମୁଦ୍ର ଗର୍ଭରୁ ଅମୃତ ବାହାରିଥିଲା । କୌଶଳ କ୍ରମେ ଦେବତାମାନେ ଏହା ପାନ କରି ଅମର ହେଲେ । ରାକ୍ଷସ ଓ ଦେବତାମାନଙ୍କୁ ଏଇ ଅମୃତ ବାଣ୍ଟିବା ଅଭିପ୍ରାୟରେ ବିଷ୍ଣୁ ମୋହିନୀ ବେଶ ଧାରଣ କରିଥିଲେ ।

**ଅମୃତାକ୍ଷ**—ପୁଷ୍ପଦନ୍ତ ନାମକ ହସ୍ତୀର ପୁତ୍ର । କାଳ ଦେବତାଙ୍କର ନାମ ବିଶେଷ ।

**ଅମ୍ବରୀଷ**—ସୂର୍ଯ୍ୟବଂଶୀୟ ବିଖ୍ୟାତ ରାଜା । ଏ ପରମ ବିଷ୍ଣୁଭକ୍ତ ଥିଲେ । ଏହାଙ୍କ ପିତାଙ୍କ ନାମ ନାଭାଗ, ରାଜଧାନୀ ଅଯୋଧ୍ୟା । ମହାରାଜ ଅମ୍ବରୀଷ ମନ୍ତ୍ରୀମାନଙ୍କ ହସ୍ତରେ ରାଜ୍ୟଭାର ସମର୍ପଣ କରି ବନ ସହସ୍ର ବର୍ଷଯାଏ ବିଷ୍ଣୁଙ୍କ ଆରାଧନା କରିଥିଲେ । ବିଷ୍ଣୁ ଛଦ୍ମବେଶରେ ଠିକ୍ ଇନ୍ଦ୍ର ରୂପ ହୋଇ ଅମ୍ବରୀଷଙ୍କୁ ଦେଖା ଦେଲେ ଏବଂ ଅଭୟ ମାଗିବା ପାଇଁ ସୂଚନା ଦେଲେ । ଅମ୍ବରୀଷ ଉତ୍ତର ଦେଲେ ମୁଁ ଆପଣଙ୍କଠାରୁ କୌଣସି ଅଭୟ ଲାଭ କରିବାପାଇଁ ତପସ୍ୟା କରୁନାହିଁ । ଶ୍ରୀମନ୍ ନାରାୟଣ ମୋର ସର୍ବସ୍ୱ । ତାଙ୍କ ଶ୍ରୀମୁଖ ଦର୍ଶନ ନକଲେ ମୋର ତପସ୍ୟା ସାଙ୍ଗ ହୋଇ ପାରିବନାହିଁ । ଭକ୍ତବତ୍ସଳ ଭଗବାନ୍ ସେଇକ୍ଷଣି ବିଷ୍ଣୁ ରୂପରେ ଆବିର୍ଭୂତ ହୋଇ ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କଲେ । (ଲିଙ୍ଗପୁରାଣ)

ଥରେ ଦୁର୍ବାସା ଏଇ ଅମ୍ବରୀଷଙ୍କ ଉପରେ ଅତି କ୍ରୁଦ୍ଧ ହେବାରୁ ବିଷ୍ଣୁ ସୁଦର୍ଶନଚକ୍ର ଦ୍ୱାରା ଋଷିଙ୍କ କୋପାନଳରୁ ରାଜାଙ୍କୁ ରକ୍ଷା କଲେ । ଅମ୍ବରୀଷ ବ୍ରାହ୍ମଣମାନଙ୍କୁ ଦଶପଦ୍ମ ଗାଈ ଦାନ କରିଥିଲେ ।

**ଅମ୍ବା**—କାଶୀରାଜାଙ୍କ ଜ୍ୟେଷ୍ଠା କନ୍ୟା, ଭୀଷ୍ମ ଏହାଙ୍କୁ ଓ ଏହାଙ୍କ କନିଷ୍ଠା ଭଗିନୀ ଅମ୍ବାଳିକାଙ୍କୁ ସ୍ୱୟମ୍ବର ସଭାରୁ ନେଇ ଆସିଥିଲେ । ଭୀଷ୍ମଙ୍କ ବୈମାତ୍ରେୟ ଭାଇ ବିଚିତ୍ରବୀର୍ଯ୍ୟଙ୍କୁ ବିବାହ କରିବା ପାଇଁ ଭୀଷ୍ମ କହିବାରୁ ଅମ୍ବା ନାହିଁ କଲେ । ସେ କହିଲେ ମୁଁ ଶାଲ୍ୱ ଅଧିପତିଙ୍କୁ ମନେ ମନେ ବରଣ କରି ନେଇଛି ।

ଆପଣ ମୋତେ ତାଙ୍କ ପାଖକୁ ପଠାଇ ଦିଅନ୍ତୁ । ଭୀଷ୍ମ ସେହିପରି କଲେ ସତ୍ୟ, କିନ୍ତୁ ଶାଲ୍ୱରାଜ ଅମ୍ବାଙ୍କୁ ପ୍ରତ୍ୟାଖ୍ୟାନ କଲେ । ଅଗତ୍ୟା ଅମ୍ବା ହସ୍ତିନାକୁ ଫେରି ବିଚିତ୍ରବୀର୍ଯ୍ୟଙ୍କୁ ବିବାହ କରିବେ ବୋଲି ସମ୍ମତ ଜଣାଇଲେ । ମାତ୍ର ଭୀଷ୍ମ ନାହିଁ କଲେ । କ୍ରୋଧରେ ଅମ୍ବା ତପସ୍ୟା କରି ଶିଖଣ୍ଡୀରୂପେ ଜନ୍ମ ହେଲେ । ଶିଖଣ୍ଡି ହିଁ ମହାଭାରତ ଯୁଦ୍ଧରେ ଭୀଷ୍ମଙ୍କ ମୃତ୍ୟୁର କାରଣ ହୋଇଥିଲେ । ଭୀଷ୍ମଦେବ ମୃତ୍ୟୁଞ୍ଜୟୀ ହୋଇଥିବାରୁ ଶରଶଯ୍ୟା କରି ଯୁଦ୍ଧ ପରେ ଇଚ୍ଛାନୁସାରେ ପ୍ରାଣତ୍ୟାଗ କଲେ ।

**ଅମ୍ବାଳିକା**—କାଶୀରାଜଙ୍କ କନିଷ୍ଠା କନ୍ୟା । ମହାରାଜ ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀ ଓ ପାଣ୍ଡୁଙ୍କ ଜନନୀ । ପାଣ୍ଡୁଙ୍କ ମୃତ୍ୟୁ ପରେ ଅମ୍ବାଳିକା ଶାଶୁ ସତ୍ୟବତୀଙ୍କ ସହିତ ବନକୁ ଗମନ କଲେ । ସେଠାରେ ତପସ୍ୟାଚରଣ କରି ଦେହତ୍ୟାଗ କରିଥିଲେ ।

**ଅମ୍ବିକା**—କାଶୀରାଜଙ୍କ ମଧ୍ୟମା କନ୍ୟା । ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀ । ଧୃତରାଷ୍ଟ୍ରଙ୍କ ଜନନୀ ।

**ଅଯୁତନାୟୀ**—ଅଯୁତ ସଂଖ୍ୟକ ନରମେଧ ଯଜ୍ଞ ଏହାଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥିଲା । ବିଖ୍ୟାତ ଚନ୍ଦ୍ରବଂଶର ଏ ଜଣେ ସର୍ବପ୍ରଧାନ ରାଜା । ଏହାଙ୍କ ପିତା ମହାଭୌମ, ମାତା ସୁଯଜ୍ଞା ।

**ଅରିମର୍ଦ୍ଦନ**—ଅକ୍ରୂରଙ୍କ ଭାଇ । କେକୟରାଜ ଭାନୁପ୍ରତାପଙ୍କ ଭାଇ । ସେ ଶାପବଶରୁ କୁମ୍ଭକର୍ଣ୍ଣ ହୋଇଥିଲେ ।

**ଅରିଷ୍ଟ**—ବୃଷଭାକୃତ ଅସୁର । ବୋଧହୁଏ ଏହାର ଅନ୍ୟନାମ ଷଣ୍ଢାସୁର । କଂସ ଏହାକୁ ଶ୍ରୀକୃଷ୍ଣଙ୍କ ବଧ ଉଦ୍ଦେଶ୍ୟରେ ବ୍ରଜଧାମକୁ ପ୍ରେରଣ କରିଥିଲେ । ଏଇ ଭୀଷଣକାୟ ବୃଷଭର ଗର୍ଜନ ନାଦରେ ଗୋପଗଣ ଭୀତତ୍ରସ୍ତ ହୋଇପଡିଲେ । ଶ୍ରୀକୃଷ୍ଣ ଏହାର ଶୃଙ୍ଗ ଦୁଇଟି ଉପାଡ଼ି ସେହି ଶୃଙ୍ଗ ପ୍ରହାରରେ ପିଟି ପିଟି ଏହାକୁ ମାରିଦେଲେ । (ଭାଗବତ ୧୦ମସ୍କନ୍ଧ)

(୨) ବୈବସ୍ୱତ ମନୁଙ୍କ ପୁତ୍ରର ନାମ ମଧ୍ୟ ଅରିଷ୍ଟ ଥିଲା ବୋଲି ପ୍ରମାଣ ମିଳେ । (କୂର୍ମପୁରାଣ)

**ଅରିଷ୍ଟା**—ମହର୍ଷି କଶ୍ୟପଙ୍କର ଚତୁର୍ଥ ପତ୍ନୀ । ଦକ୍ଷ ପ୍ରଜାପତି ଏହାଙ୍କର ପିତା ଥିଲେ ।

**ଅରିଷ୍ଟନେମି**—ଜନୈକ ଯକ୍ଷ । ବର୍ଷର ପ୍ରତିମାସରେ ସୂର୍ଯ୍ୟଙ୍କ ରଥରେ ଜଣେ ଜଣେ ଆଦିତ୍ୟ (ବାର ସୂର୍ଯ୍ୟରୁ ଗୋଟିଏ ଜଣ) ଋଷି, ଗନ୍ଧର୍ବ, ଅପ୍ସରା, ଯକ୍ଷ, ନାଗ ଓ ରାକ୍ଷସ ରହନ୍ତି । ପୌଷ ମାସରେ ସୂର୍ଯ୍ୟଙ୍କ ରଥରେ ଅଧିଷ୍ଠିତ ଆଦିତ୍ୟଙ୍କ ନାମ ଭଗ, ଋଷିଙ୍କ ନାମ କ୍ରତୁ, ଗନ୍ଧର୍ବଙ୍କ ନାମ ଊର୍ଣ୍ଣାୟୁ, ଅପ୍ସରାଙ୍କ ନାମ ପୂର୍ବଚିତ୍ତି, ଯକ୍ଷଙ୍କ ନାମ ଅରିଷ୍ଟନେମି, ନାଗଙ୍କ ନାମ କର୍କୋଟକ ଏବଂ ରାକ୍ଷସଙ୍କ ନାମ ସ୍ଫୂର୍ଜ, ଏମାନଙ୍କର କାର୍ଯ୍ୟ :—ଋଷି ସ୍ତବ ଗାନ କରନ୍ତି, ଗନ୍ଧର୍ବ ସଙ୍ଗୀତ ବୋଲନ୍ତି, ଅପ୍ସରା ନୃତ୍ୟ କରନ୍ତି, ରାକ୍ଷସ ଅନୁସରଣ କରନ୍ତି, ନାଗ ଅଶ୍ୱ ସାଜସଜ୍ଜା କରନ୍ତି ଏବଂ ଯକ୍ଷ ଘୋଡ଼ାର ଲଗାମ୍ ଲଗାଇ ଦିଅନ୍ତି ।

(୨) ଆଉ ଜଣେ ପ୍ରଜାପତିଙ୍କର ନାମ ଥିଲା ଅରିଷ୍ଟନେମି । ଦକ୍ଷଙ୍କର ଚାରୋଟି କନ୍ୟା ଏହାଙ୍କର ପତ୍ନୀ ଥିଲେ ।

(୩) ରାଜା ସଗରଙ୍କ ଶ୍ୱଶୁର ।

(୪) ରାଜା ବୃଷ୍ଟିଙ୍କ ନାତି, ଶଫକଙ୍କ ପୁଅ ।

**ଅରୁଣ**—ମହର୍ଷି କଶ୍ୟପଙ୍କ ଔରସରେ ବିନତାଙ୍କ ଗର୍ଭରୁ ଜାତ ହୋଇଥିଲେ । ପକ୍ଷୀରାଜ ଗରୁଡ଼ ଏହାଙ୍କର କନିଷ୍ଠ ଭ୍ରାତା । ସୂର୍ଯ୍ୟଦେବଙ୍କ ରଥରେ ଏ ସାରଥି କାମ କରନ୍ତି ।

ଅରୁଣଙ୍କ ଜନ୍ମ ଅତି କୌତୂହଳାବହ । ବିନତା ଦୁଇଟି ଅଣ୍ଡା (ଡ଼ିମ୍ବ) ପ୍ରସବ କରିଥିଲେ । କିନ୍ତୁ ତାଙ୍କ ସଉତୁଣୀ କଦ୍ରୁ ଏକ ସହସ୍ର ଅଣ୍ଡା ପ୍ରସବ କଲେ । କଦ୍ରୁ-ପ୍ରସୂତ ପ୍ରତ୍ୟେକ ଅଣ୍ଡାରୁ ଗୋଟିଏ ଗୋଟିଏ ସାପ ଜନ୍ମ ହୋଇଥିଲେ । କିନ୍ତୁ ବିନତାଙ୍କ ପ୍ରସୂତ ଅଣ୍ଡା ଦୁଇଟି ସେହିପରି ଅନେକ ଦିନଯାଏ ରହିଲା । ବିନତା ଆଶ୍ଚର୍ଯ୍ୟ ହୋଇ ସେଥିରୁ ଗୋଟିଏ ଭାଙ୍ଗି ଦେଖିଲେ ଗୋଟିଏ ଅଂଶ ଠିକ୍ ଆକାରପ୍ରକାରରେ ସୁଗଠିତ ହୋଇଛି କିନ୍ତୁ ଅପରାର୍ଦ୍ଧଟି ଅପକ୍ୱ ଅବସ୍ଥାରେ ରହିଛି । ସେଇ ବିକଳାଙ୍ଗ ପୁତ୍ରଙ୍କ ନାମ ଅରୁଣ । ସେ ଜନ୍ମ ହେବା ମାତ୍ରେ ମାଆଙ୍କୁ କହିଲେ, 'ତୁମେ ସଉତୁଣୀ

ହିଂସା ରଖି ମୋତେ ଏପରି କଲ, ସେଥିଲାଗି ତୁମେ ୫୦ ବର୍ଷ ଯାଏ ତାଙ୍କର ଦାସୀ ହୋଇ ରହିବ । ଏପରି କହୁ କହୁ ଅରୁଣ ଶୂନ୍ୟମାର୍ଗକୁ ଚାଲି ଯାଇ ସୂର୍ଯ୍ୟଙ୍କର ସାରଥି ହେଲେ । ଶ୍ୟେନୀ ତାଙ୍କର ପତ୍ନୀ, ସମ୍ପାତି ଓ ଜଟାୟୁ ତାଙ୍କର ପୁତ୍ର ଅଟନ୍ତି । (ମହାଭାରତ)

**ଅରୁଧ**—ସୁରଥ ରାଜାଙ୍କ ମନ୍ତ୍ରୀ । (ସାରଳା ମହାଭାରତ)

**ଅରୁନ୍ଧତୀ**—ମହର୍ଷି ବଶିଷ୍ଠଙ୍କ ପତ୍ନୀ । ଏ ପରମାସତୀ । ପ୍ରଜାପତି କର୍ଦ୍ଦମ ମହର୍ଷି ଏହାଙ୍କର ପିତା । ସପ୍ତର୍ଷି ନକ୍ଷତ୍ରମଣ୍ଡଳ ମଧ୍ୟରେ ଅରୁନ୍ଧତୀ ଏ ପର୍ଯ୍ୟନ୍ତ ଶୂନ୍ୟ ମାର୍ଗରେ ଅଛନ୍ତି । କିମ୍ବଦନ୍ତୀ କହେ ଯେଉଁ ବ୍ୟକ୍ତି ମୃତ୍ୟୁର ନିକଟବର୍ତ୍ତୀ ହୁଏ ତାକୁ ଏହି ଅରୁନ୍ଧତୀ ନକ୍ଷତ୍ର ଦେଖାଯାଏ ନାହିଁ । (ବ୍ରହ୍ମବୈବର୍ତ୍ତ, ମହାଭାରତ)

ହରିବଂଶ ମତରେ ଅରୁନ୍ଧତୀ ଦକ୍ଷ ପ୍ରଜାପତିଙ୍କ କନ୍ୟା ସେ ଧର୍ମଙ୍କୁ ବିବାହ କରିଥିଲେ । ଧର୍ମ ଦକ୍ଷଙ୍କ ଦଶୋଟି କନ୍ୟାର ପତି ଥିଲେ ।

**ଅର୍ଜ୍ଜୁନ**—ତୃତୀୟ ବା ମଧ୍ୟମ ପାଣ୍ଡବ । ଦେବରାଜ ଇନ୍ଦ୍ରଙ୍କ ଔରସରୁ କୁନ୍ତୀଙ୍କ ଗର୍ଭଜାତ । ମହାଭାରତୀୟ ଯୁଗରେ ଏ ଥିଲେ ଜଣେ ଅଦ୍ୱିତୀୟ ବୀର । ଭାରତ ଯୁଦ୍ଧରେ ସ୍ୱୟଂ ଶ୍ରୀକୃଷ୍ଣ ଏହାଙ୍କର ସାରଥ୍ୟ ସ୍ୱୀକାର କରିଥିଲେ । ଅର୍ଜ୍ଜୁନ ଦ୍ରୁପଦ ରାଜସଭାରେ ଲକ୍ଷ୍ୟ ଭେଦ କରି ଅନ୍ୟ ଚାରି ଭାଇଙ୍କ ସହ ଦ୍ରୌପଦୀଙ୍କ ପାଣିଗ୍ରହଣ କରିଥିଲେ । ଦ୍ରୌପଦୀଙ୍କ ଛଡ଼ା ସୁଭଦ୍ରା ଓ ଚିତ୍ରାଙ୍ଗଦା ନାମ୍ନୀ ଅର୍ଜ୍ଜୁନଙ୍କର ଆଉ ଦୁଇ ପତ୍ନୀ ଥିଲେ । ନାଗକନ୍ୟା ଉଲୁପୀଙ୍କୁ ମଧ୍ୟ ଅର୍ଜ୍ଜୁନ ବିବାହ କରିଥିଲେ । ଦ୍ରୌପଦୀ ଗର୍ଭଜାତ ପୁତ୍ର ଭାରତ ଯୁଦ୍ଧର ଶେଷ ଦିନ ରାତ୍ରିରେ ଅଶ୍ୱତ୍ଥାମାଙ୍କ ଶରାଘାତରେ ମୃତ ହୋଇଥିଲେ । ସୁଭଦ୍ରା ପୁତ୍ର ଅଭିମନ୍ୟୁ ସପ୍ତରଥୀଙ୍କ ଦ୍ୱାରା ଭାରତ ଯୁଦ୍ଧରେ ପ୍ରାଣ ହରାଇଲେ । ଉଲୁପୀ ନିଃସନ୍ତାନା । ଚିତ୍ରାଙ୍ଗଦାଙ୍କ ଗର୍ଭରୁ ମଣିପୁରାଧିପତି ବଭ୍ରୁବାହନ ଜାତ ହୋଇଥିଲେ ।

ବନବାସ ସମୟରେ ଅର୍ଜ୍ଜୁନ ଇନ୍ଦ୍ରକୀଳ ପର୍ବତରେ ମହାଦେବଙ୍କୁ ଆରାଧନା କରି ଅକ୍ଷୟ ତୂଣ ଓ ପାଶୁପତାସ୍ତ୍ର ଲାଭ କରିଥିଲେ । ଶ୍ରୀକୃଷ୍ଣଙ୍କ ପ୍ରୟାଣ ଅନ୍ତେ ଅର୍ଜ୍ଜୁନ ଅନ୍ୟାନ୍ୟ ଭ୍ରାତାମାନଙ୍କ ସହିତ ହିମାଳୟ ବାଟେ ସ୍ୱର୍ଗକୁ ଯିବାବେଳେ ହିମ ପଥରେ ପ୍ରାଣତ୍ୟାଗ କଲେ । ଏହାଙ୍କର ଦଶୋଟି ନାମ ଅଛି । କିମ୍ବଦନ୍ତୀ କହେ ଏଇ ଦଶ ନାମ ଲେଖି ଘରେ ଉତ୍ତମ ସ୍ଥାନରେ ରଖି ପୂଜା କଲେ ଓଡ଼ଶ ହୁଅନ୍ତି ନାହିଁ । ଦଶ ନାମ ଯଥା :—ଅର୍ଜ୍ଜୁନ, କୃଷ୍ଣ, ଫାଲ୍‌ଗୁନ,

ବୀଭତ୍ସୁ, ଶ୍ୱେତବାହନ, କିରୀଟି, ସବ୍ୟସାଚୀ, ଧନଞ୍ଜୟ, ପାର୍ଥ, ବିଜୟ ।
(ମହାଭାରତ)

(୨) ଯାମଳାର୍ଜ୍ଜୁନ—କୁବେର ପୁତ୍ର ନଳକୁବର ଓ ମଣିଗ୍ରୀବ ମହର୍ଷି ନାରଦଙ୍କ ଅଭିଶାପରେ ବ୍ରଜଧାମରେ ଅର୍ଜ୍ଜୁନ ବୃକ୍ଷ ହୋଇଥିଲେ । ନନ୍ଦ ମହର୍ଷୀ ଯଶୋଦା ଶ୍ରୀକୃଷ୍ଣଙ୍କୁ ନବନୀତ ଅପହରଣ ଅପରାଧରେ ଏହି ଅର୍ଜ୍ଜୁନ ବୃକ୍ଷରେ ବାନ୍ଧି କାର୍ଯ୍ୟାନ୍ତରକୁ ଗଲେ । ପରେ ଭଗବାନ୍ ଶ୍ରୀକୃଷ୍ଣ କୁବେର ପୁତ୍ରମାନଙ୍କ ଶାପ ବିମୋଚନାର୍ଥେ ବନ୍ଧନ ରଜ୍ଜୁ ଛିନ୍ନ ହେବା ମାତ୍ରେ ବୃକ୍ଷ ଦ୍ୱୟ ମୂଳୋତ୍ପାଟିତ ହୋଇପଡ଼ିଲା । ଦେଖୁ ଦେଖୁ ଦୁଇଟି ଦିବ୍ୟପୁରୁଷ ସେଠାରେ ଆବିର୍ଭୂତ ହୋଇ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରି ଉତ୍ତରାଭିମୁଖ ହୋଇ ପ୍ରସ୍ଥାନ କଲେ । (ଭାଗବତ)

(୩) ସହସ୍ରାର୍ଜ୍ଜୁନ—ମାହେଷ୍ମତୀ କଟକର ରାଜା । (ବିଶେଷ ବିବରଣୀ ପାଇଁ କାର୍ତ୍ତବୀର୍ଯ୍ୟ ଦେଖ)

**ଅର୍ଥ**—ଦକ୍ଷ କନ୍ୟା ବୁଦ୍ଧିଙ୍କ ଗର୍ଭଜାତ ସନ୍ତାନ । ଏହାଙ୍କର ପିତାଙ୍କ ନାମ ଧର୍ମ ।

**ଅଳମ୍ବୁଷ, ଅଳମ୍ବଳ**—ରାକ୍ଷସ ଜଟାସୁରର ପୁତ୍ର ପାଣ୍ଡବମାନେ ଜଟାସୁରକୁ ବଧ କରିଥିବାରୁ ଅଳମ୍ବୁଷ କ୍ରୋଧ କରି ମହାଭାରତ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷ ଅବଲମ୍ବନ କରିଥିଲେ । ଭୀମ ନନ୍ଦନ ଘଟୋତ୍କଚଙ୍କ ସହିତ ଏହାଙ୍କର ଭୀଷଣ ଯୁଦ୍ଧ ଆରମ୍ଭ ହେଲା । ପରିଣାମରେ ଘଟୋତ୍କଚଙ୍କ ମାୟା ଯୁଦ୍ଧରେ ଅଳମ୍ବୁଷ ପ୍ରାଣ ହରାଇଲେ । (ମହାଭାରତ)

**ଅଳମ୍ବୁଷ**—କଶ୍ୟପଙ୍କ ଔରଷ ଜାତ ଅପ୍ସରା ବିଶେଷ । ରାଜା ତୃଣବିନ୍ଦୁ ଏହାଙ୍କୁ ବିବାହ କରିଥିଲେ । ବିଶାଳରାଜ ଏହି ଦମ୍ପତିର ସନ୍ତାନ । ବୈଶାଳୀନଗରୀ ଏହି ବିଶାଳଙ୍କ ଦ୍ୱାରା ସ୍ଥାପିତ । (ବିଷ୍ଣୁପୁରାଣ)

ବିଶାଳଙ୍କର ଶୂନ୍ୟବନ୍ଧୁ ଓ ଧୂମକେତୁ ବୋଲି ଆଉ ଦୁଇ ଭାଇ ଥିଲେ ।
(ମହାଭାରତ)

**ଅଲର୍କ**—ମହାଭାରତ ଶାନ୍ତି ପର୍ବରୁ ଜଣାଯାଏ ଯେ କୃତ ଯୁଗରେ ଦଂଶ ନାମକ ରାକ୍ଷସ ଭୃଗୁମୁନିଙ୍କ ଶାପ ପ୍ରାପ୍ତ ହୋଇ କୀଟ ରୂପ ଧାରଣ କରିଥିଲା । ପରେ ପରଶୁରାମଙ୍କ କୋପ ଦୃଷ୍ଟି ବଳରୁ ଶାପମୁକ୍ତ ହୋଇଗଲା । ଏହି କୀଟର ଦେହ ଶୂକର ପରି । ଏହାର ଆଠୋଟି ପାଦ, ଦନ୍ତ ତୀକ୍ଷ୍ଣ ଓ ସର୍ବାଙ୍ଗ ଲୋମାବୃତ ।

ଦିନେ ଉପବାସକ୍ଲିଷ୍ଟ ପରଶୁରାମ ଶିଷ୍ୟ କର୍ଣ୍ଣଙ୍କ କୋଳରେ ମସ୍ତକ ସ୍ଥାପନ କରି ନିଦ୍ରା ଯାଇଥିଲେ । ସେତିକିବେଳେ ମାଂସଲୋଲୁପ ଅଲର୍କ କର୍ଣ୍ଣଙ୍କ ଉରୁଦେଶ ଭେଦ କରିବାକୁ ଚେଷ୍ଟା କଲେ । ଗୁରୁଙ୍କ ନିଦ୍ରାରେ ବ୍ୟାଘାତ ଜନ୍ମିବ ଭାବି କର୍ଣ୍ଣ ତାକୁ କିଛି କଲେ ନାହିଁ । ଅଟଳ ଅବସ୍ଥାରେ ରହିଲେ । କିଛି ସମୟ ପରେ କର୍ଣ୍ଣଙ୍କ ଉରୁ ଦେଶରୁ ରକ୍ତ ବାହାରି ପରଶୁରାମଙ୍କ ଦେହରେ ଲାଗିଲା । ସେଇକ୍ଷଣି ତାଙ୍କର ନିଦ୍ରା ଭଙ୍ଗ ହେଲା । ସେ କର୍ଣ୍ଣଙ୍କୁ ରୁଧିର ବାହାରିବାର କାରଣ ଜିଜ୍ଞାସା କଲାରୁ କର୍ଣ୍ଣ ସେଇ ଅଲର୍କ କୀଟ ଆଡ଼କୁ ନିର୍ଦ୍ଦେଶ କରିଦେଲେ । ଭୃଗୁପତିଙ୍କ କ୍ରୋଧକଷାୟିତ ନେତ୍ର ସେଇ ଆଡ଼କୁ ପଡ଼ିବାମାତ୍ରେ କୀଟ ପ୍ରାଣତ୍ୟାଗ କଲା । ତତ୍ ପରବର୍ତ୍ତୀ ହଠାତ୍ ଗୋଟିଏ ଅସୁର ମୂର୍ତ୍ତି ଠିଆହୋଇ ପରଶୁରାମଙ୍କୁ ବିନୀତ ଭାବରେ କହିଲା — ଆଜି ଆପଣଙ୍କ ଅନୁଗ୍ରହରୁ ମୁଁ ମୁକ୍ତିଲାଭ କଲି । ମୋର ପ୍ରକୃତ ନାମ ଦଂଶ । ମୁଁ ଆପଣଙ୍କ ପିତାମହ ଭୃଗୁଙ୍କ ପତ୍ନୀଙ୍କୁ ବଳପୂର୍ବକ ହରଣ କରିଥିବା ଯୋଗୁଁ ସେହି ମୁନିଙ୍କ ଅଭିଶାପରୁ ଶ୍ଳେଷ୍ମା ମୂତ୍ରଭୋଜୀ କୀଟରୂପ ଧାରଣ କରିଥିଲି । ପରେ କିନ୍ତୁ ଭୃଗୁ ମୋର ଶାପାନ୍ତ ପାଇଁ କାରଣ ନିର୍ଦ୍ଦେଶ କରି କହିଥିଲେ— ମୋର ବଂଶୋଦ୍ଭୂତ ପରଶୁରାମ ହିଁ ତୋର ଏ ଶାପ ଖଣ୍ଡନ କରିପାରିବେ । ବର୍ତ୍ତମାନ ସେଇ ତ୍ରିକାଳଦର୍ଶୀ ମୁନିଙ୍କ ବାକ୍ୟ ସଫଳ ହେଲା । ଆପଣଙ୍କ କୃପାରୁ ମୁଁ ଶାପମୁକ୍ତ ହେଲି ।

(୨) ମାର୍କଣ୍ଡେୟ ପୁରାଣରୁ ଜଣାଯାଏ, ଅଲର୍କ ରାଜା କୁବଳୟାଶ୍ୱଙ୍କ ପୁତ୍ର । ମଦାଳସା ଏହାଙ୍କର ଜନନୀ । ପରମବିଦୁଷୀ, ସର୍ବଶାସ୍ତ୍ରାର୍ଥଦର୍ଶିନୀ ମଦାଳସା ପୁତ୍ରଙ୍କୁ ଧର୍ମତତ୍ତ୍ୱ ଯଥେଷ୍ଟ ଭାବରେ ଉପଦେଶ ଦେଇଥିଲେ । ପିତା ଅଲର୍କଙ୍କ ଉପରେ ରାଜ୍ୟଭାର ଅର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କଲେ । ଅଲର୍କ ବହୁକାଳ ରାଜତ୍ୱ କରିବା ପରେ କାଶୀରାଜ ସୁବାହୁଙ୍କ ସହିତ ଘୋର ଯୁଦ୍ଧରେ ବ୍ୟାପୃତ ହେଲେ । ଶତ୍ରୁକର୍ତ୍ତୃକ ଆକ୍ରାନ୍ତ ଓ ଅବରୁଦ୍ଧ ହୋଇ ଅଲର୍କ ପରିଣାମରେ ରାଜ୍ୟ ରକ୍ଷା କରିପାରିଲେ ନାହିଁ । ତାଙ୍କର ରାଜକୋଷ ନିଃଶେଷ ହେବାକୁ ଲାଗିଲା । ପ୍ରଜାବର୍ଗ ଭୀତତ୍ରସ୍ତ ହୋଇଉଠିଲେ । ପରେ ପ୍ରଜାକ୍ଷୟ ଓ ଅର୍ଥହାନି ଭୟରେ ସେ କାଶୀରାଜଙ୍କୁ ସ୍ୱରାଜ୍ୟ ଅର୍ପଣ କଲେ । କାଶୀରାଜ କିନ୍ତୁ ତାଙ୍କଠାରୁ ଧର୍ମୋପଦେଶ ଗ୍ରହଣ କରି ରାଜ୍ୟ ପ୍ରତ୍ୟର୍ପଣପୂର୍ବକ ସ୍ୱ ରାଜଧାନୀକୁ ଫେରିଆସିଲେ । ତା' ପରେ ଅଲର୍କ ବାର୍ଦ୍ଧକ୍ୟବଶତଃ ବାନପ୍ରସ୍ଥ ଅବଲମ୍ବନ କଲେ ଏବଂ ଯୋଗ ସାଧନ କରି ସମାଧିସ୍ଥ ହେଲେ ।

**ଅଲକ୍ଷ୍ମୀ**—ଲକ୍ଷ୍ମୀଙ୍କର ଜ୍ୟେଷ୍ଠା ଭଗିନୀ । ଲକ୍ଷ୍ମୀଙ୍କ ପରି ଅଲକ୍ଷ୍ମୀ ମଧ୍ୟ ସମୁଦ୍ର ମନ୍ଥନରୁ ଉଦ୍‌ଭୂତ । ବିଷର ଉତ୍ପତ୍ତି ପରେ ଉଗ୍ରବିଷରୁ ମହା ଅକଲ୍ୟାଣମୟୀ ଅଲକ୍ଷ୍ମୀଙ୍କର ଜନ୍ମ । ଏହାଙ୍କ ପରେ ଲକ୍ଷ୍ମୀଙ୍କ ଜନ୍ମ । ଲକ୍ଷ୍ମୀ ବିଷ୍ଣୁଙ୍କ ମନୋହାରିଣୀ । କିନ୍ତୁ ଅଲକ୍ଷ୍ମୀଙ୍କୁ କୌଣସି ଦେବତା ଗ୍ରହଣ କରିନଥିଲେ । ପଦ୍ମପୁରାଣ ଉତ୍ତରଖଣ୍ଡ କାର୍ତ୍ତିକ ମହାତ୍ମ୍ୟ ମତେ ମହର୍ଷି ଉଦ୍ଦାଳକ ଅଲକ୍ଷ୍ମୀଙ୍କୁ ବିବାହ କରିଥିଲେ । ଲିଙ୍ଗପୁରାଣମତେ ବିପ୍ରର୍ଷି ଦୁଃସହ ଏହାଙ୍କର ସ୍ୱାମୀ ବୋଲି ଜଣାଯାଏ ।

ପଦ୍ମପୁରାଣରୁ ଜଣାଯାଏ ବିବାହ ପରେ ଅଲକ୍ଷ୍ମୀ ଉଦ୍ଦାଳକ ଆଶ୍ରମରେ ନିରନ୍ତର ଯାଗଯଜ୍ଞ, ବେଦପାଠ ଇତ୍ୟାଦି ହେବାରୁ ରହି ନପାରି ଆଶ୍ରମ ତ୍ୟାଗ କରି ବାହାରିଗଲେ । ବନରେ ଏକାକିନୀ କାନ୍ଦୁଥିବା ବେଳେ ଲକ୍ଷ୍ମୀଙ୍କ ଅନୁରୋଧକ୍ରମେ ବିଷ୍ଣୁ ସେଠାକୁ ଆସି ତାଙ୍କ ରହିବା ପାଇଁ ସ୍ଥାନ ନିରୂପଣ କରିଦେଲେ ।

ଲିଙ୍ଗପୁରାଣ କହେ ଯେ ଥରେ ମହର୍ଷି ମାର୍କଣ୍ଡେୟ ଦୁଃସହଙ୍କ ଆଶ୍ରମକୁ ଆସିଥିଲେ । ବିପ୍ରର୍ଷି ଦୁଃସହ ମାର୍କଣ୍ଡେୟଙ୍କୁ ଯଥାବିଧି ସତ୍କାର କରି ନିଜର ଦୁଃଖ କହି ବସିଲେ । ମାର୍କଣ୍ଡେୟ କହିଲେ—ତୁମ ପତ୍ନୀ ଯାବତୀୟ ଅମଙ୍ଗଳର ହେତୁ ! ଆପଣ ଏହାଙ୍କ ସହିତ ଗାର୍ହସ୍ଥ୍ୟ ଅବଲମ୍ବନ କରିବା ବଡ଼ ଅସମ୍ଭବ କଥା । ତଥାପି ତୁମେ ଏହାଙ୍କ ସହିତ କେଉଁ ସ୍ଥାନକୁ ଯିବ, କେଉଁଠାକୁ ନ ଯିବ ତାହା ସବୁ ମୁଁ ବତାଇ ଦେଉଛି ଶୁଣ :—

'ଯେଉଁ ଗୃହରେ ହୋମ, ଯାଗଯଜ୍ଞ, ବିଷ୍ଣୁ ଶିବାଦି ଦେବପୂଜା, ଅତିଥି-ସତ୍କାର ଇତ୍ୟାଦି ଅନୁଷ୍ଠିତ ହୁଏ ସେ ଗୃହ ଆପଣଙ୍କ ପକ୍ଷେ ଅଗମ୍ୟ । ଏହାଛଡ଼ା ସବୁ ପ୍ରକାର ପାପ, ଅମଙ୍ଗଳଜନକ କାର୍ଯ୍ୟର କେନ୍ଦ୍ରସ୍ୱରୂପ ସ୍ଥାନଗୁଡ଼ିକ ଆପଣମାନଙ୍କର ରହିବା ସ୍ଥଳ ବୋଲି ବିବେଚିତ ହେବ ।'.

ମାର୍କଣ୍ଡେୟଙ୍କ ଉପଦେଶ କ୍ରମେ ଦୁଃସହ ଅଲକ୍ଷ୍ମୀଙ୍କୁ ତ୍ୟାଗ କରି ପାତାଳ-ପୁରୀକୁ ଗମନ କଲେ, ଆଉ ଫେରିଲେ ନାହିଁ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସରେ ଅଲକ୍ଷ୍ମୀଙ୍କ ବିଷୟରେ ଏକ ଛାନ୍ଦରେ ବର୍ଣ୍ଣନା ଦେଇଛନ୍ତି, ଯଥା :—ବୃକ୍ଷରାଜ ପରି ସାକେତ ନଗରୀ

ହେଲା ଅଲକ୍ଷ୍ମୀ ଆଶ୍ରିତ ।

**ଅଳାୟୁଧ**—ଜନୈକ ରାକ୍ଷସ । ଭୀମ ବନବାସ କାଳରେ ଏହାର ଜ୍ଞାତି ବକ ଓ କର୍ମୀର ଏବଂ ବନ୍ଧୁ ହିଡ଼ିମ୍ବକୁ ବଧ କରିଥିଲେ । ଏଥିଲାଗି ରାକ୍ଷସ ପ୍ରତିଶୋଧ ନେବା ଇଚ୍ଛାରେ ମହାଭାରତ ଯୁଦ୍ଧକୁ ଆସି ଦୁର୍ଯୋଧନଙ୍କ ପକ୍ଷ ନେଇଥିଲେ । ଯୁଦ୍ଧରେ ଭୀମନନ୍ଦନ ଘଟୋତ୍କଚ ଏହାକୁ ବଧ କଲେ । (ମହାଭାରତ)

**ଅଶୋକବନ**—ରାବଣର ଲଙ୍କାପୁରସ୍ଥ ବିହାର ଉଦ୍ୟାନ । ଏହି ଉପବନକୁ ଦେଖିବାମାତ୍ରେ ଲୋକର ଶୋକ ଦୂର ହୋଇଯାଏ ।

(୨) ଅଯୋଧ୍ୟାରେ ଥିବା ରାମଚନ୍ଦ୍ରଙ୍କ ବିହାର କାନନ ।

**ଅଶୋକ ସୁନ୍ଦରୀ**—ପାର୍ବତୀଙ୍କ ଦୁହିତା । ନହୁଷଙ୍କ ପତ୍ନୀ । ଯଯାତିଙ୍କ ମାଆ ।

(ଭାଷାକୋଷ ୧ମ, ୬୧୨ପୃ)

**ଅଶ୍ୱ**—ବୃଷ୍ଣିବଂଶୀୟ ନୃପତି ବିଶେଷ ।

**ଅଶ୍ୱତ୍ଥାମା**—ଗୁରୁ ଦ୍ରୋଣ ଏହାଙ୍କର ପିତା । ଶରଦ୍ୱାନ କନ୍ୟା କୃପୀ ଏହାଙ୍କର ମାତା । ଅଶ୍ୱତ୍ଥାମା ଜନ୍ମ ସମୟରେ ଉଚ୍ଚୈଃଶ୍ରବା ଅଶ୍ୱ ପରି ଶବ୍ଦ କରିବାରୁ ଦୈବବାଣୀ ଅନୁସାରେ ଏହାଙ୍କୁ ଅଶ୍ୱତ୍ଥାମା ନାମ ଦିଆଯାଇଥିଲା । ପିତାଙ୍କ ନିକଟରୁ ଅଶ୍ୱତ୍ଥାମା ଧନୁର୍ବିଦ୍ୟା ଶିକ୍ଷା କରିଥିଲେ । କୁରୁକ୍ଷେତ୍ର ଯୁଦ୍ଧର ଶେଷ ଦିନ ସେ ଭଗ୍ନୋରୁ ଦୁର୍ଯୋଧନଙ୍କ ନିକଟରେ ପାଣ୍ଡବମାନଙ୍କୁ ବିନାଶ କରିପାରିବେ ବୋଲି ପ୍ରତିଜ୍ଞା କରିଥିଲେ । ତାପରେ କୃପାଚାର୍ଯ୍ୟ, କୃତବର୍ମାଙ୍କ ସହିତ ରାତିରେ ଗୁପ୍ତଭାବରେ ପାଣ୍ଡବ ଶିବିରକୁ ଯାଇ କୃଷ୍ଣାର୍ଜୁନ ନଥିବା ସମୟରେ ଦ୍ରୌପଦୀଙ୍କ ପଞ୍ଚ ପୁତ୍ରଙ୍କୁ ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ପ୍ରଭୃତି ଗୁପ୍ତ ଭାବରେ ହତ୍ୟା କରିଥିଲେ । କୃଷ୍ଣାର୍ଜୁନ ପ୍ରଭୃତି ଫେରିବା ପରେ ଦ୍ରୌପଦୀଙ୍କ କରୁଣ ବିଳାପ ନାଦରେ ଭୀମ ମର୍ମପୀଡ଼ିତ ହୋଇ ଅଶ୍ୱତ୍ଥାମାଙ୍କୁ ବଧ କରିବାପାଇଁ ଧାବମାନ ହେଲେ । ଶ୍ରୀକୃଷ୍ଣ ଦେଖିଲେ ଅମର ଅଶ୍ୱତ୍ଥାମାଙ୍କୁ ବଧ କରିବା ଏକାନ୍ତ କଷ୍ଟକର । ସେଥିପାଇଁ ଅର୍ଜୁନଙ୍କ ସହିତ ସେ ଭୀମଙ୍କୁ ଅନୁସରଣ କଲେ । ଅଶ୍ୱତ୍ଥାମା ଭୀମାର୍ଜୁନ କର୍ତ୍ତୃକ ଆକ୍ରାନ୍ତ ହୋଇ ଐଷିକାସ୍ତ୍ର ପ୍ରୟୋଗ କଲେ । ଅର୍ଜୁନ ଏହାର ଧ୍ୱଂସ ସାଧନ ଲାଗି ବ୍ରହ୍ମଶିରାସ୍ତ୍ର ନିକ୍ଷେପ କରିଦେଲେ । ମହର୍ଷି ବ୍ୟାସ ଓ ଦେବର୍ଷି ନାରଦ ଉଭୟଙ୍କୁ ଏ ଦେବାସ୍ତ୍ର ନିବାରଣ କରିବା ପାଇଁ ଆଦେଶ ଦେବାରୁ ଜିତେନ୍ଦ୍ରିୟ ଅର୍ଜୁନ ନିଜର ଅସ୍ତ୍ର ସଂହରଣ କରିନେଲେ କିନ୍ତୁ ଅଜିତେନ୍ଦ୍ରିୟ ଅଶ୍ୱତ୍ଥାମା ପାରିଲେ ନାହିଁ । ହଠାତ୍ ଏଇ ଅସ୍ତ୍ର ଅର୍ଜୁନଙ୍କ ପୁତ୍ରବଧୂ ତଥା ଅଭିମନ୍ୟୁଙ୍କ ପତ୍ନୀ ଉତ୍ତରାଙ୍କ ଗର୍ଭରେ

ପଡ଼ିଲା । ମାତ୍ର ଶ୍ରୀକୃଷ୍ଣ ଯୋଗ ବଳରେ ଏଇ ଗର୍ଭ ରକ୍ଷାକରି ଗର୍ଭସ୍ଥ ଶିଶୁକୁ ଉଦ୍ଧାର କରିଥିଲେ । ଏଇ ଶିଶୁ ପରମ ଭାଗବତ ମହାରାଜ ପରୀକ୍ଷିତ ।

(ମହାଭାରତ)

(୨) ପାଣ୍ଡବପକ୍ଷୀୟ ମାଳବରାଜ ଇନ୍ଦ୍ରବର୍ମାଙ୍କ ହାତୀର ନାମ ଅଶ୍ୱତ୍ଥାମା । ଭାରତ ଯୁଦ୍ଧରେ ଏଇ ହାତୀର ମୃତ୍ୟୁ ହେବାରୁ ଲୋକେ କହିଲେ—ଅଶ୍ୱତ୍ଥାମା ହତ ହେଲା । ପୁତ୍ରବତ୍ସଳ ଦ୍ରୋଣ ଏ ସମ୍ବାଦରେ ମର୍ମାହତ ହୋଇ ଅସ୍ତ୍ର ତ୍ୟାଗ କରିବାକୁ ଉପକ୍ରମ କରିବା ପୂର୍ବରୁ ଧର୍ମରାଜ ଯୁଧିଷ୍ଠିରଙ୍କୁ ପଚାରିଲେ । ଯୁଧିଷ୍ଠିର କହିଲେ– "ନରେ ବା କୁଞ୍ଜରେ ବା ଅଶ୍ୱତ୍ଥାମା ହତଃ" ସତ୍ୟମ୍ । ସତ୍ୟର ଉପାସକ ଯୁଧିଷ୍ଠିରଙ୍କ ମୁଖରୁ ଏକଥା ଶୁଣି ଦ୍ରୋଣ ଅସ୍ତ୍ର ତ୍ୟାଗ କଲେ ଏବଂ ଯୁଦ୍ଧରେ ପରାସ୍ତ ଓ ନିହତ ହୋଇଥିଲେ । (ମହାଭାରତ)

**ଅଶ୍ୱପତି**—କେକୟ ଦେଶର ରାଜା । ଭରତଜନନୀ କୈକେୟୀ ଏହାଙ୍କର କନ୍ୟା । ଯୁଧାଜିତ ଏହାଙ୍କର ପୁତ୍ର ।

(୨) ମଦ୍ର ଦେଶର ରାଜା । ଏହାଙ୍କର ପିତା ଅଶ୍ୱପୁତ୍ର । ଅଶ୍ୱପତି ନିଃସନ୍ତାନ ଥିଲେ । ସାବିତ୍ରୀଙ୍କ ପ୍ରସାଦରୁ ତାଙ୍କର ଗୋଟିଏ କନ୍ୟା ଜାତ ହେଲା । ତେଣୁ ସେ ଏ ଦୁହିତାର ନାମ ରଖିଥିଲେ ସାବିତ୍ରୀ । ଅଶ୍ୱପତିଙ୍କ ରାଣୀଙ୍କ ନାମ ମାଳତୀ ।

**ଅଶ୍ୱମେଧ**—ଯଜ୍ଞ ବିଶେଷ । ଏ ଯଜ୍ଞ କରିବା ପୂର୍ବରୁ ବିଶେଷ ଲକ୍ଷଣଯୁକ୍ତ ଶ୍ୟାମଳ ବା ଶୁକ୍ଳ ଅଶ୍ୱକୁ ସମ୍ପ୍ରୋକ୍ଷଣ କରି ତା କପାଳରେ ଜୟପତ୍ର ବାନ୍ଧି ଅବାଧରେ ତାକୁ ମନ ଇଚ୍ଛା ଭ୍ରମଣ କରିବାକୁ ଛାଡ଼ି ଦିଆଯାଏ । ବର୍ଷକ ପରେ ଘୋଡ଼ା ଫେରି ଆସିଲେ କିମ୍ବା ତାକୁ କେହି ବୀର ଧରି ରଖିଲେ ସେ ବୀରକୁ ଜୟ କରି ଜୟକର୍ତ୍ତା ସେ ଘୋଡ଼ାକୁ ତାଠାରୁ ଆଣି ପାରିଲେ ସେହି ଘୋଡ଼ାକୁ ବଧକରି ହୋମ କରାଯାଏ । ପୂର୍ବକାଳରେ ହିନ୍ଦୁ ଚକ୍ରବର୍ତ୍ତୀମାନେ ଏହି ଯଜ୍ଞ କରୁଥିଲେ । (ଭାଷାକୋଷ ୧ମ, ୬୧୬ ପୃ.)

**ଅଶ୍ୱସେନ**—ସନତ୍ କୁମାରଙ୍କ ପିତା ।

(୨) ଦ୍ରୋଣାଚାର୍ଯ୍ୟଙ୍କ ସାରଥିର ନାମ ।

(୩) ନାଗରାଜ ତକ୍ଷକଙ୍କ ପୁତ୍ର । (ଭାଷାକୋଷ ୧ମ, ୬୧୬ ପୃ.)

**ଅଶ୍ୱହୃତ ବିଦ୍ୟା**—ଅଶ୍ୱ ଚାଳନା-ବିଦ୍ୟା । କବି ମଧୁସୂଦନ 'ନଳ ଚରିତ'ରେ ବର୍ଣ୍ଣିତ ଅଛନ୍ତି—'ଅଶ୍ୱହୃତ ବିଦ୍ୟା ଗୁହ୍ୟ, ଅଛୁ ତୁ ସେ ପୁଣ ପାଇ ।' ନଳ ଏହି ବିଦ୍ୟା ସାଧନ କରିଥିଲେ । ତେଣୁ ସେ ରାଜା ଋତୁପର୍ଣ୍ଣଙ୍କୁ ଏକାଦିନକରେ ଅଯୋଧ୍ୟାରୁ କୁଣ୍ଡିନନଗରକୁ ନେଇ ପାରିଥିଲେ ।

**ଅଶ୍ୱିନୀ**—ଦକ୍ଷ ପ୍ରଜାପତିଙ୍କ କନ୍ୟା । ଚନ୍ଦ୍ର ଏହାଙ୍କର ସ୍ୱାମୀ, ନକ୍ଷତ୍ର ମଧ୍ୟରେ ଏହାଙ୍କର ଆକାର ଠିକ୍ ଅଶ୍ୱମୁଖ ପରି ହୋଇଥାଏ ବୋଲି ଏପରି ନାମ ଦିଆଯାଇଛି । ଏହି ନକ୍ଷତ୍ରରେ ଆଶ୍ୱିନ ପୂର୍ଣ୍ଣିମା ଦିନ ଚନ୍ଦ୍ର ଅବସ୍ଥାନ କରନ୍ତି ବୋଲି ସେ ମାସକୁ ଆଶ୍ୱିନ ମାସ କହନ୍ତି ।

**ଅଶ୍ୱିନୀ କୁମାର**—ଦେବ ବୈଦ୍ୟ ଅଶ୍ୱିନୀକୁମାରଙ୍କ ଜନ୍ମ ଗୋଟିଏ ବଡ଼ କୌତୁକାବହ ଘଟଣା । ସୂର୍ଯ୍ୟ ପତ୍ନୀ ସଂଜ୍ଞା ସ୍ୱାମୀଙ୍କ ତେଜ ସହି ନ ପାରି ନିଜ ଅଂଶରୁ ଗୋଟିଏ ସ୍ତ୍ରୀ ଉତ୍ପନ୍ନ କରି ପିତ୍ରାଳୟକୁ ବାହାରି ଆସିଲେ । ପିତା ବିଶ୍ୱକର୍ମା କନ୍ୟାର ଏ କାର୍ଯ୍ୟରେ ବଡ଼ ଅସନ୍ତୁଷ୍ଟ ହୋଇ ପୁଣି ଶ୍ୱଶୁରାଳୟକୁ ଫେରିଯିବା ପାଇଁ ସଂଜ୍ଞାଙ୍କୁ ଅନୁରୋଧ କଲେ । ସଂଜ୍ଞା କିନ୍ତୁ ନ ଫେରି ଉତ୍ତର କୁରୁବର୍ଷର ଅରଣ୍ୟରେ ଅଶ୍ୱିନୀ ରୂପ ଧାରଣ କରି ରହିଲେ । ସୂର୍ଯ୍ୟ ଏ ସମ୍ବାଦ ପାଇ ଅଶ୍ୱ ରୂପରେ ସେଠାରେ ଉପନୀତ ହେଲେ । ଅଶ୍ୱରୂପୀ ସୂର୍ଯ୍ୟ ଓ ଅଶ୍ୱିନୀରୂପିଣୀ ସଂଜ୍ଞା ଉଭୟଙ୍କ ଅଙ୍ଗସଙ୍ଗରୁ ଅଶ୍ୱିନୀକୁମାର ଯମଜପୁତ୍ର ଜାତ ହେଲେ । ସେଥିପାଇଁ ଏମାନଙ୍କ ଶରୀର ମନୁଷ୍ୟ ପରି ଓ ମୁହଁଟିମାନ ଘୋଡାପରି । (ହରିବଂଶ)

ଋଗ୍‌ବେଦରେ ଏହି ଉପାଖ୍ୟାନଟି ଠିକ୍ ଏହିପରି ବର୍ଣ୍ଣିତ ହୋଇଛି, କିନ୍ତୁ ସୂର୍ଯ୍ୟପତ୍ନୀ ସଂଜ୍ଞା ପରିବର୍ତ୍ତେ ସରଣ୍ୟୁ ବୋଲି ଲେଖାଅଛି ।

**ଅଶ୍ମକ**—ରାଜା କଲ୍ମଷପାଦଙ୍କ ପୁତ୍ର । ରାଜମହିଷୀ ମଦୟନ୍ତୀ ବଂଶ ରକ୍ଷାର୍ଥେ ପତିଙ୍କ ଆଦେଶକ୍ରମେ ମହର୍ଷି ବଶିଷ୍ଠଙ୍କର ଅଭୟ ପ୍ରାର୍ଥିନୀ ହୋଇଥିଲେ । ବଶିଷ୍ଠଙ୍କ ଔରସରେ ମଦୟନ୍ତୀଙ୍କ ଗର୍ଭରୁ ଅଶ୍ମକ ଜନ୍ମ ହେଲେ । ମଦୟନ୍ତୀ ସାତ ବର୍ଷଯାଏ ଗର୍ଭଧାରଣ କରି ବହୁ କଷ୍ଟ ଭୋଗ କରିବା ପରେ ଖଣ୍ଡିଏ ଅଶ୍ମ ଅର୍ଥାତ୍ ପ୍ରସ୍ତର ଦ୍ୱାରା ନିଜର ଗର୍ଭ ଚିରି ପକାଇଲେ । ହଠାତ୍ ଗୋଟିଏ ଶିଶୁ ଭୂମିଷ୍ଠ ହେଲା । ଅଶ୍ମ ଯୋଗୁଁ ପୁତ୍ରଲାଭ ହୋଇଥିବାରୁ ପୁତ୍ରର ନାମ ଅଶ୍ମକ ରଖାଗଲା । (ହରିବଂଶ)

**ଅଷ୍ଟକ**—ମହାରାଜ ଯଯାତିଙ୍କ କନ୍ୟା ମାଧବୀଙ୍କ ଗର୍ଭରୁ ବିଶ୍ୱାମିତ୍ରଙ୍କ ଔରସରେ ଅଷ୍ଟକଙ୍କର ଜନ୍ମ । ଏ ଜଣେ ପୁଣ୍ୟବାନ୍ ରାଜା । ମହାରାଜ ଯଯାତି ବାନପ୍ରସ୍ଥ

ଅବଲମ୍ବନ ପରେ ଦିବ୍ୟଲୋକକୁ ଗଲେ । ସେଠାରେ ଇନ୍ଦ୍ର ତାଙ୍କୁ ପଚାରିଲେ ଆପଣ କେଉଁ ତପସ୍ୟା କରି ସ୍ୱର୍ଗକୁ ଆସିଲେ କୁହନ୍ତୁ । ଯଯାତି ଉତ୍ତର ଦେଲେ, 'ମୋ ପରି କେହି ହେଲେ ଏତେ କଠୋର ତପସ୍ୟା କରି ପାରିବେ ନାହିଁ ।' ଇନ୍ଦ୍ର କ୍ରୁଦ୍ଧ ହୋଇ ତାଙ୍କର ଅକାରଣ ଗର୍ବ ଦେଖି ଶାପ ଦେଲେ, 'ତୁମେ ସ୍ୱର୍ଗଭ୍ରଷ୍ଟ ହୋଇ ରହ ।' ଯଯାତି ବିନୀତ ହୋଇ କହିଲେ, "ଯାହା ହେବାର ହେଲାଣି । ମୁଁ ମୋ ଦୁଷ୍କୃତିର ଯଥେଷ୍ଟ ଫଳ ପାଇଲିଣି । ଏବେ ମୋତେ ଯେପରି କୌଣସି ସାଧୁ ସହବାସ ମିଳେ ସେଥିପାଇଁ ଆଦେଶ ଦିଅନ୍ତୁ ।" ଇନ୍ଦ୍ର ତଥାସ୍ତୁ ବୋଲି କହିବା ସଙ୍ଗେ ସଙ୍ଗେ ସାବଧାନ କରିଦେଲେ, 'ତୁମେ ଭବିଷ୍ୟତରେ ଆଉ ଏପରି ଅଯଥା ଗର୍ବ ପ୍ରକାଶ କରିବ ନାହିଁ ।' ଯଯାତି ସ୍ୱର୍ଗଭ୍ରଷ୍ଟ ହୋଇ ଆକାଶମାର୍ଗରେ ଆସୁ ଆସୁ ଅଷ୍ଟକଙ୍କୁ ଦେଖିଲେ । ତାଙ୍କ ସହିତ ହର୍ଯ୍ୟାଶ୍ୱ ପୁତ୍ର ବସୁମାନ ଓ ଉଶୀନର ପୁତ୍ର ଶିବି ମଧ୍ୟ ଥିଲେ । ଆଳାପରୁ ସମସ୍ତେ ପରସ୍ପର ଚିହ୍ନା ଚିହ୍ନି ହୋଇଗଲେ । ଅଷ୍ଟକ କହିଲେ—'ସ୍ୱର୍ଗଲୋକରେ ମୋ ପାଇଁ ଯେଉଁ ସ୍ଥାନ ନିର୍ଦ୍ଦେଶ କରାଯାଇଛି, ଆପଣ ସେଠାକୁ ଅବାଧରେ ଯାଆନ୍ତୁ ।' ଅନ୍ୟାନ୍ୟମାନେ ମଧ୍ୟ ସେହି କଥା କହିଲେ । ତେଣୁ ଯଯାତି ଏମାନଙ୍କ ସହିତ ପୁଣି ସ୍ୱର୍ଗକୁ ଫେରିଗଲେ । ସେଠାରେ ଯଥୋଚିତ ଆଦର ଲାଭ କଲେ । (ମହାଭାରତ)

**ଅଷ୍ଟକ**—ଦୃଷଦ୍‌ବତୀଙ୍କ ଗର୍ଭଜାତ ବିଶ୍ୱାମିତ୍ରଙ୍କ ପୁତ୍ର । ସୂର୍ଯ୍ୟବଂଶୀୟ ରାଜା ବିକୁକ୍ଷିଙ୍କ ପୁତ୍ର । (ବିଶ୍ୱକୋଷ ୧ମ, ୬୨୨ ପୃ)

**ଅଷ୍ଟକୁଳାଚଳ**—ପୁରାଣ ମତରେ ଯେଉଁ ଆଠଗୋଟି ପର୍ବତ ପୃଥିବୀକୁ ଆଠ ଦିଗରେ ସମ୍ଭାଳି ଧରିଅଛି, ଯଥା :—(୧) ମହେନ୍ଦ୍ର, (୨) ମଳୟ, (୩) ସହ୍ୟ, (୪) ଶୁକ୍ତିମାନ୍, (୫) ଋକ୍ଷ, (୬) ବିନ୍ଧ୍ୟ, (୭) ପାରିପାତ୍ର ଓ (୮) ହିମାଳୟ । ଏହି ଆଠ ପର୍ବତକୁ ଅଷ୍ଟକୁଳାଚଳ କହନ୍ତି । କାହାରି କାହାରି ମତରେ କୁଳାଚଳ ସାତଗୋଟି । ସେମାନେ କହନ୍ତି ହିମାଳୟ କୁଳାଚଳର ଅନ୍ତର୍ଗତ ନୁହେଁ । ମାତ୍ର ଜଗଦ୍‌ଗୁରୁ ଶଙ୍କର ମୋହମୁଦ୍‌ଗରରେ ଅଷ୍ଟକୁଳାଚଳ ସପ୍ତ-ସମୁଦ୍ର ବୋଲି ବର୍ଣ୍ଣନା କରିଛନ୍ତି । (ବିଶ୍ୱକୋଷ ୧ମ, ୬୨୨ପୃ)

**ଅଷ୍ଟଦିଗପାଳ, ଦିକ୍‌ପାଳ**—ଅଷ୍ଟଦିଗକୁ ରକ୍ଷା କରିବା ବା ପାଳିବା ଆଠଗୋଟି ଦେବତା । ଯଥା :—ଇନ୍ଦ୍ର—ପୂର୍ବ ଦିଗ, ଅଗ୍ନି—ଅଗ୍ନିକୋଣ, ଯମ—ଦକ୍ଷିଣଦିଗ, ନିଋତ—ନୈଋତ କୋଣ, ବରୁଣ—ପଶ୍ଚିମଦିଗ, ମରୁତ୍—ବାୟୁକୋଣ, କୁବେର—ଉତ୍ତରଦିଗ, ଈଶ—ଈଶାନକୋଣ ।

**ଅଷ୍ଟନାଗ**—ପୁରାଣ ମତରେ ପୃଥିବୀକୁ ଆଠ ଦିଗରେ ଧରିଥିବା ଆଠଗୋଟି ନାଗ । ଯଥା :—ଅନନ୍ତ, ବାସୁକୀ, ପଦ୍ମ, ମହାପଦ୍ମ ତକ୍ଷକ, କୁଳିକ, କର୍କୋଟକ, ଶଙ୍ଖ ।

**ଅଷ୍ଟନାୟିକା**—ପୁରାଣୋକ୍ତ ଆଠଗୋଟି ଦେବୀ । ଯଥା :—ମଙ୍ଗଳା, ବିଜୟା, ଭଦ୍ରା, ଜୟନ୍ତୀ, ଅପରାଜିତା, ନନ୍ଦିନୀ, ନରସିଂହୀ ଓ କୌମାରୀ ।

**ଅଷ୍ଟ ପାଟବଂଶୀ**—ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ମନୋହାରିଣୀ ଅଷ୍ଟପ୍ରିୟା । ଭାଗବତ ବର୍ଣ୍ଣିତ ଯଥା—ରୁକ୍ମିଣୀ ସତ୍ୟଭାମା ସତୀ, ଭଦ୍ରା କାଳନ୍ଦୀ ଜାମ୍ବବତୀ ।
ଲକ୍ଷଣା ସତ୍ୟା ମିତ୍ରବିନ୍ଦା, ଶ୍ରୀକୃଷ୍ଣଙ୍କ ଅଷ୍ଟ ପ୍ରମଦା ।

**ଅଷ୍ଟବସୁ**—ଗଙ୍ଗାଙ୍କର ଆଠଗୋଟି ପୁଅ । ଆଠ ସଂଖ୍ୟକ ବସୁ ଦେବତା । ଯଥା :—ଅପ, ଧ୍ରୁବ, ସୋମ, ଅନଲ, ଅନିଲ, ଧର, ପ୍ରତ୍ୟୁଷ ଓ ପ୍ରଭାବ ।

**ଅଷ୍ଟଭୁଜା**—ଆଠଗୋଟି ହାତ ବିଶିଷ୍ଟ ଦୁର୍ଗାଙ୍କ ମୂର୍ତ୍ତି ।

**ଅଷ୍ଟଭୈରବ**—ଶିବଙ୍କ ଆଠଗୋଟି ସହଚର । ଯଥା :—ଅସିତାଙ୍ଗ, ଚଣ୍ଡ, ରୁରୁ, କ୍ରୋଧୋନ୍ମତ୍ତ, ଭୟଙ୍କର, କପାଳୀ, ଭୀଷଣ ଓ ସଂହାର ।

**ଅଷ୍ଟସଖା**—ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାର ସଙ୍ଗୀ ଆଠଗୋଟି ଗୋପ ବାଳକ । ପୂର୍ଣ୍ଣତମ ଚନ୍ଦ୍ରୋଦୟରେ ଅଛି :—

ଶ୍ରୀଦାମ ସୁଦାମ ସୁବଳ, ବସୁଦାମ ମଧୁମଙ୍ଗଳ
କିଙ୍କିଣୀ ଆଦି ବରୂଥକ, ପ୍ରୋକ୍ତ କୃଷ୍ଣ ଏ ସଖାଅଷ୍ଟ ।

**ଅଷ୍ଟସଖୀ**—ଭାଗବତୋକ୍ତ ରାଧାଙ୍କ ଆଠଗୋଟି ସହଚରୀ, ଯଥା—ଲଳିତା, ବିଶାଖା, ଚନ୍ଦ୍ରା, ଚମ୍ପକଲତା, ତୁଙ୍ଗବିଦ୍ୟା, ଇନ୍ଦୁରେଖା, ରଙ୍ଗଦେବୀ, ସୁଦେବୀ । ଅନ୍ୟ ମତରେ ପୂର୍ଣ୍ଣତମ ଚନ୍ଦ୍ରୋଦୟର ବର୍ଣ୍ଣିତ :—

ଲଳିତା ସବ୍ୟା ଯେ ଶ୍ୟାମଳା, ଶ୍ରୀମତୀ ହରିପ୍ରିୟା ବାଳା ।
ବିଶାଖା ଆଦି ଚନ୍ଦ୍ରମୁଖୀ, ପଦ୍ମାବତୀଏ ଅଷ୍ଟସଖୀ ।

**ଅଷ୍ଟାବକ୍ର**—ବ୍ରହ୍ମବୈବର୍ତ୍ତ ପୁରାଣ ମତରେ ମହର୍ଷି ଅସିତଙ୍କ ପୁତ୍ର ଦେବଳ, ଅପ୍ସରା ରମ୍ଭାଙ୍କ ଅଭିଶାପରୁ କୃଷ୍ଣବର୍ଣ୍ଣ ଓ ବକ୍ର ଦେହ ବିଶିଷ୍ଟ ହୋଇଗଲେ

ବୋଲି ଜଣାଯାଏ । ଜିତେନ୍ଦ୍ରିୟ ଦେବଳ ଦେବ ସହସ୍ର ବର୍ଷ ପର୍ଯ୍ୟନ୍ତ ଗନ୍ଧମାଦନ ପର୍ବତ ଗହ୍ୱରରେ ତପସ୍ୟା କରୁଥିଲେ । ଦୈବାତ୍ ରମ୍ଭା ତାଙ୍କର କନ୍ଦର୍ପ ଲାବଣ୍ୟ ମୂର୍ତ୍ତିରେ ମୋହିତା ହୋଇ ଋଷିଙ୍କର ପ୍ରଣୟପ୍ରାର୍ଥିନୀ ହେଲେ । କେବଳ ତାଙ୍କୁ ନାନା ଧର୍ମୋପଦେଶ ଦେଇ ଏଭଳି ଦୁଷ୍କର୍ମରୁ ନିରସ୍ତ ହେବାକୁ କହିଲେ ମଧ୍ୟ କାମାତୁରା ରମ୍ଭା ଶୁଣିଲେ ନାହିଁ । ଅଗତ୍ୟା ଦେବଳ କ୍ଷୁବ୍ଧ ହୋଇ ତାଙ୍କ ସହିତ ବାକ୍ୟାଳାପ ନକରି ତପସ୍ୟାମଗ୍ନ ହେଲେ । ଏଥିରେ ରମ୍ଭା କୁପିତା ହୋଇ ଶାପ ଦେଲେ – ତୁମର ଏ ରୂପ ବିରୂପ ହେଉ ଏବଂ ତୁମେ ଅଷ୍ଟବକ୍ର ହୋଇଯାଅ ।

ସେହି ଦିନଠାରୁ ଦେବଳ ବିରୂପ ଓ ଅଷ୍ଟବକ୍ର ହୋଇଗଲେ । ଭଗବତ୍ ପଦାରବିନ୍ଦ ଦର୍ଶନ ଲାଭରୁ ବଞ୍ଚିତ ହୋଇ ଅଗ୍ନିରେ ପ୍ରବେଶ କରିବା ପାଇଁ ମନସ୍ଥ କଲେ । ବିଷ୍ଣୁ ସେହିକ୍ଷଣି ଆବିର୍ଭୂତ ହୋଇ ତାଙ୍କୁ ନାନା ପ୍ରକାର ଧର୍ମ ଉପଦେଶ ଦାନ କରି ସେଥିରୁ ନିରସ୍ତ କଲେ ଏବଂ ତାଙ୍କର ଅଷ୍ଟଅଙ୍ଗ ବକ୍ର ହୋଇଥିବାର ଦେଖି ତାଙ୍କୁ ଅଷ୍ଟାବକ୍ର ନାମ ଦେଲେ ।

ମହାଭାରତ ମତରେ କିନ୍ତୁ ଏହା ଅନ୍ୟ ପ୍ରକାର । ଅଷ୍ଟାବକ୍ର କହୋଡ଼ ଋଷିଙ୍କ ଔରସରୁ ଉଦ୍ଦାଳକ କନ୍ୟା ସୁଜାତାଙ୍କ ଗର୍ଭରୁ ଜନ୍ମ ହୋଇଥିଲେ । ଗର୍ଭରେ ଥିବାବେଳେ ସେ ତାଙ୍କ ପିତାଙ୍କୁ ଓ ଶିଷ୍ୟମାନଙ୍କୁ ବେଦାଧ୍ୟୟନ ଭଲ ହେଉନାହିଁ ବୋଲି ଅପସନ୍ଦ କରିବାରୁ ତାଙ୍କ ପ୍ରତି ପିତୃ ଅଭିଶାପ ହେଲା । ସେଥିଲାଗି ତାଙ୍କର ଆଠସ୍ଥାନ ବଙ୍କା ହୋଇଗଲା ।

ପରେ ଅଷ୍ଟାବକ୍ରଙ୍କ ପିତା ଜନକ ମହର୍ଷିଙ୍କ ରାଜସଭାରେ 'ବନ୍ଦୀ' ନାମକ ତାର୍କିକଙ୍କ ଦ୍ୱାରା ପରାସ୍ତ ହୋଇ ବନ୍ଦୀ ହେଲେ । ଅଷ୍ଟାବକ୍ର ମାତାଙ୍କଠାରୁ ଏହା ଜାଣି 'ବନ୍ଦୀ'ଙ୍କୁ ପରାସ୍ତ କରି ପିତାଙ୍କୁ ଉଦ୍ଧାର କଲେ । ପିତୃ ଆଦେଶରେ ସେ ସମଙ୍ଗା ବା ସମଙ୍କ ନଦୀରେ ସ୍ନାନ କରିବାରୁ ସମଅଙ୍ଗ ବିଶିଷ୍ଟ ହୋଇଗଲେ । ଅଷ୍ଟାବକ୍ର ଜନକ ରାଜସଭାରେ ଯେଉଁସବୁ ଯୁକ୍ତିତର୍କ କରିଥିଲେ ତାହା 'ଅଷ୍ଟାବକ୍ର ସଂହିତା' ନାମରେ ଖ୍ୟାତ ।

**ଅସଙ୍ଗ**—ଚନ୍ଦ୍ରବଂଶଜ ଯୁଯୁଧାନ ବା ସାତ୍ୟକିଙ୍କର ପୁତ୍ର । (ବିଷ୍ଣୁପୁରାଣ)

**ଅସମଞ୍ଜ**—ସୂର୍ଯ୍ୟବଂଶୀୟ ପ୍ରସିଦ୍ଧ ନରପତି ସଗରଙ୍କ ଜ୍ୟେଷ୍ଠ ପୁତ୍ର । ଏହାଙ୍କର ଅପର ନାମ ଅଂଶୁଧର । (ଅଂଶୁଧର ଦେଖ)

**ଅସମଞ୍ଜସ**—ମୟ ଦାନବର ପୁତ୍ର । ମନ୍ଦୋଦରୀ ଏହାଙ୍କ ଭଗିନୀ ।

**ଅସିକ୍ନୀ**—ଦକ୍ଷ ପ୍ରଜାପତିଙ୍କ ସ୍ତ୍ରୀ ।

**ଅସିତଲୋମା**—ଜଣେ ରାକ୍ଷସ । ଦକ୍ଷ କନ୍ୟା ଦନୁଙ୍କ ଗର୍ଭରୁ ମହର୍ଷି କଶ୍ୟପଙ୍କ ଔରସରେ ଏହାଙ୍କର ଜନ୍ମ । ବ୍ରହ୍ମାଙ୍କ ପ୍ରସାଦରୁ ଅସିତଲୋମା ତ୍ରିଭୁବନ ଜୟ କରି ସ୍ୱର୍ଗରାଜ୍ୟ ଆକ୍ରମଣ କରିଥିଲେ । ଦେବତାମାନେ ପରାସ୍ତ ହୋଇ ବିଷ୍ଣୁଙ୍କ ଶରଣପ୍ରାର୍ଥୀ ହେଲେ । ବିଷ୍ଣୁଙ୍କ ଶରୀରରୁ ଅଷ୍ଟା-ଦଶଭୁଜା ମହାଲକ୍ଷ୍ମୀ ଆବିର୍ଭୂତ ହୋଇ ଏହାଙ୍କୁ ବଧ କଲେ । (ଦେବୀ ଭାଗବତ)

**ଅସ୍ତି**—କଂସାସୁରର ମାଆ ।

**ଅହଲ୍ୟା**—ମହର୍ଷି ଗୌତମଙ୍କ ପତ୍ନୀ । ଏହାଙ୍କ ପିତାଙ୍କ ନାମ ବୃଦ୍ଧାଶ୍ୱ । ଇନ୍ଦ୍ର ଅହଲ୍ୟାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଛଦ୍ମ ଭାବରେ ଗୌତମ ରୂପ ଧାରଣ କରି ତାଙ୍କ ସତୀତ୍ୱ ନଷ୍ଟ କରିଥିଲେ । ଗୌତମ ଜାଣିପାରି ଇନ୍ଦ୍ରଙ୍କୁ 'ସହସ୍ର ଭଗବାନ୍ ଭବ' ଏହି ଶାପ ଦେବା ସଙ୍ଗେ ସଙ୍ଗେ ଅହଲ୍ୟାଙ୍କୁ ପାଷାଣୀ ହେବାପାଇଁ ମଧ୍ୟ ଅଭିଶାପ ଦେଲେ । ଇନ୍ଦ୍ର ବୃଷଣହୀନ ଓ ଦେହସାକ ଯୋନିମୟ ହୋଇ-ଗଲେ । ଦେବତାଙ୍କ ପରାମର୍ଶ କ୍ରମେ ସହସ୍ର ଯୋନି ସହସ୍ର ଚକ୍ଷୁରେ ପରିଣତ ହେଲା । ସେଥିପାଇଁ ଇନ୍ଦ୍ରଙ୍କର ଅନ୍ୟନାମ ସହସ୍ରାକ୍ଷ । ପୁଣି ଇନ୍ଦ୍ରଙ୍କ ବୃଷଣ ସ୍ଥାନରେ ମେଷ ବୃଷଣ ସଂଯୋଜନା କରାଯିବାରୁ ଦେବରାଜଙ୍କର ଆଉ ଗୋଟିଏ ନାମ ହେଲା—ମେଷବୃଷଣ ।

ଅନେକ ଦିନ ଅହଲ୍ୟା ପାଷାଣୀ ହୋଇ ପଡ଼ିବା ପରେ ଶ୍ରୀରାମଚନ୍ଦ୍ର ମହର୍ଷି ବିଶ୍ୱାମିତ୍ରଙ୍କ ସହ ମିଥିଳାକୁ ସୀତାସ୍ୱୟମ୍ବର ଉଦ୍ଦେଶ୍ୟରେ ଯିବାବେଳେ ପଦରଜ ଦାନରେ ଅହଲ୍ୟାଙ୍କୁ ଶାପମୁକ୍ତ କଲେ । (ରାମାୟଣ ଓ ପଦ୍ମପୁରାଣ)



# ଆ

**ଅାତ୍ରେୟ**—ଅତ୍ରି ମହର୍ଷିଙ୍କ ପୁଅ ।

**ଆତ୍ରେୟୀ**—ଏ ଜଣେ ବଶିଷ୍ଟ ଆୟୁର୍ବେଦ ପଣ୍ଡିତ।

**ଆଦାମ୍**—ବାଇବେଲ ମତରେ ଈଶ୍ୱର ସର୍ବ ପ୍ରଥମେ ଏହାଙ୍କୁ ସୃଷ୍ଟି କରିଥିଲେ । ଆଦମ୍‌ଙ୍କ ପିଞ୍ଜରାହାଡ଼ରୁ ଇଭ୍ ନାମକ ସ୍ତ୍ରୀର ଜନ୍ମ । ଈଶ୍ୱର ଏ ଦୁହିଙ୍କୁ ଏଡେନ୍ ବଗିଚାରେ ଛାଡ଼ି ଦେଇ ଜ୍ଞାନ ବୃକ୍ଷର ଫଳ ନ ଖାଇବା ଲାଗି କହିଥିଲେ । ମାତ୍ର ପାପ ବା ଶୟତାନର ପ୍ରରୋଚନାରେ ଇଭ୍ ସେ ଫଳ ଖାଇବାରୁ, ନନେ ଈଶ୍ୱର ପୁତ୍ର ଯୀଶୁ ରକ୍ତଦାନ କରି ଏହାର ପ୍ରାୟଶ୍ଚିତ୍ତ କରିଥିଲେ ।

**ଆପସ୍ତମ୍ବ**—ଅଷ୍ଟାଦଶ ଧର୍ମଶାସ୍ତ୍ରକାରଙ୍କ ମଧ୍ୟରେ ଅନ୍ୟତମ, ଏହାଙ୍କ ପ୍ରଣୀତ ଆପସ୍ତମ୍ବ ସଂହିତା ଦଶୋଟି ଅଧ୍ୟାୟରେ ବିଭକ୍ତ । ଏଥିରେ କେବଳ ପ୍ରାୟଶ୍ଚିତ୍ତ ବିଧାନ ସବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି । କଳ୍ପସୂତ୍ର ମଧ୍ୟ ଏହାଙ୍କ ଦ୍ୱାରା ସଙ୍କଳିତ । କାହାରି କାହାରି ମତରେ କଳ୍ପସୂତ୍ର ମଧ୍ୟ ବେଦତୁଲ୍ୟ ନମସ୍ୟ ।

ଅନେକେ କୁହନ୍ତି ବୌଧାୟନ, ଆପସ୍ତମ୍ବ, ଅଶ୍ୱଳାୟନ ଓ କାତ୍ୟାୟନ ପ୍ରଭୃତିଙ୍କ ସଙ୍କଳିତ କଳ୍ପସୂତ୍ରାଦି ସର୍ବଥା ବର୍ଜନୀୟ । ଏମାନେ ଶ୍ରୌତସୂତ୍ର, ଗୃହ୍ୟସୂତ୍ର ଓ ଧର୍ମସୂତ୍ର ମଧ୍ୟ ପ୍ରଣୟନ କରିଥିଲେ ।

ୟୁରୋପୀୟ ଜ୍ୟାମିତିକ ଇଉକ୍ଲିଡ଼ଙ୍କ ପ୍ରଥମ ଅଧ୍ୟାୟର ୪୭ ପ୍ରତିଜ୍ଞାଟି ପିଥାଗୋରସଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା ବୋଲି ଐତିହାସିକମାନେ ଏବେ ମତ ଦେଉଛନ୍ତି କିନ୍ତୁ ପ୍ରାଚୀନ ଭାରତର ଆର୍ଯ୍ୟ ମନୀଷୀ ମହର୍ଷି ବୌଧାୟନ, କାତ୍ୟାୟନ ଓ ଆପସ୍ତମ୍ବ ଏହା ବହୁକାଳ ପୂର୍ବରୁ ଜାଣିଥିଲେ ।

ତାହା ହେଲା—ଗୋଟିଏ ବର୍ଗକ୍ଷେତ୍ରର କର୍ଣ୍ଣର ବର୍ଗ ସେହି କ୍ଷେତ୍ରର ଦ୍ୱିଗୁଣ । କୌଣସି ଆୟତ କ୍ଷେତ୍ରର କର୍ଣ୍ଣର ବର୍ଗ ସେହି ଆୟତ କ୍ଷେତ୍ରର କର୍ଣ୍ଣ ସମ୍ମୁଖୀନ ଦୁଇ ବାହୁର ବର୍ଗର ସମଷ୍ଟି ସହିତ ସମାନ । ( ୧୮୭୫ ଖ୍ରୀଷ୍ଟାବ୍ଦର ବଙ୍ଗୀୟ ଏସିଅଟିକ୍ ସୋସାଇଟି ଜର୍ଣ୍ଣେଲ, ୪୪ଶ ଖଣ୍ଡ )

**ଆଡ଼ି**—ଦୈତ୍ୟରାଜ ଅନ୍ଧକ ଏହାଙ୍କର ପିତା । ଅନ୍ଧକ ମହାଦେବଙ୍କ ଦ୍ୱାରା ନିହତ ହେବା ପରେ ଆଡ଼ି ପ୍ରତିଶୋଧ ନେବା ଆଶାରେ କଠୋର ତପସ୍ୟା କରିଥିଲେ । ବ୍ରହ୍ମା ଏ ତପସ୍ୟାରେ ସନ୍ତୁଷ୍ଟ ହୋଇ ଅଭୀଷ୍ଟ ଦେବାକୁ ପ୍ରତିଶ୍ରୁତ ହେବାରୁ ଆଡ଼ି କହିଲେ, 'ଆପଣ ମୋତେ ଏଭଳି ବର ଦିଅନ୍ତୁ ମୁଁ ଯେପରି ପିତୃହନ୍ତାର କ୍ଷତି ସାଧନ କରିବି ।' ବ୍ରହ୍ମା କହିଲେ, 'ତୁମେ ନିଜ ରୂପ ପରିତ୍ୟାଗ ନ କଲେ କେହି ତୁମକୁ ବଧ କରି ପାରିବେ ନାହିଁ ।' ଆଡ଼ି ସୁଯୋଗ ଦେଖି ପାର୍ବତୀ ନ ଥିବା ସମୟରେ ସର୍ପ ରୂପ ଧାରଣ କରି ମହାଦେବଙ୍କ ନିକଟକୁ ଗଲେ । ହଠାତ୍ ଶିବ ବିନାଶାର୍ଥେ ଅନ୍ୟ ବେଶ ଧାରଣ କରିବାରୁ ଶିବ ଜାଣିପାରି ତାହାଙ୍କୁ ବଧ କଲେ ।

**ଆୟାନ୍**—ନନ୍ଦରାଜପତ୍ନୀ ଯଶୋଦାଙ୍କ ଭାଇ । ବୃଷଭାନୁ-ନନ୍ଦିନୀ ଶ୍ରୀରାଧା ଏହାଙ୍କର ପତ୍ନୀ । ଆୟାନ ନପୁଂସକ ଥିଲେ । କେହି କେହି ଏହାଙ୍କୁ ଚନ୍ଦ୍ରସେନ ବୋଲି କହନ୍ତି । ୬ଭକ୍ତକବି ଗୌରଚରଣ ଅଧିକାରୀ 'ଶ୍ରୀକୃଷ୍ଣ ଲୀଳା' ଗ୍ରନ୍ଥରେ ଏହାଙ୍କୁ ଚନ୍ଦ୍ରସେନ ବୋଲି ବର୍ଣ୍ଣନା କରିଛନ୍ତି ।

**ଆୟୁ**—ଚନ୍ଦ୍ରବଂଶୀୟ ବିଖ୍ୟାତ ରାଜା ନହୁଷଙ୍କର ପିତା । ଆୟୁଙ୍କର ପାଞ୍ଚପୁଅ ମଧ୍ୟରେ ମହାରାଜ ନହୁଷ ଜ୍ୟେଷ୍ଠ ଥିଲେ ।

**ଆୟୋଦଧୌମ୍ୟ**—ବିଖ୍ୟାତ ପ୍ରାଚୀନ ଋଷି । ପାଣ୍ଡବଙ୍କର ପୁରୋଧା । ଏହାଙ୍କର ଉପମନ୍ୟୁ, ଆରୁଣି ଓ ବେଦ ନାମରେ ତିନୋଟି ସତ୍ ଶିଷ୍ୟ ଥିଲେ ।

**ଆରୁଣି**—ପାଞ୍ଚାଳଦେଶବାସୀ ବ୍ରାହ୍ମଣ । ଆୟୋଦ ଧୌମ୍ୟଙ୍କ ଶିଷ୍ୟ । ଦିନେ ଧୌମ୍ୟ ଆରୁଣିଙ୍କୁ କହିଲେ, 'ତୁମେ ବର୍ତ୍ତମାନ ଯାଇ ବିଲରୁ ବୋହି ଯାଉଥିବା ପାଣି ବନ୍ଦ କର ।' ଆରୁଣି ସେହିକ୍ଷଣି ବିଲକୁ ଯାଇ ବହୁତ ଯତ୍ନ କଲେ, କିନ୍ତୁ ପାଣି ବନ୍ଦ ହେଲା ନାହିଁ । ଶେଷକୁ ପାଣି ବୋହି ଆସୁଥିବା ଆଡ଼ି ପାଖେ ଲମ୍ବ ହୋଇ ଶୋଇ ପଡ଼ିଲେ । ସନ୍ଧ୍ୟା ହେଲା, ତଥାପି ଆରୁଣି ସେଠାରେ ଶୋଇ ରହିଲେ । କ୍ରମେ ରାତ୍ରି ହୋଇଯିବାରୁ ସମସ୍ତେ ଆଶ୍ରମକୁ ଫେରିଲେ, ମାତ୍ର ଆରୁଣି ଆସିଲେ ନାହିଁ । ଧୌମ୍ୟ ଶିଷ୍ୟମାନଙ୍କ ସହିତ କ୍ଷେତକୁ ଯାଇ ଆରୁଣି ଆରୁଣି ବୋଲି ବଡ଼ ପାଟିରେ ଡାକ ପକାଇଲେ । ଆରୁଣି କାଦୁଅ ସରସର ହୋଇ ଉଠି ଗୁରୁଙ୍କୁ ଉତ୍ତର ଦେଲେ, 'ଯେତେ ଯତ୍ନ କଲେ ସୁଦ୍ଧା ପାଣି ବନ୍ଦ ନ ହେବାରୁ ବାଧ୍ୟ ହୋଇ ଆପଣଙ୍କ

ଅନେଦେଶମତେ ଏଠାରେ ଶୋଇ ରହିଲ ।' ଗୁରୁ ପରମ ପରିତୁଷ୍ଟ ହୋଇ କହିଲେ, 'ତୁମେ କେଦାର ଖଣ୍ଡିକ ଉଦ୍ଧାର ବା ରକ୍ଷା କରିବାରୁ ଆଜିଠାରୁ ତୁମର ନାମ ଉଦ୍ଦାଳକ ହେଉ । ତୁମେ ସବୁ ଶାସ୍ତ୍ରରେ ବିଚକ୍ଷଣ ପାଣ୍ଡିତ୍ୟ ଲାଭ କର ।' (ମହାଭାରତ)

**ଆସ୍ତିକ** — ମହର୍ଷି ଜରତ୍କାରୁ ଏହାଙ୍କର ପିତା । ସର୍ପରାଜ ବାସୁକୀଙ୍କ ଭଗିନୀ ଜରତ୍କାରୀ ମାତା । ପିତୃକୁଳର ଦୁର୍ଦ୍ଦଶା ମୋଚନାର୍ଥେ ଜରତ୍କାରୁ, ଜରତ୍କାରୀଙ୍କ ବିବାହ କରିଥିଲେ । ଆସ୍ତିକ ଜନ୍ମ ହେବା ପରେ ପତ୍ନୀଙ୍କୁ ତ୍ୟାଗ କରି ଜରତ୍କାରୁ ତପସ୍ୟାର୍ଥେ ଗମନ କଲେ । ପାଣ୍ଡୁକୁଳୋଦ୍ଭବ ମହାରାଜ ଜନ୍ମେଜୟଙ୍କ ସର୍ପଯଜ୍ଞ ସମୟରେ ଏହି ଆସ୍ତିକ ମାତୁଳବଂଶକୁ ରକ୍ଷା କରିଥିଲେ, ତେଣୁ ଆସ୍ତିକ ନାମ ସ୍ମରଣ କଲେ ସର୍ପ ଭୟ ନିବାରିତ ହୁଏ ବୋଲି ପୁରାଣର ମତ । (ମହାଭାରତ)

**ଆହୁକ** — ପ୍ରାଚୀନକାଳରେ ମୃତ୍ତିକାବତୀ ନଗରୀରେ ଯେଉଁ ରାଜାମାନେ ରାଜତ୍ୱ କରୁଥିଲେ ସେମାନେ ଭୋଜ ନାମରେ ପ୍ରସିଦ୍ଧ । ଅଭିଜିତ୍ ଏହି ଭୋଜବଂଶର ଜଣେ ପ୍ରସିଦ୍ଧ ନରପତି । ଅଭିଜିତଙ୍କର ଆହୁକ ନାମରେ ଏକ ପୁତ୍ର ଓ ଆହୁକୀ ନାମ୍ନୀ ଏକ କନ୍ୟା ଥିଲେ । ଆହୁକ, ଭୋଜବଂଶୀୟ ନୃପତିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ଆହୁକୀ ଅବନ୍ତୀ ନୃପତିଙ୍କୁ ବିବାହ କରିଥିଲେ । କାଶ୍ୟା ଆହୁକଙ୍କର ପତ୍ନୀ । ଏହାଙ୍କ ଗର୍ଭରୁ ଦେବକ ଓ ଉଗ୍ରସେନ ଦୁଇ ପୁତ୍ର ଜାତ ହୋଇଥିଲେ । ଦେବକ ଶ୍ରୀକୃଷ୍ଣଙ୍କ ମାତାମହ । ଉଗ୍ରସେନ କଂସଙ୍କର ପିତା

●



**ଇକ୍ଷ୍ୱାକୁ** — ବୈବସ୍ୱତ ମନୁଙ୍କ ପୁଅ । ଅଯୋଧ୍ୟାର ସୂର୍ଯ୍ୟବଂଶୀୟ ରାଜାମାନଙ୍କ ଆଦିପୁରୁଷ । କୁକ୍ଷି ଏହାଙ୍କର ପୁତ୍ର । (ରାମାୟଣ)

(୨) ବାରାଣସୀ ରାଜା ସୁବନ୍ଧୁଙ୍କ ପୁତ୍ର । ଇକ୍ଷୁ ଦଣ୍ଡ ଭେଦ କରି ଜନ୍ମ ହୋଇଥିବାରୁ ଏହାଙ୍କ ନାମ ଇକ୍ଷ୍ୱାକୁ ।

**ଇଡ଼ା**—ବୈବସ୍ୱତ ମନୁଙ୍କ କନ୍ୟା । ପ୍ରଜା ସୃଷ୍ଟି ପାଇଁ ମନୁ ଯଜ୍ଞ କରିବା ଇଚ୍ଛାରେ ଆଣିଥିବା ସଦ୍ୟଃଜାତ ଜଳରେ ଘିଅ, ଲହୁଣୀ ଓ ଛେନା ମିଶାଇ ଦେଲେ । ବର୍ଷେ ପରେ ଏଥିରୁ ଇଡ଼ା ନାମ୍ନୀ କନ୍ୟା ଉତ୍ପତ୍ତି ହୋଇଥିଲା, ବୁଧ ଏହାଙ୍କୁ ବିବାହ କଲେ । ଏହାଙ୍କ ଗର୍ଭରୁ ବୁଧ ପୁତ୍ର ପୁରୂରବା ଜନ୍ମ ହୋଇଥିଲେ ।

(ଶତପଥ-ବ୍ରାହ୍ମଣ)

**ଇନ୍ଦୁମତୀ**—ବିଦର୍ଭ ରାଜକୁମାରୀ । ଅଯୋଧ୍ୟାଧିପତି ରଘୁରାଜଙ୍କ ପୁତ୍ର ଅଜଙ୍କୁ ଇନ୍ଦୁମତୀ ସ୍ୱୟମ୍ବର ସଭାରେ ବରଣ କରିଥିଲେ ! ଦଶରଥ ଏଇ ଦମ୍ପତିର ସନ୍ତାନ । ଏକଦା ଅଜ ଏହାଙ୍କ ସହିତ ଉଦ୍ୟାନ ବିହାର କରୁଥିବାବେଳେ ଆକାଶରୁ ନାରଦଙ୍କ ହସ୍ତଚ୍ୟୁତ ପାରିଜାତ ମାଳା ଖସି ପଡ଼ିବାରୁ ଇନ୍ଦୁମତୀ ପ୍ରାଣତ୍ୟାଗ କଲେ । ଅପ୍‌ସରା ହରିଣୀ ତୃଣବିନ୍ଦୁ ମହର୍ଷିଙ୍କ ତପୋଭଙ୍ଗ ଦୋଷରୁ ଇନ୍ଦୁମତୀ ହୋଇ ଜନ୍ମ ହୋଇଥିଲେ । ଦେବ ପୁଷ୍ପମାଳ୍ୟ ତାଙ୍କ ଦେହ ସ୍ପର୍ଶ କରିବା ମାତ୍ରେ ଓ ସେ ତାହା ଦେଖିବାକ୍ଷଣି ଶାପମୁକ୍ତ ହେବେ ବୋଲି ଋଷିଙ୍କର ଆଦେଶ ହୋଇଥିଲା ।

**ଇନ୍ଦ୍ର**—ସ୍ୱର୍ଗର ରାଜା । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଛଡ଼ା ଅନ୍ୟାନ୍ୟ ଦେବତାମାନେ ଏହାଙ୍କ ଅଧୀନସ୍ଥ । ଏହାଙ୍କୁ ଦେବରାଜ କହନ୍ତି । ପୁଲୋମା ରାକ୍ଷସ କନ୍ୟା ଶଚୀ ଏହାଙ୍କର ପତ୍ନୀ । ମଧ୍ୟମ ପାଣ୍ଡବ ଅର୍ଜୁନ ଏଇ ଇନ୍ଦ୍ରଙ୍କ ଔରସରେ କୁନ୍ତୀଙ୍କ ଗର୍ଭରୁ ଜନ୍ମିଥିଲେ । ଇନ୍ଦ୍ରଙ୍କର ପିତା କଶ୍ୟପ ଓ ମାତା ଅଦିତି । ବୃତ୍ର ବଧ ନିମିତ୍ତ ଦେବଶିଳ୍ପୀ ବିଶ୍ୱକର୍ମା ଦଧିଚିମହର୍ଷିଙ୍କ ଅସ୍ଥିରେ ବଜ୍ର ନିର୍ମାଣ କରି ଏହାଙ୍କୁ ଦେଇଥିଲେ । ସମୁଦ୍ର ମନ୍ଥନ ପରେ ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଅଶ୍ୱ ଓ ପାରିଜାତ ବୃକ୍ଷ ଇନ୍ଦ୍ରଙ୍କ ଭାଗରେ ପଡ଼ିଥିଲା । ଏହାଙ୍କର ରାଜପ୍ରାସାଦର ନାମ ବୈଜୟନ୍ତ ଓ ପୁତ୍ରର ନାମ ଜୟନ୍ତ ।

ଇନ୍ଦ୍ର ସହସ୍ରଲୋଚନ ହେବାର ଆଉ ଗୋଟିଏ କାରଣ ମହାଭାରତ ଆଦିପର୍ବରୁ ମିଳେ । ଯେତେବେଳେ ସୁନ୍ଦ ଓ ଉପସୁନ୍ଦ ସ୍ୱର୍ଗରାଜ୍ୟ ଆକ୍ରମଣ କରି ଇନ୍ଦ୍ରଙ୍କୁ ପରାସ୍ତ କଲେ, ସେ ସମୟରେ ବ୍ରହ୍ମା ଏଇ ରାକ୍ଷସମାନଙ୍କ ବଧ ନିମିତ୍ତ ବିଶ୍ୱକର୍ମାଙ୍କୁ ଗୋଟିଏ ରୂପବତୀ ସୁନ୍ଦରୀ କନ୍ୟା ନିର୍ମାଣ କରିବା ପାଇଁ ଆଦେଶ ଦେଲେ । ବିଶ୍ୱକର୍ମା ସମସ୍ତ ପ୍ରାଣୀମାନଙ୍କର ଉତ୍କୃଷ୍ଟ ଅଙ୍ଗରୁ ତିଳ ତିଳ ପ୍ରମାଣ ସୌନ୍ଦର୍ଯ୍ୟ ସଂଗ୍ରହ କରି ଯେଉଁ ଲାବଣ୍ୟବତୀ ରମଣୀଙ୍କୁ ନିର୍ମାଣ କଲେ ତାଙ୍କୁ ତିଲୋତ୍ତମା କୁହାଗଲା । ତିଲୋତ୍ତମା ବ୍ରହ୍ମାଙ୍କ ଆଦେଶରେ ସୁନ୍ଦ

ଓ ଉପସୁନ୍ଦଙ୍କୁ ବଧ କରିବା ପାଇଁ ଯିବା ପୂର୍ବରୁ ଶିବ ଓ ଇନ୍ଦ୍ରଙ୍କୁ ପ୍ରଦକ୍ଷିଣ କରିଥିଲେ । ଶିବ ଏହି ପରମାସୁନ୍ଦରୀ ରମଣୀ ଦେଖିବା ପାଇଁ ପଞ୍ଚମୁଖ ଓ ଇନ୍ଦ୍ର ସହସ୍ର ଲୋଚନ ବିଶିଷ୍ଟ ହୋଇଥିଲେ ।

ବ୍ରହ୍ମବୈବର୍ତ୍ତ ଓ ରାମାୟଣରେ ଆଦିକାଣ୍ଡରେ କିନ୍ତୁ ଇନ୍ଦ୍ରଙ୍କ ସହସ୍ର ଲୋଚନ ହେବା ଭିନ୍ନ ଭାବରେ ବର୍ଣ୍ଣିତ ହୋଇଅଛି । (ଅହଲ୍ୟା ଦେଖ)

**ଇନ୍ଦ୍ରଜିତ୍**—ରାକ୍ଷସରାଜ ରାବଣ. ଏହାଙ୍କର ପିତା ଓ ମୟ ଦୁହିତା ମନ୍ଦୋଦରୀ ମାତା । ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠ ହୋଇଥିବାରୁ ଏ ଲଙ୍କାର ଯୁବରାଜ ରୂପେ ଅଭିଷିକ୍ତ ହେଉଥିଲେ । ଏହାଙ୍କର ପ୍ରକୃତ ନାମ ମେଘନାଦ, ପରେ ଦେବରାଜ ଇନ୍ଦ୍ରଙ୍କୁ ପରାସ୍ତ କରି ବନ୍ଦୀ କରିବାରୁ ବ୍ରହ୍ମା ଏହାଙ୍କୁ ଇନ୍ଦ୍ରଜିତ ଉପାଧି ଦେଇଥିଲେ । ଲଙ୍କାର ନିକୁମ୍ଭିଲ ବଟ ମୂଳ ଏହାଙ୍କର ଯୋଗ ପୀଠ । ବିପଦ ସମୟରେ ସେ ଏଠାରେ ବସି ଅଗ୍ନି ପୂଜାକରି ଛାଗଳ ଶୋଣିତରେ ହୋମ କରିବା ଦ୍ୱାରା ଅଗ୍ନି ଭିତରୁ ଦେବଦଳନ ନାମକ ରଥ ଓ ଅକ୍ଷୟ ତୂଣ ଉତ୍ପତ୍ତି ହେଉଥିଲା । ସେ ଏହିପରି ଯଜ୍ଞ କରି ରାମାୟଣ ଯୁଦ୍ଧରେ ରାମଚନ୍ଦ୍ର ତଥା ବାନରସେନାଙ୍କୁ ପରାସ୍ତ କରିଥିଲେ । ପରିଶେଷରେ କିନ୍ତୁ ବିଭୀଷଣ ଏହି ଯଜ୍ଞ ଭଙ୍ଗ କରିବା ପାଇଁ ରାମଚନ୍ଦ୍ରଙ୍କୁ ପରାମର୍ଶ ଦେବାରୁ ଲକ୍ଷ୍ମଣ ହନୁମାନ, ଅଙ୍ଗଦ ଓ ବିଭୀଷଣ ପ୍ରଭୃତି ସେଠାକୁ ଯାଇ ଯଜ୍ଞ ଭଙ୍ଗ କଲେ । ସେହିଥର ଇନ୍ଦ୍ରଜିତ ଲକ୍ଷ୍ମଣଙ୍କ ସହିତ ଯୁଦ୍ଧକରି ପ୍ରାଣ ହରାଇଲେ । (ରାମାୟଣ)

**ଇନ୍ଦ୍ରଦ୍ୟୁମ୍ନ**— ନାରଦ ପୁରାଣରୁ ଜଣାଯାଏ ଯେ ଇନ୍ଦ୍ରଦ୍ୟୁମ୍ନ ସତ୍ୟ ଯୁଗର ରାଜା । ସେ ଏକାନ୍ତ ବିଷ୍ଣୁପରାୟଣ ଥିଲେ । ବିଷ୍ଣୁ ପୂଜା ନିମିତ୍ତ ସେ ସକଳ ତୀର୍ଥ ପର୍ଯ୍ୟଟନ କରି ପରିଶେଷରେ ନୀଳାଚଳ ଧାମ ବା ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚିଲେ । ଏଠାରେ ସେ ଗୋଟିଏ ଅଶ୍ୱମେଧ ଯଜ୍ଞ ଆୟୋଜନ କରି ବ୍ରାହ୍ମଣ-ମାନଙ୍କୁ ପ୍ରଚୁର ଭୂସମ୍ପତ୍ତି ଦାନ କରିଥିଲେ । ଗୋଟିଏ ବିଷ୍ଣୁ ମନ୍ଦିର ମଧ୍ୟ ନିର୍ମାଣ କଲେ । କିନ୍ତୁ ମନ୍ଦିର ମଧ୍ୟରେ କିପରି ମୂର୍ତ୍ତି ପ୍ରତିଷ୍ଠା କରିବାକୁ ହେବ ସେହି ଚିନ୍ତାରେ ପ୍ରାୟୋପବେଶନ ବ୍ରତ ଆରମ୍ଭ କଲେ । ତାଙ୍କୁ ସ୍ୱପ୍ନ ହେଲା— ତୁମେ କାଲି ଅତି ପ୍ରତ୍ୟୁଷରୁ କୁଠାର ଧରି ସମୁଦ୍ର କୂଳକୁ ଗଲେ ଗୋଟିଏ ବୃହତ୍ କାଷ୍ଠ ଖଣ୍ଡ ଦେଖି ପାରିବ । ସେହି କାଷ୍ଠ ଖଣ୍ଡକୁ ନିଜ ହସ୍ତରେ କାଟି ସେଠୁ ତାହା ଆଣି ମନୋମତମୂର୍ତ୍ତି ନିର୍ମାଣ କରିବ । ଇନ୍ଦ୍ରଦ୍ୟୁମ୍ନ ସେହିପରି କଲେ ।

ଏତିକବେଳେ ବିଷ୍ଣୁ ଓ ବିଶ୍ୱକର୍ମା ବ୍ରାହ୍ମଣ ବେଶରେ ଆସି ତାଙ୍କ ପାଖରେ ପହଞ୍ଚିଲେ । ବିଷ୍ଣୁ ରାଜାଙ୍କୁ କାଷ୍ଠ ଛେଦନ କରିବାର ଅଭିପ୍ରାୟ ପଚାରିବାରୁ ରାଜା ଯଥୋଚିତ ଉତ୍ତର ପ୍ରଦାନ କଲେ । ବିଷ୍ଣୁ କହିଲେ—"ଆପଣଙ୍କର ଉଦ୍ଦେଶ୍ୟ ଅବଶ୍ୟ ମହତ୍ କିନ୍ତୁ ଆପଣ ଏ କଠୋର କର୍ମ ସାଧନ କରି ପାରିବେ କି ନା ସନ୍ଦେହ । ମୋ ସହିତ ବିଶ୍ୱକର୍ମାଙ୍କ ପରି ଜଣେ ଶିଳ୍ପୀ ଅଛନ୍ତି । ସେ ଆପଣଙ୍କୁ ମୂର୍ତ୍ତି ତିଆରି କରିଦେବେ ।" ଇନ୍ଦ୍ରଦ୍ୟୁମ୍ନ ଏଥିରେ ସମ୍ମତ ହେବାରୁ ବ୍ରାହ୍ମଣରୂପୀ ବିଶ୍ୱକର୍ମା କୃଷ୍ଣ, ବଳରାମ ଓ ସୁଭଦ୍ରାଙ୍କର ତିନି ମୂର୍ତ୍ତି ନିର୍ମାଣ କରି ଦେଇଥିଲେ ।

(୨) ମହାଭାରତ ବନପର୍ବରେ ଯେଉଁ ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ଲେଖାଅଛି ସେ ମାର୍କଣ୍ଡେୟ ମହର୍ଷିଙ୍କ ଠାରୁ ଅଧିକ ପ୍ରାଚୀନ । ସେ କ୍ଷୀଣପୁଣ୍ୟ ହେବାରୁ ସ୍ୱର୍ଗଚ୍ୟୁତ ହୋଇ ପରେ ଅନେକ ଦିନ ଉତ୍ତାରୁ ପୁନଶ୍ଚ ସ୍ୱର୍ଗକୁ ପ୍ରସ୍ଥାନ କରିଥିଲେ ।

**ଇରବାନ୍**—ତୃତୀୟ ପାଣ୍ଡବ ଅର୍ଜୁନ ଏହାଙ୍କର ପିତା । ନାଗରାଜ ଐରାବତଙ୍କ ବିଧବା କନ୍ୟା ମାତା । ପକ୍ଷୀରାଜ ଗରୁଡ଼ ଐରାବତଙ୍କ ଜାମାତାଙ୍କୁ ବଧ କରିଥିଲେ । ଦୁଃଖଗ୍ରସ୍ତ ଐରାବତ ଏହି କନ୍ୟାଟିକୁ ଅର୍ଜୁନଙ୍କୁ ସମ୍ପ୍ରଦାନ କଲେ । ଇରବାନ୍ ଏହି ଦମ୍ପତିଙ୍କର ସନ୍ତାନ । ସେ କୁରୁକ୍ଷେତ୍ର ଯୁଦ୍ଧରେ ପାଣ୍ଡବ ପକ୍ଷ ଅବଲମ୍ବନ କରି ଘୋର ଯୁଦ୍ଧ କରିଥିଲେ । କୌରବ-ପକ୍ଷୀୟ ଆର୍ଯ୍ୟଶୃଙ୍ଗ ରାକ୍ଷସ ଏହାଙ୍କୁ ବଧ କଲେ । (ମହାଭାରତ)

**ଇଳା**—ବୈବସ୍ୱତ ମନୁଙ୍କ କନ୍ୟା । ବଶିଷ୍ଠଙ୍କ ପ୍ରସାଦରୁ ପୁରୁଷ ହେବାପରେ କୁମାର-ବନକୁ ଯାଇ ପୁନର୍ବାର ସ୍ତ୍ରୀତ୍ୱ ପ୍ରାପ୍ତି କରିଥିଲେ । ବୁଧ ଏହାଙ୍କ ସ୍ୱାମୀ । ପୁରୁରବା ଏହାଙ୍କ ପୁତ୍ର ।

(୨) ବାୟୁଙ୍କ କନ୍ୟା । ଧ୍ରୁବଙ୍କ ପତ୍ନୀ । ଏହାଙ୍କ ଗର୍ଭରୁ ଉତ୍କଳ ନାମକ ପୁତ୍ର ଓ ଆଉ ଗୋଟିଏ କନ୍ୟା ଜାତ ହୋଇଥିଲେ ।

**ଇଳାବିଳା**—ଯକ୍ଷରାଜ କୁବେରଙ୍କ ମାତା । ବିଶ୍ରବାମହର୍ଷିଙ୍କ ପତ୍ନୀ । ମାତାଙ୍କ ନାମ ଅନୁସାରେ କୁବେରଙ୍କୁ ଐଳବିଳ ବୋଲି କହନ୍ତି । (ରାମାୟଣ)

**ଇଲ୍ୱଳ**—ରାକ୍ଷସ ବିଶେଷ । ମହାମୁନି ଅଗସ୍ତି ଏହାର କନିଷ୍ଠ ଭ୍ରାତା ବାତାପିକୁ ଖାଇ ଜୀର୍ଣ୍ଣ କରିଦେଇଥିଲେ । ବ୍ରାହ୍ମଣ ରୂପରେ ଏହି ଇଲ୍ୱଳ ବହୁତ ମୁନି-ମାନଙ୍କର ପ୍ରାଣ ସଂହାର କରିଥିଲେ । ପରିଶେଷରେ ଅଗସ୍ତି ଏହାର ଗର୍ବ ଖର୍ବ କରିଥିଲେ । (ରାମାୟଣ)



**ଉଗ୍ର**—ଶିବଙ୍କର ମୂର୍ତ୍ତି ବିଶେଷ । ଶିବ ଅଷ୍ଟମୂର୍ତ୍ତି ବିଶିଷ୍ଟ । କ୍ଷିତି ମୂର୍ତ୍ତି ଶର୍ବ, ଅପ୍ ବା ଜଳ ମୂର୍ତ୍ତି ଭବ, ତେଜ ବା ଅଗ୍ନି ମୂର୍ତ୍ତି ରୁଦ୍ର, ମରୁତ୍ ବା ବାୟୁ ମୂର୍ତ୍ତି ଉଗ୍ର, ବ୍ୟୋମ ବା ଆକାଶ ମୂର୍ତ୍ତି ପଶୁପତି, ଚନ୍ଦ୍ର ମୂର୍ତ୍ତି ମହାଦେବ ବା ସୂର୍ଯ୍ୟ ମୂର୍ତ୍ତି ଈଶାନ ।

**ଉଗ୍ରଚଣ୍ଡା**—ଦୁର୍ଗାଙ୍କର ମୂର୍ତ୍ତି ବିଶେଷ । ଆଶ୍ୱିନ କୃଷ୍ଣ ନବମୀ ତିଥିରେ ଏହି ଦେବୀ ମୂର୍ତ୍ତି ହିନ୍ଦୁ ଗୃହରେ ପୂଜିତ ହୁଅନ୍ତି । ଏ ମୂର୍ତ୍ତି କୋଟି ଯୋଗିନୀ ପରିବୃତା ଓ ଅଷ୍ଟାଦଶ ଭୁଜ ବିଶିଷ୍ଟା । ସତୀ ବା ପାର୍ବତୀ ଏହି ରୂପରେ ଦକ୍ଷଯଜ୍ଞ ଧ୍ୱଂସ କରିଥିଲେ । ଦକ୍ଷ ପ୍ରଜାପତି ଆଷାଢ଼ ପୂର୍ଣ୍ଣିମା ଦିନ ଦ୍ୱାଦଶ ବର୍ଷ ବ୍ୟାପୀ ଯଜ୍ଞ ଆରମ୍ଭ କରିଥିଲେ । ସେ ସମସ୍ତଙ୍କୁ ନିମନ୍ତ୍ରଣ କରିଥିଲେ । ମାତ୍ର ଶିବଙ୍କୁ ଶ୍ମଶାନାଧିପତି ବୋଲି ଆମନ୍ତ୍ରଣ କଲେନାହିଁ । ସତୀଙ୍କ ମନରେ ଘୋର ଦୁଃଖ ହେଲା । ସେ ଶିବଙ୍କ ଅନୁମତି ନେଇ ଯଜ୍ଞ ସ୍ଥଳକୁ ଗମନ କଲେ । ଦକ୍ଷ ତାଙ୍କୁ ଅନାହୂତ ଭାବରେ ଉପସ୍ଥିତ ହେବାର ଦେଖି ସତୀଙ୍କ ସମକ୍ଷରେ କେବଳ ଶିବନିନ୍ଦା କରିବାକୁ ଲାଗିଲେ । ସତୀ କିନ୍ତୁ ପତିନିନ୍ଦା ସହି ପାରିଲେ ନାହିଁ । କ୍ରୋଧ ଓ ଅପମାନରେ ଯଜ୍ଞ କୁଣ୍ଡରେ ଦେହତ୍ୟାଗ କଲେ । ମହାଦେବ ଏ ସମ୍ବାଦ ପ୍ରାପ୍ତି ମାତ୍ରେ ଭୂତ ପ୍ରେତ ପରିବେଷ୍ଟିତ ହୋଇ କ୍ରୋଧରେ ଧାବମାନ ହେଲେ । ସତୀ ଉଗ୍ରଚଣ୍ଡା ରୂପ ଧାରଣ କରି ଏଥିରେ ଯୋଗଦେଲେ । ଦକ୍ଷ ଯଜ୍ଞ ଧ୍ୱଂସ ହେଲା । (କାଳିକା ପୁରାଣ)

**ଉଗ୍ରତାରା**—ଦୁର୍ଗାଙ୍କର ମୂର୍ତ୍ତି ବିଶେଷ । କେହି କେହି ଏହାଙ୍କୁ ମାତଙ୍ଗୀ ବୋଲି କହନ୍ତି । ଶୁମ୍ଭ ନିଶୁମ୍ଭ ଅତ୍ୟାଚାରରେ ଉତ୍ପୀଡ଼ିତ ହୋଇ ଦେବତାମାନେ ହିମାଳୟ ପାଦଦେଶସ୍ଥ ମତଙ୍ଗ ମହର୍ଷିଙ୍କ ଆଶ୍ରମରେ ସମବେତ ହୋଇ ଭଗବତୀଙ୍କୁ ଆରାଧନା କଲେ । ଭଗବତୀ ମତଙ୍ଗ-ପତ୍ନୀ ମାତଙ୍ଗୀ ରୂପ ଧାରଣ କରି ଆବିର୍ଭୂତ ହେଲେ । ଦୈବସ୍ତୁତ ଯୋଗେ ହଠାତ୍ ସେହି ମୁନିପତ୍ନୀଙ୍କ ଦେହରୁ ଏକ ଦିବ୍ୟ ମୂର୍ତ୍ତି ଦୃଷ୍ଟ ହେଲା । ଏହି ମୂର୍ତ୍ତି ଚତୁର୍ଭୁଜ ବିଶିଷ୍ଟା, କୃଷ୍ଣବର୍ଣ୍ଣା ଓ ନୃମୁଣ୍ଡମାଳିନୀ, ଦକ୍ଷିଣ ପାର୍ଶ୍ୱସ୍ଥ ଭୁଜ ଦ୍ୱୟରେ ଖଡ୍ଗ ଓ ଇନ୍ଦୀବର, ବାମ ପାର୍ଶ୍ୱସ୍ଥ ଭୁଜ ଦ୍ୱୟରେ କଟାରି ଓ ଖର୍ପର, ଚକ୍ଷୁ ରକ୍ତବର୍ଣ୍ଣ ବିଶିଷ୍ଟ ।

ପରିଧାନ କୃଷ୍ଣ ବସ୍ତ୍ର, ବାମ ପାଦ ଶବ ହୃଦୟରେ ଓ ଦକ୍ଷିଣ ପଦ ସିଂହୋପରି ସ୍ଥାପିତ । ଋଷିମାନେ ଏହି ମୂର୍ତ୍ତିକୁ ଉଚ୍ଛିଷ୍ଟ ଆଖ୍ୟା ଦେଇଥିଲେ । ମାତଙ୍ଗୀଙ୍କ ଶରୀରରୁ ଉତ୍ପନ୍ନ ହୋଇଥିବାରୁ ଏହାଙ୍କର ଅନ୍ୟନାମ ମାତଙ୍ଗୀ ।

**ଉଗ୍ରସେନ**—ଯଦୁବଂଶୀୟ ରାଜା ଆହୁକଙ୍କ ପୁତ୍ର । କଂସାସୁରଙ୍କ ପିତା । ଆହୁକଙ୍କର କାଶ୍ୟା ନାମ୍ନୀ ମହିଷୀ ଗର୍ଭରୁ ଦେବକ ଓ ଉଗ୍ରସେନ ନାମକ ଦୁଇ ପୁତ୍ର ଜାତ ହୋଇଥିଲେ । ଦେବକଙ୍କର ଚାରି ପୁତ୍ର ଓ ସାତ କନ୍ୟା । ତନ୍ମଧ୍ୟରୁ ଦେବକୀ ବସୁଦେବଙ୍କୁ ବିବାହ କରିଥିଲେ । ପରମାତ୍ମା ଶ୍ରୀକୃଷ୍ଣ ଏହି ଦମ୍ପତିର ସନ୍ତାନ । ଉଗ୍ରସେନଙ୍କର ନଅ ପୁଅ ଓ ପାଞ୍ଚ ଝିଅ । ପୁତ୍ରମାନଙ୍କ ମଧ୍ୟରେ କଂସ ଜ୍ୟେଷ୍ଠ । କଂସ ଉଗ୍ରସେନଙ୍କ କ୍ଷେତ୍ରଜ ପୁତ୍ର । ସେ ଜରାସନ୍ଧ କନ୍ୟା ଅସ୍ତି ଓ ପ୍ରାପ୍ତିଙ୍କୁ ବିବାହ କରିଥିଲେ । ଶ୍ୱଶୁରଙ୍କ ପରାମର୍ଶ ଓ ସାହାଯ୍ୟରେ କଂସ ପିତାଙ୍କୁ ସିଂହାସନଚ୍ୟୁତ ଓ କାରାରୁଦ୍ଧ କରି ରାଜା ହେଲେ ।

**ଉଚ୍ଚୈଃଶ୍ରବା**—ଉଚ୍ଚୈଃଶ୍ରବା ଇନ୍ଦ୍ରଙ୍କ ଘୋଡ଼ା । ସମୁଦ୍ର ମନ୍ଥନରୁ ଜାତ ।
(ଇନ୍ଦ୍ର ଦେଖ)

**ଉତ୍ତଙ୍କ**—ମହର୍ଷି ବେଦଙ୍କ ଶିଷ୍ୟ । ବେଦ ଦିନେ କାର୍ଯ୍ୟାନ୍ତରକୁ ଯାଇଥିଲେ । ଉତ୍ତଙ୍କଙ୍କ ଉପରେ ଗୃହର ସମସ୍ତ କାର୍ଯ୍ୟ ନ୍ୟସ୍ତ ଥିଲା । ଗୁରୁପତ୍ନୀଗଣ ଶିଷ୍ୟଙ୍କ ଚରିତ୍ର ପରୀକ୍ଷା କରିବା ପାଇଁ କହିଲେ—'ତୁମର ଜଣେ ଗୁରୁ ପତ୍ନୀଙ୍କର ଆଜି ଶୁଦ୍ଧ ସ୍ନାନ ଦିବସ । ତୁମେ ତାଙ୍କ ଋତୁ ରକ୍ଷା କରି ପାରିବ ତ ?' ଉତ୍ତଙ୍କ କିନ୍ତୁ ଏହି ଅସମ୍ଭବ ଅନୁରୋଧ ରକ୍ଷା କରି ପାରିଲେ ନାହିଁ । ମହର୍ଷି ବେଦ ଗୃହକୁ ଫେରି ଆସି ଏକଥା ଶୁଣି ଉତ୍ତଙ୍କଙ୍କୁ ଆଶୀର୍ବାଦ କରି ସନ୍ତୁଷ୍ଟ ହୋଇ କହିଲେ—'ତୁମର ସବୁ ମନୋରଥ ପୂର୍ଣ୍ଣ ହେଉ, ତୁମେ ସକଳ ବିଦ୍ୟାରେ ପାରଙ୍ଗମ ହୁଅ । ବର୍ତ୍ତମାନ ଗାର୍ହସ୍ଥ୍ୟ ଧର୍ମ ଅବଲମ୍ବନ କର ।' ଗୁରୁଙ୍କ ଆଶୀର୍ବାଦରେ ଉତ୍ତଙ୍କ ଆନନ୍ଦିତ ହୋଇ କଅଣ ଦକ୍ଷିଣା ଦେବେ ବୋଲି ଆଦେଶ ପ୍ରତୀକ୍ଷାରେ ରହିଲେ । ଗୁରୁ କହିଲେ,—'ତୁମେ ଏଥିଲାଗି ଗୁରୁପତ୍ନୀମାନଙ୍କୁ ଅନୁରୋଧ କର । ସେମାନେ ଯାହା କହିବେ ତାହା କରିବ ।' ଉତ୍ତଙ୍କ ଗୁରୁପତ୍ନୀଙ୍କ ଦ୍ୱାରା ଆଦିଷ୍ଟ ହୋଇ ପୌଷ୍ୟ ମହିଷୀଙ୍କ କୁଣ୍ଡଳଦ୍ୱୟ କିପରି ଆଣିଥିଲେ ତାହା ମହାଭାରତ ଆଦିପର୍ବରେ ଅନୁସନ୍ଧେୟ । ସେଥିରୁ ତାଙ୍କର ଗୁରୁଭକ୍ତି, ଏକାଗ୍ରତା, ନିଷ୍ଠା ଇତ୍ୟାଦିର ବେଶ୍ ପରିଚୟ ମିଳେ ।

**ଉତଥ୍ୟ**—ମହା ପ୍ରଭାବଶାଳୀ ମହର୍ଷି । ଏହାଙ୍କ ପତ୍ନୀଙ୍କ ନାମ ମମତା ଏବଂ କନିଷ୍ଠ ଭ୍ରାତାଙ୍କ ନାମ ବୃହସ୍ପତି । ମମତାଙ୍କ ଗର୍ଭରୁ ଉତଥ୍ୟଙ୍କର ଯେଉଁ ପୁତ୍ର ଜାତ ହୋଇଥିଲେ ସେ ପିତୃବ୍ୟ ବୃହସ୍ପତିଙ୍କ ଶାପରୁ ଜନ୍ମାନ୍ଧ ହୋଇଥିଲେ । ଏହି ଜନ୍ମାନ୍ଧ ପୁତ୍ରର ନାମ ଦୀର୍ଘତମା । (ମହାଭାରତ)

**ଉତ୍ତମ**—ସ୍ୱାୟମ୍ଭୁବ ମନୁଙ୍କର ଦୁଇ ପୁଅ – ପ୍ରିୟବ୍ରତ, ଉତ୍ତାନପାଦ । ଉତ୍ତାନପାଦଙ୍କର ଦୁଇଟି ରାଣୀ—ସୁନୀତି, ସୁରୁଚି । ସୁନୀତିଙ୍କ ଗର୍ଭରୁ ଧ୍ରୁବ, ସୁରୁଚିଙ୍କ ଗର୍ଭରୁ ଉତ୍ତମଙ୍କର ଜନ୍ମ । ଧ୍ରୁବ ବିମାତାଙ୍କ କଟୁବାକ୍ୟରେ ବନଗାମୀ ହୋଇ ତପସ୍ୟା ବଳରେ ବ୍ରହ୍ମପଦ ବା ଅକ୍ଷୟ ଧ୍ରୁବଲୋକ ପ୍ରାପ୍ତ ହୋଇଥିଲେ । ଉତ୍ତମ ଅଳ୍ପ ବୟସରେ ମୃଗୟାକୁ ଯାଇଥିବା ବେଳେ ବନରେ ଯକ୍ଷ ଦ୍ୱାରା ନିହତ ହେଲେ । ତାଙ୍କ ମା' ମଧ୍ୟ ପୁତ୍ର ଶୋକାତୁରା ହୋଇ ବଣକୁ ଯାଇ ମଲେ ।

**ଉତ୍ତର**—ମତ୍ସ୍ୟରାଜ ବିରାଟଙ୍କ ଜ୍ୟେଷ୍ଠ ପୁତ୍ର । ତାଙ୍କ ମାମୁଁ କୀଚକଙ୍କ ମୃତ୍ୟୁ ପରେ ଦୁର୍ଯ୍ୟୋଧନ ଦକ୍ଷିଣ ଗୋଗୃହ ଆକ୍ରମଣ କରିବା ପାଇଁ ସୁଶର୍ମା ଏବଂ ଉତ୍ତର ଗୋଗୃହ ଆକ୍ରମଣାର୍ଥେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ସହିତ ନିଜେ ଯାତ୍ରା କଲେ ସେତେବେଳେ ପାଣ୍ଡବମାନେ ଅଜ୍ଞାତବାସ ଛଳରେ ବିରାଟ ରାଜ୍ୟରେ ଥିଲେ । ବୃହନ୍ନଳା ନାମଧାରୀ ଅର୍ଜୁନ ରଥରେ ସାରଥି ହୋଇ ଉତ୍ତରଙ୍କ ସେନାପତିତ୍ୱରେ ଉତ୍ତର ଗୋଗୃହ ରକ୍ଷା କରିବା ପାଇଁ ଗଲେ । ମାତ୍ର ଉତ୍ତର କୁରୁସୈନ୍ୟ ଦେଖି ଅନୁତ୍ସାହିତ ହୋଇ ଯୁଦ୍ଧ କରିବାକୁ ଅସମ୍ମତ ହେବାରୁ ଅର୍ଜୁନ ଆତ୍ମ-ପରିଚୟ ଦେଇ କିପରି ଗୋଗୃହ ରକ୍ଷା କରିଥିଲେ ସେ ସମସ୍ତ ବୃତ୍ତାନ୍ତ ମହାଭାରତ ବିରାଟପର୍ବରେ ଅନୁସନ୍ଧେୟ ।

**ଉତ୍ତରା**—ମତ୍ସ୍ୟରାଜ ବିରାଟଙ୍କ କନ୍ୟା । ଅଜ୍ଞାତବାସ ସମୟରେ ଅର୍ଜୁନ, ବୃହନ୍ନଳା ରୂପ ଧାରଣ କରି ଏହାଙ୍କୁ ସଙ୍ଗୀତ ଓ ନୃତ୍ୟ କଳା ଶିକ୍ଷା ଦେଇଥିଲେ । ଯେତେ-ବେଳେ ବିରାଟଙ୍କ ସହିତ ପାଣ୍ଡବମାନଙ୍କର ପରିଚୟ ହୋଇଗଲା, ବିରାଟ ସନ୍ତୋଷରେ ଉତ୍ତରାଙ୍କୁ ଅର୍ଜୁନନନ୍ଦନ ଅଭିମନ୍ୟୁଙ୍କ ସହିତ ବିବାହ କରିଦେଇ-ଥିଲେ । ଅଭିମନ୍ୟୁ ଭାରତ-ଯୁଦ୍ଧରେ ନିହତ ହେବା ବେଳକୁ ଉତ୍ତରା ଅନ୍ତଃସତ୍ତ୍ୱା ଥିଲେ । ପରମ ଭାଗବତ ମହାରାଜ ପରୀକ୍ଷିତ ଏ ଗର୍ଭରୁ ଜାତ ହେଲେ ।

**ଉତ୍ତାନପାଦ**—ପିତା ସ୍ୱାୟମ୍ଭୁବ ମନୁ । ମାତା ଶତରୂପା । କନିଷ୍ଠ ଭ୍ରାତା ପ୍ରିୟବ୍ରତ । ଉତ୍ତାନପାଦଙ୍କର ଦୁଇଟି ରାଣୀ ସୁନୀତି, ସୁରୁଚି । ସୁରୁଚି

ଉତ୍ତାନପାଦଙ୍କର ପ୍ରିୟତମା ମହିଷୀ ଥିଲେ । ଏହାଙ୍କ ଗର୍ଭରୁ ଉତ୍ତମ ଓ ସୁନୀତଙ୍କ ଗର୍ଭରୁ ବାଳ-ଭକ୍ତ ଧ୍ରୁବଙ୍କର ଜନ୍ମ । (ବିଷ୍ଣୁ ପୁରାଣ)

**ଉଦ୍ଦାଳକ**—(ଆରୁଣୀ ଦେଖ) । ଏହାଙ୍କ ପୁତ୍ର ଶ୍ୱେତକେତୁ । ଦିନେ ଶ୍ୱେତକେତୁ ପିତାଙ୍କ ପାଖରେ ବସିଛନ୍ତି ଏତିକିବେଳେ ଜଣେ ବ୍ରାହ୍ମଣ ଆସି ତାଙ୍କ ମାତାଙ୍କୁ ରମଣ କରିବା ଉଦ୍ଦେଶ୍ୟରେ ବଳପୂର୍ବକ ହସ୍ତ ଧାରଣ କରି ନେଇଗଲେ । ଶ୍ୱେତକେତୁ ଅଗ୍ନିଶର୍ମା ହୋଇ ଉଠିଲେ । କିନ୍ତୁ ଉଦ୍ଦାଳକ କହିଲେ—ବାବୁ, ଏହାହିଁ ସନାତନ ଧର୍ମ । ସ୍ତ୍ରୀମାନେ ସ୍ୱଜାତୀୟ ଶତ ସହସ୍ର ପୁରୁଷଙ୍କ ପ୍ରତି ଆସକ୍ତ ହେଲେ ମଧ୍ୟ ଦୋଷ ନାହିଁ । ଶ୍ୱେତକେତୁ ଏଥିରେ କ୍ଷାନ୍ତ ନହୋଇ ଏ ସମ୍ବନ୍ଧରେ ଗୋଟିଏ ନିୟମ ପ୍ରଣୟନ କଲେ । ଏଥିଲାଗି ସେ ଜଗତ୍ ବିଖ୍ୟାତ ହୋଇଛନ୍ତି ।

ବ୍ୟୁଚ୍ଚରନ୍ତ୍ୟାଃ ପତିଂ ନାର୍ଯ୍ୟା ଅଦ୍ୟ ପ୍ରଭୃତି ପାତକମ୍ ।
ଭ୍ରୂଣହତ୍ୟା ସମଂ ଘୋରଂ ଭବିଷ୍ୟତ୍ୟସୁଖାବହମ୍ ॥

ଅର୍ଥାତ୍ ଆଜିଠାରୁ ଯେଉଁ ସ୍ତ୍ରୀ ପତିଭିନ୍ନ ପରପୁରୁଷ ପ୍ରତି ଆସକ୍ତ ହେବ ଏବଂ ଯେଉଁ ପୁରୁଷ ପତିବ୍ରତା ସ୍ତ୍ରୀକୁ ପରିତ୍ୟାଗ କରି ନୀଚ ସ୍ତ୍ରୀ ଅଭିଳାଷୀ ହେବ ସେମାନଙ୍କୁ ଭ୍ରୂଣହତ୍ୟାରୂପ ଘୋର ପାପ ପଙ୍କରେ ଘାଣ୍ଟି ହେବାକୁ ପଡ଼ିବ ।
(ମହାଭାରତ)

**ଉଦ୍ଧବ**—ସତ୍ୟକଙ୍କ ପୁତ୍ର । ଏ ଶ୍ରୀକୃଷ୍ଣଙ୍କର ପରମ ସଖା ଓ ଭକ୍ତ । ବିପ୍ର ଶାପ ଫଳରେ ଯଦୁବଂଶ ଧ୍ୱଂସର ସମସ୍ତ ପ୍ରକାର ସୂଚନା ଦେଖି ଉଦ୍ଧବ ଭୟ ବିହ୍ୱଳ ହୋଇ ଶ୍ରୀକୃଷ୍ଣଙ୍କୁ ଏହାର କାରଣ ଜିଜ୍ଞାସା କଲେ । ଶ୍ରୀକୃଷ୍ଣ ମହାପ୍ରସ୍ଥାନର ସମସ୍ତ କଥା ତାଙ୍କୁ କହି ସାରିବା ପରେ ଗମ୍ଭୀର ତତ୍ତ୍ୱଜ୍ଞାନ ସାଧୁ ଲକ୍ଷଣ ଓ ଭକ୍ତିମାର୍ଗ ତତ୍ତ୍ୱ ଇତ୍ୟାଦି ଉପଦେଶ ଦେଇଥିଲେ ଏବଂ ଶୀଘ୍ର ବଦରିକା ଗମନ କରିବା ପାଇଁ କହିଲେ । ଅଗତ୍ୟା ଉଦ୍ଧବ ଶ୍ରୀକୃଷ୍ଣଙ୍କ ପାଦୁକାଦୁଇଟି ବହନକରି ବଦରିକା ଗମନ କଲେ ଏବଂ ସେହିଠାରେ ଯୋଗ ବଳରେ ତନୁତ୍ୟାଗ କରି ପରମ ଗତି ପ୍ରାପ୍ତ ହେଲେ । (ଭାଗବତ, ଏକାଦଶସ୍କନ୍ଧ)

**ଉପମନ୍ୟୁ**—ମହର୍ଷି ଆୟୋଦ ଧୌମ୍ୟଙ୍କ ଶିଷ୍ୟ । ଉପମନ୍ୟୁ ଅତି ଗୁରୁଭକ୍ତ ଥିଲେ । ଉପାଧ୍ୟାୟ ତାଙ୍କୁ ପ୍ରଥମେ ଗୋରକ୍ଷା, ଦ୍ୱିତୀୟରେ ଭିକ୍ଷା ମାଗିବା ଇତ୍ୟାଦି କାର୍ଯ୍ୟରେ ନିଯୁକ୍ତ କରି ତାଙ୍କର ସତ୍ତ୍ୱ ପରୀକ୍ଷା କରିବା ପରେ ଆବୌ

ଆହାର ନ କରିବାକୁ ଆଦେଶ ଦେଲେ । ଉପମନ୍ୟୁ କିନ୍ତୁ ଭୋକର ଦାଉ ସମ୍ଭାଳି ନପାରି ସନ୍ଧ୍ୟାବେଳକୁ ଗୁଡ଼ାଏ ବିଷାକ୍ତ ପତ୍ର ଖାଇ ଦେଇ ଅନ୍ଧ ହୋଇଗଲେ ! ବାଟରେ ଅଣ୍ଡାଳି ଅଣ୍ଡାଳି ଆସିବା ବେଳେ ଗୋଟିଏ କୂଅରେ ପଡ଼ିଲେ । ଠିକ୍ ସମୟରେ ଆଶ୍ରମକୁ ନ ଫେରିବାରୁ ଧୌମ୍ୟ ଶିଷ୍ୟଙ୍କୁ ଅନ୍ୱେଷଣ କରି ତାଙ୍କୁ ଗଭୀର କୂପରେ ପଡ଼ିଥିବା ଦେଖି ସବୁ ଜାଣି ପାରିଲେ ଏବଂ ଶୀଘ୍ର ଦେବବୈଦ୍ୟ ଅଶ୍ୱିନୀ କୁମାରଙ୍କୁ ସ୍ତୁତି କରିବାକୁ ଉପଦେଶ ଦେଲେ । ଗୁରୁ ଆଜ୍ଞାରେ ଉପମନ୍ୟୁ ଅଶ୍ୱିନୀକୁମାରଙ୍କୁ ସ୍ମରଣ କଲେ । ଦେବ ବୈଦ୍ୟଙ୍କ କୃପାରୁ ଉପମନ୍ୟୁ ପୁନଶ୍ଚ ଚକ୍ଷୁ ପ୍ରାପ୍ତ ହେଲେ ଏବଂ ଗୁରୁଙ୍କ ଆଶୀର୍ବାଦରୁ ସକଳ ବେଦ ଓ ଧର୍ମଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ । (ମହାଭାରତ-ଆଦିପର୍ବ)

**ଉପସୁନ୍ଦ** — ହିରଣ୍ୟକଶିପୁବଂଶଜ ନିକୁମ୍ଭାସୁର ଉପସୁନ୍ଦର ପିତା । ସୁନ୍ଦ ଓ ଉପସୁନ୍ଦ ଦୁଇ ଭାଇ । ଉଭୟେ ତ୍ରିଲୋକ ବିଜୟ କାମନା କରି ବିନ୍ଧ୍ୟାଚଳରେ କଠୋର ତପସ୍ୟା କରିଥିଲେ । ବ୍ରହ୍ମା ଉଭୟଙ୍କ ତପସ୍ୟାରେ ତୃପ୍ତ ହୋଇ ବର ଦେଲେ ଯେ ଜଗତରେ ତୁମ୍ଭମାନଙ୍କୁ କେହିହେଲେ ବଧ କରି ପାରିବେ ନାହିଁ । କେବଳ ଉଭୟଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଯୁଦ୍ଧ ହେଲେ ଜଣେ ଅନ୍ୟ ଜଣଙ୍କୁ ପ୍ରାଣରେ ମାରିଦେଇ ପାରେ । ଏହାଛଡ଼ା ତୁମ୍ଭମାନଙ୍କର ମୃତ୍ୟୁ ହେବା ଲାଗି ଅନ୍ୟ କୌଣସି କାରଣ ଦେଖାଯାଉ ନାହିଁ ।

ରାକ୍ଷସଦ୍ୱୟ ଏ ବର ପ୍ରସାଦରୁ ଗୋ, ବିପ୍ର, ସନ୍ନ୍ୟାସୀ, ଦେବତା ଏ ସମସ୍ତଙ୍କ ଉପରେ ଅବାଧ ଅତ୍ୟାଚାର ଚଳାଇଲେ । ଏତଦ୍ଦ୍ୱାରା ଦେବକାର୍ଯ୍ୟ, ପିତୃକାର୍ଯ୍ୟ ସବୁ ବନ୍ଦ ରହିଲା । ସମସ୍ତେ ପ୍ରତିକାର କରିବା ପାଇଁ ବ୍ରହ୍ମାଙ୍କ ପରାମର୍ଶ ଲୋଡ଼ିଲେ । ପିତାମହଙ୍କ ଆଦେଶରେ ଦେବଶିଳ୍ପୀ ବିଶ୍ୱକର୍ମା ତିଳୋତ୍ତମା ନାମ୍ନୀ ଏକ ଲାବଣ୍ୟବତୀ ରମଣୀ ସୃଷ୍ଟି କଲେ । ଏହି ସୁନ୍ଦରୀ ରମଣୀର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଉଭୟ ଭ୍ରାତାଙ୍କ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହେଲା । ଉଭୟ ମୃତ୍ୟୁବରଣ କଲେ । (ମହାଭାରତ-ଆଦିପର୍ବ, ଇନ୍ଦ୍ର ଦେଖ)

**ଉମା** — ମେନକାଙ୍କ ଗର୍ଭରୁ ହିମାଳୟଙ୍କ ଔରସରେ ଜନ୍ମିତା କନ୍ୟା । ଏହାଙ୍କର ଅନ୍ୟ ନାମ ପାର୍ବତୀ । ପୂର୍ବ ଜନ୍ମରେ ଉମା ଦକ୍ଷପ୍ରଜାପତିଙ୍କ କନ୍ୟା ଥିଲେ । ଏହାଙ୍କ ନାମ ଥିଲା ସତୀ । ଦକ୍ଷ, ଯଜ୍ଞସଭାରେ ଶିବ ନିନ୍ଦା କରିବାରୁ ସତୀ ପତି ଅପମାନ ସହି ନ ପାରି ଯଜ୍ଞକୁଣ୍ଡରେ ଝାସ ଦେଇ ଜୀବନ ତ୍ୟାଗ କରିଥିଲେ । ପରେ ହିମାଳୟଙ୍କ କନ୍ୟାରୂପେ ଜନ୍ମ ଗ୍ରହଣ କରିଥିଲେ ।

ସେତେବେଳେ ତାରକାସୁର ସ୍ୱର୍ଗରେ ଉପଦ୍ରବ କରି ଦେବତାମାନଙ୍କୁ ନାନା କଷ୍ଟ ଦେଉଥିଲା । ବ୍ରହ୍ମା କହିଲେ କେବଳ ଶିବନନ୍ଦନ କାର୍ତ୍ତିକେୟଙ୍କ ଦ୍ୱାରା ତାରକ ନିଧନ ହୋଇପାରେ । ଦେବତାମାନଙ୍କ କୌଶଳକ୍ରମେ ହରପାର୍ବତୀଙ୍କ ମିଳନ ଫଳରୁ ଦେବସେନାପତି କୁମାରଙ୍କ ଜନ୍ମ ହେଲା । ତାରକାସୁର କାର୍ତ୍ତିକେୟଙ୍କ ଦ୍ୱାରା ପରାସ୍ତ ଓ ନିହତ ହେବାରୁ ଜଗତରେ ଶାନ୍ତି ସ୍ଥାପିତ ହେଲା ।

**ଉର୍ବଶୀ**—ସୁପ୍ରସିଦ୍ଧ ସ୍ୱର୍ଗବେଶ୍ୟା । ଦିନେ ସୁଧର୍ମାରେ ନୃତ୍ୟରତା ହୋଇଥିବା ସମୟରେ ମହାରାଜ ପୁରୂରବାଙ୍କୁ ଦେଖି ଉର୍ବଶୀର ତାଳଭଙ୍ଗ ହୋଇଗଲା । ତେଣୁ ଇନ୍ଦ୍ରଶାପରେ ସେ ପୁରୂରବାଙ୍କ ସ୍ତ୍ରୀରୂପେ ମର୍ତ୍ତ୍ୟଲୋକରେ ବାସ କଲେ । ପୁରୂରବାଙ୍କ ସହିତ ଉର୍ବଶୀଙ୍କର ଚୁକ୍ତି ଥିଲା—ସେତେ ଦିନଯାଏ ପୁରୂରବାଙ୍କୁ ସେ ଉଲଙ୍ଗ ନ ଦେଖନ୍ତି, ଆଉ ଯେତେଦିନ ଯାଏ ଶଯ୍ୟା ପାଖରେ ଥିବା ମେଷ ଦୁଇଟି ଅପହୃତ ନ ହୁଅନ୍ତି ସେତେଦିନ ଯାଏ ସେ ତାଙ୍କର ସ୍ତ୍ରୀ ହୋଇ ରହିଥିବେ । ଅନ୍ୟଥା ହେଲେ ସେ ଶାପମୁକ୍ତ ହୋଇ ସ୍ୱର୍ଗରାଜ୍ୟକୁ ଫେରି ଆସିବେ । ଦୈବାତ୍ ବିଶ୍ୱାବସୁ ଗନ୍ଧର୍ବ ଦିନେ ଉର୍ବଶୀଙ୍କର ଏଇ ମେଷଯୋଡ଼ିକ ଚୋରି କରି ନେଇ ଆସିଲେ । ଉର୍ବଶୀ ରାଜାଙ୍କୁ ଉଠାଇବା ପାଇଁ ଯତ୍ନ କଲେ । ଦେଖିଲେ ରାଜା ଉଲଙ୍ଗ ହୋଇ ପଡ଼ିଛନ୍ତି । ତେଣୁ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଶାପମୁକ୍ତ ହୋଇ ସ୍ୱର୍ଗକୁ ଗମନ କଲେ । ଉର୍ବଶୀ ଗର୍ଭରେ ପୁରୂରବାଙ୍କର ଆୟୁ, ଅମାବସୁ, ବିଶ୍ୱାୟୁ, ଶ୍ରୁତାୟୁ, ଦୃଢ଼ାୟୁ, ବନାୟୁ ଓ ଶତାୟୁ ନାମକ ସାତ ପୁତ୍ର ଜାତ ହୋଇଥିଲେ । (ହରିବଂଶ)

ମହାଭାରତ ବନପର୍ବରୁ ଜଣାଯାଏ ଯେ ମଧ୍ୟମପାଣ୍ଡବ ଅର୍ଜୁନ ଅସ୍ତ୍ର ଓ ସଙ୍ଗୀତ ଶିକ୍ଷା ପାଇଁ ବୈଜୟନ୍ତ ନଗରକୁ ଗମନ କରିଥିଲେ । ଇନ୍ଦ୍ରସଭାରେ ନୃତ୍ୟ ସମୟରେ ଅର୍ଜୁନ ଉର୍ବଶୀଙ୍କୁ ଅନିମେଷ ଦୃଷ୍ଟିରେ ଅନାଇବା ଫଳରେ ରଜନୀରେ ଉର୍ବଶୀ ତାଙ୍କୁ ପ୍ରେମଭିକ୍ଷା କରିଥିଲେ । ଅର୍ଜୁନ ଗୁରୁପତ୍ନୀ ଅଭିଗମନ ମହାପାପ ଜାଣି ପ୍ରତ୍ୟାଖ୍ୟାନ କଲେ । କ୍ରୁଦ୍ଧା ଉର୍ବଶୀ ଶାପ ଦେଲେ—ତୁମେ କ୍ଲୀବ ହୋଇ ସ୍ତ୍ରୀମାନଙ୍କ ମଧ୍ୟରେ ନୃତ୍ୟ କରି କାଳଯାପନ କର । ପରେ ଅଜ୍ଞାତବାସରେ ଅର୍ଜୁନ ବିରାଟ ନଗରରେ ବୃହନ୍ନଳାରୂପେ ବର୍ଷେ କଟାଇଥିଲେ ।

ଉର୍ବଶୀ ମିତ୍ରାବରୁଣଙ୍କ ଅଭିଳାଷପୂର୍ତ୍ତି ନ କରିବାରୁ ତାଙ୍କର ରେତଃ ସ୍ଖଳିତ ହେଲା । ରେତଃର ଏକ ଭାଗରୁ ଅଗସ୍ତି ଓ ଅପରଭାଗରୁ ବଶିଷ୍ଠ ଜାତ ହୋଇଥିଲେ ।

**ଉଲୂକ**—(୧) ମହାଭାରତ ଯୁଦ୍ଧରେ କୁରୁପକ୍ଷର ଦୂତରୂପେ ଉଲୂକ ଯୁଧିଷ୍ଠିରଙ୍କ ସମୀପକୁ ଯାଇଥିଲେ । ଶକୁନିଙ୍କ ପରାମର୍ଶ ଅନୁସାରେ ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଉଲୂକ ଦୁର୍ଯ୍ୟୋଧନଙ୍କ ସମସ୍ତ ଅଭିପ୍ରାୟ ପାଣ୍ଡବମାନଙ୍କୁ ଜଣାଇ ଥିଲେ । ଶେଷ ଯୁଦ୍ଧରେ ସହଦେବଙ୍କ ଦ୍ୱାରା ଏ ଜଣ ପରାସ୍ତ ଓ ନିହତ ହୋଇଥିଲେ । ଭଲ୍ଲାସ୍ତ୍ର ଦ୍ୱାରା ଏହାଙ୍କର ମସ୍ତକ ଦ୍ୱିଖଣ୍ଡିତ ହୋଇଥିଲା ।

(ମହାଭାରତ)

(୨) ବୈଶେଷିକ ଦର୍ଶନ ପ୍ରଣେତା କଣାଦଙ୍କର ଅନ୍ୟ ନାମ । ଏଥିଲାଗି ବୈଶେଷିକ ଦର୍ଶନର ଅନ୍ୟ ନାମ ଔଲୂକ୍ୟ ଦର୍ଶନ । ଖ୍ରୀଷ୍ଟପୂର୍ବ ୬୦୦ ଏହାଙ୍କର ଆବିର୍ଭାବ ସମୟ ।

**ଉଲୂପୀ**—ନାଗକନ୍ୟା । ଐରାବତ କୁଳୋଦ୍ଭବ କୌରବ୍ୟ ନାଗ ଏହାଙ୍କର ପିତା । ବନବାସ ସମୟରେ ଅର୍ଜୁନ ଗଙ୍ଗାରେ ସ୍ନାନ କରି ତର୍ପଣ କରୁଥିବା ବେଳେ ଉଲୂପୀ ଧନଞ୍ଜୟଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିବା ପାଇଁ ପାତାଳକୁ ନେଇଗଲେ । ନାଗଲୋକରେ ଉଭୟଙ୍କର ପରିଣୟ କ୍ରିୟା ସମାହିତ ହୋଇଥିଲା । (ମହାଭାରତ, ଆଦିପର୍ବ)

**ଉଶୀନର**—ଚନ୍ଦ୍ରବଂଶୀୟ ପ୍ରସିଦ୍ଧ ନରପତି । ମହାରାଜ ଯଯାତିଙ୍କ ଦୁହିତା ମାଧବୀ ଏହାଙ୍କର ପତ୍ନୀ । ପୁଣ୍ୟଶ୍ଳୋକ ମହୀପତି ଶିବି ଏହାଙ୍କର ପୁତ୍ର । ଉଶୀନର ପ୍ରଜାବତ୍ସଳ, ଧର୍ମପରାୟଣ, ଗୋବ୍ରାହ୍ମଣ-ପରିପାଳକ ଓ ଯଜ୍ଞପ୍ରିୟ ନରପତି ଥିଲେ । ଯମୁନା ନଦୀ କୂଳରେ ଯଜ୍ଞ କରୁଥିବା ବେଳେ ଅଗ୍ନି ଓ ଇନ୍ଦ୍ର ଯଥାକ୍ରମେ କପୋତ ଓ ଶ୍ୟେନ ରୂପରେ ତାଙ୍କ ଧର୍ମଶୀଳତା ଓ ଦାନପଣ ପରୀକ୍ଷା ପାଇଁ ଉପସ୍ଥିତ ହେଲେ । ଉଶୀନର ଶରଣାପନ୍ନ କପୋତକୁ ଅଭୟଦାନ କରି ନିଜ ଦେହରୁ ମାଂସ କାଟି ଶ୍ୟେନର କ୍ଷୁଧା ନିବାରଣ ପାଇଁ କୁଣ୍ଠିତ ହେଲେନାହିଁ । ଗୋଟିଏ ତୁଳାପାତ୍ର ଅଣାଇ ଏକ ପାଖରେ କପୋତ ଏବଂ ଅନ୍ୟ ପାଖରେ ଦେହରୁ ମାଂସ କାଟି ଖଣ୍ଡ ଖଣ୍ଡ କରି ପକାଇବାକୁ ଲାଗିଲେ । କିନ୍ତୁ କପୋତର ଓଜନ ସହିତ ସମାନ ନ ହେବାରୁ ନିଜେ ଉଶୀନର ତୁଳାପାତ୍ର ଉପରେ ବସି ପଡ଼ିଲେ । ଦେବତାଯୁଗଳ ତାଙ୍କର ଏ ଅଦ୍‌ଭୁତ ତ୍ୟାଗ ଦେଖି ପରିତୁଷ୍ଟ ହେଲେ ଏବଂ ରାଜାଙ୍କୁ ଆଶୀର୍ବାଦ କରି ସ୍ୱର୍ଗକୁ ଗଲେ । ଉଶୀନର ଦେବକୃପାରୁ ପୂର୍ବାପେକ୍ଷା ଲାବଣ୍ୟ ଧାରଣ କରି ବହୁକାଳ ପ୍ରଜାପାଳନ କରିବା ପରେ ସ୍ୱର୍ଗାରୋହଣ କଲେ ।

●



**ଊଷା**—ଶୋଣିତ ରାଜ୍ୟାଧିପତି ଅସୁରରାଜ ବାଣଙ୍କ କନ୍ୟା । ଶ୍ରୀକୃଷ୍ଣଙ୍କ ନାତି ଅନିରୁଦ୍ଧ ଏହାଙ୍କର ସ୍ୱାମୀ । (ଅନିରୁଦ୍ଧ ଦେଖ)

**ଊର୍ମିଳା** ଲକ୍ଷ୍ମଣଙ୍କ ପତ୍ନୀ । ଶିରଧ୍ୱଜ ଜନକଙ୍କ ଔରସଜାତ କନ୍ୟା । ଏହାଙ୍କର ଯଜ୍ଞବେଦୀସମ୍ଭୂତା କନ୍ୟା ସୀତା ରାମଚନ୍ଦ୍ରଙ୍କ ଗୃହିଣୀ । ଶିରଧ୍ୱଜ ଜନକଙ୍କ କନିଷ୍ଠ ଭ୍ରାତାଙ୍କ ନାମ କୁଶଧ୍ୱଜ ଜନକ । ଏହାଙ୍କ କନ୍ୟା ମାଣ୍ଡବୀ ଭରତଙ୍କୁ ଓ ଶ୍ରୁତକୀର୍ତ୍ତି ଶତ୍ରୁଘ୍ନଙ୍କୁ ବିବାହ କରିଥିଲେ । ଜନକଙ୍କ ଆଦିପୁରୁଷ ନିମି । ତାଙ୍କ ପୁତ୍ରର ନାମ ମିଥି । ଏହି ମିଥିଙ୍କ ନାମ ଅନୁସାରେ ରାଜ୍ୟର ନାମ ହୋଇଥିଲା ମିଥିଳା (ମିଥି + ଲା) ଅର୍ଥାତ୍ ମିଥିଙ୍କ ପାଳିତ ଦେଶ ।





**ଋଗ୍‌ବେଦ**—ଏହା ହିନ୍ଦୁମାନଙ୍କର ପ୍ରାଚୀନତମ ଗ୍ରନ୍ଥ । ପାଶ୍ଚାତ୍ୟ ମନୀଷୀମାନଙ୍କ ଅଭିମତ ଯେ ଏହା ଖଣ୍ଡିଏ ମାତ୍ର ଗ୍ରନ୍ଥ ନୁହେଁ । ଏହା ଗୋଟିଏ ପୁସ୍ତକାଗାର ବା ସାହିତ୍ୟ-ଭଣ୍ଡାର । ଏହାର ମନ୍ତ୍ର ସଂଖ୍ୟା ୧୦୫୮୦ । ଋଗ୍‌ବେଦ ଦୁଇ ପ୍ରଧାନ ଭାଗରେ ବିଭକ୍ତ—୧-ଐତରେୟ ବ୍ରାହ୍ମଣ ଓ ୨-କୌଷୀତକୀ ବା ସାଂଖ୍ୟାୟନ । ଏଥିରେ ପୁଣି ଶାକଳ ବା ସ୍କଳ, ଅଶ୍ୱଲାୟନ, ଶଙ୍ଖାୟନ ଓ ଓ ମଣ୍ଡୁକ ବୋଲି ପାଞ୍ଚୋଟି ଶାଖା ଅଛି । ଏସବୁ ଛଡ଼ା ଐତରେୟୀ, କୌଷିତକୀ, ଶୈଶିରୀ, ପୈଙ୍ଗୀ ପ୍ରଭୃତି ଉପଶାଖାମାନ ମଧ୍ୟ ଅଛି ।

**ଋକ୍ଷରାଜ**—ଜାମ୍ବବ । ରାମାୟଣ ଯୁଦ୍ଧର ଜଣେ ପ୍ରଧାନ ସେନାପତି, ସୁଗ୍ରୀବ ତଥା ଶ୍ରୀରାମଙ୍କ ପ୍ରଧାନ ପରାମର୍ଶଦାତା । ଏହାଙ୍କର କନ୍ୟାଙ୍କ ନାମ ଜାମ୍ବବତୀ । ଶ୍ରୀକୃଷ୍ଣ ଏହି ଜାମ୍ବବତୀଙ୍କୁ ବିବାହ କରିଥିଲେ । (ଭାଗବତ ସ୍ୟମନ୍ତକ ହରଣ ଉପାଖ୍ୟାନ ଦେଖ)

**ଋଚୀକ**—ମହର୍ଷି ଊର୍ବ ଏହାଙ୍କର ପିତା । ସତ୍ୟବତୀ ଋଚୀକଙ୍କ ପତ୍ନୀ । ଏହାଙ୍କ ଗର୍ଭରେ ଋଚୀକଙ୍କର ତିନି ପୁତ୍ର ହୋଇଥିଲେ—ଜମଦଗ୍ନି, ଶୁନଃଶେଫ ଓ ଶୁନଃପୁଚ୍ଛ । (ହରିବଂଶ)

ମହାଭାରତ ଅନୁଶାସନ ପର୍ବରୁ ଜଣାଯାଏ ଯେ ଋଚୀକ କ୍ଷତ୍ରିୟକୁଳ ନିର୍ମୂଳ କରିବା ଅଭିପ୍ରାୟରେ ସମସ୍ତ ଧନୁର୍ବେଦ ଆୟତ୍ତ କରିଥିଲେ । ବଂଶ-ରକ୍ଷା ନିମିତ୍ତ ସେ ମହାରାଜ କୁଶିକଙ୍କ ପୁତ୍ର ଗାଧିଙ୍କ ଦୁହିତାର ପାଣିଗ୍ରହଣ କରିଥିଲେ । ନିଜର ଏବଂ ଶ୍ୱଶୁରଙ୍କର ବଂଶରକ୍ଷା ପାଇଁ ମହର୍ଷି ଦୁଇଟି ଚରୁ ଠିକ୍ କରି ରଖିଥିଲେ । ଗାଧି ରାଜକନ୍ୟା ଉତ୍କୃଷ୍ଟ ପୁତ୍ର ଲାଭଆଶାରେ ନିଜ କନ୍ୟାପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ବ୍ରହ୍ମଚରୁ ଭକ୍ଷଣ କଲେ । ଋଚୀକ ପତ୍ନୀ ବାଧ୍ୟହୋଇ କ୍ଷାତ୍ରଚରୁ ଗର୍ଭସ୍ଥ କରିବାରୁ ଯଥାକ୍ରମେ ବିଶ୍ୱାମିତ୍ର ଓ ପରଶୁରାମ ଜନ୍ମ ହୋଇଥିଲେ । ବିଶ୍ୱାମିତ୍ର ରାଜା ହେଲେ ସୁଦ୍ଧା ଚରୁ ଯୋଗେ କଠୋର ତପସ୍ୟା କରି ବ୍ରହ୍ମର୍ଷି ହେଲେ ଏବଂ ପରଶୁରାମ ବ୍ରାହ୍ମଣ ହେଲେ ମଧ୍ୟ ସମସ୍ତ ଧନୁର୍ବେଦ ଅଭ୍ୟାସ କରି ବ୍ରାହ୍ମଣବୀର ଆଖ୍ୟା ପାଇଥିଲେ ଏବଂ କ୍ଷତ୍ରିୟକୁଳ ନିର୍ମୂଳ କରିଥିଲେ । ହିନ୍ଦୁମାନେ ଏହାଙ୍କୁ ଭଗବାନଙ୍କ ଅବତାର ବୋଲି ବିଶ୍ୱାସ କରନ୍ତି ।

**ଋତ**—ଦକ୍ଷ କନ୍ୟାଙ୍କ ଗର୍ଭରୁ ଧର୍ମଙ୍କ ଔରସ ଜାତପୁତ୍ର ଧର୍ମନନ୍ଦନ ।

**ଋତୁପର୍ଣ୍ଣ**—ଇକ୍ଷ୍ୱାକୁବଂଶର ପ୍ରସିଦ୍ଧ ନରପତି । ଏହାଙ୍କ ପିତାଙ୍କ ନାମ ଅଯୁତାଶ୍ୱ । ରାଜଧାନୀ ଅଯୋଧ୍ୟାନଗରୀ । ପୁଣ୍ୟଶ୍ଳୋକ ନଳ ଏହାଙ୍କର ଅଶ୍ୱଚାଳକରୂପେ ରହିଥିଲେ ଏବଂ ରାଜାଙ୍କଠାରୁ ଦ୍ୟୁତକ୍ରୀଡ଼ାର ସମସ୍ତ କୌଶଳ ଶିକ୍ଷା କରିଥିଲେ । (ମହାଭାରତ)

**ଋଷ୍ୟଶୃଙ୍ଗ**—ବିଭାଣ୍ଡକ ମୁନିଙ୍କ ପୁତ୍ର । ଏହାଙ୍କ ଜନ୍ମବୃତ୍ତାନ୍ତ ଅତି କୌତୁକା-ବହ । ମହର୍ଷି ବିଭାଣ୍ଡକ କୌଣସି ଅପ୍ସରା ଦର୍ଶନରେ ଚଞ୍ଚଳମନା ହେବାରୁ ତାଙ୍କର ରେତଃ ସ୍ଖଳନ ହେଲା । ସେହି ରେତଃ ନଦୀରେ ଭାସୁଥିବା ବେଳେ ପୂର୍ବ ଶାପ ଯୋଗୁଁ ହରିଣୀ ରୂପ ଧାରିଣୀ ସ୍ୱର୍ଗବେଶ୍ୟା ଜଳପାନ କରିବା ସମୟରେ ସେହି ରେତଃ ଗର୍ଭସ୍ଥ କଲା । ତାହାର ଗର୍ଭରୁ ମହାମୁନି ଋଷ୍ୟଶୃଙ୍ଗଙ୍କର ଜନ୍ମ । କଥିତ ଅଛି ଏଇ ମୁନିଙ୍କ ମସ୍ତକୋପରି ଦୁଇଟି ଶୃଙ୍ଗ (ଶିଙ୍ଗ) ଥିବାରୁ ସେ ଋଷ୍ୟଶୃଙ୍ଗ ନାମରେ ପରିଚିତ । ଇନ୍ଦ୍ରମନ୍ତ୍ରି ଏହାଙ୍କ ଦ୍ୱାରା ସିଦ୍ଧ ହୋଇଥିବା ଯୋଗୁଁ ଋଷ୍ୟଶୃଙ୍ଗଙ୍କ ଆଦେଶକ୍ରମେ

ଇନ୍ଦ୍ର ବୃଷ୍ଟି କରୁଥିଲେ । ଅଯୋଧ୍ୟା ନିକଟବର୍ତ୍ତୀ ଅଙ୍ଗ ଦେଶରେ ଅନାବୃଷ୍ଟି ହେବାରୁ ଅଙ୍ଗରାଜ ଲୋମପାଦ କୌଶଳକ୍ରମେ ଜରତା ବେଶ୍ୟା ଦ୍ୱାରା ଋଷ୍ୟଶୃଙ୍ଗଙ୍କୁ ସ୍ୱରାଜ୍ୟକୁ ଅଣାଇଥିଲେ । ଏହିଠାରେ ଋଷିଙ୍କର ଅଯୋଧ୍ୟାପତି ଦଶରଥଙ୍କ ସହିତ ପରିଚୟ ହୋଇଥିଲା । ଅଯୋଧ୍ୟା ରାଜକୁମାରୀ ଶାନ୍ତା ମହର୍ଷିଙ୍କ ପାଣିଗ୍ରହଣ କରିଥିଲେ । ଅପୁତ୍ରିକ ଦଶରଥ ଏହି ଋଷିଙ୍କ ଯଜ୍ଞ ବଳରୁ ଶ୍ରୀରାମଚନ୍ଦ୍ରଙ୍କୁ ପୁତ୍ରରୂପେ ଲାଭ କରିଥିଲେ । (ରାମାୟଣ-ଆଦିକାଣ୍ଡ)

**ଋଷଭ**—ପ୍ରସିଦ୍ଧ ନାଟ୍ୟକାର ମହର୍ଷି ଭରତଙ୍କ ପିତା । ଏହି ମହର୍ଷି ଉଗ୍ର ତପସ୍ୟା ସାଧନ କରି ବିଶେଷ ଖ୍ୟାତି ଲାଭ କରିଥିଲେ । (ମହାଭାରତ)





**ଏକଲବ୍ୟ**—ବ୍ୟାଧରାଜ ହିରଣ୍ୟଧନୁଙ୍କ ପୁତ୍ର । ଅସ୍ତ୍ରବିଦ୍ୟା ଶିକ୍ଷା କରିବାପାଇଁ ସେ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇଥିଲେ ମାତ୍ର ଦ୍ରୋଣ ତାଙ୍କୁ ଅସ୍ପୃଶ୍ୟ ବୋଲି ଘୃଣା କରି ଶିକ୍ଷା ଦେବେ ନାହିଁ ବୋଲି କହିଲେ । ଏକଲବ୍ୟ ଅଭିମାନରେ ଫେରି ଆସି ମାଟିରେ ଦ୍ରୋଣ ମୂର୍ତ୍ତି ତିଆରି କରି ସେଠାରେ ମନ ଦେଇ ଧନୁର୍ବିଦ୍ୟା ଶିଖିଲେ । ଦ୍ରୋଣ ଯେତେବେଳେ ଜାଣିଲେ ଯେ ଏକଲବ୍ୟ ଜଣେ ପ୍ରଧାନ ଯୋଦ୍ଧା ହୋଇପାରିଛି, ସେତେବେଳେ ସେ ତାଠାରୁ ଦକ୍ଷିଣା ନେବା ପାଇଁ କହିଲେ । ଏକଲବ୍ୟ ସମ୍ମତ ହେଲେ । ଦ୍ରୋଣ ତାଙ୍କ ଦକ୍ଷିଣ ହସ୍ତର ବୁଢ଼ା ଆଙ୍ଗୁଠିଟି ମାଗିଲେ । ଏକଲବ୍ୟ ଅକୁଣ୍ଠିତ ହୃଦୟରେ ତାହା କାଟି ଗୁରୁଙ୍କୁ ସମର୍ପଣ କଲେ । (ମହାଭାରତ)

**ଏକଚକ୍ରା**—ମହାଭାରତୀୟ ଯୁଗର ଏକ ପ୍ରାଚୀନ ନଗର । ବନବାସ ସମୟରେ ମହାରାଜ ଯୁଧିଷ୍ଠିର ଏଠାରେ ତାଙ୍କ ଭାଇ ଓ ମାତା କୁନ୍ତୀଙ୍କ ସହିତ ବାସ କରିଥିଲେ । ଏଠାରେ ଭୀମସେନ ବକନାମକ ରାକ୍ଷସ ବଧ କରି ଏକଚକ୍ରା

ଅଧିବାସୀଙ୍କୁ ଅଭୟ ଦେଇଥିଲେ । ଏ ନଗର ଆଧୁନିକ ଗ୍ରୁପରୀ ଜିଲା ଅନ୍ତର୍ଗତ ।

**ଏକାମ୍ର, ଏକାମ୍ରୁ, ଏକାମ୍ରକାନନ**—ପୁରୀ ଜିଲାର ଭୁବନେଶ୍ୱର । ଏଠାରେ ଲିଙ୍ଗରାଜଙ୍କ ମନ୍ଦିର ବିଦ୍ୟମାନ । ଏହା ଶିବକ୍ଷେତ୍ର ନାମରେ ଅଭିହିତ । ହିନ୍ଦୁମାନଙ୍କର ଏହା ପ୍ରସିଦ୍ଧ ତୀର୍ଥ । ଏଠାରେ ପୂର୍ବେ କେବଳ ଗୋଟିଏ ବିଶାଳ ଆମ୍ରବୃକ୍ଷ ଥିଲା । ସେହି ଛାୟାପ୍ରଦ ବୃକ୍ଷମୂଳରେ ହରଗୌରୀ ବିହାର କରୁଥିଲେ । (ସ୍ୱର୍ଣ୍ଣାଦ୍ରି ମହୋଦୟ)

**ଏରକାବନ**—ମହର୍ଷି ଅଷ୍ଟାବକ୍ରଙ୍କ ଶାପାନୁସାରେ ଯଦୁବଂଶ ଧ୍ୱଂସ ହେବା ନିମିତ୍ତ ଯେଉଁ ଲୁହା ଖଣ୍ଡକ ଥିଲା, ଶ୍ରୀମ ତାହା ପାଷାଣ ଶିରରେ ଘଷିବାରୁ ତାର ଧୂଳିମାନ ସମୁଦ୍ରକୂଳରେ ଲାଗିଲା । ସେଥିରୁ ଏରକାବନର ସୃଷ୍ଟି ହେଲା । ଯଦୁକୁଳ ଏହି ବନରେ ପରସ୍ପର ମଧ୍ୟରେ ହଣାହଣି ହୋଇଥିଲେ । (ହରିବଂଶ)

●



**ଐଳ**—ଚନ୍ଦ୍ରବଂଶୀୟ ରଜା ପୁରୁରବା ।

**ଐତରେୟ**—ଇତର ମୁନିଙ୍କ ପୁତ୍ର । ଐତରେୟ ଉପନିଷଦ୍ ପ୍ରଣେତା ।

**ଐରାବତ**—ଇନ୍ଦ୍ରଙ୍କ ହାତୀ, ସମୁଦ୍ରମନ୍ଥନରୁ ଉଦ୍ଭୂତ । (ଇନ୍ଦ୍ର ଦେଖ) ରାମାୟଣରୁ ଜଣାଯାଏ ଭଗୀରଥ ଯେତେବେଳେ ତପସ୍ୟାରେ ଗଙ୍ଗାଙ୍କୁ ତୁଷ୍ଟ କରି ମର୍ତ୍ତ୍ୟଲୋକକୁ ଆଣିଲେ ସେତେବେଳେ ଗଙ୍ଗା ସ୍ୱର୍ଗରୁ ଅବରୋହଣ କରିବାମାତ୍ରେ ମେରୁକୋଟର ମଧ୍ୟରେ ଲୁଚି ଗଲେ । ଭଗୀରଥ ଐରାବତଙ୍କୁ କାକୁତି ମିନତି କରି ମେରୁ ଦେହରେ ଦନ୍ତାଘାତ କରିବା ପାଇଁ ଅନୁରୋଧ

କଲେ । ଐରାବତ ଏହା କରନ୍ତେ ତାଙ୍କର ଗୋଟିଏ ଦାନ୍ତ ମେରୁ ଗର୍ଭରେ ଭଙ୍ଗି ରହିଗଲା ଏବଂ ଗଙ୍ଗା କ୍ଷିପ୍ରଗତିରେ ପ୍ରବାହିତ ହୋଇଆସିଲେ । କାହାଙ୍କ କାହାର ମତରେ ଦନ୍ତାଘାତ କରିବା ପୂର୍ବରୁ ଐରାବତ ଗଙ୍ଗାଙ୍କୁ ବିବାହ କରିବେ ବୋଲି ପ୍ରତିଶ୍ରୁତି ମାଗିଥିଲେ । ମାତ୍ର ତାଙ୍କର ଖରସ୍ରୋତର ବେଗ ସମ୍ଭାଳି ନ ପାରି ଲଜ୍ଜିତ ହୋଇ ଫେରି ଆସିଲେ ।

(୧) ନାଗ ବିଶେଷ ।

**ଐଳବିଳ** — ଯକ୍ଷରାଜ କୁବେରଙ୍କ ଅନ୍ୟ ନାମ ।

**ଐନ୍ଦ୍ରିଲା** — ବୃତ୍ରାସୁରର ରାଣୀ, ପରମ ସାଧ୍ୱୀ । ଇନ୍ଦ୍ର ପତ୍ନୀ ଶଚୀ ବୃତ୍ର ଦ୍ୱାରା ବନ୍ଦିନୀ ହୋଇ ରହିଥିବା ବେଳେ ଐନ୍ଦ୍ରିଲା ଶଚୀଙ୍କୁ ଦେବୀତୁଲ୍ୟ ପୂଜା ଓ ସେବା କରୁଥିଲେ ।





**ଓଁ** — ଏହାର ଉଚ୍ଚାରଣ ପ୍ରାୟତଃ ମନ୍ତ୍ରର ପ୍ରଥମେ କରାଯାଏ । ଅ, ଉ, ମ ଏ ତିନୋଟି ଅକ୍ଷର ମିଶି 'ଓଁ' ହୋଇଛି । ଅ—ବିଷ୍ଣୁ, ଉ—ଶିବ ଓ ମ—ପ୍ରଥମତରେ ବ୍ରହ୍ମା । ଏହି ବୀଜମନ୍ତ୍ରରେ ଏ ତିନ ଦେବଙ୍କ ନାମ ଥିବାରୁ ଏହା ମନ୍ତ୍ରର ବ୍ୟବହୃତ ହୁଏ । ପ୍ରଥମେ ଓଁ ଉଚ୍ଚାରଣ ନକରି ବେଦ ମନ୍ତ୍ର ପଢ଼ିଲେ ତାହା ସିଦ୍ଧ ହୁଏନାହିଁ । ଅକାର ସୂର୍ଯ୍ୟବୀଜ, ଉକାର ଚନ୍ଦ୍ର ଓ ମକାର ଅଗ୍ନିବୀଜ ବୋଲି ମଧ୍ୟ ଶାସ୍ତ୍ରର ନିର୍ଦ୍ଦେଶ ଅଛି ।

**ଓଁ ମଣି ପଦ୍ମେ ହୁଁ** — ତିବ୍ବତ ଦେଶୀୟ ଲାମାମାନେ (ଧର୍ମଗୁରୁ) ଏ ମନ୍ତ୍ର ଜପ କରନ୍ତି । ଏ ଦେଶରେ ପ୍ରବାଦ ଅଛି ଯେ ମାନସ ସରୋବର ପୂର୍ବେ ଋଷିଙ୍କ ଆବାସଭୂମି ଥିଲା । ପଦ୍ମମୁନି କାଶୀଠାରୁ ଜ୍ୱାଳାମୁଖୀ ବାଟେ ତିବ୍ବତକୁ ଆସି ଧର୍ମ ପ୍ରଚାର କରିଥିଲେ । ମଠ ସ୍ଥାପନ କରି ତିବ୍ବତବାସୀଙ୍କୁ

ଏହି ମନ୍ତ୍ରରେ ଦୀକ୍ଷିତ କରିଥିଲେ । ଏଥିପାଇଁ ଉତ୍ତରାପଥମାନେ 'କାଶୀଲମା' ବା ଭାରତୀୟ ଯୋଗୀମାନଙ୍କୁ ସମ୍ମାନ କରିଥାନ୍ତି । ପୁଣି କୌଣସି ଗ୍ରନ୍ଥ ଲେଖିବା ପୂର୍ବରୁ ପ୍ରଥମେ ଆମ ଦେଶରେ 'ଶ୍ରୀ ଗଣେଶାୟ ନମଃ, ଅବିଘ୍ନମସ୍ତୁ' ପରି 'କାଶୀ' ନାମ ପ୍ରଥମରେ ଲେଖନ୍ତି ।

(ସ୍ୱାମୀ ସୌମାନନ୍ଦ, ୬୨୪ ପୃଷ୍ଠା, ଭାଷାକୋଷ ପ୍ରଥମ, ୧୧୫୯ ପୃଷ୍ଠା)

●



**ଔର୍ବ**—ଅତି ପ୍ରାଚୀନ ଓ ପ୍ରସିଦ୍ଧ ଆର୍ଯ୍ୟ ଋଷି । ପ୍ରାଚୀନକାଳରେ କ୍ଷତ୍ରିୟମାନେ ଭୃଗୁବଂଶଜମାନଙ୍କର ଯଜମାନ ଥିଲେ । କୌଣସି କାରଣରୁ ଏମାନଙ୍କର ପୁରୋହିତ ବର୍ଗ ସମ୍ପତ୍ତି କଳଙ୍କ ହେବାରୁ କ୍ଷତ୍ରିୟମାନେ କ୍ରୋଧପରବଶ ହୋଇ ଭୃଗୁବଂଶୀୟ ରମଣୀମାନଙ୍କର ଗର୍ଭ ଭେଦ କରି ସନ୍ତାନମାନଙ୍କୁ ମାରି ପକାଇଲେ । ଭୃଗୁବଂଶୀୟ କୌଣସି ଏକ ଗର୍ଭବତୀ ରମଣୀ ଗର୍ଭରକ୍ଷା ଉଦ୍ଦେଶ୍ୟରେ ଅରଣ୍ୟକୁ ପଳାୟନ କଲେ । ଦେବରାଜ ଇନ୍ଦ୍ର ତାଙ୍କର ଅନୁଧାବନ କଲେ । ପଳାଇ ଯାଉଥିବା ବେଳେ ଏକ ଭୀତତ୍ରସ୍ତ ରମଣୀଙ୍କ ଉରୁଦେଶ ଭେଦ କରି ତେଜସ୍ୱୀ ସନ୍ତାନ ଭୂମିଷ୍ଠ ହୋଇଥିଲେ । ଉରୁଦେଶରୁ ଜାତ ହୋଇଥିବାରୁ ଏହାଙ୍କର ନାମ ହେଲା ଔର୍ବ । ଭୂମିଷ୍ଠ ହେବାମାତ୍ରେ ଔର୍ବ କ୍ରୋଧାନଳରେ ପୃଥିବୀ ଭସ୍ମ କରି ଦେବାକୁ ଉଦ୍ୟତ ହେଲେ । କିନ୍ତୁ ତାଙ୍କର ପିତୃପୁରୁଷ-ମାନେ ଏପରି ଗର୍ହିତ କାର୍ଯ୍ୟ କରିବାପାଇଁ ବାରଣ କରିଥିଲେ । ପିତୃବର୍ଗଙ୍କ ଅନୁଜ୍ଞାରେ ଔର୍ବ କ୍ରୋଧାନଳ ପ୍ରଶମନ କରି ସେହି ଅଗ୍ନିକୁ ସମୁଦ୍ର ଗର୍ଭକୁ ଫିଙ୍ଗି ଦେଲେ । ସେହି ଅଗ୍ନି-ବାଡ଼ବାଗ୍ନି ବା ବଡ଼ବାନଳ ନାମରେ ଅଭିହିତ । ଏହି ବାଡ଼ବାଗ୍ନିର ଅପର ନାମ ଔର୍ବାନଳ ।

●



**କଉଶିକ (କୌଶିକ)**—ମହର୍ଷି ବିଶ୍ୱାମିତ୍ରଙ୍କ ନାମାନ୍ତର । ମହାରାଜ କୁଶିକଙ୍କ ବଂଶରେ ଏହାଙ୍କର ଜନ୍ମ । ପିତାଙ୍କ ନାମ ଗାଧି । ତେଣୁ ଏହାଙ୍କୁ ଗାଧିଜ ଓ ଗାଧିନନ୍ଦନ କହନ୍ତି । କ୍ଷତ୍ରିୟ ହୋଇ କୌଶିକ କଠୋର ତପସ୍ୟା କରି ବ୍ରହ୍ମର୍ଷି ହୋଇଥିଲେ । ଶ୍ରୀରାମଙ୍କ ବିଦ୍ୟାଗୁରୁ ରୂପେ ଏହାଙ୍କର ଯଥେଷ୍ଟ ଖ୍ୟାତି ଅଛି । ଯଜ୍ଞ ରକ୍ଷାର୍ଥେ ରାମଚନ୍ଦ୍ର ଓ ଲକ୍ଷ୍ମଣ ଏହାଙ୍କ ସହିତ ସିଦ୍ଧାଶ୍ରମକୁ ଆସିଥିଲେ । ତାଡ଼କା ବଧ, ସୁବାହୁ ଓ ମାରୀଚଙ୍କ ଉପଦ୍ରବ ନିବାରଣ, ଏବଂ ସୀତା ବିବାହ, ଅହଲ୍ୟା ଶାପ ବିମୋଚନାଦି ଘଟଣାରେ ବିଶ୍ୱାମିତ୍ର ହିଁ ମୂଳ କାରଣ ।

ଜଣେ ଋଷି । ପିତାମାତାଙ୍କ ବିନାଅନୁମତିରେ ତପସ୍ୟା ପାଇଁ ଗୃହ ତ୍ୟାଗ କରିଥିଲେ । ଗୋଟିଏ ବଗ ତାଙ୍କ ଦେହରେ ମଳତ୍ୟାଗ କରିବା ମାତ୍ରେ ସେ ବଗ ପ୍ରତି କ୍ରୋଧଦୃଷ୍ଟି ନିକ୍ଷେପ କରିବାମାତ୍ରେ ସେ ଭସ୍ମୀଭୂତ ହୋଇଗଲା । ଏଥିଲାଗି କୌଶିକ ନିଜର ଅଦ୍ଭୁତ କ୍ଷମତା ଲାଗି ଯଥେଷ୍ଟ ଗର୍ବ ଅନୁଭବ କଲେ । ଏକଦା କୌଶିକ ଭିକ୍ଷା କରିବା ପାଇଁ ଲୋକାଳୟକୁ ଆସିଲେ । ଏକ ଗୃହସ୍ଥ ଦ୍ୱାରରେ ଭିକ୍ଷା ମାଗନ୍ତେ ଗୃହିଣୀ ତାଙ୍କୁ ଭିକ୍ଷା ଦେବାକୁ ବିଳମ୍ବ କଲେ । କାରଣ କ୍ଳାନ୍ତଶ୍ରାନ୍ତ ସ୍ୱାମୀଙ୍କ ସେବା ଚର୍ଚ୍ଚା ଉତ୍ତାରୁ ସେ ଭିକ୍ଷା ଦେବାକୁ ଗଲେ । ମାତ୍ର କୌଶିକ ସେତେବେଳକୁ ଅଗ୍ନିଶର୍ମା ହୋଇଗଲେଣି । ଗୃହିଣୀ କହିଲେ - ଆପଣ ମୋତେ ବଗ ବୋଲି ଭାବିଯାଉଛନ୍ତି ପରା । ଏପର୍ଯ୍ୟନ୍ତ ଆପଣ ଧର୍ମର ପ୍ରକୃତ ମର୍ମ ବୁଝି ନାହାନ୍ତି । ଏବେ ମିଥିଳାନିବାସୀ ଧର୍ମ ବ୍ୟାଧଙ୍କ ପାଖକୁ ଯାଇ ଧର୍ମ ଶିକ୍ଷା କରନ୍ତୁ । କୌଶିକ ଏକଥା ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଧର୍ମ ବ୍ୟାଧଙ୍କ ସମୀପକୁ ଗମନ କଲେ । ପିତୃମାତୃ ସେବାରେ ବ୍ୟାଧ ପରମ ଧାର୍ମିକ ହୋଇଥିବା କଥା କୌଶିକ ତାଙ୍କଠାରୁ ଅବଗତ ହୋଇ ଆପଣା ଗୃହକୁ ଫେରି ଆସି ପିତାମାତାଙ୍କ ସେବାରେ ନିଯୁକ୍ତ ହେଲେ ।

**କଉଶିକୀ (କୌଶିକୀ)**—ନଦୀ ବିଶେଷ । ଗଙ୍ଗାର ଉତ୍ତର ବାହିନୀ ଉପନଦୀ, ବିହାରରେ ଅବସ୍ଥିତ । ବିଶ୍ୱାମିତ୍ର ଆଶ୍ରମର ବ୍ରତଚାରିଣୀ ତପସ୍ୱିନୀ ବିଶେଷ ।

**କଉଶଲ୍ୟା (କୌଶଲ୍ୟା)**—କୋଶଳ ରାଜାଙ୍କ କନ୍ୟା, ଦଶରଥଙ୍କ ଜ୍ୟେଷ୍ଠାପତ୍ନୀ, ରାମଙ୍କ ଜନନୀ, ପୁରୁଙ୍କ ସ୍ତ୍ରୀ ଓ ଜନ୍ମେଜୟଙ୍କ ମାତା । ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କ ମାଆ । ଶ୍ରୀରାମଙ୍କ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ପରେ ଦଶରଥଙ୍କ ସଙ୍କେତ ସହିତ କୌଶଲ୍ୟା ଅଗ୍ନିରେ ପ୍ରାଣ ବିସର୍ଜନ କରିଥିଲେ ।

**କଂସ (କ)**—ଭୋଜବଂଶୀୟ ନରପତି ବିଶେଷ । ଏ ମଥୁରା ରାଜା ଉଗ୍ରସେନଙ୍କ କ୍ଷେତ୍ରଜ ପୁତ୍ର ଓ ମଗଧରାଜ ଜରାସନ୍ଧଙ୍କ ଜାମାତା । ଜରାସନ୍ଧଙ୍କ ଅସ୍ତି ଓ ପ୍ରାପ୍ତି (ହେତି ଓ ପ୍ରହେତି) ନାମ୍ନୀ ଦୁଇଟି ଦୁହିତାଙ୍କ ପାଣିଗ୍ରହଣ କରିଥିଲେ । ଦାନବରାଜ ଦ୍ରୁମିଳାଙ୍କ ଔରସରେ ଉଗ୍ରସେନଙ୍କ ରାଣୀ ଇନ୍ଦୁମତୀଙ୍କ ଗର୍ଭରେ ଏହାଙ୍କର ଜନ୍ମ । ଶ୍ୱଶୁର ଜରାସନ୍ଧଙ୍କ ସାହାଯ୍ୟରେ କଂସ ପିତାଙ୍କୁ ସିଂହାସନ-ଚ୍ୟୁତ କରାଇ ନିଜେ ସିଂହାସନ ଅଧିକାର କରିଥିଲେ । ପିତା, ମାତା, ଜ୍ଞାତି ତଥା ବନ୍ଧୁବର୍ଗ କଂସର ବିଦ୍ୱେଷାଚରଣ କରିଥିଲେ । କଂସ ନିଜ ପିତୃବ୍ୟ-କନ୍ୟା ଦେବକୀଙ୍କୁ ବସୁଦେବଙ୍କ ସହିତ ବିବାହ କରାଇଥିଲେ । ବିବାହ ସମୟରେ ଦେବବାଣୀ ହେଲା ଯେ ଦେବକୀଙ୍କ ଅଷ୍ଟମ ଗର୍ଭଜାତ ସନ୍ତାନ କଂସକୁ ବଧ କରିବ । ଏଥିଲାଗି କଂସ ଦେବକୀ ଓ ବସୁଦେବଙ୍କୁ କାରାରୁଦ୍ଧ କରିଥିଲେ । କାରାଗାର ମଧ୍ୟରେ ଏହି ଦମ୍ପତ୍ତିର ଯେତେ ସନ୍ତାନ ଉତ୍ପତ୍ତି ହୋଇଥିଲା, ସେ ସବୁକୁ କଂସ ଗୋଟି ଗୋଟି କରି ହତ୍ୟା କରିଥିଲା । ବସୁଦେବ ଓ ଦେବକୀ, ବଂଶ ଲୋପ ଆଶଙ୍କାରେ ଭାଦ୍ରମାସ କୃଷ୍ଣାଷ୍ଟମୀ ତିଥିର ମଧ୍ୟ ରାତ୍ରିରେ ଅଷ୍ଟମ ଗର୍ଭଜାତ ପୁତ୍ର ଶ୍ରୀକୃଷ୍ଣଙ୍କୁ ଗୋପନରେ ଗୋକୁଳପତି ଗୋପରାଜ ନନ୍ଦଙ୍କ ଗୃହକୁ ନେଇଗଲେ । ସେହି ରାତ୍ରିରେ ନନ୍ଦପତ୍ନୀ ଯଶୋଦା ଏକ କନ୍ୟା ପ୍ରସବ କରିଥିଲେ । ସେ କନ୍ୟା ଆଉ କେହି ନୁହନ୍ତି, ସ୍ୱୟଂ ଯୋଗମାୟା । ଯୋଗମାୟାଙ୍କ ମାୟାରେ ଗୋକୁଳ ନଗରରେ ସମସ୍ତେ ସୁପ୍ତ ଥିଲେ । ଏହି ସୁଯୋଗରେ ବସୁଦେବ ଶ୍ରୀକୃଷ୍ଣଙ୍କୁ ଯଶୋଦାକୋଳରେ ରଖି କନ୍ୟାଟିକୁ ଘାଲିଠାଇ ନେଇ ଆସିଲେ । ଏଣେ କଂସ ଜାଣିପାରିଲା ଯେ ଦେବକୀର ଅଷ୍ଟମ ଗର୍ଭ ସନ୍ତାନ ତାର ବିନାଶର ହେତୁ । ତେଣୁ ସେ କନ୍ୟାଟିକୁ ଦେବକୀ କୋଳରୁ ନେଇ ଶିଳାରେ କଚାଡ଼ି ଦେଲା । ଯୋଗମାୟା ଦର୍ଶକମାନଙ୍କୁ ଚମତ୍କାର ବିଧାନ କରି ଶୂନ୍ୟ ମାର୍ଗକୁ ବାହାରିଗଲେ । ଶୂନ୍ୟରେ ରହି ସେ ମେଘ ଗମ୍ଭୀର ବାଣୀ ଉଚ୍ଚାରଣ କଲେ -- 'ରେ ଦୁଷ୍ଟ, ତୁ ମୋତେ ବିନାଶ କରି ନିଜ ଜୀବନ ପଥରେ ପୁଣି କଣ୍ଟା ପକାଉଛୁ । ତୋର ହନ୍ତା, ଗୋପରାଜ ନନ୍ଦଙ୍କ ଗୃହରେ ନିର୍ବିଘ୍ନରେ ରହିଛନ୍ତି, ସାବଧାନ ।'' ଏହା ଶୁଣି କଂସ ବସୁଦେବ ଓ ଦେବକୀଙ୍କୁ କାରାମୁକ୍ତ କରି ଶ୍ରୀକୃଷ୍ଣଙ୍କ ବଧ ସାଧନ ପାଇଁ

ନାନାପ୍ରକାର ଯତ୍ନ କଲେ । କଂସ ପ୍ରେରିତ ରାକ୍ଷସାନୁଚରମାନେ ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ହେଲେ । ଅବଶେଷରେ କଂସ ରଙ୍ଗସଭା ଓ ଧନୁଯଜ୍ଞ ଅନୁଷ୍ଠାନ କରି ତାହା ଦେଖାଇବା ପାଇଁ ଅକ୍ରୂରଙ୍କ ଦ୍ୱାରା ଶ୍ରୀକୃଷ୍ଣ ଓ ବଳରାମଙ୍କୁ ମଥୁରାକୁ ଅଣାଇଲା । କିନ୍ତୁ ଅନନ୍ତବଳମ୍ବେ ମଞ୍ଚା ଉପରେ ବସିଥିବା କଂସକୁ ଶ୍ରୀକୃଷ୍ଣ ମାମୁଁ ବୋଲି ସମ୍ବୋଧନ କରି ମଞ୍ଚା ଉପରକୁ ଉଠିଯିବା ବେଳେ କଂସ ଗୁଣିଆ ହୋଇ ମଞ୍ଚା ଉପରୁ ଗଡି ପଡ଼ି ପ୍ରାଣ ତ୍ୟାଗକଲା ।

**କଂସାବତୀ**—କଂସର ଭଗିନୀ । ଉଗ୍ରସେନଙ୍କ କନ୍ୟା । ବସୁଦେବଙ୍କ କନିଷ୍ଠ ଭ୍ରାତା ଏହାଙ୍କର ସ୍ୱାମୀ । ବାଲେଶ୍ୱର ଜିଲ୍ଲା କାଂଶବାଂଶ ନଦୀର ପ୍ରାଚୀନ ନାମ ।

**କକୁତ୍‌ସ୍ଥ (କକୁସ୍ଥା, କାକୁସ୍ଥ)**—ସୂର୍ଯ୍ୟବଂଶୀୟ ବିଖ୍ୟାତ ରାଜା । ମନୁଙ୍କ ପୁତ୍ର ଇକ୍ଷ୍ୱାକୁ ବା ଇକ୍ଷ୍ୱାକୁରୁ, ତାଙ୍କ ପୁଅ ଶଶାଦ, ତାଙ୍କ ପୁଅ ପୁରଞ୍ଜୟ । ଏହି ପୁରଞ୍ଜୟ କକୁତ୍‌ସ୍ଥ ନାମରେ ଜଗଦ୍‌ବିଖ୍ୟାତ ହୋଇଥିଲେ । ପ୍ରାଚୀନ କାଳରେ ଦେବ ଦାନବଙ୍କ ମଧ୍ୟରେ ସୃଷ୍ଟିବିନାଶକ ଏକ ଭୀଷଣ ଯୁଦ୍ଧ ହେଲା । ଦେବତାମାନେ ଦାନବଙ୍କ ଦ୍ୱାରା ପରାଜିତ ହୋଇ ପୁରଞ୍ଜୟଙ୍କ ଶରଣ ନେଲେ । ପୁରଞ୍ଜୟ କହିଲେ – ଯଦି ଦେବରାଜ ଇନ୍ଦ୍ର ମୋର ବାହନ ହେବେ ତେବେ ମୁଁ ଅସୁରମାନଙ୍କ ସହିତ ଯୁଦ୍ଧ କରିବି । ପ୍ରଥମେ ଇନ୍ଦ୍ର ଲଜ୍ଜିତ ହୋଇ ଏ ପ୍ରସ୍ତାବରେ ଅସମ୍ମତ ହେଲେ, ପରେ ବିଷ୍ଣୁଙ୍କ ପରାମର୍ଶ ଅନୁଯାୟୀ ମହାବୃଷଭ ରୂପ ଧାରଣ କରି କକୁଦୋପରି ପୁରଞ୍ଜୟଙ୍କୁ ବହନ କଲେ । ପୁରଞ୍ଜୟ ଯୁଦ୍ଧପ୍ରବୃତ୍ତ ହୋଇ ଅସୁରମାନଙ୍କୁ ପରାସ୍ତ କଲେ । ବୃଷଭର କକୁଦ ଉପରେ ବସିଥିବାରୁ ପୁରଞ୍ଜୟଙ୍କର ଅନ୍ୟନାମ ହେଲା କକୁତ୍‌ସ୍ଥ । ଏହି ବଂଶୀୟ ନରପତିମାନେ ଉତ୍ତରକାଳରେ କାକୁତ୍‌ସ୍ଥ ନାମରେ ଜଗତରେ ପ୍ରସିଦ୍ଧି ଲାଭ କରିଥିଲେ । (ଭାଗବତ ନବମ ସ୍କନ୍ଧ) । ରାମାୟଣବର୍ଣ୍ଣିତ ଭଗୀରଥଙ୍କ ପୁତ୍ର କିନ୍ତୁ ଭାଗବତରେ ଏହାଙ୍କ ନାମ ଶ୍ରୁତପୁଞ୍ଜୟ ।

**କଖଟୀ**—ଏକ ବୃଦ୍ଧା ମର୍କଟୀ । ଏ ବୋବାଇବା ଦ୍ୱାରା ଜଟିଳାଙ୍କ ଉପସ୍ଥିତିର ସୂଚନା ଶ୍ରୀମତୀ ରାଧା ପାଇ ପାରିଥିଲେ । (ଭାଗବତ, ବିଦଗ୍ଧ ଚିନ୍ତାମଣି)

**କଙ୍କ**—ଛଦ୍ମବେଶୀ ବ୍ରାହ୍ମଣ । ଅଜ୍ଞାତବାସ ସମୟରେ ବିରାଟ ରାଜଧାନୀରେ ଯୁଧିଷ୍ଠିର ଏହି ରୂପ ଧାରଣ କରିଥିଲେ । ଯମଙ୍କର ଅନ୍ୟ ନାମ । କଂସପୁରର ଏକ ଭାଇର ନାମ । ରାମାୟଣବର୍ଣ୍ଣିତ ଅସୁର ବିଶେଷ ।

**କଂସା**—ଉଗ୍ରସେନଙ୍କ ଦୁହିତା । ଏହାଙ୍କର ସ୍ୱାମୀ ଥିଲେ ବସୁଦେବଙ୍କ ଭାଇ ।

**କଚ**—ପୂର୍ବକାଳରେ ବିଶ୍ୱଜୟ ଅଭିଳାଷ ପୋଷଣ କରି ଦେବତା ଓ ଅସୁରଙ୍କ ମଧ୍ୟରେ ଭୟଙ୍କର ସଂଗ୍ରାମ ସୃଷ୍ଟି ହେଲା । ସମୁଦାୟ ଅସୁର ଦେବତାମାନଙ୍କ ଦ୍ୱାରା ନିହତ ହେବାରୁ ଦୈତ୍ୟଗୁରୁ ଶୁକ୍ର ମୃତ ସଞ୍ଜୀବନୀ ବିଦ୍ୟା ବଳରେ ସେମାନଙ୍କୁ ପୁନର୍ଜୀବିତ କରିଦେଲେ । ପୁନର୍ଜୀବନ ଲାଭ କରି ଅସୁରମାନେ ପୁନଶ୍ଚ ଦେବତାମାନଙ୍କ ସହିତ ଯୁଦ୍ଧ କଲେ । ଅସୁରମାନେ ଯେଉଁ ଦେବତାଙ୍କୁ ବଧ କରନ୍ତି ଦେବଗୁରୁ ବୃହସ୍ପତି ସେମାନଙ୍କୁ ବଞ୍ଚାଇ ପାରନ୍ତି ନାହିଁ । ତେଣୁ ଏହି ବିଦ୍ୟା ଶିକ୍ଷା କରିବା ପାଇଁ ଦେବତାମାନେ ଗୁରୁପୁତ୍ର କଚଙ୍କୁ ଶୁକ୍ରଙ୍କ ନିକଟକୁ ଗମନ କରିବା ପାଇଁ ଅନୁରୋଧ କରିଥିଲେ । କଚ ସେହିକ୍ଷଣି ଶୁକ୍ରାଶ୍ରମକୁ ଗମନ କଲେ ଏବଂ ତାଙ୍କର ଶିଷ୍ୟରୂପେ ବିଦ୍ୟା ଶିକ୍ଷା ଆରମ୍ଭ କଲେ । କ୍ରମେ ଶୁକ୍ରପୁତ୍ରୀ ଦେବଯାନୀଙ୍କଠାରେ କଚଙ୍କର ଅତ୍ୟନ୍ତ ଅନୁରାଗ ଜାତ ହେଲା । ଅସୁରମାନେ କଚଙ୍କର ଏ ଉଦ୍ଦେଶ୍ୟ ବୁଝିପାରି ତାଙ୍କୁ ବଧ କଲେ । ଦେବଯାନୀଙ୍କ ଅନୁରୋଧବଶତଃ ଶୁକ୍ର ପୁଣି କଚଙ୍କୁ ବଞ୍ଚାଇ ଦେଲେ । କେତେଦିନ ପରେ ରାକ୍ଷସମାନେ କଚଙ୍କୁ ଆଉଥରେ ବିନାଶ କଲେ । ଏଥର ମଧ୍ୟ ଶୁକ୍ର, ଦୁହିତାର ଅନୁରୋଧ ଭାଙ୍ଗି ନ ପାରି କଚଙ୍କୁ ଜିଆଁଇ ଦେଲେ । କେତେଦିନ ପରେ ଦେବଯାନୀ କଚଙ୍କୁ ପୁଷ୍ପ ଆହରଣ ପାଇଁ ବନକୁ ପଠାଇଲେ । ରାକ୍ଷସମାନେ ଏ ସୁଯୋଗ ପାଇ ତାଙ୍କୁ ମାରିଦେଲେ ଏବଂ ତାଙ୍କ ଶବକୁ ଭସ୍ମ କରି ସେହି ଭସ୍ମ ସୁରାରେ ମିଶାଇ ଶୁକ୍ରଙ୍କୁ ପିଇବାକୁ ଦେଲେ । ଶୁକ୍ର ଏହା ଜାଣି ନପାରି ଏ ସୁରା ପାନ କଲେ । ବର୍ତ୍ତମାନ କଚ ନ ଫେରିବାରୁ ଦେବଯାନୀ ପିତାଙ୍କ ନିକଟରେ ସକଳ ଘଟନା ବର୍ଣ୍ଣନା କଲେ । ଶୁକ୍ର କହିଲେ—'ମାଆ, ମୁଁ ଆଉ କଣ କରିବି ? ରାକ୍ଷସମାନେ ନିଶ୍ଚୟ କଚକୁ ମାରି ଦେଇଛନ୍ତି । ତୋ ଅନୁରୋଧରେ ମୁଁ ତାକୁ ଦୁଇଥର ଜିଆଁଇ ଦେଲି । ତୁ ମୋତେ ଏବେ ଆଉ ଅନୁରୋଧ କର ନା । ଯାହା ହେବାର ହୋଇଛି । କଚ ଲାଗି ତୁ ଆଉ ଅକାରଣ ଦୁଃଖ କର ନା ।' ମାତ୍ର ଦେବଯାନୀ ପ୍ରବୋଧ ମାନିଲେ ନାହିଁ । ସେ କଚଙ୍କୁ ସ୍ମରଣ କରି ବିଳାପ କରିବାକୁ ଲାଗିଲେ । କନ୍ୟାବତ୍ସଳ ଶୁକ୍ର ସଞ୍ଜୀବନୀ ବିଦ୍ୟାବଳରେ ସେହିକ୍ଷଣି କଚଙ୍କୁ ସ୍ମରଣ କଲେ । ଶୁକ୍ରଙ୍କ ଆହ୍ୱାନରେ କଚ ଗୁରୁଙ୍କ ଉଦର ମଧ୍ୟରେ ରହି ଉତ୍ତର ଦେଲେ । ଶୁକ୍ରାଚାର୍ଯ୍ୟ କଚଙ୍କୁ ପଚାରିଲେ—'ତୁମେ ମୋ ଉଦର ମଧ୍ୟକୁ କିପରି ଗଲ ?' କଚ କହିଲେ—'ଆପଣଙ୍କ ଆଶୀର୍ବାଦ ଓ ଅନୁଗ୍ରହରୁ ମୁଁ ଯଥେଷ୍ଟ ସ୍ମୃତି ଶକ୍ତି ଲାଭ କରି ପାରିଛି । ଅସୁରମାନେ ମୋତେ ମାରି ପୋଡ଼ି ଭସ୍ମ

କରି ପାନୀୟ ଅର୍ଥାତ୍ ଆପଣଙ୍କ ଯୋଗ୍ୟ ସୁରାରେ ତାହା ମିଶାଇ ଆପଣଙ୍କୁ ହିଁ ପାନ କରିବାକୁ ଦେଇଛନ୍ତି । ମୋର ପୂର୍ବାର୍ଜିତ ତପସ୍ୟା କ୍ଷୟ ହୋଇଥିବାରୁ ମୁଁ ବର୍ତ୍ତମାନ ଆପଣଙ୍କ ଉଦର ମଧ୍ୟରେ ପଡ଼ି ଛଟପଟ ହେଉଛି ।' ଶୁକ୍ର କହିଲେ—'ଦେବଯାନି, ଆଉ କଚ ପ୍ରତି ଅଧିକ ଅନୁରାଗ ପ୍ରକାଶ କରନା, କଚ ବର୍ତ୍ତମାନ ମୋ ଉଦର ଭିତରେ । କଚ ଯଦି ପୁନର୍ଜନ୍ମ ଲାଭ କରେ, ତେବେ ମୋର ମୃତ୍ୟୁ ଅବଶ୍ୟମ୍ଭାବୀ ।' ଦେବଯାନୀ ଉତ୍ତର ଦେଲେ—'ଯଦି କଚ ପ୍ରାଣତ୍ୟାଗ କଲେ ମୁଁ ବଞ୍ଚିବି ନାହିଁ, ପୁଣି ଆପଣଙ୍କ ମୃତ୍ୟୁରେ ମଧ୍ୟ ମୋର ସେହି ଦୁର୍ଦ୍ଦଶା ଘଟିବ । ଉଭୟଙ୍କ ମୃତ୍ୟୁ ମୋ ପକ୍ଷେ ସମାନ ଦୁଃଖଦାୟକ ।' ଏପରି ହେଲେ ଶୁକ୍ର ଘୋର ଚିନ୍ତାନ୍ୱିତ ହୋଇ କିଛିକ୍ଷଣ ପରେ କଚଙ୍କୁ କହିଲେ—'ବତ୍ସ, ଦେବଯାନୀ ତୁମ ପ୍ରତି ଅତ୍ୟନ୍ତ ଅନୁରାଗିଣୀ ହୋଇଛି, ଏଥିଲାଗି ମୁଁ ତୁମ୍ଭଙ୍କୁ ସଞ୍ଜୀବନୀ ବିଦ୍ୟା ପ୍ରଦାନ କରିବି । ମାତ୍ର ତୁମେ ମୋ ଦେହରୁ ନିଷ୍କ୍ରାନ୍ତ ହେବା ମାତ୍ରେ ମୋର ମୃତ୍ୟୁ ଘଟିବ । ସେଥିଲାଗି ମୁଁ ତୁମ୍ଭଙ୍କୁ ଅନୁରୋଧ କରୁଛି, ତୁମେ ମୋ ଉଦରରୁ ବାହାରିବା ମାତ୍ରେ ମୋତେ ପୁନର୍ଜୀବନ ଦାନ କରିବା ପାଇଁ ପଶ୍ଚାଦ୍‌ପଦ ହେବନାହିଁ । ଆଶା କରେ ତୁମେ ଏହି ଧର୍ମ ପ୍ରତିପାଳନ କରିବା ନିମିତ୍ତ ଆଦୌ କୁଣ୍ଠିତ ହେବନାହିଁ ।'

କଚ ଗୁରୁଙ୍କ ପ୍ରସ୍ତାବରେ ସମ୍ମତ ହେଲେ । ସେ ଶୁକ୍ରଙ୍କଠାରୁ ସଞ୍ଜୀବନୀ ବିଦ୍ୟା ଲାଭ କରି ତାଙ୍କ ଉଦର ମଧ୍ୟରୁ ନିଷ୍କ୍ରାନ୍ତ ହୋଇ ମୃତ ଗୁରୁଙ୍କୁ ପୁନର୍ଜୀବନ ଦାନ କଲେ । କଚ ଏକ ହଜାର ବର୍ଷ ଯାଏଁ ଗୁରୁ ଗୃହରେ ରହିଲେ । ଶିକ୍ଷା ସମାପ୍ତି ପରେ ସେ ସ୍ୱର୍ଗକୁ ଯିବାପାଇଁ ଗୁରୁଙ୍କୁ ଆଦେଶ ପ୍ରାର୍ଥନା କଲେ । ଏହା ଦେଖି ଦେବଯାନୀ କହିଲେ – 'ଦେଖ, ତୁମେ ବର୍ତ୍ତମାନ କୃତବିଦ୍ୟ ହୋଇଛ । ଏବେ ଶାସ୍ତ୍ରାନୁମୋଦନ ପ୍ରକାରେ ମୋର ପାଣିଗ୍ରହଣ କର । କାରଣ ମୁଁ ତୁମ ପ୍ରତି ଅତିଶୟ ଅନୁରାଗିଣୀ ହୋଇଅଛି ।' କଚ ଉତ୍ତର ଦେଲେ—'ତୁମେ ମୋ ଗୁରୁପୁତ୍ରୀ । ତେଣୁ ମୋର ମାନ୍ୟସ୍ଥାନୀୟା । ଏଥିଲାଗି ମୁଁ ତୁମ୍ଭଙ୍କୁ କଦାପି ବିବାହ କରିପାରିବି ନାହିଁ । ଏହା କୌଣସି କାଳେ ଶାସ୍ତ୍ରାନୁମୋଦିତ ନୁହେଁ ।' ଅଭିମାନରେ ଦେବଯାନୀ କଚଙ୍କୁ ଅଭିଶାପ ଦେଲେ—'ମୁଁ ଅପରାଧିନୀ ନୁହେଁ, ମାତ୍ର ତୁମେ ମୋତେ ଗ୍ରହଣ କଲନାହିଁ । ଏଥିଲାଗି ମୋ ପିତୃପ୍ରଦତ୍ତ ବିଦ୍ୟା ତୁମ ପକ୍ଷେ ଫଳବତୀ ହେବନାହିଁ ।' କଚ କହିଲେ—'ମୁଁ ତୁମ୍ଭଙ୍କୁ କୌଣସି ପ୍ରକାର ଦୋଷଦୃଷ୍ଟ୍ୟା ଭାବି ତ୍ୟାଗ କରି ନାହିଁ । ଗୁରୁପୁତ୍ରୀ ବୋଲି ଅସମ୍ମତି ମାତ୍ର ଜ୍ଞାପନ କରିଛି । ମୁଁ ନ୍ୟାୟତଃ ଶାପଭାଗୀ ହେବନାହିଁ । ତୁମର ଏହି ଶାପ କାମପ୍ରଯୁକ୍ତ, ଏଥିଲାଗି ଏହା

ମୋ ପକ୍ଷରେ କାର୍ଯ୍ୟକାରୀ ହେବନାହିଁ । ପୁଣି ମୁଁ ମଧ୍ୟ ତୁମ୍ଭଙ୍କୁ ଶାପ ଦେଉଛି ଯେ, ତୁମେ ଯାହା ଅଭିଳାଷ କରୁଛ, ତାହା ଅପୂର୍ଣ୍ଣ ରହିବ । ଅନ୍ୟ କୌଣସି ମୁନିକୁମାର ବା ବ୍ରାହ୍ମଣ ଯୁବକ ତୁମର ପାଣିଗ୍ରହଣ କରିବେନାହିଁ । ତୁମେ ବ୍ରାହ୍ମଣ ବ୍ୟତୀତ ଅନ୍ୟ କୌଣସି ବଳାତସ୍ଥ ବ୍ୟକ୍ତିର ପତ୍ନୀ ହେବ । ତୁମର ଅଭିସମ୍ପାତ ଅବଶ୍ୟ ମୋ ପକ୍ଷେ ଫଳପ୍ରଦ ହୋଇ ରହିବ । ମାତ୍ର ମୁଁ ଯାହାଙ୍କୁ ଏହି ବିଦ୍ୟା ଶିକ୍ଷା ଦେବି ସେ ତାହାର ଫଳଭୋଗୀ ହେବେ ।' ଏହା ପରେ କଚ ସ୍ୱର୍ଗକୁ ଗମନ କଲେ । ଦେବତାମାନଙ୍କୁ ସଞ୍ଜୀବନୀ ମନ୍ତ୍ର ଶିକ୍ଷା ଦେଲେ । ଏଣେ ଦେବଯାନୀ ସେହି ଶାପ ଫଳରେ ମହାରାଜ ଯଯାତିଙ୍କ ସହଧର୍ମିଣୀ ହୋଇ ରହିଲେ । (ମହାଭାରତ, ଆଦିପର୍ବ)

**କଚ୍ଛ, କଚ୍ଛପ, କୂର୍ମ**—ବିଷ୍ଣୁଙ୍କର ଦ୍ୱିତୀୟ ଅବତାର । ଏହି ଅବତାରରେ ବିଷ୍ଣୁ ପୃଥିବୀକୁ ରକ୍ଷା କରିବା ପାଇଁ ପୃଷ୍ଠରେ ବହନ କରିଥିଲେ ।

**କଚ୍ଛପୀ**—ଏକ ପ୍ରକାର ବୀଣା । ଏହା ସରସ୍ୱତୀଙ୍କ ବୀଣାର ନାମ ବୋଲି ପୁରାଣ-ପ୍ରସିଦ୍ଧ ।

**କଣ୍ୱ**—ତପଃ ପ୍ରଭାବସମ୍ପନ୍ନ ଜଣେ ଋଷି । ମେନକା ଦ୍ୱାରା ପରିତ୍ୟକ୍ତା ଶକୁନ୍ତଳାଙ୍କର ଏ ହେଉଛନ୍ତି ପାଳକ ପିତା । ମାଳିନୀ ନଦୀ ତୀରରେ ଏହାଙ୍କର ଆଶ୍ରମ ଥିଲା ।

**କଣ୍ଡୁ**—କଣ୍ଡ ମୁନିଙ୍କର ପୁତ୍ର । ଏହାଙ୍କ କଠୋର ତପସ୍ୟାରେ ଭୀତ ହୋଇ ଦେବରାଜ ଇନ୍ଦ୍ର ପ୍ରମ୍ଲୋଚା ନାମ୍ନୀ ଅପ୍ସରାକୁ ଏହାଙ୍କ ତପୋଭଙ୍ଗ ପାଇଁ ପଠାଇଥିଲେ । ପ୍ରମ୍ଲୋଚାର ରୂପ ଲାବଣ୍ୟରେ ମୁଗ୍ଧ ହୋଇ କଣ୍ଡୁ ଅନେକ ଦିନ ଯାଏ ତାହା ସହିତ ଗୃହୀ ହୋଇ ରହିଲେ । ମାତ୍ର ହଠାତ୍ ନିଜର ଅଧୋଗତି ବିଷୟ ଚିନ୍ତା କରି ତାଙ୍କର ଚେତନୋଦୟ ହେଲା । ସେ ଅପ୍ସରାକୁ ତ୍ୟାଗକରି ପୁରୁଷୋତ୍ତମ କ୍ଷେତ୍ରକୁ ଗମନ କଲେ ଏବଂ ସେଠାରେ କଠୋର ତପସ୍ୟା କରି ମୁକ୍ତି ଲାଭ କଲେ । (ବିଷ୍ଣୁପୁରାଣ)

**କତ**—ମହର୍ଷି ବିଶ୍ୱାମିତ୍ରଙ୍କ ପୁତ୍ର । ବିଶ୍ୱାମିତ୍ରଙ୍କ ଔରସରେ ଶାଳାବତୀଙ୍କ ଗର୍ଭରୁ ଏ ଜନ୍ମ ହୋଇଥିଲେ । କତଙ୍କଠାରୁ କାତ୍ୟାୟନବଂଶ ପ୍ରତିଷ୍ଠିତ ହୋଇଥିଲା ।

**କଦ୍ରୁ**—ଦକ୍ଷ ପ୍ରଜାପତିଙ୍କ କନ୍ୟା ଓ ମହର୍ଷି କଶ୍ୟପଙ୍କ ପତ୍ନୀ । ଏହାଙ୍କ ଗର୍ଭରୁ ସହସ୍ର ସଂଖ୍ୟକ ଅଣ୍ଡ ଜାତ ହୋଇଥିଲା । ଏହି ସହସ୍ର ଅଣ୍ଡରୁ ସହସ୍ର ନାଗ

ଉତ୍ପନ୍ନ ହୋଇଥିଲେ । କଦ୍ରୁ ଏହିପରି ବଳଶାଳୀ ସହସ୍ର ନାଗର ଜନନୀ ହେବାପାଇଁ ସ୍ୱାମୀଙ୍କୁ ପ୍ରାର୍ଥନା କରିଥିଲେ । କଦ୍ରୁଙ୍କ ସହିତ ବାଦ ବିବାଦରେ ପରାସ୍ତ ହୋଇ ତାଙ୍କ ସପତ୍ନୀ ବିନତା ୫୦୦ ବର୍ଷ ଯାଏ ତାଙ୍କର ଦାସୀ ହୋଇ ରହିଥିଲେ । ପରେ ନିଜ ପୁତ୍ର ଗରୁଡ଼ଙ୍କ ଚେଷ୍ଟାରେ ସେ ଏଥିରୁ ମୁକ୍ତି ଲାଭ କଲେ । ଏକଦା ଇନ୍ଦ୍ରଙ୍କ ଅଶ୍ୱ ଉଚ୍ଚୈଃଶ୍ରବା କଦ୍ରୁ ଓ ବିନତାଙ୍କ ନିକଟ ଦେଇ ଚାଲିଗଲେ । କଦ୍ରୁ ବିନତାଙ୍କୁ ପଚାରିଲେ—'ଏବେତ ଉଚ୍ଚୈଃଶ୍ରବା ଏ ବାଟ ଦେଇ ଯିବା ଦେଖିଲ, କହ ଦେଖି ତାର ଲାଙ୍ଗୁଳର ବର୍ଣ୍ଣ କେଉଁ ରଙ୍ଗ ?' ବିନତା କହିଲେ—'ଏତିକି ଅଟକଳ କରି ପାରିଲ ନାହିଁ ! ସ୍ୱଚ୍ଛ ଧବଳ ଲାଙ୍ଗୁଳ ପରା ତାର ।' ମାତ୍ର କଦ୍ରୁ ପ୍ରତିବାଦ କରି କହିଲେ—'ନିପଟ କଳାବର୍ଣ୍ଣର ଲାଞ୍ଜ ଲଟା ତୁମକୁ ଧୋବ ଦିଶିଲା କିପରି ?' ସେହିଠାରେ ଉଭୟେ ପଣ କଲେ ଯାହାର କଥା ମିଥ୍ୟା ପ୍ରମାଣିତ ହେବ, ସେ ଅପର ଜଣକର ଦାସୀ ହୋଇ ରହିବ । ଅଶ୍ୱ ଚାଲିଗଲା । କଦ୍ରୁ ପୁତ୍ରମାନଙ୍କଠାରୁ ଶୁଣିଲେ ଯେ ପ୍ରକୃତରେ ଉଚ୍ଚୈଃଶ୍ରବାର ଲାଙ୍ଗୁଳ ଧଳା । ସେ ପ୍ରମାଦ ଗଣିଲେ । ତେଣୁ ସେ ପୁତ୍ରମାନଙ୍କୁ ଉଚ୍ଚୈଃଶ୍ରବା ପୁଚ୍ଛ ବେଷ୍ଟନ କରିବାପାଇଁ ଆଦେଶ ଦେଲେ । ନାଗମାନେ ସେହିପରି କଲେ । ଦୂରରୁ ସର୍ପବେଷ୍ଟିତ ଶ୍ୱେତ ପୁଚ୍ଛ କୃଷ୍ଣବର୍ଣ୍ଣ ପରି ଦେଖାଗଲା । ବାଧ୍ୟ ହୋଇ ବିନତା କଦ୍ରୁଙ୍କ ଦାସୀ ହୋଇ ରହିଲେ । କଦ୍ରୁ, ସପତ୍ନୀ ପୁଅ ଗରୁଡଙ୍କ ପ୍ରତି ଦାସୀପୁତ୍ର ତୁଲ୍ୟ ବ୍ୟବହାର କଲେ । ଗରୁଡ଼ କଦ୍ରୁଙ୍କ ଆଦେଶ କ୍ରମେ ସାପମାନଙ୍କୁ ପିଠିରେ ବୋହି ନିଆ ଆଣ କଲେ । ମାତ୍ର ତାଙ୍କୁ ଏକଥା ଅତି ବାଧିଲା । ସେ ମାଆଙ୍କୁ ଏହାର କାରଣ ପଚାରିଲେ । ମାତାଙ୍କଠାରୁ ସମସ୍ତ ବିବରଣୀ ଶୁଣି ଗରୁଡ଼ ଅତ୍ୟନ୍ତ ଦୁଃଖିତ ହେଲେ । ପରେ ସାପମାନଙ୍କୁ ଯାଇ ପଚାରିଲେ—'ଆଚ୍ଛା, ତୁମମାନଙ୍କର କି କାର୍ଯ୍ୟକଲେ ଆମେ ମାତାପୁତ୍ର ଏ ଦାସତ୍ୱରୁ ମୁକ୍ତି ପାଇବୁ ?' ସାପମାନେ କହିଲେ—'ତୁମେ ଯଦି ଅମୃତ ଆଣି ଦେଇପାରିବ, ତେବେ ଏ ଅଧୀନତାରୁ ମୁକ୍ତି ଲାଭ କରିବ ।'' ତାହା ନିଶ୍ଚୟ ହେବ ବୋଲି କହି ଗରୁଡ଼ ମାତାଙ୍କ ଆଦେଶ ଭିକ୍ଷା କରି ଚନ୍ଦ୍ରଲୋକକୁ ଗମନ କଲେ । ପଥ ମଧ୍ୟରେ ତାଙ୍କୁ ବିଶେଷ କ୍ଷୁଧା ହେଲା । ତେଣୁ ସେ ପିତାଙ୍କ ପରାମର୍ଶ ଅନୁସାରେ ପ୍ରକାଣ୍ଡକାୟ ଯୁଦ୍ଧନିରତ ଗଜ ଓ କଚ୍ଛପ ଦ୍ୱୟଙ୍କୁ ଭକ୍ଷଣ କରି ଅମୃତ ଆହରଣ ପାଇଁ ଊର୍ଦ୍ଧ୍ୱ ମୁଖରେ ଗମନ କଲେ । ଇନ୍ଦ୍ରାଦି ଦେବତାମାନେ ଯଥାସାଧ୍ୟ ତାଙ୍କୁ ବାଧା ଦେଲେ । କିନ୍ତୁ ଦେବତାମାନେ ଗରୁଡ଼ଙ୍କ ଦ୍ୱାରା ପରାସ୍ତ ହେଲେ । ଗରୁଡ଼ ଅମୃତ ଧରି ଅନ୍ତରୀକ୍ଷ ମାର୍ଗରେ ଫେରିଲେ । ସେହି ପଥରେ ଇନ୍ଦ୍ରଙ୍କ ସହିତ ତାଙ୍କର ସାକ୍ଷାତ ହେଲା ।

ଉଭୟଙ୍କର ପରାମର୍ଶମତେ ସ୍ଥିର ହେଲା ଯେ ଗରୁଡ଼ ତୃଣ ମଧ୍ୟରେ ଅମୃତ ସ୍ଥାପନା କରିବା ମାତ୍ରେ ଇନ୍ଦ୍ର ତାହାକୁ ଅପହରଣ କରି ଆଣିବେ । ଗରୁଡ଼ ଘରକୁ ଫେରି ସାପମାନଙ୍କୁ କହିଲେ—'ହେଇଟି ଦେଖ, ତୁମମାନଙ୍କ ପାଇଁ ମୁଁ ଅମୃତ ଆଣିଛି, ଏହା କୁଶ ଉପରେ ରଖିଛି । ତୁମେମାନେ ସ୍ନାନାନ୍ତେ ଅମୃତ ପାନ କର ।' ସାପମାନେ ଅତି ଆନନ୍ଦରେ ଶୁଚିପୂତ ହେବାପାଇଁ ସ୍ନାନ କରିବାକୁ ଗଲେ । ଏଣେ ଇନ୍ଦ୍ର ସମସ୍ତ ଓ ସୁଯୋଗ ପାଇ ଅମୃତ ଭାଣ୍ଡଟିକୁ ଅପହରଣ କରିନେଲେ । ସ୍ନାନାନ୍ତେ ନାଗମାନେ ଘରକୁ ଆସି ଆଉ ଅମୃତ ଦେଖି ପାରିଲେନାହିଁ । ସେମାନେ ମନେକଲେ କୁଶାସନ ଉପରେ ଅମୃତ କଣିକାର ଛିଟା ନିଶ୍ଚୟ ପଡ଼ିଥିବ । ସେଥିଲାଗି ସେମାନେ କୁଶାସନଟିକୁ ଚାଟିବାକୁ ଲାଗିଲେ । ବାରମ୍ବାର ଲେହନ କରିବାରୁ ସେମାନଙ୍କ ଜିଭ ଦ୍ୱିଖଣ୍ଡ ହୋଇଗଲା । ସେହିଦିନଠୁ ସେମାନେ ଦ୍ୱିଜିହ୍ୱ ସଂଜ୍ଞା ପାଇଲେ । ଏହିପରି ଗରୁଡ଼ଙ୍କ ଦ୍ୱାରା ବିନତାଙ୍କ ଦାସତ୍ୱ ମୋଚନ ହେଲା । (ମହାଭାରତ ଆଦିପର୍ବ)

**କନ୍ଦର୍ପ, କାମଦେବ**—ଏ ବ୍ରହ୍ମାଙ୍କ ମାନସପୁତ୍ର । ଇନ୍ଦ୍ରାଦି ଦେବତାମାନଙ୍କ ଅନୁରୋଧରେ ସେ ମହାଦେବଙ୍କ ଧ୍ୟାନ ଭଙ୍ଗ କରିବା ନିମିତ୍ତ ଯାଇଥିଲେ, ମାତ୍ର ଦୁର୍ଭାଗ୍ୟବଶତଃ ମହାଦେବଙ୍କ ତୃତୀୟ ନୟନର ଅଗ୍ନି ଦ୍ୱାରା ଭସ୍ମୀଭୂତ ହୋଇଗଲେ । ସେହିଦିନଠାରୁ କନ୍ଦର୍ପ ଅନଙ୍ଗ ଆଖ୍ୟା ପାଇଥିଲେ । ଜନ୍ମାନ୍ତରରେ ଏହାଙ୍କୁ ପ୍ରଦ୍ୟୁମ୍ନ ବୋଲି କହନ୍ତି । ପ୍ରଦ୍ୟୁମ୍ନ ଶ୍ରୀକୃଷ୍ଣଙ୍କ ଔରସରେ ରୁକ୍ମିଣୀଙ୍କ ଗର୍ଭରୁ ଜାତ ହୋଇଥିଲେ । ଜନ୍ମର ସପ୍ତମ ଦିବସରେ ସେ ଶମ୍ବର ଦୈତ୍ୟ ଦ୍ୱାରା ଅପହୃତ ହୋଇଗଲେ । ଶମ୍ବର ଶ୍ରୀକୃଷ୍ଣଙ୍କ ପରମ ଶତ୍ରୁ । ଶମ୍ବର ପତ୍ନୀ ମାୟାବତୀ ନିଃସନ୍ତାନା, ପତ୍ନୀର ସନ୍ତୋଷ ବିଧାନ ନିମିତ୍ତ ଶମ୍ବରାସୁର କୃଷ୍ଣପୁତ୍ର ପ୍ରଦ୍ୟୁମ୍ନଙ୍କୁ ଲାଳନପାଳନ କରିବାପାଇଁ ପତ୍ନୀଙ୍କ ହସ୍ତରେ ସମର୍ପଣ କଲେ । ମାୟାବତୀ ଅନ୍ୟ କେହି ନୁହନ୍ତି, କନ୍ଦର୍ପ ପତ୍ନୀ ରତି । କନ୍ଦର୍ପ ଭସ୍ମୀଭୂତ ହେବା ପରେ ସେ ନିଜ ପତିଙ୍କ ରକ୍ଷଣ ପାଇଁ ସେହିଠାରେ ଥିଲେ । ନିଜ ପତିକୁ ପୁତ୍ରରୂପେ ପ୍ରତିପାଳନ କରିବାପାଇଁ ମାୟାବତୀ ସଙ୍କୋଚ ବୋଧ କରି ତାଙ୍କୁ ଗୋଟିଏ ଦାସୀ ହସ୍ତରେ ଅର୍ପଣ କଲେ । କନ୍ଦର୍ପ ବୟଃପ୍ରାପ୍ତ ହେବା ପରେ ମାୟାବତୀ କନ୍ଦର୍ପଙ୍କୁ ପୂର୍ବ ଜନ୍ମ ବୃତ୍ତାନ୍ତ ସ୍ମରଣ କରାଇ ଶମ୍ବରକୁ ବିନାଶ କରିବା ପାଇଁ ଉପଦେଶ ଦେଲେ । ପତ୍ନୀଙ୍କ ପରାମର୍ଶ ମତେ କନ୍ଦର୍ପ ଶମ୍ବରାସୁରକୁ ବଧ କରି ପତ୍ନୀଙ୍କ ସହିତ ଜନନୀ ରୁକ୍ମିଣୀଙ୍କ ଭବନରେ ପଦାର୍ପଣ କଲେ । କନ୍ଦର୍ପଙ୍କ ସ୍ତ୍ରୀଙ୍କ ନାମ ରତି, ସଙ୍ଗୀ : ବସନ୍ତ, ଦୂତ : କୋକିଳ, ଧ୍ୱଜଚିହ୍ନ : ମତ୍ସ୍ୟ, ଆୟୁଧ : ପଞ୍ଚପୁଷ୍ପଯୁକ୍ତ ଶର । ଏହାଙ୍କର ଅନ୍ୟ ନାମ ମଦନ, ମନ୍ମଥ,

ମାର, ପ୍ରଦ୍ୟୁମ୍ନ, ମୀନକେତନ, କନ୍ଦର୍ପ, ଦର୍ପକ, ଅନଙ୍ଗ, ପଞ୍ଚଶର, ସ୍ମର, ଶମ୍ବରାରି, ମନସିଜ, କୁସୁମେଷୁ, ଅନନ୍ୟଜ, ପୁଷ୍ପଧନ୍ୱା, ରତିପତି, ମକରଧ୍ୱଜ, ଆତ୍ମଭୂ, ବ୍ରହ୍ମସୂ, ବିଶ୍ୱକେତୁ, ଇତ୍ୟାଦି । (ହରିବଂଶ)

**କନ୍ଦଳୀ**—ମହାମୁନି ଔର୍ବଙ୍କ ଜାନୁଭବା ଦୁହିତା । ପରମ କୋପନ ଦୁର୍ବାସା ଏହାଙ୍କର ସ୍ୱାମୀ । ଦୁର୍ବାସା ବ୍ରହ୍ମାଙ୍କ ନାତି ଓ ଅତ୍ରି ମହର୍ଷିଙ୍କ ପୁତ୍ର । ଏ ଶିବ ଅଂଶରେ ଦେହ ଧାରଣ କରିଥିଲେ । ଅଯୋନିସମ୍ଭବା କନ୍ଦଳୀ ପରମ ରୂପବତୀ, ମାତ୍ର ତାଙ୍କର ଏକ ବିଶିଷ୍ଟ ଦୋଷ ଥିଲା । ସେ ନିତାନ୍ତ କଳହପ୍ରିୟା ଥିଲେ । ବିବାହ ପରେ ଔର୍ବ ଦୁର୍ବାସାଙ୍କୁ କନ୍ୟା ସମ୍ପ୍ରଦାନ କରି ତାର ଏକଶତ ଅପରାଧ କ୍ଷମା କରିବା ପାଇଁ ଅନୁରୋଧ କରିଥିଲେ । ଦୁର୍ବାସା ପତ୍ନୀର ଶତାଧିକ କଟୁବାକ୍ୟ ସହ୍ୟ କରିଥିଲେ ମଧ୍ୟ ଦିନେ ନିତାନ୍ତ କ୍ରୁଦ୍ଧ ହୋଇ ନିଜ ପତ୍ନୀଙ୍କୁ ଭସ୍ମ କରିଦେଲେ । ଅନନ୍ତର ବିଷ୍ଣୁ ବ୍ରାହ୍ମଣ ବେଶରେ ଦୁର୍ବାସାଙ୍କ ସମୀପକୁ ଆସି ନିରନ୍ତର ତପସ୍ୟା କରିବା ପାଇଁ ଉପଦେଶ ଦେଇଥିଲେ । ମହାମୁନି ଔର୍ବ ଧ୍ୟାନଯୋଗରେ କନ୍ୟାର ଦୁର୍ଦ୍ଦଶା ଜାଣିପାରି ଜାମାତାଙ୍କୁ ଅଭିଶାପ ଦେଲେ—ଯେଣୁ ତୁମେ ଅତି ସାମାନ୍ୟ ଦୋଷରେ ମୋ କନ୍ୟାକୁ ଭସ୍ମୀଭୂତ କରିଦେଲ, ଏହି ହେତୁରୁ ତୁମେ ମହାପରାଭବ ଲାଭ କରିବ । ଏହି କାରଣରୁ ଦୁର୍ବାସା ଭକ୍ତବୀର ଅମ୍ବରୀଷଙ୍କ ଦ୍ୱାରା ମହା ଅପମାନ ଓ ପରାଭବ ଲାଭ କରିଥିଲେ । କନ୍ଦଳୀ ଆଉ ବିବାହ କଲେ ନାହିଁ । ପାଣି କେନ୍ଦୁଳି ଗୁଳ୍ମ ହୋଇ ରହିଲେ । ଏହି ଗୁଳ୍ମ ପାଣି କୂଳରେ କିମ୍ବା ଅଳ୍ପ ପାଣି ଥିବା ଜାଗାରେ ହୁଏ । ଏହାର ନାଡ଼ରେ ପିଆଜ ବା କାଠିଆ କଦଳୀ ପରି ଗଣ୍ଠି ଥାଏ । ଏ ଗଣ୍ଠି ଔଷଧରେ ବ୍ୟବହୃତ ହୁଏ । ଏହାର ପତ୍ର ପିଆଜ ପତ୍ର ଅପେକ୍ଷା ଚଉଡ଼ା । ପହିଲି ଆଷାଢ଼ରେ ପ୍ରଥମ ଅସରା ବର୍ଷା ହେବା ପରେ ପରେ ଏହା ଅଙ୍କୁରିତ ହୁଏ । ଧଳା ଦୁଦୁରା ଫୁଲ ପରି ଏହାର ଫୁଲ । ଫୁଲ ମଝିରୁ ଲମ୍ବା ଲମ୍ବା ନାଲିଆ ରଙ୍ଗ ବିଶିଷ୍ଟ କେଶର ବାହାରେ । ଏହି କେଶର ଅଗରେ ଅର୍ଦ୍ଧଚନ୍ଦ୍ରାକୃତି ହଳଦିଆ, କୋମଳ କେଶର ଥାଏ । (ବ୍ରହ୍ମବୈବର୍ତ୍ତପୁରାଣ, ଦ୍ରଷ୍ଟବ୍ୟ—ଭାଷାକୋଷ, ୩୦୧ ପୃଷ୍ଠା) ।

**କନ୍ୟକୁବ୍ଜ, କାନ୍ୟକୁବ୍ଜ** – ଏଠାରେ ରାଜା କୁଶନାଭଙ୍କ ଏକଶତ ଦୁହିତାଙ୍କ ପ୍ରତି ବାୟୁଙ୍କର ଲୋଲୁପ ଦୃଷ୍ଟିପାତ ହୋଇଥିଲା । ସେ ଏମାନଙ୍କ ସହିତ ସହବାସ କରିବା ପାଇଁ ଆକାଂକ୍ଷିତ ହେଲେ । ମାତ୍ର କନ୍ୟାମାନେ ଏ ପ୍ରସ୍ତାବରେ ସ୍ୱୀକୃତ ନ ହେବାରୁ ବାୟୁ ସେମାନଙ୍କୁ ଅଭିଶାପ ଦେଇ କୁଜା

କରିଦେଲେ । ଶହେଟି କନ୍ୟା କୁଜ ହୋଇଯିବାରୁ ଏ ରଜାର ନାମ କନ୍ୟକୁବ୍ଜ ବା କାନ୍ୟକୁବ୍ଜ ହୋଇଥିଲା । (ରାମାୟଣ ଆଦିକାଣ୍ଡ) ।

ଉତ୍ତର ପଶ୍ଚିମ ଭାରତର ପ୍ରାଚୀନ ନଗରୀ ।

**କପାଳ ମୋଚନ**—ହିନ୍ଦୁମାନଙ୍କର ତୀର୍ଥବିଶେଷ । ମହାଦେବଙ୍କ ମୂର୍ତ୍ତିବିଶେଷ ।

**କପାଳୀ**—ମହାଦେବଙ୍କ ନାମାନ୍ତର । କପାଳ ବା ମୁଣ୍ଡର ଖୋଳ ଧରି ଥିବାରୁ ଶିବ ଏହି ନାମରେ ନାମିତ ।

**କପିଧ୍ୱଜ**—ଅର୍ଜୁନ । ଅର୍ଜୁନଙ୍କ ରଥ । ଏହି ରଥର ଧ୍ୱଜ ଉପରେ କପିର ମୂର୍ତ୍ତି ଥାଏ ।

**କପିଳ**—ବିଖ୍ୟାତ ସିଦ୍ଧର୍ଷି । କର୍ଦ୍ଦମ ପ୍ରଜାପତି ଏହାଙ୍କର ପିତା ଓ ଦେବହୂତି ମାତା । ମହାମୁନି କପିଳ ଭଗବାନଙ୍କ ପଞ୍ଚମ ଅବତାର । ଏ ସାଂଖ୍ୟ ଦର୍ଶନର ପ୍ରଣେତା । ଏହାଙ୍କର ଆଶ୍ରମ ଗଙ୍ଗାସାଗର ସଙ୍ଗମର ଏକ ଦ୍ୱୀପରେ ଥିଲା । (ଭାଗବତ) ସାଂଖ୍ୟକାର କପିଳ ଓ ସଗର ପୁତ୍ର ନାଶକାରୀ କପିଳ ଏକ ବ୍ୟକ୍ତି ନୁହନ୍ତି । ପୁରାଣରେ କଥିତ ଅଛି ଯେ ସୂର୍ଯ୍ୟବଂଶୀୟ ରାଜା ସଗର ଇନ୍ଦ୍ରାସନ ଲାଭ କରିବା ପାଇଁ ଶହେଟି ଅଶ୍ୱମେଧ ଯାଗ କରିଥିଲେ । ନିର୍ବିଘ୍ନରେ ୯୯ଟି ଯାଗ ଶେଷ ହେଲା । ଶେଷ ଯାଗର ଅଭିମନ୍ତ୍ରିତ ଅଶ୍ୱଟିକୁ ଇନ୍ଦ୍ର ନେଇ କପିଳାଶ୍ରମରେ ବାନ୍ଧି ଦେଲେ । ସଗରଙ୍କ ପୁଅମାନେ ଅଶ୍ୱ ଖୋଜିବାକୁ ଯାଇ କପିଳାଶ୍ରମରେ ଅଶ୍ୱକୁ ଦେଖି ମୁନିଙ୍କୁ ଅଶ୍ୱଚୋର ବୋଲି ମନସ୍ଥ କରି ତାଙ୍କୁ ନାନା ପ୍ରକାର ଦୁର୍ବ୍ୟବହାର କଲେ । କୋପରେ କପିଳ ମୁନି ଅଭିଶାପ ଦେବାରୁ ସେମାନେ ଭସ୍ମ ହୋଇଗଲେ । ସେହି ବଂଶୀୟ ରାଜା ଭଗୀରଥ ଗଙ୍ଗାଙ୍କୁ ଆଣିବାରୁ ସଗରଙ୍କ ପୁତ୍ରମାନେ ମୁକ୍ତି ଲାଭ କରିଥିଲେ ।

**କପିଳା**—ଦକ୍ଷରାଜଙ୍କ କନ୍ୟା । ପୂର୍ବ-ଦକ୍ଷିଣ କୋଣ ଦିଗ୍‌ହସ୍ତୀ ପୁଣ୍ଡରୀକର ସ୍ତ୍ରୀ । କାମଧେନୁ ବିଶେଷ । ଗୋବିନ୍ଦ ଚନ୍ଦ୍ରରେ ବର୍ଣ୍ଣିତ ସାଧବ ଘରର ଏକ ଗାଈ ।

**କବନ୍ଧ**—ରାକ୍ଷସ ବିଶେଷ । ପ୍ରାଚୀନ କାଳରେ ଏହି ରାକ୍ଷସ ଋଷିମାନଙ୍କ ଉପରେ ଘୋର ଅତ୍ୟାଚାର ଚଳାଇ ଥିଲା । ଦିନେ ସ୍ଥୂଳଶିର ମହର୍ଷି ଏହାକୁ ଅଭିଶାପ ଦେଲେ । ସେହି ଅଭିଶାପ ଯୋଗୁଁ କବନ୍ଧ କଦାକାର ହୋଇଗଲା, କିନ୍ତୁ ପରେ ଋଷିଙ୍କୁ ଅନୁନୟ କରିବାରୁ ସେ ପ୍ରୀତ ହୋଇ ଅଭୟ ଦେଲେ—

'ଯେତେବେଳେ ରାମଚନ୍ଦ୍ର ତୋର ଦୀର୍ଘ ବାହୁକୁ ଛିନ୍ନ କରିଦେବେ, ସେତେବେଳେ ତୁ ମୁକ୍ତି ପାଇବୁ ।' ଏ ରାକ୍ଷସ କଶ୍ୟପ—ପତ୍ନୀ ଦନୁଙ୍କ ପୁଅ । ବ୍ରହ୍ମାଙ୍କ ବର ଯୋଗେ କବନ୍ଧ ଦୀର୍ଘାୟୁ ହୋଇଥିଲା । ବ୍ରହ୍ମାଙ୍କଠାରୁ ବର ପାଇ ରାକ୍ଷସ ଗର୍ବୋନ୍ମତ୍ତ ହୋଇପଡ଼ିଲା । ଦେବରାଜ ଇନ୍ଦ୍ରଙ୍କୁ ଅବଜ୍ଞା କରିବା ଯୋଗୁ ଇନ୍ଦ୍ର କ୍ରୋଧାନ୍ଧ ହୋଇ ବଜ୍ରାଘାତରେ ତାର ଉରୁ, ମସ୍ତକ ଓ ମୁଖ ଭଗ୍ନ କରିଦେଲେ । ରାକ୍ଷସ କହିଲା—'ବ୍ରହ୍ମାଙ୍କ ପ୍ରସାଦରୁ ମୁଁ ତ ଦୀର୍ଘାୟୁ ହୋଇଛି, ବର୍ତ୍ତମାନ ଆପଣଙ୍କ ବଜ୍ରାଘାତରେ ଭଗ୍ନ ମୁଖ ଓ ଭଗ୍ନ ଶିର ହୋଇ ମୁଁ ବଞ୍ଚି ରହିବି କିପରି ? ବ୍ରହ୍ମାଙ୍କ ବଚନ ତେବେ କିଣ ସଫଳ ହେବ ?' ଦେବରାଜ ଇନ୍ଦ୍ର ଏକଥା ଶୁଣି ତାର ବାହୁଦ୍ୱୟ ଯୋଜନ (ଚାରିକୋଶ) ପରିମିତ ଦୀର୍ଘ କରିଦେଲେ ଏବଂ ତାର କୁକ୍ଷି (ପେଟରେ) ତୀକ୍ଷ୍ଣଦନ୍ତ ସମନ୍ୱିତ ମୁଣ୍ଡଟିଏ ନିର୍ମାଣ କରାଇ ଦେଲେ । ସେହି ଦିନଠାରୁ ରାକ୍ଷସ ଦଣ୍ଡକାରଣ୍ୟରେ ବାସ କରି ଦୀର୍ଘ ବାହୁ ଦ୍ୱାରା ସିଂହ, ବ୍ୟାଘ୍ର, ମୃଗ ପ୍ରଭୃତି ଧରି ଆହାର କରୁଥାଏ । ପିତୃସତ୍ୟ ରକ୍ଷାର୍ଥେ ରାମଚନ୍ଦ୍ର ଦଣ୍ଡକାରଣ୍ୟରେ ସୀତା ଓ ଲକ୍ଷ୍ମଣଙ୍କ ସହିତ ଭ୍ରମଣ କରୁଥିବାବେଳେ ତାଙ୍କ ଦ୍ୱାରା ଛିନ୍ନବାହୁ ହୋଇ ଶାପମୁକ୍ତ ହେଲା ।

**କରତୋୟା**—ବର୍ଣ୍ଣିତ ଅଛି ପାର୍ବତୀଙ୍କ ବିବାହ ସମୟରେ ପର୍ବତରାଜ ହିମାଳୟ ମହାଦେବଙ୍କ ହାତକୁ ଦେବା ଦାନ ଜଳରୁ ଏହି ନଦୀ ଉତ୍ପନ୍ନ ହୋଇଅଛି । ଏହାର ଅନ୍ୟ ନାମ ସଦାନୀରା । ମିଥୁନ ସଂକ୍ରାନ୍ତିଠାରୁ ତିନି ଦିନ ଯାଏଁ ସବୁ ନଦୀ ରଜସ୍ୱଲା ହେବାରୁ ସ୍ନାନର ଅଯୋଗ୍ୟ ହୋଇଥାନ୍ତି । ମାତ୍ର ମହାଦେବଙ୍କ ପ୍ରସାଦରୁ ଏ ନଦୀ ସେ ସମୟରେ ମଧ୍ୟ ପବିତ୍ର ଥାଏ ।

**କର୍କୋଟକ**—ମହର୍ଷି କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭରୁ ସହସ୍ର ନାଗ ଜନ୍ମ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ କର୍କୋଟକ ଏକ ପ୍ରଧାନ ସର୍ପ । ପ୍ରଥମେ ଶେଷ ନାଗ ବା ଅନନ୍ତ । ତତ୍ପରେ ବାସୁକି, ତଦନନ୍ତର ଐରାବତ, ତକ୍ଷକ ଓ କର୍କୋଟକ ଜନ୍ମ ହୋଇଥିଲେ । ଏକଦା କର୍କୋଟକ ଦେବର୍ଷି ନାରଦଙ୍କୁ ପ୍ରବଞ୍ଚନା କରିବା ଯୋଗୁଁ ନାରଦ କ୍ରୁଦ୍ଧ ହୋଇ ଶାପ ଦେଲେ— "ଆଜିଠାରୁ ତୁମେ ଏହି ବନରେ ସ୍ଥାବର ଭିବାପନ୍ନ ହୋଇ ପଡ଼ି ରହିଥିବ । ମହାରାଜ ନଳ ଏଠାକୁ ଆସି ତୁମ୍ଭଙ୍କୁ ଏଠାରୁ ଅପସାରଣ କରିନେଲେ ତୁମେ ଶାପମୁକ୍ତ ହେବ ।" ନିଷଧାଧିପତି ପୁଣ୍ୟଶ୍ଳୋକ ମହାରାଜ ନଳ ଘଟନା ଚକ୍ରରେ କଳି ଦ୍ୱାରା ପ୍ରପୀଡ଼ିତ ହୋଇ, ରାଜ୍ୟ ସମ୍ପଦ ହରାଇ ନାନା ସ୍ଥାନରେ

ବିଚରଣ କରି ପରିଶେଷରେ ସେହି ବନରେ ଉପସ୍ଥିତ ହେଲେ । ସେତେବେଳେ ଏହି ଅରଣ୍ୟାଞ୍ଚଳ ଦାବାନଳରେ ଦଗ୍ଧ ହୋଇ ଯାଉଥିଲା । ଦାବାନଳ ମଧ୍ୟରେ 'ନଳ ରକ୍ଷା କର, ନଳ ରକ୍ଷା କର' ଏହି କାତର ଧ୍ୱନି ଶୁଣାଗଲା । ନଳ କ୍ରମେ ଅଗ୍ରସର ହୋଇ ଦାବାନଳ ମଧ୍ୟରୁ କର୍କୋଟକଙ୍କୁ ଉଦ୍ଧାର କରି ଆଣିଲେ । କର୍କୋଟକ ଶାପମୁକ୍ତ ହେବା ମାତ୍ରେ ନଳଙ୍କୁ ଆତ୍ମପରିଚୟ ପ୍ରଦାନ କଲେ ଓ ତା ସଙ୍ଗେ ସଙ୍ଗେ ନଳଙ୍କୁ ମଧ୍ୟ ଦଂଶନ କଲେ । ସର୍ପ ଦଂଶନ କରିବା ମାତ୍ରେ ନଳ ବିବର୍ଣ୍ଣ ଓ କଦାକାର ହୋଇଗଲେ । କର୍କୋଟକ କହିଲେ—'ମହାରାଜ, ମୋତେ ଅକୃତଜ୍ଞ ବୋଲି ଭାବନ୍ତୁ ନାହିଁ । ମୁଁ ଦଂଶନ କରି ଆପଣଙ୍କର ଯଥେଷ୍ଟ ଉପକାର କରିଛି । ଆପଣ ବିକୃତ ଶରୀର ହେବାରୁ ଶତ୍ରୁ ଆପଣଙ୍କୁ ସହଜେ ଚିହ୍ନି ପାରିବ ନାହିଁ । ବିଶେଷତଃ ମୋ ବିଷ ଜ୍ୱାଳାରେ ଆପଣଙ୍କ ଶରୀରସ୍ଥ କଳିର ଯଥେଷ୍ଟ କ୍ଷତି ହେବ । ନିଜର ପୂର୍ବରୂପ ଧାରଣ କରିବା ପାଇଁ ମୁଁ ଆପଣଙ୍କୁ ଏ 'ପୀତ ପଡନୀ' ଦୁଇଟି ଦେଉଛି । ମୋ ନିର୍ଦ୍ଦେଶ କ୍ରମେ ଏ ଦୁଇଟି ଆପଣଙ୍କ ଡାହାଣ ହାତର ନଖକୋଣରେ ଲୁଚି ରହିଥିବେ । ଯେତେବେଳେ ପୂର୍ବରୂପ ଧରିବାପାଇଁ ଆପଣ ଇଚ୍ଛା କରିବେ, ସେତେବେଳେ ନଖ କୋଣକୁ ଅନାଇବା ମାତ୍ରେ ସେ ଦୁଇଟି ବାହାରିବେ । ଆପଣ ସେଥିରୁ ଗୋଟିଏ ପିନ୍ଧିବେ ଏବଂ ଅପରଟିକୁ ମସ୍ତକରେ ବାନ୍ଧିବେ । ତାହାହେଲେ ଆପଣଙ୍କର ସେ ପୂର୍ବ ଲାବଣ୍ୟ ଫେରି ଆସିବ । ବର୍ତ୍ତମାନ ଆପଣ ଅଯୋଧ୍ୟାଧିପତି ଋତୁପର୍ଣ୍ଣଙ୍କ ଆଶ୍ରୟରେ ରହନ୍ତୁ । ସେହିଠାରେ ଅକ୍ଷକ୍ରୀଡ଼ାରେ ଜିଣିବାଭଳି ଶିକ୍ଷା ପାଆନ୍ତୁ । କାରଣ, ଅକ୍ଷକ୍ରୀଡ଼ା ଶିକ୍ଷା କରିବାମାତ୍ରେ କଳି ଆପଣଙ୍କ ଦେହରୁ ଅପସରି ଯିବ ।' ନଳଙ୍କୁ ଏ ଉପଦେଶ ଦେଇ କର୍କୋଟକ ସ୍ୱର୍ଗକୁ ଗଲେ । ସ୍ୱର୍ଗରେ ସେ ଯଥା ଅଧିକାର ପାଇ ସୁଖରେ ରହିଲେ ।

**କର୍ଣ୍ଣ**—ମହାଭାରତ ଯୁଦ୍ଧର ସୁପ୍ରସିଦ୍ଧ ବୀର ପୁରୁଷ ଓ କୁରୁରାଜ ଦୁର୍ଯ୍ୟୋଧନଙ୍କ ପ୍ରଧାନ ସଙ୍ଗୀ । ଏହାଙ୍କର ଆଦ୍ୟନାମ ବସୁଷେଣ; ପରେ ନିଜର ଅଙ୍ଗ କର୍ତ୍ତନ କରି ବ୍ରାହ୍ମଣବେଶଧାରୀ ଇନ୍ଦ୍ରଙ୍କୁ ନିଜର କବଚ କୁଣ୍ଡଳ ଦାନ କରିଥିବାରୁ ସେ କର୍ଣ୍ଣ ନାମରେ ଅଭିହିତ ହେଲେ । କର୍ଣ୍ଣ ପାଣ୍ଡବ ଜନନୀ କୁନ୍ତୀ ଦେବୀଙ୍କ କାନୀନ ପୁତ୍ର । କୁନ୍ତୀଙ୍କ ଅନୂଢ଼ା ଅବସ୍ଥାରେ ତାଙ୍କ ଗର୍ଭରୁ ସୂର୍ଯ୍ୟଦେବଙ୍କ ଔରସରେ କର୍ଣ୍ଣଙ୍କ ଜନ୍ମ । କୁନ୍ତୀ ଲୋକାପବାଦ ଭୟରେ ସଦ୍ୟୋଜାତ ସନ୍ତାନଟିକୁ ସିନ୍ଦୁକ ଭିତରେ ରଖି ନଦୀରେ ଭସାଇ ଦେଇଥିଲେ । ରାଧାନାମ୍ନୀ ଏକ ସୂତଜାତୀୟା ରମଣୀ ଏହି ମଞ୍ଜୁଷାଟିକୁ ଜଳରୁ ଉଠାଇ ନେଲେ ।

କିନ୍ତୁ ତନ୍ମଧ୍ୟସ୍ଥ କବଚକୁଣ୍ଡଳବିଭୂଷିତ ଶିଶୁଟିକୁ ଦେଖି ବିସ୍ମିତା ଓ ଶଙ୍କାକୁଳା ହେଲେ । ରାଧା ନିଃସନ୍ତାନା । ସେ ତାଙ୍କ ସ୍ୱାମୀ ଅଧିରଥଙ୍କ ପରାମର୍ଶ କ୍ରମେ ସନ୍ତାନଟିକୁ ପୁତ୍ର ନିର୍ବିଶେଷରେ ପାଳନ କରିବାକୁ ଲାଗିଲେ । ରାଧା ଏହାଙ୍କର ନାମ ଦେଲେ ବସୁଷେଣ । ରାଧାଙ୍କ ଦ୍ୱାରା ପ୍ରତିପାଳିତ ହେବାରୁ ବସୁଷେଣଙ୍କର ଅନ୍ୟ ନାମ ରାଧେୟ । ମାତ୍ର ବସୁଷେଣ ବା ରାଧେୟ, କର୍ଣ୍ଣ ବୋଲି ଜଗତ ପ୍ରସିଦ୍ଧ ହେଲେ । କର୍ଣ୍ଣ କୁରୁ ଓ ପାଣ୍ଡବମାନଙ୍କ ପରି ଦ୍ରୋଣାଚାର୍ଯ୍ୟଙ୍କ ସମୀପରେ ଅସ୍ତ୍ରଶିକ୍ଷା କରିଥିଲେ । ସବୁବେଳେ ଅର୍ଜୁନଙ୍କ ସହିତ ସମକକ୍ଷ ହେବାପାଇଁ ସେ ପ୍ରଗାଢ଼ ଯତ୍ନ କରୁଥିଲେ । କର୍ଣ୍ଣଙ୍କ ବଳବିକ୍ରମ ଦେଖି, ପୁଣି ସେ ଅର୍ଜୁନ ପ୍ରତି ଈର୍ଷା ପରାୟଣ ଥିବା ଜାଣି ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ବନ୍ଧୁତାସୂତ୍ରରେ ଆବଦ୍ଧ କଲେ । କ୍ରମେ କର୍ଣ୍ଣ ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତା ଜନ୍ମିଲା । କର୍ଣ୍ଣଙ୍କର ଏକାନ୍ତ ଇଚ୍ଛା ଥିଲେ ମଧ୍ୟ ଅର୍ଜୁନ ତାଙ୍କ ସହିତ ପ୍ରତିଯୋଗିତା କରିବା ପାଇଁ ଆଦୌ ଇଚ୍ଛୁକ ହେଉନଥିଲେ । କାରଣ କର୍ଣ୍ଣ ଜଣେ ସାଧାରଣ ଲୋକ, ସେ କୌଣସି ରାଜା ବା ରାଜପୁତ୍ର ନୁହନ୍ତି । ଏଥିଲାଗି କର୍ଣ୍ଣ କ୍ରମେ ଲଜ୍ଜିତ ଓ ବିମର୍ଷ ହୋଇପଡ଼ିଲେ । ଏହା ଦେଖି ଦୁର୍ଯ୍ୟୋଧନ ତାହାଙ୍କୁ ଅଙ୍ଗ ଦେଶ ଦାନ କଲେ ଏବଂ ସେ ଦେଶରେ ତାଙ୍କୁ ରାଜପଦରେ ଅଭିଷିକ୍ତ କରିଦେଲେ । ଏହି କାରଣରୁ କର୍ଣ୍ଣ ଗୁରୁ ଦ୍ରୋଣଙ୍କଠାରୁ ବ୍ରହ୍ମାସ୍ତ୍ର ଶିକ୍ଷା କରିବାପାଇଁ ମନ ବଳାଇଲେ । ମାତ୍ର ଦ୍ରୋଣ ସୂତପୁତ୍ରକୁ ଏହି ଦିବ୍ୟାସ୍ତ୍ର ଶିକ୍ଷା ଦେବାଲାଗି ମର୍ଜିଲେ ନାହିଁ । କର୍ଣ୍ଣ କ୍ଷୁଣ୍ଣ ହୋଇ ପରଶୁରାମଙ୍କ ସମୀପକୁ ଗମନ କଲେ । ତାଙ୍କୁ ବ୍ରାହ୍ମଣ ବୋଲି ପରିଚୟ ଦେଇ ସେଠାରେ ବ୍ରହ୍ମାସ୍ତ୍ର ଶିକ୍ଷା କଲେ ।

ଦିନେ ପରଶୁରାମ କର୍ଣ୍ଣଙ୍କ ଊରୁଦେଶରେ ମସ୍ତକ ରଖି ନିଦ୍ରା ଯାଇଥିଲେ । ଏହି ସମୟରେ ଗୋଟିଏ ଅଳର୍କଜାତୀୟ କୀଟ କର୍ଣ୍ଣଙ୍କ ଊରୁଦେଶ ଭେଦ କରିବାକୁ ଲାଗିଲା । କର୍ଣ୍ଣ ଦାରୁଣ ଯନ୍ତ୍ରଣାରେ ଛଟପଟ ହେଲେ ମଧ୍ୟ ଗୁରୁଙ୍କ ନିଦ୍ରାଭଙ୍ଗ ଭୟରେ ଅବିଚଳିତ ହୋଇ ରହିଲେ । କୀଟଦଷ୍ଟ ସ୍ଥାନରୁ ରକ୍ତ ପ୍ରବାହିତ ହେଲା । ସେହି ରକ୍ତଧାର ପରଶୁରାମଙ୍କ ଦେହରେ ପଡ଼ିବା ମାତ୍ରେ ତାଙ୍କର ନିଦ୍ରାଭଙ୍ଗ ହେଲା । ପରଶୁରାମ କର୍ଣ୍ଣଙ୍କ-ଠାରୁ ରକ୍ତୋତ୍ପତ୍ତିର କାରଣ ଜାଣି ସେହି କୀଟ ପ୍ରତି କ୍ରୋଧାରୂଢ଼ ଦୃଷ୍ଟିପାତ କରିବାମାତ୍ରେ କୀଟର ମୃତ୍ୟୁ ଘଟିଲା । ହଠାତ୍ ସେଠାରେ ଗୋଟିଏ ଅସୁର ଆବିର୍ଭୂତ ହୋଇ ପରଶୁରାମଙ୍କୁ ପ୍ରଣାମ କଲା । ପରଶୁରାମ କର୍ଣ୍ଣଙ୍କ ବ୍ୟବହାରରେ ସନ୍ଦିହାନ ହୋଇ କହିଲେ—'ଦେଖ, ବ୍ରାହ୍ମଣ କଦାପି ଏପରି

ଯନ୍ତ୍ରଣା ସହ୍ୟ ପାରିବ ନାହିଁ । ତୁମେ ଏବେ ତୁମର ପ୍ରକୃତ ପରିଚୟ ଦିଅ ।'
କର୍ଣ୍ଣ ନିଜର ପ୍ରକୃତ ପରିଚୟ ଦେଲେ । ପରଶୁରାମ କହିଲେ—"ତୁମେ
ଯେହେତୁ ଛଦ୍ମବେଶରେ ମୋଠାରୁ ବ୍ରହ୍ମାସ୍ତ୍ର ଶିକ୍ଷାପ୍ରାପ୍ତ କଲ ସେଥିଲାଗି
ମୁଁ ତୁମକୁ ଅଭିଶାପ ଦେଉଛି—ଯୁଦ୍ଧ ସମୟରେ ଏ ଅସ୍ତ୍ରର ପ୍ରୟୋଗ ବିଧି-
ବିଧାନ ତୁମ ମନେ ପଡ଼ିବ ନାହିଁ, ଯେଉଁ ଉଦ୍ଦେଶ୍ୟରେ ତୁମେ ମୋ ପାଖକୁ
ଆସିଲ ସେ ସବୁ ବ୍ୟର୍ଥ ହୋଇଯିବ ।"

ପରଶୁରାମଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କରିବା ସମୟରେ କର୍ଣ୍ଣ କୌଣସି
ବ୍ରାହ୍ମଣର ହୋମ ଧେନୁକୁ ଶରବିଦ୍ଧ କରିଥିଲେ । ଧେନୁଟି ସେହି ଆଘାତରେ
ପଞ୍ଚତ୍ୱପ୍ରାପ୍ତ ହେଲା । ବ୍ରାହ୍ମଣ କ୍ରୁଦ୍ଧ ହୋଇ ଶାପ ଦେଲେ—"ତୁମେ
ଯାହାକୁ ପରାସ୍ତ କରିବା ପାଇଁ ଯତ୍ନଶୀଳ ହେଉଛ ତାରି ହସ୍ତରେ ତୁମର
ମୃତ୍ୟୁ ଘଟିବ ।" ଏହି ଅଭିଶାପ ଯୋଗୁ ଅର୍ଜୁନଙ୍କ ଦ୍ୱାରାହିଁ କର୍ଣ୍ଣ ନିଧନ
ହୋଇଥିଲେ ।

ଅସ୍ତ୍ରଶିକ୍ଷା ପରେ କର୍ଣ୍ଣ ଗୃହକୁ ପ୍ରତ୍ୟାବର୍ତ୍ତନ ହେଲେ । କିଛିକାଳ ପରେ
କଳିଙ୍ଗ ରାଜକନ୍ୟାଙ୍କର ସ୍ୱୟମ୍ବର ଉପଲକ୍ଷେ ମଗଧରାଜ ଜରାସନ୍ଧଙ୍କ ସହିତ
ତାଙ୍କର ଯୁଦ୍ଧ ହେଲା । ଜରାସନ୍ଧ ଯୁଦ୍ଧରେ ସନ୍ତୁଷ୍ଟ ହୋଇ କର୍ଣ୍ଣଙ୍କୁ ମାଳିନୀ
ନଗରୀ ପ୍ରଦାନ କରିଥିଲେ ।

ପାଣ୍ଡବମାନେ ଦ୍ୱୈତବନରେ ବନବାସ କରୁଥିବା ସମୟରେ
ଦୁର୍ଯ୍ୟୋଧନ ସେମାନଙ୍କୁ ଆକ୍ରମଣ କରିବା ପାଇଁ ଗଲେ । ମାତ୍ର ଗନ୍ଧର୍ବରାଜ
ଚିତ୍ରସେନ ତାଙ୍କୁ ଯଥେଷ୍ଟ ଅପମାନ ଦେଇ ବନ୍ଦୀ କଲେ । ମହାରାଜ
ଯୁଧିଷ୍ଠିରଙ୍କ ଉପଦେଶ ପାଳନକରି ଅର୍ଜୁନ ତାଙ୍କୁ ମୁକ୍ତ କରିଦେଲେ । ମାତ୍ର
ଦୁର୍ଯ୍ୟୋଧନ ଅପମାନରେ ମ୍ରିୟମାଣ ହୋଇ ହସ୍ତିନାକୁ ଫେରି ଆସିଲେ ।
କର୍ଣ୍ଣ କିନ୍ତୁ ଏତିକିବେଳେ ଦୁର୍ଯ୍ୟୋଧନଙ୍କୁ ବହୁତ ପ୍ରବୋଧନା ଦେଇ ତାଙ୍କୁ
ପ୍ରକୃତିସ୍ଥ କରି ରଖିଲେ । ପିତାମହ ଭୀଷ୍ମ ପୂର୍ବରୁ ଦ୍ୱୈତବନକୁ ନ ଯିବା ପାଇଁ
ଦୁର୍ଯ୍ୟୋଧନଙ୍କୁ କହିଥିଲେ । ମାତ୍ର ଦୁର୍ଯ୍ୟୋଧନ ତାହା ନମାନି ଏକାର୍ଯ୍ୟ
କରିବାରୁ ସେ ତାଙ୍କୁ ନିନ୍ଦା କଲେ ଏବଂ ପାଣ୍ଡବମାନଙ୍କ ଆତ୍ମସମ୍ମାନ ଓ ଜ୍ଞାନର
ଭୂୟସୀ ପ୍ରଶଂସା କରିଥିଲେ । ପାଣ୍ଡବମାନଙ୍କ ପ୍ରଶଂସାରେ ଦୁର୍ଯ୍ୟୋଧନ ବ୍ୟଥିତ
ହୋଇ କର୍ଣ୍ଣଙ୍କ ନିକଟରେ ଭୀଷ୍ମଙ୍କ ପକ୍ଷପାତିତା ବିଷୟ ଆଲୋଚନା କରି ଆତୁର
ଅନୁତପ୍ତ ହେଲେ । କର୍ଣ୍ଣ କହିଲେ—'ଏଥିଲାଗି ଦୁଃଖିତ ହେଉଛ କାହିଁକି ?
ଏବେ ମୋର ପରାକ୍ରମ ଦେଖ । ପାଣ୍ଡବ ଭ୍ରାତୃଗଣ ଅଶ୍ୱମେଧ ଯଜ୍ଞ ସମୟରେ

ଯେଉଁସବୁ ରାଜ୍ୟ ଜୟ କରିଥିଲେ, ମୁଁ ସେସବୁ ଏକାକୀ ଜୟ କରିବି ।' କର୍ଣ୍ଣ ଏ କାର୍ଯ୍ୟ କଲେ ଶୀଘ୍ର ଲଜ୍ଜିତ ହେବେ ଭାବି ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ଦିଗ୍‌ବିଜୟ କରିବା ପାଇଁ ଆଦେଶ ଦେଲେ । କର୍ଣ୍ଣ ଏ ଆଦେଶ ପାଇ ପ୍ରଥମେ ପଞ୍ଚାଳରାଜ ଦ୍ରୁପଦଙ୍କୁ ପରାସ୍ତ କଲେ । ତତ୍ପରେ ଅଙ୍ଗ, ବଙ୍ଗ, କଳିଙ୍ଗ ଓ ମିଥିଳାଦି ଦେଶ ଜୟ କରି ସେମାନଙ୍କଠାରୁ ରାଜକର ଆଦାୟ କରିଥିଲେ । ଏହିପରି କର୍ଣ୍ଣ ଅଳ୍ପ ସମୟରେ ଭାରତର ଅନେକଗୁଡ଼ିଏ ରାଜାଙ୍କୁ ପରାସ୍ତ କରି ପ୍ରଭୂତ ଧନ ନେଇ ହସ୍ତିନାକୁ ଫେରିଲେ ।

ଏହାପରେ ରାଜକୁମାରୀ ପଦ୍ମାବତୀଙ୍କ ସହିତ କର୍ଣ୍ଣଙ୍କର ପରିଣୟ କ୍ରିୟା ସମ୍ପାଦିତ ହେଲା । ପଦ୍ମାବତୀଙ୍କ ଗର୍ଭରୁ କର୍ଣ୍ଣଙ୍କର ବୃଷସେନ, ବୃଷକେତୁ ଓ ଚିତ୍ରସେନ ପ୍ରଭୃତି ପୁତ୍ର ଜନ୍ମ ହୋଇଥିଲେ । ରାଜା ଦୁର୍ଯ୍ୟୋଧନ କର୍ଣ୍ଣାର୍ଜିତ ସୁବର୍ଣ୍ଣ ମୁଦ୍ରାଦି ଦ୍ୱାରା ଗୋଟିଏ ଲାଙ୍ଗଳ ତିଆରି କରାଇ ସେଥିରେ ଯଜ୍ଞଭୂମି କର୍ଷଣ କରି ସେଠାରେ ବୈଷ୍ଣବ ଯଜ୍ଞ ଅନୁଷ୍ଠାନ କଲେ । ଯଜ୍ଞ ସମାପନାନ୍ତେ କର୍ଣ୍ଣ ପ୍ରତିଜ୍ଞା କଲେ ଯେ ସେ ଅର୍ଜୁନଙ୍କୁ ବଧ ନ କରିବା ପର୍ଯ୍ୟନ୍ତ ପାଦ ଧୌତ କରିବେ ନାହିଁ କି ଜଳ ଗ୍ରହଣ କରିବେ ନାହିଁ । ସେହି ଦିନଠାରୁ ସେ ଆସୁରବ୍ରତ ଅବଲମ୍ବନ କଲେ । ସେ ଅର୍ଜୁନଙ୍କୁ ବଧ କରିବା ପର୍ଯ୍ୟନ୍ତ ଏହି ବ୍ରତ ପାଳନ କରିବେ । ସେହି ବ୍ରତ ପାଳନ ପର୍ଯ୍ୟନ୍ତ ଯେ କୌଣସି ଅର୍ଥୀ ଯାହା ମାଗିବେ, ସେ ତାକୁ ଅମ୍ଳାନଚିତ୍ତରେ ତାହା ଦେବେ । କର୍ଣ୍ଣଙ୍କର ଏହି ଅଦ୍ଭୁତ ଦାନଶୀଳତା ପରୀକ୍ଷା କରିବା ପାଇଁ ଶ୍ରୀକୃଷ୍ଣ ନିଜେ ବ୍ରାହ୍ମଣ ବେଶରେ ବୃଷକେତୁଙ୍କ ମାଂସ ଭୋଜନ ପାଇଁ ପ୍ରାର୍ଥୀ ହେଲେ । କର୍ଣ୍ଣ ଏଥିରେ ବିଚଳିତ ନ ହୋଇ ଅକୁଣ୍ଠିତ ଚିତ୍ତରେ ବୃଷକେତୁଙ୍କୁ ବଧ କଲେ । ପରେ କିନ୍ତୁ ଶ୍ରୀକୃଷ୍ଣଙ୍କ ମୃତ୍ୟୁ ସଞ୍ଜୀବନୀ ବିଦ୍ୟାବଳରେ ତାକୁ ପୁଣି ଜିଆଁଇ ଦେଲେ । ଏହି ବ୍ରତ ପାଳନ ସମୟରେ ଇନ୍ଦ୍ର ମଧ୍ୟ ତାଙ୍କୁ କବଚ କୁଣ୍ଡଳ ଦାନ ମାଗିଥିଲେ । କର୍ଣ୍ଣ କିନ୍ତୁ ତାହା ଦେବାପାଇଁ କୁଣ୍ଠିତ ହେଲେ ନାହିଁ । ସେ ନିଜ ଦେହକୁ କର୍ତ୍ତନ କରି ତାହା ଦେଲେ ଏବଂ ସେହିଦିନରୁ ସେ କର୍ଣ୍ଣ ନାମରେ ଅଭିହିତ ହୋଇଥିଲେ ।

ସୂର୍ଯ୍ୟ କର୍ଣ୍ଣଙ୍କ ଏ ଦୁର୍ଦ୍ଦଶାରେ ବ୍ୟଥିତ ହୋଇ କର୍ଣ୍ଣଙ୍କୁ ଇନ୍ଦ୍ରଙ୍କଠାରୁ ଶକ୍ତି-ଅସ୍ତ୍ର ମାଗିବା ପାଇଁ ଉପଦେଶ ଦେଲେ । କର୍ଣ୍ଣ ଇନ୍ଦ୍ରଙ୍କୁ ସେହି ଶକ୍ତି ଅସ୍ତ୍ର ମାଗିଲେ । ଇନ୍ଦ୍ର ପ୍ରସନ୍ନ ହୋଇ ତାଙ୍କୁ ତାହା ଦେଲେ । କର୍ଣ୍ଣ ଏହି ଅସ୍ତ୍ରଟି ଅର୍ଜୁନଙ୍କୁ ବଧ କରିବା ପାଇଁ ସାଇତି ରଖିଥିଲେ, ମାତ୍ର ମହାଭାରତ ଯୁଦ୍ଧରେ

ସେହିଦିନ ଭୀମପୁତ୍ର ଘଟୋତ୍କଚ ଭୀଷଣ ଯୁଦ୍ଧ କରି କୁରୁସୈନ୍ୟଙ୍କୁ ଅସମ୍ଭାଳ କଲେ. ସେହିଦିନ ଦୁର୍ଯ୍ୟୋଧନଙ୍କ ପରାମର୍ଶରେ କର୍ଣ୍ଣ ଏହି ଅସ୍ତ୍ର ପ୍ରୟୋଗ କରି ଘଟୋତ୍କଚଙ୍କୁ ବଧ କରିଥିଲେ । ଭାରତଯୁଦ୍ଧ ପ୍ରାରମ୍ଭ ହେବା ସମୟରେ ଭୀଷ୍ମ କର୍ଣ୍ଣଙ୍କୁ ନୀଚଜାତୀୟ ମନେକରି ତାଙ୍କୁ ମହାରଥ ଶ୍ରେଣୀଭୁକ୍ତ ନ କରି ଅର୍ଦ୍ଧରଥ ଶ୍ରେଣୀରେ ରଖିବା ପାଇଁ ଦୁର୍ଯ୍ୟୋଧନଙ୍କୁ ପରାମର୍ଶ ଦେଇଥିଲେ । ଏଥିଲାଗି ଭାରତ ଯୁଦ୍ଧରେ ଭୀଷ୍ମଙ୍କ ଜୀବିତ କାଳ ପର୍ଯ୍ୟନ୍ତ କର୍ଣ୍ଣ ଅସ୍ତ୍ର ଧାରଣ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ଭୀଷ୍ମ ଶରଶଯ୍ୟା କରିବା ପରେ କର୍ଣ୍ଣ ତାଙ୍କୁ ସାକ୍ଷାତ୍ କରିବାକୁ ଗଲେ । ଭୀଷ୍ମ କହିଲେ—'କର୍ଣ୍ଣ, ମୁଁ କୁନ୍ତୀଙ୍କଠାରୁ ଜାଣିଛି ଯେ ତୁମେ ତାଙ୍କର କାନୀନ ପୁତ୍ର । ଅତଏବ ବର୍ତ୍ତମାନ ପାଣ୍ଡବ ପକ୍ଷରେ ଯୁଦ୍ଧ କରିବା ତୁମର ପ୍ରଧାନ କର୍ତ୍ତବ୍ୟ ।' କର୍ଣ୍ଣ ଉତ୍ତର ଦେଲେ- 'ପିତାମହ, ତାହା ବର୍ତ୍ତମାନ ଆଉ ହୋଇ ପାରିବ ନାହିଁ । ଦୁର୍ଯ୍ୟୋଧନ ମୋର ପରମ ବନ୍ଧୁ । ପୁଣି ତାଙ୍କର ଅନ୍ନଜଳରେ ମୁଁ ପରିପୁଷ୍ଟ ହୋଇ ଆସିଛି । ଏ ବିପଦବେଳେ ମିତ୍ରଙ୍କୁ ପରିତ୍ୟାଗ କରି ମୁଁ ମିତ୍ରଦ୍ରୋହ ପାପରେ କଳଙ୍କିତ ହୋଇ ପାରିବି ନାହିଁ । ମୋତେ କ୍ଷମା କରନ୍ତୁ ।' କର୍ଣ୍ଣଙ୍କର ଏ ଦୃଢ଼ ସଙ୍କଳ୍ପ ଦେଖି ଭୀଷ୍ମ ତାଙ୍କୁ ଅନ୍ୟାୟ ଯୁଦ୍ଧରୁ ବିରତ ହେବାଲାଗି ଉପଦେଶ ଦେଲେ । ପିତାମହ ଭୀଷ୍ମଙ୍କର ଏ ଅନୁରୋଧ କର୍ଣ୍ଣ ରକ୍ଷା କରି ପାରିଲେ ନାହିଁ । କାରଣ ତନ୍ନ ପ୍ରଧାନ ସେନାପତି ଦ୍ରୋଣଙ୍କ ନିର୍ଦ୍ଦେଶରେ ପରିଚାଳିତ ହୋଇ ଯୁଦ୍ଧର ତ୍ରୟୋଦଶ ଦିବସରେ ଅପର ଛଅଜଣ ମହାରଥୀଙ୍କ ସହିତ ସମ୍ମିଳିତ ହୋଇ ଅନ୍ୟାୟ ଯୁଦ୍ଧରେ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁଙ୍କୁ ବଧ କରିଥିଲେ । ଦ୍ରୋଣାଚାର୍ଯ୍ୟଙ୍କ ପତନ ପରେ ଯୁଦ୍ଧର ଷୋଡ଼ଶ ଦିବସରେ କର୍ଣ୍ଣ ସେନାପତି ହୋଇ ପାଣ୍ଡବମାନଙ୍କ ସହିତ ଯୁଦ୍ଧ କରିଥିଲେ । ଅର୍ଜୁନଙ୍କ ବ୍ୟତୀତ ପାଣ୍ଡବ ଚାରି ଭ୍ରାତା କର୍ଣ୍ଣଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । କିନ୍ତୁ ଜନନୀ କୁନ୍ତୀଙ୍କୁ ଅର୍ଜୁନଙ୍କ ଛଡ଼ା ଆଉ ସେ କାହାରିକୁ ମାରିବେ ନାହିଁ ବୋଲି ପ୍ରତିଶ୍ରୁତି ଦେଇଥିଲେ । ତେଣୁ ସେ ଅନ୍ୟ ପାଣ୍ଡବ ଚତୁର୍ଭ୍ରାତାଙ୍କ ମଧ୍ୟରୁ କାହାରିକୁ ହେଲେ ବଧ କଲେ ନାହିଁ । ଯୁଦ୍ଧର ସପ୍ତଦଶ ଦିବସରେ କର୍ଣ୍ଣ ଅର୍ଜୁନଙ୍କ ଦ୍ୱାରା ପରାସ୍ତ ଓ ନିହତ ହେଲେ ।

**କର୍ଦ୍ଦମ**—ପ୍ରଜାପତି ଋଷିବିଶେଷ । ସମ୍ରାଟ୍, କୁକ୍ଷି, ବିରାଟ୍ ଓ ପ୍ରଭୁ ନାମରେ ଏହାଙ୍କର ଚାରି ପୁତ୍ର ଏବଂ କାମ୍ୟା ନାମକ ଏକ କନ୍ୟା ଜନ୍ମିଥିଲେ । ସ୍ୱାୟମ୍ଭୁବ ମନୁଙ୍କ ପୁତ୍ର ପ୍ରିୟବ୍ରତ ଏହି କନ୍ୟାର ପାଣି ଗ୍ରହଣ କରିଥିଲେ । କନ୍ୟା ଗର୍ଭରେ ପ୍ରିୟବ୍ରତଙ୍କର ବହୁପୁତ୍ର ଜାତ ହୋଇଥିଲେ । କର୍ଦ୍ଦମ

ଦେବହୂତିଙ୍କୁ ବିବାହ କରିଥିଲେ । ଦେବହୂତିଙ୍କ ଗର୍ଭରୁ ବିଖ୍ୟାତ କପିଳ ମୁନି ଓ କଳା ପ୍ରଭୃତି ନଅଟି କନ୍ୟା ଜାତ ହୋଇଥିଲେ ।

( ହରିବଂଶ, ବିଷ୍ଣୁପୁରାଣ )

**କଳା**—ପିତା କର୍ଦ୍ଦମ ଓ ମାତା ଦେବହୂତି, ବ୍ରହ୍ମାଙ୍କ ମାନସ-ପୁତ୍ର ମରୀଚି ଏହାଙ୍କର ସ୍ୱାମୀ । ଏହାଙ୍କ ଗର୍ଭରୁ ପ୍ରଜାପତି ଋଷି କଶ୍ୟପ ଜନ୍ମିଥିଲେ । ମନୁଷ୍ୟ, ଦେବତା, ପଶୁ, ପକ୍ଷୀ, ଅସୁର ପ୍ରଭୃତି ଏହି କଶ୍ୟପଙ୍କ ସନ୍ତାନ ।

( ବିଷ୍ଣୁପୁରାଣ )

ଅସୁରରାଜ ବିଖ୍ୟାତଙ୍କ ବଡ଼ଝିଅ । (ଚନ୍ଦ୍ରକଳା ପୁରାଣରେ ଲେଖାଅଛି) ଚନ୍ଦ୍ରଙ୍କ ଷୋଡ଼ଶ ଅଂଶ । ଏଥିଲାଗି ଏହାଙ୍କୁ କଳାନିଧି ନାମ ଦିଆଯାଇଛି । ଦେବତାମାନେ କୃଷ୍ଣପକ୍ଷରେ ପ୍ରତିଦିନ ଚନ୍ଦ୍ରଙ୍କଠାରୁ ଗୋଟିଏ ଗୋଟିଏ କଳା ଅମୃତ ପାନ କରିବାରୁ ଚନ୍ଦ୍ରଙ୍କର କଳା କ୍ଷୟ ହୁଏ । ଶେଷ କଳାକୁ ଅମାବାସ୍ୟା ଦିନ ଜଳ ଓ ଔଷଧିମାନେ ପାନ କରନ୍ତି । ଜଳ ଓ ଔଷଧିକୁ ପଶୁମାନେ ପାନ କରି ଦୁଧ ଦିଅନ୍ତି । ଦୁଧରୁ ଘିଅ ହୁଏ, ଏହି ଘିଅ ପୁଣି ଆହୁତିରୂପେ ଚନ୍ଦ୍ରଙ୍କଠାରେ ପ୍ରବେଶ କରିବାରୁ ସେ ପୁଣି ଶୁକ୍ଳପକ୍ଷରେ କଳାଏ କଳାଏ ବଢନ୍ତି । କୃଷ୍ଣ ପ୍ରତିପଦରୁ ଦେବତାମାନେ ଚନ୍ଦ୍ର କଳାକୁ ଏପରି ବାଣ୍ଟି ଖାଇଥାନ୍ତି ।

୧ । ଅମୃତା—ଅଗ୍ନି ; ୨ । ମାନଦା—ସୂର୍ଯ୍ୟ ; ୩ । ପୂଷା—ବିଶ୍ୱେଦେବା ;
୪ । ପୁଷ୍ଟି—ବରୁଣ ; ୫ । ତୁଷ୍ଟି—ବଷଟ୍କାର ; ୬ । ରତି—ଇନ୍ଦ୍ର ;
୭ । ଧୃତି—ଦେବର୍ଷିଗଣ ; ୮ । ଶଶିନୀ—ଅଜ ଏକପାଦ୍ ; ୯ । ଚନ୍ଦ୍ରିକା—ଯମ ;
୧୦ । କାନ୍ତି—ବାୟୁ ; ୧୧ । ଜ୍ୟୋତ୍ସ୍ନା—ରମା ; ୧୨ । ଶ୍ରୀ—ପିତୃଗଣ ;
୧୩ । ପ୍ରୀତି—କୁବେର ; ୧୪ । ଅଙ୍ଗଦା—ପଶୁପତି ;
୧୫ । ପୂର୍ଣ୍ଣା—ପ୍ରଜାପତି ; ୧୬ । ପୂର୍ଣ୍ଣାମୃତା—ଜଳ ଓ ଔଷଧିଗଣ ।

କାମଶାସ୍ତ୍ର ଅନୁସାରେ କଳା ୬୪ ଭାଗରେ ବିଭକ୍ତ । ସ୍ତ୍ରୀମାନେ ଏହା ଉତ୍ତମରୂପେ ଜାଣିବା ଆବଶ୍ୟକ । ୬୪ କଳାର ନାମ, ଯଥା—ଗୀତ, ବାଦ୍ୟ ନୃତ୍ୟ ନାଟକାଭିନୟ, ଆଲେଖ୍ୟ ବା ଚିତ୍ରଣ, ଟିକା ଲେଖା, ଚାଉଳ ଓ ଫୁଲରେ ଚିତ୍ର ରଚନା, ପୁଷ୍ପାସ୍ତରଣ, ଦଶନବସନାଙ୍ଗରାଗ, ମଣିଭୂମିକା, ଶୟନରଚନା, ଉଦକବାଦ୍ୟ (ଜଳତରଙ୍ଗ ବାଦ୍ୟ), ଉଦକଘାତ (ସୁବାସିତ ଜଳସେଚନ), ଚିତ୍ରଯୋଗ (ବୃଦ୍ଧ ଓ ଯୁବକଆଦିଙ୍କ ଅବସ୍ଥା ପରିବର୍ତ୍ତନ

କରିବା), ମାଲ୍ୟଗ୍ରଥନ, କେଶଶେଖରାପୀଡ଼ଯୋଜନ (ମୁଣ୍ଡରେ ଫୁଲ ସଜାଇବା), ନେପଥ୍ୟଯୋଗ (ଦେଶକାଳପାତ୍ରାନୁସାରେ ବସ୍ତ୍ରଭୂଷଣାଦି ପରିଧାନ), କର୍ଣ୍ଣପତ୍ରଭଙ୍ଗ (କାନକୁ ବେଣି ଦ୍ୱାରା ଶୋଭିତ କରିବା), ସୁଗନ୍ଧ-ଯୋଜନ, ଭୂଷଣ, ଇନ୍ଦ୍ରଜାଲ, କୌଚୁମାରଯୋଗ, (ଅସୁନ୍ଦରକୁ ସୁନ୍ଦର କରିବା), ହସ୍ତଲାଘବ, ନାନାପ୍ରକାର ଶାକ ବ୍ୟଞ୍ଜନାଦି ପ୍ରସ୍ତୁତ କରଣ, ପ୍ରପାନକ ପ୍ରସ୍ତୁତକରଣ, ସୂଚୀକର୍ମ, (ସିଲେଇ କାମ ବା ଛୁଞ୍ଚିରେ ନାନାପ୍ରକାର କାରିଗରି), ସୂତ୍ରକର୍ମ, ପ୍ରହେଳିକା, ପ୍ରତିମାଳା ବା ଶ୍ଳୋକାନ୍ତ୍ୟ ଆବୃତ୍ତି, ଦୁର୍ବାଚକ ଯୋଗ (କଠିନ ଶବ୍ଦ ବା ବାକ୍ୟର ତାତ୍ପର୍ଯ୍ୟ ବାହାର କରିବା), ପୁସ୍ତକ ବାଚନ, ନାଟକାଖ୍ୟାୟିକାଦର୍ଶନ, କାବ୍ୟ ସମସ୍ୟା ପୂର୍ତ୍ତି, ବେତରେ ପଟି ଓ ଖଟରେ ଲେବାନ୍ ଆଦି ବୁଣିବା, ତର୍କ କର୍ମ, ବଢ଼େଇ କାମ, ଗୃହନିର୍ମାଣ, ଧାତୁ ଓ ରତ୍ନ ପରୀକ୍ଷା, ଧାତୁବାଦ (ମିଶ୍ରିତ ଧାତୁରୁ ଅସଲ ଧାତୁ ଅଲଗା କରିବା), ମଣିରାଗଜ୍ଞାନ, ଖଣିବିଦ୍ୟା, ବୃକ୍ଷାୟୁର୍ବେଦ ଯୋଗ, ମେଷକୁକ୍କୁଟଶାବକ ଯୁଦ୍ଧ ବିଧି, ଶୁକଶାରିକା ପ୍ରଲାପନ, ଉତ୍ସାଦନ ବା ସୁଗନ୍ଧ ଲେପନ, କେଶ ମାର୍ଜନ କୌଶଳ, ଅକ୍ଷର ମୁଷ୍ଟିକା କଥନ, ମ୍ଳେଚ୍ଛ ଭାଷାଜ୍ଞାନ, ଦେଶ ଭାଷାଜ୍ଞାନ, ଦୈବଘଟନାରୁ ଭବିଷ୍ୟତ ବିଷୟ ଜାଣିବା, ଯନ୍ତ୍ର ନିର୍ମାଣ, ଧାରଣ ମାତୃକା, ଅନ୍ୟର ପଢ଼ିବା ଦେଖି ସେହିପରି ପଢ଼ିବା, ଅନ୍ୟର ମନ ଅନୁସାରେ କବିତା ରଚନା, କ୍ରିୟା ବିକଳ୍ପ, ଛଳିତକ ଯୋଗ, ଅଭିଧାନ କୋଷ ଛନ୍ଦୋଜ୍ଞାନ, ବସ୍ତ୍ର ଗୋପନା, ବାଲ କ୍ରୀଡ଼ା କର୍ମ, ଦ୍ୟୂତ କ୍ରୀଡ଼ା, ବିନୟ ଓ ଶିଷ୍ଟାଚାର ଜ୍ଞାନ ପଶା ଆଦି କ୍ରୀଡ଼ା, ବୈଜୟିକବିଦ୍ୟାଜ୍ଞାନ, ବୈତାଳିକୀ ବିଦ୍ୟାଜ୍ଞାନ ।

ବାରଗୋଟି ସଙ୍କ୍ରାନ୍ତ ବିଶ୍ୱର ଅନୁସାରେ ସୂର୍ଯ୍ୟଙ୍କର ବାରୋଟି ନାମ ଅଛି । ଏହି ବାରଗୋଟି ସୂର୍ଯ୍ୟଙ୍କ ତେଜକୁ ମଧ୍ୟ କଳା କହନ୍ତି ଯେପରି—ବିବସ୍ୱାନଙ୍କ କଳା—ତପିନୀ ; ଅର୍ଯ୍ୟମା—ତାପିନୀ ; ପୂଷା—ଧୂମ୍ରା ; ତ୍ୱଷ୍ଟା—ମରୀଚି, ସବିତା– ଜ୍ୱାଳିନୀ ; ଭଗ—ରୁଚି , ଧାତା—ସୁଷୁମ୍ନା ; ବିଧାତା—ଭୋଗଦା ; ବରୁଣ—ବିଶ୍ୱା ; ମିତ୍ର —ବୋଧିନୀ ; ଶୁକ୍ର—ଧାରିଣୀ ; ଉରୁକ୍ରମ—କ୍ଷମା ।

ଅଗ୍ନିମଣ୍ଡଳର ଦଶଗୋଟି ଭାଗ—ଧୂମ୍ରା, ଅର୍ଚ୍ଚି, ଉଷ୍ମା, ଜ୍ୱଳନୀ, ଜ୍ୱାଳିନୀ, ବିସ୍ଫୁଲିଙ୍ଗିନୀ, ଶ୍ରୀ, ସୁରୂପା, କପିଳା ହବ୍ୟକବ୍ୟବାହ ।

ଚରକଶାସ୍ତ୍ର ଶାସ୍ତ୍ରାନୁମୋଦିତ ଶରୀରସ୍ଥ ଧାତୁରୁ ଅନ୍ୟତମ ଯଥା—ରକ୍ତ, ମେଦ, ମାଂସ, କଫ, ମୂତ୍ର, ପିତ୍ତ, ବୀର୍ଯ୍ୟ, କଳା ।

**କଳାବତୀ**—ତୁମ୍ବୁରୁ ଗନ୍ଧର୍ବଙ୍କ ଝିଅର ନାମ । କାନ୍ୟକୁବ୍ଜ ରାଜକନ୍ୟା, ରାଜା ବୃଷଭାନୁଙ୍କ ପତ୍ନୀ । ଏହାଙ୍କ ଗର୍ଭରେ ଶ୍ରୀରାଧିକା ଜନ୍ମ ଗ୍ରହଣ କରିଥିଲେ ।

**କଳି**—ଯୁଗ ପ୍ରବର୍ତ୍ତକ ଦେବତା ବିଶେଷ, ଏହାଙ୍କ ନାମାନୁସାରେ ଯୁଗର ନାମ କଳିଯୁଗ ହୋଇଅଛି । ଭବିଷ୍ୟପୁରାଣ ମତେ ଏହାଙ୍କର ପିତା କ୍ରୋଧ, ମାତା ହିଂସା, ଭଗ୍ନି ଦୁରୁକ୍ତି, ପୁତ୍ରଦ୍ୱୟ ଭୟ ଓ ମୃତ୍ୟୁ । ୪୩୨୦୦୦ ବର୍ଷର ପର୍ଯ୍ୟନ୍ତ ଏହି ଦେବତାଙ୍କ ଅଧିକାର ରହିବ । ଏହି ଯୁଗ ଅବସାନ ସମୟରେ ଭଗବାନ, ବିଷ୍ଣୁ କଲ୍କି ରୂପେ ଅବତୀର୍ଣ୍ଣ ହେବେ । ଦ୍ୱାପର ଯୁଗର ଶେଷ ପାଦରେ ପ୍ରଜାପତି ବ୍ରହ୍ମା ନିଜ ପୃଷ୍ଠଦେଶରୁ ଅଧର୍ମଙ୍କୁ ସୃଷ୍ଟି କରିଥିଲେ । ଅଧର୍ମଙ୍କ ପତ୍ନୀଙ୍କ ନାମ ମିଥ୍ୟା । ମିଥ୍ୟାଙ୍କ ଗର୍ଭରେ ଅଧର୍ମଙ୍କ ଔରସରୁ ପରମ କୋପନ ପୁତ୍ର ଦମ୍ଭଙ୍କର ଜନ୍ମ । ଦମ୍ଭ ନିଜ ଭଗିନୀ ମାୟାଙ୍କୁ ବିବାହ କରିଥିଲେ, ଏବଂ ସେମାନଙ୍କର ଲୋଭ ନାମକ ପୁତ୍ର ଓ ନିକୃତି ନାମ୍ନୀ କନ୍ୟା ଜନ୍ମିଥିଲେ । ଲୋଭ ନିଜର ଭଗିନୀ ନିକୃତିଙ୍କୁ ବିବାହ କଲେ । ଏହି ଦମ୍ପତିଙ୍କ ପୁତ୍ରର ନାମ କ୍ରୋଧ ଓ କନ୍ୟାର ନାମ ହିଂସା । କ୍ରୋଧ ନିଜର ସହୋଦରା ହିଂସାଙ୍କୁ ପତ୍ନୀରୂପେ ଗ୍ରହଣ କଲେ । କଳି ଏହି ଦମ୍ପତିର ପୁତ୍ର ଏବଂ ଦୁରୁକ୍ତି କନ୍ୟା । କଳି ମଧ୍ୟ ସ୍ୱୀୟ ଭଗିନୀ ଦୁରୁକ୍ତିର ପାଣିପୀଡ଼ନ କରିଥିଲେ. ଭୟ ଏମାନଙ୍କର ପୁତ୍ର, ମୃତ୍ୟୁ ଏମାନଙ୍କର କନ୍ୟା, ଭୟ ମୃତ୍ୟୁଙ୍କୁ ବିବାହ ହେବା ଯୋଗେ ନିରୟ ନାମକ ପୁତ୍ର ଓ ଯାତନା ନାମ୍ନୀ କନ୍ୟା ଜାତ ହେଲେ । ନିରୟ ଓ ଯାତନାଙ୍କର ବହୁ ପୁତ୍ର ହୋଇଥିଲେ ।

(କଲ୍କିପୁରାଣ ୧ମ ଅଂଶ)

କଳିଙ୍କ ଅତ୍ୟାଚାରରେ ନିଷଧରାଜ ନଳ ରାଜ୍ୟଭ୍ରଷ୍ଟ ହୋଇ ମହିଷୀ ଦମୟନ୍ତୀଙ୍କ ସହିତ ଅଶେଷ କ୍ଳେଶ ଭୋଗ କରିଥିଲେ । ଏକଦା ଇନ୍ଦ୍ରାଦି ଦେବତାମାନେ ବିଦର୍ଭ ରାଜକନ୍ୟା ଦମୟନ୍ତୀଙ୍କ ସ୍ୱୟମ୍ବର ସଭାକୁ ଗମନ କରିଥିଲେ । ଦମୟନ୍ତୀ ଦେବତାମାନଙ୍କୁ ଉପେକ୍ଷା କରି ନଳଙ୍କୁ ପତିରୂପେ ବରଣ କଲେ ଏବଂ ଉଭୟଙ୍କର ଯଥାବିଧି ପରିଣୟ କ୍ରିୟା ସମ୍ପାଦନ ହେଲା । ସ୍ୱୟମ୍ବର ସଭାରୁ ପ୍ରତ୍ୟାବର୍ତ୍ତନ କରିବାବେଳେ ଇନ୍ଦ୍ରାଦି ଦେବତାମାନଙ୍କ ସହିତ କଳି ଓ ତାଙ୍କ ସଖା ଦ୍ୱାପରଙ୍କର ଦେଖାହେଲା । ଏ ଉଭୟେ ଇନ୍ଦ୍ରାଦି ଦେବତାଙ୍କ ଅପମାନର ପ୍ରତିଶୋଧ ନେବାପାଇଁ ସଚେଷ୍ଟ ହେଲେ । କିପରି ଦମୟନ୍ତୀଙ୍କୁ ବିପନ୍ନା କରିବେ ତାର ସୁଯୋଗ ଲୋଡ଼ି ବସିଲେ । ଉଭୟେ ପରମଧାର୍ମିକ ନଳଙ୍କର ଛିଦ୍ର ଖୋଜିବାପାଇଁ ଉକାଇ ରହିଲେ । ପ୍ରାୟ ଏଗାର ବର୍ଷ ପରେ

ଥରେ ନଳଙ୍କୁ ଅଶୁଚି ଦେଖି କଳି ତାଙ୍କ ଦେହରେ ପ୍ରବେଶ କଲେ । ନଳଙ୍କର ସଦ୍‌ବୁଦ୍ଧି ଲୋପ ପାଇଲା ; ସେ ନିଜ ଭାଇ ପୁଷ୍କରଙ୍କ ସହିତ ଅକ୍ଷକ୍ରୀଡ଼ା କରି ରାଜ୍ୟସମ୍ପଦ ହରାଇଥିଲେ । ପୁଷ୍କର ରଜା ହେଲେ । ନଳ ରାଜ୍ୟଭ୍ରଷ୍ଟ ହୋଇ ବନବାସ କଲେ । ଅବଶେଷରେ କର୍କୋଟକ ନାଗ ତାଙ୍କୁ ଦଂଶନ କଲା । କଳି ସର୍ପ ବିଷଜ୍ୱାଳାରେ ଜର୍ଜରିତ ହୋଇ ନଳଙ୍କ ଦେହରେ ବାସ କଲେ । କର୍କୋଟକଙ୍କ ଉପଦେଶକ୍ରମେ ଅଯୋଧ୍ୟା ରଜା ଋତୁପର୍ଣ୍ଣ ନଳଙ୍କୁ ଅକ୍ଷକ୍ରୀଡ଼ା ଶିକ୍ଷା ଦେଲେ । ଅକ୍ଷକ୍ରୀଡ଼ା ଶିକ୍ଷା କରିବାଯୋଗେ କଳି ନଳଙ୍କ ଦେହରୁ ନିର୍ଗତ ହେଲେ । ଦୀର୍ଘ ବିରହ ପରେ ନଳ ଦମୟନ୍ତୀ ମିଳନ ହେଲା । ନଳ ପୁନର୍ବାର ରାଜପଦରେ ଅଧିଷ୍ଠିତ ହେଲେ । ନଳଙ୍କ ପୁଅର ନାମ ଇନ୍ଦ୍ରସେନ ଓ କନ୍ୟାଙ୍କ ନାମ ଇନ୍ଦ୍ରସେନା ଥିଲା । (ମହାଭାରତ, ବନପର୍ବ; ନଳ ଚରିତ)

**କଳିଙ୍ଗ** ବଳିରାଜାଙ୍କ କ୍ଷେତ୍ରଜ ପୁତ୍ର, ଏ ବଳିରାଜ ମହିଷୀ ସୁଦେଷ୍ଣାଙ୍କ ଗର୍ଭରୁ ମହର୍ଷି ଦୀର୍ଘତମାଙ୍କ ଔରସରେ ଜନ୍ମିଥିଲେ । ଏହାଙ୍କ ଅଧିକୃତ ରାଜ୍ୟର ନାମ ଥିଲା କଳିଙ୍ଗ । ଏହା ଭାରତର ଏକ ପ୍ରାଚୀନ ଦେଶ । ବୈତରଣୀ ନଦୀଠାରୁ ଦକ୍ଷିଣକୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ପ୍ରାଚୀନ ରାଜ୍ୟ ।

ପଣ୍ଡିତ ବିନାୟକ ମିଶ୍ରପ୍ରଣୀତ 'ଓଡ଼ିଆ ଭାଷାର ଇତିହାସ'ରୁ ଜଣାଯାଏ ଯେ ଉତ୍କଳ, କଳିଙ୍ଗ ରାଜ୍ୟର ଅନ୍ତର୍ଗତ ଥିଲା ଓ କଳିଙ୍ଗ ରଜାଙ୍କର ଅନେକ ହାତୀ ଥିବା କଥା ମହାଭାରତରୁ ଜଣାପଡ଼େ । ମହାଭାରତ ଆଦିପର୍ବରେ ଅଛି ଯେ ଦୀର୍ଘତମା ଋଷିଙ୍କ ଔରସରେ ବଳିଙ୍କ ସ୍ତ୍ରୀ ସୁଦେଷ୍ଣାଙ୍କ ଗର୍ଭରୁ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ଏହି ପାଞ୍ଚ ପୁଅ ଜନ୍ମି ପାଞ୍ଚଟି ପ୍ରଦେଶର ରାଜା ହୋଇଥିଲେ ଓ ସେମାନଙ୍କ ନାମାନୁସାରେ ଏ ରାଜ୍ୟମାନଙ୍କ ନାମକରଣ ହୋଇଥିଲା । ପୁରାଣମାନଙ୍କରେ ଅଙ୍ଗ ବଙ୍ଗ, ଓ କଳିଙ୍ଗ ରାଜ୍ୟ ଏକ ସଙ୍ଗେ ବର୍ଣ୍ଣିତ ହୋଇଅଛି । ଅନୁମାନ କରାଯାଏ ଯେ ଏ ରାଜ୍ୟଗୁଡ଼ିକ ପରସ୍ପର ଲଗାଲଗି ଥିଲା । ପୁରାଣମାନଙ୍କରେ କଳିଙ୍ଗ ରାଜ୍ୟରେ ବୈତରଣୀ ନଦୀ ଥିବା କଥା ଜଣାଯାଏ । ଖାରବେଳଙ୍କ ଶିଳାଲିପିରୁ କଳିଙ୍ଗ, ଗଙ୍ଗାର ଦକ୍ଷିଣରେ ଥିବା ଅନୁମିତ ହୁଏ । କେହି କେହି ଅନୁମାନ କରନ୍ତି ଯେ ଆଧୁନିକ ଓଡ଼ିଶାର ଉପକୂଳବର୍ତ୍ତୀ ପୁରୀ, କଟକ ଓ ବାଲେଶ୍ୱର ଜିଲା ପ୍ରାଚୀନ କାଳରେ କଳିଙ୍ଗ ନାମରେ ଅଭିହିତ ହେଉଥିଲା । କାଳିଦାସଙ୍କ ରଘୁବଂଶରେ ଦେଖାଯାଏ ଯେ ରଘୁଙ୍କ ସୈନ୍ୟମାନେ କପିଶା (କାଂଶ ବାଂଶ ବା କଂସାଇ ନଦୀ) ପାର ହେବା ପରେ ଉତ୍କଳୀୟମାନେ ସେମାନଙ୍କୁ କଳିଙ୍ଗଆଡ଼କୁ

ବାଟ ଦେଖାଇ ଦେଇଥିଲେ ଓ ରଘୁଙ୍କ ସୈନ୍ୟମାନେ ଗଞ୍ଜାମର ମହେନ୍ଦ୍ର ପର୍ବତ ନିକଟରେ କଳିଙ୍ଗ ରାଜାଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ଯଯାତିଙ୍କ ଶାସନପତ୍ରରୁ ଜଣାଯାଏ ଯେ କଳିଙ୍ଗ ରାଜ୍ୟ ଉତ୍କଳ, କୋଙ୍ଗଦ ଓ କଳିଙ୍ଗ ଏହି ତିନୋଟି ରାଜ୍ୟ ନେଇ ଗଢ଼ାଯାଇଥିଲା ଓ ଏହାକୁ ତ୍ରିକଳିଙ୍ଗ କୁହାଯାଉଥିଲା ଏବଂ ଯଯାତିଙ୍କ ପୂର୍ବପୁରୁଷମାନଙ୍କ ଉପାଧି 'ତ୍ରିକଳିଙ୍ଗାଧିପତି' ଥିଲା ।

'ପ୍ରାଚୀନ ଉତ୍କଳ'କାର [୬] ଜଗବନ୍ଧୁ ସିଂହ କହନ୍ତି—'ହୁଏନ୍‌ସାଂଙ୍କ ମତରେ କଳିଙ୍ଗ ଗଞ୍ଜାମ ଠାରୁ ୨୦୦ ବା ୩୦୦ ମାଇଲ ଦୂରରେ ଅବସ୍ଥିତ । ଶ୍ରୀକାକୋଲ ବା ଚିକାକୋଲ କଳିଙ୍ଗ ଦେଶର ରାଜଧାନୀ ଥିଲା । ଆଧୁନିକ ତାମ୍ରଲିପ୍ତ କଳିଙ୍ଗ ନିକଟରେ ଥିଲା ।

ଖ୍ରୀଷ୍ଟପୂର୍ବ ୨ୟ ବା ୩ୟ ଶତାବ୍ଦୀଠାରୁ କଳିଙ୍ଗବାସୀମାନେ ପାରସ୍ୟ, ଚୀନ, ତିବ୍ବତ, ବ୍ରହ୍ମ, ଆସାମ, ଶ୍ୟାମ, ଯାବା, ବାଲି ଓ ଇଣ୍ଡୋନେସିଆ (ପୂର୍ବଭାରତୀୟ ଦ୍ୱୀପପୁଞ୍ଜ) ଆଦିରେ ବସତି ସ୍ଥାପନ କରି ସେଠାରେ କଳିଙ୍ଗ ସଭ୍ୟତା ଓ ଶିଳ୍ପ ବିସ୍ତାର କରିଥିବାର ପ୍ରମାଣ ସେହି ସେହି ଦେଶର ଭଗ୍ନାବଶେଷ, ପ୍ରସ୍ତରଖୋଦିତ ମୂର୍ତ୍ତି ଓ ମନ୍ଦିରମାନଙ୍କରୁ ବର୍ତ୍ତମାନ ମିଳୁଅଛି । ଗୋଦାବରୀ ନଦୀର ଉତ୍ପତ୍ତି ସ୍ଥାନ ଅଞ୍ଚଳରେ ମଧ୍ୟ କଳିଙ୍ଗ ଶିଳ୍ପର ଭଗ୍ନାବଶେଷ ଦେଖାଯାଏ । ରାମାୟଣ, ମହାଭାରତର ଘଟଣାମାନ, ଶିବ ବ୍ରହ୍ମା, ଦୁର୍ଗା, ବିଷ୍ଣୁ ଓ ଗଣେଶ ମୂର୍ତ୍ତିମାନ କଳିଙ୍ଗ ଶିଳ୍ପପ୍ରସୂତ ପ୍ରାଚୀନ ମନ୍ଦିରମାନଙ୍କ ଭଗ୍ନାବଶେଷରେ ଦେଖାଯାଏ । ଯେଉଁ ସମୟରେ କୋଣାର୍କ ଓ ଭୁବନେଶ୍ୱର ମନ୍ଦିରମାନ ତିଆରି ହୋଇଥିଲା ସେହି ସମୟରେ, ବାଲିଆଦି ଦ୍ୱୀପରେ କଳିଙ୍ଗ ଶିଳ୍ପମାନ ଖୋଦିତ ହେବାର ଅନୁମିତ ହୁଏ ।

**କଳନ୍ଦ**—ସୂର୍ଯ୍ୟଙ୍କର ଏକ ନାମ । ଏକ ପ୍ରାଚୀନ ପର୍ବତ, କାଳନ୍ଦୀ ନଦୀ ଏହି ପର୍ବତରୁ ବାହାରିଅଛି । ଯମୁନାର ଅନ୍ୟନାମ କାଳନ୍ଦୀ, ସେଥିପାଇଁ ଯମୁନାଙ୍କର ଅନ୍ୟ ନାମ କଳନ୍ଦକନ୍ୟା ବା କଳନ୍ଦନନ୍ଦିନୀ ।

**କଲ୍‌କି**—ବିଷ୍ଣୁଙ୍କ ଅବତାରବିଶେଷ । ବର୍ତ୍ତମାନ କଳିଯୁଗର ଶେଷଭାଗରେ ବିଷ୍ଣୁ କଲ୍‌କିରୂପେ ଅବତୀର୍ଣ୍ଣ ହୋଇ କଳିର ସଂହାର ବିଧାନ କରି ପୁନର୍ବାର ସତ୍ୟଯୁଗ ପ୍ରତିଷ୍ଠା କରିବେ । ଲକ୍ଷ୍ମୀ ପଦ୍ମାରୂପେ ପୃଥିବୀରେ ଅବତୀର୍ଣ୍ଣ ହେବେ ଏବଂ କଲ୍‌କିଙ୍କୁ ପତିରୂପେ ବରଣ କରିବେ । ପଦ୍ମାଙ୍କ ବିବାହ ପରେ

କଲ୍କି ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ପ୍ରାସାଦରେ ଶମ୍ଭଲ ଗ୍ରାମରେ ବାସ କରିବେ ଏବଂ ସେହିଠାରେ ବୌଦ୍ଧମାନଙ୍କୁ ଦମନ ଏବଂ କୁଥୋଦରୀ ନାମ୍ନୀ ରାକ୍ଷସୀକୁ ବଧ କରିବେ । ଏହାପରେ କୀକଟ ନଗରକୁ ଗମନ କରିବେ । ସେଠାରେ ଶଯ୍ୟାକର୍ଣ୍ଣ ପ୍ରଭୃତି ଯୋଦ୍ଧା ଓ ରାଜା ଶଶିଧ୍ୱଜଙ୍କ ସହିତ ଯୁଦ୍ଧ ହେବ । କଲ୍କିଙ୍କ ଅନୁଗ୍ରହରୁ ରାଜା ଶଶିଧ୍ୱଜଙ୍କର ମୋକ୍ଷ ପ୍ରାପ୍ତି ହେବ । ତତ୍ପରେ ଶମ୍ଭଲ ଗ୍ରାମରେ ନାନାପ୍ରକାର ଯଜ୍ଞ ଅନୁଷ୍ଠିତ ହେବ ଏବଂ ସତ୍ୟଯୁଗ ଧର୍ମ ପ୍ରବର୍ତ୍ତିତ ହେବ । ପରେ ଦେବତା ଓ ଗନ୍ଧର୍ବମାନେ ଶମ୍ଭଲ ଗ୍ରାମକୁ ଆଗମନ କରିବେ । କଲ୍କିରୂପୀ ବିଷ୍ଣୁ ସେମାନଙ୍କ ସହିତ ସ୍ୱର୍ଗଯାତ୍ରା କରିବେ । ସତ୍ୟ, ତ୍ରେତା, ଦ୍ୱାପର, କଳି ଏହି ଚାରୋଟି ଯୁଗ କ୍ରମାନ୍ୱୟରେ ପୃଥିବୀରେ ଆବର୍ତ୍ତିତ ହୋଇଥାନ୍ତି । ଏହି ଚାରି ଯୁଗର ସମଷ୍ଟିକୁ ଦିବ୍ୟଯୁଗ କହନ୍ତି । ୭୧ଟି ଦିବ୍ୟଯୁଗରେ ଏକ ମନ୍ୱନ୍ତର ହୁଏ । ବର୍ତ୍ତମାନ ଚତୁର୍ଦ୍ଦଶ ମନୁଙ୍କ ମଧ୍ୟରୁ ସପ୍ତମ ମନୁ ବୈବସ୍ୱତଙ୍କ ରାଜତ୍ୱ ଚାଲିଛି ।

**କଳ୍ପ**—ପୁରାଣ ମତରେ ବ୍ରହ୍ମାଙ୍କର ଗୋଟିଏ ଦିନ ବା ରାତିର ସମୟ ପରିମାଣ ଚାରିଶ ବତିଶ କୋଟି ବରଷ । ଏହା ମାନୁଷବତ୍ସର । ବର୍ତ୍ତମାନ ପୃଥିବୀର ବୟସ ଶ୍ୱେତବରାହ କଳ୍ପାଦି ୧୯୭ କୋଟି ୨୯ ଲକ୍ଷ ୪୯ ହଜାର ୨୯ ବର୍ଷ । ବ୍ରହ୍ମାଙ୍କର ଗୋଟିଏ କଳ୍ପ ନିଦ୍ରା ହୁଏ ଏବଂ ବ୍ରହ୍ମାଙ୍କ ନିଦ୍ରାଭଙ୍ଗ ହେଲେ ଗୋଟିଏ କଳ୍ପ ଶେଷ ହୁଏ । (ଭାଷାକୋଷ ୧୪୧୭ ପୃଷ୍ଠା)

**କଳ୍ପଦ୍ରୁମ (ବଟ)**—ଇନ୍ଦ୍ରଙ୍କ ନନ୍ଦନକାନନସ୍ଥ ଅଭୀଷ୍ଟଫଳଦ ବଟବୃକ୍ଷ । କଳ୍ପାନ୍ତସ୍ଥାୟୀ ବଟବୃକ୍ଷ । ପୁରାଣ ମତରେ ମହାପ୍ରଳୟରେ ସମସ୍ତ ଜଗତ ଧ୍ୱଂସ ହେଲେ କେବଳ ମାତ୍ର ଏହି ବୃକ୍ଷ ବଞ୍ଚି ରହେ ଏବଂ ଏହା ଉପରେ ବସି ବିଷ୍ଣୁ ପୁନର୍ବାର ସୃଷ୍ଟି ଆରମ୍ଭ କରନ୍ତି । (ଭାଷାକୋଷ)

**କଳ୍ପସୂତ୍ର**—ବୈଦିକ ବିଧି ଲିପିବଦ୍ଧ ହୋଇଥିବା ଗ୍ରନ୍ଥ ବା ବ୍ୟବସ୍ଥା ଶାସ୍ତ୍ର ।

**କଲ୍ମାଷପାଦ, କଲ୍ମଷପାଦ** -ଅୟୁତାୟୁଙ୍କ ପୁତ୍ର ଓ ନିଷଧ ରାଜ ନଳଙ୍କ ସଖା ଅଯୋଧ୍ୟାଧିପତି ଋତୁପର୍ଣ୍ଣ । ଏହି ଋତୁପର୍ଣ୍ଣଙ୍କ ପ୍ରପୌତ୍ର ଏବଂ ରାଜା ସୁଦାସଙ୍କ ପୁତ୍ର ମହାରାଜ ସୌଦାସ ଅଯୋଧ୍ୟାରେ ରାଜତ୍ୱ କରିଥିଲେ । ସୌଦାସଙ୍କ ମହିଷୀଙ୍କ ନାମ ମଦୟନ୍ତୀ । ଏକଦା ସୌଦାସ ମୃଗୟାର୍ଥେ ଗମନ କରି ଗୋଟିଏ ରାକ୍ଷସକୁ ବଧ କଲେ । ରାକ୍ଷସର ଭ୍ରାତା ପ୍ରତିଶୋଧ ନେବା

ଅଭିପ୍ରାୟରେ ଆତ୍ମଗୋପନ କରି ପାଚକ ରୂପେ ସୌଦାସଙ୍କ ଅନ୍ତଃପୁରରେ ଅବସ୍ଥାନ କଲା । ଦିନେ ରାଜଗୁରୁ ବଶିଷ୍ଠ ଆହାର କରିବା ପାଇଁ ସୌଦାସଙ୍କ ପ୍ରାସାଦରେ ଉପନୀତ ହେଲେ । ପାଚକରୂପୀ ରାକ୍ଷସ ନରମାଂସ ରନ୍ଧନ କରି ଋଷିଙ୍କୁ ଖାଇବାକୁ ଦେଲା । ଋଷି ଦିବ୍ୟ ଚକ୍ଷୁ ବଳରେ ଅଭକ୍ଷ୍ୟ ବସ୍ତୁ ବୋଲି ଜାଣି ରାଜାଙ୍କୁ ଅଭିଶାପ ଦେଲେ—'ତୁମର ଏଇ କୁକର୍ମ ଯୋଗୁ ତୁମେ ରାକ୍ଷସ ହୁଅ ।' ରାଜା ମଧ୍ୟ ବିନା ଅପରାଧରେ ଅଭିଶପ୍ତ ହେବାରୁ ଗୁରୁଙ୍କୁ ଶାପ ଦେବା ପାଇଁ ଜଳ ଗ୍ରହଣ କରି ମନ୍ତ୍ରୋଚ୍ଚାରଣ କଲେ । ମାତ୍ର ସାଧ୍ୱୀ ମଦୟନ୍ତୀ ସ୍ୱାମୀଙ୍କର ଏ ଗର୍ହିତ କାର୍ଯ୍ୟ କରିବା ଅନୁଚିତ ବୋଲି ବୁଝାଇ ତାଙ୍କ କ୍ରୋଧ ଶାନ୍ତ କଲେ । ରାଜା ଗ୍ରହଣ କରିଥିବା ମନ୍ତ୍ରପୂତ ଜଳ ନିଜ ପାଦରେ ନିକ୍ଷେପ କଲେ । ସେହି ମନ୍ତ୍ରପୂତ ଜଳ ଯୋଗେ ତାଙ୍କର ପାଦ ଦୁଇଟି କଲ୍ମଷ ଅର୍ଥାତ୍ ମଳିନ ବା କୃଷ୍ଣବର୍ଣ୍ଣ ହୋଇଯିବାରୁ ସେହି ଦିନଠାରୁ ସେ କଲ୍ମଷପାଦ ଆଖ୍ୟା ପାଇଥିଲେ । ରାଜଗୁରୁ ବଶିଷ୍ଠ ମଧ୍ୟ ରାଜାଙ୍କୁ ନିରପରାଧ ଜାଣି ତାଙ୍କର ପାପ କ୍ଷୟ ନିମିତ୍ତ ଦ୍ୱାଦଶ ବାର୍ଷିକ ବ୍ରତ ଅନୁଷ୍ଠାନ କଲେ । ରାଜା ରାକ୍ଷସ ରୂପ ଧାରଣ କରି ବନରେ ବିଚରଣ କରିବାକୁ ଲାଗିଲେ । ଦିନେ ସେ ରତିକ୍ରିୟାସକ୍ତ ଏକ ବ୍ରାହ୍ମଣଙ୍କୁ ଭକ୍ଷଣ କଲେ । ବ୍ରାହ୍ମଣୀ ଯେତେ ପ୍ରକାର ଅନୁନୟ ବିନୟ କଲେ ମଧ୍ୟ ସେ ବ୍ରାହ୍ମଣଙ୍କୁ ଛାଡିଲେ ନାହିଁ । ତେଣୁ ବ୍ରାହ୍ମଣୀ ରାକ୍ଷସକୁ ଶାପ ଦେଲେ—'ଯେହେତୁ ତୁ ମୋର ପତିଙ୍କୁ ରତିକାର୍ଯ୍ୟରୁ ନିବୃତ୍ତ କରି ଭକ୍ଷଣ କଲୁ, ସେହି କାରଣରୁ ତୋର ମଧ୍ୟ ରତିକ୍ରିୟା ସମ୍ପାଦନ ବେଳେ ମୃତ୍ୟୁ ଘଟିବ ।' ଏହାପରେ ବ୍ରାହ୍ମଣୀ ସ୍ୱାମୀର କଙ୍କାଳଗୁଡିକ ସଂଗ୍ରହ କରି ସେଥିରେ ଅଗ୍ନି ସଂଯୋଗ କଲେ ଏବଂ ସେହି ଚିତାଗ୍ନିରେ ଝାସ ଦେଇ ପ୍ରାଣତ୍ୟାଗ କଲେ । ଅନନ୍ତର ବଶିଷ୍ଠଙ୍କ ଦ୍ୱାଦଶ ବାର୍ଷିକ ବ୍ରତ ସମାପନ ହେବା ପରେ କଲ୍ମଷପାଦ ଶାପମୁକ୍ତ ହୋଇ ଗୃହକୁ ଆସିଲେ । ମଦୟନ୍ତୀଙ୍କ ସହିତ ତାଙ୍କର ପୁଣି ମିଳନ ହେଲା । ଦିନେ ରାଜା ରାଣୀଙ୍କ ସହିତ ପ୍ରେମାଳାପ କରି ରତିକ୍ରିୟାର ଉଦ୍‌ଯୋଗ କରନ୍ତେ ରାଣୀ ତାଙ୍କୁ ବ୍ରାହ୍ମଣୀର ଅଭିଶାପ କଥା ସ୍ମରଣ କରାଇଦେଲେ । ତେଣୁ ରାଜା ଅପୁତ୍ରିକ ହୋଇ ସ୍ତ୍ରୀ ସୁଖରୁ ବଞ୍ଚିତ ହେଲେ । କିଛିଦିନ ପରେ ସୌଦାସଙ୍କ ଅନୁରୋଧକ୍ରମେ ବଶିଷ୍ଠଙ୍କ ଯୋଗୁଁ ମଦୟନ୍ତୀ ଗର୍ଭବତୀ ହେଲେ । ରାଣୀ ବହୁକାଳଯାଏ ଗର୍ଭବତୀ ରହି ପ୍ରସବ କରି ନପାରିବାରୁ ବଶିଷ୍ଠ ଏକ ଅଶ୍ମ (ପ୍ରସ୍ତର) ଆଘାତ କରି ତାଙ୍କୁ ଗର୍ଭବେଦନାରୁ ମୁକ୍ତ କଲେ । ଅଶ୍ମ ଆଘାତରେ ଗୋଟିଏ ପୁତ୍ର ସନ୍ତାନ ଭୂମିଷ୍ଠ ହେଲା । ସେ ପୁତ୍ରର ନାମ ଅଶ୍ମକ ।

**କଲ୍ମାଷୀ**—ଜମଦଗ୍ନିଙ୍କ କାମଧେନୁର ନାମ । ଏହା ଦେଖିବାକୁ ଛଉଆ ବର୍ଣ୍ଣ । ଯମୁନା ନଦୀର ନାମ ମଧ୍ୟ କଲ୍ମାଷୀ ।

**କଶ୍ୟପ**—ବିଖ୍ୟାତ ପ୍ରଜାପତି ଋଷି । ଏ ବ୍ରହ୍ମାଙ୍କର ନାତି ଓ ମରୀଚି ମହର୍ଷିଙ୍କ ମାନସ ପୁତ୍ର । କେହି କେହି କହନ୍ତି ମରୀଚଙ୍କ ଔରସରେ କାଳାଙ୍କ ଗର୍ଭରୁ ଏ ଜନ୍ମ ହୋଇଥିଲେ । କଶ୍ୟପ ତାଙ୍କ ନିଜ ନାମ ବିଶ୍ଳେଷଣ କରି କହନ୍ତି—'କଶ୍ୟପ ବୋଲିଲେ ମୁଁ କାଶ ଫୁଲ ବର୍ଣ୍ଣ, ହେବାରୁ କଶ୍ୟପ ମୋର ନାମ ଦେନ ।' (କୃଷ୍ଣ ସିଂହ, ମହାଭାରତ ଅନୁପର୍ବ) ବ୍ରହ୍ମବୈବର୍ତ୍ତ ପୁରାଣ କହେ କଶ୍ୟପଙ୍କ ପତ୍ନୀ ସଂଖ୍ୟା ସାତ । ଦିତିଙ୍କଠାରୁ ଦୈତ୍ୟଗଣ, ଅଦିତିଙ୍କଠାରୁ ଆଦିତ୍ୟ ବା ଦେବଗଣ, ବିନତାଙ୍କଠାରୁ ପକ୍ଷିଗଣ, କଦ୍ରୁଙ୍କଠାରୁ ସର୍ପଗଣ, ସୁରଭିଙ୍କଠାରୁ ଗୋମହିଷାଦି, ସରମାଙ୍କଠାରୁ କୁକ୍କୁରାଦି ଚତୁଷ୍ପଦ ଏବଂ ଦନୁଙ୍କଠାରୁ ଦାନବମାନେ ଜନ୍ମିଥିଲେ । ମାର୍କଣ୍ଡେୟ ଓ ହରିବଂଶ ମତରେ କଶ୍ୟପଙ୍କର ପତ୍ନୀ ସଂଖ୍ୟା ୧୩ ବୋଲି ଜଣାଯାଏ, ଯଥା-ଦିତି, ଅଦିତି, ଦନୁ, ବିନତା, ଖସା, କଦ୍ରୁ, ମୁନି, କ୍ରୋଧା, ଅରିଷ୍ଟା, ଇରା, ତାମ୍ରା, ଇଳା ଓ ପ୍ରଧା । ଆର୍ଷ ରାମାୟଣ ଆଦିକାଣ୍ଡରେ କଶ୍ୟପଙ୍କର ବଂଶାବଳୀ ନିମ୍ନମତେ ନିର୍ଦ୍ଦେଶ କରାଯାଇଛି—କଶ୍ୟପଙ୍କ ପୁତ୍ର ବିବସ୍ୱାନ୍, ତତ୍ପୁତ୍ର ବୈବସ୍ୱତ ମନୁ, ତାହାଙ୍କ ପୁତ୍ର ଇକ୍ଷ୍ୱାକୁ, ତତ୍ ପୁତ୍ର କୁକ୍ଷି, ତତ୍ ପୁତ୍ର ବିକୁକ୍ଷି, ବିକୁକ୍ଷିଙ୍କ ପୁତ୍ର ବାଣ, ବାଣଙ୍କ ପୁତ୍ର ଅନରଣ୍ୟ, ତତ୍ ପୁତ୍ର ପୃଥୁ, ପୃଥୁଙ୍କ ପୁତ୍ର ତ୍ରିଶଙ୍କୁ, ତାହାଙ୍କ ପୁତ୍ର ଧୁନ୍ଧୁନାଭ, ତତ୍ ପୁତ୍ର ଯୁବନାଶ୍ୱ, ତାଙ୍କ ପୁତ୍ର ମାନ୍ଧାତା, ମାନ୍ଧାତାଙ୍କ ପୁତ୍ର ସୁଗନ୍ଧି, ତତ୍ ପୁତ୍ର ଧ୍ରୁବସନ୍ଧି, ତାହାଙ୍କ ପୁତ୍ର ଭରତ, ଭରତଙ୍କ ପୁତ୍ର ଅସିତ, ତତ୍ ପୁତ୍ର ସଗର, ସଗରଙ୍କ ପୁତ୍ର ଅସମଞ୍ଜ, ତତ୍ ପୁତ୍ର ଦିଲୀପ, ତତ୍ ପୁତ୍ର ଭଗୀରଥ, ତାହାଙ୍କ ପୁତ୍ର କାକୁତ୍ସ୍ଥ, ତତ୍ ପୁତ୍ର ରଘୁ, ତତ୍ ପୁତ୍ର ପ୍ରବୃଦ୍ଧ, ତତ୍ ପୁତ୍ର କଲ୍ମାଷପାଦ, ତାହାଙ୍କ ପୁତ୍ର ଶଙ୍ଖନ, ଶଙ୍ଖନଙ୍କ ପୁତ୍ର ସୁଦର୍ଶନ, ସୁଦର୍ଶନଙ୍କ ପୁତ୍ର ଅଗ୍ନିବର୍ଣ୍ଣ, ତତ୍ ପୁତ୍ର ଶୀଘ୍ରଗ, ଶୀଘ୍ରଗଙ୍କ ପୁତ୍ର ମରୁ, ତତ୍ ପୁତ୍ର ପ୍ରଶୁଶ୍ରୁକ, ତାହାଙ୍କ ପୁତ୍ର ଅମ୍ବରୀଷ, ତାଙ୍କ ପୁତ୍ର ନହୁଷ, ନହୁଷଙ୍କ ପୁତ୍ର ଯଯାତି, ଯଯାତିଙ୍କ ପୁତ୍ର ନାଭାଗ, ନାଭାଗଙ୍କ ପୁତ୍ର ଅଜ, ଅଜଙ୍କ ପୁତ୍ର ଦଶରଥ, ତାଙ୍କ ପୁତ୍ର ରାମ ଲକ୍ଷ୍ମଣାଦି ଭ୍ରାତା ଚତୁଷ୍ଟୟ । କାଳିଦାସଙ୍କ ରଘୁବଂଶ ସହିତ ଏ ବଂଶାବଳୀର ସମତା ନାହିଁ । କର୍ଣ୍ଣେଲ ଟଡ଼ ସାହେବ ଜୟପୁର ରାଜାସାହେବଙ୍କ ନିକଟରୁ ରଘୁବଂଶର ଯେଉଁ ବଂଶଲତା ପାଇଥିଲେ ତାହା ରଘୁବଂଶ ସହିତ ସମାନ ବୋଲି ଜଣାଯାଏ ।

କଶ୍ୟପ ଋଷିମାନଙ୍କ ମଧ୍ୟରେ ଅନ୍ୟତମ । ଏ ପରଶୁରାମ ଓ ରାମଚନ୍ଦ୍ରଙ୍କ ପୁରୋହିତ ଥିଲେ । ଋକ୍ ବେଦର କେତେକ ସୂକ୍ତ ଏହାଙ୍କ ଦ୍ୱାରା ରଚିତ ହୋଇଥିଲା । ଏ ଗୋଟିଏ ସଂହିତା ବା ସ୍ମୃତି ଶାସ୍ତ୍ରର ପ୍ରଣେତା ଥିଲେ ।

**କହୋଡ଼**—ମହର୍ଷି ଉଦ୍ଦାଳକଙ୍କ ଶିଷ୍ୟ ଏବଂ ବିଖ୍ୟାତ ଋଷି ଅଷ୍ଟାବକ୍ରଙ୍କ ପିତା ।

**କାଉଁରି ବର**—ପ୍ରବାଦ ଅଛି କାଉଁରୁ କାମଚଣ୍ଡୀ ଦେଶରେ କମିଆଁ (ଗାରୁଡ଼ି-ବିଦ୍ୟା) ଜାଣିଥିବା କଟେଇ ନା ପିଟେଇ ପତର ସହକୂଣୀ ନାମକ ଜଣେ ସ୍ତ୍ରୀ ଗୋଟିଏ ବର ଗଛରେ ଚଢ଼ି ମନ୍ତ୍ରବଳରେ ସେ ବରଗଛକୁ ଉଡ଼ାଇ-ଆଣି ଜଗନ୍ନାଥ ଦର୍ଶନକୁ ଆସୁଥିଲା । ପୁରୀ ନିକଟସ୍ଥ ବିରନଳା ଗ୍ରାମ ନିକଟରେ ସେ ବରଗଛ ଉଡ଼ିଯିବା ସମୟରେ ତାର ଛାଇ ପୋଖରୀରେ ପଡ଼ିଲା । ନଟେଇ ଧୋବଣୀ ନାମରେ ଜଣେ ଗୁଣି ବିଦ୍ୟା ଜାଣିଥିବା ଓଡ଼ିଆ ଧୋବଣୀ ସେ ପୋଖରୀରେ ଲୁଗା କାଚୁଥିଲା । ସେ ଗଛର ଛାଇ ଦେଖି କମିଆଁ ବଳରେ ଉକ୍ତ ଗଛକୁ ବନ୍ଧନ କରି ସେହି ସ୍ଥାନରେ ଅଟକାଇ ଦେଲା । ସେହି ଦିନଠାରୁ ସେ ଗଛଟି ସେହିଠାରେ ରହିଲା । ସେ ସ୍ଥାନଟି ଏ ପର୍ଯ୍ୟନ୍ତ 'କାଉଁରି ବର' ବୋଲି ଅଭିହିତ ହେଉଅଛି । (ଭାଷାକୋଷ ୧୪୪୩ ପୃ)

**କାଉଁରି ଘର**—ତୀର୍ଥଯାତ୍ରୀମାନେ ଗଙ୍ଗୋତ୍ରୀଠାରୁ ଯେଉଁ ଘରରେ ଗଙ୍ଗାଜଳ କାବରେ ବହି ରାମେଶ୍ୱର ପର୍ଯ୍ୟନ୍ତ ନିଅନ୍ତି ସେହି ଘରକୁ କାଉଁରି ଘର କହନ୍ତି ।

**କାଉଁରି ହାତ** - ଏହି ଅର୍ଥ ଅଭିମନ୍ତ୍ରିତ ହେଲେ ଗାରୁଡ଼ି ବିଦ୍ୟାବଳରେ ଏହା ଦ୍ୱାରା ଅସାଧ୍ୟ ସାଧନ ହୁଏ ।

**କାଞ୍ଚୀ**—ପୂର୍ବେ ଏହା ଦ୍ରାବିଡ଼ ରାଜ୍ୟର ରାଜଧାନୀ ଥିଲା । ଏହା ଗୋଟିଏ ତୀର୍ଥ । ଓଡ଼ିଶାର ସ୍ୱାଧୀନ ରାଜା ପୁରୁଷୋତ୍ତମ ଦେବ (ଖ୍ରୀ: ୧୪୭୯-୧୫୦୪) ଏ ରାଜ୍ୟ ଜୟ କରି ରାଜକନ୍ୟା ପଦ୍ମାବତୀଙ୍କୁ ଆଣି ବିବାହ କରିଥିଲେ । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି ଯେ ଏ କାଞ୍ଚୀ ରାଜାଙ୍କର କନ୍ୟା ପଦ୍ମାବତୀଙ୍କୁ ପୁରୁଷୋତ୍ତମ ଦେବ ବିବାହ କରିବାର ପ୍ରସ୍ତାବ ହୋଇଥିଲା । ଓଡ଼ିଶାର ରାଜା, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ସମୟରେ ଶ୍ରୀଜଗନ୍ନାଥ ପହଣ୍ଡି ବିଜେ କରି ରଥକୁ ବିଜେ କରିବାବେଳେ ତାଙ୍କ ଆଗରେ ଛେରାପହଁରା (ଝାଡୁ କରିବା

ଓ ପାଣି ପିଇବା) କରନ୍ତି । କାଞ୍ଚୀ ରାଜା ଏହାକୁ ହାଡ଼ିର କାର୍ଯ୍ୟ ବୋଲି ମନେକରି ପୁରୁଷୋତ୍ତମଙ୍କୁ କନ୍ୟା ଦେବାକୁ ଅସ୍ୱୀକାର କଲେ । ପୁରୁଷୋତ୍ତମ ଦେବ ଏଥିରେ କ୍ରୁଦ୍ଧ ହୋଇ ପ୍ରତିଜ୍ଞା କଲେ ଯେ କାଞ୍ଚୀ ଆକ୍ରମଣ କରି ପଦ୍ମାବତୀଙ୍କୁ ଆଣି ଗୋଟିଏ ହାଡ଼ି ବା ଚଣ୍ଡାଳ ସଙ୍ଗେ ବିବାହ କରାଇବେ । ପୁରୁଷୋତ୍ତମ ଦେବ ପ୍ରଥମେ ପରାଜିତ ହେଲେ, ମାତ୍ର ପରେ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ଓ ସାହାଯ୍ୟ ଦ୍ୱାରା କାଞ୍ଚୀ ରାଜାଙ୍କୁ ପରାସ୍ତ କରି ପଦ୍ମାବତୀଙ୍କୁ ଆଣି ଚଣ୍ଡାଳକୁ ବିବାହ ଦେବାକୁ ବସିଥିଲେ, ମାତ୍ର ପରେ ମନ୍ତ୍ରୀଙ୍କ କୌଶଳରୁ ସ୍ନେହ ଓ ଦୟାପରବଶ ହୋଇ ନିଜେ ପଦ୍ମାବତୀଙ୍କୁ ବିବାହ କଲେ । କାଞ୍ଚୀ ନଗର ମାନ୍ଦ୍ରାଜର କିଛିଦୂର ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ । ବିଷ୍ଣୁକାଞ୍ଚୀ, ଶିବକାଞ୍ଚୀ ନାମରେ କାଞ୍ଚୀପୁରୀ ଦୁଇ ଭାଗରେ ବିଭକ୍ତ । ଏହା ମୋକ୍ଷଦାୟିକା ସପ୍ତପୁରୀ ମଧ୍ୟରୁ ଅନ୍ୟତମ ବୋଲି ପୁରାଣରେ କଥିତ ।

ଯଥା—

"ଅଯୋଧ୍ୟା ମଥୁରା ମାୟା, କାଶୀ କାଞ୍ଚୀହ୍ୟବନ୍ତିକା,
ପୁରୀ ଦ୍ୱାରବତୀ ଚୈବ ସପ୍ତୈତାଃ ମୋକ୍ଷଦାୟିକାଃ ।"

ଏହାର ଆଧୁନିକ ନାମ କାଞ୍ଜିଭେରମ୍ ।

**କାତ୍ୟାୟନ**—(୧) ବିଖ୍ୟାତ ଧର୍ମଶାସ୍ତ୍ରକାର । ବିଶ୍ୱାମିତ୍ରଙ୍କ ବଂଶରେ ଏହାଙ୍କର ଜନ୍ମ । ଏହାଙ୍କ ପ୍ରଣୀତ 'କାତ୍ୟାୟନ ଶ୍ରୌତସୂତ୍ର' ଓ 'କାତ୍ୟାୟନ ଗୃହ୍ୟସୂତ୍ର' ପଣ୍ଡିତସମାଜରେ ଆଦୃତ ହୁଏ । (ଗୃହ୍ୟସୂତ୍ରରେ ବ୍ରାହ୍ମଣର ଦଶବିଧ ସଂସ୍କାର ଓ ବାସ୍ତୁ କ୍ରିୟାଦିର ବିଷୟ ବର୍ଣ୍ଣିତ ହୋଇଅଛି)

(୨) ବିଖ୍ୟାତ ସ୍ମୃତି ଶାସ୍ତ୍ରକାର । ମହର୍ଷି ଗୋଭିଲ ଏହାଙ୍କର ପିତା । 'କର୍ମ ପ୍ରଦୀପ ଦଶକ' ସ୍ମୃତି ଗ୍ରନ୍ଥ ଏହାଙ୍କ ଦ୍ୱାରା ରଚିତ ହୋଇଥିଲା ।

ହିନ୍ଦୀ ଶବ୍ଦ ସାଗର ମତରେ—କତ ଋଷିଙ୍କ ଗୋତ୍ରପ୍ରସୂତ କାତ୍ୟାୟନ ନାମଧାରୀ ତିନି ଜଣ ପ୍ରସିଦ୍ଧ ବ୍ୟକ୍ତି ଥିଲେ ।

(୧) ବିଶ୍ୱାମିତ୍ର ବଂଶଜ—ଏ ଶ୍ରୌତସୂତ୍ର, ଗୃହ୍ୟସୂତ୍ର ଓ ପ୍ରତିହାର ସୂତ୍ର ପ୍ରଣେତା ।

(୨) ଗୋଭିଲଙ୍କ ପୁତ୍ର— ଏ ଗୃହ୍ୟସଂଗ୍ରହ ଓ ଛନ୍ଦୋପରିଶିଷ୍ଟ ବା କର୍ମ-ପ୍ରଦୀପର ପ୍ରଣେତା ।

(୩) ସୋମଦତ୍ତଙ୍କ ପୁତ୍ର ବରରୁଚି—ଏ ପାଣିନି ସୂତ୍ରର ପ୍ରସିଦ୍ଧ ବାର୍ତ୍ତିକକାର ।

**କାତ୍ୟାୟନୀ**—ଭଗବତୀଙ୍କ ମୂର୍ତ୍ତିବିଶେଷ । ମହର୍ଷି କାତ୍ୟାୟନ ସର୍ବାଦୌ ଏହାଙ୍କୁ ଅର୍ଚ୍ଚନା କରିଥିବାରୁ ଏ ଦେବୀଙ୍କୁ କାତ୍ୟାୟନୀ ବୋଲି କହନ୍ତି । ମହିଷାସୁର ଦ୍ୱାରା ଶତବର୍ଷ ପର୍ଯ୍ୟନ୍ତ ଯୁଦ୍ଧରେ ଦେବତାମାନେ ଉତ୍ପୀଡ଼ିତ ହୋଇ ସ୍ୱର୍ଗଭ୍ରଷ୍ଟ ହେବା ପରେ ସେମାନେ ବ୍ରହ୍ମାଙ୍କ ସହିତ ହରିହରଙ୍କ ସମୀପରେ ଉପସ୍ଥିତ ହେଲେ । ଶିବ ଓ ବିଷ୍ଣୁ, ବ୍ରହ୍ମାଙ୍କ ମୁଖରୁ ଦେବତାମାନଙ୍କ ଦୁଃଖ କାହାଣୀ ଶୁଣି ଅତିଶୟ କ୍ରୁଦ୍ଧ ହେଲେ । ହରିହରଙ୍କ କ୍ରୋଧାଗ୍ନି ସହିତ ବ୍ରହ୍ମାଙ୍କ ରୋଷାଗ୍ନି ମିଶି ଏହି ତିନି ଦେବଙ୍କ ଦେହର ତେଜରୁ ଏକ ସ୍ତ୍ରୀ ମୂର୍ତ୍ତି ଆବିର୍ଭୂତା ହେଲେ । ଏହି ଭୟଙ୍କର ନାରୀମୂର୍ତ୍ତି ଦେଖିବା ମାତ୍ରେ ଦେବଗଣ ନିଜ ନିଜର ଅସ୍ତ୍ରଶସ୍ତ୍ର ତାଙ୍କୁ ପ୍ରଦାନ କଲେ । ମହିଷାସୁର ଏହି ଦେବୀଙ୍କ ସହିତ ଯୁଦ୍ଧ କରି ସସୈନ୍ୟ ନିହତ ହେଲା । ଏହି ସିଂହବାହିନୀ ଦୁର୍ଗାମୂର୍ତ୍ତି (କାତ୍ୟାୟନୀ) ଆଶ୍ୱିନ କୃଷ୍ଣ ଚତୁର୍ଦ୍ଦଶୀ ଦିନ ଆବିର୍ଭୂତା ହୋଇଥିଲେ । ଏହି ମାସର ଶୁକ୍ଳ ସପ୍ତମୀ, ଅଷ୍ଟମୀ ଓ ନବମୀ ତିଥିରେ କାତ୍ୟାୟନଙ୍କ ଦ୍ୱାରା ପୂଜିତ ହୋଇ ଦଶମୀ ଦିନ ମହିଷାସୁରକୁ ପରାସ୍ତ ଓ ବଧ କରିଥିଲେ । ଏହି ଦେବୀମୂର୍ତ୍ତି ଦଶଭୁଜା ବିଶିଷ୍ଟା ।

ମହିଷାସୁର ରମ୍ଭାସୁରର ପୁତ୍ର । ସ୍ୱୟଂ ମହାଦେବ ତିନିଥର ଯାଏଁ ରମ୍ଭାସୁରର ପୁତ୍ରରୂପେ ଦେହ ଧାରଣ କରିଥିଲେ । ତେଣୁ ଭଗବତୀ ତିନିମୂର୍ତ୍ତି ପରିଗ୍ରହ କରି ଏ ରାକ୍ଷସର ଉଚ୍ଛେଦ ସାଧନ କଲେ । ପ୍ରଥମେ ଉଗ୍ରଚଣ୍ଡା, ଦ୍ୱିତୀୟରେ ଭଦ୍ରକାଳୀ, ତୃତୀୟବାର ଦୁର୍ଗାମୂର୍ତ୍ତି ପରିଗ୍ରହ କରି ଆଦିଶକ୍ତି ଏହାର ବିନାଶ ସାଧନ କରିଥିଲେ । ମହିଷାସୁର ଅତିଶୟ ମାୟାବୀ ଥିଲା । ସେ ଦିନେ କାତ୍ୟାୟନ ମହର୍ଷିଙ୍କ ଶିଷ୍ୟଙ୍କୁ ମୋହିନୀ ସ୍ତ୍ରୀ ମୂର୍ତ୍ତି ଧାରଣ କରି ବିପଥଗାମୀ କରିବା ପାଇଁ ଚେଷ୍ଟା କରିଥିଲା । ହିମାଳୟବାସୀ କାତ୍ୟାୟନ ତାହା ଜାଣି ତାକୁ ଅଭିଶାପ ଦେଲେ—'ଯେହେତୁ ତୁ ମୋହିନୀ ସ୍ତ୍ରୀ ମୂର୍ତ୍ତି ଧାରଣ କରି ମୋ ଶିଷ୍ୟର ତପସ୍ୟା ଭଙ୍ଗ କରିବା ପାଇଁ ଚେଷ୍ଟା କଲୁ, ସେଥିଲାଗି ତୁ ସ୍ତ୍ରୀ ନାରୀ ହାତରେ ହିଁ ନିହତ ହେବୁ ।' ଏହି ଅଭିଶାପ ଯୋଗୁ ଭଗବତୀ ମହିଷାସୁରକୁ ବିନାଶ କରିଥିଲେ । (ମାର୍କଣ୍ଡେୟ)

**କାମଦେବ**—(କନ୍ଦର୍ପ ଦେଖ) ।

**କାମଭଦ୍ର ବଟ**—ହିନ୍ଦୁମାନଙ୍କର ପୌରାଣିକ ପବିତ୍ର ବଟ ବୃକ୍ଷ ବିଶେଷ । କୃଷ୍ଣସିଂହ, ମହାଭାରତ ବନ ପର୍ବରେ ଏ ବଟର ପ୍ରଶଂସା କହିଛନ୍ତି— "ମହାଦେବଙ୍କର ଯେ କାମଭଦ୍ର ବଟ, ଦେଖିଲେ ଲୋକ ତାକୁ ନ ପାଏ ସଙ୍କଟ ।"

**କାମରୂପ**—ବ୍ରହ୍ମପୁତ୍ର ନଦୀର ଉତ୍ତର ଓ ଭୁଟାନର ଦକ୍ଷିଣରେ ଥିବା ଆସାମ ପ୍ରଦେଶର ଗୋଟିଏ ପ୍ରାଚୀନ ଦେଶ ଓ ଆଧୁନିକ ଏକ ଜିଲାର ନାମ । ପ୍ରାଚୀନ କାମରୂପ ଦେଶ କରତୋୟା ବା ସଦାନୀରା ନଦୀକୂଳରେ ଆସାମର ଶେଷ ସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହାର ରାଜଧାନୀ 'ପ୍ରାଗ୍ ଜ୍ୟୋତିଷପୁର ।' ହିମାଳୟର ପାଦଦେଶରୁ ଏହା ଚୀନ ଦେଶର ସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମହାଭାରତ ଯୁଦ୍ଧରେ ଏ ଦେଶର ରାଜା ଦୁର୍ଯ୍ୟୋଧନଙ୍କୁ କିରାତ ଓ ଚୀନ ସୈନ୍ୟଦଳ ଦ୍ୱାରା ସାହାଯ୍ୟ କରିଥିଲେ । ଆଧୁନିକ କାମରୂପ ଦେଶର ଅଧିଷ୍ଠାତ୍ରୀ କାମାଖ୍ୟା ବା କାମଚଣ୍ଡୀ ଦେବୀ । ଆସାମ ପ୍ରଦେଶର ଏହା ଆଧୁନିକ କାମରୂପ ଜିଲା । ରାମାୟଣ ଯୁଗରେ ନାରକାସୁର ଏଠାରେ ରାଜତ୍ୱ କରୁଥିଲେ । ମହାଭାରତ ସମୟରେ ଭଗଦତ୍ତ ଏଠାର ରାଜା ଥିଲେ । ପୁରାକାଳରେ ଏହା ମ୍ଳେଚ୍ଛ ଦେଶ ମଧ୍ୟରେ ପରିଗଣିତ ହେଉଥିଲା । ତାନ୍ତ୍ରିକ ଯୁଗରେ ଏହା ଏକ ପ୍ରସିଦ୍ଧ ସ୍ଥାନ ଥିଲା । ଏହା ଭୁଟାନର ଦକ୍ଷିଣରେ ।

(ଭାଷାକୋଷ)

**କାମଳୀ**—ପରଶୁରାମଙ୍କ ମାତା । ଏହାଙ୍କର ଅପର ନାମ ରେଣୁକା । ଇକ୍ଷ୍ୱାକୁ-ବଂଶୀୟ ରେଣୁ ରାଜାଙ୍କର ଏ ଦୁହିତା । ମହର୍ଷି ଜମଦଗ୍ନି ଏହାଙ୍କୁ ବିବାହ କରିଥିଲେ । ପିତୃ ଆଦେଶରେ ପରଶୁରାମ ଜନନୀଙ୍କର ମସ୍ତକ ଛେଦନ କରିଥିଲେ । (ହରିବଂଶ)

**କାମ୍ପିଲ୍ୟ**—ପ୍ରାଚୀନ ଭାରତର ଦେଶବିଶେଷ । 'ହିନ୍ଦୀ ଶବ୍ଦସାଗର'ରୁ ଜଣାଯାଏ, ଉତ୍ତର-ପଶ୍ଚିମ ପ୍ରଦେଶର ଫରକ୍କାବାଦ ଜିଲାର କାୟମଗଞ୍ଜ ତହସିଲରେ କମ୍ପିଲ ନାମରେ ଗୋଟିଏ ପ୍ରଗନ୍ନା (ପ୍ରଗଣା) ଅଛି । ଏହିଠାରେ କମ୍ପିଲ୍ ନାମରେ ଗୋଟିଏ ଗ୍ରାମ ଅଛି । ସେଠାରେ କାମ୍ପିଲ୍ୟ ରାଜ୍ୟର ରାଜଧାନୀ ଥିଲା ।

**କାମ୍ବୋଜ**—ଗୁଜରାଟ ନିକଟସ୍ଥ ଦେଶବିଶେଷ । ପ୍ରାଚୀନ ଯବନ ଜାତିବିଶେଷ । ଏ ଜାତି ହିନ୍ଦୁକୁଶ ପର୍ବତରେ ବାସ କରୁଥିଲେ ଓ ଏମାନଙ୍କ ଦେଶରେ

ଘୋଡା, ଛେଳି, କୁକୁର ଓ ମୂଷା ଲୋମର ଉତ୍କୃଷ୍ଟ ଶାଲ୍ ମିଳୁଥିଲା । ଏହା ଆଧୁନିକ ପାମିର ଅଧିତ୍ୟକା । ସଗର ରାଜା ଏ ଜାତି ଲୋକଙ୍କର ଶିରୋମୁଣ୍ଡନ କରିଥିଲେ । (ଭାଷାକୋଷ)

**କାମ୍ୟକବନ**—ସରସ୍ୱତୀ ନଦୀ ତୀରସ୍ଥ ପୂର୍ବବର୍ଣ୍ଣିତ ଅରଣ୍ୟବିଶେଷ । ଦ୍ୟୂତ-କ୍ରୀଡାରେ ପରାସ୍ତ ହୋଇ ପାଣ୍ଡବମାନେ ବହୁଦିନ ଏଠାରେ ବାସ କରିଥିଲେ ଓ ପରଶୁରାମ ଏହିଠାରେ ତପସ୍ୟା କରି ସିଦ୍ଧି ଲାଭ କରିଥିଲେ । ଏହା ଗୌତମ ଋଷିଙ୍କ ତପୋବନ ଥିଲା ।

**କାର୍ତ୍ତବୀର୍ଯ୍ୟ**—ନର୍ମଦା ନଦୀ ତୀରବର୍ତ୍ତୀ ହୈହୟ ରାଜ୍ୟର ଅଧିପତି । ରାଜା ହୈହୟଙ୍କ ନାମ ଅନୁସାରେ ଉକ୍ତ ରାଜ୍ୟର ନାମକରଣ ହୋଇଥିଲା ହୈହୟ । କାର୍ତ୍ତିବୀର୍ଯ୍ୟଙ୍କ ଅନ୍ୟ ନାମ ହୈହୟ । ଏହାଙ୍କର ଅନ୍ୟ ନାମ ଥିଲା କାର୍ତ୍ତିବୀର୍ଯ୍ୟାର୍ଜୁନ । ମାହିଷ୍ମତୀ ନଗରୀ ବା ମାହିଷ୍ମତୀ କଟକ ହୈହୟ ରାଜ୍ୟର ରାଜଧାନୀ । ଏକଦା ଲଙ୍କେଶ୍ୱର ରାବଣ ପୁଷ୍ପ ଉପହାର ଦ୍ୱାରା ସ୍ୱର୍ଣ୍ଣମୟ ଶିବଲିଙ୍ଗ ପୂଜା କରୁଥିଲେ । ଏହି ସମୟରେ ଅର୍ଦ୍ଧ ଯୋଜନ ଦୂରରେ ସହସ୍ରବାହୁ କାର୍ତ୍ତିବୀର୍ଯ୍ୟ ସ୍ତ୍ରୀମାନଙ୍କ ସହିତ ଜଳକ୍ରୀଡାରେ ବ୍ୟାପୃତ ଥିଲେ । ତାଙ୍କର ସହସ୍ରବାହୁ ଯୋଗେ ନର୍ମଦା ନଦୀର ଜଳ ପ୍ରତିକୂଳ ଭାବରେ ବହିବାକୁ ଲାଗିଲା । ଏହି ପ୍ରତିକୂଳ ଜଳସ୍ରୋତ ରାବଣ ପ୍ରଦତ୍ତ ପୁଷ୍ପଗୁଡିକୁ ଉଠାଇ ନେଲା । ରାବଣ ଏହାର କାରଣ ନିର୍ଣ୍ଣୟ କରିବା ପାଇଁ ନିଜର ମନ୍ତ୍ରୀ ଶୁକ ଓ ସାରଣଙ୍କୁ ପଠାଇଥିଲା । ସେମାନେ ଆସି କାର୍ତ୍ତିବୀର୍ଯ୍ୟଙ୍କ ଜଳକ୍ରୀଡା ବ୍ୟାପାର ଦେଖି ରାବଣ ଆଗରେ ସକଳ କଥା ଜଣାଇଲେ । ରାବଣ ମନ୍ତ୍ରୀମାନଙ୍କଠାରୁ ଏ କଥା ଶୁଣି କାର୍ତ୍ତିବୀର୍ଯ୍ୟଙ୍କ ସହିତ ଯୁଦ୍ଧ କରି ନିଜେ ପରାସ୍ତ ଓ ବନ୍ଦୀ ହୋଇ ରହିଲା । ରାବଣର ପିତାମହ ପୁଲସ୍ତ୍ୟମହର୍ଷି ଦେବତାମାନଙ୍କ ମୁଖରୁ ଏ ବୃତ୍ତାନ୍ତ ଶୁଣିବା ମାତ୍ରେ କାର୍ତ୍ତିବୀର୍ଯ୍ୟ ନିକଟକୁ ଆସି ରାବଣର ମୁକ୍ତି ପ୍ରାର୍ଥନା କଲେ । କାର୍ତ୍ତିବୀର୍ଯ୍ୟ ଋଷିଙ୍କ କଥା ଅନୁସାରେ ରାବଣକୁ ମୁକ୍ତ ଦେଲେ । ରାବଣ ଲଙ୍କାକୁ ଫେରିଗଲା । ମହର୍ଷି ପୁଲସ୍ତ୍ୟ ବ୍ରହ୍ମଲୋକକୁ ପ୍ରସ୍ଥାନ କଲେ ।

(ରାମାୟଣ-ଉତ୍ତରାକାଣ୍ଡ)

ଏକଦା କାର୍ତ୍ତିବୀର୍ଯ୍ୟ କ୍ଷୁଧାପିପାସାତୁର ହୋଇ ଜମଦଗ୍ନି ଋଷିଙ୍କ ଆଶ୍ରମରେ ଅତିଥି ହେଲେ । ଜମଦଗ୍ନି କାର୍ତ୍ତିବୀର୍ଯ୍ୟଙ୍କ ଅଭ୍ୟର୍ଥନାରେ ଆଦୌ ତ୍ରୁଟି କଲେ ନାହିଁ । ରାଜୋଚିତ ଆହାର ବିହାରର ବନ୍ଦୋବସ୍ତ କରିଦେଲେ । ଜମଦଗ୍ନିଙ୍କ କାମଧେନୁର ନାମ କପିଳା । ଏହି କାମଧେନୁ କୃପାରୁ ଋଷି

ରାଜାଙ୍କୁ ଯଥୋଚିତ ଖାଦ୍ୟପେୟ ଯୋଗାଇ ପାରିଥିଲେ । କାର୍ତ୍ତବୀର୍ଯ୍ୟ କାମଧେନୁର ଏହି ଅଦ୍ଭୁତ ଗୁଣରେ ଆକୃଷ୍ଟ ହୋଇ ତାହା ନିଜେ ନେବା ପାଇଁ ଅଭିପ୍ରାୟ ପ୍ରକାଶ କଲେ । ମୁନି କିନ୍ତୁ ରାଜାଙ୍କର ଏ ଇଚ୍ଛା ପୂର୍ଣ୍ଣ କରିବାପାଇଁ ଅସମ୍ମତ ହେଲେ । କିନ୍ତୁ ରାଜା ବଳପୂର୍ବକ କାମଧେନୁକୁ ନେଇଯିବା ପାଇଁ ଅଗ୍ରସର ହେଲେ । ମାତ୍ର ଦୈବୀଶକ୍ତିସମ୍ପନ୍ନ କାମଧେନୁର ଶରୀରରୁ ବିଭିନ୍ନ ପ୍ରକାର ଅସ୍ତ୍ରଶସ୍ତ୍ର ଓ ସୈନ୍ୟବଳ ଉତ୍ପନ୍ନହୋଇ ରାଜାଙ୍କୁ ପରାସ୍ତ କରି ଦେଲେ । ବାଧ୍ୟ ହୋଇ କାର୍ତ୍ତବୀର୍ଯ୍ୟ ନିଜ ପ୍ରାସାଦକୁ ଫେରି ଆସିଲେ । ପରେ ଏକ ପ୍ରକାଣ୍ଡ ସୈନ୍ୟଦଳ ସଂଗ୍ରହ କରି ସେ ଜମଦଗ୍ନିଙ୍କ ଆଶ୍ରମ ଆକ୍ରମଣ କଲେ । ଋଷି ଆତ୍ମରକ୍ଷା ପାଇଁ ଯଥେଷ୍ଟ ଯତ୍ନ କଲେ, ମାତ୍ର ରାଜାଙ୍କ ଦ୍ୱାରା ମୁନି ନିହତ ହେଲେ । କପିଳା ବ୍ରହ୍ମଲୋକକୁ ପଳାଇଗଲେ । ପରଶୁରାମ ଆଶ୍ରମରେ ପହଞ୍ଚି ମାତାଙ୍କଠାରୁ ପିତାଙ୍କ ମୃତ୍ୟୁ ବୃତ୍ତାନ୍ତ ଶୁଣି ଅତିଶୟ ବ୍ୟଥିତ ହେଲେ । ପ୍ରତିଜ୍ଞା କଲେ—'କେବଳ ପିତୃହନ୍ତା କାର୍ତ୍ତବୀର୍ଯ୍ୟର ବଧ ସାଧନ କଲେ ମୋର ଏ ପ୍ରତିହିଂସାନଳ ଲିଭିବ ନାହିଁ । ଦୁଷ୍ଟ କ୍ଷତ୍ରିୟ କୁଳକୁ ଧ୍ୱଂସ ନ କଲେ ଏମାନେ ରାଜ୍ୟରେ ଗଣ୍ଡଗୋଳ ଘଟାଇବେ । ଏଣୁ ଏକୋଇଶ ବାର ପୃଥିବୀକୁ କ୍ଷତ୍ରିୟଶୂନ୍ୟ ନ କଲେ ମୋର ଏ ପ୍ରତିଜ୍ଞା ପୂର୍ଣ୍ଣ ହେବ ନାହିଁ ।' କାର୍ତ୍ତବୀର୍ଯ୍ୟ ଦତ୍ତାତ୍ରେୟଙ୍କ ବରରୁ ସହସ୍ର ବାହୁ ହେଲେ ମଧ୍ୟ ପରଶୁରାମଙ୍କଠାରୁ ଆତ୍ମରକ୍ଷା କରି ପାରିଲେ ନାହିଁ । ପରଶୁରାମଙ୍କ ପରଶୁ ଆଘାତରେ ତାଙ୍କର ସହସ୍ର ବାହୁ ଛିନ୍ନ ହୋଇଗଲା । ସେ ଯୁଦ୍ଧକ୍ଷେତ୍ରରେ ପ୍ରାଣ ତ୍ୟାଗ କଲେ । ପରଶୁରାମ ଏହାପରେ ଏକୋଇଶବାର ବୁଲି ପୃଥିବୀ ନିଃକ୍ଷତ୍ରିୟ କରିଥିଲେ । (ବ୍ରହ୍ମବୈବର୍ତ୍ତ)

କଥିତ ଅଛି କାର୍ତ୍ତବୀର୍ଯ୍ୟାର୍ଜୁନଙ୍କ ନାମ ସ୍ମରଣ କଲେ ହୃତ ଦ୍ରବ୍ୟ ପୁନଃ ପ୍ରାପ୍ତ ହୁଏ । ଏହାଙ୍କ ରାଜ୍ୟ ଆଧୁନିକ ବୁନ୍ଦେଲଖଣ୍ଡ ବୋଲି ଜଣାଯାଏ ।

**କାର୍ତ୍ତିକେୟ**—ମହାଦେବଙ୍କ ପୁଅ । ଚନ୍ଦ୍ର ପତ୍ନୀ କୃତ୍ତିକା ନକ୍ଷତ୍ର ଦ୍ୱାରା ପାଳିତ ହୋଇଥିଲେ ବୋଲି ଏହାଙ୍କ ନାମ କାର୍ତ୍ତିକେୟ । ସେ ଦେବସେନାପତି । ତାରକାସୁର ବଧ ନିମିତ୍ତ ଏ ଜନ୍ମ ହୋଇଥିଲେ । ଦେବସେନାଙ୍କୁ ପରିଚାଳନା କରିବା ଯୋଗେ ଏହାଙ୍କ ସେନାପତିତ୍ୱରେ ତାରକାସୁର ପରାସ୍ତ ଓ ନିହତ ହୋଇଥିଲେ । ବ୍ରହ୍ମାନନ୍ଦିନୀ ଦେବସେନା ଏହାଙ୍କର ପତ୍ନୀ । ଦେବସେନା ପୃଥିବୀରେ ଷଷ୍ଠୀଦେବୀ ବୋଲି ପରିଚିତ ।

ବ୍ରହ୍ମବୈବର୍ତ୍ତ ଓ ମହାଭାରତରେ ଉଲ୍ଲେଖ ଅଛି ଯେ —ଦକ୍ଷକନ୍ୟା ସତୀ ପତିନିନ୍ଦା ଶ୍ରବଣ କରି ଦେହ ତ୍ୟାଗ କଲା ପରେ ପର୍ବତରାଜ ହିମାଳୟଙ୍କ

ଗୃହରେ ମେନକାଙ୍କ ଗର୍ଭରୁ ପାର୍ବତୀରୂପେ ଜନ୍ମଗ୍ରହଣ କରିଥିଲେ । ପର୍ବତରାଜ ଦେବଦେବ ଶଙ୍କରଙ୍କୁ ଏହି କନ୍ୟା ସମ୍ପ୍ରଦାନ କରିଥିଲେ । ଶଙ୍କରଙ୍କ ପୁତ୍ରୋତ୍ପାଦନ ବିଷୟ ନେଇ ଦେବତାମାନେ କୌଣସି କାରଣବଶତଃ ପାର୍ବତୀଙ୍କର ବିରାଗଭାଜନ ହୋଇଥିଲେ । ପାର୍ବତୀ ଅତିଶୟ କ୍ରୁଦ୍ଧା ହେଲେ । ପାର୍ବତୀଙ୍କ ଅଭିଶାପକୁ ଭୟ କରି ଦେବତାମାନେ ରୁଦ୍ଧଶ୍ୱାସ ତ୍ୟାଗ କରି ପଳାୟନ କଲେ । ପାର୍ବତୀ ଶାପ ଦେଲେ—'ଆଜିଠାରୁ ଦେବତାମାନଙ୍କର ବୀର୍ଯ୍ୟ ନିଷ୍ଫଳ ହେଉ ଅର୍ଥାତ୍ ସେମାନେ ସନ୍ତାନୋତ୍ପାଦନରେ ଅସମର୍ଥ ହୁଅନ୍ତୁ ।' ପୃଥ୍ୱୀ, ଭୂପତିତ ଶଙ୍କରବୀର୍ଯ୍ୟ ଧାରଣ କରିବା ଲାଗି ଅସମର୍ଥା ହେବାରୁ ଏହା ଅଗ୍ନିରେ ନିକ୍ଷିପ୍ତ ହୋଇଥିଲା । ଅଗ୍ନିଙ୍କ ଦ୍ୱାରା ଏହା ଶର ବଣରେ ପତିତ ହେଲା । କୃତ୍ତିକାଗଣ ଏହି ବଣରେ ସନ୍ତାନକୁ ସ୍ତନ୍ୟଦାନ କରି ଲାଳନ ପାଳନ କଲେ । 'ସ୍କନ୍ନ' ଅର୍ଥାତ୍ ସ୍ଖଳିତ ରେତଃରୁ ଉତ୍ପନ୍ନ ହେଲେ ବୋଲି କାର୍ତ୍ତିକେୟଙ୍କର ଅନ୍ୟ ନାମ ସ୍କନ୍ଦ ।

୨. ରାମାୟଣ ଆଦିକାଣ୍ଡରୁ ଜଣାଯାଏ—ଥରେ ବହୁବର୍ଷବ୍ୟାପୀ ସମର ହେଲା, ଦେବତା ଓ ଅସୁରମାନଙ୍କ ମଧ୍ୟରେ । ଦେବତାମାନେ ରାକ୍ଷସପତି ତାରକର ଅତ୍ୟାଚାରରେ ମହା କଷ୍ଟ ପାଇ ଜଣେ ଉପଯୁକ୍ତ ଦେବସେନାପତିଙ୍କ ଅନ୍ୱେଷଣ କଲେ । ସେଥିପାଇଁ ସେମାନେ ବ୍ରହ୍ମାଙ୍କ ସାହଚର୍ଯ୍ୟ ଲୋଡ଼ିଲେ । ବ୍ରହ୍ମା କହିଲେ—ମହାଦେବଙ୍କ ସହିତ ହିମାଳୟନନ୍ଦିନୀ ପାର୍ବତୀଙ୍କ ବିବାହ ସମ୍ପନ୍ନ ହୋଇପାରିଲେ ତାଙ୍କର ଗର୍ଭରୁ ମହାଦେବଙ୍କ ଔରସରେ ଯେଉଁ ପୁତ୍ର ଜାତ ହେବେ ସେ ଦେବସେନାମାନଙ୍କର ଉପଯୁକ୍ତ ସେନାପତି ହୋଇ ତାରକାସୁରକୁ ନିଧନ କରିବେ । ଦେବତାମାନେ ଏହି ପରାମର୍ଶ କ୍ରମେ ମହାଦେବଙ୍କ ସହିତ ଉମା ବା ପାର୍ବତୀଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ କରାଇଲେ । ରତିକ୍ରିୟା ସମୟରେ ମହାଦେବଙ୍କ ସ୍ଖଳିତ ବୀର୍ଯ୍ୟ ଅଗ୍ନିରେ ପଡ଼ିଗଲା । ଅଗ୍ନି ତାହା ଗଙ୍ଗାରେ ନିକ୍ଷେପ କଲେ । ଗଙ୍ଗା ଏହି ତେଜ ଧାରଣ କରି ନପାରି ହିମାଳୟ ପାର୍ଶ୍ୱସ୍ଥ ଶରବଣରେ ଫିଙ୍ଗିଦେଲେ । ଏହି ଉତ୍କୃଷ୍ଟ ବୀର୍ଯ୍ୟରୁ ଉଗ୍ରତେଜବିଶିଷ୍ଟ ଏକ ସନ୍ତାନ ଜାତ ହେଲା । ଏହି ସନ୍ତାନକୁ ବର୍ଦ୍ଧିତ କରିବା ପାଇଁ ଦେବତାମାନେ କୃତ୍ତିକାମାନଙ୍କୁ ନିୟୋଜିତ କଲେ । କୃତ୍ତିକାମାନଙ୍କ ଦ୍ୱାରା ଲାଳିତ ହେବାରୁ ଏହାଙ୍କର ନାମ ହେଲା କାର୍ତ୍ତିକେୟ । ସ୍କନ୍ନ ରେତଃରୁ ଉତ୍ପନ୍ନ ବୋଲି ଏହାଙ୍କର ଅନ୍ୟନାମ ହେଲା ସ୍କନ୍ଦ । କାର୍ତ୍ତିକେୟ କୁମାର ବ୍ରତଧାରୀ ଥିଲେ । ଶର ଦ୍ୱାରା କ୍ରୌଞ୍ଚ ନାମକ ପର୍ବତକୁ ବିଦ୍ଧ କରିଥିଲେ ଏବଂ ଦେବସେନାପତିରୂପେ ତାରକକୁ ପରାସ୍ତ ଓ ନିହତ କଲେ ।

**କାଳ**—ଯମଦୂତମାନଙ୍କ ମଧ୍ୟରୁ ଅନ୍ୟତମ । ଶନିଗ୍ରହ ।

**କାଳକେୟ**—କାଳକା ଗର୍ଭଜାତ ଅତି ଦୁଷ୍ଟ ଷାଠିଏ ସହସ୍ର ଅସୁରଗଣ । ଏହି ନାମଧେୟ ଅସୁରମାନେ ବୃତ୍ରାସୁରର ଅନୁଚର । ଇନ୍ଦ୍ରଙ୍କ ଦ୍ୱାରା ବୃତ୍ର ବଧ ହେବାପରେ ଏମାନେ ପ୍ରାଣରକ୍ଷା କରିବା ପାଇଁ ସମୁଦ୍ରରେ ଲୁଚି ରହିଥିଲେ । ମାତ୍ର ସମୟେ ସମୟେ ରାତ୍ରିରେ ସମୁଦ୍ରରୁ ବାହାରି ନିକଟସ୍ଥ ଋଷି ଆଶ୍ରମମାନଙ୍କରେ ଉପଦ୍ରବ କରି ଋଷିମାନଙ୍କୁ ପୋଡ଼ି ଖାଇଯାଉଥିଲେ । ଥରେ ବଶିଷ୍ଠଙ୍କ ଆଶ୍ରମରେ ପ୍ରବେଶ କରି କାଳକେୟମାନେ ୧୯୭ ଜଣ ବ୍ରାହ୍ମଣଙ୍କୁ ବଧ କଲେ । ଏଥିଯୋଗୁଁ ବ୍ରାହ୍ମଣ ଜାତି ଉପରେ ନାନାପ୍ରକାର ଉପଦ୍ରବ ହେବାରୁ ଯଜ୍ଞାଦି କାର୍ଯ୍ୟ ସମାଧାନ ହୋଇ ପାରିଲା ନାହିଁ । ଇନ୍ଦ୍ରାଦି ଦେବତାମାନେ ବିଷ୍ଣୁଙ୍କ ନିକଟରେ ଗୁହାରି କରିବାରୁ ନାରାୟଣ ଅଗସ୍ତିଙ୍କ କର୍ତ୍ତୃକ ସମୁଦ୍ର ଶୋଷଣ କରାଇବା ପାଇଁ ପରାମର୍ଶ ଦେଲେ । ମହର୍ଷି ଅଗସ୍ତି ଦେବତାମାନଙ୍କ ଅନୁରୋଧରେ ସମୁଦ୍ର ଶୋଷି ଦେବାରୁ ଦେବତାମାନେ ଅନାୟାସରେ କାଳକେୟମାନଙ୍କୁ ବଧ କଲେ । (ମହାଭାରତ, ବନପର୍ବ)

ଅନେକେ ଅନୁମାନକରନ୍ତି କାଳକେୟମାନେ ଅନାର୍ଯ୍ୟ ଜଳଦସ୍ୟୁ । ଆର୍ଯ୍ୟମାନଙ୍କ ଦ୍ୱାରା ଏମାନେ ସ୍ଥଳ ଭାଗରୁ ତାଡ଼ିତ ହୋଇ ଜଳରେ ଲୁଚି ରହିଥିଲେ ଏବଂ ଦସ୍ୟୁବୃତ୍ତି କରି ଜୀବିକା ନିର୍ବାହ କରୁଥିଲେ ।

**କାଳଞ୍ଜର**—ଶିବଙ୍କର ଏକ ନାମ; ପର୍ବତ ବିଶେଷ; ଦେଶ ବିଶେଷ; ଯୋଗିଚକ୍ର ।

**କାଳଦଣ୍ଡ**—ମୃତ୍ୟୁ ଦେବତା ଯମଙ୍କର ହସ୍ତରେ କଳ୍ପିତ ଦଣ୍ଡ ।

**କାଳନେମି**—(୧) ହିରଣ୍ୟକଶିପୁର ପୁତ୍ର, ରାକ୍ଷସ ବିଶେଷ ।

(୨) ପ୍ରସିଦ୍ଧ ଦାନବ । ପ୍ରାଚୀନକାଳରେ ଦେବାସୁର ଯୁଦ୍ଧରେ ବରୁଣ, କୁବେରାଦି ଲୋକପାଳମାନଙ୍କୁ କାଳନେମି ପରାଜିତ କରିଥିଲା । ଅବଶେଷେ ଭଗବାନ ବିଷ୍ଣୁଙ୍କ ସହିତ ଯୁଦ୍ଧ କରିବା ଦ୍ୱାରା ବିଷ୍ଣୁଙ୍କ ସୁଦର୍ଶନଚକ୍ରରେ ଏହାର ମସ୍ତକ ଛେଦନ ହୋଇଥିଲା । (ହରିବଂଶ)

(୩) ରାକ୍ଷସବିଶେଷ । ଏ ବିଷ୍ଣୁଙ୍କ ଦ୍ୱାରା ତାଡ଼ିତ ହୋଇ ରାବଣର ମାତାମହ ସୁମାଲୀ ସହିତ ଲଙ୍କାରୁ ପଳାୟନ କରି ପାତାଳରେ ବସତି ସ୍ଥାପନ କରିଥିଲା । (ରାମାୟଣ-ଉତ୍ତରଖଣ୍ଡ)

(୪) ରାମାୟଣରୁ ଜଣାଯାଏ କାଳନେମି ରାବଣର ମାମୁଁ । ଲକ୍ଷ୍ମଣଙ୍କ ଶକ୍ତି ଭେଦ ସମୟରେ ହନୁମାନ ବିଶଲ୍ୟକରଣୀ ନିମିତ୍ତ ଗନ୍ଧମାଦନ ପର୍ବତକୁ ଯିବା ବାଟରେ ରାବଣ ପ୍ରରୋଚନାରେ କାଳନେମି ବିଘ୍ନ କରି ନିଜେ ହନୁମାନଙ୍କ ଦ୍ୱାରା ନିହତ ହୋଇଥିଲା ।

**କାଳପୁରୁଷ**—(୧) ଏହାଙ୍କର ଅପର ନାମ ଯମ । ଏ ସୂର୍ଯ୍ୟପୁତ୍ର ଓ ବ୍ରହ୍ମାଙ୍କ ନାତି । ଏ ତପସ୍ୱୀ ବେଶରେ ରାମଚନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହୋଇ ରାଜଭବନର ନିଭୃତ କକ୍ଷରେ ସ୍ୱମୂର୍ତ୍ତି ଧାରଣ କରି ଶ୍ରୀରାମଙ୍କୁ ବୈକୁଣ୍ଠ ଯିବାପାଇଁ ବ୍ରହ୍ମାଙ୍କ ଅନୁରୋଧ ଜଣାଇଥିଲେ । ତପସ୍ୱୀ ବେଶରେ ରାମଙ୍କ ସହିତ ନିଭୃତ ମନ୍ତ୍ରଣା କଲାବେଳେ ରାମଙ୍କୁ ଶପଥ କରାଇଥିଲେ ଯେ, ଏହି ସମୟରେ ଯେ କେହି ଏଠାକୁ ଆସିବ ତାର ଶିର ଛେଦ କରିବାକୁ ହେବ । ଲକ୍ଷ୍ମଣ ସେତେବେଳେ ଦ୍ୱାରରକ୍ଷକ ହୋଇଥିଲେ । ଏହି ସମୟରେ ମହର୍ଷି ଦୁର୍ବାସା ରାମଙ୍କ ଦର୍ଶନାଭିଳାଷୀ ହୋଇ ସେଠାକୁ ଆସିଲେ । ବର୍ତ୍ତମାନ ନିଭୃତ 'ମନ୍ତ୍ରଣାକାଳ ବୋଲି ଲକ୍ଷ୍ମଣ ଭିତରକୁ ଯିବାପାଇଁ ଦୁର୍ବାସାଙ୍କୁ ମନା କରିଦେଲେ । ଦୁର୍ବାସା ଯଦି ଶ୍ରୀରାମଙ୍କ ଦର୍ଶନ ନ ପାଇଲେ ଅଯୋଧ୍ୟାନଗର ଭସ୍ମୀଭୂତ କରି ଦେବେ ବୋଲି କ୍ରୁଦ୍ଧ ହୋଇ ଉଠିଲେ । ଅଭିଶାପ ଭୟରେ ଲକ୍ଷ୍ମଣ ରାମଙ୍କ ନିକଟକୁ ଗମନ କଲେ । କାଳପୁରୁଷଙ୍କ ସହିତ ପୂର୍ବ ପ୍ରତିଶ୍ରୁତି ରକ୍ଷା ପାଇଁ ରାମ ଲକ୍ଷ୍ମଣଙ୍କୁ ବର୍ଜନ କଲେ । ଶ୍ରୀରାମଙ୍କ ଦ୍ୱାରା ପରିତ୍ୟକ୍ତ ହେବାପରେ ଲକ୍ଷ୍ମଣ ସରଯୂ କୂଳରେ ସର୍ବେନ୍ଦ୍ରିୟ ରୋଧ କରି ମହାପ୍ରସ୍ଥାନ କଲେ ।

(ରାମାୟଣ—ଉତ୍ତରକାଣ୍ଡ)

ଏହି କାଳପୁରୁଷ ଏକ ଭୟଙ୍କର ମୂର୍ତ୍ତିବିଶିଷ୍ଟ । ଏହାଙ୍କର ୬ ମୁଖ, ୧୬ ବାହୁ, ୨୪ ଲୋଚନ, ୬ ପାଦ, କୃଷ୍ଣବର୍ଣ୍ଣ, ରକ୍ତବସ୍ତ୍ର ଏହାଙ୍କର ପରିଧେୟ । (ବ୍ରହ୍ମବୈବର୍ତ୍ତ)

(୨) କୃଷ୍ଣବର୍ଣ୍ଣବିଶିଷ୍ଟ ବିକଟାକାର ଯମଙ୍କ କିଙ୍କର । ଯେ ଆସନ୍ନ ମୃତ୍ୟୁ ବ୍ୟକ୍ତିଙ୍କୁ ପରଲୋକ ନେବା ପାଇଁ ଯମଙ୍କଠାରୁ ଆଦେଶ ଆଣି ଆସେ ଓ ଯାହାକୁ ସ୍ୱପ୍ନରେ ଦେଖିବା ବ୍ୟକ୍ତିର ଅଳ୍ପ ଦିନରେ ମୃତ୍ୟୁ ଘଟିବ ବୋଲି ଲୋକ-ବିଶ୍ୱାସ ଅଛି ।

(୩) ପୁରୁଷାକୃତି ନକ୍ଷତ୍ରପୁଞ୍ଜ । ଏହାର ମସ୍ତକ ମୃଗଶିରା ଓ ଏହାର କଟିବନ୍ଧ ଇଲ୍ୱଲା ତାରକାତ୍ରୟ । ଏହାର ଅନ୍ୟ ନାମ ଅଗ୍ରହାଣୀ ।

**କାଳବକାଳ** ଯମଙ୍କର କଙ୍କର ଦ୍ୱୟ । ଏମାନେ ମୃତ ବ୍ୟକ୍ତିର ଆତ୍ମାକୁ କାଳପାଶରେ ଆବଦ୍ଧ କରି ଯମଙ୍କ ପାଖକୁ ନେଇଯାନ୍ତି ।

**କାଳଭୈରବ**—ଶିବଙ୍କ ଅଂଶଜାତ ତଦନୁଚରବିଶେଷ । ବ୍ରହ୍ମତତ୍ତ୍ୱଜ୍ଞାନବିହୀନ ବ୍ରହ୍ମାଙ୍କ ପଞ୍ଚମ ମସ୍ତକ ଛେଦନ ପାଇଁ ଏହାଙ୍କର ଉତ୍ପତ୍ତି । ପବିତ୍ର କାଶୀ କ୍ଷେତ୍ରରେ ଯେଉଁମାନେ ଦୁଷ୍କର୍ମ ଦ୍ୱାରା ଜୀବିକାନିର୍ବାହ କରନ୍ତି, ଭୈରବ ତାହାଙ୍କୁ ଶାସ୍ତି ବିଧାନ କରିଥାନ୍ତି ।

**କାଳଯବନ**—ଯବନରାଜ । ମଗଧାଧିପତି ଜରାସନ୍ଧ ଓ ତାହାଙ୍କ ପକ୍ଷରେ ଥିବା ରାଜାମାନଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କ ବିରୁଦ୍ଧରେ ଏହାଙ୍କୁ ପଠାଯାଇଥିଲା । କାଳ-ଯବନ ମହର୍ଷି ଗାର୍ଗ୍ୟଙ୍କ ଔରସରେ ଗୋପାଳୀ ନାମ୍ନୀ ଗୋପବେଶଧାରିଣୀ ଅପ୍‌ସରା ଗର୍ଭରୁ ଜାତ ହୋଇଥିଲେ । ଗାର୍ଗ୍ୟମୁନି ବାରବର୍ଷ ପର୍ଯ୍ୟନ୍ତ ଲୌହଚୂର୍ଣ୍ଣ ଭକ୍ଷଣ ପୂର୍ବକ ତପସ୍ୟାଚରଣ କରି ମହାଦେବଙ୍କୁ ଆରାଧନା କରିଥିଲେ । ଏହି ଆରାଧନା ଫଳରେ ମହାଦେବଙ୍କ ବରଯୋଗେ ସେ ଅନ୍ଧକ ଓ ବୃଷ୍ଣିବଂଶୀୟମାନଙ୍କର ନିଗ୍ରହ ନିମିତ୍ତ କାଳଯବନଙ୍କୁ ପୁତ୍ରରୂପେ ଲାଭ କରିଥିଲେ । କାଳଯବନ ପ୍ରସୂତ ହେବା ପରେ ଅପୁତ୍ରିକ ଯବନ ରାଜା ତାଙ୍କୁ ଲାଳନପାଳନ କଲେ ଏବଂ ତାଙ୍କ ଅନ୍ତେ କାଳଯବନ ସେହି ରାଜ୍ୟର ଅଧିପତି ହେଲେ । କ୍ରମେ ତାଙ୍କର ପରାକ୍ରମ ବଢ଼ିବାକୁ ଲାଗିଲା । ଯାଦବମାନେ କାଳଯବନ ଓ ଜରାସନ୍ଧ ଭୟରେ ମଥୁରା ଛାଡ଼ି ଦ୍ୱାରକାକୁ ପଳାଇଗଲେ । ଶ୍ରୀକୃଷ୍ଣ ଯଦୁମାନଙ୍କୁ ଉତ୍ତମରୂପେ ରକ୍ଷଣାବେକ୍ଷଣ କରିବାପରେ କାଳଯବନ ସହିତ ଯୁଦ୍ଧ କରିବା ପାଇଁ ଅଗ୍ରସର ହେଲେ । କାଳଯବନ ଶ୍ରୀକୃଷ୍ଣଙ୍କ ସହିତ ସମ୍ମୁଖ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହେବା ମାତ୍ରେ ଶ୍ରୀକୃଷ୍ଣ ପଳାୟନ ଛଳନାରେ ହିମାଳୟର ଏକ ଗୁହା ଭିତରେ ପଶିଗଲେ । ସେହି ଗୁହା ମଧ୍ୟରେ ମାନ୍ଧାତାଙ୍କ ପୁତ୍ର ମୁଚୁକୁନ୍ଦ ଶୋଇଥିଲେ । ସେଠାରେ ଉପସ୍ଥିତ ହୋଇ ଶ୍ରୀକୃଷ୍ଣ ଅଲକ୍ଷିତ ଭାବରେ ମୁଚୁକୁନ୍ଦଙ୍କ ମୁଣ୍ଡ ପାଖେ ଲୁଚି ରହିଲେ । କାଳଯବନ ନିଦ୍ରିତ ମୁଚୁକୁନ୍ଦଙ୍କୁ ଶ୍ରୀକୃଷ୍ଣ ମନେ କରି ପଦାଘାତ କରନ୍ତେ, ମୁଚୁକୁନ୍ଦ ଜାଗ୍ରତ ହୋଇ କାଳଯବନଙ୍କୁ ଦୃଷ୍ଟି ରହିଲେ । ତାଙ୍କର ନେତ୍ରାଗ୍ନିରେ କାଳଯବନ ଭସ୍ମୀଭୂତ ହୋଇଗଲେ । (ହରିବଂଶ)

**କାଳା**—ପ୍ରଜାପତି ଦକ୍ଷଙ୍କ କନ୍ୟା ।

**କାଳନ୍ଦୀ**—ସୂର୍ଯ୍ୟଙ୍କର କନ୍ୟା । ଏହାଙ୍କ ଅପର ନାମ ଯମୁନା । ଶନି ଓ ଯମ ଏହାଙ୍କର ଦୁଇ ଭାଇ ।

**କାଳୀ ବା କାଳିକା**—ତନ୍ତ୍ରୋକ୍ତ କାଳରୂପିଣୀ ଶକ୍ତି । କାଳିକାଦେବୀ, ଶିବପତ୍ନୀ, ଚଣ୍ଡୀ । ଏ ମୂର୍ତ୍ତିଙ୍କର ଚାରିଗୋଟି ହାତ । ଏ ନଗ୍ନା,ଲୋଲଜିହ୍ୱା ଓ ମୁଣ୍ଡମାଳା-ଧାରିଣୀ, ଡାହାଣ ହସ୍ତରେ ଝଣ୍ଡା, ବାମ ହସ୍ତରେ ନରମୁଣ୍ଡ ଧାରଣ କରି ଶିବଙ୍କ ଉପରେ ଦଣ୍ଡାୟମାନା ।

(୨) କାଳରୂପୀ ଶିବଙ୍କର ଶକ୍ତି କାଳୀ ନାମରେ ପରିଚିତା, ଚଣ୍ଡାସୁର ବଧ ସମୟରେ ଏହାଙ୍କର ଉତ୍ପତ୍ତି; ଏ ରକ୍ତବୀର୍ଯ୍ୟର ରକ୍ତପାନ କରିଥିଲେ ।

(୩) କାଳିକାପୁରାଣ ମତେ ଏ ଦଶ ମହାବିଦ୍ୟା ମଧ୍ୟରେ ପ୍ରଥମ ମହାବିଦ୍ୟା । ଶାକ୍ତମାନେ ଏହାଙ୍କୁ ଆଦ୍ୟାଶକ୍ତି ବୋଲି ଉପାସନା କରନ୍ତି । ଏହାଙ୍କର ହସ୍ତସଂଖ୍ୟା ଚାରି, ଦକ୍ଷିଣହସ୍ତ ଦୁଇଟିରେ ଖଡ୍ଗ ଓ ଚନ୍ଦ୍ରହାସ, ବାମହସ୍ତ ଦ୍ୱୟ ଚର୍ମ ଓ ପାଶ ଦ୍ୱାରା ସୁଶୋଭିତ । ଏ ନୃମୁଣ୍ଡମାଳିନୀ, ବ୍ୟାଘ୍ର-ଚର୍ମ ପରିହିତା ଓ କୃଶାଙ୍ଗୀ । ଏହାଙ୍କର ଦନ୍ତ ଦୀର୍ଘ, ଜିହ୍ୱା ଲୋଳା, ଚକ୍ଷୁ ଆରକ୍ତ, ମୁଖ ବିସ୍ତୃତ ଓ କର୍ଣ୍ଣ ସ୍ଥୂଳ, ବାହନ କବନ୍ଧ (ମସ୍ତକବିହୀନ ଶବ) । ଏହାଙ୍କୁ ତାରା ଓ ଚାମୁଣ୍ଡା ବୋଲି ମଧ୍ୟ କୁହାଯାଏ । ଶୁମ୍ଭ ସେନାପତି ଚଣ୍ଡକୁ ନିନାଶ କରିବା ଯୋଗେ ଏହାଙ୍କର ଅନ୍ୟ ନାମ ଚଣ୍ଡୀ ବା ଚଣ୍ଡିକା ।

ଦେବତାମାନେ ଦୈତ୍ୟରାଜ ଶୁମ୍ଭ ଓ ତଦୀୟ କନିଷ୍ଠ ଭ୍ରାତା ନିଶୁମ୍ଭଙ୍କ ଉପଦ୍ରବରେ ଭଗବତୀଙ୍କ ଶରଣାପନ୍ନ ହେଲେ । ଦେବଗଣଙ୍କ ବିପଦରେ, କ୍ରୁଦ୍ଧା ଭଗବତୀଙ୍କ ଲଲାଟ ଦେଶରୁ କାଳୀ ଆବିର୍ଭୂତ ହେଲେ । (ମାର୍କଣ୍ଡେୟ ପୁରାଣ) । କାଳୀଙ୍କ ସହିତ ଶୁମ୍ଭର ସେନାପତି ଚଣ୍ଡ ଓ ତାହାର କନିଷ୍ଠ ଭ୍ରାତା ମୁଣ୍ଡ ଉଭୟେ ଯୁଦ୍ଧ କଲେ । ଉଭୟେ କାଳିକାଙ୍କ ଦ୍ୱାରା ନିହତ ହେଲେ । ଶୁମ୍ଭର ଅପର ସେନାପତି ରକ୍ତବୀର୍ଯ୍ୟ ବଧରେ ଚଣ୍ଡିକା ବିଶେଷ କ୍ଳାନ୍ତ ହୋଇ ପଡ଼ିଲେ । ରକ୍ତବୀର୍ଯ୍ୟ ଦେହରୁ ପତିତ ରକ୍ତବିନ୍ଦୁରୁ ଅସଂଖ୍ୟ ରକ୍ତବୀର୍ଯ୍ୟ ଉତ୍ପନ୍ନ ହୋଇଥିଲେ । ଦେବୀ ସେହି ରକ୍ତସବୁ ଲେହନ କରି ଅବିଳମ୍ବେ ଦୈତ୍ୟକୁଳ ନିର୍ମୂଳ କରିଥିଲେ । ପିତୃଯଜ୍ଞକୁ ଗମନ ପାର୍ଥିନୀ ସତୀ ଏହି ମୂର୍ତ୍ତି ଧାରଣ କରି ମହାଦେବଙ୍କ ଭୀତି ଉତ୍ପାଦନ କରିଥିଲେ । ପରେ ଦଶ ମହାବିଦ୍ୟା

ରୂପ ଧାରଣ କରି ଶିବଙ୍କୁ ଅଧିକ ଭୀତଗ୍ରସ୍ତ କରି ପକାଇଲେ । ଦଶ ମହାବିଦ୍ୟା ଯଥା :—

କାଳୀ, ତାରା ମହାବିଦ୍ୟା, ଷୋଡ଼ଶୀ ଭୁବନେଶ୍ୱରୀ ।
ଭୈରବୀ, ଛିନ୍ନମସ୍ତା଼ଚ, ବିଦ୍ୟା ଧୂମାବତୀ, ତଥା ॥
ବଗଳା ସିଦ୍ଧବିଦ୍ୟା ଚ, ମାତଙ୍ଗୀ, କମଳାତ୍ମିକା ।
ଏତାଃ ଦଶମହାବିଦ୍ୟାଃ ସିଦ୍ଧବିଦ୍ୟାଃ ପ୍ରକୀର୍ତ୍ତିତାଃ ॥ (ତନ୍ତ୍ରସାର)

**କାଳୀସ୍ତୁ ବା କାଳୀସ୍ତୁ ନାଗ**—ଏ ଏକ ମହା ବିଷଧର ସର୍ପ । କଦ୍ରୁ ଏହାଙ୍କର ମାତା । ସମୁଦ୍ର ଏହାଙ୍କର ଆଦ୍ୟ ବାସସ୍ଥାନ । ମାତ୍ର ପକ୍ଷୀରାଜ ଗରୁଡ଼ଙ୍କ ଭୟରେ ଆତ୍ମରକ୍ଷା କରିବା ପାଇଁ କାଳୀସ୍ତୁ ସପରିବାର ବ୍ରଜ ନିକଟବର୍ତ୍ତୀ କାଳିନ୍ଦି ହ୍ରଦରେ ବାସ କରିଥିଲେ । ଦିନେ ଶ୍ରୀକୃଷ୍ଣ ଯମୁନାକୂଳରେ ବିଚରଣ କରୁ କରୁ ଏହି ହ୍ରଦ ତାଙ୍କର ଦୃଷ୍ଟିଗୋଚର ହେଲା । କାଳୀସ୍ତୁ ବିଷରେ ଏହି ଜଳ ବିଷାକ୍ତ ହୋଇଯାଇଥିଲା ଏବଂ ସେଠାରେ କୌଣସି ପ୍ରାଣୀ ନିବାସ କରି ରହି ପାରୁ ନ ଥିଲେ । ଏହି ହ୍ରଦର ଜଳ ସମସ୍ତଙ୍କ ଉପଭୋଗ୍ୟ ପାଇଁ ଏବଂ ବ୍ରଜବାସୀ ଏ ହ୍ରଦରେ ମନଇଚ୍ଛା ସନ୍ତରଣ ଓ ବିହାର କରିବା ସକାଶେ ଶ୍ରୀକୃଷ୍ଣ କାଳୀସ୍ତୁକୁ ଦମନ କରିବାକୁ ଏବଂ ଏ ହ୍ରଦରୁ ତାଙ୍କୁ ତଡ଼ି ଦେବା ପାଇଁ ସ୍ଥିର କଲେ । ଶ୍ରୀକୃଷ୍ଣ ହ୍ରଦ ତୀରସ୍ଥ କଦମ୍ବ ବୃକ୍ଷରୁ ଡେଇଁପଡ଼ି ହ୍ରଦ ଜଳରେ ସନ୍ତରଣ କରିବାକୁ ଲାଗିଲେ । ହ୍ରଦଜଳ ଆନ୍ଦୋଳିତ ହୁଅନ୍ତେ କାଳୀସ୍ତୁ କ୍ରୋଧରେ ନିଜର ଅନୁଚରମାନଙ୍କ ସହିତ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କଲା । ସେ ଶ୍ରୀକୃଷ୍ଣଙ୍କୁ ନିଜ ଦେହରେ ବାନ୍ଧି ପକାଇଲା । ତାର ଅନୁଚରମାନେ ଶ୍ରୀକୃଷ୍ଣଙ୍କୁ ଦଂଶନ କରିବାକୁ ଲାଗିଲେ । ଗୋପବାଳକଗଣ ଶ୍ରୀକୃଷ୍ଣଙ୍କ ଏ ଦୁର୍ଦ୍ଦଶାରେ ବ୍ୟଥିତ ହୋଇ ନନ୍ଦ ଓ ଯଶୋଦାଙ୍କୁ ଏ କଥା ଜଣାଇଲେ । ପୁତ୍ରର ଜୀବନ ଆଶା ପରିତ୍ୟାଗ କରି ନନ୍ଦ ଓ ଯଶୋଦା ଉଭୟେ ବିଳାପ କରିବାକୁ ଲାଗିଲେ । ଶ୍ରୀକୃଷ୍ଣ କିନ୍ତୁ କାଳୀସ୍ତୁର ଏ ଆକ୍ରମଣରେ ଭୀତ ହେଲେ ନାହିଁ । ସେ କାଳୀସ୍ତୁର ଫଣା ଉପରେ ଠିଆ ହୋଇ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ । କାଳୀସ୍ତୁ ଶ୍ରୀକୃଷ୍ଣଙ୍କ ପାଦଭାର ସମ୍ଭାଳି ନ ପାରି ରକ୍ତ ବାନ୍ତି କରିବାକୁ ଲାଗିଲା । ସେ ନିଜର ଜୀବନ ଆଶା ତ୍ୟାଗ କରି ଶ୍ରୀକୃଷ୍ଣଙ୍କ ଦୟା ଭିକ୍ଷା କଲା । ଶ୍ରୀକୃଷ୍ଣ କହିଲେ—ତୁମେ ଆଉ ଏ ହ୍ରଦରେ ରହିନାହିଁ । ଶୀଘ୍ର ସପରିବାରେ ସମୁଦ୍ରକୁ ଚାଲି ଯାଅ । ଅବଶ୍ୟ ସେଠାରେ ତୁମକୁ ଗରୁଡ଼ର ଭୟ ଅଛି । ମାତ୍ର ଗରୁଡ ତୁମ ଫଣା ଉପରେ ମୋ ପାଦ ଚିହ୍ନ ଦେଖିବା

ମାନଙ୍କ ଆଉ ତୁମର କଛି କ୍ଷତି କରିବ ନାହିଁ । ସୌଭରି ଋଷିଙ୍କ ଶାପ ଯୋଗେ ଗରୁଡ଼ କାଳିନ୍ଦୀ ହ୍ରଦରେ ପକ୍ଷିପାରୁ ନଥିଲେ । ତେଣୁ କାଳୀୟ ନିର୍ବିବାଦରେ ଏଠାରେ ବାସ କରୁଥିଲା । କାଳୀୟ ହ୍ରଦ ତ୍ୟାଗ କରିବା ପରେ ଏହା ସମସ୍ତଙ୍କର ବ୍ୟବହାର ଉପଯୋଗୀ ହୋଇପାରିଲା ।

(ହରିବଂଶ ଓ ଶ୍ରୀମଦ୍‌ଭାଗବତ)

**କାଶୀ**—ଏହାର ଅନ୍ୟ ନାମ ବାରାଣସୀ । ଏହା ଗଙ୍ଗା କୂଳରେ ଅବସ୍ଥିତ । ଏହିଠାରେ ଗଙ୍ଗା ଉତ୍ତରବାହିନୀ ହୋଇ ପୂର୍ବ ମୁଖରେ ପ୍ରବାହିତ ।

ଏହା ହିନ୍ଦୁମାନଙ୍କର ଏକ ତୀର୍ଥସ୍ଥାନ । ସଂସ୍କୃତ ଚର୍ଚ୍ଚାର କେନ୍ଦ୍ରସ୍ଥାନ ବୋଲି ଏହା ପ୍ରାଚୀନକାଳରୁ ପ୍ରସିଦ୍ଧି ଲାଭ କରିଅଛି । କାଶୀରେ ମାନମନ୍ଦିର ଅଛି । ତାକୁ ମୋଗଲ ସମ୍ରାଟ୍ ଅକବରଙ୍କ ସେନାପତି ରାଜା ମାନସିଂହ କୋଣାର୍କ ମନ୍ଦିର ଅନୁକରଣରେ ତିଆରି କରାଇଥିଲେ । କାଶୀ ଜରିବୁଟା ଓ ଫୁଲକାମ ହୋଇଥିବା ପାଟଲୁଗା ପାଇଁ ପ୍ରସିଦ୍ଧ । କାଶୀ, ଇଂରେଜ ରାଜତ୍ୱ ପୂର୍ବରୁ ଜଣେ ନବାବଙ୍କ ରାଜ୍ୟ ଥିଲା । ପରେ ଇଂରେଜମାନଙ୍କ ଅମଳରେ ଏହା ଏକ ଜମିଦାରଙ୍କ ଅଧୀନରେ ରହିଲା । ଇଂରେଜ ଗଭର୍ଣ୍ଣମେଣ୍ଟ କାଶୀର ମହାରାଜାଙ୍କୁ 'ରୁଲିଙ୍ଗ୍ ଚିଫ୍ ବା ଶାସକରାଜା'ଙ୍କ କ୍ଷମତା ଦେଇଥିଲେ । କାଶୀର ବିଶ୍ୱନାଥ ମହାଦେବ ଓ ଅନ୍ନପୂର୍ଣ୍ଣା ଦେବୀ ଭାରତ ପ୍ରସିଦ୍ଧ । ଏଠାରେ ଦଶାଶ୍ୱମେଧ ଘାଟ, ମଣିକର୍ଣ୍ଣିକା ଘାଟ ଓ ଗଙ୍ଗାକୂଳରେ ଗୁଡ଼ିଏ ଶବଦାହ-କ୍ଷେତ୍ର ଅଛି । ବହୁ ଦୂରରୁ ହିନ୍ଦୁମାନେ କାଶୀକୁ ଶବ ଆଣି ଏ ଶ୍ମଶାନ-ମାନଙ୍କରେ ଦାହ କରନ୍ତି । ଅନେକ ହିନ୍ଦୁ କାଶୀ କ୍ଷେତ୍ରରେ ଦେହତ୍ୟାଗ କରିବା ପାଇଁ ବୃଦ୍ଧାବସ୍ଥାରେ କାଶୀବାସ କରିଥାନ୍ତି । ଏଠାରେ କାଶୀ ମହାରାଜାଙ୍କ ପ୍ରଦତ୍ତ ବିସ୍ତୃତ ଜମି ଉପରେ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ଚେଷ୍ଟାରେ ଗୋଟିଏ ହିନ୍ଦୁ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଅଛି । କାଶୀରେ ଭାରତର ପ୍ରଧାନ ପ୍ରଧାନ ଧନୀ ଓ ରାଜା ମହାରାଜାଙ୍କ ନିର୍ମିତ ଧର୍ମଶାଳା, ମନ୍ଦିର ଓ ପ୍ରାସାଦମାନ ଅଛି । କାଶୀର ଦୁଇଟି ଗୋଟିଏ ରାସ୍ତାକୁ ଛାଡିଦେଲେ ବାକି ସବୁ ଗଳିମାନଙ୍କର ଚଉଡ଼ା ୫।୭ ହାତରୁ ବେଶି ନୁହେଁ । କାଶୀରେ ଲକ୍ଷାଧିକ ଶିବଲିଙ୍ଗ ନାନା ସ୍ଥାନରେ ଅଛନ୍ତି । କାଶୀରେ ଶିବାନୁଚର କାଳଭୈରବଙ୍କ ମନ୍ଦିର ଅଛି । କାଶୀରେ ଅଧିକାଂଶ ଗଳିର ଚଟାଣରେ ପଥର ବନ୍ଧା ହୋଇଅଛି । କାଶୀ-ବିଶ୍ୱନାଥଙ୍କ ମନ୍ଦିରର ବିମାନ ଉପରେ ସୁନାପାତିଆ ଛୁଆଣି ହୋଇଅଛି ଓ ମନ୍ଦିର ଶିଖରରେ ସ୍ୱର୍ଣ୍ଣ କଳସ ବସିଛି ।

(ଭାଷାକୋଷ)

**କାଶୀରାଜ**—ବାରାଣସୀ ନଗରୀର ପ୍ରାଚୀନ ରାଜା । ଏହାଙ୍କର ତିନୋଟି କନ୍ୟା ଥିଲେ । ଜ୍ୟେଷ୍ଠା ଅମ୍ବା, ମଧ୍ୟମା ଅମ୍ବିକା ଓ କନିଷ୍ଠା ଅମ୍ବାଳିକା । କାଶୀରାଜ ସ୍ୱୟମ୍ବର ପ୍ରଥା ଅନୁସାରେ ଏହି ତିନି କନ୍ୟାଙ୍କୁ ବିବାହ ଦେବେ ବୋଲି ସ୍ଥିର କରି ନାନା ଦେଶୀୟ ରାଜାମାନଙ୍କୁ ସ୍ୱୟମ୍ବର ସଭାକୁ ନିମନ୍ତ୍ରଣ କରିଥିଲେ । ଏହି ସମୟରେ ମହାରାଜ ଶାନ୍ତନୁଙ୍କ ପୁତ୍ର ମହାମତି ଭୀଷ୍ମ ସତ୍ୟବତୀ ଗର୍ଭଜାତ ସ୍ୱୀୟ ବୈମାତ୍ରେୟ ଭ୍ରାତା ବିଚିତ୍ରବୀର୍ଯ୍ୟଙ୍କର ବୈବାହିକ ବୟସ ହୋଇଛି ଜାଣି ତାହାଙ୍କ ପାଇଁ ଉପଯୁକ୍ତ ପାତ୍ରୀ ଅନୁସନ୍ଧାନ କରୁଥିଲେ । କାଶୀରାଜଙ୍କ ଆମନ୍ତ୍ରଣ ପାଇ ମହାମତି ଭୀଷ୍ମ ସ୍ୱୟମ୍ବର ସଭାକୁ ଗମନ କରି ବଳପୂର୍ବକ ତିନୋଟି କନ୍ୟାଙ୍କୁ ହରଣ କରି ନେଲେ । ସ୍ୱୟମ୍ବର ସଭାରେ ସମବେତ କନ୍ୟାପ୍ରାର୍ଥୀ ବହୁତ ରାଜା ଭୀଷ୍ମଙ୍କ ସହିତ ଯୁଦ୍ଧ ଆରମ୍ଭ କଲେ, ମାତ୍ର ସମସ୍ତେ ପରାସ୍ତ ହୋଇ ନିଜ ନିଜ ରାଜଧାନୀକୁ ଫେରିଗଲେ । ଭୀଷ୍ମ କନ୍ୟାମାନଙ୍କୁ ସତ୍ୟବତୀଙ୍କ ଜିମା ଦେଲେ ଏବଂ ଭାଇଙ୍କ ବିବାହ ନିମିତ୍ତ ଆୟୋଜନ କଲେ । ଏହି ସମୟରେ ଜ୍ୟେଷ୍ଠା କନ୍ୟା ଅମ୍ବା କହିଲେ ଯେ, "ସେ ଇତିପୂର୍ବରୁ ଶାଲ୍ୱରାଜଙ୍କୁ ପତିରୂପେ ବରଣ କରି ସାରିଛନ୍ତି ।" ଭୀଷ୍ମ ଏହା ଶୁଣି ଅମ୍ବାକୁ ଶାଲ୍ୱରାଜଙ୍କ ସମୀପକୁ ଯିବାକୁ ଅନୁମତି ଦେଲେ । ଯଥା ସମୟରେ ବିଚିତ୍ରବୀର୍ଯ୍ୟଙ୍କ ସହିତ ଅମ୍ବିକା ଓ ଅମ୍ବାଳିକାଙ୍କର ପରିଣୟ ସମ୍ପାଦିତ ହେଲା । ଅତିରିକ୍ତ ସ୍ତ୍ରୈଣତା ଯୋଗୁଁ ବିଚିତ୍ରବୀର୍ଯ୍ୟ ଅଳ୍ପ ବୟସରେ ଯକ୍ଷ୍ମାରୋଗରେ ପ୍ରାଣତ୍ୟାଗ କଲେ । ବିଚିତ୍ରବୀର୍ଯ୍ୟଙ୍କ ବଡ଼ ଭାଇ ଚିତ୍ରାଙ୍ଗଦ ଅବିବାହିତ ଅବସ୍ଥାରେ ଗନ୍ଧର୍ବ ସହିତ ଯୁଦ୍ଧ କରୁ କରୁ ପ୍ରାଣତ୍ୟାଗ କରିଥିଲେ । ସୁତରାଂ ବଂଶଲୋପ ଆଶଙ୍କାରେ ସତ୍ୟବତୀ ବିଧବା ବଧୂମାନଙ୍କର ସନ୍ତାନୋତ୍ପତ୍ତି ନିମିତ୍ତ ଭୀଷ୍ମଙ୍କୁ ଅନୁରୋଧ କଲେ । ଭୀଷ୍ମ ବିମାତାଙ୍କୁ ପୂର୍ବ ପ୍ରତିଜ୍ଞା ସ୍ମରଣ କରାଇ ସେପରି କାର୍ଯ୍ୟରେ ଅସମ୍ମତି ଜଣାଇଲେ । ସତ୍ୟବତୀ ଅନ୍ୟ ଉପାୟ ନ ଦେଖି ସ୍ୱୀୟ କାନୀନପୁତ୍ର କୃଷ୍ଣଦ୍ୱୈପାୟନ ବ୍ୟାସଙ୍କୁ ସ୍ମରଣ କଲେ । ମାତାଙ୍କ ଅନୁରୋଧ କ୍ରମେ ବ୍ୟାସ, ଅମ୍ବିକା ଓ ଅମ୍ବାଳିକାଙ୍କର ଗର୍ଭ ସଞ୍ଚାର କରାଇଲେ । ଅମ୍ବିକା ଗର୍ଭରେ ଧୃତରାଷ୍ଟ୍ର ଓ ଅମ୍ବାଳିକାଙ୍କ ଗର୍ଭରେ ପାଣ୍ଡୁ ଜନ୍ମ ଗ୍ରହଣ କରିଥିଲେ । ଅମ୍ବିକାଙ୍କ ଦାସୀ ଗର୍ଭରୁ ମହାମତି ବିଦୁର ଜନ୍ମ ହୋଇଥିଲେ । (ମହାଭାରତ)

**କାଶ୍ୟପ**—ବୈଶେଷିକ ଦର୍ଶନଶାସ୍ତ୍ର ପ୍ରଣେତା ଋଷି । ପୁରାଣୋକ୍ତ ସର୍ପଚିକିତ୍ସକ ଋଷିଙ୍କର ନାମ । ମହାରାଜ ପରୀକ୍ଷିତ ମୃଗୟାବ୍ୟପଦେଶରେ ବନ ଗମନ କରି ଶମୀକ ନାମକ ଏକ ମୌନାବଲମ୍ବୀ ଋଷିଙ୍କୁ ବାଣାହତ ମୃଗର ବିଷୟ

ପଶ୍ଚରଲେ ଋଷି କୌଣସି ଉତ୍ତର ନ ଦେଇ ନୀରବ ରହିବାରୁ ରାଜା କ୍ରୁଦ୍ଧ ହୋଇ ଗୋଟିଏ ମୃତ ସର୍ପ ତାଙ୍କ ଗଳାରେ ଲମ୍ବାଇ ହସ୍ତିନାକୁ ଫେରି ଆସିଲେ । ଶମୀକଙ୍କ ଶିଷ୍ୟପୁତ୍ର ଶୃଙ୍ଗୀ ଏହା ଦେଖି ରାଜାଙ୍କୁ ଅଭିଶାପ ଦେଲେ, "ସେ ସେ ସାତଦିନ ଭିତରେ ସର୍ପ ଦଂଶନ ଯୋଗେ ପ୍ରାଣତ୍ୟାଗ କରିବେ ।" ଶମୀକ ଏହା ଜାଣି ପୁତ୍ରକୁ ନାନା ଭର୍ତ୍ସନା କଲେ, ମାତ୍ର ବାଳକପୁତ୍ର ଶୃଙ୍ଗୀ ଶାପ ପ୍ରତ୍ୟାହାର କଲେ ନାହିଁ । ରାଜା ପରୀକ୍ଷିତ ଏ ସମ୍ବାଦ ପାଇ ଆପଣାକୁ ସର୍ପରାଜ ତକ୍ଷକଙ୍କ ଆକ୍ରମଣରୁ ରକ୍ଷା କରିବାପାଇଁ ଯଥୋପଯୋଗୀ ବ୍ୟବସ୍ଥା ସତ୍ତ୍ୱକଲେ । କାଶ୍ୟପ ନାମକ ଏକ ବିଷବୈଦ୍ୟ ରାଜାଙ୍କର ଏହି ବିପଦର ସମ୍ବାଦ ଶୁଣି ତାଙ୍କୁ ରକ୍ଷା କରିବାପାଇଁ ହସ୍ତିନାକୁ ଆଗମନ କଲେ । ବାଟରେ ବ୍ରାହ୍ମଣ ବେଶଧାରୀ ତକ୍ଷକଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ତକ୍ଷକ କାଶ୍ୟପଙ୍କ ଅଭିପ୍ରାୟ ଜାଣି ତାଙ୍କର କ୍ଷମତା ପରୀକ୍ଷା କରିବାପାଇଁ ଗୋଟିଏ ବୃକ୍ଷକୁ ଦଂଶନ କଲେ । ବିଷାଘାତରେ ବୃକ୍ଷଟି ଭସ୍ମୀଭୂତ ହୋଇଗଲା । କାଶ୍ୟପ କିନ୍ତୁ ନିଜ ବିଦ୍ୟାବଳରେ ବୃକ୍ଷଟିକୁ ପୁନର୍ଜୀବନ ଦାନ କଲେ । ବ୍ରାହ୍ମଣର ଏ ଅସାଧାରଣ କ୍ଷମତା ଦେଖି ତକ୍ଷକ ତାଙ୍କୁ ପ୍ରଚୁର ଧନ ଅର୍ପଣ କରି ଫେରାଇ ଦେଲେ । ବିଷବୈଦ୍ୟ କାଶ୍ୟପ ପ୍ରଭୂତ ଅର୍ଥ ଲାଭ କରି ପରମ ସନ୍ତୋଷରେ ନିଜ ଗୃହକୁ ଫେରି ଆସିଲେ । (ମହାଭାରତ—ଆଦିପର୍ବ)

**କାଶ୍ୟପି**—କାଶ୍ୟପ ଋଷିଙ୍କ ପୁତ୍ର ଅରୁଣ ଓ ଗରୁଡ଼ ।

**କାଶ୍ୟପୀ**—ପୃଥିବୀ । ପରଶୁରାମ ପୃଥିବୀରୁ କ୍ଷତ୍ରିୟ ବଂଶ ନିର୍ମୂଳ କରି ପୃଥିବୀକୁ କଶ୍ୟପ ଋଷିଙ୍କୁ ଦାନ କରିଥିଲେ । ତେଣୁ ପୃଥିବୀର ଅନ୍ୟନାମ କାଶ୍ୟପୀ ହୋଇଥିଲା ।

**କିନ୍ନର**—ଅଶ୍ୱର ମୁଖ ପରି ମୁଖ ଓ ନର ଦେହ ପରି ଦେହ ବିଶିଷ୍ଟ ଦେବଯୋନି ବିଶେଷ । କିଂପୁରୁଷ, ଦେବଗାୟକ, ଏମାନେ କୁବେରଙ୍କ ଅନୁଚର ଓ ସଙ୍ଗୀତ ବିଦ୍ୟାରେ ନିପୁଣ ।

**କିମ୍ପୁରୁଷ ବର୍ଷ**—ଏ ଦେଶ ହିମାଳୟ ଓ ହେମକୂଟ ପର୍ବତ ମଧ୍ୟରେ ଅବସ୍ଥିତ ବୋଲି କଥିତ ଅଛି । ଏ ରାଜ୍ୟ ଅଗ୍ନିଧ୍ରଙ୍କ ନଅପୁତ୍ର ମଧ୍ୟରୁ କିମ୍ପୁରୁଷ ନାମ-ଧାରୀ ଏକ ପୁତ୍ରଙ୍କ ଭାଗରେ ପଡିଥିଲା । (ଭିଷାକୋଷ)

**କିରାତ**—ଏହା ପୂର୍ବ ହିମାଳୟସ୍ଥ ପ୍ରଦେଶ । ଆଧୁନିକ ଭୁଟାନ୍, ସିକମ୍, ମଣିପୁର ଆଦି ଅଞ୍ଚଳ ।

**କର୍ମ୍ମୀର**—ବକ ରାକ୍ଷସର ଭ୍ରାତା । ପାଣ୍ଡବମାନେ ଦ୍ୟୂତକ୍ରୀଡ଼ାରେ ପରାସ୍ତ ହୋଇ ନରମାଂସଲୋଲୁପ ରାକ୍ଷସ ସମାକୀର୍ଣ୍ଣ କାମ୍ୟକ ବନରେ ପ୍ରବେଶ କଲେ । ଏହି ରାକ୍ଷସ ମାୟା ବିସ୍ତାର କରି ସେମାନଙ୍କ ପଥ ରୁଦ୍ଧ କରିଥିଲା । ଭୀମ ଏହା ସହିତ ବାହୁଯୁଦ୍ଧ କରି ଏହାକୁ ବଧ କଲେ । କର୍ମ୍ମୀର ବଧ ପରେ ପାଣ୍ଡବମାନେ ଦ୍ୱୈତବନରୁ ପ୍ରସ୍ଥାନ କଲେ ।

**କିଷ୍କିନ୍ଧା**—କିଷ୍କିନ୍ଧ୍ୟା ପର୍ବତର ଗୁହା । ବାନରରାଜ ବାଲିଙ୍କ ରାଜଧାନୀ । ଏହା ବର୍ତ୍ତମାନ ମହୀଶୂର ରାଜ୍ୟର ଉତ୍ତରରେ ଅବସ୍ଥିତ ବୋଲି ଅନୁମାନ କରାଯାଏ । (ଭାଷାକୋଷ)

**କୀଚକ**—ମତ୍ସ୍ୟଦେଶାଧିପତି ବିରାଟ ରାଜାଙ୍କ ଶାଳକ ଓ ସେନାପତି, କୀଚକ ମହା ବଳଶାଳୀ ଓ ଏକ ଦୁର୍ଦ୍ଦାନ୍ତ ପୁରୁଷ ଥିଲେ । ଏହାଙ୍କ ଭୟରେ ବିରାଟ ରାଜ୍ୟର ପାର୍ଶ୍ୱବର୍ତ୍ତୀ ରାଜାମାନେ ମତ୍ସ୍ୟଦେଶ ଆକ୍ରମଣ କରିବା ପାଇଁ ଡରୁଥିଲେ । ଏପରିକି ପ୍ରବଳ ପରାକ୍ରାନ୍ତ କୌରବମାନେ ମଧ୍ୟ କୀଚକ ଜୀବିତ ଥିବା ପର୍ଯ୍ୟନ୍ତ ମତ୍ସ୍ୟଦେଶକୁ ଅଭିଯାନ ଚଳାଇ ନଥିଲେ । କୀଚକଙ୍କ ଅନ୍ତେ କୁରୁରାଜ ଦୁର୍ଯ୍ୟୋଧନ ବିରାଟ ଗୋଗୃହ ଆକ୍ରମଣ କରିଥିଲେ ।

ପାଣ୍ଡବମାନେ ବର୍ଷେ କାଳ ଏହି ରାଜ୍ୟରେ ଅଜ୍ଞାତବାସ କରି ଛଦ୍ମବେଶରେ ରହିଥିଲେ । ପାଣ୍ଡବପାଟରାଣୀ ଦ୍ରୌପଦୀ, ସୈରନ୍ଧ୍ରୀ (ବେଶକାରିଣୀ ଦାସୀ) ହୋଇଥିଲେ ଏବଂ ମହାବଳଶାଳୀ ଭୀମ ସୂପକାର (ସୁଆର) ବେଶରେ ଥିଲେ । କୀଚକ ସୈରନ୍ଧ୍ରୀଙ୍କ ରୂପ ଯୌବନରେ ଆକୃଷ୍ଟ ହୋଇ ଦ୍ରୌପଦୀଙ୍କ ନିକଟରେ ନିଜର ଅସତ୍ ଅଭିପ୍ରାୟ ଜ୍ଞାପନ କରନ୍ତେ ସାଧ୍ୱୀ ଦ୍ରୌପଦୀ ତାହା ପ୍ରତ୍ୟାଖ୍ୟାନ କଲେ । କୀଚକ ତାଙ୍କୁ ବଳପୂର୍ବକ ଧର୍ଷଣ କରିବା ପାଇଁ ଆକ୍ରମଣ କଲେ । ଦ୍ରୌପଦୀ ରାଜସଭାକୁ ପଳାୟନ କଲେ । କୀଚକ ତାଙ୍କର ଅନୁସରଣ କରି ସେହି ସଭାରେ ତାଙ୍କୁ ପଦାଘାତ କଲେ । ଦ୍ରୌପଦୀ, ଯୁଧିଷ୍ଠିର (ଛଦ୍ମ ବେଶଧାରୀ କଙ୍କ)ଙ୍କ ପରାମର୍ଶରେ ଭୀମଙ୍କୁ ଏକଥା ଜଣାଇଲେ । ଭୀମ ଏହାର ପ୍ରତିଶୋଧ ନେଲେ । ସେ ସୈରନ୍ଧ୍ରୀ ବେଶରେ ନାଟ ମନ୍ଦିରକୁ ଯାଇ କୀଚକକୁ ଆକ୍ରମଣ କରି ବାହୁଯୁଦ୍ଧରେ ପରାସ୍ତ ଓ ନିହତ କଲେ । (ମହାଭାରତ—ବିରାଟ ପର୍ବ)

**କୀର୍ତ୍ତିମୁଖ**—ଗର୍ବଦୃପ୍ତ ଜଳନ୍ଧର ପାର୍ବତୀଙ୍କୁ ବିବାହ କରିବା ପାଇଁ ମହାଦେବଙ୍କ ନିକଟକୁ ରାହୁକୁ ଦୂତରୂପେ ପଠାଇବାରୁ କ୍ରୋଧାନ୍ୱିତ ମହାଦେବଙ୍କ ଭ୍ରୂ ମଧ୍ୟରୁ ଗୋଟିଏ ଭୀଷଣ ମୂର୍ତ୍ତି ଆବିର୍ଭୂତ ହୋଇ ରାହୁକୁ ଗ୍ରାସ କରିବାକୁ ଗୋଡ଼ାଇ ଗଲା । ତହୁଁ ରାହୁ ମହାଦେବଙ୍କ ଶରଣ ନେଲା । ମହାଦେବଙ୍କ

ବରରେ ଏହି ଖାଣ୍ଡେ ମୂର୍ତ୍ତି ରହିତ ମୁଣ୍ଡଟିକୁ ଛାଡ଼ି ଶରୀରର ଅନ୍ୟ ସମସ୍ତ ଅବୟବ ଗ୍ରାସ କଲା । ଏହି ମୁଣ୍ଡ କୀର୍ତ୍ତିମୁଖ ନାମ ଧାରଣ କରିଅଛି । ପ୍ରଥମେ ଏହି ମୁଣ୍ଡକୁ ଦର୍ଶନ ଓ ଅର୍ଚ୍ଚନା କରି ମନ୍ଦିର ମଧ୍ୟକୁ ନ ଗଲେ ଶିବଦର୍ଶନ ଓ ସେବାପୂଜା ନିଷ୍ଫଳ ହୁଏ । (ସ୍କନ୍ଦପୁରାଣ)

**କୁକୁର ବେଢ଼ (କୁକର୍ମ ବେଢ଼)**—ବିବାହ ବେଦି ନିକଟରେ ତିଆରି ହୋଇଥିବା ଛୋଟ ବେଢ଼ । ଏହା ଉପରେ ରଖାଯାଇଥିବା ଖଣ୍ଡେ ଶିଳ ଉପରେ ପ୍ରଥମ ବରଣ ପରେ ଓ ହାତଗଣ୍ଠି ପଡ଼ିବା ପୂର୍ବରୁ ବର ବସନ୍ତି ଓ ବେଢ଼ ଚାରି ପାଖରେ ତେଲକନା ଗୁଡ଼ା ହୋଇଥିବା ମଶାଲ ଜଳେ ଏବଂ ଶାଶୁ ଓ ଅନ୍ୟ ଆତ୍ମୀୟା ସ୍ତ୍ରୀମାନେ ଆସି ବରକୁ ସିନ୍ଦୂର କଜ୍ୱଳରେ ବେଶ କରନ୍ତି । (ଭାଷାକୋଷ)

**କୁନ୍ତିଭୋଜ, କୋନ୍ତିଭୋଜ, କୁନ୍ତୀଭୋଜ**—ଶ୍ରୀକୃଷ୍ଣଙ୍କ ପିତା ବସୁଦେବଙ୍କର ଦୁଇ ଭଉଣୀ ଥିଲେ । ଜଣେ ପୃଥା, ଅନ୍ୟ ଜଣେ ସୁପ୍ରଭା । ପୃଥା ପାଣ୍ଡୁଙ୍କ ମହିଷୀ ଏବଂ ସୁପ୍ରଭା ଶିଶୁପାଳଙ୍କର ଜନନୀ । ପୃଥାଙ୍କ ପିତା ବସୁ (ମତାନ୍ତରେ ଶୂରସେନ)ଙ୍କ ପିତୃଷ୍ୱସାର ପୁତ୍ର କୁନ୍ତିଭୋଜ ଅପୁତ୍ରିକ ଥିଲେ । ପୃଥାଙ୍କ ପିତା ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ପୃଥାକୁ ପ୍ରତିପାଳନ କରିବା ପାଇଁ କୁନ୍ତିଭୋଜଙ୍କୁ ଅର୍ପଣ କଲେ । କୁନ୍ତିଭୋଜଙ୍କ ଦ୍ୱାରା ଲାଳିତପାଳିତ ହେବାରୁ ପୃଥାଙ୍କର ଅନ୍ୟନାମ ହେଲା କୁନ୍ତୀ । ଏକଦା ଦୁର୍ବାସା କୁନ୍ତୀଭୋଜଙ୍କ ଗୃହରେ ଅତିଥିରୂପେ ରହିବାକୁ ଆସିଲେ । ସେ କୁନ୍ତୀଙ୍କ ପରିଚର୍ଯ୍ୟାରେ ଅତିଶୟ ତୃପ୍ତ ହୋଇ ତାହାଙ୍କୁ ଗୋଟିଏ ବଶୀକରଣ ମନ୍ତ୍ର ପ୍ରଦାନ କଲେ । ଏ ମନ୍ତ୍ରର ଉଦ୍ଦେଶ୍ୟ ଥିଲା—ଯେଉଁ ଦେବତାଙ୍କ ନାମ ଧରି ଏହା ଉଚ୍ଚାରଣ କରାଯିବ ସେହି ଦେବତା ମନ୍ତ୍ର ଉଚ୍ଚାରଣକାରିଣୀର ବଶୀଭୂତ ହେବେ ଏବଂ ସେହି ଦେବତାଙ୍କ ପ୍ରସାଦରୁ ଉଚ୍ଚାରକାରିଣୀ ଗର୍ଭବତୀ ହୋଇ ପୁତ୍ର ସନ୍ତାନ ପ୍ରସବ କରିବେ । ଅବିବାହିତା କୁନ୍ତୀ କୌତୂହଳୀ ହୋଇ ପ୍ରଥମେ ସୂର୍ଯ୍ୟଙ୍କ ନାମରେ ଏ ମନ୍ତ୍ର ଉଚ୍ଚାରଣ କଲେ । ସୂର୍ଯ୍ୟ ନିଜ ଦେହକୁ ଦୁଇ ଭାଗରେ ବିଭକ୍ତ କରି ଗୋଟିଏ ଭାଗରେ ପୃଥିବୀରେ ତାପ ଦାନ କଲେ ଏବଂ ଅପର ଭାଗରେ କୁନ୍ତୀଙ୍କ ପାଖକୁ ଆସିଲେ । କୁନ୍ତୀଙ୍କ ସମ୍ମତିକ୍ରମେ ସୂର୍ଯ୍ୟ ତାହାଙ୍କୁ ଗର୍ଭାଧାନ କରିଥିଲେ । କୁନ୍ତୀଙ୍କ ପ୍ରାର୍ଥନାରେ ସୂର୍ଯ୍ୟ କହିଲେ—ତୁମ୍ଭର ପୁତ୍ର ମୋର ଅଭେଦ୍ୟ କବଚ ଓ କୁଣ୍ଡଳ ଲାଭ କରିବ । ଏହା ପରେ ସୂର୍ଯ୍ୟ ଅନ୍ତର୍ହିତ ହେଲେ । ଯଥା ସମୟରେ କବଚ ଓ କୁଣ୍ଡଳଧାରୀ କର୍ଣ୍ଣ ପ୍ରସୂତ ହେଲେ । କୁନ୍ତୀ ଲଜ୍ଜାବଶତଃ ସେହି ପିଲାଟିକୁ ସିନ୍ଦୂକ ଭିତରେ ରଖି ନଦୀରେ

ନିକ୍ଷେପ କଲେ । ଅଧିରଥ ସୂତଙ୍କ ପତ୍ନୀ, ରାଧା ଏହି ସିନ୍ଦୂକଟିକୁ ପାଇ କର୍ଣ୍ଣଙ୍କୁ ପୋଷ୍ୟପୁତ୍ର ରଖିଲେ । ରାଧାଙ୍କ ଦ୍ୱାରା ପାଳିତ ହୋଇଥିବାରୁ କର୍ଣ୍ଣଙ୍କର 'ରାଧେୟ' ବୋଲି ଏକ ନାମ ଥିଲା । (କର୍ଣ୍ଣ ଦେଖ)

କିଛିକାଳ ପରେ କୁନ୍ତୀ ସ୍ୱୟମ୍ବର ପ୍ରଥା ଅନୁସାରେ ପାଣ୍ଡୁଙ୍କୁ ବିବାହ କଲେ । ପାଣ୍ଡୁ ତାଙ୍କର ଦୁଇ ପତ୍ନୀ କୁନ୍ତୀ ଓ ମାଦ୍ରୀଙ୍କ ସହିତ ଅରଣ୍ୟ ବିହାର କରୁଥିବାବେଳେ ଦେହ ତ୍ୟାଗ କଲେ । କୁନ୍ତୀ ଓ ମାଦ୍ରୀ ଇନ୍ଦ୍ରାଦି ପଞ୍ଚ ଦେବତାମାନଙ୍କ ଔରସରେ ପଞ୍ଚପୁତ୍ର ଲାଭ କରିଥିଲେ ।

(ହରିବଂଶ ଓ ମହାଭାରତ)

**କୁବଳୟା**—ଦାକ୍ଷିଣାତ୍ୟର ପର୍ବତ ବିଶେଷ । ଏହିଠାରେ ଥାଇ ହନୁମାନ ଦେଖିଥିଲା ଯେ ରାବଣ ରଥ ଉପରେ ବସାଇ ଜଣେ ରୋରୁଦ୍ୟମାନା ସ୍ତ୍ରୀକୁ ନେଇ ଯାଉଥିଲା ।

(୨) ଏ ଗୋଟିଏ ଅସୁର, ହସ୍ତୀରୂପ ଧରି କଂସର ବାହନ ହୋଇଥିଲା । କଂସର ଆଦେଶରେ ଏ ରଙ୍ଗସଭାରେ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କରିବାରୁ ଶ୍ରୀକୃଷ୍ଣ ଏହାର ଦାନ୍ତ ଉପାଡ଼ି ଏହାକୁ ମାରି ଦେଇଥିଲେ ।

(ଭାଷାକୋଷ)

**କୁବଳୟାଶ୍ୱ**—(୧) ମହାରାଜ ଶ୍ରାବସ୍ତଙ୍କ ନାତି ଏବଂ ବୃହଦଶ୍ୱଙ୍କ ପୁତ୍ର । ଏହାଙ୍କ ପିତାମହ ଶ୍ରାବସ୍ତ, ଶ୍ରାବସ୍ତୀ ନଗରୀ ପ୍ରତିଷ୍ଠା କରିଥିଲେ । ମହର୍ଷି ଉତ୍ତଙ୍କଙ୍କ ଆଦେଶରେ କୁବଳୟାଶ୍ୱ ଧୁନ୍ଧୁ ନାମକ ଅସୁରକୁ ବଧ କରି ଧୁନ୍ଧୁମାର ଆଖ୍ୟା ପାଇଥିଲେ । (ଶ୍ରୀମଦ୍‌ଭାଗବତ)

(୨) ଶତ୍ରୁଜିତ୍ ନାମକ ରାଜାଙ୍କ ପୁତ୍ର । ଋତୁଧ୍ୱଜ ଏହାଙ୍କର ପ୍ରକୃତ ନାମ । କୁବଳୟ ନାମକ ଅତି ଦ୍ରୁତଗାମୀ ଅଶ୍ୱ ଏହାଙ୍କର ବାହନ । ସେହି ହେତୁରୁ ଏହାଙ୍କର ଅନ୍ୟ ନାମ କୁବଳୟାଶ୍ୱ । ପାତାଳକେତୁ ନାମକ ରାକ୍ଷସର ଅନୁସରଣ କରି କୁବଳୟାଶ୍ୱ ପାତାଳପୁରକୁ ଗମନ କରିଥିଲେ । ସେଠାରେ ଗନ୍ଧର୍ବରାଜ ବିଶ୍ୱାବସୁଙ୍କ କନ୍ୟା ମଦାଳସାଙ୍କ ସହିତ ଏହାଙ୍କର ପରିଣୟ ସମ୍ପାଦିତ ହୋଇଥିଲା । ସେହିଠାରେ ପାତାଳକେତୁର ଅନୁସନ୍ଧାନ ପାଇ କୁବଳୟାଶ୍ୱ ତାହାକୁ ବଧ କଲେ ଏବଂ ମହିଷୀଙ୍କ ସହିତ ସ୍ୱରାଜ୍ୟକୁ ଫେରି ଆସିଲେ । ପାତାଳକେତୁର କନିଷ୍ଠ ଭ୍ରାତା ତାଳକେତୁ, ଭ୍ରାତୃବଧର ପ୍ରତିଶୋଧ ବାସନାରେ ରାଜଧାନୀ ନିକଟରେ ଏକ ଆଶ୍ରମ ସ୍ଥାପନ କରି ତପସ୍ୱୀ

ବେଶରେ ରହିଲା । ଏଣେ ରାଜକୁମାର କୁବଳୟାଶ୍ୱ ତାହା ନିକଟରେ ଉପସ୍ଥିତ ହେଲେ । ତପସ୍ୱୀ ବେଶଧାରୀ ତାଳକେତୁ ରାଜାଙ୍କଠାରୁ ରାଜମୁକୁଟଟି ଗ୍ରହଣ କରି ତାଙ୍କୁ ଆଶ୍ରମ ରକ୍ଷାର ଭାର ଅର୍ପଣ କରି ରାଜଧାନୀରେ ପ୍ରବେଶ କଲା । ତାଳକେତୁ ରାଜଧାନୀରେ ରାଜାଙ୍କ ମୃତ୍ୟୁ ସମ୍ବାଦ ପ୍ରଚାର କରନ୍ତେ ମଦାଳସା ଏ ସମ୍ବାଦରେ ମର୍ମାହତ ହୋଇ ପ୍ରାଣତ୍ୟାଗ କଲେ । କିଛି ସମୟ ପରେ କୁବଳୟାଶ୍ୱ ରାଜଧାନୀକୁ ଆସି ଏ ଖବର ଶୁଣି ଦୁଃଖରେ ଅବସନ୍ନ ହୋଇପଡ଼ିଲେ । ସଂକଳ୍ପ କଲେ ଯେ ସେ ଆଉ ବିବାହ କରିବେ ନାହିଁ । ଏଣେ ମଦାଳସା ଏକ ନାଗରାଜଙ୍କ ଔରସରେ ଜନ୍ମ ହେଲେ । ଏହି ନାଗରାଜଙ୍କ ପୁତ୍ରମାନଙ୍କ ସହିତ କୁବଳୟାଶ୍ୱ ମିତ୍ରତା କରି ପାତାଳକୁ ଗଲେ ଏବଂ ସେଠାରେ ମଦାଳସାଙ୍କୁ ପୁଣି ବିବାହ କଲେ । (ମାର୍କଣ୍ଡେୟ ପୁରାଣ)

**କୁବ୍ଜା**—କଂସର ବେଶକାରିଣୀ ସ୍ତ୍ରୀ ବା ଦାସୀ । ଶ୍ରୀକୃଷ୍ଣ ରଙ୍ଗସଭାକୁ ଯିବାବେଳେ ମଥୁରା ଦାଣ୍ଡରେ ଏ ଶ୍ରୀକୃଷ୍ଣଙ୍କୁ ଗନ୍ଧ ଚନ୍ଦନ ଲଗି କରି ଦେବା ଦ୍ୱାରା ଶ୍ରୀକୃଷ୍ଣ ତା ଉପରେ ପ୍ରୀତ ହୋଇ ତାକୁ ସୁରୂପା କରି ଦେଇଥିଲେ । ସେ ଏକ ପରମ ରୂପବତୀ ରମଣୀ ହୋଇ ଶ୍ରୀକୃଷ୍ଣଙ୍କ ପ୍ରଣୟପ୍ରାର୍ଥିନୀ ହେଲା । କଂସ ବଧ ପରେ ଶ୍ରୀକୃଷ୍ଣ ତା ଗୃହକୁ ଗଲେ । ସେ ଶ୍ରୀକୃଷ୍ଣଙ୍କ ଅଙ୍ଗସଙ୍ଗ ଲାଭକରି ସଦଗତି ଲାଭ କଲା । (ଭାଗବତ)

**କୁବେର**—ମହର୍ଷି ପୁଲସ୍ତ୍ୟଙ୍କ ନାତି ଏବଂ ବିଶ୍ରବା ଋଷିଙ୍କ ପୁତ୍ର । କୁବେର ଯକ୍ଷ ନାମକ ଭୂତ ଯୋନିମାନଙ୍କର ଅଧିପତି ଏବଂ ଧନରକ୍ଷକ । ଅଳକା ଏହାଙ୍କର ରାଜଧାନୀ । ବିଶ୍ରବାଙ୍କ ସହିତ ଏହାଙ୍କର ସାଦୃଶ୍ୟ ଥିବାରୁ ଏହାଙ୍କର ଅନ୍ୟ ନାମ ବୈଶ୍ରବଣ । ବୈଶ୍ରବଣଙ୍କ ଅଙ୍ଗ ଗଠନ ଅତି କୁତ୍ସିତ ହୋଇଥିବାରୁ ସେ କୁବେର ଆଖ୍ୟାପ୍ରାପ୍ତ ହୋଇଥିଲେ । ଏହାଙ୍କର ତିନୋଟି ପାଦ, ଆଠଟି ଦାନ୍ତ ଏବଂ ଦେଖିବା ପାଇଁ ଅତି କଦାକାର । ମହର୍ଷି ଭରଦ୍ୱାଜଙ୍କ କନ୍ୟା ଦେବବର୍ଣ୍ଣିନୀ ଏହାଙ୍କର ମାତା । ବୈଶ୍ରବଣ କଠୋର ତପସ୍ୟା ବଳରେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିଥିଲେ । ପିତାମହ ବ୍ରହ୍ମା ଇନ୍ଦ୍ରାଦି ଦେବତାମାନଙ୍କ ସହିତ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାଙ୍କୁ ବର ଗ୍ରହଣ କରିବା ପାଇଁ କହିଲେ । ବୈଶ୍ରବଣ କହିଲେ—"ସେ ଧନରକ୍ଷକ ଲୋକପାଳ ହେବାକୁ ଇଚ୍ଛା କରନ୍ତି ।" ବ୍ରହ୍ମା ତାଙ୍କର ଅଭିପ୍ରାୟ ଅନୁସାରେ ତାଙ୍କୁ ଧନାଧିପତି ଓ ଚତୁର୍ଥ ଲୋକପାଳ କରିଦେଲେ । ବର ଲଭନ୍ତେ ବୈଶ୍ରବଣ ପିତାଙ୍କ ନିକଟକୁ ଗଲେ ଏବଂ ତାଙ୍କୁ କହିଲେ—"ବ୍ରହ୍ମା ଅବଶ୍ୟ ମୋତେ ଅଭୟ ପ୍ରଦାନ କରିଛନ୍ତି, ମାତ୍ର ମୁଁ କେଉଁଠାରେ ରହିବି ସେପରି ଗୋଟିଏ ଉତ୍ତମ ସ୍ଥାନ ଦେଇ

ନାହାନ୍ତି । ଏବେ ମୁଁ କେଉଁଠି ରହିବ ତାହା ଆପଣ କହନ୍ତୁ ।" ବିଶ୍ରବା ପୁତ୍ର କଥାରେ ପରିତୁଷ୍ଟ ହୋଇ ତାଙ୍କୁ ଦକ୍ଷିଣ ସାଗରସ୍ଥ ତ୍ରିକୂଟ ପର୍ବତ ଶିଖରରେ ଅବସ୍ଥିତ, ଇନ୍ଦ୍ରପୁରୀ ଅମରାବତୀ ତୁଲ୍ୟ ଶୋଭମାନା, ହେମ-ପ୍ରାକାର ପରିବେଷ୍ଟିତା, ବିଶ୍ୱକର୍ମା ନିର୍ମିତ ଲଙ୍କାପୁରରେ ଅବସ୍ଥାନ କରିବାପାଇଁ ଆଦେଶ ଦେଲେ । ପିତାଙ୍କ ଆଜ୍ଞା ଅନୁସାରେ କୁବେର ସେଠାରେ ବାସ କଲେ । ପୂର୍ବେ ଏଠାରେ ସୁକେଶ ରାକ୍ଷସପୁତ୍ର ତଥା ଦେବବତୀ ଗର୍ଭଜାତ ମାଲ୍ୟବାନ୍, ସୁମାଳୀ ଓ ମାଳୀ ଏହି ତିନିଗୋଟି ରାକ୍ଷସ ବାସ କରିଥିଲେ । ଏମାନେ ବ୍ରହ୍ମାଙ୍କ ବରରେ ଅଜେୟ ଓ ଦୀର୍ଘଜୀବୀ ହୋଇଥିଲେ । ଦେବତାମାନେ ଏମାନଙ୍କ ଅତ୍ୟାଚାରରେ ବିକ୍ଷୁବ୍ଧ ହୋଇ ନିଜର ଦୁରବସ୍ଥା ବିଷ୍ଣୁଙ୍କୁ ଜଣାଇଲେ । ବିଷ୍ଣୁଙ୍କ ସହିତ ଏମାନଙ୍କର ଯୁଦ୍ଧ ହେଲା । ମାଳୀ ଯୁଦ୍ଧରେ ନିହତ ହୁଅନ୍ତେ ଅନ୍ୟ ଦୁଇ ଭାଇ ସପରିବାରେ ପାତାଳପୁରୀରେ ଆଶ୍ରୟ ନେଲେ । କିଛିଦିନ ପରେ ସୁମାଳୀ ମର୍ତ୍ତ୍ୟ ଭ୍ରମଣ କରିବାକୁ ଆସି ପୁଷ୍ପକାରୋହୀ କୁବେରଙ୍କୁ ଦେଖିଲେ ଏବଂ ତାଙ୍କର ଐଶ୍ୱର୍ଯ୍ୟ ଦେଖି ଈର୍ଷାନ୍ୱିତ ହେଲେ । ଘରକୁ ଫେରିଯାଇ ସେ କୁବେରଙ୍କ ତୁଲ୍ୟ ଐଶ୍ୱର୍ଯ୍ୟଶାଳୀ ହେବାକୁ ଚିନ୍ତା କଲେ । ବହୁ ଚିନ୍ତା ପରେ ନିଜର କନ୍ୟା କୈକସୀ ବା ନିକଷାଙ୍କୁ ପାଖକୁ ଡାକିଲେ ଏବଂ ତାଙ୍କୁ ପୁତ୍ର କାମନାରେ କୁବେରଙ୍କପିତା ବିଶ୍ରବାଙ୍କ ନିକଟକୁ ଯିବାପାଇଁ ପରାମର୍ଶ ଦେଲେ । ନିକଷା ପିତୃ ଉପଦେଶ ଅନୁସାରେ ବିଶ୍ରବାଙ୍କ ସମୀପରେ ନିଜର ଅଭିପ୍ରାୟ ବ୍ୟକ୍ତ କଲା । ଋଷି ତାଙ୍କୁ ପତ୍ନୀରୂପେ ଗ୍ରହଣ କରିଥିଲେ । ନିକଷାଙ୍କ ଗର୍ଭରୁ ମୁନିଙ୍କ ଔରସରେ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ନାମରେ ତିନି ପୁତ୍ର ଏବଂ ସୂର୍ପଣଖା ନାମରେ ଏକ କନ୍ୟା ଜାତ ହୋଇଥିଲେ । ରାବଣ କୁବେରଙ୍କର ବୈମାତ୍ରେୟ ଭ୍ରାତା । ଦିନେ ଯକ୍ଷରାଜ କୁବେର ପିତାଙ୍କୁ ଦେଖିବା ପାଇଁ ଆସିଲେ । ବିଶ୍ରବା ତାଙ୍କୁ ରାବଣାଦିଙ୍କର ଜନ୍ମ ବୃତ୍ତାନ୍ତ ଜ୍ଞାପନ କଲେ ଏବଂ ସେମାନଙ୍କ ଭ୍ରାତୃତୁଲ୍ୟ ସ୍ନେହ କରିବା ପାଇଁ କହିଲେ । ବିଶ୍ରବା ରାବଣଙ୍କୁ ପରିଶ୍ରମ କରି କୁବେର ତୁଲ୍ୟ ଧନଶାଳୀ ହେବା ପାଇଁ ଉପଦେଶ ଦେଲେ । ଈର୍ଷାପରାୟଣ ରାବଣ ପିତାଙ୍କୁ କହିଲେ—ମୁଁ ନିଶ୍ଚୟ କୁବେରଙ୍କଠାରୁ ଅଧିକ ଧନଶାଳୀ ଓ ବଳବାନ୍ ହେବି । ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣାଦି ତପସ୍ୟା ବଳରେ ବ୍ରହ୍ମାଙ୍କଠାରୁ ବର ଲାଭ କରିଥିଲେ । ରାବଣ ବ୍ରହ୍ମାଙ୍କ ବର ପ୍ରଭାବରୁ ଦେବ, ଦାନବ, ଯକ୍ଷ, ରକ୍ଷ, ଗନ୍ଧର୍ବ ଓ ନାଗାଦିଙ୍କୁ ଜୟ କରିଥିଲେ ଏବଂ ବିଷ୍ଣୁବାହନ ଗରୁଡ଼ଙ୍କ ଦ୍ୱାରା ମଧ୍ୟ ଅବଧ୍ୟ ହୋଇଥିଲେ । ସୁମାଳୀ ନିଜ ନାତିମାନଙ୍କ ବର କଥା ଶୁଣି ରାବଣଙ୍କୁ ତାଙ୍କର ପୂର୍ବବାସ ଲଙ୍କାର ସକଳ ବିଷୟ କହିଲେ । ରାବଣ ଶୀଘ୍ର

ଲଙ୍କା ପରିତ୍ୟାଗ କରିବା ପାଇଁ କୁବେରଙ୍କୁ ଅନୁରୋଧ କଲେ । ଯଦି ସେ ନ ଯା'ନ୍ତି ତେବେ ଯୁଦ୍ଧ କରିବା ପାଇଁ ମଧ୍ୟ କହିଲେ । କୁବେର ପିତାଙ୍କ ପରାମର୍ଶ ମତେ ଲଙ୍କା ପରିତ୍ୟାଗ କରି ଅଳକାନଗରୀକୁ ଗଲେ ଏବଂ ରାବଣ ରାକ୍ଷସ ବଳ ସହିତ ଲଙ୍କାରେ ନିବାସ କରି ରହିଲେ ।

(ରାମାୟଣ – ଉତ୍ତର)

**କୁବ୍ଜା**—(କୁବୁଜା ଦେଖ)

**କୁମାର**—ଦେବ ସେନାପତି କାର୍ତ୍ତିକେୟଙ୍କର ଅପର ନାମ । ତାରକାସୁରର ଉଚ୍ଛେଦ ସାଧନ ପାଇଁ ହର-ଗୌରୀଙ୍କ ମିଳନରୁ ଏହାଙ୍କର ଉତ୍ପତ୍ତି ।

(କାର୍ତ୍ତିକେୟ ଦେଖ)

**କୁମାରିକା**—ରାଜା ଭରତଙ୍କ ପୌତ୍ରୀ ଏବଂ ସିଂହଳ ନରପତି ଶତଶୃଙ୍ଗଙ୍କ କନ୍ୟା । ଶତଶୃଙ୍ଗଙ୍କର ଇନ୍ଦ୍ରଦ୍ୱୀପାଦି ଛଅ ପୁତ୍ର ଏବଂ କୁମାରିକା ନାମ୍ନୀ ଗୋଟିଏ କନ୍ୟା ଥିଲା । କୁମାରିକାର ମୁଖ କର୍କରିକାକୃତି ଅର୍ଥାତ୍ ମେଷ ଶାବକର ମୁଖତୁଲ୍ୟ ।

ଏକଦା ଏକ କ୍ଷୁତ୍ପିପାସାକୁଳ ଯୂଥଭ୍ରଷ୍ଟ ମେଷ ମହାସାଗର ସଙ୍ଗମରେ ଲତାସମୂହ ଯୋଗେ ଜଡ଼ିତ ହୋଇ ପ୍ରାଣତ୍ୟାଗ କରିଥିଲା । ତାହାର ଦେହ ସାଗରସଙ୍ଗମ ଜଳରେ ପଡ଼ିଲା ମାତ୍ର ମୁଣ୍ଡଟି ଲତା ଦ୍ୱାରା ଆବଦ୍ଧ ହୋଇ-ଥିବାରୁ ଜଳମଗ୍ନ ହେଲା ନାହିଁ । ସାଗରସଙ୍ଗମର ମାହାତ୍ମ୍ୟ ଯୋଗୁଁ ଏହି କର୍କରୀ (ମେଷ) ସିଂହଳ ରାଜକନ୍ୟା ହୋଇ ଜନ୍ମ ହେଲା । ତାର ଦେହ ଗୋଟିଏ ଅତି ସୁନ୍ଦରୀ ନାରୀ ତୁଲ୍ୟ ହେଲେ ମଧ୍ୟ ମୁହଁଟି ମେଷୀ ପରି ହେଲା । ଅପୁତ୍ରିକ ରାଜାଙ୍କର ସନ୍ତାନ ହୋଇଛି ବୋଲି ପ୍ରଜାମାନେ ଅତି ଆନନ୍ଦିତ ହେଲେ । କିନ୍ତୁ କନ୍ୟାଟିର ମୁହଁ ଦେଖି ସମସ୍ତେ ବିବ୍ରତ ହେଲେ । କନ୍ୟାଟି ବୟଃପ୍ରାପ୍ତ ହେବା ପରେ ଦର୍ପଣରେ ନିଜ ମୁଖର ପ୍ରତିବିମ୍ବ ଦେଖିବାମାତ୍ରେ ତାଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ସ୍ମରଣ ହେଲା । ସେ ପିତାଙ୍କ ଅନୁମତି ନେଇ କେତେକ ସହଚରୀ ଓ ପୂଜା ସମ୍ଭାର ସହିତ କଙ୍କାଳ ଯେଉଁଠାରେ ପଡ଼ିଥିଲା ସେଠାକୁ ଗଲେ । କଙ୍କାଳଗୁଡ଼ିକ ସେ ସମୁଦ୍ରରେ ନିକ୍ଷେପ କଲେ । ମୁଖର ଅସ୍ଥି ସମୁଦ୍ରଜଳରେ ପଡ଼ିବା ମାତ୍ରେ ତାଙ୍କର ମୁଖ ଠିକ୍ ସ୍ତ୍ରୀ ମୁଖପରି ହୋଇଗଲା । ସେଠାରେ ରହି କୁମାରିକା ଶିବାରାଧନାରେ ରତ ହେଲେ । ଶିବ ବର ପ୍ରଦାନ ଅଭିଳାଷରେ ଆବିର୍ଭୂତ ହେଲେ । ଶିବଙ୍କୁ ସର୍ବଦା ସେ ସ୍ଥାନରେ ଉପସ୍ଥିତ ହେବା ପାଇଁ କୁମାରୀ ପ୍ରାର୍ଥନା କଲେ । ଶିବ ଏଥିରେ

ସମ୍ମତ ହେଲେ । ରାଜକୁମାରୀ ସେଠାରେ ଏକ ମନ୍ଦିର ନିର୍ମାଣ କରି ଏକ ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ । ଏହି ଶିବଲିଙ୍ଗ କର୍କରେଶ୍ୱର ନାମରେ ଖ୍ୟାତ । ସ୍ୱସ୍ତିକ ନାଗ, ମୃତ୍ତିକା ଭେଦ କରି କୁମାରିକାଙ୍କୁ ଦେଖିବା ପାଇଁ ଆସିଲେ । ସେ ହେତୁ ମନ୍ଦିର ପାଖରେ ଗୋଟିଏ କୂପ ଉତ୍ପନ୍ନ ହେଲା । ଏହି କୂପ ଗଙ୍ଗାଜଳରେ ପୂର୍ଣ୍ଣ ହେଲା । ଶିବ ବର ଦେଲେ, ଯେ କାର୍ତ୍ତିକ ମାସ କୃଷ୍ଣ ଚତୁର୍ଦ୍ଦଶୀ ଦିନ ଏହି କୂପଜଳରେ ସ୍ନାନ କରିବ ଓ ପିତୃ ତର୍ପଣ କରିବ ଏବଂ କର୍କରେଶ୍ୱରଙ୍କୁ ଆରାଧନା କରିବ ସେ ସକଳ ପାପରୁ ମୁକ୍ତ ହେବ, ଏବଂ ଯେଉଁମାନଙ୍କର ଅସ୍ଥି, ଦାହପରେ ଏହି ସାଗର ସ୍ଥଳରେ ପଡ଼ିବ ତାହାର ଅକ୍ଷୟ ସ୍ୱର୍ଗ ଲାଭ ହେବ । ଅନନ୍ତର କୁମାରିକା ସିଂହଳକୁ ପ୍ରତ୍ୟାଗମନ କରି ପିତାଙ୍କୁ ସବୁ କଥା ଜଣାଇଲେ । ରାଜ୍ୟର ଲୋକେ କୁମାରୀଙ୍କ ଅପୂର୍ବ ମୁଖଶ୍ରୀ ଦେଖି ଯୁଗପତ୍ ବିସ୍ମୟ ଓ ଆନନ୍ଦ ଅଭିଭୂତ ହେଲେ । ଶତଶୃଙ୍ଗ ଏ ସମସ୍ତ କଥା ଶୁଣି ପରମ ପ୍ରୀତ ହେଲେ ଏବଂ ସପରିବାରେ ରାଜ୍ୟର ବିଶିଷ୍ଟ ବ୍ୟକ୍ତି-ମାନଙ୍କ ସହିତ ସାଗରସଙ୍ଗମ ସ୍ଥଳରେ କର୍କରେଶ୍ୱରଙ୍କ ପୂଜା କରିଥିଲେ । କୁମାରିକା ମହାକାଳଙ୍କୁ ପତିରୂପେ ବରଣ କରି ତାଙ୍କ ସହିତ ରୁଦ୍ର ଲୋକକୁ ଗମନ କଲେ । ପାର୍ବତୀ ତାଙ୍କୁ ଆଲିଙ୍ଗନ କରି ସଖୀ ସମ୍ବୋଧନ କରିଥିଲେ । ଏହି କୁମାରୀଙ୍କ ନାମ ଚନ୍ଦ୍ରଲେଖା ହୋଇଥିଲା । (ସ୍କନ୍ଦପୁରାଣ)

**କୁମୁଦ**—ନାଗ ବିଶେଷ । ରାମାୟଣରେ ବର୍ଣ୍ଣିତ ବାନର ଯୋଦ୍ଧା ବିଶେଷ, ଗରୁଡ଼ଙ୍କ ପୁତ୍ର ।

**କୁମୁଦ୍‌ବତୀ**—କୁମୁଦ ନାମକ ନାଗର ଭଉଣୀ । ରାମଚନ୍ଦ୍ରଙ୍କ ପୁଅ କୁଶ ଏହାଙ୍କୁ ବିବାହ କରିଥିଲେ ।

**କୁମ୍ଭଋଷି**—ମୁନି ବିଶେଷ । ଅଗସ୍ତ୍ୟ ମୁନି ଏହାଙ୍କର ପୁତ୍ର ।

**କୁମ୍ଭକର୍ଣ୍ଣ**—ଲଙ୍କେଶ୍ୱର ରାବଣର କନିଷ୍ଠ ସହୋଦର । କଠୋର ତପସ୍ୟା ବଳରେ କୁମ୍ଭକର୍ଣ୍ଣ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିଥିଲା । ବ୍ରହ୍ମା ବର ଦେବାକୁ ଉପସ୍ଥିତ ହେବାମାତ୍ରେ ଦେବତାମାନେ ପ୍ରଜାପତିଙ୍କୁ କହିଲେ ଯେ ବର ନ ପାଇ ଏ ରାକ୍ଷସ ତ ଏପରି ଦୁଷ୍ଟ, ବରପାଇଲେ ଆଉ କଣ ସଂସାର ରଖିବ । ଦେବତାଙ୍କ କଥାରେ ବ୍ରହ୍ମା ସରସ୍ୱତୀଙ୍କୁ ସ୍ମରଣ କଲେ । ସ୍ମରଣ ମାତ୍ରେ ସରସ୍ୱତୀ ବ୍ରହ୍ମାଙ୍କ ନିକଟକୁ ଆସିଲେ । ବ୍ରହ୍ମା କହିଲେ—'ଭାରତୀ ! ତୁମେ ଦେବତାଙ୍କର ମଙ୍ଗଳ ପାଇଁ କୁମ୍ଭକର୍ଣ୍ଣ କଣ୍ଠରେ ବସି ରହ ।' ତାହାହିଁ ହେଲା । କୁମ୍ଭକର୍ଣ୍ଣ ବର ମାଗିଲା—'ମୁଁ ଯେପରି ବହୁବର୍ଷ ଯାଏ ଶୋଇ ରହିବି ଏବଂ ଛଅ ମାସ ନିଦ୍ରା ପରେ ଥରେ

ଇଟି ଆହାର ନ କରିବ, ମୋତେ ସେହିପରି ବର ଦିଅ । ବର ମାଗିବା ବେଳେ କୁମ୍ଭକର୍ଣ୍ଣ ଅଚେତନ ତୁଲ୍ୟ ରହିଥିଲା । ଚେତା ଆସିବା ପରେ ସେ ଭାବିଲା—ମୁଁ ଅଳ୍ପ ବର ମାଗିଲି । ମାତ୍ର ଆଉ କଣ ହେବ ? ବ୍ରହ୍ମବାକ୍ୟ ଟଳିବାର ନୁହେଁ ; ସେ ତାହା ଭାବି ବିଷଣ୍ଣ ହୋଇ ରହିଲା । ଲଙ୍କାକୁ ବାନରବଳ ଘେରିବା ସମୟରେ ଏହାର ନିଦ୍ରାକାଳ ପୂର୍ଣ୍ଣ ନୋହୁଣୁ ରାବଣ ବହୁ ଚେଷ୍ଟା କରି ଏହାକୁ ଉଠାଇଲା । ଶେଷରେ ଶ୍ରୀରାମଙ୍କ ବାଣରେ ଏହାର ମୃତ୍ୟୁ ଘଟିଲା । (ରାମାୟଣ-ଉତ୍ତର)

**କୁମ୍ଭାଣ୍ଡ କୁମ୍ଭାଣ୍ଡ, କୁଷ୍ମାଣ୍ଡ**— ବାଣାସୁରର ମନ୍ତ୍ରୀ । ବାଣ ଶ୍ରୀକୃଷ୍ଣଙ୍କ ନାତି ଅନିରୁଦ୍ଧଙ୍କୁ ବନ୍ଦୀକରି ବଧ କରିବା ପାଇଁ ଆଦେଶ ଦେଇଥିଲା । ଏହି ମନ୍ତ୍ରୀ ନିଜର ଯୁକ୍ତି ବଳରେ ତାଙ୍କୁ ରକ୍ଷା କରିଥିଲେ । ବାଣଙ୍କ ନିଧନ ପରେ ଏ ରାଜା ହେଲେ । (ହରିବଂଶ)

**କୁମ୍ଭୀନସୀ**—ରାବଣର ଭଉଣୀ । ଲବଣ ରାକ୍ଷସର ମାତା ।

**କୁମ୍ଭୀପାକ**— ଯମପୁରର ନରକ କୁଣ୍ଡ ବିଶେଷ । ଏଥିରେ ପାପୀମାନଙ୍କୁ ହାଣ୍ଡିରେ ପାକ କଲାଭଳି ଅଗ୍ନିରେ ରନ୍ଧାଯାଏ । (ମାର୍କଣ୍ଡେୟ ପୁରାଣ)

**କୁମ୍ଭୀର ଦୈତ୍ୟ**—ପାଣ୍ଡବମାନେ ଜତୁଗୃହ ଦାହରୁ ପଳାୟନ କରିବା ପରେ ସୁର ନଦୀ ପାର ହେବା ସମୟରେ ଭୀମସେନ ସେହି ନଦୀକୁ ଡେଇଁ ଏ ରାକ୍ଷସର ଗର୍ଭ ଚିରି ଏହାକୁ ବିନାଶ କରିଥିଲେ । (ମହାଭାରତ)

**କୁରାନ୍ ବା କୋରାନ୍**— ଏହା ଆରବୀ ଭାଷାର ଗ୍ରନ୍ଥ । ଏହା ମୁସଲମାନମାନଙ୍କ ଧର୍ମଗ୍ରନ୍ଥ । ମୁସଲମାନମାନେ ବିଶ୍ୱାସ କରନ୍ତି ଯେ ଈଶ୍ୱର ଏ ଗ୍ରନ୍ଥ ଲିଖିତ ବାକ୍ୟମାନଙ୍କୁ ଦୂତ ଜେବ୍ରାଇଲଙ୍କ ଦ୍ୱାରା ହଜରତ୍ ମହମ୍ମଦଙ୍କ ନିକଟକୁ କହି ପଠାଇଥିଲେ । ଏ ଗ୍ରନ୍ଥ ୩୦ ଭାଗରେ ବିଭକ୍ତ । ପ୍ରତି ଭାଗକୁ 'ପାରା' କହନ୍ତି । ପାରାମାନଙ୍କରେ ଥିବା ପ୍ରତି ଶ୍ଳୋକକୁ 'ସୁର' କହନ୍ତି । କୁରାନ୍ ଗ୍ରନ୍ଥକୁ ମାନ୍ୟରେ ମୁସଲମାନମାନେ 'କୁରାନ୍ ସରିଫ୍' 'କୁରାନ୍ ମଜିଦ୍' ବୋଲି ଡାକନ୍ତି । (ଭାଷାକୋଷ)

**କୁରୁ**—ଭରତବଂଶୀୟ ମହାରାଜ ସମ୍ବରଣଙ୍କ ପୁତ୍ର । ମହିଷୀ ତପତୀଙ୍କ ଗର୍ଭରୁ ଏହାଙ୍କର ଜନ୍ମ । ଏ ଅତି ଧର୍ମପରାୟଣ ରାଜା ଥିଲେ । ବହୁବର୍ଷ ଯାଏଁ କୁରୁ ଜାଙ୍ଗଲ ନାମକ ସ୍ଥାନରେ ଏ କଠୋର ତପସ୍ୟା କରିଥିଲେ । ଏହି ହେତୁ ଏ ସ୍ଥାନ, ଏହାଙ୍କ ନାମ ଅନୁସାରେ କୁରୁକ୍ଷେତ୍ର ବୋଲି ବିଖ୍ୟାତ ।

ମହାରାଜ କୁରୁଙ୍କ ନାମାନୁସାରେ ତାଙ୍କ ବଂଶକୁ କୁରୁବଂଶ ବୋଲି କୁହାଯାଏ । ତାଙ୍କ ବଂଶୀୟ ନରପତିମାନେ ମଧ୍ୟ କୁରୁବଂଶୀୟ ରାଜା ବୋଲି ପ୍ରସିଦ୍ଧି ଲାଭ କରିଥିଲେ । ଅବିକ୍ଷିତ୍, ଅଭିଷ୍ୟନ୍ତ, ଚୈତ୍ରରଥ, ମନୁ ଓ ଜନମେଜୟ ନାମରେ ଏହାଙ୍କର ପାଞ୍ଚ ପୁତ୍ର ଥିଲେ । ଏହାଙ୍କର ରାଜଧାନୀର ନାମ ହସ୍ତିନାପୁର । ଭରତବଂଶୀୟ ରାଜା ହସ୍ତୀଙ୍କ ନାମାନୁସାରେ ନଗରର ନାମକରଣ ହୋଇଥିଲା ହସ୍ତିନାପୁର । ହସ୍ତୀଙ୍କ ପିତାଙ୍କ ନାମ ସୁହୋତ୍ର ଏବଂ ମାତାଙ୍କ ନାମ ସୁବର୍ଣ୍ଣା । ସୁବିଖ୍ୟାତ ଇକ୍ଷ୍ୱାକୁ ସୁବର୍ଣ୍ଣାଙ୍କ ପିତା । ହସ୍ତୀ ତ୍ରିଗର୍ତ୍ତ ରାଜତନୟା ଯଶୋଧରାଙ୍କୁ ବିବାହ କରିଥିଲେ । ହସ୍ତୀଙ୍କ ପୁତ୍ରର ନାମ ଥିଲା ବିକୁଣ୍ଠନ । (ମହାଭାରତ)

**କୁରୁକ୍ଷେତ୍ର**—ହିନ୍ଦୁମାନଙ୍କର ଏକ ପ୍ରାଚୀନ ତୀର୍ଥ । ଏହା ସରସ୍ୱତୀ ନଦୀର ବାମ କୂଳରେ ଓ ଅମ୍ବାଲା ଏବଂ ଦିଲ୍ଲୀ ମଧ୍ୟରେ ଅବସ୍ଥିତ । ବୈଦିକ ଯୁଗରେ ଏଠାରେ ଋଷିମାନେ ଯଜ୍ଞ କରୁଥିଲେ । ଏଠାରେ ଥିବା ବ୍ରହ୍ମସର ନାମକ ଏକ ପୁଣ୍ୟ ସରୋବରରେ ସ୍ନାନ କରି ପରଶୁରାମ କ୍ଷତ୍ରିୟ ହତ୍ୟାଜନିତ ପାପରୁ ମୁକ୍ତ ହୋଇଥିଲେ । ଚନ୍ଦ୍ରବଂଶୀୟ ରାଜା କୁରୁ ଏଠାରେ ଗୋଟିଏ ସରୋବର ନିକଟରେ ତପସ୍ୟା କରିଥିଲେ । ଏଠାରେ ମହାଭାରତୋକ୍ତ କୁରୁ-ପାଣ୍ଡବ ଯୁଦ୍ଧ ହେବା ପରେ ସ୍ଥାଣୁ ନାମକ ଏକ ଶିବଲିଙ୍ଗ ସ୍ଥାପିତ ହେଲା ଓ ଏଠାରେ ସ୍ଥାଣ୍ୱୀଶ୍ୱର ବା ଥାନେଶ୍ୱର ନାମକ ନଗର ମଧ୍ୟ ସ୍ଥାପିତ ହେଲା । ଏଠାରେ ପୁଷ୍ପଭୂତ ରାଜା, ବର୍ଦ୍ଧନ ନାମରେ ଏକ ରାଜବଂଶ ପ୍ରତିଷ୍ଠା କଲେ ଓ ଉକ୍ତ ରାଜବଂଶରେ ପ୍ରସିଦ୍ଧ ମହାରାଜ ହର୍ଷବର୍ଦ୍ଧନ ଜନ୍ମିଲେ । ଗ୍ରହଣ ଓ ସେହିଭଳି ପୁଣ୍ୟ ଅବସରରେ ଏଠାରେ ବଡ ବଡ଼ ମେଳା ଅଦ୍ୟାବଧି ହେଉଛି । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**କୁରୁମ**—ପୁରୀ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ଅନେକ କୁରୁମ ଅଛନ୍ତି । ଖଇ, ଉଖୁଡ଼ା ଓ ମୁଆଁ ପାଣିକୁ ଫିଙ୍ଗିଲେ ଏମାନେ ଉଠି ତାହା ଖାଆନ୍ତି । ପ୍ରବାଦ ଅଛି ଯେ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ ଅମଳରେ ମନୁଷ୍ୟମାନେ ବଡ଼ ଦେଉଳକୁ ପଥର ବୋହି ବୋହି ସେମାନଙ୍କ ପିଠିରେ ବଣ ହୋଇଯିବାରୁ କୁରୁମ ପାଲଟି ଯାଇ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ଏପର୍ଯ୍ୟନ୍ତ ଅଛନ୍ତି । ଯମୁନା ନଦୀରେ, ମଥୁରା ଓ ବୃନ୍ଦାବନରେ ଅନେକ କୁରୁମ ଦେଖାଯାନ୍ତି ।

(୨) ବିଷ୍ଣୁଙ୍କ ଦ୍ୱିତୀୟ ଅବତାର । ମହା ପ୍ରଳୟ କାଳରେ ବିଷ୍ଣୁ କୂର୍ମରୂପ ଧରି ପୃଥିବୀକୁ ପୃଷ୍ଠରେ ବହନ କରି ଉଦ୍ଧାର କରିଥିଲେ ।

(୩) ବାସୁକିର ଆସନଭୂତ କଚ୍ଛପ ବିଶେଷ । (ଭାଷାକୋଷ)

**କୁଳକୁଣ୍ଡଳିନୀ**—ତନ୍ତ୍ରଶାସ୍ତ୍ର ପ୍ରସିଦ୍ଧ ମୂଳାଧାରସ୍ଥ ସର୍ପୀ ରୂପୀ ଶକ୍ତି ବିଶେଷ । ଏ ଶକ୍ତି ସର୍ପ ପରି ମୂଳାଧାରର ସ୍ୱୟଂଭୂଲିଙ୍ଗକୁ ଘେରି କୁଣ୍ଡଳାକୃତ ହୋଇ ସୁପ୍ତାବସ୍ଥାରେ ଥାଆନ୍ତି । ସାଧକ ବାୟୁସାଧନା ବା ପୂରକ, କୁମ୍ଭକ ଓ ରେଚକ ପ୍ରକ୍ରିୟା ଦ୍ୱାରା ଉକ୍ତ ଶକ୍ତିକୁ ଜାଗରିତା କରାଇ ପାରିଲେ ସିଦ୍ଧି ଲାଭ କରେ ।

(ଭାଷାକୋଷ)

**କୁଳନାୟିକା**—ବାମ ମାର୍ଗ ବା ତନ୍ତ୍ରୋକ୍ତ କୌଳଧର୍ମ ଅନୁସାରେ ପଞ୍ଚମକାର ପୂଜାରେ ଯେଉଁ ସ୍ତ୍ରୀମାନଙ୍କୁ ପୂଜା କରିବାର ବିଧି ଅଛି । ଏମାନେ ସଂଖ୍ୟାରେ ନଅ, ଯଥା—ନଟୀ, କାପାଳିନୀ, ବେଶ୍ୟା, ରଜକୀ, ନାପିତାଙ୍ଗନା, ବ୍ରାହ୍ମଣୀ, ଶୂଦ୍ରକନ୍ୟା, ଗୋପାଳକନ୍ୟା ଓ ମାଳାକାର କନ୍ୟା । ଏହାର ପ୍ରମାଣ ଶ୍ଳୋକ—

ନଟୀ, କାପାଳିକୀ, ବେଶ୍ୟା, ରଜକୀ ନାପିତାଙ୍ଗନା,
ବ୍ରାହ୍ମଣୀ, ଶୂଦ୍ରକନ୍ୟାଚ, ତଥା ଗୋପାଳକନ୍ୟକା,
ମାଳାକାରସ୍ୟ କନ୍ୟାଚ, ନବକନ୍ୟାଃ ପ୍ରକୀର୍ତ୍ତିତାଃ ।

(ଭାଷାକୋଷ)

**କୁଳପତି**—ପୁରାକାଳରେ ଦଶହଜାର ବିଦ୍ୟାର୍ଥୀଙ୍କୁ ଖାଦ୍ୟ ଓ ଶିକ୍ଷା ପ୍ରଦାନ କରି ନିଜ ପାଖରେ ରଖାଇବା ଋଷି ।

ପ୍ରମାଣ ଯଥା :—

ମୁନୀନାଂ ଦଶସାହସ୍ରଂ ଯୋଽନ୍ନପାନାଦ ପୋଷଣାତ
ଅଧ୍ୟାପୟତି ବିପ୍ରର୍ଷିରସୌ କୁଳପତିଃ ସ୍ମୃତଃ ।

ଏ ଯୁଗର University ର Vice-Chancellor ଙ୍କୁ କୁଳପତି ଆଖ୍ୟା ଦେବା ଏକାନ୍ତ ହାସ୍ୟାସ୍ପଦ ପରି ମନେହୁଏ ଏବଂ ପ୍ରକୃତ ଶବ୍ଦର ବ୍ୟବହାର ହୋଇନାହିଁ ବୋଲି ଜଣାପଡ଼େ ।

**କୁଳ ପର୍ବତ**—ହିନ୍ଦୁ ପୁରାଣ ମତରେ ଆଠ ଦିଗରେ ପୃଥିବୀକୁ ଟେକି ଧରିଥିବା ପର୍ବତ । ରାଜକବି କୃଷ୍ଣସିଂହ ତାଙ୍କ ମହାଭାରତ ଭୀଷ୍ମପର୍ବରେ କହିଛନ୍ତି—

ଋକ୍ଷବାନ, ଶକ୍ତିମାନ ଯେ ପାରିପାତ୍ର
ବିନ୍ଧ୍ୟ, ସହ୍ୟ, ମଳୟ, ମହେନ୍ଦ୍ର ସପତ ।

କୁଳ ପରବତ ତ ଅଟନ୍ତି ହେ ସ୍ୱଏ
ଏହାଙ୍କୁ ଊଣା ଆଉ ପର୍ବତ ସଭଏଁ ।

ପୂଜ୍ୟପାଦ ଜଗଦ୍‌ଗୁରୁ ଶଙ୍କର କହନ୍ତି—'ଅଷ୍ଟକୁଳାଚଳ ସପ୍ତ ସମୁଦ୍ରାଃ' । କାହାର କାହାର ମତରେ ମହେନ୍ଦ୍ର, ମଳୟ, ସହ୍ୟ, ଶୁକ୍ତିମାନ, ଋକ୍ଷ, ବିନ୍ଧ୍ୟ, ପାରିପାତ୍ର ଓ ହିମାଳୟ ।

**କୁଳଶିଖର**—ଓଡ଼ିଶାଖଣ୍ଡର କୃଷ୍ଣଭକ୍ତପରାୟଣ ଏକ ଧାର୍ମିକ ରାଜା । ସେ ପରମ ପଣ୍ଡିତ ଥିଲେ । 'ମୁକୁନ୍ଦମାଳା' ନାମକ ଶ୍ରୀକୃଷ୍ଣ ସ୍ତୋତ୍ରର ରଚକ । ଗୁରୁଙ୍କ ପଦରଜ ମୁଣ୍ଡ ଉପରୁ ଅଜାଣତରେ ଝାଡ଼ି ଦେବା ଅପରାଧ ଯୋଗେ ଏହାଙ୍କୁ ଅଗ୍ନିରେ ପାଚି ଯାଇଥିବା ତମ୍ବା ପଟା ଉପରେ ଦଣ୍ଡ ପ୍ରମାଣ କରିବାକୁ ହେଲା । ଶ୍ରୀକୃଷ୍ଣ ପରମ ପରିତୋଷ ହୋଇ ଏହାଙ୍କୁ ଉଦ୍ଧାର କରିଥିଲେ । ଶ୍ରୀକୃଷ୍ଣଙ୍କ ଦର୍ଶନରେ ତାଙ୍କ କଣ୍ଠରୁ ସ୍ଫୁରି ଉଠିଲା—'ବନ୍ଦେ ମୁକୁନ୍ଦମରବିନ୍ଦ ଦଳାୟତାକ୍ଷଂ', ଏହା ମୁକୁନ୍ଦମାଳାର ପ୍ରଥମ ଶ୍ଳୋକର ପ୍ରଥମ ପାଦ । (ଦାର୍ଢ୍ୟତାଭକ୍ତି ୧୬ ଅଧ୍ୟାୟ)

**କୁଶ**—ଅଯୋଧ୍ୟାଧିପତି ମହାରାଜ ରାମଚନ୍ଦ୍ରଙ୍କ ଜ୍ୟେଷ୍ଠ ପୁତ୍ର । ସୀତାଙ୍କ ଗର୍ଭରୁ ବାଲ୍ମୀକିଙ୍କ ଆଶ୍ରମରେ ଏହାଙ୍କର ଜନ୍ମ । କୁଶ ବଡ଼ ଲବ ସାନ । ଏମାନେ ରାମଙ୍କ ଯଜ୍ଞସଭାରେ ବାଲ୍ମୀକି ରଚିତ ରାମାୟଣ ଗାନକରି ସମସ୍ତଙ୍କୁ ମୁଗ୍ଧ କରିଥିଲେ । ପରେ ରାମଚନ୍ଦ୍ରଙ୍କ ସହିତ ଏମାନଙ୍କର ପରିଚୟ ହେଲା । କୁଶ କୁଶାବତୀ ନଗରୀରେ ରାଜତ୍ୱ କରିଥିଲେ । ଶ୍ରୀରାମଚନ୍ଦ୍ରଙ୍କ ଅନ୍ତେ ଅଯୋଧ୍ୟା ଶ୍ରୀହୀନ ହେବାରୁ ଅଯୋଧ୍ୟାର ଅଧିଷ୍ଠାତ୍ରୀ ଦେବୀ କୁଶଙ୍କୁ ସକଳ କଥା ଜଣାଇ ତାଙ୍କୁ ଅଯୋଧ୍ୟା ଫେରି ଆସିବାକୁ ଅନୁରୋଧ କଲେ । ଅନନ୍ତର କୁଶ କୁଶାବତୀ ତ୍ୟାଗକରି ଅଯୋଧ୍ୟାରେ ରାଜତ୍ୱ କଲେ । (ରଘୁବଂଶ ଓ ରାମାୟଣ) ଭବଭୂତିଙ୍କ ରଚିତ ଉତ୍ତରରାମଚରିତ ନାଟକରେ କୁଶଙ୍କ ନିପୁଣ ଧନୁର୍ବିଦ୍ୟାର ଯଥେଷ୍ଟ ପରିଚୟ ମିଳେ ।

(୨) ପୁରାଣୋକ୍ତ ଦ୍ୱୀପବିଶେଷ । 'ଶ୍ରୀକୃଷ୍ଣ କେଶରୀ ପୁରାଣ'ରେ ୧୨୨ ପୃଷ୍ଠାରେ କବି ନାରାୟଣ ରାୟଗୁରୁ ଏହି ଦ୍ୱୀପର ଯେଉଁ ସରଳ ବର୍ଣ୍ଣନା କରିଛନ୍ତି ତାହାର ସଂକ୍ଷିପ୍ତ ସୂଚନା ଦିଆଯାଉଛି—କୁଶ ଦ୍ୱୀପର ୮ କୋଣରେ ଆଠଗୋଟି ପର୍ବତ ଅଛି । ପୂର୍ବରେ ବଭ୍ରୁଗିରି ଓ ଉତ୍ପିକୂଳା ନଦୀ ପ୍ରବାହିତା । ଅଗ୍ନିକୋଣରେ ପ୍ରଚଣ୍ଡ ପର୍ବତ ଓ ମିତ୍ରବୃନ୍ଦା ନଦୀ ଅଛି । ଦକ୍ଷିଣ ଦିଗରେ ଚନ୍ଦ୍ରକୂଟ ପର୍ବତ ଓ ମଧୁ ନଦୀ । ନୈଋତରେ ହରିରାମ ପର୍ବତ ଓ ମୁକ୍ତବୃନ୍ଦା

ନଦୀ । ପଶ୍ଚିମ ଦିଗରେ ଦେବନୀଳ ପର୍ବତ ଓ ଅମରକାବେରୀ ନଦୀ । ବାୟବ୍ୟ କୋଣରେ ଦ୍ରବଣ ପର୍ବତ ଓ ଘୃତଚ୍ୟୁତା ନଦୀ । ସେହି ନଦୀ ତଟରେ ବ୍ରହ୍ମଜିତ ନଗରରେ ପାଞ୍ଚ ଲକ୍ଷ ଲୋକଙ୍କ ବସତି । ହିରଣ୍ୟରୋମା ସେ ଦେଶର ରାଜା । ପ୍ରିୟବ୍ରତ ତାଙ୍କର ପିତା । ଘୃତଚ୍ୟୁତା ନଦୀର ଉତ୍ତର ଦିଗରେ ଅତିରୋମା ନାମକ ଏକ ପର୍ବତ ଅଛି । ଚକ୍ରବର୍ତ୍ତୀ ନଦୀ ସେଠାରେ ବହିମାନା । ଗନ୍ଧର୍ବମାନେ ଏହି ନଦୀର ଜଗୁଆଳୀ । ବ୍ରହ୍ମଜିତ ନଗରର ଈଶାନ କୋଣରେ କୈଳାସ ପର୍ବତ ଅବସ୍ଥିତ ।

ଉକ୍ତ କବି ପୀତାମ୍ବର ଦାସଙ୍କ 'ନୃସିଂହପୁରାଣ'ରେ ଲେଖା ଅଛି— କୁଶ ଦ୍ୱୀପ ସପ୍ତଦ୍ୱୀପ ମଧ୍ୟରେ ଏକତମ । ଏହାର ଚତୁର୍ଦ୍ଦିଗ ଘୃତ ସମୁଦ୍ର ଦ୍ୱାରା ପରିବେଷ୍ଟିତ ।

**କୁଶଧ୍ୱଜ**—ମିଥିଳା ରାଜା ହ୍ରସ୍ୱରୋମାଙ୍କ ପୁତ୍ର ଓ ସୀତାଙ୍କ ଖୁଲ୍ଲତାତ (ଦଦେଇ) । ସୀତାଙ୍କର ପିତାଙ୍କ ନାମ ସୀରଧ୍ୱଜ ଜନକ । ସୀରଧ୍ୱଜଙ୍କ କନିଷ୍ଠ ଭ୍ରାତା କୁଶଧ୍ୱଜ । ଏହାଙ୍କର ଜ୍ୟେଷ୍ଠା କନ୍ୟା ମାଣ୍ଡବୀଙ୍କୁ ଭରତ ଓ କନିଷ୍ଠା ଶ୍ରୁତକୀର୍ତ୍ତିଙ୍କୁ ଶତ୍ରୁଘ୍ନ ବିବାହ କରିଥିଲେ । ସୀରଧ୍ୱଜ ରାଜା ସୁଧନ୍ୱାଙ୍କୁ ପରାସ୍ତ କରି ତାଙ୍କର ସାଙ୍କାଶ୍ୟ ନାମକ ରାଜ୍ୟ ନିଜର କନିଷ୍ଠ ଭ୍ରାତା କୁଶଧ୍ୱଜଙ୍କୁ ଅର୍ପଣ କରିଥିଲେ । କୁଶଧ୍ୱଜଙ୍କର ପୂର୍ବପୁରୁଷ ନିମି । ନିମିଙ୍କ ପୁତ୍ର ମିଥି । ଏହି ମିଥିଙ୍କ ଅଧିକୃତ ରାଜ୍ୟ ମିଥିଳା ନାମରେ ବିଖ୍ୟାତ । ମିଥିଙ୍କ ପୁତ୍ର ଜନକଙ୍କଠାରୁ ତଦ୍‌ବଂଶୀୟ ସମସ୍ତ ରାଜାଙ୍କୁ ଜନକ ଏହି ଉପନାମରେ ଅଭିହିତ କରାଯାଇଥିଲା । (ରାମାୟଣ-ଆଦିକାଣ୍ଡ)

**କୁଶନାଭ**—ମହାରାଜ କୁଶଙ୍କ ପୁତ୍ର । ପ୍ରାଚୀନକାଳରେ ପ୍ରଜାପତି ବ୍ରହ୍ମାଙ୍କଠାରୁ କୁଶ ନାମକ ଏକ ପରାକ୍ରମଶାଳୀ ପୁତ୍ର ଜନ୍ମ ହୋଇଥିଲା । ସେହି କୁଶଙ୍କର ଚାରି ପୁତ୍ର ଥିଲେ । କୁଶାମ୍ବ ବା କୁଶାସ୍ୱ, କୁଶନାଭ, ଅମୂର୍ତ୍ତିରଜ ଓ ବସୁ ଏହି ଚାରି ଜଣ କୁଶଙ୍କର ପୁତ୍ର । କୁଶାମ୍ବଙ୍କ ଦ୍ୱାରା କୌଶାମ୍ବୀ, କୁଶନାଭଙ୍କ ଦ୍ୱାରା ମହୋଦୟ, ଅମୂର୍ତ୍ତିରଜଙ୍କ ଦ୍ୱାରା ଧର୍ମାରଣ୍ୟ ଏବଂ ବସୁଙ୍କ ଦ୍ୱାରା ଗିରିବ୍ରଜ ନଗର ସ୍ଥାପିତ ହୋଇଥିଲା । ନୃପତି କୁଶନାଭଙ୍କର ଘୃତାଚୀ ଅପ୍‌ସରା ଗର୍ଭରେ ଅପୂର୍ବ ଲାବଣ୍ୟବତୀ ଏକଶତ କନ୍ୟା ଜନ୍ମିଥିଲେ । ଏକଦା ଏହି କନ୍ୟାମାନେ ଆନନ୍ଦର ସହିତ କ୍ରୀଡ଼ା କରୁଥିବାବେଳେ ପବନଦେବ ଏମାନଙ୍କ ରୂପରେ ମୁଗ୍ଧ ହୋଇ ପ୍ରଣୟପ୍ରାର୍ଥୀ ହେଲେ । କିନ୍ତୁ ସେମାନେ ପିତାଙ୍କ ଅନୁମତି ବ୍ୟତୀତ ଏଥିରେ ସମ୍ମତା ହେବେନାହିଁ ବୋଲି କହିଲେ ।

କ୍ରୋଧରେ ପବନ ସେମାନଙ୍କୁ ଶାପ ଦେଲେ ଯେ ତୁମ୍ଭେମାନେ ଅରୂପବତୀ ଓ କୁବ୍ଜ ହୋଇଯାଅ । ତାହାହିଁ ହେଲା । କନ୍ୟାମାନେ ବିନୟପୂର୍ବକ ଏହାର ପ୍ରତିକାର ଜିଜ୍ଞାସା କଲେ । ପବନ କହିଲେ ଯଦି କାମ୍ପିଲ୍ୟ ରାଜ୍ୟର ରାଜା ବ୍ରହ୍ମଦତ୍ତ ତୁମ୍ଭମାନଙ୍କୁ ବିବାହ କରିବେ, ତେବେ ତୁମ୍ଭମାନଙ୍କ ରୂପ ଲାବଣ୍ୟ ଫେରି ଆସିବ । କେତେକାଳ ପରେ ବ୍ରହ୍ମଦତ୍ତ ଏହା ଶୁଣିପାରି କନ୍ୟାମାନଙ୍କ ପାଣିଗ୍ରହଣ କଲେ ଏବଂ କନ୍ୟାମାନେ ପୂର୍ବପରି ଲାବଣ୍ୟବତୀ ହେଲେ । ଯେଉଁ ସ୍ଥାନରେ ପବନଦେବଙ୍କ ଶାପରେ କନ୍ୟାମାନେ କୁବ୍ଜା ହୋଇଥିଲେ, ସେହି ସ୍ଥାନ 'କାନ୍ୟକୁବ୍ଜ' ନାମରେ ପ୍ରସିଦ୍ଧ ହେଲା । ବର୍ତ୍ତମାନ ସେହି କାନ୍ୟ-କୁବ୍ଜର ନାମ କନୌଜ । ରାମାୟଣ ଯୁଗରେ ଏହା କୁଶନାଭଙ୍କ ରାଜଧାନୀ ମହୋଦୟ ନାମରେ ନାମିତ ହୋଇଥିଲା ।

**କୁଶିକ**—ମହର୍ଷି ବିଶ୍ୱାମିତ୍ରଙ୍କ ପିତାମହ ଓ ଗାଧିରାଜଙ୍କର ପିତା । ଗାଧିପୁତ୍ର ବିଶ୍ୱାମିତ୍ରଙ୍କର ବ୍ରାହ୍ମଣତ୍ୱ ସଞ୍ଚାରିତ ହୋଇଥିଲା । ତ୍ରିକାଳଦର୍ଶୀ ଚ୍ୟବନ ମହର୍ଷି ଜାଣିପାରିଲେ ଯେ, କୁଶିକବଂଶ ଯୋଗେ ତାଙ୍କ ବଂଶରେ କ୍ଷତ୍ରିୟତ୍ୱ ସଞ୍ଚାର ଘଟିବ । ନିଜ ବଂଶରେ କ୍ଷତ୍ରିୟତ୍ୱ ସଞ୍ଚାର ବାଞ୍ଛନୀୟ ନୁହେଁ ବୋଲି ଭାବି ଚ୍ୟବନ, କୁଶିକ ବଂଶ ଧ୍ୱଂସ କରିବା ପାଇଁ ମନସ୍ଥ କଲେ । ମାତ୍ର ତାଙ୍କର ସକଳ ଚେଷ୍ଟା ପଣ୍ଡ ହେଲା । ଗାଧିରାଜକନ୍ୟାଙ୍କୁ ଚ୍ୟବନବଂଶଜ ଋଚୀକ ମହର୍ଷି ବିବାହ କଲେ । ଏହି ବିବାହ ଯୋଗୁ ମହର୍ଷି ଜମଦଗ୍ନି ଜାତ ହେଲେ । ପରଶୁରାମ ଏହି ଜମଦଗ୍ନିଙ୍କର କନିଷ୍ଠ ପୁତ୍ର ।

**କୂର୍ମ**—(କୂର୍ମ ଦେଖ) (ମହାଭାରତ-ଅନୁଶାସନ)

**କୃତବର୍ମା, କୃତବୀର୍ଯ୍ୟ**—ଯଦୁବଂଶୀୟ ରାଜା କନକଙ୍କ ପୁତ୍ର । ଏହାଙ୍କର ଚାରି ଭାଇ କୃତବୀର୍ଯ୍ୟ, କୃତୌଜା, କୃତବର୍ମା, କୃତାଗ୍ନି । କୃତବୀର୍ଯ୍ୟଙ୍କ ବିଖ୍ୟାତି ପୁତ୍ର ସହସ୍ରାର୍ଜ୍ଜୁନ ପରଶୁରାମଙ୍କ ଦ୍ୱାରା ନିହତ ହୋଇଥିଲେ ।

(କାର୍ତ୍ତବୀର୍ଯ୍ୟ ଦେଖ)

**କୃପ**—ମହାଭାରତୋକ୍ତ ଅଶ୍ୱତ୍ଥାମାଙ୍କ ମାମୁଁ । ଶରଦ୍ୱତ ଋଷିଙ୍କ ଔରସରେ ଜାନପଦୀ ଅପ୍ସରାଙ୍କ ଗର୍ଭରୁ କୃପ ଜନ୍ମିଥିଲେ । ଏ ଶର ପ୍ରୟୋଗରେ ସିଦ୍ଧହସ୍ତ ଥିଲେ ଓ କୁରୁକ୍ଷେତ୍ର ଯୁଦ୍ଧରେ କୌରବ ପକ୍ଷରେ ଯୋଗ ଦେଇ-ଥିଲେ । ଏ ପାଣ୍ଡବ ଓ କୌରବମାନଙ୍କୁ ଧନୁର୍ବିଦ୍ୟା ଶିକ୍ଷା ଦେଇଥିଲେ । ଏହାଙ୍କର ଭଉଣୀ କୃପୀ ଦ୍ରୋଣଙ୍କୁ ବିବାହ କରିଥିଲେ । ଏହାଙ୍କର ମୃତ୍ୟୁ ନାହିଁ । ଏ ଓ ଏହାଙ୍କର ଯାଆଁଳା ଭଉଣୀ କୃପୀ ଜନ୍ମିବାବେଳେ ଶର

ବୁଦାରେ ପଡ଼ିଥିବାରୁ ରାଜା ଶାନ୍ତନୁ ନିରାଶ୍ରୟ ଶିଶୁ ଦ୍ୱୟଙ୍କୁ ଦେଖି କୃପା କରି ନିଜ ଘରକୁ ଘେନି ଗଲେ ଓ ସେଠାରେ ଲାଳନପାଳନ କରି ବଢ଼ାଇ ଥିଲେ । ଶାନ୍ତନୁଙ୍କ କୃପା ଦ୍ୱାରା ପାଳିତ ହେବାରୁ ଏହାଙ୍କର ନାମ କୃପ ଓ ଭଉଣୀଙ୍କ ନାମ କୃପୀ ହେଲା । (ମହାଭାରତ-ଆଦିପର୍ବ, ଶବ୍ଦକୋଷ)

**କୃପୀ**—ଦ୍ରୋଣାଚାର୍ଯ୍ୟଙ୍କ ପତ୍ନୀ ଓ ଅଶ୍ୱତ୍ଥାମାଙ୍କ ମାତା । ଏ କୃପାଚାର୍ଯ୍ୟଙ୍କ ଭଗିନୀ ।

**କୃଷ୍ଣ**—ଏ ବିଷ୍ଣୁଙ୍କର ଅଷ୍ଟମ ଅବତାର । ବସୁଦେବ ଓ ଦେବକୀଙ୍କର ନନ୍ଦନ । କଂସ ଆଦି ଅସୁରମାନଙ୍କର ସଂହାରକ, ନନ୍ଦ ଯଶୋଦାଙ୍କର ପାଳିତ ପୁତ୍ର ଓ ଶ୍ରୀମତୀ ରାଧା ଓ ଗୋପୀମାନଙ୍କର ପ୍ରେମିକ ଓ ସହାୟକ । କୃଷ୍ଣ ଯଦୁବଂଶ ସମ୍ଭୂତ ଥିଲେ । ଏ ବସୁଦେବଙ୍କ ଔରସରେ କଂସର ଭଗିନୀ ଦେବକୀଙ୍କ ଗର୍ଭରେ ଜନ୍ମ ଲଭିଥିଲେ । କିନ୍ତୁ କଂସର ଭୟରେ ବସୁଦେବ ଏହାଙ୍କୁ ବନ୍ଦୀଶାଳାର ଅନ୍ତୁଡ଼ିଶାଳରୁ ଲୁଚାଇକରି ନେଇ ନନ୍ଦ ଯଶୋଦାଙ୍କ ଗୃହରେ ଛାଡ଼ିବାରୁ ସେମାନେ ଏହାଙ୍କୁ ପାଳି ବଢ଼ାଇଥିଲେ । ଏ ବାଲ୍ୟକାଳ ଗୋପପୁରରେ କଟାଇ ଷୋଳସହସ୍ର ଗୋପୀ ଓ ଗୋପାଳ ବାଳକମାନଙ୍କ ସଙ୍ଗେ କ୍ରୀଡ଼ା ଓ ଓ ରାସରେ ମାତିଥିଲେ । ରାଧା ଏହାଙ୍କର ପ୍ରିୟବନ୍ଧୁ ଥିଲେ । ବାଲ୍ୟକାଳରେ କଂସ ପ୍ରେରିତ ଅନେକ ଅସୁରମାନଙ୍କୁ ମାରି କୃଷ୍ଣ ଶେଷରେ କଂସକୁ ବଧ କରିଥିଲେ । ଏ ପାଣ୍ଡବମାନଙ୍କର ବିଶେଷତଃ ଅର୍ଜୁନଙ୍କର ସଖା ଥିଲେ । ଏ ପରେ ଯାଇ ଦ୍ୱାରକାରେ ରାଜା ହୋଇ ରୁକ୍ମିଣୀ ଓ ସତ୍ୟଭାମା ଆଦି ସାତ ଜଣଙ୍କୁ ବିବାହ କରିଥିଲେ । ଏହାଙ୍କ ସହାୟତା ଓ ପରାମର୍ଶରେ ପାଣ୍ଡବମାନେ କୁରୁକ୍ଷେତ୍ରରେ ଜୟୀ ହୋଇଥିଲେ । ଯଦୁକୁଳ ପ୍ରଭାସରେ ହଣାହଣି ହୋଇ ମରିବା ପରେ କୃଷ୍ଣଙ୍କୁ ଜରା ଶବର ଅରଣ୍ୟ ମଧ୍ୟରେ ଭ୍ରମରେ ମୃଗ ଜ୍ଞାନ କରି ବିଦ୍ଧ କରିବାରୁ ଏ ଦେହତ୍ୟାଗ କରିଥିଲେ । ଏହାଙ୍କର ପୁତ୍ରର ନାମ ପ୍ରଦ୍ୟୁମ୍ନ । (ହରିବଂଶ)

**କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ**—ସତ୍ୟବତୀଙ୍କ କାନୀନପୁତ୍ର । ସତ୍ୟବତୀ ଦାସରାଜ ବସୁର ପାଳିତା କନ୍ୟା । ଯମୁନାର ଏକ ଦ୍ୱୀପରେ ଧୀବରମାନଙ୍କ ଜାଲରେ ଗୋଟିଏ ମତ୍ସୀ ଧରାହୋଇଥିଲା । ଏହି ମତ୍ସୀର ଗର୍ଭରୁ ସତ୍ୟବତୀଙ୍କର ଜନ୍ମ । ଦେହରେ ମତ୍ସ୍ୟଗନ୍ଧ ଥିବାରୁ ଏହାର ନାମ ମତ୍ସ୍ୟଗନ୍ଧା ରଖାଯାଇଥିଲା । ଦିନେ ଧୀବରରାଜ ନୌକାରେ ଲୋକମାନଙ୍କୁ ପାରଉତ୍ତାର କରିବାପାଇଁ ମତ୍ସ୍ୟଗନ୍ଧାକୁ ନିଯୁକ୍ତ କରିଥିଲେ । ଘଟଣାକ୍ରମେ ମହର୍ଷି ପରାଶର ଏହି ଦ୍ୱୀପକୁ ଯିବାପାଇଁ ନୌକାରେ ବସିଲେ । ମତ୍ସ୍ୟଗନ୍ଧାର ସୌନ୍ଦର୍ଯ୍ୟରେ

ମୁଗ୍ଧ ହୋଇ ମହର୍ଷି ନଦୀ ମଧ୍ୟରେ ତାର ପ୍ରଣୟପ୍ରାର୍ଥୀ ହେଲେ । ଉନ୍ମୁକ୍ତ ନଦୀବକ୍ଷରେ ଏ କାର୍ଯ୍ୟରେ ଆସକ୍ତ ହେବାପାଇଁ ମତ୍ସ୍ୟଗନ୍ଧା ଅସମ୍ମତା ହେବାରୁ ମହର୍ଷି ତପଃ ପ୍ରଭାବରେ କୁହୁଡ଼ି ସୃଷ୍ଟି କରି ଚତୁର୍ଦ୍ଦିଗ ଆଚ୍ଛନ୍ନ କରିଦେଲେ, ସେତେବେଳେ ମତ୍ସ୍ୟଗନ୍ଧା ଆଉ ଆପତ୍ତି କଲାନାହିଁ । ମହର୍ଷି ତାର ଗର୍ଭ ସଞ୍ଚାର କଲେ । ତପୋବଳରେ ତାର ଦେହର ଗନ୍ଧ ଦୂର ହୋଇ ସୁଗନ୍ଧଯୁକ୍ତ ହୋଇଥିଲା । ମତ୍ସ୍ୟଗନ୍ଧା ସନ୍ତାନ ପ୍ରସବ କରି ସେହି ଦ୍ୱୀପରେ ଫିଙ୍ଗି ଦେଇ ଘରକୁ ଚାଲିଗଲା । ଋଷିଙ୍କ ପ୍ରଭାବରୁ ତାର କନ୍ୟାଭାବରେ କଳଙ୍କ ଲାଗିଲା ନାହିଁ । ସନ୍ତାନଟି ଦ୍ୱୀପରେ ଜନ୍ମ ହେବାରୁ ଦ୍ୱୈପାୟନ ନାମ ଧାରଣ କରିଥିଲା । ଏହାର ପ୍ରକୃତ ନାମ କଳୁ କୃଷ୍ଣ । କୃଷ୍ଣଦ୍ୱୈପାୟନ ମାତାଙ୍କ ଅନୁମତ ନେଇ ଶାସ୍ତ୍ରାଧ୍ୟୟନ ଓ ତପସ୍ୟା କରିବାପାଇଁ ଅରଣ୍ୟକୁ ଗମନ କରିଥିଲେ । ଧୀବରମାନେ ଏହି କନ୍ୟାକୁ(ମତ୍ସ୍ୟଗନ୍ଧା)ଦାସରାଜ ବସୁଙ୍କ ହସ୍ତରେ ଅର୍ପଣ କଲେ । ବସୁ ଏ କନ୍ୟାକୁ ନିଜର ଦୁହିତା ଭଳି ପାଳନ କରି ସତ୍ୟବତୀ ନାମ ଦେଇଥିଲେ ।

ଏଣେ କୃଷ୍ଣଦ୍ୱୈପାୟନ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରି ବେଦ ବିଭାଗ କରିବାପାଇଁ ଆରମ୍ଭ କଲେ । ଏ କାର୍ଯ୍ୟ ସମ୍ପନ୍ନ କରିବାକୁ ତାଙ୍କୁ ବହୁ ଆୟାସ ସହିବାକୁ ହୋଇଥିଲା । ଏହି ବେଦ ବିଭାଗ ସମ୍ପନ୍ନ କରି ସେ ବ୍ୟାସ(ବିଭାଗକର୍ତ୍ତା) ନାମରେ ନାମିତ ହେଲେ । ଏହି ସମୟଠାରୁ ସେ କୃଷ୍ଣଦ୍ୱୈପାୟନ ବେଦବ୍ୟାସ ନାମରେ ବିଖ୍ୟାତ । ବ୍ୟାସଦେବଙ୍କ ପୂର୍ବରୁ ସମସ୍ତ ପଦ୍ୟମୟ, ଗଦ୍ୟମୟ ଓ ଗୀତମୟ ବୈଦିକ ମନ୍ତ୍ର ଏକତ୍ର ମିଶ୍ରିତ ହୋଇଥିଲା । ଏହି ଅବସ୍ଥାରେ ଏହି ତ୍ରିବିଧ ରଚନାବଳୀ ସମନ୍ୱିତ ବୈଦିକ ମନ୍ତ୍ରଗୁଡ଼ିକ ତ୍ରୟୀନାମରେ ଅଭିହିତ ହେଉଥିଲା । ଏହି ତ୍ରୟୀରୁ ଅଙ୍ଗିରାବଂଶାବତଂସ ମହର୍ଷି ଅଥର୍ବା, ଐହିକ ପ୍ରତ୍ୟକ୍ଷ ଫଳପ୍ରଦ ଶତ୍ରୁମାରଣାଦିର ଉପଯୋଗୀ ଯଜ୍ଞାଦି ପ୍ରକରଣଗୁଡ଼ିକ ପୃଥକ୍ କରି ନିଜ ନାମରେ ସଙ୍କଳନ କଲେ । ସେହି-ଦିନଠାରୁ ବେଦମନ୍ତ୍ରଗୁଡ଼ିକ ଦୁଇ ଭାଗରେ ବିଭକ୍ତ ହେଲା । ବୃହତ୍ ଭାଗର ନାମ ତ୍ରୟୀ ଏବଂ କ୍ଷୁଦ୍ର ଭାଗର ନାମ ହେଲା ଅଥର୍ବ ବେଦ । କୃଷ୍ଣଦ୍ୱୈପାୟନ ଏହି ବୃହତ୍ ତ୍ରୟୀ ବେଦମନ୍ତ୍ରକୁ ରଚନାନୁସାରେ ଋକ୍, ଯଜୁଃ ଓ ସାମ ନାମରେ ବିଭକ୍ତ କରିଥିଲେ । ସେହି ଦିନଠାରୁ ବେଦ ଚାରିଗୋଟି ଅଂଶ ବୋଲି କଥିତ ହୋଇ ଆସୁଛି ।

ବେଦ ବିଭାଗ କୃଷ୍ଣଦ୍ୱୈପାୟନଙ୍କର ଏକମାତ୍ର କାମ ନୁହେଁ । ସେ ତାଙ୍କ ଅର୍ଜିତ ସମସ୍ତ ବିଦ୍ୟା ଲୋକହିତକର କାର୍ଯ୍ୟରେ ନିୟୋଜିତ କରିଥିଲେ । ସେ

ଅଷ୍ଟାଦଶ ପୁରାଣ ରଚନା କରିଥିଲେ । ଯଥା—ବ୍ରହ୍ମା, ବିଷ୍ଣୁ, ଶିବ, ଭାଗବତ, ପଦ୍ମ, ନାରଦ, ମାର୍କଣ୍ଡେୟ, ଅଗ୍ନି, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ଼ ଓ ବ୍ରହ୍ମାଣ୍ଡ । ଏହାଛଡ଼ା ସେ ପଞ୍ଚମବେଦ ଅଷ୍ଟାଦଶ ପର୍ବ ସମନ୍ୱିତ ସୁବୃହତ୍ ମହାଭାରତ ରଚନା କରିଥିଲେ । ଏ କାର୍ଯ୍ୟରେ ତାଙ୍କୁ ଅନବର୍ତ୍ତୀ କାଳ କଠିନ ପରିଶ୍ରମ କରିବାକୁ ହୋଇଥିଲା । କଥିତ ଅଛି, ମହାଭାରତ ଲେଖିବାପାଇଁ କୃଷ୍ଣଦ୍ୱୈପାୟନ ବ୍ୟାସ ବ୍ରହ୍ମାଙ୍କ ଆଦେଶରେ ଗଣେଶଙ୍କୁ ସ୍ମରଣ କରିଥିଲେ । ଗଣେଶ ଉପସ୍ଥିତ ହୋଇ ଏହି ଚୁକ୍ତି କଲେ ଯେ ତାଙ୍କର ଲେଖନୀ ଅଚଳ ରହିଲେ ସେ ଆଉ ଲେଖିବେ ନାହିଁ । ବ୍ୟାସଦେବ କହିଲେ ଯେ ମୋର ରଚନା କଦାପି ସ୍ଖଳମ୍ଭିତ ହେବ ନାହିଁ, ମାତ୍ର ଗଣେଶ ଯାହା ଲେଖିବେ ସେ ତାହାର ଅର୍ଥ ବୁଝି ଲେଖିବାକୁ ହେବ । ଏହି ଚୁକ୍ତିରେ ଉଭୟେ ସମ୍ମତ ହେଲେ । ବ୍ୟାସଦେବ ଶ୍ଳୋକ ବୋଲିବାକୁ ଲାଗିଲେ, ଗଣଦେବ ଶ୍ଳୋକର ଅର୍ଥ ଗ୍ରହଣ କରି ଲେଖିବାକୁ ଲାଗିଲେ । ବ୍ୟାସଦେବ ରଚନାର ସୁବିଧା ପାଇଁ ମଝେ ମଝେ କଠିନ ଶ୍ଳୋକମାନ ରଚନା କରୁଥାନ୍ତି, ଗଣେଶ ଏହାସବୁ ବୁଝିବାପାଇଁ ଟିକିଏ ସମୟ ସାପେକ୍ଷ ହୁଏ । ଏହି ଅବସରରେ ବ୍ୟାସଦେବ ବହୁତ ଶ୍ଳୋକ ରଚନା କରିଦଅନ୍ତି । ଆଉ ଗୋଟିଏ ପ୍ରବାଦ ଅଛି ଯେ ପୁରାଣ ରଚନା କରି ବ୍ୟାସ ଗୋଟିଏ ଶ୍ଳୋକରେ ଭଗବାନଙ୍କ ସମୀପରେ କ୍ଷମା ପ୍ରାର୍ଥନା କରିଥିଲେ—

ରୂପଂ ରୂପବିବର୍ଜିତସ୍ୟ ଭବତୋ ଧ୍ୟାନେନ ଯଦ୍ କଳ୍ପିତଂ
ସ୍ତୁତ୍ୟା ନିର୍ବଚନୀୟତାଖିଳଗୁରୋ ଦୂରୀକୃତା ଯନ୍ମୟା ।
ବ୍ୟାପିତ୍ୱଞ୍ଚ ବିନାଶିତଂ ଭଗବତୋ ଯତ୍ତୀର୍ଥଯାତ୍ରାଦିନା
କ୍ଷନ୍ତବ୍ୟଂ ଜଗଦୀଶ ତଦ୍‌ବିକଳତାଦୋଷତ୍ରୟଂ ମତ୍କୃତମ୍ ।

ଅର୍ଥାତ୍ ହେ ଭଗବାନ୍, ତୁମେ ରୂପବର୍ଜିତ, କିନ୍ତୁ ଧ୍ୟାନ ଦ୍ୱାରା ମୁଁ ତୁମର ରୂପ କଳ୍ପନା କରିଅଛି । ତୁମେ ଅଖିଳ ବ୍ରହ୍ମାଣ୍ଡର ଅଧିପତି ଓ ବାକ୍ୟର ଅତୀତ, କିନ୍ତୁ ମୁଁ ସ୍ତୁତିଦ୍ୱାରା ତୁମର ଅନିର୍ବଚନୀୟତା ନଷ୍ଟ କରିଅଛି; ତୁମେ ସର୍ବବ୍ୟାପୀ, କିନ୍ତୁ ତୀର୍ଥଯାତ୍ରାଦି ବର୍ଣ୍ଣନା କରି ମୁଁ ତୁମର ସର୍ବବ୍ୟାପୀତ୍ୱ ନଷ୍ଟ କରିଅଛି; ଅତଏବ ହେ ଜଗଦୀଶ, ମୋର ଏହି ବିକଳତାଜନିତ ତ୍ରିବିଧ ଅପରାଧ କ୍ଷମା କର ।

ଦ୍ୱୈତବନରେ ବାସ କରୁଥିବା ବେଳେ ଯୁଧିଷ୍ଠିରଙ୍କ ସହିତ କୃଷ୍ଣ-ଦ୍ୱୈପାୟନ ସାକ୍ଷାତ କରିଥିଲେ ଏବଂ ଭାବୀ ଯୁଦ୍ଧ ନିମିତ୍ତ ଅସ୍ତ୍ରଲାଭ କରିବା

ସକାଶେ ଅର୍ଜୁନଙ୍କୁ ପରାମର୍ଶ ଦେଇଥିଲେ । ଅର୍ଜୁନ ତାଙ୍କର ପରାମର୍ଶ ଅନୁଯାୟୀ ମହାଦେବଙ୍କୁ ସନ୍ତୁଷ୍ଟ କରି ପାଶୁପତାସ୍ତ୍ର ଲାଭ କରି ପାରିଥିଲେ ।

କୃଷ୍ଣଦ୍ୱୈପାୟନଙ୍କ ମାଆ ସତ୍ୟବତୀଙ୍କ ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ମହାରାଜ ଶାନ୍ତନୁ ତାଙ୍କୁ ବିବାହ କରିଥିଲେ । ଏହି ବିବାହ ହେବା ପୂର୍ବରୁ ସତ୍ୟବତୀଙ୍କ ପିତା ଦାସରାଜ ଶାନ୍ତନୁଙ୍କୁ ସ୍ୱୀକୃତ କରାଇଥିଲେ ଯେ ସତ୍ୟବତୀ ଗର୍ଭଜାତ ସନ୍ତାନ ରାଜସିଂହାସନରେ ଅଧିକାରୀ ହେବେ । ସତ୍ୟବତୀଙ୍କ ଗର୍ଭରୁ ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦ ନାମକ ଦୁଇଟି ପୁତ୍ର ଜନ୍ମ ହୋଇଥିଲେ । ଚିତ୍ରାଙ୍ଗଦ ଗନ୍ଧର୍ବଙ୍କ ସହିତ ଯୁଦ୍ଧ କରି ଅଳ୍ପ ବୟସରେ ପ୍ରାଣତ୍ୟାଗ କଲେ । ବିଚିତ୍ରବୀର୍ଯ୍ୟ କାଶୀରାଜଙ୍କର ଦୁଇ କନ୍ୟା ଅମ୍ବାଳିକା ଓ ଅମ୍ବିକାଙ୍କୁ ବିବାହ କରିଥିଲେ । ଅତିରିକ୍ତ ସ୍ତ୍ରୈଣତାବଶତଃ ବିଚିତ୍ରବୀର୍ଯ୍ୟଙ୍କର ଅକାଳ ବିୟୋଗ ଘଟିଲା । ସତ୍ୟବତୀ ବଂଶରକ୍ଷା ଲାଗି ବ୍ୟାସଙ୍କ ଔରସରେ ଏ ଉଭୟ କନ୍ୟାଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କୁ ଜନ୍ମ କରାଇଥିଲେ । ଅମ୍ବିକାଙ୍କ ଦାସୀ ଗର୍ଭରୁ ମହାମତି ବିଦୁର ଜାତ ହେଲେ ।

ବ୍ୟାସଙ୍କ ବର ପ୍ରସାଦରୁ ସଞ୍ଜୟ ଦିବ୍ୟଚକ୍ଷୁ ଲାଭ କରି ଧୃତରାଷ୍ଟ୍ରଙ୍କୁ ମହାଭାରତ ଯୁଦ୍ଧର ବିବରଣୀ ଯଥାଯଥରୂପେ ଶୁଣାଇଥିଲେ ।

ଶୁକଦେବ ବ୍ୟାସଦେବଙ୍କ ପୁତ୍ର । କୌଣସି ଏକ ଅପ୍ସରାକୁ ଦେଖି ବ୍ୟାସଙ୍କର ରେତଃ ସ୍ଖଳିତ ହୋଇଥିଲା । ଅପ୍ସରା ଭୀତ ହୋଇ ଶୁକପକ୍ଷୀ ରୂପ ଧାରଣ କରି ପଳାଇଗଲା । ରେତଃପାତ ପରେ ଶୁକପକ୍ଷୀ ଦର୍ଶନ କରିଥିଲେ ବୋଲି ବ୍ୟାସ ପୁତ୍ରର ନାମ ଶୁକଦେବ ରଖିଥିଲେ ।

ବେଦବିଭାଗ ଓ ମହାଭାରତ ରଚନା ପରେ ବ୍ୟାସ 'ଉତ୍ତରମୀମାଂସା' ବା 'ବେଦାନ୍ତ ଦର୍ଶନ' ନାମକ ଏକ ବିଖ୍ୟାତ ଦର୍ଶନଶାସ୍ତ୍ର ପ୍ରଣୟନ କରିଥିଲେ । ଅଦ୍ୱୈତବାଦ ପ୍ରତିଷ୍ଠା ଏହି ଦର୍ଶନର ଉଦ୍ଦେଶ୍ୟ । ଜୀବାତ୍ମା ଓ ବ୍ରହ୍ମ ଯେ ଏକ ପଦାର୍ଥ ତାହା ବେଦାନ୍ତ ଦର୍ଶନରେ ପ୍ରତିପାଦନ କରାଯାଇଥିଲା ।

ସୁବିଖ୍ୟାତ ଶ୍ରୀମଦ୍‌ଭଗବଦ୍‌ଗୀତା ବ୍ୟାସରଚିତ ଏକ ଅମର ଅବଦାନ । ଏହା ୧୮ ଗୋଟି ଅଧ୍ୟାୟରେ ପୂର୍ଣ୍ଣ, ଗୀତା ଏକ ଅପୂର୍ବ ଗ୍ରନ୍ଥ, ବିଶ୍ୱ ସାହିତ୍ୟରେ ଏଭଳି ଏକ ମନୋହାରୀ ଗ୍ରନ୍ଥ ବିରଳ । ସର୍ବ ଧର୍ମ ଓ ସର୍ବ ପ୍ରକାର ଯୋଗ ସମନ୍ୱିତ ଗୀତା ସର୍ବମୋଟ ୮୦୦ ଗୋଟି ଶ୍ଳୋକର ସମବାୟ, ଏହା ସାର୍ବଭୌମ ଓ ଅସାମ୍ପ୍ରଦାୟିକ ଧର୍ମ ଜଗତର ପ୍ରଚାର କରିଅଛି ।

**କୃଷ୍ଣା** – ଦ୍ରୌପଦୀଙ୍କ ନାମାନ୍ତର । ଜନ୍ମ ସମୟରେ ଏହାଙ୍କର ଦେହ କୃଷ୍ଣବର୍ଣ୍ଣ ହୋଇଥିବାରୁ ଏ କୃଷ୍ଣା ନାମରେ ନାମିତ ।

**କେକୟ** — ଉତ୍ତର ଭାରତର ପ୍ରାଚୀନ ଦେଶ ଓ ସେହି ଦେଶବାସୀ ଜାତି, ଭରତ ଜନନୀ କୈକେୟୀଙ୍କ ପିତା ।

**କେକୟୀ, କୈକେୟୀ** – ଅଯୋଧ୍ୟାଧିପତି ମହାରାଜ ଦଶରଥଙ୍କ ମଧ୍ୟମା ରାଣୀ, ଭରତଙ୍କ ଜନନୀ । କୈକେୟୀ କେକୟ ରାଜାଙ୍କ କନ୍ୟା ଓ ପରମ ରୂପବତୀ ଥିବାରୁ ଦଶରଥ ଏହାଙ୍କ ପ୍ରତି ସର୍ବଦା ଆକୃଷ୍ଟ ଥିଲେ । ଦେବାସୁର ଯୁଦ୍ଧରେ କୈକେୟୀ ଦଶରଥଙ୍କୁ ପ୍ରାଣ ସଂକଟରୁ ରକ୍ଷା କରିଥିବା ଯୋଗୁ ଦଶରଥ ତାଙ୍କୁ ଦୁଇଟି ବର ଦେବେ ବୋଲି କହିଥିଲେ । ରାମାଭିଷେକ ବେଳେ କୈକେୟୀ ଏ ଦୁଇଟି ବର ମାଗି ରାମଙ୍କ ବନବାସ ଗମନର କାରଣ ହେଲେ । ରାମଙ୍କ ବନବାସ ଦୁଃଖ କଥା ଭାବି ଭାବି ଦଶରଥ ପ୍ରାଣତ୍ୟାଗ କଲେ । ବନବାସ ଅନ୍ତେ ରାମଚନ୍ଦ୍ର ଅଯୋଧ୍ୟାର ରାଜା ରୂପେ ଅଭିଷିକ୍ତ ହେଲେ । ସୀତାବର୍ଜନ ପରେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠିତ ହେଲା । ଏହାର କିଛୁକାଳ ପରେ ରାମଜନନୀ କୌଶଲ୍ୟା ଦେହ ତ୍ୟାଗ କଲେ । କୌଶଲ୍ୟାଙ୍କ ମୃତ୍ୟୁ ପରେ କୈକେୟୀ ପରଲୋକ ଗମନ କଲେ । (ରାମାୟଣ)

**କେତୁ** — ଦାନବ ବିଶେଷ, ସମୁଦ୍ରମନ୍ଥନ ପରେ ଦେବତାମାନେ ଅମୃତ ପାନ କରିବା ନିମିତ୍ତ ଶ୍ରେଣୀବଦ୍ଧ ହୋଇ ବସନ୍ତେ, ଦାନବ ଶ୍ରେଣୀସ୍ଥ ରାକ୍ଷସ କେତୁ ଦେବଦେହ ଧାରଣ କରି ଅମୃତ ପାନାର୍ଥେ ଦେବତାଗୋଷ୍ଠୀ ଭିତରେ ବସିଲେ । ଚନ୍ଦ୍ର, ସୂର୍ଯ୍ୟ ଉଭୟେ ଏହା ଜାଣି ଅନ୍ୟାନ୍ୟ ଦେବତାମାନଙ୍କୁ ତାହା ଦର୍ଶାଇ ଦେଲେ । ସେହିକ୍ଷଣି ବିଷ୍ଣୁ ଚକ୍ରାଘାତରେ ଏହାର ମସ୍ତକ ଛେଦନ କରିଦେଲେ । ଅମୃତପାନ ଯୋଗେ ମସ୍ତକ ଛିନ୍ନ ହେଲେ ମଧ୍ୟ କେତୁର ମୃତ୍ୟୁ ହେଲାନାହିଁ । ମସ୍ତକ ଭାଗର ନାମ ରାହୁ ଓ ଶରୀର ଭାଗର ନାମ କେତୁ ହେଲା । ଚନ୍ଦ୍ର, ସୂର୍ଯ୍ୟ ପ୍ରତି କ୍ରୋଧବଶତଃ ଗ୍ରହଣ ସମୟରେ ରାହୁ ଏ ଉଭୟ ଦେବତାଙ୍କୁ ଗ୍ରାସକରେ । ହିନ୍ଦୁ ଜ୍ୟୋତିଷ ମତରେ ରାହୁ ଓ କେତୁ ଗ୍ରହ ମଧ୍ୟରେ ଗଣାଯାନ୍ତି, ମାତ୍ର ଇଉରୋପୀୟ ଜ୍ୟୋତିଷମାନେ ଏମାନଙ୍କୁ ଗ୍ରହରୂପେ ଗ୍ରହଣ କରନ୍ତି ନାହିଁ ।

**କେତୁମାନ** — କଳିଙ୍ଗ ରାଜା ଶ୍ରୁତାୟୁଧଙ୍କ ପୁତ୍ର । ମହାଭାରତ ଯୁଦ୍ଧରେ ଭୀମଙ୍କୁ ସାହାଯ୍ୟ କରୁଥିବା ଚେଦୀ ସୈନ୍ୟଙ୍କ ବିରୁଦ୍ଧରେ ସେ ଭୟଙ୍କର ଯୁଦ୍ଧ କରିଥିଲେ ।

**କେଦାରକୁଣ୍ଡ**—ଭୁବନେଶ୍ୱର କେଦାରେଶ୍ୱରଙ୍କ ନିକଟସ୍ଥ ଗୋଟିଏ ସ୍ୱଚ୍ଛ ନିର୍ଝରକୁଣ୍ଡ । ଏହାର ଜଳପାନ କରିବା ଦ୍ୱାରା ଅଜୀର୍ଣ୍ଣ ରୋଗ ଦୂର ହୁଏ ବୋଲି ଲୋକବିଶ୍ୱାସ ରହିଛି ।

**କେଦାରଗୌରୀ**—ଭୁବନେଶ୍ୱରରେ ବିରାଜିତ କେଦାରେଶ୍ୱର ମହାଦେବ ଓ ତାଙ୍କର ସ୍ତ୍ରୀ ଗୌରୀ ଦେବୀ । କବିବର ରାଧାନାଥଙ୍କ ପ୍ରଣୀତ ପୌରାଣିକ ବା ଐତିହାସିକ ଭିତ୍ତିହୀନ କୁରୁଚିପୂର୍ଣ୍ଣ ଏକ କାବ୍ୟ । (ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରଣୀତ 'କୋଣାର୍କ' କାବ୍ୟର ପ୍ରଥମାଙ୍କର ପାଦ ଟୀକା ଦେଖ) ।

**କେନୋପନିଷତ୍, କେନୋପନିଷଦ**—ବେଦାନ୍ତ ଗ୍ରନ୍ଥ ବିଶେଷ । ଯାହା ଦ୍ୱାରା ଏ ଚରାଚର ସୃଷ୍ଟ ଅର୍ଥାତ୍ କେନ ଶବ୍ଦ ଆରମ୍ଭରେ ଥିବାରୁ ଏହିପରି ନାମ ଦିଆଯାଇଛି ।

**କେଶି, କେଶୀ**—କଂସର ଅନୁଚର । ଏହି ଦାନବ ଏକ ବଡ଼ ଅଶ୍ୱରୂପ ଧରି ବୃନ୍ଦାବନରେ ବ୍ରଜବାସୀମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଥିଲା । ଏହି ଅଶ୍ୱରୂପୀ ଦାନବ ପଦାଘାତରେ ଗୋପାଳ, ଗୋପବାଳକ ତଥା ଧେନୁବତ୍ସ-ମାନଙ୍କୁ ବଧ କରୁଥିଲା । ଶ୍ରୀକୃଷ୍ଣ ରାକ୍ଷସର ସମ୍ମୁଖୀନ ହେବାମାତ୍ରେ ରାକ୍ଷସ ମୁଖବ୍ୟାଦାନପୂର୍ବକ ତାଙ୍କ ଆଡକୁ ଧାଇଁ ଆସିଲା । ଶ୍ରୀକୃଷ୍ଣ ତାର ପଶ୍ଚାତ୍-ଭାଗରୁ ଆକ୍ରମଣ କରି ତାର ଦୁଇଟିଯାକ ପାଦ ବୁଲାଇ ବୁଲାଇ ଶତଧନୁ ବା ୪୦୦ ହାତ ଦୂରରେ ଫିଙ୍ଗି ଦେଲେ । ଅସୁର କିଛିକ୍ଷଣ ଅଚେତନ ହେବା ପରେ ସଂଜ୍ଞା ଲାଭ କରି ପୁନର୍ବାର ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କଲା । ଶ୍ରୀକୃଷ୍ଣ ହସି ହସି ତା ମୁହଁ ଭିତରେ ହାତ ପୂରାଇ ଦେଲେ । ରାକ୍ଷସ ଶ୍ୱାସରୁଦ୍ଧ ଅବସ୍ଥାରେ ହଗିମୁତ ପ୍ରାଣତ୍ୟାଗ କଲା । (ଭାଗବତ ୧୦ମ ସ୍କନ୍ଧ ଓ ହରିବଂଶ)

**କୈକସୀ**—କୁବେର ଦେଖ ।

**କୈଟଭ**—ପୂର୍ବକାଳରେ ପଦ୍ମଯୋନି ବ୍ରହ୍ମା ଦୁଇଟି ମୃଣ୍ମୟ ମହାସୁର ସୃଷ୍ଟି କରିଥିଲେ । ମାର୍କଣ୍ଡେୟ ପୁରାଣାନ୍ତର୍ଗତ ସପ୍ତଶତୀ ଚଣ୍ଡୀରେ ବର୍ଣ୍ଣିତ ହୋଇଅଛି ଯେ ପୃଥିବୀର ମହାପ୍ରଳୟ କାଳରେ ବିଷ୍ଣୁ ଅନନ୍ତଶଯ୍ୟାରେ ଶୟନ କରିଥିବାବେଳେ ତାଙ୍କ କର୍ଣ୍ଣମୂଳରୁ ମଧୁ ଓ କୈଟଭ ନାମକ ଦୁଇଟି ଅସୁର ବାହାରି ବିଷ୍ଣୁଙ୍କ ନାଭିକମଳୋଦ୍ଭୂତ ବ୍ରହ୍ମାଙ୍କୁ ଖାଇବାକୁ ବସିଲେ । ନିଦ୍ରାରୁ ଉଠି ବିଷ୍ଣୁ ସେମାନଙ୍କୁ ବଧ କଲେ । ତାହା କରିନଥିଲେ ବ୍ରହ୍ମା ନୂତନ ସୃଷ୍ଟି କରି ପାରି ନଥାନ୍ତେ । (ଭାଷାକୋଷ)

ହରିବଂଶ ଓ ମତ୍ସ୍ୟପୁରାଣରେ ଲେଖାଅଛି—ମଧୁ ଓ କୈଟଭ ଦନୁ ଦନ ପ୍ରବଳ ହୋଇଉଠିଲେ । ବ୍ରହ୍ମା ଏମାନଙ୍କ ଦେହରେ ହାତ ଛୁଆଁଇ ଦେଖିଲେ ଯେ ଜଣଙ୍କର ଦେହ କୋମଳ ଓ ଅନ୍ୟ ଜଣଙ୍କର ଦେହ କଠିଣ । ତେଣୁ ସେ ଜଣଙ୍କର ନାମ ମଧୁ ଓ ଅନ୍ୟ ଜଣଙ୍କର ନାମ କୈଟଭ ଦେଲେ । ଉଭୟ ରାକ୍ଷସ ବଳବାନ୍ ହୋଇ ଏକାର୍ଣ୍ଣବ ଜଳରାଶିରେ ବିଚରଣ କରିବାକୁ ଲାଗିଲେ । ବ୍ରହ୍ମା, ବିଷ୍ଣୁଙ୍କ ନାଭିକମଳରେ ଆବାସ ସ୍ଥାପନ କରି ଯୋଗମଗ୍ନ ହେଲେ । ବହୁକାଳ ପରେ ଏଇ ରାକ୍ଷସଦ୍ୱୟ ବ୍ରହ୍ମାଙ୍କ ସହିତ ଯୁଦ୍ଧ କରିବା ପାଇଁ ଉଦ୍‌ଯୋଗ କଲେ । ବ୍ରହ୍ମା ପଦ୍ମନାଳ ଆଘାତରେ ବିଷ୍ଣୁଙ୍କୁ ଜାଗରିତ କଲେ । ବିଷ୍ଣୁ ଜାଗରିତ ହେବା ମାତ୍ରେ ଅସୁରମାନଙ୍କ ସହିତ ଘୋର ଯୁଦ୍ଧ ଆରମ୍ଭ କଲେ । ସହସ୍ର ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରି ମଧ୍ୟ ଅସୁରମାନେ କ୍ଳାନ୍ତ ହେଲେନାହିଁ । ଅନନ୍ତର ସେମାନେ ବିଷ୍ଣୁଙ୍କୁ କହିଲେ, 'ଆମ୍ଭେମାନେ ଆପଣଙ୍କ ସହିତ ଯୁଦ୍ଧ କରି ପରମ ପ୍ରୀତି ଲାଭ କରିଛୁଁ । ବର୍ତ୍ତମାନ ଆପଣଙ୍କ ହାତରେ ମରିବା ପାଇଁ ଆମ୍ଭେମାନେ କାମନା କରୁଛୁଁ, ତେବେ ଯେଉଁ ସ୍ଥାନରେ ଜଳପ୍ଲାବନ ହୋଇନାହିଁ ସେହିଠାରେ ଆମ୍ଭମାନଙ୍କୁ ବଧ କରନ୍ତୁ ।' ମତ୍ସ୍ୟପୁରାଣରୁ ଜଣାଯାଏ, 'ଯେଉଁଠାରେ କେହି ମରନ୍ତି ନାହିଁ ସେପରି ସ୍ଥାନରେ ଆମ୍ଭମାନଙ୍କୁ ମାରନ୍ତୁ । ସେ ଯୁଦ୍ଧ ସ୍ଥଳରେ ଆମ୍ଭମାନଙ୍କୁ ପରାସ୍ତ କରିବେ, ସେ ଆମ୍ଭମାନଙ୍କର ପିତା । ଆପଣଙ୍କ ହାତରେ ଆମ୍ଭେମାନେ ମଲେ ଆପଣଙ୍କର ପୁତ୍ରତ୍ୱ ସ୍ୱୀକାର କରିବାକୁ ଆମ୍ଭେମାନେ କୁଣ୍ଠିତ ହେଉନାହିଁ ।' ଅସୁରମାନେ ଏହା କହିବାରୁ ବିଷ୍ଣୁ ସେମାନଙ୍କୁ ବାହୁରେ ଧରି ବଧ କରିଥିଲେ । ନିହତ ଅସୁରଦ୍ୱୟ ସମୁଦ୍ର ମଧ୍ୟରେ ବୁଡିଗଲେ । ମାତ୍ର ଏ ଉଭୟ ଶରୀରର ମେଦ ବାହାରି ସମୁଦାୟ ସାଗରଜଳରେ ବ୍ୟାପ୍ତ ହୋଇଗଲା । ସେତେବେଳେ ଆଉ ସେମାନଙ୍କ ଶରୀରର କୌଣସି ଚିହ୍ନ ରହିଲାନାହିଁ । ଦୈତ୍ୟଦ୍ୱୟଙ୍କ ମେଦ ପୁଞ୍ଜରୁ ପୃଥିବୀ ସୃଷ୍ଟି ହେବାରୁ ଏହାର ନାମ ମେଦିନୀ ହୋଇଅଛି ।

**କୈଳାସ**—ଶିବ ଓ କୁବେରଙ୍କ ବାସସ୍ଥାନ । ଏହା ତିବ୍ବତଦେଶୀୟ ଏକ ପର୍ବତ । ହିମାଳୟର ଉତ୍ତରରେ ଅବସ୍ଥିତ । କୈଳାସର ପ୍ରଧାନ ଲାମାଙ୍କର ରାଜଧାନୀ ଦାରଚନ କୈଳାସ ପର୍ବତଠାରୁ ୪୦ ମାଇଲ ଦୂରରେ ଅବସ୍ଥିତ । ଦାରଚନ-ଲାମାଙ୍କର ଅନୁମତି ନ ନେଇ କେହି କୈଳାସ ପର୍ବତକୁ ଯାଇ ପାରନ୍ତିନାହିଁ । ଏଠାରେ ସକଳ ପଶୁ ଶ୍ୱେତକାୟ । ବେଳେ ବେଳେ ଏଠାରେ ରାତିରେ ଶୋଇଥିବା ଲୋକ ଉପରେ ବରଫ ପଡି ତାହାକୁ ଘୋଡି

ହୁଏ । ଏ ପର୍ବତର ଅଦ୍ଭୁତ ଦୋଲବେଦୀ ପରି । କୈଳାସ ପର୍ବତ ଚତୁର୍ଦ୍ଦିଗରେ ନଦୀବେଷ୍ଟିତ । ନଦୀର ତଟରେ ତଟରେ ଚତୁର୍ଦ୍ଦିଗରେ ପଥ ଅଛି । ଗୌରୀକୁଣ୍ଡରୁ ଆକାଶ ଭେଦ କରି ଊର୍ଦ୍ଧ୍ୱ ଦେଶକୁ ନେଇ ତୁଷାରବୃତ ଶୃଙ୍ଗ ଉଠିଛି, ତାକୁ କୈଳାସ ଶିଖର କହନ୍ତି । ଏହାର ଆକାର ଶିବଲିଙ୍ଗ ସଦୃଶ । ଏଥିରେ ଶତ ଶତ ତୁଷାରମଣ୍ଡିତ ଶିବଲିଙ୍ଗ ସଦୃଶ ଶୃଙ୍ଗ ଅଛି । ଏ ଶୃଙ୍ଗମାନ କୈଳାସାନ୍ତର୍ଗତ ହେଲେହେଁ କୈଳାସର ସର୍ବୋଚ୍ଚତମ ଶିଖରକୁ କୈଳାସ କୁହାଯାଏ । ଏ ପର୍ବତରେ ଅନେକଗୁଡ଼ିଏ ବୌଦ୍ଧମଠ ଅଛି । ଏଠାରେ ଥିବା ମନ୍ଦିର ମଧ୍ୟରେ ଶୁକ୍ଳ ପ୍ରସ୍ତର ନିର୍ମିତ ଶିବଲିଙ୍ଗ ଅଛନ୍ତି । ଲାମାମାନେ ସ୍ନାନାନ୍ତେ କୁଙ୍କୁମକେଶର ଦେଇ ମନ୍ତ୍ରପାଠପୂର୍ବକ ଏହି ଶିବଲିଙ୍ଗଙ୍କୁ ପୂଜା କରନ୍ତି ଓ ଏମାନଙ୍କ ଆରତିବେଳେ ଶଙ୍ଖ, ବଂଶୀ ଓ ଡ଼ମରୁ ବାଜେ । ଶିବ ମନ୍ଦିରର ପାର୍ଶ୍ୱବର୍ତ୍ତୀ ମନ୍ଦିରରେ ଚତୁର୍ଭୁଜା କାଳୀମୂର୍ତ୍ତି ଅଛନ୍ତି । ଏହା ନିକଟରେ ମାନସ ହ୍ରଦ ଅବସ୍ଥିତ । (ଭାଷାକୋଷ)

**କୋଶଳ**—ପ୍ରାଚୀନ ଭାରତର ରାଜ୍ୟ ବିଶେଷ । ଅଯୋଧ୍ୟା ଓ କାଶୀର ଉତ୍ତରସ୍ଥ ସମସ୍ତଦେଶ । ରାମଜନନୀ କୌଶଲ୍ୟା ଏହି ଦେଶର ରାଜକନ୍ୟା ଥିଲେ । ଏ ଉତ୍ତର କୋଶଳ ଓ ଦକ୍ଷିଣ କୋଶଳ ଏହିପରି ଦୁଇ ଭାଗରେ ବିଭକ୍ତ ଥିଲା । ସରଯୂ ବା ସର୍ଯ୍ୟୁ ନଦୀର ଉତ୍ତରସ୍ଥ ପ୍ରଦେଶକୁ ଉତ୍ତର କୋଶଳ ଓ ଉକ୍ତ ନଦୀର ଦକ୍ଷିଣସ୍ଥ ରାଜ୍ୟକୁ ଦକ୍ଷିଣ କୋଶଳ ବୋଲି କୁହାଯାଉଥିଲା । କାଶୀ ଓ ଅଯୋଧ୍ୟା ନେଇ ଉତ୍ତର କୋଶଳ ଏବଂ ବର୍ତ୍ତମାନ ସମ୍ବଲପୁର, କଳାହାଣ୍ଡି, ବସ୍ତର ଓ ରାୟପୁର ପ୍ରଭୃତି ନେଇ ଦକ୍ଷିଣ କୋଶଳ ଗଠିତ ହୋଇଥିଲା ।

(କୃପାସିନ୍ଧୁ, ଉତ୍କଳ ଇତିହାସ, ଭାଷାକୋଷ)

**କୌମୋଦକୀ**—ବିଷ୍ଣୁଙ୍କ ଗଦାର ନାମ । ଏହାକୁ ବରୁଣ ବିଷ୍ଣୁଙ୍କୁ ଯୌତୁକ ସ୍ୱରୂପ ଦେଇଥିଲେ ।

**କୌଶଲ୍ୟା**—ଅଯୋଧ୍ୟାଧିପତି ଦଶରଥଙ୍କର ପାଟରାଣୀ । ଶ୍ରୀରାମଚନ୍ଦ୍ରଙ୍କ ମାତା । ଦକ୍ଷିଣ କୋଶଳ ରାଜା ଏହାଙ୍କର ଜନକ । ଶ୍ରୀରାମଙ୍କ ଅଶ୍ୱମେଧ ଯଜ୍ଞ ସରିବା ପରେ ଏ ଦେହତ୍ୟାଗ କଲେ । (ରାମାୟଣ)

**କୌଶିକ**—ମହର୍ଷି ବିଶ୍ୱାମିତ୍ରଙ୍କ ନାମାନ୍ତର । ମହାରାଜ କୁଶିକଙ୍କ ବଂଶରେ କୌଶିକ ଜନ୍ମିଥିଲେ । ଗାଧିରାଜ ଏହାଙ୍କର ପିତା । ଆଉଜଣେ ଋଷିଙ୍କର ନାମ । ଏ ଋଷି ପିତାମାତାଙ୍କ ଅନାନୁମତିରେ ତପସ୍ୟାର୍ଥେ ଗୃହତ୍ୟାଗ କରିଥିଲେ । ଏହି ସମୟରେ ଗୋଟିଏ ବକ ତାଙ୍କ ଦେହରେ ମଳତ୍ୟାଗ କଲା । ଏ ବକ ଉପରେ କୋପଦୃଷ୍ଟି କରିବାରୁ ବକଟି ଭସ୍ମୀଭୂତ ହୋଇ-

ଗଲା । ଏହା ଦେଖି ଋଷି ଆପଣାର କ୍ଷମତା ବିଷୟରେ ଗର୍ବ ଅନୁଭବ କଲେ । ଏକଦା ସେ ଭିକ୍ଷା ପାଇଁ ଗୋଟିଏ ଗୃହରେ ଯାଇ ପହଞ୍ଚିଲେ । ଗୃହିଣୀ ଭିକ୍ଷା ଦେବାକୁ ଉଦ୍ୟତ ହେବାବେଳେ ଗୃହସ୍ୱାମୀ କ୍ଲାନ୍ତଶ୍ରାନ୍ତ ହୋଇ ଘରେ ପହଞ୍ଚିବାରୁ ଗୃହିଣୀ ପ୍ରଥମେ ସ୍ୱାମୀ ଚର୍ଚ୍ଚାରେ ଲାଗିଲା । କୌଶିକ ତାହା ଉପରେ ରାଗିବାରୁ ଗୃହିଣୀ କହିଲେ—"ଆପଣ ମୋ ଉପରେ ରାଗ କରନ୍ତୁ ନାହିଁ । ମୁଁ ସ୍ୱାମୀ ସେବାରେ ନିଯୁକ୍ତ ଥିଲି । ମୋତେ ବଗ ବୋଲି ମନେ କରନ୍ତୁ ନାହିଁ । ଆପଣ ଧର୍ମର ଯଥାର୍ଥ ମର୍ମ ଅଦ୍ୟାବଧି ବୁଝି ନାହାନ୍ତି । ମିଥିଳାର ଧର୍ମବ୍ୟାଧଙ୍କ ନିକଟକୁ ଯାଇ ତାଙ୍କଠାରୁ ଧର୍ମ ଶିକ୍ଷା କରନ୍ତୁ ।" କୌଶିକ ଗୃହିଣୀଙ୍କଠାରୁ ଏହା ଶୁଣି ବିସ୍ମିତ ହେଲେ ଓ ଧର୍ମବ୍ୟାଧଙ୍କ ନିକଟକୁ ଯାଇ ଧର୍ମ ଶିକ୍ଷା କଲେ । ବ୍ୟାଧ ଆପଣାର ପିତାମାତାଙ୍କ ସେବା କରି ଧାର୍ମିକ ହୋଇଥିବାର ସେ ଅବଗତ ହୋଇ ତାଙ୍କ ଉପଦେଶ ଅନୁସାରେ ଘରକୁ ଫେରିଯାଇ ପିତାମାତାଙ୍କ ସେବାରେ ନିଯୁକ୍ତ ହେଲେ ।

(ସୁବଳଚନ୍ଦ୍ର, ଭାଷାକୋଷ)

**କୌଶିକୀ**—ବିଶ୍ୱାମିତ୍ରଙ୍କ ଜ୍ୟେଷ୍ଠା ଭଗିନୀ; ସତ୍ୟବତୀ । କଥିତ ଅଛି ଯେ ବିଶ୍ୱାମିତ୍ରଙ୍କ ଜ୍ୟେଷ୍ଠା ଭଗିନୀ କୌଶିକୀ ଏ ନଦୀରୂପ ଧାରଣ କରିଥିଲେ । (ସୁବଳଚନ୍ଦ୍ର)

ପାର୍ବତୀଙ୍କ ଶରୀର କୋଷରୁ ବାହାରିଥିବା ଦୁର୍ଗାମୂର୍ତ୍ତି । (ଭାଷାକୋଷ)

**କୌସ୍ତୁଭ**—କ୍ଷୀରୋଦ ମନ୍ଥନ କାଳରେ ସମୁଦ୍ରରୁ ବାହାରିଥିବା ମଣି ବିଶେଷ । ଏହା ବିଷ୍ଣୁଙ୍କ ହୃଦୟର ଭୂଷଣ ମଣି । ଭକ୍ତକବି ପୀତାମ୍ବର ଦାସ ତାଙ୍କ ରଚିତ ନୃସିଂହପୁରାଣରେ ଲେଖିଛନ୍ତି—ଜଣେ ରାଜା କଠୋର ତପସ୍ୟା କରି ନିଜର ହାତ, ଗୋଡ଼ ଇତ୍ୟାଦି ସକଳ ଅବୟବ ହରାଇଥିଲେ କେବଳ ତାଙ୍କର ମୁଣ୍ଡଟି ବାକି ଥିଲା । ସେହି ରାଜାଙ୍କ ପ୍ରାର୍ଥନା ଅନୁସାରେ ବିଷ୍ଣୁ ସେ ମୁଣ୍ଡକୁ ମଣିରୂପରେ ପରିବର୍ତ୍ତିତ କରି ନିଜର ହୃଦ୍‌ଦେଶରେ ଧାରଣ କଲେ ।

**କ୍ରତୁ**—ବ୍ରହ୍ମାଙ୍କ ମାନସପୁତ୍ର, ଜଣେ ଧର୍ମଶାସ୍ତ୍ର ପ୍ରଣେତା । ଏହାଙ୍କ ପତ୍ନୀଙ୍କ ନାମ ସନ୍ନତି; ବାଲଖିଲ୍ୟ ମୁନିଗଣ ଏହାଙ୍କ ପୁତ୍ର । (ଶ୍ରୀମଦ୍‌ଭାଗବତ) । ଏକ ଶ୍ରେଣୀର ବିଶ୍ୱେଦେବା ବା ପ୍ରଜାପତି, ସପ୍ତର୍ଷିମାନଙ୍କ ମଧ୍ୟରୁ ଜଣେ ।

**କ୍ରୋଧା**—ପ୍ରଜାପତି ଦକ୍ଷଙ୍କ କନ୍ୟା ଓ ପ୍ରଜାପତି ଋଷି କଶ୍ୟପଙ୍କ ପତ୍ନୀ । (ବିଷ୍ଣୁପୁରାଣ)

**କ୍ରୌଞ୍ଚ**—ଦ୍ୱୀପ ବିଶେଷ । ପୁରାଣ ମତରେ ଏହା ସପ୍ତଦ୍ୱୀପା ପୃଥିବୀ ମଧ୍ୟରେ ଗୋଟିଏ ଦ୍ୱୀପ । ପୌରାଣିକ ପର୍ବତ ବିଶେଷ । ଏ ପର୍ବତ ହିମାଳୟଙ୍କ ପୌତ୍ର । କାର୍ତ୍ତିକ ଓ ପରଶୁରାମ ଏ ପର୍ବତକୁ ବିଦ୍ଧ କରିଥିଲେ ।

ବକାସୁରର ନାମାନ୍ତର । ମୟଦାନବଙ୍କ ପୁତ୍ର । ଏହାଙ୍କୁ କ୍ରୌଞ୍ଚ ଦ୍ୱୀପରେ ସ୍କନ୍ଦ ଭଗବାନ ବଧ କରିଥିଲେ । (ହିନ୍ଦୀ ଶବ୍ଦସାଗର)



# ଖ

**ଖଇଚଡ଼ା ଖୁଣ୍ଟୀ**—ଓଡ଼ିଶାର ଜନଶ୍ରୁତି କହେ ଯେ ବ୍ରହ୍ମାଙ୍କର ସାତୋଟି କନ୍ୟା । ସେମାନଙ୍କ ନାମଧରି ବିଛଣାରେ ଶୋଇଲେ ରାତିଟି ସୁଖରେ କଟେ । ଅର୍ଥାତ୍ ରାତିରେ କିଛି ଆପଦ ଘଟେନାହିଁ । ଯଥା—ଅଭିଆଡ଼ୀ, ଅମଙ୍ଗୁଳି, ନାହିଁ ନାହିଁ ତୁଣ୍ଡୀ, ଅପାଳକ ମୁଣ୍ଡୀ, ଖଇଚଡ଼ା ଖୁଣ୍ଟୀ, ଦାନ୍ତ-ନକୁଟୀ, ଲେହେବର ମୁଖୀ, ସାତଭଉଣୀଙ୍କ ନାମ ଧଇଲେ ସୁଫଲେ ପାଏ ରାତି ।

**ଖଗମ**—ଜଣେକ ତପୋବଳସମ୍ପନ୍ନ ବ୍ରାହ୍ମଣ ପୁତ୍ର । ଏହାଙ୍କ ଶାପରେ ଏହାଙ୍କର ବନ୍ଧୁ ସହସ୍ରପାଦ ଡୁଣ୍ଡୁଭ (ଧଣ୍ଡ ସାପ) ରୂପରେ ପରିଣତ ହୋଇଥିଲେ । ସହସ୍ରପାଦଙ୍କ ଅନୁନୟ କ୍ରମେ ଖଗମ ଶାପର ପ୍ରତିବିଧାନ ସ୍ୱରୂପ ରୁରୁ ମୁନିଙ୍କୁ ଦର୍ଶନ କରିବା ପାଇଁ କହିଥିଲେ । (ମହାଭାରତ, ଆଦିପର୍ବ)

**ଖଣ୍ଡପ୍ରଳୟ**—ବ୍ରହ୍ମା ସକାଳେ ସୃଷ୍ଟି କରି ସନ୍ଧ୍ୟାରେ ଯେଉଁ ପ୍ରଳୟ କରନ୍ତି ତାହାର ନାମ ଖଣ୍ଡପ୍ରଳୟ । ଏହାକୁ ଦୈନନ୍ଦିନ ପ୍ରଳୟ ମଧ୍ୟ କୁହାଯାଏ । ଏଥିରେ ସୃଷ୍ଟିର ପ୍ରାଣୀମାନେ ଲୟପ୍ରାପ୍ତ ହୁଅନ୍ତି, ସୂର୍ଯ୍ୟଙ୍କ ତେଜ ସହସ୍ର ଗୁଣ ବଢ଼ିଯାଏ ଓ ରୁଦ୍ର ସମସ୍ତ ପ୍ରାଣୀମାନଙ୍କୁ ସଂହାର କରନ୍ତି । (ଭାଷାକୋଷ)

**ଖଟ୍ୱାଙ୍ଗ**—ପ୍ରାଚୀନ ରାଜା ବିଶେଷ । ଏ ରାଜା ଦେବତାଙ୍କର ପରମ ହିତାକାଂକ୍ଷୀ ଥିଲେ । ସକଳ ଦେବ-ଶତ୍ରୁ ବିନାଶ କରି ଇନ୍ଦ୍ର ଓ ବଶିଷ୍ଠଙ୍କ ସହିତ ଗୁରୁଙ୍କ ନିକଟକୁ ଗଲେ । ଗୁରୁ ତାଙ୍କୁ ବର ଯାଚିଲେ । ରାଜା କେତେ ତାଙ୍କର ଆୟୁଷ ଅଛି ବୋଲି ପଚାରିଲେ । ଗୁରୁ କହିଲେ ତୋର ଏକ ନିମିଷ ବା ମୁହୂର୍ତ୍ତି ଆୟୁଷ ଅଛି । ତେଣୁ ଖଟ୍ୱାଙ୍ଗ ପୃଥିବୀକୁ ଆସି ଭଗବାନଙ୍କୁ ଭଜିଲି ଅକାଞ୍ଚନ ମେଲେ । ମୁହୂର୍ତ୍ତେ ଭଜନ ପରେ ଖଟ୍ୱାଙ୍ଗଙ୍କର ମୁକ୍ତି ହେଲି ଓ ସେ ଭଗବାନଙ୍କ ଶରୀରରେ ଲୀନ ହୋଇଗଲେ ।

(ଭାଗବତ ୨ୟ ସ୍କନ୍ଧ, ପ୍ରଥମ ଅଧ୍ୟାୟ)

**ଖର**—ରାକ୍ଷସ ବିଶେଷ । ସୁମାଳୀ ରାକ୍ଷସ କନ୍ୟା ରାକା ବିଶ୍ରବା ମହର୍ଷିଙ୍କୁ ବିବାହ କରିଥିଲି । ରାକା ଗର୍ଭରେ ଖର ନାମକ ପୁତ୍ରଜନ୍ମି ଥିଲି । ଖର ଚୌଦ-ସହସ୍ର ସୈନ୍ୟ ସହିତ ରାବଣ ଅଧିକୃତ ଜନସ୍ଥାନର ସୀମା ରକ୍ଷକରୂପେ ନିଯୁକ୍ତ ହୋଇଥିଲି । ଶ୍ରୀରାମଙ୍କ ବନବାସ ସମୟରେ ସୂର୍ପଣଖାର ନାସା କର୍ଣ୍ଣ ଛିନ୍ନ ହେବା ପରେ ଖର ସହିତ ରାମଚନ୍ଦ୍ରଙ୍କର ଯୁଦ୍ଧ ହୋଇଥିଲି । ଏହି ଯୁଦ୍ଧରେ ଖର, ତଦୀୟ ସେନାପତି ଦୂଷଣ ଏବଂ ଚୌଦ ସହସ୍ର ସୈନ୍ୟ ନିହିତ ହୋଇଥିଲେ । ଅକମ୍ପନ ନାମକ ରାକ୍ଷସ ଏ ଯୁଦ୍ଧରୁ ପଳାଇଯାଇ ରାବଣଙ୍କୁ ଏ ସମ୍ବାଦ ଦେଲି । (ରାମାୟଣ, ଅରଣ୍ୟକାଣ୍ଡ)

**ଖରଖର ଓଷା**—ଓଡ଼ିଶାରେ ଗଞ୍ଜାମ ଜିଲ୍ଲାରେ ଏ ଓଷାର ଯଥେଷ୍ଟ ପ୍ରଶସ୍ତି ଅଛି । ଚୈତ୍ରମାସର ପ୍ରତି ରବିବାର ଦିନ ଘରର ଅଭିଆଡ଼ୀ ଝିଅମାନେ ଏ ଓଷା କରନ୍ତି ଏ ଦିନମାନଙ୍କରେ ସେମାନେ ଅଁଳା ହଳଦୀ ଲଗାଇ ପୋଖରୀରେ ଗାଧୋଇ ସାରି ବାଲି ଓ ଅଁଳାଗଛ ଆଣି ଦେବତା ବିରନ୍ତି ଗଢ଼ନ୍ତି । ସନ୍ଧ୍ୟାରେ ଏହି ଦେବତାଙ୍କଠାରେ ପିଠା, ଆମ୍ବ, ନଡ଼ିଆ, ଆଦି ପୂଜା ହୁଏ, ଏବଂ ତହିଁଆରଦିନ ଏ ଓଷା ଉଜୁଆଁ ହୁଏ । (ଭାଷାକୋଷ)

**ଖାଣ୍ଡବ**—ପ୍ରାଚୀନ ବନ ବିଶେଷ । ଯମୁନା ତୀରସ୍ଥ ପ୍ରଦେଶ, କୁରୁକ୍ଷେତ୍ର ବା ଇନ୍ଦ୍ରପ୍ରସ୍ଥ ସନ୍ନିହିତ ଦେଶ ବିଶେଷ, ଖାଣ୍ଡବ ପ୍ରସ୍ଥ । ମଧ୍ୟଭାରତରେ ଭୈଁସାଓ୍ୱାଲ ନାମକ ରେଳଷ୍ଟେସନରୁ ଖାଣ୍ଡୋଓ୍ୱା ନଗରୀ ପର୍ଯ୍ୟନ୍ତ ବିସ୍ତୃତ ଦେଶ ବିଶେଷ । ଏହି ପ୍ରଦେଶରେ ଗୋଟିଏ ଅରଣ୍ୟ ଥିଲି । ତାହାକୁ ଖାଣ୍ଡବାରଣ୍ୟ ବୋଲିଯାଉଥିଲି । ସୁଭଦ୍ରା ହରଣ ପରେ ଅର୍ଜୁନ ଶ୍ରୀକୃଷ୍ଣଙ୍କ ସାହାଯ୍ୟରେ ଅଗ୍ନିକୁ ପରିତୁଷ୍ଟ କରିବାପାଇଁ ଏହି ଅରଣ୍ୟକୁ

ଅଗ୍ନିଦ୍ୱାରା ଦଗ୍ଧ କରାଇ ଥିଲେ । (ମହାଭାରତ) ଏହି ବନରେ ଇନ୍ଦ୍ରପ୍ରସ୍ଥ ନଗର ସ୍ଥାପିତ ହୋଇଥିଲା ।

**ଖାଣ୍ଡବପ୍ରସ୍ଥ**—ଧୃତରାଷ୍ଟ୍ର ଖାଣ୍ଡବପ୍ରସ୍ଥ ଗ୍ରାମକୁ ପାଣ୍ଡବମାନଙ୍କୁ ବାସ କରିବାକୁ ଦେଇଥିଲେ । ପାଣ୍ଡବମାନେ ଏହିଠାରେ ଇନ୍ଦ୍ରପ୍ରସ୍ଥ ନଗର ବସାଇଥିଲେ; ପ୍ରାଚୀନ ଦିଲ୍ଲୀ । (ମହାଭାରତ)

**ଖେଚରୀ**—ଦୁର୍ଗାଙ୍କର ନାମାନ୍ତର । ଦେବଯୋନି ବିଶେଷ । ତନ୍ତ୍ରୋକ୍ତ ମୁଦ୍ରା ବିଶେଷ । ଦୁଇ ଭ୍ରୂର ମଧ୍ୟ ସ୍ଥାନକୁ ଦୃଷ୍ଟି ଦେବା ରୂପ ମୁଦ୍ରା । (ଭାଷାକୋଷ)

**ଖ୍ୟାତି**—ମହର୍ଷି ଭୃଗୁଙ୍କ ପତ୍ନୀ । ପ୍ରଜାପତି ଦକ୍ଷଙ୍କ ଦୁହିତା । ଏହାଙ୍କ ଗର୍ଭରୁ ଧାତୃ ଓ ବିଧାତୃ ନାମକ ଦୁଇ ପୁତ୍ର ଓ ଲକ୍ଷ୍ମୀନାମ୍ନୀ ଏକ କନ୍ୟା ଜାତ ହୋଇଥିଲେ ।



# ଗ

**ଗଉରୀ, ଗୌରୀ**—ନଗରାଜ ହିମାଳୟଙ୍କ କନ୍ୟା ପାର୍ବତୀ ।

**ଗଉରୀ ତୀର୍ଥ**—ବୃନ୍ଦାବନ ନିକଟରେ ପ୍ରବାହିତ ହେଉଥିବା ଯମୁନାନଦୀରେ ଏହି ତୀର୍ଥ ଅଛି । ଏହା ଚନ୍ଦ୍ରାବଳୀଙ୍କର ଶ୍ରୀକୃଷ୍ଣଙ୍କ ସହିତ ମିଳନର ସଙ୍କେତ-ସ୍ଥଳ ଥିଲା । (ଭାଷାକୋଷ)

**ଗଙ୍ଗା**—ଭାରତର ପୁଣ୍ୟତୋୟା ସ୍ରୋତସ୍ୱତୀ । ଏହା ଗଙ୍ଗୋତ୍ରୀ ଶୃଙ୍ଗରୁ ଉତ୍ପନ୍ନ ହୋଇ ପ୍ରସିଦ୍ଧ ବ୍ୟାସାଶ୍ରମ ତପୋବନର ପାର୍ଶ୍ୱ ଦେଇ ନିମ୍ନକୁ ପ୍ରବାହିତ ହୋଇ ହୃଷୀକେଶ ଦେଇ ସମତଳ ଭୂମିକୁ ଆସି ସାଗର ଅଭିମୁଖରେ ଯାଇଛି । ପ୍ରାଚୀନ କାଳରୁ ଋଷିମାନେ ଏହି ନଦୀର ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି । ବାଲ୍ମୀକି ରାମାୟଣରେ ଲେଖାଯାଇଛି ଯେ ଗିରିରାଜ ହିମାଳୟଙ୍କର

ଦୁଇଟି କନ୍ୟାଥିଲେ—ଗୋଟିଏ ଗଙ୍ଗା ଓ ଅନ୍ୟଟି ଉମା । ହିମାଳୟ ସୁମେରୁଙ୍କ କନ୍ୟା ମେନକାଙ୍କୁ ବିବାହ କରିଥିଲେ । ଏହି ମେନକାଙ୍କ ଗର୍ଭରୁ ଗଙ୍ଗା ନାମ୍ନୀ କନ୍ୟା ଜାତ ହୁଏ । ଦେବତାମାନେ କୌଣସି ବିଶେଷ କାରଣ-ବଶତଃ ହିମାଳୟଙ୍କ ନିକଟରେ ଗଙ୍ଗାଙ୍କୁ ନେବାପାଇଁ ଭିକ୍ଷା କଲେ । ଏହି ଗଙ୍ଗାରେ ମହାଦେବଙ୍କ ରେତଃ ନିକ୍ଷିପ୍ତ ହେଲା । ମାତ୍ର ଗଙ୍ଗା ଏହା ଧାରଣ କରିବା ପାଇଁ ଅସମର୍ଥା ହୋଇ ହିମାଳୟପାର୍ଶ୍ବସ୍ଥ ଶରବଣରେ ନିକ୍ଷେପ କଲେ । ଗଙ୍ଗା ଗର୍ଭ ପରିହାର କରିବାରୁ ଦେବତାମାନେ ବିପଦଗ୍ରସ୍ତ ହୋଇ ସେହି ଗର୍ଭ ରକ୍ଷାକରିବା ନିମିତ୍ତ ଷଡ଼ କୃତ୍ତିକାଙ୍କୁ ପ୍ରେରଣ କଲେ । ଏହି କୃତ୍ତିକାଗଣଙ୍କ ଭିନ୍ନ ଦେବଲୋକରେ ଆଉ କେହି ସେ ଅଗ୍ନିପ୍ରଭ ରେତଃ ଧାରଣ କରିବା ପାଇଁ ସକ୍ଷମ ନଥିଲେ । ଦେବତାମାନଙ୍କ ଆଦେଶରେ କୃତ୍ତିକାମାନେ ସେହି ରେତଃ ପାନ କରି ଗର୍ଭଧାରଣ କଲେ । ପ୍ରସବକାଳ ହୁଅନ୍ତେ ଏମାନେ ଛଅଟି ପୁତ୍ର ପ୍ରସବ କଲେ । ପ୍ରସବମାତ୍ରେ ଏହି ଛଅପୁତ୍ରଙ୍କୁ ଏକାଠି କରିବା ଦ୍ୱାରା କୁମାର ବା କାର୍ତ୍ତିକେୟ ଉଦ୍ଭବ ହେଲେ । ଗଙ୍ଗା ଗର୍ଭ ନିକ୍ଷେପ ପରେ ବ୍ରହ୍ମାଙ୍କ କମଣ୍ଡଳୁରେ ଅବସ୍ଥାନ କଲେ । ସଗରବଂଶୀୟମାନେ ପୂର୍ବପୁରୁଷମାନଙ୍କ ଉଦ୍ଧାର ପାଇଁ ବହୁବର୍ଷ ତପସ୍ୟା କରିବା ପରେ ଅବଶେଷରେ କୃତକାର୍ଯ୍ୟ ହେଲେ । ସଗରବଂଶୀୟ ଭଗୀରଥ ଗଙ୍ଗାଙ୍କୁ ପାତାଳକୁ ଆଣି ଷାଠିଏ ସହସ୍ର ସଂଖ୍ୟକ ସଗର ସନ୍ତାନମାନଙ୍କୁ ଉଦ୍ଧାର କରିଥିଲେ । ଭଗୀରଥଙ୍କ ଦ୍ୱାରା ଗଙ୍ଗା ଆନୀତା ହୋଇଥିବାରୁ ସେହିଦିନଠାରୁ ତାଙ୍କର ନାମ ଭାଗୀରଥୀ ହୋଇଛି ।

ବିଷ୍ଣୁ ନଖ କୋଣେ ଏ ଥିଲା,
ବାମନାବତାରେ ଭଗୀରଥ ଆଣିଲା । ( ବୈଦେହୀଶ ବିଳାସ, ଉପେନ୍ଦ୍ରଭଞ୍ଜ)

ଗଙ୍ଗାଙ୍କର ଆଉ ଗୋଟିଏ ନାମ ବିଷ୍ଣୁପଦୀ । ବ୍ରହ୍ମବୈବର୍ତ୍ତ ପୁରାଣ ମତରେ ଗଙ୍ଗା ବିଷ୍ଣୁଙ୍କ ପାଦପଦ୍ମରୁ ଉଦ୍ଭୂତ ବୋଲି ତାଙ୍କର ଏପରି ନାମ ଅଛି । ସେହି ପୁରାଣରେ ଲିଖିତ ହୋଇଛି—ଲକ୍ଷ୍ମୀ, ସରସ୍ୱତୀ, ଗଙ୍ଗା ଓ ତୁଳସୀ ଏ ସମସ୍ତେ ନାରାୟଣଙ୍କ ପତ୍ନୀ । ଗଙ୍ଗା ଶ୍ରୀକୃଷ୍ଣଙ୍କ ଅଙ୍ଗରୁ ଉଦ୍ଭୂତା । ସେ ସ୍ଥିର କରିଥିଲେ ଯେ ଯାହାଙ୍କ ଅଙ୍ଗରୁ ସେ ଜାତ ହେଲେ ତାଙ୍କ ବ୍ୟତୀତ ସେ ଆଉ ଅନ୍ୟ ପୁରୁଷଙ୍କୁ ସ୍ପର୍ଶ କରିବେ ନାହିଁ । ମାତ୍ର ଏ କାର୍ଯ୍ୟରେ ମାନବତୀ ରାଧା ଏକାନ୍ତ କୁପିତା ହୋଇ ତାଙ୍କୁ ପିଇଦେବେ ବୋଲି ଉଦ୍ୟତ ହେଲେ । ଗଙ୍ଗା ଭୀତ ହୋଇ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ଲୁଚି ରହିଲେ । ଅନନ୍ତର ବ୍ରହ୍ମା ଜଗତ୍ତ୍ ଶୁଷ୍କପ୍ରାୟ ଦେଖି ଗୋଲକଧାମରେ ଶ୍ରୀକୃଷ୍ଣଙ୍କ ସହିତ ସାକ୍ଷାତ

କଲେ । ବ୍ରହ୍ମାଙ୍କ ଅଭିପ୍ରାୟ ଜାଣିପାରି ଭଗବାନ ଶ୍ରୀଯୁ ପଦାଙ୍ଗୁଷ୍ଠ ନଖର ଅଗ୍ରଭାଗରୁ ଗଙ୍ଗାଙ୍କୁ ବାହାର କରିଦେଲେ । ତତ୍ପରେ ବ୍ରହ୍ମାଙ୍କ ଅନୁରୋଧରେ ଶ୍ରୀକୃଷ୍ଣ ଗାନ୍ଧର୍ବ ବିଧିରେ ଗଙ୍ଗାଙ୍କୁ ବିବାହ କଲେ । ତାପରେ ଗଙ୍ଗା ପୁନର୍ବାର ପୃଥିବୀକୁ ଆସିଲେ । ସେ ବିଷ୍ଣୁପଦରୁ ନିର୍ଗତ ହୋଇଛନ୍ତି ବୋଲି ଜଗତରେ ତାଙ୍କର ବିଷ୍ଣୁପଦୀ ନାମ ବିଖ୍ୟାତ ହୋଇରହିଲା ।

(ବ୍ରହ୍ମବୈବର୍ତ୍ତ ପ୍ରକୃତିଖଣ୍ଡ)

ପୌରାଣିକମାନେ କହନ୍ତି ଆକାଶର ଯେଉଁ ସ୍ଥାନରେ ଧ୍ରୁବ ନକ୍ଷତ୍ର ଅଛି, ସେହି ସ୍ଥାନ ବିଷ୍ଣୁଙ୍କର ତୃତୀୟ ପାଦ । ଏ ସ୍ଥାନରେ ମେଘ ସୃଷ୍ଟି ହୋଇ ଭୂତଳରେ ପତିତ ହୁଏ । ଏହି ବୃଷ୍ଟିରୁ ଗଙ୍ଗାଙ୍କର ଉତ୍ପତ୍ତି । କାହାରି କାହାରି ମତରେ ଏଥିଲାଗି ମଧ୍ୟ ଗଙ୍ଗାଙ୍କୁ ବିଷ୍ଣୁପଦୀ ବୋଲି କୁହାଯାଏ ।

ଗଙ୍ଗା ବିଷ୍ଣୁପଦରୁ ନିର୍ଗତ ହୋଇ ଚନ୍ଦ୍ରମଣ୍ଡଳ ପ୍ଲାବିତ କରି ବ୍ରହ୍ମଲୋକରେ ପତିତ ହୋଇଛନ୍ତି । ସେହିଠାରେ ବ୍ରହ୍ମପୁରୀ ବେଷ୍ଟନ କରି ଚାରି ଧାମର ଚାରି ଦିଗକୁ ଗମନ କରିଅଛନ୍ତି । ଏହି ଚାରିଗୋଟି ସ୍ରୋତର ନାମ ସୀତା, ଅଳକନନ୍ଦା, ଚକ୍ଷୁ ଓ ଭଦ୍ରା । ମହାଦେବ ଅଳକନନ୍ଦାଙ୍କୁ ବହୁବର୍ଷ ପର୍ଯ୍ୟନ୍ତ ମସ୍ତକରେ ଧାରଣ କରିଥିଲେ । ଏହି ଧାର ହରଜଟାରୁ ଭ୍ରଷ୍ଟ ହୋଇ ଭୂମିରେ ପଡ଼ି ସଗର ସନ୍ତାନମାନଙ୍କୁ ଉଦ୍ଧାର କରିଥିଲେ ।

ଗଙ୍ଗାଙ୍କର ଆଉ ଗୋଟିଏ ନାମ ଜାହ୍ନବୀ । ଭଗୀରଥ ଯେତେବେଳେ ଗଙ୍ଗାଙ୍କୁ ସ୍ୱର୍ଗରୁ ପାତାଳଆଡ଼କୁ ଆଣିଲେ ସେତେବେଳେ ପଥମଧ୍ୟରେ ଗଙ୍ଗାଙ୍କ ତରଙ୍ଗବେଗ ଜହ୍ନୁ ମୁନିଙ୍କ ଆଶ୍ରମ ପ୍ଲାବିତ କରିଦେଲା । ଜହ୍ନୁ ଗୋଟିଏ ଯଜ୍ଞର ଆୟୋଜନ କରୁଥିଲେ । ଆଶ୍ରମ ଗଙ୍ଗା ଜଳରେ ପ୍ଲାବିତ ହେବାରୁ ତାହା ଭ୍ରଷ୍ଟ ହୋଇଗଲା । ଋଷି କ୍ରୁଦ୍ଧ ହୋଇ ଯୋଗବଳରେ ଗଙ୍ଗାଙ୍କୁ ପାନ କରିଦେଲେ । ପରେ ଭଗୀରଥ ବହୁ ଅନୁନୟ କରିବାରୁ ଗଙ୍ଗା ଋଷିଙ୍କ କର୍ଣ୍ଣରନ୍ଧ୍ର ବାଟେ ବାହାରିଲେ । ସେହି ଦିନଠାରୁ ଗଙ୍ଗାଙ୍କର ନାମ ଜାହ୍ନବୀ (ଜହ୍ନୁକନ୍ୟା) ହେଲା । ପୁରାଣମତେ ଭାଦ୍ର କୃଷ୍ଣ ଚତୁର୍ଦ୍ଦଶୀରେ ଗଙ୍ଗାଜଳ ଯେତେ ଊର୍ଦ୍ଧ୍ୱକୁ ଉଠେ ସେହି ପର୍ଯ୍ୟନ୍ତ ଗଙ୍ଗାଗର୍ଭ ନାମରେ ଅଭିହିତ ହୁଏ । ତଦୂର୍ଦ୍ଧ୍ୱ ସ୍ଥାନକୁ ଗଙ୍ଗାତୀର ବୋଲି କହନ୍ତି । ପ୍ରମାଣ ଯଥା :—

ଭାଦ୍ର କୃଷ୍ଣ ଚତୁର୍ଦ୍ଦଶ୍ୟାଂ ଯାବଦାକ୍ରମତେ ଜଳମ୍ ।
ତାବଦ୍‌ଗର୍ଭଂ ବିଜାନୀୟାତ୍‌ତଦୂର୍ଦ୍ଧ୍ୱଂ ତୀରମୁଚ୍ୟତେ ।

ମହାଭାରତ ମତେ ଗର୍ଭରୁ ୧୫୦ ହାତ ପର୍ଯ୍ୟନ୍ତ ସ୍ଥାନ ଗଙ୍ଗାତଟର ବୋଲି ଜଣାଯାଏ । ଏ ସ୍ଥାନରେ ବସି ଦାନ ଗ୍ରହଣ କରିବା ନିଷିଦ୍ଧ । (ଭାଷାକୋଷ ୨ୟ ୨୦୫୬ ପୃଷ୍ଠାରେ ଗଙ୍ଗା ବିଷୟ ନେଇ ଯେଉଁ ଦୁଇଟି ଉପାଖ୍ୟାନ ପ୍ରଦତ୍ତ ହୋଇଛୁ ତାହା ଏଠାରେ ପଠନୀୟ)

ବୈଜ୍ଞାନିକମାନେ ପରୀକ୍ଷା କରି ଦେଖିଅଛନ୍ତି ଯେ ଗଙ୍ଗାଜଳକୁ ବହୁକାଳ ବନ୍ଦ କରି ରଖିଦେଲେ ସେଥିରେ ଅନ୍ୟାନ୍ୟ ନଦୀର ଜଳ ପରି କୀଟାଣୁ ଜନ୍ମନ୍ତି ନାହିଁ । ଗଙ୍ଗାଜଳ ଅତି ସ୍ୱାସ୍ଥ୍ୟକର ।

(ଖ) ଗଙ୍ଗାଦେବୀ, ଶାନ୍ତନୁଙ୍କ ସ୍ତ୍ରୀ ଓ ଭୀଷ୍ମଙ୍କ ମାତା ।

(ଗ) ପଦ୍ମପୁରାଣୋକ୍ତ ଧର୍ମଦେବଙ୍କ ପତ୍ନୀ ।

(ଘ) ନୀଳକଣ୍ଠଙ୍କ ସ୍ତ୍ରୀ ଓ ଶଙ୍କରାଚାର୍ଯ୍ୟଙ୍କ ମାତା ।

**ଗଙ୍ଗାଧର**—(କ) ମହାଦେବ । ମୁଣ୍ଡରେ ଗଙ୍ଗାଙ୍କୁ ଧାରଣ କରିଥିବାରୁ ମହାଦେବଙ୍କ ନାମାନ୍ତର । ପୁରାଣ କହେ ଗଙ୍ଗା ପୃଥିବୀରେ ଅବତୀର୍ଣ୍ଣ ହେବା ପୂର୍ବରୁ ମହାଦେବଙ୍କ ମସ୍ତକରେ ପଡ଼ି ତାଙ୍କ ମସ୍ତକରୁ ପୃଥିବୀକୁ ଓହ୍ଲାଇଥିଲେ ।

(ଖ) ସୂର୍ଯ୍ୟସିଦ୍ଧାନ୍ତ ଅନୁସାରେ ଗଣିତ ଗ୍ରହମାନ ନାମକ ଜ୍ୟୋତିଷ ଗ୍ରନ୍ଥର ରଚୟିତା । ଏ ମହାତ୍ମା ବିନ୍ଧ୍ୟ ଗିରିର ଦକ୍ଷିଣ ଅଞ୍ଚଳରେ ଚତୁର୍ଦ୍ଦଶ ଶତାବ୍ଦରେ ଜନ୍ମଗ୍ରହଣ କରିଥିଲେ ।

**ଗଙ୍ଗାସାଗର**—ଗଙ୍ଗା ସମୁଦ୍ରରେ ମିଳିତ ହେବାର ପ୍ରସିଦ୍ଧ ସ୍ଥାନ । ଏଠାରେ କପିଳମୁନିଙ୍କ ଆଶ୍ରମ ଥିବାର କଥିତ ହୁଏ । ଏହିଠାରେ ସଗରପୁତ୍ରମାନେ ଭସ୍ମୀଭୂତ ହୋଇଥିଲେ । ଏଠାରେ ସହସ୍ର ସହସ୍ର ଯାତ୍ରୀ ମକର ସଂକ୍ରାନ୍ତିରେ ସ୍ନାନାର୍ଥେ ଉପସ୍ଥିତ ହୁଅନ୍ତି ।

**ଗଜ**—ରାମଚନ୍ଦ୍ରଙ୍କ ସେନା, ବାନର ବିଶେଷ । (ଖ) ଗଜାସୁର, ଏ ମହିଷାସୁରର ପୁତ୍ର, ଶିବଙ୍କ ଦ୍ୱାରା ନିହତ ହୋଇଥିଲା ।

**ଗଜୋଦ୍ଧାରଣ ବେଶ**—ଜଗନ୍ନାଥ ଆଦି ଦେବବିଗ୍ରହଙ୍କର ଏକ ବେଶର ନାମ । ଏହି ବେଶଟି ବିଷ୍ଣୁ କୁମ୍ଭୀର ମୁଖରୁ ଗଜକୁ ଉଦ୍ଧାର କରିଥିବା ବିଷୟକ ପୌରାଣିକ ଉପାଖ୍ୟାନ ଉପରେ ଆଧାରିତ । ଏହି ଗଜୋଦ୍ଧାରଣବେଶ କରିବା ଉପଲକ୍ଷ୍ୟରେ ଶ୍ରୀଜଗନ୍ନାଥ ବିଗ୍ରହରେ

ଚତୁର୍ଭୁଜ ଓ ସୁଦର୍ଶନଚକ୍ର ଓ ଗୋଡ଼ ଆଦି ଝଙ୍କି, ତାଙ୍କ ଗୋଡ଼ତଳେ ଗୋଟିଏ ହାତୀକୁ କୁମ୍ଭୀର ଧରିଥିବାର ମୂର୍ତ୍ତି ଝଙ୍କାଯାଏ । ପୂର୍ବେ କେବଳ ଜଗନ୍ନାଥଙ୍କ ମୂର୍ତ୍ତିକୁ ଗଜୋଦ୍ଧାରଣ ବେଶରେ ସଜ୍ଜିତ କରାଯାଉଥିଲା ଏବେ ସ୍ଥାନେ ସ୍ଥାନେ ଶ୍ରୀକୃଷ୍ଣ ଓ ବିଷ୍ଣୁଙ୍କର ଅନ୍ୟ ବିଗ୍ରହମାନଙ୍କୁ ମଧ୍ୟ ଗଜୋଦ୍ଧାରଣ ବେଶ କରାସିବାର ଦେଖାଯାଏ । ପୁରୀରେ ମାଘ ପୂର୍ଣ୍ଣିମୀ ଦିନ ଶ୍ରୀଜଗନ୍ନାଥଙ୍କର ଏହି ବେଶ ହୁଏ । (ଭିଷାକୋଷ)

**ଗଣେଶ**—ପାର୍ବତୀଙ୍କ ପୁତ୍ର । ସତୀ ନିଜ ପିତାଙ୍କ ଯଜ୍ଞଶାଳାରେ ଉପସ୍ଥିତ ହୋଇ ପତି ନିନ୍ଦା ଶୁଣି ଦେହତ୍ୟାଗ କରିବା ପରେ ହିମାଳୟଙ୍କ ଘରେ ମେନକାଙ୍କ ଗର୍ଭରୁ ଜନ୍ମ ଗ୍ରହଣ କଲେ । ମେନକାଙ୍କ କନ୍ୟାରୂପେ ଦେହଧାରୀ ହେବାରୁ ସେ ପାର୍ବତୀ ନାମ ଧାରଣ କରିଥିଲେ । ଯୌବନରେ ପଦାର୍ପଣ କରିବା ମାତ୍ରେ ମହାଦେବଙ୍କ ସହିତ ପାର୍ବତୀଙ୍କର ପରିଣୟ କ୍ରିୟା ସମ୍ପାଦିତ ହେଲା । ବିବାହ ପରେ ବହୁବର୍ଷ ପତି ସହବାସାନ୍ତେ ଏହାଙ୍କର କୌଣସି ସନ୍ତାନୋତ୍ପତ୍ତି ନ ହେବାରୁ ମନରେ ବହୁ କଷ୍ଟ ଜାତ ହେଲା । ଶିବ ପତ୍ନୀଙ୍କର ଏହି ଖେଦ ପ୍ରଶମନ ଉଦ୍ଦେଶ୍ୟରେ ବିଷ୍ଣୁଙ୍କ ପ୍ରୀତିସମ୍ପାଦନ ନିମିତ୍ତ ପୁଣ୍ୟକ-ବ୍ରତ କରିବା ପାଇଁ ପାର୍ବତୀଙ୍କୁ ଉପଦେଶ ଦେଲେ । ମହାଦେବ କହିଲେ—"ଏହି ପୁଣ୍ୟକବ୍ରତ ସର୍ବପ୍ରକାର କାର୍ଯ୍ୟସିଦ୍ଧିର ମୂଳସ୍ୱରୂପ । ବର୍ଷେ ପର୍ଯ୍ୟନ୍ତ ଏହି ବ୍ରତ ଅନୁଷ୍ଠାନ କରିବାକୁ ହୁଏ । ଏହି ବ୍ରତ ସୁଖଦ, ପୁଣ୍ୟଜନକ ଓ ସକଳ ସମ୍ପଦ ବିଧାୟକ । ଯେଉଁ ଶ୍ରୀକୃଷ୍ଣଙ୍କ ଆରାଧନାରେ ମନୁଷ୍ୟ ପିତୃପୁରୁଷମାନଙ୍କ ସହିତ ମୁକ୍ତି ଲାଭକରେ, ସେ ଏହି ବ୍ରତରେ ଏକମାତ୍ର ଆରାଧ୍ୟ । ଯେ ହରିମନ୍ତ୍ର ଗ୍ରହଣ କରି ହରିସେବା କରେ, ସେ ପୂର୍ବପୁରୁଷମାନଙ୍କୁ ଉଦ୍ଧାର କରି ନିଜେ ବୈକୁଣ୍ଠ ଗମନପୂର୍ବକ ଶ୍ରୀକୃଷ୍ଣଙ୍କର ପାର୍ଶ୍ୱଚର ହୁଏ । ଅତଏବ ତୁମେ ଦୁର୍ଲ୍ଲଭ ହରିମନ୍ତ୍ର ଗ୍ରହଣ କରି ପୁଣ୍ୟକ-ବ୍ରତ ଅନୁଷ୍ଠାନ କର ।" ପାର୍ବତୀ ବର୍ଷିକଯାଏ ଏହି ପୁଣ୍ୟକ-ବ୍ରତ ଅନୁଷ୍ଠାନ କରିବା ପରେ ବିଷ୍ଣୁ ପ୍ରୀତ ହୋଇ ତାଙ୍କୁ ପୁତ୍ରଦାନ କରିଥିଲେ । ବିଷ୍ଣୁଙ୍କ ପ୍ରସାଦରୁ ପାର୍ବତୀଙ୍କର ଏକ ପୁତ୍ର ସନ୍ତାନ ହେଲା । ହରପାର୍ବତୀଙ୍କର ଆନନ୍ଦର ସୀମା ରହିଲା ନାହିଁ । କୈଳାସରେ ଆନନ୍ଦ ଉତ୍ସବର ତରଙ୍ଗ ଖେଳିଗଲା । ନର୍ତ୍ତକୀମାନେ ନୃତ୍ୟ କରିବାକୁ ଲାଗିଲେ । ଇନ୍ଦ୍ର, ଚନ୍ଦ୍ରାଦି ଦେବତାମାନେ ନବଜାତ ଶିଶୁକୁ ଦେଖିବାକୁ ଆସିଲେ । ଅନ୍ୟାନ୍ୟ ଦେବତାମାନଙ୍କ ସହିତ ଗ୍ରହରାଜ ଶନି ମଧ୍ୟ ଆସିଥିଲେ । ଶନୈଶ୍ଚରଙ୍କୁ ତାଙ୍କ ପତ୍ନୀଙ୍କ ଅଭିଶାପ ଥିଲା, ସେ ଯାହାକୁ ଚାହିଁବେ ତାର ମସ୍ତକ

ଭସ୍ମ ହୋଇଯିବ । ତେଣୁ ଶନି ପାର୍ବତୀଙ୍କ କୋଳରେ ଥିବା ନବଜାତ ଶିଶୁକୁ ଅନାଇଲେ ନାହିଁ । ପାର୍ବତୀ ନିଜର ନବଜାତ ପୁତ୍ରଟିକୁ ଦେଖିବା ପାଇଁ ଶନିଙ୍କୁ ଅନୁରୋଧ କଲେ । ଶନି କହିଲେ—"ମୁଁ ଶିଶୁଟିକୁ ନ ଚାହିଁବାର ଏକ ଗୋପନୀୟ ଇତିହାସ ଅଛି । ଏହା ଆପଣଙ୍କ ନିକଟରେ କହିବା କଥା ନୁହେଁ, ତଥାପି ଆପଣ ବାରମ୍ବାର ଅନୁରୋଧ କରିବା ଯୋଗୁଁ କହୁଛି, ଶୁଣ—ମୁଁ ଚିତ୍ରରଥଙ୍କ କନ୍ୟାକୁ ବିବାହ କରିଥିଲି । ଏହି ପତ୍ନୀ ଦିନେ ଋତୁ ସ୍ନାନାନ୍ତେ ମୋର ସଙ୍ଗମ ଇଚ୍ଛା କଲେ । ମୁଁ ସେତେବେଳେ ବିଷ୍ଣୁ ଧ୍ୟାନରେ ବାହ୍ୟଜ୍ଞାନ ଶୂନ୍ୟ ହୋଇଥିଲି । ପତ୍ନୀ ଋତୁ ବିଫଳ ହୋଇଛି ଭାବି ମୋତେ ଶାପ ଦେଲେ—ଯେହେତୁ ତୁମେ ମୋତେ ଚାହିଁଲ ନାହିଁ ଓ ମୋର ଋତୁ ରକ୍ଷା କଲ ନାହିଁ ଏଥିଲାଗି ତୁମେ ଯାହାକୁ ଦୃଷ୍ଟି ଦେବ ସେ ତତ୍କ୍ଷଣାତ୍ ଧ୍ୱଂସ ହୋଇଯିବ । ସେହିଦିନଠାରୁ ମୁଁ ମୋ ଚକ୍ଷୁରେ କୌଣସି ପଦାର୍ଥକୁ ଚାହେଁ ନାହିଁ ଏବଂ ପ୍ରାଣୀ ହିଂସା ହେବା ଭୟରେ ମସ୍ତକ ଅବନତ କରି ରହେ ।" ପାର୍ବତୀ କିନ୍ତୁ ଏ କଥାକୁ ଗ୍ରାହ୍ୟ କଲେ ନାହିଁ । ସେ ପୁନର୍ବାର ନିଜର ପୁତ୍ରକୁ ଦେଖିବା ପାଇଁ ଶନିଙ୍କୁ ଅନୁରୋଧ କଲେ । ପାର୍ବତୀଙ୍କ ଅନୁରୋଧକ୍ରମେ ଶନି ଶିଶୁ ପ୍ରତି ଦୃଷ୍ଟି ନିକ୍ଷେପ କଲେ । ଶନି ଦୃଷ୍ଟି ମାତ୍ରେ ଶିଶୁର ମସ୍ତକଟି ଧ୍ୱଂସ ହୋଇଗଲା । ପାର୍ବତୀଙ୍କ ଆକୁଳ କ୍ରନ୍ଦନରେ କୈଳାସ ମୁଖରିତ ହୋଇଉଠିଲା । ବିଷ୍ଣୁଙ୍କ ନିକଟକୁ ଏହି ଦୁଃସମ୍ବାଦ ପ୍ରେରିତ ହେଲା । ବିଷ୍ଣୁ ଆସିବା ସମୟରେ ଦେଖିଲେ ଗୋଟିଏ ହାତୀ ପରମ ସୁଖରେ ଶୋଇଛି । ସେ ତାହାର ମସ୍ତକ ଛେଦନ କରି ଆଣିଲେ ଏବଂ ତାହାକୁ ଗଣେଶଙ୍କ କଣ୍ଠ ଦେଶରେ ସଂଯୋଜିତ କଲେ । ହସ୍ତିମୁଖ ବୋଲି ଯଦି କେହି ଗଣେଶଙ୍କୁ ଅନାଦର କରିବ, ସେଥିଲାଗି ଦେବତାମାନେ ମିଳିତ ଭାବରେ ଶପଥ କଲେ ଯେ ସର୍ବାଗ୍ରେ ଗଣେଶ ପୂଜା ନ ହେଲେ ସେମାନେ କେହି ପୂଜା ଗ୍ରହଣ କରିବେ ନାହିଁ । ଏଥିଲାଗି ଏବେ ମଧ୍ୟ କୌଣସି ପୂଜା ହେଲେ ପ୍ରଥମେ ଗଣେଶଙ୍କୁ ପୂଜା କରାଯାଏ । ସେଥିଲାଗି ଗଣେଶ ଅଗ୍ରପୂଜ୍ୟ ।

ବ୍ରହ୍ମବୈବର୍ତ୍ତ ପୁରାଣ ମତରେ ଶିବଙ୍କ ପ୍ରତି କଶ୍ୟପଙ୍କ ଅଭିଶାପ ଯୋଗୁଁ ଗଣେଶଙ୍କ ମସ୍ତକ ଛେଦ ହୋଇଥିଲା । ଏକଦା ସୂର୍ଯ୍ୟଦେବ ମାଳୀ ଓ ସୁମାଳୀ ନାମକ ଦୁଇଜଣ ଶିବ ଭକ୍ତଙ୍କୁ ବଧ କରିବାକୁ ଉଦ୍ୟତ ହେବାରୁ ମହାଦେବ ସୂର୍ଯ୍ୟଙ୍କୁ ତ୍ରିଶୂଳାଘାତ କଲେ । ତ୍ରିଶୂଳ ଦ୍ୱାରା ସୂର୍ଯ୍ୟ ଚେତନାଶୂନ୍ୟ ହେବାରୁ ସମସ୍ତ ଜଗତ୍ ଅନ୍ଧକାରାଚ୍ଛନ୍ନ ହୋଇଗଲା । ସୂର୍ଯ୍ୟଙ୍କ ପିତା ମହର୍ଷି କଶ୍ୟପ ପୁତ୍ରଙ୍କୁ ଜ୍ଞାନଶୂନ୍ୟ ଦେଖି ଶିବଙ୍କୁ ଅଭିଶାପ ଦେଲେ, "ଯେହେତୁ ତୁମେ

ତ୍ରିଶୂଳ ଦ୍ୱାରା ମୋ ପୁଅର ବକ୍ଷସ୍ଥଳ ଭେଦ କରିଛ, ସେଥିପାଇଁ ତୁମ ପୁତ୍ରର ମସ୍ତକ ଛିନ୍ନ ହେବ ।" (ବ୍ରହ୍ମବୈବର୍ତ୍ତ, ଗଣେଶ ଖଣ୍ଡ ।)

ଏକଦା ପରଶୁରାମ ମହାଦେବଙ୍କ ଦର୍ଶନ ପାଇଁ କୈଳାସ ଗଲେ । ମହାଦେବ ପାର୍ବତୀଙ୍କ ସହିତ ଅନ୍ତଃପୁରରେ ନିଦ୍ରାଯାଉ ଥିଲେ । ଗଣେଶ ଦ୍ୱାରରକ୍ଷକ ଥିବାରୁ ପରଶୁରାମଙ୍କୁ ଗୃହ ମଧ୍ୟରେ ପ୍ରବେଶ କରିବାପାଇଁ ଅନୁମତି ଦେଲେନାହିଁ । ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ପରଶୁ-ରାମଙ୍କ କୁଠାର ଘାତରେ ଗଣେଶଙ୍କର ଗୋଟିଏ ଦାନ୍ତ ସମୂଳୋତ୍ପାଟିତ ହେଲା । ସେହିଦିନଠୁ ଗଣେଶ ଏକଦନ୍ତ ବୋଲି ପ୍ରମାଣ ଅଛି । (ବ୍ରହ୍ମବୈବର୍ତ୍ତ)

ଗଣେଶ ପ୍ରସିଦ୍ଧ ଲେଖକ । ସମଗ୍ର ମହାଭାରତ ଏହାଙ୍କ ଦ୍ୱାରା ଲିଖିତ ।
(କୃଷ୍ଣଦ୍ୱୈପାୟନ ଦେଖ)

(ଖ) ଭାଷାକୋଷ ୨ୟ ଭାଗ ୨୦୧୭ ପୃଷ୍ଠା ଗଣେଶଙ୍କ ବିଷୟରେ ଦ୍ରଷ୍ଟବ୍ୟ—ଏ ମହାଦେବ ଓ ପାର୍ବତୀଙ୍କର ଜନନୀ ଓ ସନ୍ତାନରେ ଜ୍ୟେଷ୍ଠ ପୁତ୍ର । ଏ ବିଦ୍ୟାର ଅଧିଷ୍ଠାତ୍ରୀ ଦେବତା ଓ ସମସ୍ତ ବିଘ୍ନ ବିନାଶକ । ଏଥିପାଇଁ ପ୍ରତ୍ୟେକ ଅନୁଷ୍ଠାନରେ ଏହାଙ୍କୁ ପ୍ରଥମେ ଆବାହନପୂର୍ବକ ପୂଜା କରାଯାଏ । ଏହାଙ୍କର ଗଜ ମସ୍ତକ, ଏକଦନ୍ତ, ଅନ୍ତଲପେଟ ଓ ସାପ ପଇତା । ଏହାଙ୍କର ବାହାନ ମୂଷା । ଏ ହାତରେ ଗୋଟିଏ ଲଡୁ ଧରିଥାନ୍ତି । ପରଶୁରାମଙ୍କ ସହିତ ଯୁଦ୍ଧ କରି ଏହାଙ୍କର ଗୋଟିଏ ହାତୀଦାନ୍ତ ଭାଙ୍ଗି ଯାଇଥିଲା ।

(ଗ) ମହାଦେବ ଏକ ଅସୁରକୁ ବଧ କରି ଯାଇଥିବା ସମୟରେ ଏ ପାର୍ବତୀଙ୍କଠାରୁ ଜାତ ହେଲେ ଏବଂ ପାର୍ବତୀ ଏହାଙ୍କୁ ଦ୍ୱାର ଜଗାଇଥିଲେ । ମହାଦେବ ଘରକୁ ଫେରି ଆସିବା ବେଳେ ଏ ତାଙ୍କୁ ଆପଣା ପିତା ବୋଲି ଚିହ୍ନି ନ ପାରି ବାଟ ଛାଡ଼ିଲେ ନାହିଁ ଓ ମହାଦେବ ଏହାଙ୍କ ଶିରଚ୍ଛେଦନ କରି ଭିତରକୁ ଯାଇ ପାର୍ବତୀଙ୍କଠାରୁ ଏହାଙ୍କର ପରିଚୟ ପାଇ ଫେରିଆସି ଦେଖିଲାବେଳକୁ ମୁଣ୍ଡଟି ନାହିଁ, ଗଣ୍ଡିଟି ପଡ଼ିଅଛି । ମହାଦେବ ମୁଣ୍ଡ ଖୋଜି ନ ପାଇ ଉତ୍ତରକୁ ମୁଣ୍ଡ କରି ଶୋଇଥିବା ଗୋଟିଏ ହାତୀର ମୁଣ୍ଡକୁ କାଟି ଆଣି ଏହାଙ୍କ ଗଣ୍ଡିରେ ଯୋଡ଼ି ଦେଇ ଏହାଙ୍କୁ ବଞ୍ଚାଇଲେ ଓ ତଦନୁସାରେ ଏହାଙ୍କର

ହାତୀ ମୁଣ୍ଡ ହେଲା । ଏ ମହାଦେବଙ୍କ ପ୍ରମଥଗଣରେ ସେନାପତି । କଥିତ ଯେ ବ୍ରହ୍ମା ଏହାଙ୍କୁ ମହାଭାରତର ଲେଖକରୂପେ ନିଯୁକ୍ତ କରିଥିଲେ । ରକ୍ତଚନ୍ଦନ, ଓ ରକ୍ତପୁଷ୍ପରେ ଏହାଙ୍କୁ ପୂଜା କରାଯାଏ । ଗଣେଶଚତୁର୍ଥୀ ଦିନ ଗଣେଶଙ୍କର ସ୍ୱତନ୍ତ୍ର ପୂଜା ହୁଏ । ଏହାଙ୍କର ଅନ୍ୟ ନାମ ଗଣାଧିପତି, ଗଣନାଥ, ଗଣପତି, ଗଣାଗ୍ରଣୀ, ଗଣାଧିପ, ଗଣେଶ୍ୱର, ଗଣନାୟକ, ଏକଦନ୍ତ, ଗଜାସ୍ୟ, ଗଜବଦନ, ବିଘ୍ନରାଜ, ବିନାୟକ, ଦ୍ୱୈମାତୁର, ଲମ୍ବୋଦର, ହେରମ୍ବ, ଗଜାନନ, ବିଘ୍ନେଶ ।

(ଗ) ଝଙ୍କାର ୪ର୍ଥ ବର୍ଷ ୭ମ ସଂଖ୍ୟାରେ ଅଧ୍ୟାପକ ଅନାମଚରଣ ସ୍ୱାଇଁ 'ନମୋଃ ଗଣେଶ ବିଘ୍ନେଶ' ଶୀର୍ଷକ ଯେଉଁ ଗବେଷଣାମୂଳକ ପ୍ରବନ୍ଧ ଲେଖିଛନ୍ତି ସେଥିରୁ ଜଣାଯାଏ ଗଣେଶ ବୈଦିକ ଦେବତା ନୁହନ୍ତି । ସେ ଅନାର୍ଯ୍ୟମାନଙ୍କ ଦ୍ୱାରା ପୂଜିତ ଏକ ଉପଦେବତା ମାତ୍ର । କାଳକ୍ରମେ ସେ ଆର୍ଯ୍ୟଜାତିର ଉପାସ୍ୟ ହୋଇଛନ୍ତି ।

× × × ଯେଉଁ ଗଣଦେବଙ୍କୁ ବର୍ବର ଅନାର୍ଯ୍ୟଜାତି ମାଂସ, ମଦିରା ଅର୍ଘ୍ୟ ଦେଇ ସନ୍ତୁଷ୍ଟ କରୁଥିଲ, ସେହି ଗଣେଶ ଆଜି ଆର୍ଯ୍ୟ ସଂସ୍କୃତିର ପଞ୍ଚପୁରୋଧା । ଯେଉଁ ଦେବତା ବିଘ୍ନସ୍ରଷ୍ଟାରୂପେ ବିଖ୍ୟାତ ହୋଇଥିଲେ, ସେ ଆଜି ସର୍ବଶୁଭଦ, ସିଦ୍ଧିଦାତା । ରୁଦ୍ରଙ୍କ ଗଣରେ ସ୍ଥାନ ପାଇବା ଫଳରେ ଯେଉଁ ଗଣେଶଙ୍କୁ ପୁରାଣ, ରୁଦ୍ର ବା ଶିବଙ୍କର ପୁତ୍ର ବୋଲି ପରିଚୟ ଦେଇ-ଥିଲ, ସେହି ପୁରାଣରେ ପୁଣି ଗଣେଶ ଜଗତ୍‌ସ୍ରଷ୍ଟାରୂପେ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର ଆଦି ଦେବତାଙ୍କ ସହିତ ସ୍ୱୟଂ ଶିବଙ୍କୁ ମଧ୍ୟ ସୃଷ୍ଟି କଲେ ।

ଗଣପତିଙ୍କର ଇତିହାସ ଅତି ଅପୂର୍ବ ଓ ବିଚିତ୍ର । ବିଭିନ୍ନ ଯୁଗରେ ବିବର୍ତ୍ତନର ଉନ୍ନତି ଲାଭ କରି ସେ ଯେପରି ଆଜି ହିନ୍ଦୁମାନଙ୍କ ଦେବସମାଜରେ ମୁଖ୍ୟସ୍ଥାନ ଅଧିକାର କରିଅଛନ୍ତି ତାହା ଅନ୍ୟ କୌଣସି ଦେବତାଙ୍କ ଭାଗ୍ୟରେ ଘଟିନାହିଁ । (ଝଙ୍କାର ୪ର୍ଥ ବର୍ଷ, ୭ମ ସଂଖ୍ୟା, ପୃ-୬୪୧-୬୪୨) ।

**ଗଣ୍ଡକୀ**—ସ୍ୱନାମଖ୍ୟାତ ଗଙ୍ଗାର ଉପନଦୀ ବିଶେଷ । ତୁଳସୀ ବା ବୃନ୍ଦାବତୀଙ୍କ ଅଭିଶାପରେ ବିଷ୍ଣୁ ଶାଳଗ୍ରାମ ଶିଳାରୂପେ ଏହି ନଦୀରେ ଉତ୍ପନ୍ନ ହୋଇଥାନ୍ତି ।
(କାର୍ତ୍ତିକ ମାହାତ୍ମ୍ୟ)

ଏ ନଦୀ ଶାଳଗ୍ରାମ ଦେଶ ମଧ୍ୟ ଦେଇ ପ୍ରବାହିତ ହେଉଥିବାରୁ ଏ ନଦୀ ଗର୍ଭରେ ମିଳୁଥିବା କ୍ଷୁଦ୍ର ଶିଳାଖଣ୍ଡମାନଙ୍କୁ ଶାଳଗ୍ରାମ ଶିଳା

ବୋଲଯାଏ । ନେପାଳ ରାଜ୍ୟର ମୁକ୍ତିନାଥ ଉପରେ ଏ ନଦୀର ଉତ୍ପତ୍ତିସ୍ଥଳ । ପାଟନାର ଅପରପାରରେ ଏ ନଦୀ ଗଙ୍ଗାନଦୀ ସଙ୍ଗେ ମିଳିତ ହୋଇଅଛି ।
(ଭାଷାକୋଷ)

**ଗନ୍ଧମାଦନ**—ରାମାୟଣବର୍ଣ୍ଣିତ ସର୍ବୌଷଧିପୂର୍ଣ୍ଣ ହିମାଳୟସ୍ଥ ଗିରି ବିଶେଷ ଓ ତହିଁର ଗୋଟିଏ ବନ । ପୁରାଣରେ ବର୍ଣ୍ଣିତ ଏହି ପର୍ବତ ଇଲାବୃତ ଓ ଭଦ୍ରାଶ୍ୱ ବର୍ଷ ମଧ୍ୟରେ ଅବସ୍ଥିତ । ନୀଳନିଷଧ ପର୍ଯ୍ୟନ୍ତ ଏହାର ବିସ୍ତାର । ଶକ୍ତିବିଦ୍ଧ ହୋଇ ଲକ୍ଷ୍ମଣ ଭୂପତିତ ହେବାରୁ ହନୁମାନ ଏହି ପର୍ବତରୁ ବିଶଲ୍ୟକରଣୀ ନାମକ ଔଷଧ ଆଣି ତାହାଙ୍କୁ ପୁନରୁଜ୍ଜୀବିତ କରିଥିଲେ । ଏ ପର୍ବତର ଉଚ୍ଚତା ୩୪୭୨୧ ଫୁଟ । (ଭାଷାକୋଷ)

**ଗନ୍ଧର୍ବ**—ପୁରାଣ ମତରେ ଗନ୍ଧର୍ବମାନେ ଦେବତାଙ୍କ ଶ୍ରେଣୀ ବିଶେଷ । ଏମାନେ ସ୍ୱର୍ଗରେ ରହନ୍ତି ଓ ଗାନ କରନ୍ତି । ଅଗ୍ନି ପୁରାଣରେ ଗନ୍ଧର୍ବଙ୍କର ଏଗାର ଶ୍ରେଣୀ କଳ୍ପିତ ହୋଇଛି । ହାହା, ହୁହୁ, ଚିତ୍ର, ହଂସ, ବିଶ୍ୱାବସୁ, ଗୋମାୟୁ, ତୁମ୍ବୁରୁ, ନନ୍ଦୀ ଗନ୍ଧର୍ବମାନଙ୍କ ମଧ୍ୟରେ ପ୍ରଧାନ । ବେଦରେ ଗନ୍ଧର୍ବଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଛି, ୧-ସ୍ୱର୍ଗବାସୀ, ଓ ୨-ଅନ୍ତରୀକ୍ଷବାସୀ । ଗନ୍ଧର୍ବମାନଙ୍କର ସ୍ୱାମୀ ବରୁଣ ଓ ମତାନ୍ତରେ କୁବେର । ଉପନିଷଦ ଓ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଗନ୍ଧର୍ବଙ୍କର ଦୁଇଟି ଶ୍ରେଣୀ ବିଭାଗ କରାଯାଇଛି; ୧. ଦେବ ଗନ୍ଧର୍ବ ଓ ୨. ମନୁଷ୍ୟ ଗନ୍ଧର୍ବ । ଗନ୍ଧର୍ବମାନଙ୍କର ଅନ୍ୟ ନାମ ବିଦ୍ୟାଧର । (ହି : ଶବ୍ଦସାଗର) ଗନ୍ଧର୍ବୀମାନେ ପରମାସୁନ୍ଦରୀ ବୋଲି ପୁରାଣ ବିଖ୍ୟାତ । (ଭାଷାକୋଷ)

**ଗନ୍ଧର୍ବପୁର**—ଏହା ମାନସରୋବର ନିକଟରେ ଅବସ୍ଥିତ । ଗନ୍ଧର୍ବମାନେ ଏ ନଗରକୁ ରକ୍ଷା କରୁଥିଲେ । ଅର୍ଜୁନ ଏହି ନଗରକୁ ଜୟ କରି ତିତ୍ତିର, କଲ୍ମାଷ ଓ ମେଣ୍ଡୁକ ନାମକ ଅଶ୍ୱ ଆଣିଥିଲେ । (ହି: ଶବ୍ଦସାଗର, ଭାଷାକୋଷ)

**ଗୟ**—(୧) ଜଣେ ଧର୍ମ ପରାୟଣ ସତ୍କର୍ମାନ୍ୱିତ ରାଜା । ଏ ରାଜା ଅମୂର୍ତ୍ତିରୟଙ୍କ ପୁତ୍ର । ଏ ୧୦୦ ବର୍ଷଯାଏ ଯଜ୍ଞାନ୍ନଭୋଜୀ ଥିଲେ । ଅଗ୍ନିଙ୍କ ବରପ୍ରସାଦରୁ ବେଦପାଠରେ ଏହାଙ୍କର ଅଧିକାର ଲାଭ ହୋଇଥିଲା । ଏ ନିଷ୍କଣ୍ଟକ ରାଜ୍ୟର ରାଜା ଥିଲେ । ଏ ପ୍ରତିଦିନ ସକାଳୁ ଲକ୍ଷେ ଷାଠିଏ ହଜାର ଗୋରୁ, ଦଶ ହଜାର ଘୋଡ଼ା ଏବଂ ଏକ ଲକ୍ଷ ନିଷ୍କ (ମୁଦ୍ରାବିଶେଷ) ଦାନ କରୁଥିଲେ । ଏହାଙ୍କ ଦ୍ୱାରା ଏକ ବୃହତ୍ ଯଜ୍ଞ ଅନୁଷ୍ଠିତ ହୋଇଥିଲା ।

ଏହି ଯଜ୍ଞବେଦୀର ଦୈର୍ଘ୍ୟ ୩୬ ଯୋଜନ ଓ ପ୍ରସ୍ଥ ୩୦ ଯୋଜନ । ଏହା ଏକ ସ୍ୱର୍ଣ୍ଣମୟ ବେଦୀ । ଏହି ଯଜ୍ଞ ଅନୁଷ୍ଠାନ କରି ଗୟ ଜଗଦ୍‌ବିଖ୍ୟାତ ହୋଇଥିଲେ । (ମହାଭାରତ)

(୨) ବିଖ୍ୟାତ ଦାନବ । ଏହାର ନାମାନୁସାରେ ହିନ୍ଦୁମାନଙ୍କ ପବିତ୍ର ତୀର୍ଥ ଗୟା ନାମରେ ଅଭିହିତ ହୋଇଅଛି । ହିନ୍ଦୁମାନେ ପିତୃପୁରୁଷମାନଙ୍କୁ ପିଣ୍ଡଦାନ କରିବା ସକାଶେ ଏହି ପୁଣ୍ୟକ୍ଷେତ୍ରକୁ ଆଗମନ କରନ୍ତି । ଗୟା-କ୍ଷେତ୍ରର ପରିମାଣ ପାଞ୍ଚ କୋଶ ଏବଂ ଗୟାଶିରର ପରିମାଣ କୋଶେ । ଗୟାସୁର ଏକ ପ୍ରକାଣ୍ଡ ଅସୁର ଥିଲେ ମଧ୍ୟ ପରମ ବିଷ୍ଣୁଭକ୍ତ ଥିଲା । ତାର ସ୍ୱଭାବ ଅତଶସ୍ତ ଧର୍ମପ୍ରବଣ । ଏହି ଅସୁର କୋଳାହଳ ପର୍ବତକୁ ଯାଇ ବିଷ୍ଣୁଙ୍କଠାରୁ ବର ପାଇବା ପାଇଁ କଠୋର ତପସ୍ୟା କରିଥିଲା । ଦେବତା-ମାନେ ଗୟାସୁରର ତପସ୍ୟାରେ ବିଚଳିତ ହୋଇ ବ୍ରହ୍ମାଙ୍କ ସହିତ ବିଷ୍ଣୁଙ୍କ ନିକଟକୁ ଗମନ କଲେ । ବିଷ୍ଣୁ ପ୍ରମୁଖ ଦେବତାମାନେ କୋଳାହଳ ପର୍ବତକୁ ଯାଇ ଗୟାସୁରକୁ ବର ଦେବା ପାଇଁ ନିଜର ଅଭିପ୍ରାୟ ବ୍ୟକ୍ତ କଲେ । ଗୟାସୁର ବର ଗ୍ରହଣ କଲା । ବିଷ୍ଣୁ ପ୍ରମୁଖ ଦେବତାମାନଙ୍କ ପ୍ରସାଦରୁ ଗୟାସୁରର ଦେହ ଦେବତା, ବ୍ରାହ୍ମଣ, ଯୋଗୀ, କର୍ମୀ ଓ ଧର୍ମୀ-ମାନଙ୍କ ଶରୀର ଅପେକ୍ଷା ପବିତ୍ରତର ହେଲା । ଗୟାସୁରର ପବିତ୍ର ଦେହ ଅବଲୋକନ କରି ସମସ୍ତେ ବୈକୁଣ୍ଠକୁ ଯିବାକୁ ଲାଗିଲେ । ଗ୍ରାମ, ନଗର ଶୂନ୍ୟ ହୋଇଗଲା । ଯମପୁରୀକୁ ଆଉ କେହି ଗଲେ ନାହିଁ । ଗୟାର ପବିତ୍ର ଦେହ ଦର୍ଶନ ଯୋଗେ ସମସ୍ତଙ୍କ ବୈକୁଣ୍ଠ ଦ୍ୱାର ମୁକ୍ତ ହୋଇ ରହିଲା । ଯମ ବିଷ୍ଣୁଙ୍କୁ ସବୁ କଥା ଜଣାଇଲେ । ବୈକୁଣ୍ଠରେ ଦେବସଭା ହେଲା । ସଭାରେ ସ୍ଥିର ହେଲା ଯେ ଗୟାସୁରକୁ ନିଶ୍ଚଳ କରି ଦେବାକୁ ହେବ । ଦେବତାମାନେ ଭକ୍ତ ଗୟାସୁର ନିକଟକୁ ଯାଇ ତାର ଶରୀରଟାକୁ ଭିକ୍ଷା ସ୍ୱରୂପ ମାଗି ନେଲେ । ଭକ୍ତ ଗୟାସୁର ନିର୍ବିବାଦରେ ସେହି ଭିକ୍ଷା ଦେଲା । ଦେବତାମାନେ ଗୟାସୁର ଉପରେ ଏକ ଯଜ୍ଞ ଅନୁଷ୍ଠାନ କଲେ ଏବଂ ସେ ଅଚଳ ହେବା ଲାଗି ଏକ ପ୍ରକାଣ୍ଡ ଶିଳା ତା ଉପରେ ଥୁଇଦେଇ ସମସ୍ତେ ବସିଲେ । ମାତ୍ର ଏଥିରେ ଗୟାସୁର ନିଶ୍ଚଳ ହେଲା ନାହିଁ । ଶେଷରେ ସ୍ୱୟଂ ବିଷ୍ଣୁ ଗୟାସୁର ବକ୍ଷରେ ସ୍ଥାପିତ ଶିଳା ଉପରେ ଉପବେଶନ କରିବା ମାତ୍ରେ ଗୟାସୁର ନିଶ୍ଚଳ ହୋଇଗଲା । ଦେବତାମାନଙ୍କ ଅଭିପ୍ରାୟ ଜାଣି ଗୟାସୁର କହିଲା, "ମୋତେ ନିଶ୍ଚଳ ରଖିବା ପାଇଁ ଆପଣମାନେ ଏତେ କୌଶଳ କଲେ କାହିଁକି ? ଆପଣମାନେ ଅନୁଗ୍ରହ କରିଥିଲେ ତ ମୁଁ ତାହା ମାନନେଇଥାନ୍ତି । କେତେ-

ବେଳେ ହେଲେ ମୁଁ ଆପଣମାନଙ୍କର ଅବାଧ୍ୟ ନୁହେଁ ।" ଦେବତାମାନେ ସନ୍ତୁଷ୍ଟ ହୋଇ ଗୟାସୁରକୁ ବର ଯାଚିଲେ । ଗୟାସୁର କହିଲା, "ଯେ ପର୍ଯ୍ୟନ୍ତ ଚନ୍ଦ୍ର ସୂର୍ଯ୍ୟ ବା ପୃଥିବୀ ବର୍ତ୍ତମାନ ଥିବ ସେ ପର୍ଯ୍ୟନ୍ତ ଆପଣମାନେ ମୋ ବକ୍ଷସ୍ଥ ଶିଳା ଉପରେ ଅବସ୍ଥାନ କରିଥିବେ । ମୋର ନାମାନୁସାରେ ଏହି ପୁଣ୍ୟକ୍ଷେତ୍ରର ନାମ ହେବ ଗୟାକ୍ଷେତ୍ର । ଏହି ଗୟାକ୍ଷେତ୍ର ପାଞ୍ଚକୋଶ ଓ ଗୟାଶିର ଏକ କୋଶ ସ୍ଥାନ ପରିମିତ ହୋଇ ରହିଥିବ ।" (ବାୟୁ ପୁରାଣ)

**ଗୟା**—ଏହି ପୁଣ୍ୟ ସ୍ଥାନର ଉଲ୍ଲେଖ ରାମାୟଣ, ମହାଭାରତ ଓ ପୁରାଣମାନଙ୍କରେ ଦେଖାଯାଏ । ଏହା ରାଜର୍ଷି ଗୟଙ୍କ ରାଜଧାନୀ ଥିଲା । ଏଠାରେ ଗୟଶିର ପର୍ବତ ଉପରେ ଏ ରାଜର୍ଷି ଯଜ୍ଞ କରିଥିଲେ ଓ ବ୍ରହ୍ମସର ନାମକ ଏକ ବଡ଼ ପୁଷ୍କରିଣୀ ଖୋଳାଇଥିଲେ । ବୁଦ୍ଧଦେବଙ୍କ ସମୟରେ ମଧ୍ୟ ଏ ସ୍ଥାନ ଗୋଟିଏ ପ୍ରସିଦ୍ଧ ଯଜ୍ଞସ୍ଥଳ ଥିଲା । ରାଜଗୃହରୁ ଆସି ବୁଦ୍ଧଦେବ ପ୍ରଥମେ ଏଠାରେ ଏକ ଯଜମାନଙ୍କ ଅତିଥି ହୋଇଥିଲେ । ତତ୍ପରେ ଏଠାରୁ କିଛି ଦୂର ନିରଞ୍ଜନା ନଦୀ କୂଳରେ ଉରୁବେଲା (ଉରୁବିଲ୍) ଗ୍ରାମରେ ତପସ୍ୟା କଲେ । ବୁଦ୍ଧଦେବଙ୍କ ତପସ୍ୟା ସ୍ଥାନକୁ ଏବେ ବୋଧଗୟା କହନ୍ତି । ଗୟାତୀର୍ଥ ଶ୍ରାଦ୍ଧ ଓ ପିଣ୍ଡଦାନ ପାଇଁ ପ୍ରଶସ୍ତ । ପୁତ୍ର ଏଠାରେ ପିଣ୍ଡଦାନ ନ କରିବା ପର୍ଯ୍ୟନ୍ତ ମୃତ ପିତାଙ୍କର ମୋକ୍ଷ ଲାଭ ହୁଏ ନାହିଁ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ । ବିଷ୍ଣୁ ଏହିଠାରେ ଗୟା ନାମକ ଅସୁରକୁ ବଧ କରିଥିଲେ । ବାୟୁ ପୁରାଣରେ ଗୟା ମାହାତ୍ମ୍ୟ, ଗୟା ଶ୍ରାଦ୍ଧବିଧି ଓ ଗୟାର ବ୍ରାହ୍ମଣ (ପଣ୍ଡା) ଙ୍କ ପୂଜାବିଧି ବର୍ଣ୍ଣିତ ହୋଇଅଛି । ଏଠାରେ ୫ ଦିନ ମଧ୍ୟରେ ୨୪ଟି ସ୍ଥାନରେ ସ୍ନାନ, ତର୍ପଣ, ପୂଜା ଓ ଶ୍ରାଦ୍ଧାଦି କରାଯାଏ । ଏହା ଫଲ୍‌ଗୁ ନଦୀ କୂଳରେ ଅବସ୍ଥିତ । ଗୟାରେ ମୁଗୁନି ଓ ପାଣ୍ଡୁର ପଥରର ବାସନ ମିଳେ ।

ଗୟାସୁର ପ୍ରଥମେ ରାଜର୍ଷି ଥାଇ ଗୟା ନଗର ପ୍ରତିଷ୍ଠା କରିଥିଲେ । ପରେ ରାକ୍ଷସ ହୋଇ ଗୟାରେ ତୀବ୍ର ତପସ୍ୟା କରିବାରୁ ଦେବତାମାନେ ଭୟ ପାଇ ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ସଂସାରର ମଙ୍ଗଳ ସକାଶେ ନିଜ ଶରୀର ଅର୍ପଣ କରି ଦେବାକୁ ବ୍ରହ୍ମା ତାଙ୍କୁ ଅନୁରୋଧ କରିବାରୁ ଗୟାସୁର ବର ମାଗିଲା ଯେ "ମୁଁ ଯେଉଁଠାରେ ମରିବ ତାହା ହିନ୍ଦୁମାନଙ୍କର ତୀର୍ଥ ହେବ ।" ଏହା କହି ସେ ଶୋଇଲା ଓ ଦେବତାମାନେ ପଥର ଛେଚି ତାକୁ ମାରି ପକାଇଲେ । ଏହାର ମୃତ ଶରୀରର ଭିନ୍ନ ଭିନ୍ନ ଅଂଶ ଦୂରରେ ଭିନ୍ନ ଭିନ୍ନ ସ୍ଥାନରେ ଛିଡ଼ିକି ପଡ଼ିବାରୁ ସେହି ସ୍ଥାନମାନ ତୀର୍ଥ ରୂପରେ ପରିଣତ ହେଲା । ନାଭି ପଡ଼ିବା

ସ୍ଥାନ ନାଭିଗୟା, ପାଦ ପଡ଼ିବା ସ୍ଥାନ ପାଦଗୟା । ଗୟାଠାରେ ଏହାର ମସ୍ତକ ପଡିଥିଲା । (ବାୟୁପୁରାଣ, ବିଶ୍ୱକୋଷ)

**ଗରୁଡ**—ପକ୍ଷୀରାଜ । ବିଷ୍ଣୁଙ୍କ ବାହନ । କଶ୍ୟପଙ୍କ ଔରସରେ ବିନତାଙ୍କ ଗର୍ଭରୁ ଜନ୍ମିଥିଲେ । ଏହାଙ୍କର ଜ୍ୟେଷ୍ଠଭ୍ରାତା ଅରୁଣ ବିକଳାଙ୍ଗ ହୋଇଥିବାରୁ ସୂର୍ଯ୍ୟ ତାଙ୍କୁ ସାରଥୀ କରିଥିଲେ । ବିମାତା କଦ୍ରୁର ଦାସତ୍ୱରୁ ନିଜ ମାତାଙ୍କୁ ମୁକ୍ତ କରିବା ପାଇଁ ପକ୍ଷୀରାଜ ଗରୁଡ଼ ସ୍ୱର୍ଗରୁ ଅମୃତ ଆନୟନ କରିଥିଲେ । (କଦ୍ରୁ ଓ ଅରୁଣ ଦେଖ) ଅମୃତ ଆଣିବାକୁ ଯିବାବେଳେ ବାଟରେ ଗରୁଡ଼ଙ୍କୁ ଘୋର ଭୋକ ହେଲା । କ୍ଷୁଧା ନିବୃତ୍ତି ପାଇଁ ସେ ପିତା କଶ୍ୟପଙ୍କୁ ଆହାର ପାଇଁ ପ୍ରାର୍ଥନା କଲେ । ପିତା ତାଙ୍କୁ ସେଥିଲାଗି ଅଦୂରବର୍ତ୍ତୀ ଜଳାଶ୍ରୟରେ ଯୁଦ୍ଧମାନ ଗଜ ଓ କଚ୍ଛପ ଦ୍ୱୟଙ୍କୁ ଦେଖାଇଦେଲେ । ଏହି ଗଜ ଓ କଚ୍ଛପ ପୂର୍ବେ ଯଥାକ୍ରମେ ବିଭାବସୁ ଓ ସୁପ୍ରତୀକ ନାମକ ତପୋବଳସମ୍ପନ୍ନ ଦୁଇ ସହୋଦର ଥିଲେ । ଜ୍ୟେଷ୍ଠ ବିଭାବସୁ କୋପନ ସ୍ୱଭାବ କିନ୍ତୁ କନିଷ୍ଠ ସୁପ୍ରତୀକ ଶାନ୍ତଶିଷ୍ଟ ଓ ମୃଦୁ ସ୍ୱଭାବ ବିଶିଷ୍ଟ ଥିଲେ । ପୈତୃକ ସମ୍ପତ୍ତି ବିଭାଗ ନିମିତ୍ତ ସୁପ୍ରତୀକ ଜ୍ୟେଷ୍ଠ ଭ୍ରାତା ବିଭାବସୁଙ୍କୁ ଅନୁରୋଧ କଲେ । ଜ୍ୟେଷ୍ଠ କ୍ରୁଦ୍ଧ ହୋଇ ସୁପ୍ରତୀକଙ୍କୁ ହସ୍ତୀରୂପ ଧାରଣ କରିବାକୁ ଅଭିଶାପ ଦେଲେ । ଅଭିଶପ୍ତ ସୁପ୍ରତୀକ ଜ୍ୟେଷ୍ଠଙ୍କୁ କଚ୍ଛପ ରୂପ ଧାରଣ କରିବାକୁ ଅଭିଶାପ ଦେଲେ । ସେହି ଦିନଠାରୁ ଉଭୟେ ଉଭୟର ବିନାଶ ସାଧନ ପାଇଁ ପରସ୍ପର ଯୁଦ୍ଧ କରିବାକୁ ଲାଗିଲେ । ପିତାଙ୍କ ଆଦେଶରେ ଗରୁଡ ଗଜକୁ ଗୋଟିଏ ନଖରେ ଓ କଚ୍ଛପକୁ ଆଉ ଗୋଟିଏ ନଖରେ ଧରି ଉଡ଼ିଲେ ଏବଂ ସନ୍ନିହିତ ଏକ ବଟବୃକ୍ଷ ଉପରେ ବସି ସେମାନଙ୍କୁ ଭକ୍ଷଣ କରିବା ପାଇଁ ସଂକଳ୍ପ କଲେ । ମାତ୍ର ଗଜ, କଚ୍ଛପଙ୍କ ଭାରରେ ବଟବୃକ୍ଷର ଡାଳଟି ଭାଙ୍ଗିଗଲା । ଏହି ଡାଳରେ ଅଙ୍ଗୁଷ୍ଠ ପ୍ରମାଣ ବାଲଖିଲ୍ୟ ଋଷିମାନେ ତପସ୍ୟା କରୁଥିଲେ । ଗରୁଡ଼ ଏହା ଦେଖି ଡାଳଟି ଭୂମିରେ ପଡ଼ିଲେ ଋଷିମାନେ ଅଭିଶାପ ଦେବେ ବୋଲି ଭୟ କରି ତାହା ଥଣ୍ଟରେ ଧରି ପିତା କଶ୍ୟପଙ୍କ ନିକଟକୁ ଗଲେ । କଶ୍ୟପଙ୍କ ଅନୁରୋଧକ୍ରମେ ବାଲଖିଲ୍ୟମାନେ ବୃକ୍ଷଶାଖା ପରିତ୍ୟାଗ କରି ଅନ୍ୟତ୍ର ଗମନ କଲେ । ଗରୁଡ଼ ବୃକ୍ଷଶାଖାଟି ଗୋଟିଏ ପର୍ବତ ଉପରେ ପକାଇ ଦେଲେ । ସୁମେରୁ ପର୍ବତ ଶୃଙ୍ଗରେ ବସି ଗଜ ଓ କଚ୍ଛପ ଉଭୟଙ୍କୁ ଭକ୍ଷଣ କଲେ । ପ୍ରଚୁର ଆହାର କରି ତୃପ୍ତ ହେବା ପରେ ଗରୁଡ଼ ଅମୃତ ଆଣିବା ପାଇଁ ସ୍ୱର୍ଗକୁ ଗଲେ । ଯୁଦ୍ଧରେ ଇନ୍ଦ୍ରାଦି ଦେବତାମାନଙ୍କୁ ପରାସ୍ତ କରି ଅମୃତ ଆଣି ମାତାଙ୍କ ଦାସତ୍ୱ ମୋଚନ କରିଥିଲେ । (କଦ୍ରୁ ଦେଖ)

ଇନ୍ଦ୍ରଙ୍କ ସାରଥି ମାତଳୀଙ୍କ ଗୁଣକେଶୀ ନାମ୍ନୀ କନ୍ୟାକୁ ସୁମୁଖ ନାମକ ନାଗ ବିବାହ କରିଥିଲେ । ମାତଳୀଙ୍କ ପ୍ରାର୍ଥନାରେ ଶ୍ରୀକୃଷ୍ଣ ସୁମୁଖଙ୍କୁ ଅଭୟ ଦାନ କରି ଦୀର୍ଘଜୀବୀ କରିଥିଲେ । ଗରୁଡ ସ୍ୱୀୟ ଭକ୍ଷ ନାଗ ଦୀର୍ଘଜୀବୀ ହୋଇଛି ଭାବି ଭାରି ଦୁଃଖିତ ହେଲେ ଏବଂ ସ୍ୱର୍ଗକୁ ଯାଇ ନାରାୟଣ ଓ ଇନ୍ଦ୍ରଙ୍କ ଆଗରେ ଆସ୍ଫାଳନ କରିବାକୁ ଲାଗିଲେ । ଶ୍ରୀକୃଷ୍ଣ ଗରୁଡଙ୍କ ମସ୍ତକରେ ହସ୍ତ ସ୍ଥାପନ କରିବା ମାତ୍ରେ ସେ ନମ୍ରଭାବ ଧାରଣ କଲେ । ଗରୁଡ଼ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରି ବର ମାଗିଲେ ଏବଂ ସର୍ବଦା ତାଙ୍କର ବାହନ ହୋଇ ରହିବେ ବୋଲି ପ୍ରାର୍ଥନା କଲେ । ସେହିଦିନଠୁ ବିଷ୍ଣୁଙ୍କ ରଥରେ ଗରୁଡ଼ ଧ୍ୱଜ ହୋଇ ରହିଲେ ।

**ଗର୍ଗ** – (୧) ବିଖ୍ୟାତ ଜ୍ୟୋତିର୍ବିଦ ଋଷି । ଯଦୁବଂଶୀୟମାନଙ୍କ କୁଳଗୁରୁ । କେହି କେହି ଏହାଙ୍କୁ ଗାର୍ଗବ ବୋଲି କହନ୍ତି । ଭକ୍ତକବି ଗଉରଚରଣ ଅଧିକାରୀ ଶ୍ରୀକୃଷ୍ଣଲୀଳା ୪୧ ଗ୍ରନ୍ଥରେ ଏହାଙ୍କୁ ଗାର୍ଗବ ବୋଲି ବର୍ଣ୍ଣନା କରିଛନ୍ତି । ଯଥା—"ନନ୍ଦ ଅନ୍ତଃପୁରେ ଥିଲେ, ହରି ଶବଦ ଶୁଣିଲେ, ତକ୍ଷଣେ ଦେଖିଲେ ଆସି, ଗାର୍ଗବଋଷି ଯେ ।" ଏହାଙ୍କର ପୁତ୍ର ଗାର୍ଗ୍ୟ ଓ କନ୍ୟା ଗାର୍ଗୀ ।

(ଶ୍ରୀମଦ୍‌ଭାଗବତ, ଗାର୍ଗ୍ୟ ଦେଖ)

(୨) ବ୍ରହ୍ମାଙ୍କର ଜନୈକ ମାନସ ପୁତ୍ର । ଋଗ୍‌ବେଦ ୬ଷ୍ଠ ମଣ୍ଡଳର ୪୭ ସୂକ୍ତ ଗର୍ଗଙ୍କ ଦ୍ୱାରା ରଚିତ । ଅଥର୍ବ ବେଦର ପରିଶିଷ୍ଟରେ ଗର୍ଗ ନାମକ ଏକ ଋଷିଙ୍କର ନାମ ଅଛି । (ବିଶ୍ୱକୋଷ)

**ଗାଧି** —ଚନ୍ଦ୍ରବଂଶୀୟ ମହାରାଜ କୁଶିକଙ୍କ ପୁତ୍ର । ଗାଧିରାଜ ବିଖ୍ୟାତ ମହର୍ଷି ବିଶ୍ୱାମିତ୍ରଙ୍କ ଜନକ । ଦେବରାଜ ଇନ୍ଦ୍ର ମହାରାଜ କୁଶିକଙ୍କ ମହିଷୀ ପୌରୁକୁତ୍ସୀଙ୍କ ଗର୍ଭରେ ଗାଧିରୂପେ ଜାତ ହୋଇଥିଲେ । ମହର୍ଷି ଭୃଗୁଙ୍କ ପୁତ୍ର ଋଚୀକ ଏହି ଗାଧିଙ୍କ କନ୍ୟା ସତ୍ୟବତୀଙ୍କୁ ବିବାହ କରିଥିଲେ । ସତ୍ୟବତୀଙ୍କର ପୁତ୍ର ଥିଲେ ଋଷିବର ଜମଦଗ୍ନି । (ହରିବଂଶ)

**ଗାନ୍ଦିନୀ**—ଗଙ୍ଗାଦେବୀ, ଭୀଷ୍ମଙ୍କର ମାତା ।

**ଗାନ୍ଧର୍ବ**—ହିମାଳୟ ପ୍ରାନ୍ତସ୍ଥ ପୌରାଣିକ ଦେଶ ବିଶେଷ । ଏହାର ଅନ୍ୟ ନାମ ଗନ୍ଧର୍ବଦ୍ୱୀପ । ଏହା ଭାରତର ଗୋଟିଏ ଭାଗ ଥିଲା । ଏଠାର ଲୋକେ ଗାନ ବିଦ୍ୟାରେ ଅତି ପାରଗ ଥିଲେ । ଏଠାରେ ବର କନ୍ୟାଙ୍କ ପରସ୍ପର ନିର୍ବାଚନରେ ବିବାହ କାର୍ଯ୍ୟ କରାଯାଉଥିଲା । ଏଠାର ସ୍ତ୍ରୀମାନେ ରୂପବତୀ ଥିଲେ । ଏଠାର ଘୋଡାମାନେ ଉତ୍କୃଷ୍ଟ ଥିଲେ । (ହିନ୍ଦୀ ଶବ୍ଦସାଗର, ବିଶ୍ୱକୋଷ)

**ଗାନ୍ଧାର** — ପ୍ରାଚୀନ ଭାରତର ଦେଶ ବିଶେଷ । ଭୌଗୋଳିକମାନେ ଆଧୁନିକ ଆଫଗାନିସ୍ଥାନ ଦେଶସ୍ଥ କାନ୍ଦାହାର ପ୍ରଦେଶକୁ ଗାନ୍ଧାର ବୋଲି କହୁଥାନ୍ତି । ଗାନ୍ଧାର ଦେଶ ସିନ୍ଧୁନଦୀର ପଶ୍ଚିମରେ ଥିଲା । ଏହା ପେଶାବାଠାରୁ କାନ୍ଦାହାର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହାର ସୀମା ପରବର୍ତ୍ତୀ କାଳରେ ସମୟକ୍ରମେ ବଦଳି ଯାଇଥିଲା । ଚୀନ ପର୍ଯ୍ୟଟକ ହୁଏନ୍‌ସାଙ୍ଗ୍ ଭାରତକୁ ଆସିବା ବେଳେ ଏହି ପ୍ରଦେଶ ସିନ୍ଧୁନଦୀଠାରୁ ଜଲାଲବାଦ୍ ପର୍ଯ୍ୟନ୍ତ ଏବଂ ସ୍ୱାତ୍‌ଠାରୁ କାଲବାଗ୍ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଋଗ୍ ବେଦରେ ଏ ଦେଶରେ ଉତ୍କୃଷ୍ଟ ମେଣ୍ଢା ଥିବାର ଉଲ୍ଲେଖ ଅଛି । ଏହି ଦେଶର ରାଜକନ୍ୟା ଗାନ୍ଧାରୀ ଧୃତରାଷ୍ଟ୍ରଙ୍କର ମହିଷୀ ଥିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଗାନ୍ଧାରୀ**—(୧) ରାଜା କ୍ରୋଷ୍ଟୁଙ୍କ ପତ୍ନୀ ଓ ଅନମିତ୍ରଙ୍କ ମାତା । ମୃତ୍ତିକାବତୀ ନଗରୀରେ ଯେଉଁସବୁ ରାଜା ବାସ କରିଥିଲେ ସେମାନେ ଭୋଜ ନାମରେ ପ୍ରସିଦ୍ଧ । ଏହି ଭୋଜବଂଶୀୟ କ୍ରୋଷ୍ଟୁଙ୍କର ଗାନ୍ଧାରୀ ଓ ମାଦ୍ରୀ ନାମ୍ନୀ ଦୁଇ ପତ୍ନୀ ଥିଲେ । ଗାନ୍ଧାରୀଙ୍କ ଗର୍ଭରୁ ମହାବଳ ଅନମିତ୍ର ଜନ୍ମିଥିଲେ । (ହରିବଂଶ)

(୨) କୁରୁବଂଶୀୟ ବିଖ୍ୟାତ ରାଜା ଧୃତରାଷ୍ଟ୍ରଙ୍କ ମହିଷୀ । ଗାନ୍ଧାର ରାଜା ସୁବଳ ଏହାଙ୍କ ପିତା ଓ କୁରୁରାଜ ଦୁର୍ଯ୍ୟୋଧନ ଏହାଙ୍କର ଜ୍ୟେଷ୍ଠ ପୁତ୍ର । ଶକୁନି ବା ସୌବଳ ଗାନ୍ଧାରୀଙ୍କ କନିଷ୍ଠ ସହୋଦର । ଗାନ୍ଧାରୀ ଶତ ପୁତ୍ର ଲାଭ କରିବା ପାଇଁ ମହାଦେବଙ୍କଠାରୁ ବରପ୍ରାପ୍ତ ହୋଇଥିଲେ । ଭୀଷ୍ମ ଏହା ଜାଣି ନିଜ ପୁତୁରା ଧୃତରାଷ୍ଟ୍ରଙ୍କ ଗାନ୍ଧାରୀ ସହ ବିବାହ କରିବା ପାଇଁ ସୁବଳଙ୍କ ନିକଟକୁ ଦୂତ ପ୍ରେରଣ କଲେ । ସୁବଳ କେବଳ କୁଳଶୀଳ ପ୍ରତି ଲକ୍ଷ୍ୟ କରି ଅନ୍ଧ ଧୃତରାଷ୍ଟ୍ରଙ୍କ ସହିତ ଗାନ୍ଧାରୀଙ୍କ ବିବାହ କରିଦେଲେ । ପତିବ୍ରତା ଗାନ୍ଧାରୀ ନିଜ ସ୍ୱାମୀଙ୍କ ଅନ୍ଧତା ଦେଖି ଅକ୍ଷିଯୁକ୍ତ ହେଲେ ମଧ୍ୟ ଅନ୍ଧୁଣୀ ହୋଇଥିଲେ । ଗାନ୍ଧାରୀ ଗର୍ଭବତୀ ହୋଇ ଅକାଳରେ ଏକ କୁଷ୍ମାଣ୍ଡ ଆକୃତି ମାଂସପିଣ୍ଡ ଜନ୍ମ କଲେ । ଏହି ପିଣ୍ଡରୁ ଦୁର୍ଯ୍ୟୋଧନାଦି ଶତ ପୁତ୍ର ଜାତ ହୋଇଥିଲେ । ଗାନ୍ଧାରୀ ପରମା ସତୀ ଥିଲେ, ପାଣ୍ଡବମାନଙ୍କ ସହିତ ମିତ୍ରତା ସୂତ୍ରରେ ଆବଦ୍ଧ ହେବା ପାଇଁ ସେ ସର୍ବଦା ପୁତ୍ରମାନଙ୍କୁ ଉପଦେଶ ଦେଉଥିଲେ । ମାନ ଐଶ୍ୱର୍ଯ୍ୟ ମଦମତ୍ତ ପୁତ୍ରମାନେ ତାଙ୍କ ଉପଦେଶ ଗ୍ରହଣ କଲେ ନାହିଁ । କୁରୁକ୍ଷେତ୍ରରେ ନିଜର ମୃତ ପୁତ୍ରମାନଙ୍କ ଶବ ଦେଖି ସେ ବ୍ୟାକୁଳ ହୋଇ କ୍ରନ୍ଦନ କରିବାକୁ ଲାଗିଲେ ଏବଂ ଶ୍ରୀକୃଷ୍ଣଙ୍କୁ ଏହି ଅପରାଧରେ ଅପରାଧୀ ସାବ୍ୟସ୍ତ କରି ଅଭିଶାପ ଦେଲେ — ତୁମେ ବିଶେଷରୂପେ ଚେଷ୍ଟା କରିଥିଲେ କୁରୁ ପାଣ୍ଡବ ଭାଇମାନଙ୍କ

ମଧ୍ୟରେ ଏ ଯୁଦ୍ଧ କଦାପି ହୋଇ ନଥାନ୍ତା । ସେଥିଲାଗି ମୁଁ ତୁମକୁ ଅଭିଶାପ ଦେଉଛି ଯଦି ପତିସେବା ଦ୍ୱାରା ମୋର ନିଷ୍ଠା ଅର୍ଜିତ ହୋଇଛି, ତେବେ ସେହି ପ୍ରଭାବରୁ ତୁମେ ଯେପରି କୌରବ ପାଣ୍ଡବମାନଙ୍କ ଜ୍ଞାତି ବିନାଶରେ ଉପେକ୍ଷା କରିଛ, ସେହିପରି ତୁମର ଜ୍ଞାତିବର୍ଗ ତୁମ ଦ୍ୱାରାହିଁ ନଷ୍ଟହେବେ ଏବଂ ଆଜିଠାରୁ ୩୬ ବର୍ଷ ଭିତରେ ତୁମେ ଜ୍ଞାତି ଓ ପୁତ୍ରହୀନ ହୋଇ ବନଚାରୀ ହେବ । ପରିଣାମରେ ଅତି କୁତ୍ସିତ ଉପାୟରେ ନିଧନପ୍ରାପ୍ତ ହେବ ।' ଗାନ୍ଧାରୀଙ୍କ ଏହି ଅଭିଶାପ ସଫଳ ହେଲା । ସେ ସ୍ୱାମୀଙ୍କ ସହିତ ବନଗମନ କଲେ । ସଞ୍ଜୟ ତାଙ୍କର ଅନୁସରଣ କଲେ । ଏକଦା ବ୍ୟାସଦେବ ସେମାନଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ତାଙ୍କ ଅନୁଗ୍ରହରୁ ଧୃତରାଷ୍ଟ୍ର, ଗାନ୍ଧାରୀ ଓ ଅନ୍ୟାନ୍ୟ କୌରବ ରମଣୀମାନେ ଭାରତ ଯୁଦ୍ଧରେ ନିହତ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଦୁର୍ଯ୍ୟୋଧନାଦିଙ୍କର ଦର୍ଶନ ଲାଭ କଲେ । ଏହି ବୀରମାନେ ବ୍ୟାସଙ୍କ ତପଃ ପ୍ରଭାବରୁ ଦିବ୍ୟମୂର୍ତ୍ତି ଧାରଣ କରି ଜଳରୁ ଉଠି ଆସିଲେ । ଗାନ୍ଧାରୀ ମୃତ ପୁତ୍ରମାନଙ୍କୁ ଦେଖି ପରିତୁଷ୍ଟ ହେଲେ । ଦିନେ ସେମାନେ ରହିଥିବା ଅରଣ୍ୟରେ ଦାବାନଳ ଜଳି ଉଠିଲା । ଧୃତରାଷ୍ଟ୍ର, କୁନ୍ତୀ, ଗାନ୍ଧାରୀ ପ୍ରଭୃତି ଆତ୍ମରକ୍ଷା କରି ନପାରି ସେହି ଅଗ୍ନିରେ ଦଗ୍ଧ ହୋଇ ପ୍ରାଣତ୍ୟାଗ କଲେ । ସଞ୍ଜୟ ଅତି କଷ୍ଟରେ ପଳାଇ ଯିବାରୁ ବଞ୍ଚି ରହିଥିଲେ ।

**ଗାନ୍ଦିନୀ**—ଅକ୍ରୂରଙ୍କ ମାଆ । ଯଦୁବଂଶୀୟ ଶ୍ୱଫଲ୍କଙ୍କ ପତ୍ନୀ । ଅକ୍ରୂରଙ୍କୁ ଲୋକେ ଗାନ୍ଦିନୀସୁତ ବୋଲି କହନ୍ତି । ଗାନ୍ଦିନୀ କାଶୀରାଜଙ୍କ ଦୁହିତା । ଏ ପ୍ରତିଦିନ ବ୍ରାହ୍ମଣଙ୍କୁ ଗୋଦାନ ଦେଉଥିଲେ । ବହୁମାସ ପର୍ଯ୍ୟନ୍ତ ଏ କନ୍ୟା ମାତୃଗର୍ଭରେ ରହିଥିଲେ । ଏଥିଲାଗି ତାଙ୍କର ପିତା ବହୁତ ଚିନ୍ତିତ ହେଲେ । ଉଦରସ୍ଥ କନ୍ୟା ପିତାଙ୍କୁ କହିଲେ — 'ଯଦି ପ୍ରତିଦିନ ଧେନୁଦାନ କରିବା ପାଇଁ ମୋତେ ଅନୁମତି ଦେବେ ତାହାହେଲେ ମୁଁ ଜନ୍ମ ହେବି ।' ପିତା ସ୍ୱୀକୃତ ହେବା ମାତ୍ରେ କନ୍ୟା ଭୂମିଷ୍ଠ ହେଲା । ବୟଃପ୍ରାପ୍ତ ହେବାମାତ୍ରେ ପିତା ପ୍ରତିଜ୍ଞା ପାଳନ କରି ପ୍ରତିଦିନ କନ୍ୟାକୁ ଗୋଦାନ କରିବାପାଇଁ ଧେନୁ ଦେଉଥିଲେ । ହରିବଂଶରେ ଏହାଙ୍କ ନାମ ନିରୁକ୍ତ । ଅକ୍ରୂରଙ୍କ ଛଡ଼ା ଏହାଙ୍କର ୧୩ ଗୋଟି ପୁତ୍ର ଓ ଗୋଟିଏ ସୁନ୍ଦରୀ କନ୍ୟା ଜନ୍ମିଥିଲେ । (ହରିବଂଶ)

**ଗାୟତ୍ରୀ**—ବେଦମାତା । ଗାନକର୍ତ୍ତାଙ୍କୁ ଏ ପରିତ୍ରାଣ କରନ୍ତି ବୋଲି ଏହାଙ୍କର ନାମ ଗାୟତ୍ରୀ । ପଦ୍ମପୁରାଣମତେ ଏ ବ୍ରହ୍ମାଙ୍କର ପତ୍ନୀ । ବ୍ରହ୍ମାଙ୍କର ପ୍ରଥମା ପତ୍ନୀ ସାବିତ୍ରୀ । ଏକଦା ବ୍ରହ୍ମା ଯଜ୍ଞ ଅନୁଷ୍ଠାନ କରୁଥିଲେ । ସ୍ତ୍ରୀ ବିନା ଯଜ୍ଞାନୁଷ୍ଠାନ ହୁଏନାହିଁ । ଏଥିଲାଗି ବ୍ରହ୍ମା ସାବିତ୍ରୀଙ୍କୁ ଆଣିବା ପାଇଁ ଇନ୍ଦ୍ରଙ୍କୁ

ପଠାଇଲେ । ଇନ୍ଦ୍ର ସାବିତ୍ରୀଙ୍କୁ ବ୍ରହ୍ମାଙ୍କର ଆଦେଶ ଜଣାନ୍ତେ ସାବିତ୍ରୀ କହିଲେ —'ଏବେ ଲକ୍ଷ୍ମୀ ପ୍ରଭୃତି ସଖୀମାନେ ଏଠାରେ ନାହାନ୍ତି । ସେମାନେ ଆସିଲେ ମୁଁ ତାଙ୍କ ସହିତ ଯିବି ।' ବ୍ରହ୍ମା ଇନ୍ଦ୍ରଙ୍କଠାରୁ ଏ ସମ୍ବାଦ ପାଇ ଅନ୍ୟ ଏକ ପତ୍ନୀ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କଲେ । ଇନ୍ଦ୍ର ପୃଥିବୀରୁ ଆସି ଗୋଟିଏ ଗୋପାଳକନ୍ୟାକୁ ଧରି ନେଲେ । ବ୍ରହ୍ମା ଏହାଙ୍କୁ ଗାନ୍ଧର୍ବ ବିଧାନରେ ବିବାହ କଲେ । ଏହାଙ୍କର ନାମ ଗାୟତ୍ରୀ । ଏହାଙ୍କର ଦୁଇଟି ହସ୍ତ । ଏକ ହସ୍ତରେ ମୃଗଶୃଙ୍ଗ, ଅନ୍ୟ ହାତରେ ପଦ୍ମ, ପରିଧାନ ରକ୍ତବସ୍ତ୍ର, ଗଳାରେ ମୁକ୍ତାମାଳ, କର୍ଣ୍ଣରେ କୁଣ୍ଡଳ ଓ ମସ୍ତକରେ ମୁକୁଟ । ବେଦରେ ଲେଖାଅଛି ଯେ ଏକଦା ବୃହସ୍ପତି କ୍ରୁଦ୍ଧ ହୋଇ ଗାୟତ୍ରୀଙ୍କ ମସ୍ତକ ବିଦୀର୍ଣ୍ଣ କରିଦେଲେ । କିନ୍ତୁ ଗାୟତ୍ରୀଙ୍କର ମୃତ୍ୟୁ ହେଲନାହିଁ । ଏହାଙ୍କ ମସ୍ତିଷ୍କରୁ ବଷଟ୍‌କାରମାନଙ୍କର ଉତ୍ପତ୍ତି ହେଲା । ଗାୟତ୍ରୀ ହିନ୍ଦୁ ଧର୍ମର ପ୍ରସିଦ୍ଧ ମନ୍ତ୍ର ।

**ଗାର୍ଗୀ**—ବୈଦିକ ଯୁଗର ଏକ ବିଦୁଷୀ ଋଷି କୁମାରୀ । ଗର୍ଗମୁନି ଏହାଙ୍କର ପିତା । ଏ ଜଣେ ପ୍ରତିଭାସମ୍ପନ୍ନା ରମଣୀ ଥିଲେ । କଥିତ ଅଛି ଯେ ଜନକ ରାଜାଙ୍କ ଦରବାରରେ ଏହି ମହିଳା ମହର୍ଷି ଯାଜ୍ଞବଲ୍‌କଙ୍କ ସହିତ ବେଦାନ୍ତାଦି ଶାସ୍ତ୍ରରେ ଯୁକ୍ତିତର୍କ କରି ଯଶସ୍ୱିନୀ ହୋଇଥିଲେ । ଏହାଙ୍କ ସହୋଦର ଗାର୍ଗ୍ୟମୁନି ଯାଦବମାନଙ୍କର କୁଳ ପୁରୋହିତ ଥିଲେ । ବୃହଦାରଣ୍ୟକ ଉପନି-ଷଦରେ ଏହାଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି ।

**ଗାର୍ଗ୍ୟ**—ଯାଦବମାନଙ୍କର କୁଳଗୁରୁ ଏବଂ ଗର୍ଗମୁନିଙ୍କର ପୁତ୍ର । କୌଣସି କାରଣବଶତଃ ଗାର୍ଗ୍ୟ ଯାଦବମାନଙ୍କ ପ୍ରତି ବିରକ୍ତ ହୋଇ ଅନ୍ଧକ ଓ ବୃଷ୍ଣିବଂଶୀୟ ଯାଦବମାନଙ୍କର ଭୟପ୍ରଦକାରକ ଏକ ପୁତ୍ର ଲାଭ କରିବା ନିମିତ୍ତ ବାରବର୍ଷ ଯାଏ ଲୌହଚୂର୍ଣ୍ଣ ଭକ୍ଷଣ କରି କଠୋର ତପସ୍ୟା ଦ୍ୱାରା ମହା-ଦେବଙ୍କୁ ତୃପ୍ତ କରିଥିଲେ । ମହାଦେବଙ୍କ ବର ପ୍ରସାଦରୁ ଏହାଙ୍କ ଔରସରେ ଗୋପାଳୀ ନାମ୍ନୀ ଅପ୍‌ସରା ଗର୍ଭରୁ କାଳଯବନ ଜନ୍ମଗ୍ରହଣ କରିଥିଲା ।

(କାଳଯବନ ଦେଖ)

**ଗାଲବ**—(୧) ମହର୍ଷି ବିଶ୍ୱାମିତ୍ରଙ୍କ ପୁତ୍ର । (ହରିବଂଶ)

(୨) ମହର୍ଷି ବିଶ୍ୱାମିତ୍ରଙ୍କର ପ୍ରିୟ ଶିଷ୍ୟ । ମହର୍ଷି ଏହାଙ୍କର ମଧୁର ବ୍ୟବହାରରେ ପ୍ରୀତ ଲାଭ କରି କୌଣସି ପ୍ରକାର ଗୁରୁଦକ୍ଷିଣା ନଦେଇ ଗୃହକୁ ଯିବାପାଇଁ ଅନୁମତି ଦେଲେ । ମାତ୍ର ଶିଷ୍ୟ ଦକ୍ଷିଣା ଗ୍ରହଣ କରିବା ପାଇଁ ବାରମ୍ବାର ଗୁରୁଙ୍କୁ ନିବେଦନ କରିବାକୁ ଲାଗିଲେ । ବିଶ୍ୱାମିତ୍ର ବିରକ୍ତ

ହୋଇ କହିଲେ—'ତେବେ ତୁମେ ଶୀଘ୍ର ୮୦୦ ଲକ୍ଷଣବନ୍ତ ଅଶ୍ୱ ଆଣି ମୋତେ ଦିଅ ।' ଗାଲବ ଚିନ୍ତିତ ହୋଇ ଶ୍ରୀକୃଷ୍ଣଙ୍କ ଆରାଧନା କଲେ । ଶ୍ରୀକୃଷ୍ଣଙ୍କ କୃପାରୁ ଗରୁଡ଼ ଗାଲବଙ୍କ ପାଖେ ଆସି ପହଞ୍ଚିଲେ । ଗାଲବ ଗରୁଡ଼ ଉପରେ ବସି ରାଜା ଯଯାତିଙ୍କ ପାଖକୁ ଯାଇ ୮୦୦ଅଶ୍ୱ ପ୍ରାର୍ଥନା କଲେ । ରାଜା କହିଲେ—'ବହୁପ୍ରକାର ଯଜ୍ଞ ଅନୁଷ୍ଠାନ କରି ମୁଁ ବର୍ତ୍ତମାନ ଅର୍ଥଶୂନ୍ୟ ହୋଇପଡ଼ିଛି, ତେଣୁ ଏତେଗୁଡ଼ିଏ ଅଶ୍ୱ କ୍ରୟ କରି ଆପଣଙ୍କୁ ଦେବା ମୋପକ୍ଷେ ଅସମ୍ଭବ ହେଉଛି । ତଥାପି ଆପଣ ଯେପରି ଅଶ୍ୱଗୁଡ଼ିକ ପାଇପାରିବେ ମୁଁ ତାର ଏକ ଉପାୟ ବତାଇ ଦେବି ।' ଏହା କହି ରାଜା ତାଙ୍କ ରୂପବତୀ କନ୍ୟା ମାଧବୀଙ୍କୁ ଅର୍ପଣ କରି କହିଲେ—'ଆପଣ ଏହି ସୁନ୍ଦରୀ କନ୍ୟାଟିକୁ ଜଣେ ଯୋଗ୍ୟପାତ୍ରକୁ ଅର୍ପଣ କରି ତାହାଠାରୁ ୮୦୦ ଲକ୍ଷଣବନ୍ତ ଅଶ୍ୱ ନିଅନ୍ତୁ ।' ଗାଲବ ସେହି କନ୍ୟାଟିକୁ ଅଯୋଧ୍ୟାରାଜା ହର୍ଯ୍ୟଶ୍ୱଙ୍କୁ ଦାନକଲେ ଏବଂ ତାଙ୍କଠାରୁ ୨୦୦ଟି ଅଶ୍ୱ କନ୍ୟାଶୁଳ୍କ ରୂପେ ଗ୍ରହଣ କଲେ । ମାତ୍ର ରାଜାଙ୍କ ସହିତ ତାଙ୍କର ଏକ ଚୁକ୍ତି ରହିଲା ଯେ କନ୍ୟାର ସନ୍ତାନଟିଏ ହେବାମାତ୍ରେ ସେ ଏହି କନ୍ୟାଟିକୁ ପୁଣି ନେଇଯିବେ । କିଛି ସମୟ ପରେ ମାଧବୀ ଗର୍ଭବତୀ ହେଲେ ଏବଂ ସେହି ଗର୍ଭରୁ ବସୁମନା ନାମକ ପୁତ୍ର ଜନ୍ମିଲେ । ଗାଲବ ମାଧବୀଙ୍କୁ ନେଇ କାଶୀରାଜ ଦିବୋଦାସଙ୍କୁ ଅର୍ପଣ କଲେ । ଦିବୋଦାସ ୨୦୦ଟି ଅଶ୍ୱ ଦେଇ ମାଧବୀଙ୍କୁ ବିବାହ କଲେ । ଯଥାକାଳରେ ପ୍ରତର୍ଦ୍ଦନ ଜନ୍ମ ହୁଅନ୍ତେ ଗାଲବ ମାଧବୀଙ୍କୁ ଦିବୋଦାସଙ୍କ ଠାରୁ ଫେରାଇ ନେଲେ । ତାପରେ ଗାଲବ ମାଧବୀଙ୍କୁ ଉଶୀନର ରାଜାଙ୍କୁ ଦେଲେ । ଉଶୀନର ଗାଲବଙ୍କୁ ୨୦୦ଟି ଅଶ୍ୱ ଦେଇ ମାଧବୀଙ୍କୁ ନେଲେ । ମାଧବୀଙ୍କ ଗର୍ଭରୁ ଶିବି ଜନ୍ମ ହେବା ପରେ ଗାଲବ ଆସି ମାଧବୀଙ୍କୁ ନେଲେ । ଏପରି ତାଙ୍କୁ ଛଅ ଶହ ଅଶ୍ୱ ମିଳିଲା । ବାକୀ ୨୦୦ ଅଶ୍ୱ ପାଇଁ କଣ କରିବେ ଭାବୁଛନ୍ତି, ଏତିକିବେଳେ ଗରୁଡ଼ ଆସି କହିଲେ—'ଆଉ ଦୁଇଶହ ଅଶ୍ୱ ମିଳିବା ସମ୍ଭବ ହେଉନାହିଁ ତେବେ ମାଧବୀଙ୍କୁ ବର୍ତ୍ତମାନ ବିଶ୍ୱାମିତ୍ରଙ୍କୁ ଦିଅ ।' ଗାଲବ ତାହା କଲେ । ୬୦୦ଟି ଅଶ୍ୱ ଓ ମାଧବୀଙ୍କୁ ସେ ଗୁରୁଙ୍କୁ ସମର୍ପଣ କଲେ । ବିଶ୍ୱାମିତ୍ର ତୃପ୍ତ ହୋଇ ପୂର୍ଣ୍ଣଦକ୍ଷିଣା ପାଇଲେ ବୋଲି ସ୍ୱୀକାର କଲେ । ମାଧବୀଙ୍କ ଗର୍ଭରୁ ବିଶ୍ୱାମିତ୍ରଙ୍କ ଔରସରେ ଅଷ୍ଟକ ନାମକ ପୁତ୍ର ଜନ୍ମ ହୋଇଥିଲେ । ଏହିପରି ମାଧବୀ ଚାରି ସ୍ୱାମୀଙ୍କ ଆଡ଼େ ଚାରିପୁତ୍ର ଜାତ କଲେ ।

ଅଷ୍ଟକ ଜନ୍ମ ପରେ ପୂର୍ବ ପ୍ରତିଶ୍ରୁତି ଅନୁସାରେ ଗାଲବ ମାଧବୀଙ୍କୁ ଫେରାଇ ନେଇ ତାଙ୍କ ପିତାଙ୍କୁ ଦେଲେ । ପିତା ସ୍ୱୟମ୍ବର ପ୍ରଥାନୁସାରେ

କନ୍ୟାକୁ ବିବାହ କରିଦେବେ ବୋଲି ଇଚ୍ଛା ପ୍ରକାଶ କରନ୍ତେ ମାଧବୀ ଏଥିରେ ସମ୍ମତା ନ ହୋଇ ଅବଶିଷ୍ଟ ଜୀବନ ଧର୍ମଚର୍ଯ୍ୟାରେ ଅତିବାହିତ କରିବା ନିମିତ୍ତ ବନ ଗମନ କଲେ । (ମହାଭାରତ, ଉଦ୍ୟୋଗ ପର୍ବ)

**ଗିରିଜା**—ପାର୍ବତୀଙ୍କ ନାମାନ୍ତର । ସତୀ, ପତି ନିନ୍ଦା ଶୁଣି ଦେହତ୍ୟାଗ ପରେ ହିମାଳୟଙ୍କ ଔରସରେ ମେନାଙ୍କ ଗର୍ଭରୁ ଜନ୍ମିଥିଲେ । ହିମାଳୟ ଗିରିରାଜ ଥିବାରୁ, କନ୍ୟାର ନାମ ହେଲା ଗିରିଜା ।

**ଗିରିବ୍ରଜ**—ପୌରାଣିକ ଯୁଗର ଏକ ପ୍ରାଚୀନ ନଗର । ଏହାର ପୂର୍ଣ୍ଣ ନାମ ଗିରିବ୍ରଜପୁର । ଜରାସନ୍ଧଙ୍କର ଏହା ରାଜଧାନୀ ଥିଲା । କୃତ୍ତିସିଂହ ମହାଭାରତ ସଭା ପର୍ବରେ କହିଛନ୍ତି—"ବସେ ଗିରିବ୍ରଜରେ ଜରାସନ୍ଧ ଥାଇଁ", ଏହି ନଗରୀ ଗଙ୍ଗା ଓ ଶୋଣ ନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ । ପାଞ୍ଚଗୋଟି ଗିରି ବା ପର୍ବତ - ଯଥା, ଋଷିଗିରି, ବରାହ, ବୃଷଭ, ବୈହାର ଓ ଚୈତ୍ୟକ ଏହି ପାଞ୍ଚୋଟି ପର୍ବତ ମିଶି ଏ ନଗରୀ 'ଗିରିବ୍ରଜ' ଆଖ୍ୟା ପାଇଥିଲା । ରାଜଗୃହ ଏହାର ପରବର୍ତ୍ତୀ ନାମ । ଏହା କେକୟ ଦେଶର ରାଜଧାନୀ ଥିଲା ।

(ଭାଷାକୋଷ)

**ଗିର୍ଣ୍ଣାର**—ଏହା କାଠିଆବାଡ଼ ମଧ୍ୟସ୍ଥିତ ଜୁନାଗଡ଼ ନଗରର ନିକଟବର୍ତ୍ତୀ । ଏହାର ପାଞ୍ଚଗୋଟି ପ୍ରଧାନ ଶୃଙ୍ଗ ପୂର୍ବରୁ ପଶ୍ଚିମ ଦିଗକୁ ବିସ୍ତୃତ । ପ୍ରଥମ ଶୃଙ୍ଗରେ ଜୈନମାନଙ୍କ ଉପାସ୍ୟଦେବତା ନେମିନାଥଙ୍କ ମନ୍ଦିର ଓ ଗୋମୁଖୀ କୁଣ୍ଡ ଅଛି । ଶ୍ରୀଭଗବାନଙ୍କ ଅଂଶରେ ମୁନିପତ୍ନୀ ଅନସୂୟାଙ୍କ ଗର୍ଭଜାତ ଦତ୍ତାତ୍ରେୟ ଋଷି ଏକ ଶୃଙ୍ଗରେ ଦେହଧାରଣ କରିଥିଲେ । ଏହି ପର୍ବତର ଏକାଂଶରେ ଏକ ବୃହତ୍ ବୌଦ୍ଧ ଶିଳାଲିପି ଅଛି ।

ପୁରାଣପ୍ରସିଦ୍ଧ ରୈବତକ ପର୍ବତର ଆଧୁନିକ ନାମ ଗିର୍ଣ୍ଣାର । ଏହା ଜୈନମାନଙ୍କର ଏକ ତୀର୍ଥ । ଏ ପର୍ବତର ଗୁହାମାନଙ୍କରେ ଅନେକ ତାନ୍ତ୍ରିକ ଯୋଗୀ ଓ ଯୋଗିନୀ ବାସ କରିଥାଆନ୍ତି । (ଭାଷାକୋଷ)

**ଗୁରୁକୁଳ**—ବିଦ୍ୟାର୍ଥୀଙ୍କ ଶିକ୍ଷା ଗ୍ରହଣ ସ୍ଥାନ ଓ ବାସସ୍ଥାନରୂପେ ନିରୂପିତ ଗୁରୁଙ୍କ ଆଶ୍ରମ । ପୂର୍ବେ ଭାରତୀୟ ହିନ୍ଦୁ ଛାତ୍ରମାନେ ଗୁରୁ ଗୃହରେ ବାସକରି ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ ଗୁରୁଙ୍କ ସେବା ଓ ବିଦ୍ୟା ଶିକ୍ଷା କରୁଥିଲେ । ଗୁରୁକୁଳ ଜନବସତିର ଦୂରରେ ଅବସ୍ଥିତ ହେଉଥିଲା ।

**ଗୁହକ**—ଜଣେ ଅନାର୍ଯ୍ୟ ରାଜା । ଶବରରାଜ ବୋଲି ଏହାଙ୍କର ପ୍ରସିଦ୍ଧି ଥିଲା । ଅଯୋଧ୍ୟାର ପ୍ରାନ୍ତ ଭାଗରେ ଏକ ଅରଣ୍ୟରାଜ୍ୟର ସେ ଅଧିପତି ଥିଲେ ।

ଏହାଙ୍କର ରାଜଧାନୀର ନାମ ଶୃଙ୍ଗବେରପୁର । ମହାରାଜା ଦଶରଥଙ୍କ ସହିତ ଏ ରାଜାଙ୍କର ମିତ୍ରତା ଥିଲା । ରାମଚନ୍ଦ୍ର ମଧ୍ୟ ଏହାଙ୍କୁ ପରମବନ୍ଧୁ ବୋଲି ମନେ କରୁଥିଲେ । ବନବାସ ସମୟରେ ଗୁହକ ରାମଚନ୍ଦ୍ରଙ୍କୁ ଗଙ୍ଗା ପାରି ହେବାପାଇଁ ସକଳ ପ୍ରକାର ସୁବିଧା କରି ଦେଇଥିଲେ । (ରାମାୟଣ)

**ଗୃହବଳି**—ହିନ୍ଦୁ ଗୃହସ୍ଥ ଭୋଜନପୂର୍ବରୁ ବୈଶ୍ୱଦେବ କରନ୍ତି । ଏହି ବୈଶ୍ୱଦେବରେ ଅଗ୍ନି, ଦେବଗଣ, ପିତୃ ପିତାମହ, ପ୍ରପିତାମହ, ଯକ୍ଷ, ସନକାଦି ସପ୍ତ ମନୁଷ୍ୟ, ଅତିଥି, ବ୍ରାହ୍ମଣ ପ୍ରଭୃତିଙ୍କୁ ଅନ୍ନପିଣ୍ଡ ବା ବଳି ଦିଅନ୍ତି । ଏହାକୁ ଗୃହବଳି ବୋଲିଯାଏ । (ଭାଷାକୋଷ)

**ଗୃହସ୍ଥାଶ୍ରମ**—ଶାସ୍ତ୍ର ଅନୁସାରେ ହିନ୍ଦୁର ଜୀବନ ଚାରିଗୋଟି ଆଶ୍ରମ ବା ପର୍ଯ୍ୟାୟରେ ବିଭକ୍ତ । (୧) ୨୫ ବର୍ଷ ପର୍ଯ୍ୟନ୍ତ ଅଧ୍ୟୟନ—ବ୍ରହ୍ମଚର୍ଯ୍ୟାଶ୍ରମ, (୨) ୨୫ ବର୍ଷଠାରୁ ୫୦ ବର୍ଷ ପର୍ଯ୍ୟନ୍ତ ବିବାହ, ଗୃହ ଓ ପରିବାର ଚାଳନା—ଗୃହସ୍ଥାଶ୍ରମ, (୩) ୫୦ ବର୍ଷଠାରୁ ୭୫ ବର୍ଷ ପର୍ଯ୍ୟନ୍ତ ସଂସାର ତ୍ୟାଗ, ବନରେ କୁଟୀର ନିର୍ମାଣ ଓ ବାସ, ଉପାସନା ଓ ଧର୍ମସାଧନ—ବାନପ୍ରସ୍ଥାଶ୍ରମ, (୪) ୭୫ ବର୍ଷଠାରୁ ଜୀବନ ଶେଷ ପର୍ଯ୍ୟନ୍ତ ସର୍ବତ୍ୟାଗ, ଦେଶ ଭ୍ରମଣ ଓ ଆତ୍ମଜ୍ଞାନ ଲାଭ—ଭିକ୍ଷୁ ଆଶ୍ରମ ବା ଯତିବ୍ରତ ।

**ଗୃହ୍ୟସୂତ୍ର**—ବେଦୋକ୍ତ କର୍ମକାଣ୍ଡ ଗ୍ରନ୍ଥବିଶେଷ । ଏ ଶାସ୍ତ୍ରମାନଙ୍କରେ ଗୃହସ୍ଥର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ କରାଯିବା ଶୁଭାଶୁଭ କର୍ମମାନଙ୍କର ବିଧି ଓ କେଉଁ କର୍ମରେ କେଉଁ ମନ୍ତ୍ରପାଠ କରାଯିବ, ତାହା ଦିଆଯାଇଛି । ଭିନ୍ନ ଭିନ୍ନ ଜାତି ବା ଗୋତ୍ରର ବ୍ରାହ୍ମଣ ବା ଋଷିସ୍ଥମାନଙ୍କର ବିଭିନ୍ନ ଗୃହ୍ୟସୂତ୍ରର ବିଧି ଅବଶ୍ୟ ପାଳନୀୟ । ଗୃହ୍ୟସୂତ୍ର ଗୃହସ୍ଥର ନିତ୍ୟ ନୈମିତ୍ତିକ କର୍ମର ଚାଳକ ଓ ନିୟାମକ । ଗୃହ୍ୟସୂତ୍ରମାନଙ୍କ ମଧ୍ୟରେ ଗୋଭିଲ, ଅଶ୍ୱଳାୟନ, କାତ୍ୟାୟନ ଗ୍ରନ୍ଥମାନ ପ୍ରଧାନ । (ଭାଷାକୋଷ)

**ଗୋକର୍ଣ୍ଣ**—ହିମାଳୟ ଅନ୍ତର୍ଗତ ତୀର୍ଥ ବିଶେଷ । ଏଠାରେ ମହାରାଜ ଭଗୀରଥ ତପସ୍ୟା କରିଥିଲେ । (ଭଗୀରଥ ଦେଖ)

**ଗୋକୁଳ**—ଗୋପପୁର । ମଥୁରାଠାରୁ ସାତମାଇଲ ଦୂରରେ ଥିବା ଯମୁନା ତୀରସ୍ଥ ପ୍ରାଚୀନ ଗ୍ରାମ ବିଶେଷ । ଏହିଠାରେ ଶ୍ରୀକୃଷ୍ଣ ବାଲ୍ୟକାଳରେ ନନ୍ଦ ଯଶୋଦାଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲେ । ଏହାର ଆଧୁନିକ ନାମ ମହାବନ । ବର୍ତ୍ତମାନ ଯେଉଁ ଗ୍ରାମକୁ ଲୋକେ ଗୋକୁଳ ବୋଲି ଡାକନ୍ତି,

ତାହା ପ୍ରାଚୀନ ଗୋକୁଳ ନୁହେଁ । (ହୃନ୍ଦୀ ଶବ୍ଦସାଗର) । ଏହି ଗ୍ରାମରେ ବିହାର କରିଥିବାରୁ ଶ୍ରୀକୃଷ୍ଣଙ୍କର ନାମାନ୍ତର ଯଥା—ଗୋକୁଳବିହାରୀ, ଗୋକୁଳାନନ୍ଦ ଇତ୍ୟାଦି । (ଭାଷାକୋଷ)

**ଗୋତମ**—(୧) ନ୍ୟାୟଶାସ୍ତ୍ର ପ୍ରଣେତା । (ଅକ୍ଷପାଦ ଦେଖ) । ଏହାଙ୍କର ଅନ୍ୟନାମ ଗୌତମ । ଏହାଙ୍କ ସ୍ତ୍ରୀ ଅହଲ୍ୟା ଓ ପୁତ୍ର ଶତାନନ୍ଦ ।

(୨) ବୁଦ୍ଧଦେବଙ୍କ ନାମାନ୍ତର ।

**ଗୋପାଳ**—ଶ୍ରୀକୃଷ୍ଣଙ୍କ ଅବସ୍ଥା ବିଶେଷ । ଏ ବସୁଦେବଙ୍କ ପୁତ୍ର ହେଲେ ବ୍ରଜଧାମର ନନ୍ଦାଳୟରେ ପାଳିତ ହୋଇ ପିଲାଦିନୁ ନନ୍ଦନନ୍ଦନ ନାମରେ ଖ୍ୟାତ । ବ୍ରଜଲୀଳାରେ ଏ ଗୋପବାଳକ ଓ ଗୋପକନ୍ୟାଗଣଙ୍କ ଦ୍ୱାରା ସର୍ବଦା ପରିବୃତ ହୋଇଥାନ୍ତି । (କୃଷ୍ଣ ଦେଖ) ପଦ୍ମପୁରାଣରେ ବର୍ଣ୍ଣିତ ହୋଇଛି ଯେ ଏ ସର୍ବଦା ଗୋପବେଶ ଧାରଣ କରି ପିଲାଙ୍କ ମେଳରେ ରହୁଥାନ୍ତି । ଏହାଙ୍କର ପରିଧାନ ପୀତବାସ, ହସ୍ତରେ ବେଣୁ, ମସ୍ତକରେ ମୟୂର ପୁଚ୍ଛ ଏବଂ ଏ ସର୍ବଦା କଦମ୍ବ ବୃକ୍ଷ ମୂଳରେ ବସିବା ପାଇଁ ସୁଖ ପା'ନ୍ତି । ବୈଷ୍ଣବ ଭକ୍ତଗଣ ଏହି ମୂର୍ତ୍ତିକୁ ଉପାସନା କରନ୍ତି ।

**ଗୋପାଳୀ**—ଅପ୍‌ସରା ବିଶେଷ । ଗର୍ଗ ମୁନିଙ୍କ ପତ୍ନୀ । କାଳଯବନର ମାତା ।

(କାଳଯବନ ଦେଖ)

**ଗୋପାଳୁଣୀ**—ଲିଙ୍ଗରାଜଙ୍କ ମନ୍ଦିରର ଉତ୍ତରରେ ବେଢ଼ା ମଧ୍ୟରେ ଗୋଟିଏ ଶ୍ରେଷ୍ଠ ଚୂନବୋଳା ଦେଉଳଟେ ପୂଜା ପାଉଥିବା ଭଗବତୀ ମୂର୍ତ୍ତି । ଏ ଦେଉଳର ଗଢ଼ଣ ଭୁବନେଶ୍ୱର ଲିଙ୍ଗରାଜଙ୍କ ଦେଉଳ ଗଢ଼ଣଠାରୁ ପୃଥକ୍ । ଏହା ଅପେକ୍ଷାକୃତ ନୂତନ । ଅସଲ ମୂର୍ତ୍ତି ଉପରେ ଗୋଟିଏ ପଥରର ଫମ୍ପା ରୂପ ଖୋଳା ହୋଇ କରିଳ ବା ଅଠା ଦ୍ୱାରା ମଡ଼ା ହୋଇ ସେହି ପଥରର ଖୋଳ ପୂଜା ପାଉଅଛି । ଏକାମ୍ରପୁରାଣରେ କଥିତ ହୋଇଅଛୁ ଯେ ଏକାମ୍ରେଶ୍ୱରଙ୍କ ଲିଙ୍ଗ ଉପରେ ଗୋଟିଏ ଗାଈଠାରୁ ଦୁଧର ଧାର ଝରୁଥିଲା । ଭଗବତୀ ସେ ଗାଈକୁ ପାଳି ଥିବାରୁ ତାଙ୍କର ନାମ ଗୋପାଳୁଣୀ ।

(ଭାଷାକୋଷ)

**ଗୋବର୍ଦ୍ଧନ**—ବୃନ୍ଦାବନ ନିକଟସ୍ଥ ପାହାଡ଼ । ଇନ୍ଦ୍ର କୋପରୁ ଗୋପ ରକ୍ଷାପାଇଁ ଶ୍ରୀକୃଷ୍ଣ ଏହି ପର୍ବତଟିକୁ ଟେକି ଥିଲେ । ଯେପରି—"ଗୋବର୍ଦ୍ଧନ ଗିରି, ଆତପତ୍ର ପରି, ଟେକିଥିଲେ କରେ ନୋହି ଆୟାସୀ ।"

**ଗୋମତ**—(୧) ଗୋବର୍ଦ୍ଧନ ପର୍ବତ, (୨) ଋଷି ବିଶେଷ । ଏହି ଋଷି କଂସକୁ ଅଭିଶାପ ଦେଇଥିବାରୁ ସେ ଗୋପପୁରକୁ ଯାଉନଥିଲେ ଯେପରି—"ଗୋମତ ଋଷିର ଶାପେ, ପଶି ନ ପାରିବ ଗୋପେ" ଇତ୍ୟାଦି

**ଗୋମତୀ**—ଅଯୋଧ୍ୟାରେ ପ୍ରବାହିତ ହିନ୍ଦୁମାନଙ୍କର ତୀର୍ଥ ନଦୀ ବିଶେଷ । ଏଥିରେ ସ୍ନାନକଲେ ପୁଣ୍ୟ ହୁଏ ବୋଲି ପୁରାଣରେ ଅଛି । ଏହା ଗଙ୍ଗା ନଦୀର ଉପନଦୀ । ଲକ୍ଷ୍ନୌ ଓ ଫୈଜାବାଦ ଏହି ନଦୀ କୂଳରେ ଅବସ୍ଥିତ ।

(ଭାଷାକୋଷ)

**ଗୋମନ୍ତ**—ପଶ୍ଚିମଘାଟ ନିକଟସ୍ଥ ବିନ୍ଧ୍ୟ ପର୍ବତର ପ୍ରତ୍ୟନ୍ତ ଦେଶସ୍ଥ ପ୍ରସିଦ୍ଧ ପୌରାଣିକ ପର୍ବତ । ଏହିଠାରେ ଶ୍ରୀକୃଷ୍ଣ ଓ ଜରାସନ୍ଧଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । (ଭାଷାକୋଷ)

**ଗୋସିଂହ**—ଅସୁର ବିଶେଷ । ସତ୍ୟଭାମାକୁ ହରଣ କରି ନେବାବେଳେ ସତ୍ୟଭାମା 'ଅର୍ଜୁନ ରକ୍ଷା କର' ବୋଲି ଡାକିଲେ । ଅର୍ଜୁନ ଏ କାକୁତି ଶୁଣି ଶୂନ୍ୟରେ ଶରବନ୍ଧ କରି ଗୋସିଂହକୁ ଅଟକାଇ ରଖି ତାହା ସହିତ ଯୁଦ୍ଧ କରି ସତ୍ୟଭାମାକୁ ଉଦ୍ଧାର କଲେ । ଗୋସିଂହ ଦୈତ୍ୟର ସ୍ତ୍ରୀର ନାମ ପଦ୍ମାବତୀ । (ମହାଭାରତ)

**ଗୌଡ଼**-କେହି କେହି କହନ୍ତି ମାନ୍ଧାତାଙ୍କ ଦୌହିତ୍ର ଗୌଡ଼ ଏ ଦେଶରେ ରାଜତ୍ୱ କରୁଥିବାରୁ ଏ ଦେଶର ନାମ ଗୌଡ଼ ହୋଇଛି । ପୂର୍ବେ ଏହି ଗୌଡ଼ ଦେଶ ପାଞ୍ଚଟି ଦେଶରେ ବିଭକ୍ତ ଥିଲା—ରାଢ, ବରେନ୍ଦ୍ର, ବାଗଡ଼ୀ, ବଙ୍ଗ ଓ ମିଥିଳା । ସ୍କନ୍ଦପୁରାଣରେ ଗୌଡ଼ ଦେଶର ସୀମା ନିର୍ଣ୍ଣୟ କରାଯାଇଛି—

ବଙ୍ଗଦେଶଂ ସମାରଭ୍ୟ ଭୁବନେଶାନ୍ତଗଃ ଶିବେ ।
ଗୌଡ଼ଦେଶଃ ସମାଖ୍ୟାତଃ ସର୍ବବିଦ୍ୟା ବିଶାରଦଃ ।

କୂର୍ମପୁରାଣ ଓ ଲିଙ୍ଗପୁରାଣରୁ ପ୍ରମାଣ ମିଳେ ଯେ ଗୌଡ଼ ଦେଶର ରାଜଧାନୀ ଶ୍ରାବସ୍ତୀ ଥିଲା । ହିତୋପଦେଶରେ କୌଶାମ୍ବୀ ଗୌଡ଼ ଦେଶର ଅନ୍ତର୍ଗତ ବୋଲି କୁହାଯାଇଅଛି । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଗୌତମ**—(୧) ବିଖ୍ୟାତ ଗୋତ୍ର ପ୍ରବର୍ତ୍ତକ ଭରଦ୍ୱାଜ ମୁନିଙ୍କ ନାମାନ୍ତର । ଏ ଗୋତମଙ୍କ ଅପତ୍ୟ । (୨) କୃପାଚାର୍ଯ୍ୟଙ୍କ ନାମାନ୍ତର । ଏ ଗୋତମଗୋତ୍ରୀୟ ଶରଦ୍ୱାନ୍‌ଙ୍କ ପୁତ୍ର ବୋଲି ଗୌତମ ନାମରେ ଖ୍ୟାତ । (୩) ରାମାୟଣର

ପ୍ରସିଦ୍ଧ ଋଷି । ଏହାଙ୍କ ପତ୍ନୀ ଅହଲ୍ୟା । (ଅହଲ୍ୟା ଦେଖ) (୪) ବୁଦ୍ଧଦେବଙ୍କ ଅନ୍ୟନାମ । (୫) ଗୋଦାବରୀ ନଦୀର ଉତ୍ପତ୍ତି ସ୍ଥାନ ପର୍ବତ ବିଶେଷ ।

**ଗୌତମୀ**—(୧) କୃପଙ୍କ ଭଗିନୀ, କୃପୀଙ୍କ ନାମାନ୍ତର । (୨) ଗୋଦାବରୀ ନଦୀ । (୩) ଦୁର୍ଗା । (୪) ଅହଲ୍ୟା ।

**ଗୌରୀ**—(୧) ପାର୍ବତୀଙ୍କ ନାମାନ୍ତର । (୨) ତୁଳସୀ । (୩) ବରୁଣଙ୍କ ସ୍ତ୍ରୀ । (୪) ପୃଥିବୀ ।

**ଗୌରୀକୁଣ୍ଡ**—କୈଳାସର ସାନୁଦେଶସ୍ଥିତ ହ୍ରଦ । ଏ କୁଣ୍ଡ ସମୁଦ୍ର ତଳରୁ ୨୨୦୨୮ ଫୁଟ ଉଚ୍ଚ । ଏଠାରେ ଜଳସ୍ଥଳ ସବୁ ବରଫାବୃତ । କେବଳ ଏହି କୁଣ୍ଡର ପଶ୍ଚିମାଂଶରେ ୧୦/୧୨ ହାତ ପର୍ଯ୍ୟନ୍ତ ଅଂଶରେ ନୀଳବର୍ଣ୍ଣ ଜଳ ଦେଖାଯାଏ । କୁଣ୍ଡର ପରିଧି ୨/୩ ମାଇଲରୁ କମ୍ ନୁହେଁ । ଏ କୁଣ୍ଡର କୂଳରେ ଶିବଲିଙ୍ଗ ବଢ଼ି ଅନେକ ଶୃଙ୍ଗ ବାହାରି ଅଛି । ଏହି ଶୃଙ୍ଗମାନଙ୍କରେ ଉଚ୍ଚତମ ଶୃଙ୍ଗ କୈଳାସ । ଏହି ଶୃଙ୍ଗ ସକଳ ନୀହାରାବୃତ । (ଭାଷାକୋଷ)

**ଗୌରୀଶିଖର**—ହିମାଳୟର ଗୌରୀଶଙ୍କର ଶୃଙ୍ଗ । ଆଧୁନିକ ଏଭରେଷ୍ଟ । ଏହି ଶୃଙ୍ଗରେ ମହାଦେବଙ୍କୁ ପତିରୂପେ ପାଇବା ଉଦ୍ଦେଶ୍ୟରେ ଗୌରୀ ତପସ୍ୟା କରୁଥିବାର ପୁରାଣରେ ଲେଖାଅଛି । (ଭାଷାକୋଷ)

**ଗ୍ରନ୍ଥସାହେବ**—ଶିଖମାନଙ୍କ ଧର୍ମପୁସ୍ତକ । ଏଥିରେ ଶିଖ ଗୁରୁମାନଙ୍କ ଉପଦେଶମାନ ସଂଗୃହୀତ ହୋଇଅଛି ଓ ଏହା ଗୁରୁମୁଖୀ ଭାଷାରେ ଲିଖିତ । ଶିଖମାନଙ୍କ ଧର୍ମ ମନ୍ଦିର 'ଗୁରୁଦ୍ୱାର'ମାନଙ୍କରେ ଗ୍ରନ୍ଥସାହେବ ପାଠ କରାଯାଏ ଓ ପୂଜା ପାଏ ଏବଂ ବିମାନରେ 'ଗ୍ରନ୍ଥସାହେବ'ଙ୍କ ସ୍ଥାପନ କରି ଶିଖମାନେ ଶୋଭାଯାତ୍ରା କରନ୍ତି । (ଭାଷାକୋଷ)

**ଗ୍ରହ**—ସୂର୍ଯ୍ୟ ନିଜର ଆକର୍ଷଣ ଦ୍ୱାରା ଆଉ କେତେଗୁଡ଼ିଏ ଜ୍ୟୋତିର୍ମୟ ବସ୍ତୁକୁ ଶୂନ୍ୟରେ ଟାଣି ରଖିଥିବାରୁ ସେ ବସ୍ତୁମାନେ ସୂର୍ଯ୍ୟଙ୍କ ଚାରିପାଖେ ଅଣ୍ଡାକାର ପଥରେ ବୁଲୁ ଅଛନ୍ତି । ଏହି ବୁଲିବା ବସ୍ତୁମାନଙ୍କୁ ଗ୍ରହ ବୋଲାଯାଏ । ଏମାନଙ୍କ ମଧ୍ୟରେ ସୂର୍ଯ୍ୟ ସମସ୍ତଙ୍କଠାରୁ ବଡ଼ । ଗ୍ରହମାନେ ମଧ୍ୟ ପରସ୍ପରକୁ ଆକର୍ଷଣ କରୁଅଛନ୍ତି । ସୂର୍ଯ୍ୟଙ୍କୁ କେନ୍ଦ୍ର କରି ବୁଲୁଥିବା ଗ୍ରହଙ୍କୁ ନେଇ ସୌରଜଗତ୍, ଏହିପରି ଅସଂଖ୍ୟ ସୌରଜଗତ୍ ମାଳ ମାଳ ହୋଇ ଶୂନ୍ୟମାର୍ଗରେ ବୁଲୁଅଛନ୍ତି । ଖାଲି ଆଖିରେ ଦେଖାଯାଉଥିବା ନକ୍ଷତ୍ରମାନେ

ଶୂନ୍ୟରେ ଅନନ୍ତ ଦୂରରେ ଥିବା ଗୋଟିଏ ଗୋଟିଏ ସୂର୍ଯ୍ୟ ଓ ତାଙ୍କ ଚାରି ପାଖେ ଯେଉଁ ଗ୍ରହମାନେ ବୁଲୁଛନ୍ତି, ଯେମାନେ ଉକ୍ତ ସୂର୍ଯ୍ୟଙ୍କଠାରୁ ଯାନ ହେବାରୁ ଆମ ଖାଲି ଆଖିରେ ଦଶନ୍ତି ନାହିଁ । ପୁଣି ଗ୍ରହମାନଙ୍କୁ କେନ୍ଦ୍ର କରି ତାଙ୍କ ଚାରିପାଖେ ଯେଉଁ ଜ୍ୟୋତିଷ୍କମାନେ ବୁଲୁଛନ୍ତି, ତାଙ୍କୁ ଉପଗ୍ରହ ବୋଲିଯାଏ । ଆମ ପୃଥିବୀ ଚାରିପାଖେ ଚନ୍ଦ୍ର ଯେଉଁପରି ବୁଲୁଛି, ବୃହସ୍ପତି, ଶନି, ମଙ୍ଗଳ ଚାରିପାଖେ ମଧ୍ୟ ସେହିପରି କେତେଗୋଟି ଲେଖାଏଁ ଚନ୍ଦ୍ର ମଧ୍ୟ ବୁଲୁଅଛନ୍ତି । ସେ ଉପଗ୍ରହମାନେ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଦେଖାଯାଆନ୍ତି । ଧ୍ରୁବଙ୍କୁ କେନ୍ଦ୍ରକରି ନକ୍ଷତ୍ରମାନେ ପୂର୍ବରୁ ପଶ୍ଚିମକୁ ଗତି କରୁଅଛନ୍ତି ବୋଲି ଜଣାଯାଏ । କିନ୍ତୁ ଗ୍ରହମାନଙ୍କ ଗତି ନକ୍ଷତ୍ରମାନଙ୍କ ପରି ନିୟମିତ ନୁହେଁ । ଗ୍ରହମାନେ ପୂର୍ବରୁ ପଶ୍ଚିମକୁ ବୁଲି ବୁଲି ପୁଣି ବେଳାକେଳେ ପଶ୍ଚିମରୁ ପୂର୍ବକୁ ଗଲାପରି ଦେଖାଯାଆନ୍ତି ଓ କେବେ କେବେ ବଙ୍କା ହୋଇ ଗତି କରିବାର ମଧ୍ୟ ଦେଖାଯାଆନ୍ତି । ଏହାକୁ ଗ୍ରହମାନଙ୍କ ଅତିଚାର ବା ବକ୍ରଗତି ବୋଲିଯାଏ । ଗ୍ରହମାନଙ୍କର ଆକାର, ଦୂରତ୍ୱ ଓ ସୂର୍ଯ୍ୟଙ୍କ ଚାରିଆଡ଼େ ଘୂରିବାର କାଳ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜ୍ୟୋତିଷୀମାନେ ଗଣନା ଦ୍ୱାରା ସ୍ଥିର କରିଅଛନ୍ତି । ହିନ୍ଦୁ ଜ୍ୟୋତିଷୀମାନଙ୍କ ମତରେ ନଅଟି ଗ୍ରହ, ଯଥା—ସୂର୍ଯ୍ୟ, ଚନ୍ଦ୍ର ବା ସୋମ, ମଙ୍ଗଳ, ବୁଧ, ବୃହସ୍ପତି ବା ଗୁରୁ, ଶୁକ୍ର, ଶନି, ରାହୁ, କେତୁ ।

ପ୍ରକୃତରେ ରାହୁ ଓ କେତୁ ଗ୍ରହ ନୁହନ୍ତି, ଏହା ପୃଥିବୀର ଛାୟା । ଏହା-ଛଡ଼ା ପାଶ୍ଚାତ୍ୟଜ୍ୟୋତିଷୀମାନେ ୟୁରେନସ୍ ଓ ନେପ୍‌ଚୁନ୍ ନାମରେ ଆଉ ଦୁଇଟି ଗ୍ରହ ଆବିଷ୍କାର କରିଛନ୍ତି । ହିନ୍ଦୁ ଫଳିତ ଜ୍ୟୋତିଷ ମତରେ ପୃଥିବୀ ଉପରେ ଓ ମନୁଷ୍ୟ ଉପରେ ଗ୍ରହମାନଙ୍କ ପ୍ରଭାବ ପଡ଼େ ଓ ଗ୍ରହମାନଙ୍କୁ ନାନା ବର୍ଣ୍ଣ ନାନା ଜାତି ଓ ପ୍ରଭାବବିଶିଷ୍ଟ ବୋଲି ବର୍ଣ୍ଣନା କରାଯାଇଛି । (ଭାଷାକୋଷ)

ସ୍କନ୍ଦ ପୁରାଣୋକ୍ତ ନବଗ୍ରହ ସ୍ତୋତ୍ରରୁ ଓ କର୍ମକାଣ୍ଡୋକ୍ତ ନବଗ୍ରହ ପୂଜାରୁ ଗ୍ରହମାନଙ୍କର ସକଳ ବିଷୟର ପରିଚୟ ମିଳେ । (ବୈଜ୍ଞାନିକ ମତରେ ଗ୍ରହମାନଙ୍କ ଉପଗ୍ରହ ସଂଖ୍ୟା ହେଉଛି :—ପୃଥିବୀ-ଏକ, ମଙ୍ଗଳ-ଦୁଇ, ବୃହସ୍ପତି-ଏଗାର, ଶନି-ଦଶ, ନେପ୍‌ଚୁନ-ଦୁଇ, ପ୍ଲୁଟୋ-ପାଞ୍ଚ । ପ୍ଲୁଟୋ ଏକ ନୂତନ ଆବିଷ୍କୃତ ଗ୍ରହ । ଶେଷୋକ୍ତ ତିନୋଟିଙ୍କ ମଧ୍ୟରୁ ଦୁଇଟିକୁ ଇନ୍ଦ୍ର ଓ ବରୁଣ ନାମ ଦିଆଯାଇଛି )।

●

# ଘ

**ଘଟ**—ଝଙ୍କଡର ଶାରଳା, କାକଟପୁରର ମଙ୍ଗଳା, ବାଙ୍କୀର ଚର୍ଚ୍ଚିକା, ଡ଼ମାଡାର ପୋଟଲେଇ, ଅପୁରେଶ୍ୱରର ହରଚଣ୍ଡୀ ଆଦି ଠାକୁରାଣୀଙ୍କ ପୂଜା ସମୟରେ ସ୍ଥାପିତ ଘଟ ଉପରେ ମାଟିବୋଲି ତାକୁ ଗୋଟିଏ ଶାପରୁଆ ପରି ବଇଠି ଉପରେ ସଜାଇ ସେଥିରେ ଫୁଲ ଆଦି ଖଞ୍ଜି ମାଳୀ ସେବକମାନେ ରଣପା ଉପରେ ଚଢ଼ି ଉକ୍ତ ଘଟକୁ ଗ୍ରାମେ ଗ୍ରାମେ ବୁଲାଇ ଭିକ୍ଷା ମାଗନ୍ତି ।

(ଭାଷାକୋଷ)

**ଘଟକଞ୍ଚୁକୀ**—ଶାକ୍ତମାନଙ୍କର ତାନ୍ତ୍ରିକ ରୀତି ବିଶେଷ । ଏହି ରୀତିରେ ଭୈରବୀ ଚକ୍ରରେ ସମ୍ମିଳିତା ସ୍ତ୍ରୀମାନଙ୍କର କାଞ୍ଚୁଲିମାନ ଗୋଟିଏ ମାଠିଆରେ ପଶେ ଏବଂ ପ୍ରତ୍ୟେକ ପୁରୁଷ ପୂଜକ ଥରକେ ଗୋଟିଏ କାଞ୍ଚୁଲି ସେ ମାଠିଆରୁ କାଢ଼ନ୍ତି । ଯେଉଁ ପୁରୁଷ ହାତରେ ଯେଉଁ ସ୍ତ୍ରୀର କାଞ୍ଚୁଲି ଉଠିଆସେ, ସେହି ଉକ୍ତ ପୁରୁଷ ଉକ୍ତ ସ୍ତ୍ରୀକୁ ସମ୍ଭୋଗ କରିବାକୁ ଅଧିକାରୀ ହୁଅନ୍ତି ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଘଟୋତ୍କଚ** – ଦ୍ୱିତୀୟ ପାଣ୍ଡବ ଭୀମଙ୍କ ପୁତ୍ର । ହିଡ଼ମ୍ବା ରାକ୍ଷସୀ ଏହାଙ୍କର ମାତା । ଭାରତ ଯୁଦ୍ଧରେ ଘଟୋତ୍କଚ ପାଣ୍ଡବ ପକ୍ଷରେ ଯୁଦ୍ଧ କରିଥିଲେ । ନିଶୀଥ-କାଳରେ କର୍ଣ୍ଣଙ୍କ ସହିତ ଏହାଙ୍କର ଯୁଦ୍ଧ ହେଲା । ଏହାଙ୍କର ଆକୃତି ଭୟାନକ, ଲୋହିତ ନେତ୍ର, ମହାବାହୁ, ମହାକାୟ, ମହାଶୀର୍ଷ, ଶଙ୍କୁ କର୍ଣ୍ଣ, ନୀଳ କଳେବର, ଓ ମୁଖ ଆକର୍ଣ୍ଣ ବିସ୍ତୃତ । ଦ୍ରୋଣ, କର୍ଣ୍ଣ ଓ ଅଶ୍ୱତ୍ଥାମା ପ୍ରଭୃତି ବୀରଗଣ କୌରବ ସୈନ୍ୟ ଧ୍ୱଂସ ଦେଖି ଚିନ୍ତିତ ହୋଇଥିଲେ । ଅବଶେଷରେ କର୍ଣ୍ଣ ଅର୍ଜୁନଙ୍କ ନିଧନ ପାଇଁ ଯେଉଁ ଶକ୍ତି-ଅସ୍ତ୍ର ରଖିଥିଲେ କୌରବ ସୈନ୍ୟ ରକ୍ଷା ନିମିତ୍ତ ତାହା ପ୍ରୟୋଗ କରି ଘଟୋତ୍କଚଙ୍କୁ ବଧ କଲେ । ଶ୍ରୀକୃଷ୍ଣ ଏହାଦେଖି ଆନନ୍ଦିତ ହୋଇ କହିଲେ – ଏଥର ଅର୍ଜୁନ ନିଶ୍ଚୟ କର୍ଣ୍ଣଙ୍କୁ ବଧ କରିପାରିବେ । (ମହାଭାରତ – ଦ୍ରୋଣପର୍ବ)

**ଘଣ୍ଟାକର୍ଣ୍ଣ**—ଶିବଙ୍କ ଅନୁଚର ବିଶେଷ । ମଙ୍ଗଳଙ୍କ ଔରସରେ ମେଧାଙ୍କ ଗର୍ଭରୁ ଏହାଙ୍କ ଜନ୍ମ । ଏହାର ଅପର ନାମ ଘଣ୍ଟେଶ୍ୱର । ଏ ଅଭିଶପ୍ତ ହୋଇ ମନୁଷ୍ୟ ରୂପେ ଉଜ୍ଜୟିନୀରେ ଜନ୍ମ ହୋଇଥିଲେ । ବିକ୍ରମାଦିତ୍ୟଙ୍କ ରାଜସଭାର

କବିରତ୍ନମାନଙ୍କୁ ବିଦ୍ୟାବିବାଦରେ ପରାସ୍ତ କରିବାପାଇଁ ଏହାଙ୍କର ପ୍ରବଳ ବାସନା ଥିଲା । ସେଥିଲାଗି ସେ ଶିବଙ୍କୁ ଆରାଧନା କରିଥିଲେ । ମହାଦେବ ସନ୍ତୁଷ୍ଟ ହୋଇ ବର ଦେବାକୁ ଆସିଲେ । ତାହାଙ୍କ ପ୍ରାର୍ଥନା ଶୁଣି ମହାଦେବ କହିଲେ—'ସରସ୍ୱତୀଙ୍କ ବରପୁତ୍ର କବି କାଳିଦାସଙ୍କ ଛଡ଼ା ଅନ୍ୟମାନଙ୍କୁ ତୁମେ ପରାସ୍ତ କରି ପାରିବ ।' ଘଣ୍ଟାକର୍ଣ୍ଣ କିନ୍ତୁ କାଳିଦାସଙ୍କୁ ପରାସ୍ତ କରିବେ ବୋଲି ଶିବଙ୍କ ଆଗେ ଜିଦ୍ ଧରି ବସିଲେ, ମାତ୍ର ଶିବ ଏଥିରେ ସମ୍ମତ ହେଲେନାହିଁ । ଏଥିରେ ଘଣ୍ଟାକର୍ଣ୍ଣ ଅତି ଅସନ୍ତୁଷ୍ଟ ହୋଇ ସଂକଳ୍ପ କଲେ ଯେ ସେ ସ୍ୱପ୍ନରେ ସୁଦ୍ଧା ଆଉ ଶିବଙ୍କ ନାମ ଧରିବେ ନାହିଁ । ତଥାପି ଶିବଙ୍କ ପ୍ରତି ତାଙ୍କର ଅଚଳଭକ୍ତି ରହିଥାଏ ।

ଅନନ୍ତର ଘଣ୍ଟାକର୍ଣ୍ଣ ବିକ୍ରମାଦିତ୍ୟଙ୍କ ରାଜଧାନୀ ଉଜ୍ଜୟିନୀକୁ ଗଲେ । ପଣ୍ଡିତମାନେ କିନ୍ତୁ ଘଣ୍ଟାକର୍ଣ୍ଣଙ୍କ ସମ୍ବନ୍ଧୀୟ ସକଳ ବୃତ୍ତାନ୍ତ ଆଗରୁ ଜାଣି ପାରିଥିଲେ । ବିଦ୍ୟାବିବାଦରେ କାଳିଦାସଙ୍କ ବ୍ୟତୀତ ଅନ୍ୟାନ୍ୟ ପଣ୍ଡିତ-ମାନେ ପରାସ୍ତ ହେଲେ । କାଳିଦାସ ତାଙ୍କୁ ଶିବଙ୍କ ସମ୍ମୁଖେ ସାର୍ଦ୍ଧଛନ୍ଦରେ ଏକ ସ୍ତୋତ୍ର ରଚନା କରିବା ପାଇଁ କହିଲେ । ଘଣ୍ଟାକର୍ଣ୍ଣ ତ ଶିବଙ୍କ ନାମ ଧରିବେ ନାହିଁ ବୋଲି ପ୍ରତିଜ୍ଞା କରିସାରିଛନ୍ତି, ବର୍ତ୍ତମାନ ସେ ଏପରି ଏକ ଶିବସ୍ତୋତ୍ର ରଚନା କଲେ ଯେ ସ୍ତୋତ୍ରରେ ଶିବଙ୍କ ନାମ ନଥିଲେ ମଧ୍ୟ ତାହା ଶିବଙ୍କ ପ୍ରତି ଅଭୂତ ଭାବରେ ପରିଷ୍କାର ବୁଝି ହେଉଥିଲା । ବିକ୍ରମାଦିତ୍ୟ ଓ ପଣ୍ଡିତମଣ୍ଡଳୀ ଏ ରଚନାରେ ବିସ୍ମିତ ହେଲେ । ଅନନ୍ତର ଘଣ୍ଟାକର୍ଣ୍ଣ ଶାପମୁକ୍ତ ହେଲେ । ମହାଦେବ ତାଙ୍କର ଅଚଳଭକ୍ତି ଦେଖି ତାଙ୍କୁ ପାର୍ଶ୍ୱଚର କରି ରଖିଲେ । ପ୍ରତିବର୍ଷ ଚୈତ୍ରମାସରେ ମିଥୁନ ସଙ୍କ୍ରାନ୍ତିରେ ସିନ୍ଧୁ ଗଛମୂଳେ ତାଙ୍କର ପୂଜା ହୁଏ ।

ହରିବଂଶରେ ଆଉଜଣେ ଘଣ୍ଟାକର୍ଣ୍ଣଙ୍କ ପରିଚୟ ମିଳେ । ଏ ପ୍ରଥମେ ବିଷ୍ଣୁଦ୍ୱେଷୀ ଥିଲେ । ଯେପରି ହରିନାମ ଶୁଣିବ ନାହିଁ ସେଥିଲାଗି ଘଣ୍ଟା ଦୁଇଟା ଦୁ କାନରେ ଓହଳାଇ ଥିଲେ । ଏହେତୁ ତାଙ୍କର ନାମ ଥିଲା ଘଣ୍ଟାକର୍ଣ୍ଣ ।

ଶ୍ରୀକୃଷ୍ଣ ପୁତ୍ରକାମନାରେ ହରପାର୍ବତୀଙ୍କ ପୂଜା ନିମିତ୍ତ ବଦ୍ରିକାଶ୍ରମକୁ ଗଲେ । ଗଲାବେଳେ ଯଦୁବଂଶୀୟମାନଙ୍କ ଉପରେ ଦ୍ୱାରକାର ଯାବତୀୟ ଭାର ନ୍ୟସ୍ତ କରି ଯାଇଥିଲେ । ଘଣ୍ଟାକର୍ଣ୍ଣ ପିଶାଚ ଏଇ ସୁବିଧା ପାଇଁ ମହାଦେବଙ୍କ ପାଖକୁ ଗଲା ଏବଂ ତାଙ୍କୁ ମୁକ୍ତି ପ୍ରାର୍ଥନା କଲା । ମହାଦେବ କହିଲେ—

'ବଦ୍ରିକାଶ୍ରମରେ ବିଷ୍ଣୁଙ୍କ ଆରାଧନା କଲେ ତୁମର ଏ ବାସନା ପୂର୍ଣ୍ଣ ହୋଇ ପାରିବ ।' ଘଣ୍ଟାକର୍ଣ୍ଣ ବଦ୍ରିକାଶ୍ରମରେ ଉପସ୍ଥିତ ହୋଇ ସୌଭାଗ୍ୟବଶତଃ ଶ୍ରୀକୃଷ୍ଣଙ୍କ ସାକ୍ଷାତ ଲାଭ କଲା ଏବଂ ତାଙ୍କୁ ସ୍ତବ କରିବାକୁ ଲାଗିଲା । ଶ୍ରୀକୃଷ୍ଣ ଏହି ସ୍ତବରେ ତୃପ୍ତ ହୋଇ ତାକୁ ମୁକ୍ତି ଦେଲେ । ଘଣ୍ଟାକର୍ଣ୍ଣ ମୁକ୍ତି ଲାଭ କରି ବୈକୁଣ୍ଠକୁ ଗମନ କଲା ।

**ଘୃତାଚୀ** – ସ୍ୱର୍ଗବାସିନୀ ଅପ୍ସରା । ଏହାକୁ ଦେଖି ଭଗବାନ ବ୍ୟାସଦେବଙ୍କର କାମୋଦ୍ରେକ ହୋଇଥିବା ଫଳରେ ମହର୍ଷି ଶୁକଦେବ ଜନ୍ମ ହେଲେ ।
(ଶୁକଦେବ ଦେଖ)

ଚ୍ୟବନଙ୍କ ପୁତ୍ର ପ୍ରମତି ଏହି ଘୃତାଚୀ ଗର୍ଭରେ ରୁରୁ ନାମକ ପୁତ୍ର ଉତ୍ପାଦନ କରିଥିଲେ । (ମହାଭାରତ, ଆଦିପର୍ବ) ମହୋଦୟ ବା କନୌଜର ରାଜା କୁଶନାଭ ଏହି ଅପ୍ସରା ଗର୍ଭରୁ ଏକଶତ କନ୍ୟା ଉତ୍ପାଦନ କରିଥିଲେ । ଏହି କନ୍ୟାମାନେ ପବନଙ୍କ ଅଭିଶାପ ଯୋଗୁ କୁବ୍‌ଜଭାବାପନ୍ନ ହୋଇଥିବାରୁ ସେ ସ୍ଥାନ କାନ୍ୟକୁବ୍‌ଜ (ଆଧୁନିକ କନୌଜ) ନାମରେ ଖ୍ୟାତ ହୋଇଥିଲା । (କୁଶନାଭ ଦେଖ) ଗଙ୍ଗା ସମୀପରେ ଭରଦ୍ୱାଜଙ୍କ ଆଶ୍ରମ ଥିଲା । ଏକଦା ଘୃତାଚୀଙ୍କୁ ସ୍ନାନତତ୍ପର ଦେଖି ଭରଦ୍ୱାଜ କାମ ପରତନ୍ତ୍ର ହେଲେ । ତାଙ୍କର ରେତଃ ସ୍ଖଳିତ ହେଲା । ମୁନି ସେହି ରେତଃକୁ ଏକ ଦ୍ରୋଣୀ (ପାତ୍ର ବିଶେଷ)ରେ ରଖିଲେ । ଏହି ରେତଃରୁ ଏକ ପୁତ୍ର ଜନ୍ମ ହେଲା । ଏହି ପୁତ୍ର ପ୍ରସିଦ୍ଧ ବୀର ଦ୍ରୋଣାଚାର୍ଯ୍ୟ ନାମରେ ପରିଚିତ ହେଲେ ।

●



**ଚଇତଘୋଡ଼ା**—କିମ୍ବଦନ୍ତୀ ଅଛି ଯେ, ରାମଚନ୍ଦ୍ର ବନବାସ କରିବାକୁ ଯିବା ସମୟରେ ତାଙ୍କୁ ଯେଉଁ ଧୀବର ବା ଦାସରାଜ ଡଙ୍ଗାରେ ବସାଇ ସରଯୂନଦୀ ପାର କରିଥିଲା, ରାମଚନ୍ଦ୍ର ତାକୁ ଗୋଟିଏ ଘୋଡ଼ା ପୁରସ୍କାରରୂପେ ଦେଇ

ଯାଉଥିଲେ । ସେହି ଦିନରୁ କେଉଟମାନେ ଘୋଡ଼ାର ରୂପ ନିର୍ମାଣ କରି ପୂଜା କରି ଆସୁଛନ୍ତି । କେଉଟମାନେ ବାଉଁଶ ବତାରେ ଘୋଡ଼ାର ପାଦହୀନ ଦେହ ଓ ବେକ ଆକାରର ଗୋଟିଏ ଆଟ ତିଆରି କରି ତା ଉପରେ ଲୁଗା ଆବୃତ ଘୋଡ଼ାନ୍ତି ଓ ବେକ ଉପରେ ଘୋଡ଼ା ମୁହଁ ପରି ଚିତ୍ରିତ ମୁଖାଟିଏ ଲଗାନ୍ତି । ଉକ୍ତ ଚଇତିଘୋଡ଼ାର ପିଠିରେ ଗୋଟିଏ କଣାଥାଏ । ସେହି କଣା ବାଟେ ମନୁଷ୍ୟ ଅଣ୍ଟା ପର୍ଯ୍ୟନ୍ତ ପଶି ଭୂମିରେ ଠିଆ ହୁଏ ଓ ଘୋଡ଼ା ରୂପର ଆଗରୁ ପଛକୁ ଡୋରି ଲଟକାଯାଏ । ମନୁଷ୍ୟର ଅଣ୍ଟାଠାରୁ ନିମ୍ନ ଅଂଶ ଘୋଡ଼ା ଭିତରେ ଲୁଚିଥାଏ ଓ ଅଣ୍ଟାଠାରୁ ଉପର ଅଂଶ ଘୋଡ଼ା ଉପରେ ବସିବା ପରି ଅନୁମିତ ହୁଏ । ଏ ବ୍ୟକ୍ତି ନାଚିବା ସଙ୍ଗେ ସଙ୍ଗେ ଘୋଡ଼ା ମଧ୍ୟ ନାଚେ । ଘୋଡ଼ାର ମୁହଁ ଆଡ଼େ ଲଗାମ ପରି କନା ଡୋରି ବନ୍ଧା ହୋଇଥାଏ । ଉକ୍ତ ଡୋରିକୁ ନାଚିଲାବାଲା ଧରି ଘୋଡ଼ାର ଲଗାମ ଧରିବାର ଅଭିନୟ କରେ । କେଉଟମାନେ ଏ ପର୍ବ ଉପଲକ୍ଷେ ଚଢ଼େଇଆ ଓ ଚଢ଼ଉଣୀ ବେଶ ହୋଇ ନାଚନ୍ତି । (ଭାଷାକୋଷ)

**ଚକୁଲଆପଣ୍ଡା**—ଜାତି ଶ୍ରେଣୀସ୍ଥ ଭିକ୍ଷୁକ ବ୍ରାହ୍ମଣ । ଏମାନେ କାଶ୍ୟପଗୋତ୍ରୀ । କଥିତ ଅଛି ଏମାନେ ପରଶୁରାମଙ୍କ ବଂଶଧର ଏବଂ ରାମଙ୍କ ଅଭିଶାପରୁ ଭିକ୍ଷା ମାଗନ୍ତି । ମତାନ୍ତରେ ଭୀମ ବିରାଟ ଭବନରେ ଛଦ୍ମ ବେଶରେ ଅଜ୍ଞାତବାସ କରିବା ସମୟରେ ବିରାଟ ରାଜାଙ୍କ ପାଚକ ରୂପରେ ବଲ୍ଲଭ ପଣ୍ଡା ନାମ ଧରି ରହିଥିଲେ । ସେ ଦେଶ ଦେଶ ବୁଲି 'ଚକ୍ର ଭିକ୍ଷା' କରୁଥିଲେ । ଭିକ୍ଷାନ୍ନ ସଂଗ୍ରହାର୍ଥେ ସେ ଗ୍ରାମର କାହାର ଦ୍ୱାରସ୍ଥ ନହୋଇ ଗ୍ରାମ ଦାଣ୍ଡରେ ତିନିଥର ବୁଲି ଯାଉଥିଲେ ଓ ଯେ ଯାହା ଦେଉଥିଲା, ନେଉଥିଲେ । ତାଙ୍କ ସଙ୍ଗେ ଚକ୍ରଭିକ୍ଷା ସମୟରେ ଯେଉଁ ବ୍ରାହ୍ମଣମାନେ ଯୋଗଦେଇଥିଲେ ଆଧୁନିକ ଚକୁଲଆ ପଣ୍ଡାମାନେ ସେମାନଙ୍କର ବଂଶଧର । (ଭାଷାକୋଷ)

**ଚକ୍ରତୀର୍ଥ**—ଶ୍ରୀକୃଷ୍ଣଙ୍କ ସୁଦର୍ଶନଚକ୍ର ଦ୍ୱାରା ନିର୍ମିତ ପ୍ରଭାସ କ୍ଷେତ୍ରସ୍ଥ ତୀର୍ଥବିଶେଷ । ବୃନ୍ଦାବନରେ ଥିବା ତୀର୍ଥବିଶେଷ (ସ୍କନ୍ଦପୁରାଣ) ପୁଣି ସମୁଦ୍ରତୀରସ୍ଥ ତୀର୍ଥ ବିଶେଷ । ଏହିଠାରେ ପରଶୁରାମ ତପସ୍ୟା କରିଥିଲେ । ପ୍ରମାଣ ଯଥା— ଅଧ୍ୟାତ୍ମ ରାମାୟଣ ସପ୍ତମ ସର୍ଗ ୨୨ ଶ୍ଳୋକରେ ପରଶୁରାମ ଶ୍ରୀରାମଙ୍କୁ କହିଛନ୍ତି—

ବାଲ୍ୟେଽହଂ ତପସା ବିଷ୍ଣୁମାରାଧୟିତୁ ମଞ୍ଜସୀ ।
ଚକ୍ରତୀର୍ଥଂ ଶୁଭଂଗତ୍ୱା ତପସା ବିଷ୍ଣୁମନ୍ୱହମ୍ ।

ରାଧାନାଥ ମଧ୍ୟ ତାଙ୍କର ମହାଯାତ୍ରା କାବ୍ୟରେ ଏହି ଚକ୍ରତୀର୍ଥର ବର୍ଣ୍ଣନା କରିଛନ୍ତି । ହିନ୍ଦୀ ଶବ୍ଦସାଗର କହେ—'ଦାକ୍ଷିଣାତ୍ୟର ଋଷ୍ୟମୂକ ପର୍ବତ ନିକଟରେ ତୁଙ୍ଗଭଦ୍ରା ନଦୀ ଘୂରି ଯାଉଥିବା ତୀର୍ଥବିଶେଷ । ମହାଭାରତ ଓ ଆଦି ପୁରାଣରେ କାଶୀ, କାମରୂପ, ନର୍ମଦା, ଶ୍ରୀକ୍ଷେତ୍ର, ସେତୁବନ୍ଧ ରାମେଶ୍ୱର ସ୍ଥାନରେ ଅନେକଗୁଡ଼ିଏ ଚକ୍ରତୀର୍ଥର ବର୍ଣ୍ଣନା ଅଛି ।

**ଚକ୍ରଦତ୍ତ**—ବୈଦ୍ୟକ ଗ୍ରନ୍ଥବିଶେଷର ନାମ ।

**ଚକ୍ରବାନ୍**—ପୌରାଣିକ ଯୁଗର ଏକ ପର୍ବତ । ଏହିଠାରେ ବିଷ୍ଣୁ ହୟଗ୍ରୀବ ଓ ପଞ୍ଚଜନ ଦୈତ୍ୟ ଦୁହିଙ୍କୁ ବଧ କରିଥିଲେ । ବିଜିତ ଦ୍ରବ୍ୟ ସ୍ୱରୂପ ଚକ୍ର ଓ ଶଙ୍ଖ ଏ ଦୁଇଟି ଆୟୁଧ ତାଙ୍କୁ ମିଳିଥିଲା ।

**ଚକ୍ରମୁଣୋହି**—ଯାହାଦି ଭିଡ଼ ହେଲେ ପୂଜକ ବା ପଣ୍ଡା ଶ୍ରୀଜଗନ୍ନାଥଙ୍କ ସିଂହାସନ ନିକଟକୁ ଯାଇ ନ ପାରି ଯଜମାନ ପ୍ରଦତ୍ତ ନୈବେଦ୍ୟ ସାମଗ୍ରୀକୁ ନୀଳଚକ୍ରକୁ ଦେଖାଇ ପୂଜା କରିଥାନ୍ତି । ଏହାର ନାମ ଚକ୍ରମୁଣୋହି ।

**ଚକ୍ଷୁଃ**—(୧) ଅଜମୀଢ଼ବଂଶୀୟ ପୁରୁଜାନୁଙ୍କ ପୁତ୍ର ଓ ହର୍ଯ୍ୟଶ୍ୱଙ୍କ ପିତା । ବିଷ୍ଣୁ-ପୁରାଣୋକ୍ତ ରାଜାବିଶେଷ ।

(୨)—ବିଷ୍ଣୁପୁରାଣରେ ଅଛି ଯେ ଗଙ୍ଗା ବ୍ରହ୍ମଲୋକରୁ ପଡ଼ି ଚାରିଧାରାରେ ପ୍ରବାହିତ ହେଲେ । ଯେଉଁ ଧାରା କେତୁମାଳ ପର୍ବତ ପାଖରେ ପଶ୍ଚିମ ସାଗରରେ ଯାଇଁ ପଡ଼ିଲା ତାହାର ନାମ ଚକ୍ଷୁ । ବେଦରେ ମଧ୍ୟ ଏ ନାମ ମିଳେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଚଞ୍ଚଳା**—ମହାଲକ୍ଷ୍ମୀଙ୍କ ନାମାନ୍ତର । କାରଣ ଲକ୍ଷ୍ମୀ ଚିରକାଳ ଗୋଟିଏ ପରିବାର କିମ୍ବା ଜଣକ ଗୃହରେ ସ୍ଥିର ହୋଇ ରହି ପାରନ୍ତି ନାହିଁ । ବିଜୁଳିର ଅନ୍ୟ ନାମ ।

**ଚଣ୍ଡ**—(୧) ବିଖ୍ୟାତ ଶୁମ୍ଭାସୁରର ପ୍ରଧାନ ସେନାପତି । ଏହାର କନିଷ୍ଠ ଭ୍ରାତାର ନାମ ମୁଣ୍ଡ । ଚଣ୍ଡ ଓ ମୁଣ୍ଡ ଉଭୟେ ଭଗବତୀଙ୍କ ହସ୍ତରେ ନିହତ ହୋଇ-ଥିଲେ । ଚଣ୍ଡ ବିନାଶାନ୍ତେ ଭଗବତୀ ଚଣ୍ଡୀ ବା ଚଣ୍ଡିକା ନାମରେ ନାମିତ ହୋଇଥିଲେ । (୨) ଶିବଙ୍କର ଅନୁଚରବିଶେଷ । (୩) ବିଷ୍ଣୁଙ୍କର ପାରିଷଦ । (୪) ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ କଂସାସୁରର ଭାଇ । (୫) ପୁରାଣ ମତରେ ଏ କୁବେରଙ୍କ ଆଠ ପୁଅରୁ ଗୋଟିଏ ପୁଅ । ଏ ଶିବ ପୂଜା ପାଇଁ ନେଉଥିବା ଫୁଲକୁ ବାଟରେ ଶୁଙ୍ଘିବାରୁ ପିତାଙ୍କ ଶାପରେ

କଂହର ଭାଇ ହୋଇ ଜନ୍ମିଥିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ, ଚଣ୍ଡୀପୁରାଣ)

**ଚଣ୍ଡକୌଶିକ**—(୧) ମୁନିବିଶେଷ । (୨) ସଂସ୍କୃତ ନାଟକବିଶେଷ । ଏଥିରେ ବିଶ୍ୱାମିତ୍ର ଓ ହରିଶ୍ଚନ୍ଦ୍ରଙ୍କ ଆଖ୍ୟାୟିକାଟି ନାଟକାକାରରେ ଲିପିବଦ୍ଧ ହୋଇଅଛି । (୩) ଜୈନପୁରାଣବର୍ଣ୍ଣିତ ଏକ ବିଷଧର ସର୍ପ । ଏ ଜୈନଧର୍ମ ପ୍ରବର୍ତ୍ତକ ମହାବୀର ସ୍ୱାମୀଙ୍କୁ ଦର୍ଶନ କରି ହିଂସାବୃତ୍ତି ଛାଡ଼ି ଜୀବମାନଙ୍କୁ ଆଉ ଦଂଶନ କଲା ନାହିଁ ଓ ସବୁବେଳେ ନିଜ ଗାତରେ ପଡ଼ି ରହୁଥାଏ । ତାକୁ ଏପରି ନିଶ୍ଚଳ ଦେଖି ତା ଦେହସାକ ପିମ୍ପୁଡ଼ି ବେଢ଼ିଲେ । ତଥାପି ସେ କଡ଼ ଲେଉଟାଇଲା ନାହିଁ । (ହିନ୍ଦୀ ଶବ୍ଦସାଗର)

**ଚଣ୍ଡନାୟିକା**—ଦୁର୍ଗା, ଚଣ୍ଡୀ । ତାନ୍ତ୍ରିକମାନଙ୍କ ପୂଜିତା ଅଷ୍ଟନାୟିକାମାନଙ୍କ ମଧ୍ୟରୁ ଅନ୍ୟତମ; ଏ ଦୁର୍ଗାଙ୍କ ସଖୀ । (ହିନ୍ଦୀ ଶବ୍ଦସାଗର)

**ଚଣ୍ଡବଳ**—ଶିବଙ୍କର ଜଣେ ଅନୁଚରଙ୍କ ନାମ ଚଣ୍ଡ ଓ ବିଷ୍ଣୁଙ୍କର ଜଣେ ଅନୁଚରଙ୍କ ନାମ ଚଣ୍ଡ । ଶିବ ବା ବିଷ୍ଣୁଙ୍କୁ କୌଣସି ଦ୍ରବ୍ୟ ମନ୍ତ୍ରାଦି ପାଠ ପୂର୍ବକ ନିବେଦିତ ହୋଇ ସାରିଲାକ୍ଷଣି, ନିବେଦିତ ଦ୍ରବ୍ୟର ନିର୍ଦ୍ଦିଷ୍ଟାଂଶ ଉକ୍ତ ଦ୍ରବ୍ୟରୁ ପୃଥକ୍ ହୋଇ କଢ଼ାଯାଏ ଓ ତାହା ପୁଣି ଚଣ୍ଡଙ୍କ ମନ୍ତ୍ରରେ ଉତ୍ସୃଷ୍ଟ ହୁଏ । ଏହାକୁ ଚଣ୍ଡବଳ କହନ୍ତି । ଏହି ଅଂଶ ପୂଜକ ବା ପୂଜାପଣ୍ଡା ନିଜର ପାରିଶ୍ରମିକ ରୂପେ ନିଏ । (ଭାଷାକୋଷ)

**ଚଣ୍ଡୀ**—ଦୁର୍ଗାଙ୍କର ନାମାନ୍ତର । ଶୁମ୍ଭାସୁରର ସେନାନୀ ଚଣ୍ଡ ଓ ମୁଣ୍ଡକୁ ବଧ କରି ଏହି ଦେବୀ ଚଣ୍ଡୀ ନାମରେ ଅଭିହିତ ହୋଇଥିଲେ । ତ୍ରିବିଧ ମୂର୍ତ୍ତିରେ ଚଣ୍ଡୀଙ୍କ ଧ୍ୟାନ ଦୃଷ୍ଟ ହୁଏ—ସାତ୍ତ୍ୱିକ ମୂର୍ତ୍ତି ବା ସରସ୍ୱତୀ ମୂର୍ତ୍ତି, ରାଜସିକ ମୂର୍ତ୍ତି ବା ମହାଲକ୍ଷ୍ମୀ ମୂର୍ତ୍ତି, ତାମସିକ ମୂର୍ତ୍ତି, ବା ଦଶଭୁଜା ଦଶବକ୍ତ୍ରା ମୂର୍ତ୍ତି ।

ଓଡ଼ିଶାରେ ଆଠଗୋଟି ସ୍ଥାନରେ ଚଣ୍ଡୀଙ୍କର ପ୍ରଧାନ ବିଗ୍ରହମାନ ଅଛି । ମଙ୍ଗଳ ଚଣ୍ଡୀଆମାନେ ଏହାଙ୍କର ପ୍ରଶସ୍ତି ଗାଇ ଗ୍ରାମେ ଗ୍ରାମେ ବୁଲି ଭିକ୍ଷା କରନ୍ତି ।

ବାଣପୁରେ ଭଗବତୀ, ଶ୍ରୀକ୍ଷେତ୍ରେ ବିମଳା
କାକଟପୁରେ ରହିଲୁ ନାମ ତୋ ମଙ୍ଗଳା ।

ଝଙ୍କଡ଼େ ଶାରଳା ନାମ ଅଟଇ ତୋହର
ବିରଜାଇ ନାମେ ବିଜେ କରୁ ଯାଜପୁର ।

ବାଙ୍କୀରେ ନାମ ତୋର ଅଟେ ଚର୍ଚ୍ଚିକାଇ
ସମ୍ବଲପୁରେ ନାମ ବହିଲୁ ସମଲଇ ।

ତାଳଚେରେ ହେଙ୍ଗୁଳା ନାମ ତୋର ମାଆ
ଏହିପରି ଖ୍ୟାତ ତୋର ଆଠ ଗୋଟି ନାଆଁ ।

ଏହି ଅଷ୍ଟଚଣ୍ଡୀ ପରମ ବୈଷ୍ଣବୀ ଏବଂ ହାତରେ ଜପମାଳା ଧରିଅଛନ୍ତି ।

ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମାହାତ୍ମ୍ୟକୁ ସଂକ୍ଷେପରେ ଚଣ୍ଡୀ ବୋଲି କୁହାଯାଏ । ଦୁର୍ଗାଙ୍କର ଶୁମ୍ଭ ନିଶୁମ୍ଭ, ମହିଷାସୁର ବଧ, ଚଣ୍ଡମୁଣ୍ଡାଦି ଦାନବ ବଧର ବିବରଣ ବର୍ଣ୍ଣିତ କରାଯାଇଥିବା ଗ୍ରନ୍ଥ ।

**ଚନ୍ଦ୍ର**—ଲକ୍ଷ୍ମୀଙ୍କ ସହୋଦର । ସମୁଦ୍ର ମନ୍ଥନରୁ ଅମୃତ, ପାରିଜାତ, ଲକ୍ଷ୍ମୀ, ଐରାବତ, ଉଚ୍ଚୈଃଶ୍ରବା ସହିତ ଏହାଙ୍କର ଉତ୍ପତ୍ତି ହୋଇଥିଲା । ଏ ଜଣେ ଦେବତା । ଅମୃତପାନ ସମୟରେ ଦେବପଂକ୍ତିରେ ଗୋଟାଏ ଅସୁର ବସିଥିଲା । ଚନ୍ଦ୍ର ଏହା ଦେଖି ବିଷ୍ଣୁଙ୍କୁ ଜଣାଇଦେଲେ । ବିଷ୍ଣୁ ଚକ୍ର ଦ୍ୱାରା ସେହି ଅସୁରର ମସ୍ତକ ଛେଦନ କଲେ । ଏହି କ୍ରୋଧରେ ମସ୍ତକରୂପୀ ରାହୁ ଚନ୍ଦ୍ରଙ୍କୁ ଗ୍ରାସ କରିଥାଏ । ଏହାକୁ ଚନ୍ଦ୍ରଗ୍ରହଣ କହନ୍ତି ।

(ମହାଭାରତ, ଆଦିପର୍ବ)

କାଶୀ ଖଣ୍ଡ ମତରେ ଚନ୍ଦ୍ର ବ୍ରହ୍ମାଙ୍କ ମାନସପୁତ୍ର ଅତ୍ରିମହର୍ଷିଙ୍କ ସନ୍ତାନ । ଏହି ବିଖ୍ୟାତ ମୁନି ତିନି ହଜାର ଦିବ୍ୟବର୍ଷର ତପସ୍ୟା କରିଥିଲେ । ସେ ସମୟରେ ତାଙ୍କ ରେତଃ ସୋମରୂପେ ପରିଣତ ହୋଇଥିଲା । ବ୍ରହ୍ମା ଏହି ସୋମକୁ ନେଇ ରଥରେ ସ୍ଥାପନ କଲେ । ସୋମ ସେହି ରଥରେ ବସି ୨୧ ବାର ପୃଥିବୀ ପ୍ରଦକ୍ଷିଣ କରିଥିଲେ । ଏହି ଭ୍ରମଣ ସମୟରେ ଅନେକ ରେତଃ ସ୍ଖଳିତ ହୋଇ ପୃଥିବୀରେ ବିନ୍ଦୁ ହୋଇ ପଡ଼ିଗଲା । ସେହିଗୁଡ଼ିକ ନାନାବିଧ ଔଷଧି ଲତାରୂପେ ଜାତ ହୋଇଥିଲା । ଚନ୍ଦ୍ର ମହାଦେବଙ୍କ କୃପାରୁ ଚନ୍ଦ୍ରଲୋକରେ ରାଜତ୍ୱ କଲେ । ଦକ୍ଷଙ୍କ ସତେଇଶି ଗୋଟି କନ୍ୟା ବା ସତେଇଶି ନକ୍ଷତ୍ର ଏହାଙ୍କର ପତ୍ନୀ । ସେଗୁଡ଼ିକର ନାମ—ଅଶ୍ୱିନୀ, ଭରଣୀ, କୃତ୍ତିକା, ରୋହିଣୀ, ମୃଗଶିରା, ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା, ମଘା, ପୂର୍ବାଫାଲଗୁନୀ, ଉତ୍ତରା ଫାଲଗୁନୀ, ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା, ଅନୁରାଧା, ଜ୍ୟେଷ୍ଠା, ମୂଳା, ପୂର୍ବାଷାଢ଼ା, ଉତ୍ତରାଷାଢ଼ା, ଶ୍ରବଣା. ଧନିଷ୍ଠା, ଶତଭିଷା; ପୂର୍ବଭାଦ୍ରପଦା, ଉତ୍ତରଭାଦ୍ରପଦା, ରେବତୀ । ଚନ୍ଦ୍ର ଏ ସମସ୍ତଙ୍କ ଅପେକ୍ଷା ରୋହିଣୀଙ୍କ ପ୍ରତି

ବିଶେଷ ଆସକ୍ତ ଥିଲେ । ତେଣୁ ରୋହିଣୀ ତାଙ୍କର ପାଟରାଣୀ ବୋଲି ଏକ ପ୍ରଶସ୍ତି ରହିଛି । ପ୍ରମାଣ ଯଥା—ଏଥିଲାଗି ଅନ୍ୟ ସ୍ତ୍ରୀମାନେ ଚନ୍ଦ୍ରଙ୍କୁ ଭର୍ତ୍ସନା କରିଥିଲେ । ଏଥିରେ ଚନ୍ଦ୍ର ନିରୁଦ୍ଧ ହୋଇ ଯେଉଁମାନେ ଏ ଗୃହ ବିବାଦରେ ନେତୃତ୍ୱ ନେଇଥିଲେ ଅର୍ଥାତ୍ ଭରଣୀ, କୃତ୍ତିକା, ଆର୍ଦ୍ରା, ଅଶ୍ଳେଷା, ମଘା, ଉତ୍ତରଫାଲ୍‌ଗୁନୀ, ବିଶାଖା, ଉତ୍ତରାଷାଢ଼ା ଓ ଉତ୍ତରାଭାଦ୍ରପଦା ଏହି ନଅ ସ୍ତ୍ରୀଙ୍କୁ ଅଭିଶାପ ଦେଲେ ଯେ ତୁମେମାନେ ମୋର ପତ୍ନୀ ହୋଇ ମୋ ପ୍ରତି ଯେପରି ଉଗ୍ରଭାବ ଦେଖାଇଲ ତାହା କଦାପି କ୍ଷମଣୀୟ ନୁହେଁ । ଏଥିଲାଗି ତୁମେମାନେ ଉଗ୍ର ବୋଲି ଖ୍ୟାତ ହେବ ଏବଂ ତୁମ୍ଭମାନଙ୍କ ଯୋଗ୍ୟଦିବସ ଯାତ୍ରାପକ୍ଷେ ଅନୁପଯୁକ୍ତ ହେବ । ଏମାନେ ପତିଙ୍କ ଅଭିଶାପ ପାଇ ପିତୃ ଗୃହକୁ ଗଲେ ଏବଂ ପିତା ଦକ୍ଷଙ୍କୁ ଏ ସକଳ ବୃତ୍ତାନ୍ତ ଜଣାଇଲେ । ଦକ୍ଷ ଚନ୍ଦ୍ରଙ୍କ ନିକଟକୁ ଯାଇ ତାଙ୍କୁ ଉପଦେଶ ଦେଲେ ଯେ ପତି ଭାବରେ ସେ ସମସ୍ତଙ୍କ ପ୍ରତି ସମ ବ୍ୟବହାର କରିବା ଉଚିତ । ଚନ୍ଦ୍ର ମଧ୍ୟ ଶ୍ୱଶୁରଙ୍କଠାରେ ଭକ୍ତି ଓ ଭୟ ରଖି ଏଥିରେ ସମ୍ମତ ହେଲେ ମାତ୍ର ନିଜର ପ୍ରତିଜ୍ଞା ରକ୍ଷା କରି ପାରିଲେ ନାହିଁ । ତେଣୁ ଭରଣ୍ୟାଦି ନବନକ୍ଷତ୍ର ପୁଣି ପିତୃ ଗୃହକୁ ଗଲେ ଏବଂ ଆଉ ସ୍ୱାମୀଙ୍କ ପାଖରେ ନ ରହି ଏଣିକି ତପସ୍ୱିନୀ ପରି ବନବାସିନୀ ହେବାକୁ ପିତାଙ୍କ ସମ୍ମତି ଚାହିଁଲେ । ଦକ୍ଷ କ୍ରୁଦ୍ଧହୋଇ ଶାପ ଦେଲେ ଚନ୍ଦ୍ରଙ୍କୁ । ସେହି ଶାପରେ ଚନ୍ଦ୍ରଙ୍କ ନାସିକାର ଅଗ୍ରଭାଗରୁ ରମଣୀ ସମ୍ଭୋଗ ଲୋଲୁପ ଯକ୍ଷ୍ମା ରୋଗର ଉତ୍ପତ୍ତି ହେଲା । ଚନ୍ଦ୍ର ହତଶ୍ରୀ ହୋଇ ବସିଲେ । ସେହି ଦିନଠାରୁ ସେ ପକ୍ଷେ ଛିଡ଼ିଲେ ଓ ପକ୍ଷେ ବଢ଼ିଲେ । (କାଳିକାପୁରାଣ)

ଚନ୍ଦ୍ର ପାଠ ପଢ଼ୁଥିବାବେଳେ ଦେବଗୁରୁ ବୃହସ୍ପତିଙ୍କ ପତ୍ନୀ ତାରାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ହରଣ କଲେ । ବୃହସ୍ପତି ଚନ୍ଦ୍ରଙ୍କ ବିରୁଦ୍ଧରେ ଦେବତାମାନଙ୍କୁ ଅଭିଯୋଗ ଜଣାଇଲେ ମଧ୍ୟ ଚନ୍ଦ୍ର ତାହା ଗ୍ରହଣ କଲେ ନାହିଁ କି ତାରାଙ୍କୁ ଫେରାଇଲେ ନାହିଁ । ତେଣୁ ଶୁକ୍ରାଚାର୍ଯ୍ୟ ଓ ମହାଦେବ ଚନ୍ଦ୍ରଙ୍କ ସହିତ ଯୁଦ୍ଧ ଆରମ୍ଭ କଲେ । ବ୍ରହ୍ମା ଏଥିରେ ମଧ୍ୟସ୍ଥ ହୋଇ ଚନ୍ଦ୍ରଙ୍କଠାରୁ ତାରାଙ୍କୁ ନେଇ ଆସି ବୃହସ୍ପତିଙ୍କୁ ଦେଲେ । ମାତ୍ର ସେତେବେଳେ ସସତ୍ତ୍ୱା ତାରାଙ୍କଠାରୁ ଏକ ପୁତ୍ର ଜନ୍ମ ହେଲା । ତାରାଙ୍କ କହିବା ଅନୁସାରେ ସେ ପୁତ୍ରର ଅଧିକାରୀ ହେଲେ ଚନ୍ଦ୍ର । ଏହାଙ୍କ ନାମ ବୁଧ । ଏହି ପାପଯୋଗେ ଚନ୍ଦ୍ରଙ୍କୁ ଯକ୍ଷ୍ମାରୋଗ ହେଲା । ସେ ପିତା ଅତ୍ରିଙ୍କ ଶରଣାପନ୍ନ ହେଲେ । ଅତ୍ରି ତାଙ୍କୁ ଶାପମୁକ୍ତ କଲେ । ଚନ୍ଦ୍ର ପୁନର୍ବାର ଦୀପ୍ତିଶୀଳ ହୋଇଉଠିଲେ ।

କାମଶାସ୍ତ୍ରରେ ଅଛି ସ୍ତ୍ରୀମାନଙ୍କ ଭିନ୍ନ ଭିନ୍ନ ଅଙ୍ଗରେ ଭିନ୍ନ ଭିନ୍ନ ତିଥିରେ ଥିବା କାମୋଦ୍ଦୀପକ କେନ୍ଦ୍ରକୁ ଚନ୍ଦ୍ର ବୋଲାଯାଏ । ସେହି ତିଥିରେ ସ୍ତ୍ରୀମାନଙ୍କର ସେହି ସେହି ଅଙ୍ଗମାନଙ୍କୁ କୁରୁ କୁରୁ କଲେ ସ୍ତ୍ରୀମାନେ ରମଣ କାଳରେ କାମୋନ୍ମତ୍ତା ହୁଅନ୍ତି । (ଭାଷାକୋଷ)

**ଚନ୍ଦ୍ରକଳା**—ଚନ୍ଦ୍ରମଣ୍ଡଳରେ ଦେଖାଯିବା କଳଙ୍କର ନାମ ! ଏହା ପୂର୍ଣ୍ଣଚନ୍ଦ୍ରର ୧/୧୬ ଅଂଶ ଅର୍ଥାତ୍ ଚନ୍ଦ୍ରମଣ୍ଡଳର ଷୋହଳ ଭାଗରୁ ଭାଗେ । ସେହି ଷୋଡ଼ଶ କଳାର ନାମ । ଯଥା—ପୂଷା, ଯଶା, ସୁମନସା, ରତି, ପ୍ରାପ୍ତି. ଧୃତି, ଋଦ୍ଧି, ସୌମ୍ୟା, ମରୀଚି, ଅଂଶୁମାଳିନୀ, ଅଙ୍ଗିରା, ଶଶିନୀ, ଛାୟା, ସମ୍ପୂର୍ଣ୍ଣମଣ୍ଡଳା, ତୁଷ୍ଟି ଓ ଅମୃତା । (ଭାଷାକୋଷ)

**ଚନ୍ଦ୍ରକାନ୍ତ**—ମଣି ବିଶେଷ । ଏହା ଚନ୍ଦ୍ର କିରଣ ସ୍ପର୍ଶରେ ଦ୍ରବୀଭୂତ ହୋଇଯାଏ ।

**ଚନ୍ଦ୍ରକେତୁ**—ଲକ୍ଷ୍ମଣଙ୍କ ପୁତ୍ର । ରାମଚନ୍ଦ୍ର ଏହାଙ୍କୁ କାରପଥ ନାମକ ସ୍ଥାନରେ ରାଜା କରିଥିଲେ ।

**ଚନ୍ଦ୍ରଦ୍ୱୀପ**—ହିନ୍ଦୁ ଶାସ୍ତ୍ରୋକ୍ତ ଏକାଦଶ ଦ୍ୱୀପ ମଧ୍ୟରୁ ଏକତମ ।

**ଚନ୍ଦ୍ରନେତ୍ର**—ରାମାୟଣୋକ୍ତ ରାକ୍ଷସ ବିଶେଷ ।

**ଚନ୍ଦ୍ରବଂଶ**—ଚନ୍ଦ୍ରଙ୍କଠାରୁ ଉତ୍ପନ୍ନ ରାଜବଂଶ । ଏହା ଭାରତର ଏକ ପ୍ରାଚୀନ ରାଜବଂଶ । ଅତ୍ରିଙ୍କ ପୁଅ ଚନ୍ଦ୍ର । ଚନ୍ଦ୍ରଙ୍କ ପୁତ୍ର ବୁଧ । ସୂର୍ଯ୍ୟବଂଶୀୟ ରାଜକନ୍ୟା ଇଳାଙ୍କୁ ବୁଧ ବିବାହ କରିଥିଲେ । ଇଳାଙ୍କ ଗର୍ଭରୁ ଐଳ ବା ପୁରୁରବା ଜନ୍ମିଥିଲେ । ପୁରୁରବାଙ୍କ ଔରସରେ ଉର୍ବଶୀଙ୍କ ଗର୍ଭରୁ ଆୟୁଃ ନାମକ ପୁତ୍ର ହେଲେ । ଆୟୁଃଙ୍କ ପୁଅ ନହୁଷ । ନହୁଷଙ୍କ ପୁଅ ଯଯାତି ! ଯଯାତିଙ୍କର ଦୁଇ ପୁଅ ପୁରୁ ଓ ଯଦୁ । ଏ ଦୁହିଙ୍କଠାରୁ ଚନ୍ଦ୍ରବଂଶର ଦୁଇଟି ଶାଖା । ଯଦୁବଂଶରେ କୃଷ୍ଣ ଓ ବଳରାମ । ପୁରୁବଂଶରେ ଦୁଷ୍ୟନ୍ତ ବା ଦୁଷ୍ମନ୍ତ ଜନ୍ମିଥିଲେ । ଦୁଷ୍ୟନ୍ତଙ୍କ ପୁତ୍ର ଭରତ । ଭରତଙ୍କ ନବମବଂଶଧର କୁରୁ ଏବଂ ଚତୁର୍ଦ୍ଦଶବଂଶଧର ଶାନ୍ତନୁ । ଶାନ୍ତନୁଙ୍କ ବିବାହିତା ଭାର୍ଯ୍ୟାଙ୍କ ଗର୍ଭଜାତ ପୁତ୍ର ଭୀଷ୍ମ, ଚିତ୍ରାଙ୍ଗଦ, ବିଚିତ୍ରବୀର୍ଯ୍ୟ ଓ ଦାସୀ ସତ୍ୟବତୀଙ୍କ କାନୀନପୁତ୍ର ବ୍ୟାସ । ଭୀଷ୍ମ ଚିରକୁମାର ଥିଲେ । ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଅପୁତ୍ରିକ ହୋଇ ମରିବାରୁ ନିଯୋଗ ବିଧି ଦ୍ୱାରା ସେମାନଙ୍କ ବିଧବା ସ୍ତ୍ରୀଙ୍କ ଗର୍ଭରେ ବ୍ୟାସଦେବ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କୁ ଉତ୍ପାଦିତ କଲେ ।

ଧୃତରାଷ୍ଟ୍ର ଜ୍ୟେଷ୍ଠ ହେଲେ ଜନ୍ମାନ୍ଧ ଥିବାରୁ ପାଣ୍ଡୁ ରାଜ୍ୟ ପାଇଲେ । ପାଣ୍ଡୁଙ୍କ ଅନ୍ତେ ପାଣ୍ଡୁଙ୍କ ପାଞ୍ଚ ପୁତ୍ର ରାଜ୍ୟରେ ଅଧିକାରୀ ହେବାରୁ ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନାଦି ଶତ ପୁତ୍ର ରାଜ୍ୟ ଦାବୀ କଲେ ଓ ମହାଭାରତ ଯୁଦ୍ଧର ସୂତ୍ରପାତ ହେଲା । ଚନ୍ଦ୍ରବଂଶ ପରି ସୂର୍ଯ୍ୟବଂଶ ମଧ୍ୟ ଭାରତର ଏକ ପ୍ରାଚୀନ ରାଜବଂଶ । ରାମଚନ୍ଦ୍ର ସୂର୍ଯ୍ୟବଂଶୀୟ । (ଭାଷାକୋଷ)

**ଚନ୍ଦ୍ରଭାଗ**—ହିମାଳୟର ଶୃଙ୍ଗବିଶେଷ । ପୁରାଣରେ ଅଛି ଯେ ଏହିଠାରେ ବ୍ରହ୍ମା ଚନ୍ଦ୍ରଙ୍କର ହ୍ରାସ ବୃଦ୍ଧି ଭାଗ ନିରୂପଣ କରିଥିଲେ । (ଭାଷାକୋଷ)

**ଚନ୍ଦ୍ରଭାଗା**—ସିନ୍ଧୁ ନଦୀର ଉପନଦୀବିଶେଷ । ଏହାର ବର୍ତ୍ତମାନ ନାମ ଚେନାବ୍ । ଓଡ଼ିଶାର ପୁରୀଜିଲ୍ଲା ସମୁଦ୍ର ଉପକୂଳସ୍ଥ କୋଣାର୍କ ନିକଟବର୍ତ୍ତୀ ଲୁପ୍ତ ନଦୀ । ଏହିଠାରେ ମାଘ ଶୁକ୍ଳ ସପ୍ତମୀକୁ ସ୍ନାନଯୋଗ ପଡ଼ିବାରୁ ବହୁ ସହସ୍ର ଯାତ୍ରୀ ଅରୁଣୋଦୟ ସମୟରେ ବୁଡ଼ ଦିଅନ୍ତି । ପୂର୍ବେ ଏହା ଗୋଟିଏ ପ୍ରଧାନ ବାଣିଜ୍ୟକେନ୍ଦ୍ର ଓ ବନ୍ଦର ଥିଲା । (ଭାଷାକୋଷ)

**ଚନ୍ଦ୍ରସେଣା**—ଶ୍ରୀରାଧାଙ୍କ ସ୍ୱାମୀ । ରାମାୟଣରୁ ଜଣାଯାଏ ମହାବୀର ହନୁମାନ୍ ଚନ୍ଦ୍ରସେଣାରୂପେ ଜନ୍ମିଥିଲେ ।

**ଚନ୍ଦ୍ରସେନ**—(୧) ପ୍ରାଚୀନ ଭାରତର ଜଣେ ପ୍ରବଳ ପରାକ୍ରାନ୍ତ ରାଜା । ସମୁଦ୍ରସେନ ଏହାଙ୍କର ପିତା । ଏ କୁରୁକ୍ଷେତ୍ର ଯୁଦ୍ଧରେ ପାଣ୍ଡବ ପକ୍ଷରେ ଥିଲେ । ଅଶ୍ୱତ୍ଥାମା ଏହାଙ୍କୁ ନିହତ କଲେ । (ମହାଭାରତ)

(୨) କ୍ଷତ୍ରୀୟକୁଳାନ୍ତକ ପରଶୁରାମ ଏହାଙ୍କୁ ବଧ କଲେ । ଏହାଙ୍କ ଗର୍ଭବତୀ ମହିଷୀ ଦାଲଭ୍ୟ ମହର୍ଷିଙ୍କ ଆଶ୍ରମରେ ପ୍ରାଣ ରକ୍ଷା କରିଥିଲେ । ଏ ରାଣୀଙ୍କ ସନ୍ତାନଙ୍କଠାରୁ ଚନ୍ଦ୍ରସେନୀ କାୟସ୍ଥ ବଂଶର ଉତ୍ପତ୍ତି ହେଲା ।

**ଚନ୍ଦ୍ରହାସ**— (୧)କନୈକ ରାଜପୁତ୍ର ।

(୨) ରାବଣର ଖଡ୍‌ଗର ନାମ ।

**ଚନ୍ଦ୍ରାପୀଡ**—(୧) ବାଣଭଟ୍ଟ ପ୍ରଣୀତ କାଦମ୍ବରୀ ବର୍ଣ୍ଣିତ ତାରାପୀଡ଼ଙ୍କ ପୁତ୍ର ।

(୨) ରାଜା ଜନ୍ମେଜୟଙ୍କ ପୁତ୍ରର ନାମ (ମହାଭାରତ) ।

(୩) ରାଜତରଙ୍ଗିଣୀ ମତେ ତାରାପୀଡ଼ଙ୍କ ଭାଇ, କାଶ୍ମୀରର ଜଣେ ରାଜା ।

(୪) କଥା ସରିତ୍‌ସାଗରବର୍ଣ୍ଣିତ କାନ୍ୟକୁବ୍‌ଜର ରାଜପୁତ୍ରବିଶେଷ ।

**ଚନ୍ଦ୍ରାବଳୀ**—ଚନ୍ଦ୍ରଭାନୁଙ୍କ କନ୍ୟା । ଚନ୍ଦ୍ରଭାନୁ ଶ୍ରୀରାଧାଙ୍କର ଜ୍ୟେଷ୍ଠ ତାତ । ଶ୍ରୀରାଧାଙ୍କ ପିତା ବୃଷଭାନୁ । ଚନ୍ଦ୍ରାବଳୀ ଗୋବର୍ଦ୍ଧନ ମଲ୍ଲଙ୍କୁ ବିବାହ କରିଥିଲେ । ଶ୍ରୀରାଧାଙ୍କ ଭଳି ଚନ୍ଦ୍ରାବଳୀ ଅତ୍ୟନ୍ତ କୃଷ୍ଣ ପ୍ରେମାନୁରାଗିଣୀ ଥିଲେ । ଚନ୍ଦ୍ରାବଳୀ କରଲା ନାମକ ଗ୍ରାମରେ ସ୍ୱାମୀଙ୍କ ଗୃହରେ ଥିଲେ (ବୃନ୍ଦାବନଲୀଳା) । କୌଣସି କୌଣସି ବୈଷ୍ଣବ କବି ଏହାଙ୍କୁ ଶ୍ରୀରାଧା ବୋଲି କହନ୍ତି । କିନ୍ତୁ ଏ ରାଧାଙ୍କ ସଖୀ, ଚନ୍ଦ୍ରଭାନୁଙ୍କ କନ୍ୟା । ଏହାଙ୍କ ମାତାଙ୍କ ନାମ ଇନ୍ଦୁମତୀ । (ଭାଷାକୋଷ)

**ଚମ୍ପାରଣ୍ୟ**—ଆଧୁନିକ ଚମ୍ପାରଣ ଜିଲାର ପ୍ରାଚୀନ ନାମ । ଏହା ବର୍ତ୍ତମାନ ବିହାରର ଉତ୍ତର ବିଭାଗର ଏକ ଜିଲ୍ଲା । ମୋତିହାରୀ ଏହାର ରାଜଧାନୀ । ଏହା ନେପାଳର ଦକ୍ଷିଣରେ ।

**ଚମ୍ପାବତୀ**— ଅଙ୍ଗାଧିପତି କର୍ଣ୍ଣଙ୍କ ରାଜଧାନୀର ନାମ ।

**ଚରକ**—ବିଖ୍ୟାତ ବୈଦ୍ୟକଗ୍ରନ୍ଥ ଚରକ ସଂହିତାର ପ୍ରଣେତା । ଅନନ୍ତଦେବ ଚରରୂପେ ଅର୍ଥାତ୍ ଗୁପ୍ତ ବେଶରେ ପୃଥିବୀରେ ଅବତୀର୍ଣ୍ଣ ହୋଇ ଦେଖିଲେ ଯେ, ମାନବମଣ୍ଡଳୀ ନାନା ପ୍ରକାର ବ୍ୟାଧିରେ ଆକ୍ରାନ୍ତ ହୋଇ ଯନ୍ତ୍ରଣା ଭୋଗ କରୁଛନ୍ତି । ମାନବଙ୍କର ଏହି ଦୁର୍ଦ୍ଦଶା ଅବଲୋକନ କରି ତାହାଙ୍କ ହୃଦୟ ଦୟାରେ ବିଗଳିତ ହୋଇଗଲା । ସେ ଷଡ଼ଙ୍ଗ ବେଦବିତ୍ ଋଷିରୂପେ ପୃଥିବୀରେ ଜନ୍ମଗ୍ରହଣ କଲେ ଏବଂ ମାନବ ବ୍ୟାଧିଜନିତ ଦୁଃଖ ଦୂର କରିବା ପାଇଁ ବିଧିପରିକର ହେଲେ । ଚରରୂପେ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ ବୋଲି ଅନନ୍ତଦେବଙ୍କ ନାମ ହେଲା ଚରକ । ଅତ୍ରିଙ୍କ ପୁତ୍ର ଭରଦ୍ୱାଜ ମହର୍ଷିଙ୍କଠାରୁ ଏ ଆୟୁର୍ବେଦ ଶିକ୍ଷା କରିଥିଲେ ।

(୨) ଚରକ ସଂହିତା ସଂକଳୟିତା ଆଗ୍ନେୟ ବା ଋଷିବିଶେଷ । ଚରକ ସଂହିତା ଦ୍ୱାପର ଯୁଗରେ ରଚିତ ହୋଇଥିବାର କଥିତ । କଥିତ ଅଛି ଚରକ ଋଷି ବ୍ରହ୍ମା, ଧନ୍ୱନ୍ତରୀ, ଇନ୍ଦ୍ର, ଅଶ୍ୱିନୀ କୁମାର ଦ୍ୱୟ, ଭରଦ୍ୱାଜ, ଆତ୍ରେୟ ଓ ଅଗ୍ନିବେଶ୍ୟ ଆଦିଙ୍କ ନିକଟରେ ବୈଦିକ ଶାସ୍ତ୍ରମାନ ଅଧ୍ୟୟନ କରିଥିଲେ । ଇଉରୋପୀୟମାନେ ଚରକ ସଂହିତାର ଅନୁବାଦ ଦେଖି ବିସ୍ମିତ ହୋଇ-

ଅଛନ୍ତି । ଚରକ ମାଦକଦ୍ରବ୍ୟ ଓ ମଦ୍ୟର ଖୁବ୍ ପ୍ରଶଂସା କରିଅଛନ୍ତି । ଏ ଚିକିତ୍ସା ପାଇଁ ପ୍ରୟୋଜନ, ପରନ୍ତୁ ଯାଗଯଜ୍ଞ, ଧ୍ୟାନ, ଧାରଣା ଆଦି ପାଇଁ ମଧ୍ୟ ଅତ୍ୟାବଶ୍ୟକ ବୋଲି ସେ ପ୍ରକାଶ କରିଅଛନ୍ତି । (ସୁବଲଚନ୍ଦ୍ର-ବଙ୍ଗଳା ଅଭିଧାନ) ଚରକ ସଂହିତାରେ ଯଥାକ୍ରମେ ସୂତ୍ର, ଶରୀର ସ୍ଥାନ, ଐନ୍ଦ୍ରିୟ, ଚିକିତ୍ସା, ନିଦାନ, ବିମାନ, ବିକଳ୍ପ ଓ ସିଦ୍ଧି ଏହି ଆଠଗୋଟି ବିଷୟ ବା ସ୍ଥାନ ଅଛି । (ଜ୍ଞାନେନ୍ଦ୍ର-ବଙ୍ଗଳା ଅଭିଧାନ)

**ଚର୍ଚ୍ଚିକା**—ବାର୍ଦ୍ଧିରେ ପୂଜିତା ଦୁର୍ଗାମୂର୍ତ୍ତି । ଏହାଙ୍କ ନାମ ଚର୍ଚ୍ଚିକେଶ୍ୱରୀ ଲୁହେଁ । ପରଶୁରାମାଶ୍ରମ ବା ଲୁଚକ ପର୍ବତରେ ଏହାଙ୍କ ମନ୍ଦିର ଅବସ୍ଥିତ । ଏହି ପର୍ବତ ତଳେ ରେଣୁକା ନାମ୍ନୀ ନଦୀ ବହିଯାଉଥିଲା । ପରଶୁରାମ ସଂହିତାରେ ଉକ୍ତ ଅଛି ଯେ ପରଶୁରାମଙ୍କ ପିତା ଜମଦଗ୍ନିଙ୍କ ତର୍ପଣ ଜଳରୁ ଏ ନଦୀର ଉତ୍ପତ୍ତି । ସେ ଅତି ସ୍ନେହରେ ନିଜ ପତ୍ନୀଙ୍କ ନାମାନୁସାରେ ଏ ନଦୀର ନାମ ରେଣୁକା ଦେଇଥିଲେ । ଏବେ ମଧ୍ୟ ଚର୍ଚ୍ଚିକା ମନ୍ଦିରର ପାଦଦେଶରେ ପରଶୁରାମଙ୍କ ପାଦପଦ୍ମ ପୂଜିତ ହେଉଛି । ଓଡ଼ିଶାରେ ପୂଜିତ ହେଉଥିବା ଅଷ୍ଟଚଣ୍ଡୀଙ୍କ ମଧ୍ୟରୁ ଚର୍ଚ୍ଚିକା ଅନ୍ୟତମ । ସପ୍ତଶତୀରେ ଦୁର୍ଗା କବଚରେ ଏହାଙ୍କ ନାମ ଅଛି । ପ୍ରମାଣ ଯଥା—'ଉଦରେଷ୍ଟେ ତୁ ଚର୍ଚ୍ଚିକା' ।

**ଚର୍ମଣ୍ୱତୀ**—ମହାଭାରତୋକ୍ତ ହିନ୍ଦୁମାନଙ୍କର ତୀର୍ଥବିଶେଷ । ଏହା ଏକ ନଦୀ । ଏହାର ଆଧୁନିକ ନାମ ଚମ୍ବଲ । ଭାରତର ଉତ୍ତର-ପଶ୍ଚିମସ୍ଥ ବୁନ୍ଦେଲଖଣ୍ଡରେ ଏ ନଦୀ ପ୍ରବାହିତା । କୃଷ୍ଣସିଂହ କହନ୍ତି—

> ଚର୍ମଣ୍ୱତୀ ନଦୀରେ ଦେହ ଚର୍ମ ଧୋଇ
> ଯେ ଅଛି ତାର ପରି ଭାଗ୍ୟବନ୍ତ ନାହିଁ ।
> (ମହାଭାରତ-ବନପର୍ବ)

ଏହା ମଧ୍ୟଭାରତର ବିନ୍ଧ୍ୟ ପର୍ବତରୁ ବାହାରି ଉତ୍ତର-ପୂର୍ବ ମୁଖ ହୋଇ ଯମୁନାରେ ପଡ଼ିଛି । ଶିପ୍ରା ନଦୀ ଏହାର ଗୋଟିଏ ଶାଖା । ପୂର୍ବକାଳରେ ରାଜା ରନ୍ତିଦେବ ଅସଂଖ୍ୟ ବୃଷ ବଧ କରାଇ ବ୍ରାହ୍ମଣ ଭୋଜନ କରାଉଥିଲେ । ଏହି ନିହତ ପଶୁମାନଙ୍କ ରକ୍ତସ୍ରୋତରୁ ଏ ନଦୀ ଉତ୍ପନ୍ନ ହେବା କଥା ପୁରାଣରେ ଅନୁସନ୍ଧେୟ ।

**ଚାନ୍ଦ୍ରାୟଣ**—ହିନ୍ଦୁ ଜାତିର କଠୋର ବ୍ରତବିଶେଷ । ଏହି ବ୍ରତ କଲେ ଲୋକ ମୃତ୍ୟୁ ପରେ ଚନ୍ଦ୍ରଲୋକକୁ ଯାଏ ବୋଲି ବିଶ୍ୱାସ । ଏ ବ୍ରତରେ ଶୁକ୍ଳ ପ୍ରତିପଦ୍-

ଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ପ୍ରତିଦିନ ଆପଣାର ସାଧାରଣ ଭୋଜନର ପରମାଣରୁ ପନ୍ଦର ଭାଗରୁ ଏକ ଭାଗ ଲେଖାଏଁ କମାଇବାକୁ ହୁଏ ଏବଂ କୃଷ୍ଣ ପକ୍ଷ ପ୍ରତିପଦ୍‌ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରତ୍ୟହ ସେହିପରି ଭାଗେ ଲେଖାଏଁ ଭୋଜନର ମାତ୍ରା ବଢ଼ାଇ ଶେଷରେ ପୂର୍ଣ୍ଣିମା ଦିନ ଭୋଜନ କରିବାକୁ ହୁଏ । ଏହିପରି ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ବ୍ରତ ଓ ପ୍ରାୟଶ୍ଚିତ୍ତ ବିଧାନ ଶାସ୍ତ୍ରସମ୍ମତ ।

(ଭାଷାକୋଷ)

**ଚାମୁଣ୍ଡା**—ଶକ୍ତିର ମୂର୍ତ୍ତିବିଶେଷ । ଶୁମ୍ଭ ନିଶୁମ୍ଭଙ୍କ ସେନାପତି ଚଣ୍ଡ ଓ ମୁଣ୍ଡକୁ ବଧକରି ଏ ଚାମୁଣ୍ଡା ନାମରେ ଖ୍ୟାତ ହୋଇଥିଲେ । ପ୍ରମାଣ ଯଥା—

ଯସ୍ମାଚ୍ଚଣ୍ଡଞ୍ଚ ମୁଣ୍ଡଞ୍ଚ ଗୃହୀତ୍ୱା ତ୍ୱମୁପାଗତା ।
ଚାମୁଣ୍ଡେତି ତତୋଲୋକେ ଖ୍ୟାତା ଦେବି ଭବିଷ୍ୟସି ।

(ଚଣ୍ଡୀପୁରାଣ)

ଯେତେବେଳେ ଦୈତ୍ୟରାଜ ଶୁମ୍ଭର ସେନାପତିମାନଙ୍କ ସହିତ ଚଣ୍ଡିକାଙ୍କର ଯୁଦ୍ଧ ଆରମ୍ଭ ହେଲା, ସେତେବେଳେ ଦେବତାମାନେ ସ୍ୱ ସ୍ୱ ଶକ୍ତିରୁ ରମଣୀମୂର୍ତ୍ତି ନିର୍ମାଣ କରି ସେମାନଙ୍କୁ ଯଥାଯୋଗ୍ୟ ବାହନ ଓ ଅସ୍ତ୍ର ଶସ୍ତ୍ର ଦେଇ ଯୁଦ୍ଧକୁ ପଠାଇଦେଲେ । ବ୍ରହ୍ମା, ମହେଶ୍ୱର, କାର୍ତ୍ତିକେୟ, ବିଷ୍ଣୁ, ଇନ୍ଦ୍ର ଏହି ପାଞ୍ଚଦେବତାଙ୍କଠାରୁ କ୍ରମେ ବ୍ରାହ୍ମଣୀ, ମାହେଶ୍ୱରୀ, କୌମାରୀ, ବାରାହୀ ଓ ଇନ୍ଦ୍ରାଣୀ ବା ଐନ୍ଦ୍ରୀ ସୃଷ୍ଟି ହେଲେ । ଏମାନେ ମାତୃକା ନାମରେ ପରିଚିତ । ଚାମୁଣ୍ଡାଙ୍କ ଯୋଗିନୀ ସଂଖ୍ୟା ଆଠ । ଯଥା—ତ୍ରିପୁରା, ଭୀଷଣା, ଚଣ୍ଡୀ, କର୍ତ୍ତ୍ରୀ, ହନ୍ତ୍ରୀ, ବିଧାତୃକା, କରାଳା ଓ ଶୂଳିନୀ ।

**ଚାର୍ବାକ**—ନାସ୍ତିକମତ ପ୍ରବର୍ତ୍ତକ ଋଷିବିଶେଷ । କେହି କେହି କହନ୍ତି ଦେବଗୁରୁ ବୃହସ୍ପତିଙ୍କଠାରୁ ଏ ଅଭିନ୍ନ । ଆଉ କିଏ ବା କହେ ଏ ବୃହସ୍ପତିଙ୍କ ଶିଷ୍ୟ । କିଏ କିଏ ମଧ୍ୟ କହନ୍ତି ଚାର୍ବାକ ବୋଲି କେହି ବ୍ୟକ୍ତି ନାହାନ୍ତି । ଏହା ସାଂଖ୍ୟ ବେଦାନ୍ତାଦି ଭଳି ଏକ ଦାର୍ଶନିକବାଦ ମାତ୍ର । ଚାର୍ବାକ ମତରେ ସ୍ୱର୍ଗ, ଅପବର୍ଗ ବା ମୁକ୍ତି, ଈଶ୍ୱର ଓ ଦେହାତିରିକ୍ତ ଆତ୍ମାର ଅସ୍ତିତ୍ୱ ନାହିଁ ।

ଚାର୍ବାକ ଦର୍ଶନର ଅନ୍ୟନାମ ଲୋକାୟତ ଦର୍ଶନ । ଯେହେତୁ ଇହ-ଲୋକହିଁ ଏହି ଦର୍ଶନର ସର୍ବସ୍ୱ, ଏହି ଦର୍ଶନ ପରଲୋକ ସ୍ୱୀକାର କରେନାହିଁ । ଚାର୍ବାକ କହେ ପରଲୋକ ଏକ ଅସମ୍ଭବ କଥା । ଯେପରି ମଦ ନିଶାରୁ ବା

ମଦ ଉତ୍ପାଦକ ଦ୍ରବ୍ୟଗୁଡ଼ିକର ମିଳନରେ ମାଦକତା ଶକ୍ତି ଜାତ ହୁଏ, ସେହିପରି କ୍ଷିତି, ଅପ୍, ତେଜ ଓ ମରୁତ୍ ଏହି ଚାରିଭୂତର ସଂଯୋଗରେ ଚୈତନ୍ୟର ଉତ୍ପତ୍ତି ହୁଏ । ସୁତରାଂ ମୃତ୍ୟୁ ସମୟରେ ଯେତେବେଳେ ଉକ୍ତ ଚାରି ଭୂତର ବିୟୋଗ ହେବ, ତେବେ ଚୈତନ୍ୟ ଲୁପ୍ତ ହୋଇଯିବ । ଚାର୍ବାକ କହେ ଯେ ଦେହାତିରିକ୍ତ ଆତ୍ମା କେଉଁଠାରେ ହେଲେ ଦେଖାଯାଏନାହିଁ । ଯେଉଁଠି ଚୈତନ୍ୟର ଉପଲବ୍ଧି ହୁଏ, ସେଠାରେହିଁ ତାହା ଦେହାନ୍ତର୍ଗତ । ଅତଏବ ଦେହର ବିନାଶ ସହିତ ଚୈତନ୍ୟର ବିଲୋପ ଅବଶ୍ୟମ୍ଭାବୀ । ଚାର୍ବାକ ମତରେ ସୁଖହିଁ ପରମ ପୁରୁଷାର୍ଥ । ଯେଉଁମାନେ ଦୁଃଖ ମିଶ୍ରିତ ବୋଲି ସୁଖର ଉପଭୋଗ ଇଚ୍ଛା କରନ୍ତି ନାହିଁ ସେମାନେ ପଶୁବତ୍ ମୂର୍ଖ । ଚାର୍ବାକ କହେ—ଆଚ୍ଛା, ମାଛରେ କାତି, କଣ୍ଟା ଅଛି ବୋଲି କଣ ତାହା ଅଖାଦ୍ୟ ? ଧାନରେ ଚମ୍ପୁ କୁଣ୍ଡା ଅଛି ବୋଲି କଣ ଅନାହାରରେ ରହିବ ? କଣ୍ଟକ ଭୟରେ କଣ ପଦ୍ମଫୁଲ ତୋଳିବା ଅନୁଚିତ ? ଭିକ୍ଷୁକ ମାଗିବ ବୋଲି କଅଣ ଆହାର ସାମଗ୍ରୀ ରାନ୍ଧିବ ନାହିଁ ? (ସର୍ବ ଦର୍ଶନ ସଂଗ୍ରହ) ଚାର୍ବାକ କହେ – କେବଳ ଶାସ୍ତ୍ର ଅବଲମ୍ବନ କରି ତତ୍ତ୍ୱ ନିର୍ଣ୍ଣୟ କରିବା ଉଚିତ ନୁହେଁ । ଯେହେତୁ ଯୁକ୍ତିହୀନ ବିଚାରରେ ଧର୍ମହାନି ଘଟେ ।

ଚାର୍ବାକ ମତବାଦ କେବେ ପ୍ରଚଳିତ ହେଲା ତାହା ନିର୍ଣ୍ଣୟ କରିବା କଠିନ । ଏହା ବିଷ୍ଣୁପୁରାଣରେ ଦୃଷ୍ଟ ହୁଏ । ମହାଭାରତ ଶାନ୍ତି ପର୍ବରେ ଚାର୍ବାକ ମତ ଦୃଷ୍ଟ ହୁଏ । ଏହି ପର୍ବରେ ଚାର୍ବାକଙ୍କୁ ଦୁର୍ଯ୍ୟୋଧନଙ୍କ ସଖା ବୋଲି ବର୍ଣ୍ଣନା କରାଯାଇଛି । ଭାରତ ଯୁଦ୍ଧ ପରେ ଚାର୍ବାକ ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ—"ତୁମେ କୁତ୍ସିତ ରାଜା ଓ ଜ୍ଞାତି-ଘାତୀ । ଜ୍ଞାତି ଓ ଗୁରୁଜନମାନଙ୍କୁ ହତ୍ୟା କରି ତୁମର କି ଲାଭ ହେଲା ? ତୁମେ ପ୍ରାଣ ଧରି ରହିବା ଅପେକ୍ଷା ମରିବା ଭଲ ।"

ରାମାୟଣରେ ମଧ୍ୟ ଏହି ମତବାଦ ପରିଦୃଷ୍ଟ ହୁଏ । ମହର୍ଷି ଜାବାଲି ରାମଚନ୍ଦ୍ରଙ୍କୁ ଅରଣ୍ୟ ଯାତ୍ରାରୁ ପ୍ରତିନିବୃତ୍ତ କରି କହିଥିଲେ—'ଯେଉଁମାନେ ଶାସ୍ତ୍ରସମ୍ମତ ଧର୍ମପରାୟଣ ମୁଁ ସେମାନଙ୍କ ପାଇଁ ବ୍ୟାକୁଳ ହେଉଛି । ସେମାନେ ଇହଲୋକରେ ଦୁଃଖ ପାଇ ଶେଷରେ ମରିଯାନ୍ତି । ଲୋକେ ପିତୃଦେବତାଙ୍କ ଉଦ୍ଦେଶ୍ୟରେ ଅଷ୍ଟକାଶ୍ରାଦ୍ଧ କରିଥାନ୍ତି । ଦେଖ, ଏହା ଦ୍ୱାରା କେବଳ ଅନ୍ନଧ୍ୱଂସ ମାତ୍ର ହୁଏ । ମୃତବ୍ୟକ୍ତି କଣ ଆହାର କରି ପାରେ ? ଯଦି ଜଣଙ୍କର ଖାଇବା ଭାତ ଆଉ ଜଣକର ଦେହକୁ ଯାଇପାରେ ତେବେ ପ୍ରବାସୀ

ଉଦ୍ଦେଶ୍ୟରେ ଶ୍ରାଦ୍ଧ କଲେ ଶ୍ରାଦ୍ଧୀୟ ଅନ୍ନବ୍ୟଞ୍ଜନାଦି ତାହାର ପାଥେୟ ହୁଏନାହିଁ କାହିଁକି ?'

ଯଜ୍ଞ କର, ଦାନ କର, ଦୀକ୍ଷା ଗ୍ରହଣ କର, ତପସ୍ୟା କର, ବିଷୟ-ବାସନା ତ୍ୟାଗ କର—ଏହିପରି ଦାନ ପ୍ରବର୍ତ୍ତକ ଗ୍ରନ୍ଥ ବୁଦ୍ଧିମାନ ବ୍ୟକ୍ତିମାନେ ରଚନା କରିଛନ୍ତି । ଧର୍ମ କୌଣସି କାର୍ଯ୍ୟରେ ନୁହେଁ । ହେ ମହାତ୍ମନ୍, ତୁମେ ଏହି ବୁଦ୍ଧି କର, ପରୋକ୍ଷକୁ ପଛରେ ରଖି ଯାହା ପ୍ରତ୍ୟକ୍ଷ ତାହା ଅନୁଷ୍ଠାନ କର । (ରାମାୟଣ-ଅଯୋଧ୍ୟା କାଣ୍ଡ)

ଏ ସବୁ ପ୍ରମାଣରୁ ଚାର୍ବାକର ସମୟ ମଧ୍ୟ ନିରୂପିତ ହୋଇପାରୁନାହିଁ । ତେବେ ଏତିକି, ଏହା ଏକ ଅତି ପ୍ରାଚୀନ ମତବାଦ । ପୁରାତନ କୃଷ୍ଣ ଯଜୁର୍ବେଦର ତୈତ୍ତିରୀୟ ବ୍ରାହ୍ମଣରେ ଉଲ୍ଲେଖ ଅଛି ଯେ ଏକଦା ବୃହସ୍ପତି ଗାୟତ୍ରୀ ଦେବୀଙ୍କ ମସ୍ତକରେ ଆଘାତ କଲେ । ତଦ୍ୱାରା ମସ୍ତକ ଚୂର୍ଣ୍ଣ ହୋଇଗଲା ଏବଂ ମସ୍ତିଷ୍କ ଛିନ୍ନ ହୋଇପଡ଼ିଲା । କିନ୍ତୁ ଗାୟତ୍ରୀଙ୍କର ମୃତ୍ୟୁ ହୋଇନଥିଲା । ସେହି ଛିନ୍ନ ଅଂଶମାନଙ୍କରୁ ନାସ୍ତିକମାନଙ୍କର ଉତ୍ପତ୍ତି ହେଲା । ଅନେକ ଏହି ଉପାଖ୍ୟାନର ଭିନ୍ନ ଅର୍ଥ କରିଥାନ୍ତି । ହିନ୍ଦୁମାନଙ୍କର ବୀଜମନ୍ତ୍ର ଗାୟତ୍ରୀ । ବୃହସ୍ପତି ସେହି ଗାୟତ୍ରୀଙ୍କୁ ଆଘାତ କରିବାର ଅର୍ଥ ହିନ୍ଦୁଧର୍ମର ଉଚ୍ଛେଦ ସାଧନ ତାଙ୍କର ଥିଲା ଏକ ଅଭିପ୍ରାୟ । ସୁତରାଂ ଏହି ବୃହସ୍ପତି ହିଁ ନାସ୍ତିକ ଶିରୋମଣି ଚାର୍ବାକ ବୋଲି ବୋଧହୁଏ । ତେଣୁ କୁହାଯାଉଛି ଯେ ବୌଦ୍ଧିକ ସମୟର ପୂର୍ବରୁ ବ୍ରାହ୍ମଣ ପ୍ରଧାନ୍ୟ ସମୟରେ କର୍ମକାଣ୍ଡର ଗୋଳଯୋଗ ସମୟରେ ଏହି ଲୋକାୟତବାଦର ଉତ୍ପତ୍ତି ହୋଇଥିଲା । ଜର୍ମାନ ପଣ୍ଡିତ ମ୍ୟାକ୍ସମୁଲରଙ୍କ ମତ ଏହି ସମୟ ଖ୍ରୀ: ୬୦୦ରୁ ୮୦୦ ପର୍ଯ୍ୟନ୍ତ ବିସ୍ତୃତ । ଅତଏବ ଚାର୍ବାକ ମତ ଖ୍ରୀ : ପୂ : ୬୦୦ ଠାରୁ ୮୦୦ ବର୍ଷ ମଧ୍ୟରେ ପ୍ରାଦୁର୍ଭୂତ ହୋଇଥିଲା ।

ହିନ୍ଦୁର ଷଡ଼୍‌ଦର୍ଶନ ଏବଂ ବୌଦ୍ଧ ଦର୍ଶନରେ ଅନୁମାନ, ପ୍ରମାଣ ମଧ୍ୟରେ ପରିଗଣିତ ହୋଇଅଛି । କେବଳ ଚାର୍ବାକହିଁ ପ୍ରତ୍ୟକ୍ଷାତିରିକ୍ତ ପ୍ରମାଣ ଅଗ୍ରାହ୍ୟ କରିଅଛି । ବେଦର ପ୍ରମାଣ ଦ୍ୱାରା ଅପର ହିନ୍ଦୁ ଦାର୍ଶନିକମାନେ ଈଶ୍ୱର ଓ ପରଲୋକର ଅସ୍ତିତ୍ୱ ନିରୂପଣ କରିଛନ୍ତି, କିନ୍ତୁ ଚାର୍ବାକ କହେ ଯେ ବେଦ ଅପ୍ରାମାଣ୍ୟ । ଏହା ପ୍ରତ୍ୟକ୍ଷ ବଳେପି, ଯୁକ୍ତି ବରୁଦ୍ଧ ଓ ଧୂର୍ତ୍ତତା ସମ୍ଭୂତ ।

**ଚିତ୍ରକୂଟ**—ରାମଗିରି ପର୍ବତ । ରାମଚନ୍ଦ୍ର ବନବାସ ସମୟରେ ଏହି ପର୍ବତରେ କିଛି ଦିନ ରହିଥିଲେ । (ରାମାୟଣ)

**ଚନ୍ଦ୍ରକେତୁ**—(୧) ଲକ୍ଷ୍ମଣଙ୍କ ଦୁଇପୁତ୍ର ମଧ୍ୟରୁ ଏକତମ ।

(୨) ଗରୁଡ଼ଙ୍କ ଏକ ପୁତ୍ର ।

(୩) ଶୂରସେନ ଦେଶର ରାଜା । (ଭାଗବତ)

**ଚନ୍ଦ୍ରଗୁପ୍ତ**—ବ୍ରହ୍ମାଙ୍କ ଅଙ୍ଗଜ ପୁତ୍ର । ଯେତେବେଳେ ବ୍ରହ୍ମା ଏ ପୃଥିବୀ ସୃଷ୍ଟି କରି ଧ୍ୟାନମଗ୍ନ ଥିଲେ, ସେହି ସମୟରେ ତାଙ୍କ ଅଙ୍ଗରୁ ନାନା ବର୍ଣ୍ଣରେ ଚର୍ଚ୍ଚିତ ଏକ ପୁରୁଷ ମସ୍ୟାଧାର (ଦୁଆତ) ଓ ଲେଖନୀ (କଲମ) ଧରି ଉଦ୍ଭୂତ ହେଲେ । ଏହି ପୁରୁଷ ଜାତ ହେବା ମାତ୍ରେ କେଉଁଠାରେ କି କାର୍ଯ୍ୟ କରିବ ବୋଲି ବ୍ରହ୍ମାଙ୍କୁ ପଚାରିଲା । ବ୍ରହ୍ମା ଏ କଥା ଶୁଣି ଧ୍ୟାନମଗ୍ନ ହେଲେ ଏବଂ ଯୋଗନିଦ୍ରାବସାନ ପରେ ପୁତ୍ରଙ୍କୁ ଆଦେଶ ଦେଲେ, 'ତୁମେ ଲୋକମାନଙ୍କର ପାପ ପୁଣ୍ୟ ବିଚାର କରିବା ପାଇଁ ଯମଙ୍କ ଗୃହରେ ବାସ କର । ଏହି ପୁରୁଷ ଦ୍ୱାରା ପାପ ପୁଣ୍ୟର ବିଚାର ବା ହିସାବ ଚନ୍ଦ୍ରବିଚାର ସ୍ଥଳରେ ଗୁପ୍ତ ହୋଇ ରହେ ବୋଲି ଏ ପୁରୁଷର ନାମ ଚନ୍ଦ୍ରଗୁପ୍ତ । ଚନ୍ଦ୍ରଗୁପ୍ତଙ୍କର ନଅଗୋଟି ପୁତ୍ର -- ଭଟ୍ଟ, ନାଗର, ସେନକ, ଗୌଡ଼, ଶ୍ରୀବାସ୍ତବ, ମାଥୁର, ଅହିଷ୍ଠାନ, ଶୈକସେନ, ଅମ୍ବଷ୍ଠ । ଚନ୍ଦ୍ରଗୁପ୍ତ ବ୍ରହ୍ମାଙ୍କ କାୟରୁ ଜନ୍ମ ହୋଇଥିବା ଯୋଗୁଁ କାୟସ୍ଥ ଜାତିର ଆଦି ପୁରୁଷ । (ଭବିଷ୍ୟ ପୁରାଣ) ଏହି ଚନ୍ଦ୍ରଗୁପ୍ତ ମନୁଷ୍ୟ କପାଳରେ ଶୁଭାଶୁଭ ଫଳ ଲେଖିଥାନ୍ତି । (ପଦ୍ମପୁରାଣ) ଯମଲୋକ ନିକଟରେ ଚନ୍ଦ୍ରଗୁପ୍ତଲୋକ ବୋଲି ଗୋଟିଏ ସ୍ୱତନ୍ତ୍ର ଲୋକ ଅଛି । ଏହି ସ୍ଥାନରେ କାୟସ୍ଥ-ମାନେ ଚନ୍ଦ୍ରଗୁପ୍ତଙ୍କ ନିର୍ଦ୍ଦେଶ ଅନୁସାରେ ଲୋକମାନଙ୍କର ପାପପୁଣ୍ୟ ବିଚାର କରିଥାନ୍ତି । (ଗରୁଡ଼ ପୁରାଣ) କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ଦିଥିରେ ଚନ୍ଦ୍ରଗୁପ୍ତଙ୍କର ପୂଜା ହୁଏ । ଏହି ଦ୍ୱିତୀୟାର ନାମ ଯମ ଦ୍ୱିତୀୟା । ବଙ୍ଗବାସୀ ଏହି ଦିନ ଯମ ଓ ଚନ୍ଦ୍ରଗୁପ୍ତଙ୍କ ପୂଜା କରିଥାନ୍ତି । ଏଦିନ ଭଗିନୀ ହସ୍ତରେ ପିଠାପଣା ପ୍ରସ୍ତୁତ କରି ଖାଇଲେ ବା ଅନ୍ନବ୍ୟଞ୍ଜନ, କ୍ଷୀରି ଇତ୍ୟାଦି ଭୋଜନ କଲେ ଆୟୁବୃଦ୍ଧି ହୁଏ ଓ ସମସ୍ତ ପ୍ରକାର କାମନା ପୂର୍ଣ୍ଣ ହୁଏ । ଓଡ଼ିଶାରେ ମାମୁଁଘର ମଣ୍ଡା ବୋଧହୁଏ ଏହି ପର୍ବର ରୂପାନ୍ତର ।

ଅଭିଶପ୍ତ ରାଜା ସୌଦାସ ଏହି ଯମ ଦ୍ୱିତୀୟାରେ ଚନ୍ଦ୍ରଗୁପ୍ତଙ୍କୁ ପୂଜା କରି ପାପମୁକ୍ତ ହୋଇଥିଲେ ଓ ସ୍ୱର୍ଗଲାଭ କଲେ । ମହାବୀର ଭୀଷ୍ମ ଏହି ଚନ୍ଦ୍ରଗୁପ୍ତଙ୍କୁ ଉପାସନା କରି ତାଙ୍କରି ପ୍ରସାଦରୁ ଇଚ୍ଛାମୃତ୍ୟୁ ବର ଲାଭ କରିଥିଲେ ।

**ଚନ୍ଦ୍ରରଥ**—(୧) ଗନ୍ଧର୍ବ ବିଶେଷ । ଏହାର ପ୍ରକୃତ ନାମ ଅଙ୍ଗାରପର୍ଣ୍ଣ । ଏହାଙ୍କର ଗୋଟିଏ ସୁନ୍ଦର ନାନାବର୍ଣ୍ଣ ଚର୍ଚ୍ଚିତ ରଥ ଥିଲା, ସେଥିଲାଗି ଏହାଙ୍କ ନାମ

ଚିତ୍ରରଥ ହୋଇଥିଲା । ଏହାଙ୍କ ପତ୍ନୀ କୁମ୍ଭୀନସୀ । ପାଣ୍ଡବମାନଙ୍କ ବନବାସ କାଳରେ ଅଙ୍ଗାରପର୍ଣ୍ଣ ଅର୍ଜୁନଙ୍କ ଦ୍ୱାରା ପରାସ୍ତ ହୋଇ ନିଜ ରଥଟିକୁ ପୋଡ଼ିଦେଲେ । ସେହି ଦିନୁ ଏହାଙ୍କ ନାମ ହେଲା ଦଗ୍‌ଧରଥ ।

(୨) ଏ ଧର୍ମରଥଙ୍କ ପୁତ୍ର । ବଳିରାଜଙ୍କ କ୍ଷେତ୍ରଜ ପୁତ୍ର ଅଙ୍ଗ, ଅଙ୍ଗଦେଶର ଅଧିପତି ଥିଲେ । ମହାରାଜ ଦଧିବାହନ ଏହି ଅଙ୍ଗଙ୍କ ପୁତ୍ର । ଦଧିବାହନଙ୍କ ପୁତ୍ର ଧର୍ମରଥ । ଚିତ୍ରରଥ ଏହି ଧର୍ମରଥଙ୍କ ପୁତ୍ର । (ହରିବଂଶ)

(୩) ଚିତ୍ରରଥ ଇନ୍ଦ୍ରଙ୍କ ରଥ ବାହକ ଓ କୁବେରଙ୍କ ସଖା । ଏହାଙ୍କର ଅନ୍ୟ ନାମ ଗନ୍ଧର୍ବରାଜ, ଅଙ୍ଗାରପର୍ଣ୍ଣ, ଦଗ୍‌ଧରଥ, କୁବେରସଖା ।

(୪) ଶ୍ରୀକୃଷ୍ଣଙ୍କ ନାତି, ଗଦଙ୍କ ପୁଅ ।

(୫) ଯଦୁବଂଶୀୟ ରାଜାବିଶେଷ । (ଭାଗବତ ଓ ବିଷ୍ଣୁପୁରାଣ)

**ଚିତ୍ରରେଖା, ଚିତ୍ରଲେଖା**—ଦୈତ୍ୟରାଜ ବାଣଙ୍କ ଦୁହିତା ଉଷାଙ୍କ ପ୍ରିୟ ସହଚରୀ ଏବଂ ତଦୀୟ ମନ୍ତ୍ରୀ କୁଷ୍ମାଣ୍ଡ ବା କୁମ୍ଭାଣ୍ଡଙ୍କ କନ୍ୟା । ଉଷାଙ୍କ ପ୍ରାର୍ଥନାରେ ଏ ଦେବର୍ଷି ନାରଦଙ୍କ କୃପାରୁ ଅନିରୁଦ୍ଧଙ୍କୁ ଶ୍ରୀକୃଷ୍ଣଙ୍କ ଅନ୍ତଃପୁରରୁ ହରଣ କରି ନେଇ ଆସିଥିଲେ । (ଅନିରୁଦ୍ଧ ଦେଖ)

**ଚିତ୍ରଶିଖଣ୍ଡୀ**—ମରୀଚି ପ୍ରମୁଖ ସାତଗୋଟି ଋଷି । ମରୀଚି, ଅଙ୍ଗିରା, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ ଓ ବଶିଷ୍ଠ ଏହିମାନଙ୍କ ନାମରେ ଚିହ୍ନିତ ନକ୍ଷତ୍ରମାନଙ୍କୁ ସପ୍ତର୍ଷିମଣ୍ଡଳ ବୋଲାଯାଏ । ଏହି ଋଷିମାନେ ଚିତ୍ରଶିଖଣ୍ଡୀ ନାମରେ ପରିଚିତ । (ଭାଷାକୋଷ)

**ଚିତ୍ରସେନ**—ଗନ୍ଧର୍ବବିଶେଷ । ଦୁର୍ଦ୍ଦଶାଗ୍ରସ୍ତ ପାଣ୍ଡବମାନେ ଦ୍ୱୈତବନରେ ଥିବାବେଳେ ସେମାନଙ୍କୁ ନିଜର ଐଶ୍ୱର୍ଯ୍ୟ ଦେଖାଇ ହେବାଲାଗି ଦୁର୍ଯ୍ୟୋଧନ ଦ୍ୱୈତବନସ୍ଥ ଆଭୀର ପଲ୍ଲୀ ପରିଦର୍ଶନ ଛଳନାରେ, କର୍ଣ୍ଣ ଶକୁନି ପ୍ରଭୃତିଙ୍କ ସହ ସପରିବାରେ ଦାସ ଦାସୀ ପରିବୃତ ହୋଇ ବହୁ ସୈନ୍ୟ ସାମନ୍ତ ସାଙ୍ଗରେ ଧରି ଦ୍ୱୈତବନକୁ ଆଗମନ କଲେ । ଏହି ଅରଣ୍ୟସ୍ଥ ଏକ ପୁଷ୍କରଣୀ ତଟରେ ଚିତ୍ରସେନଙ୍କର ନିବାସ ଥିଲା । ଗନ୍ଧର୍ବମାନଙ୍କୁ ପୁଷ୍କରଣୀରୁ ତଡ଼ି ଦେବାପାଇଁ ଦୁର୍ଯ୍ୟୋଧନ ସୈନ୍ୟମାନଙ୍କୁ ଆଦେଶ ଦେଲେ । ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ହେଲା । ପରିଣାମରେ ଦୁର୍ଯ୍ୟୋଧନ ପରାସ୍ତ ହେଲେ । ମହାବୀର କର୍ଣ୍ଣ କିଛିକ୍ଷଣ ଯୁଦ୍ଧ

କରି ଆତ୍ମରକ୍ଷା କରିବା ପାଇଁ ପଳାୟନ କଲେ । ଦୁର୍ଯ୍ୟୋଧନ ପରାଜିତ ଓ ବନ୍ଦୀ ହେଲେ । ରାଜପତ୍ନୀ ଓ ରାଜଅନ୍ତଃପୁରବାସିନୀ ମହିଳାମାନେ ଗନ୍ଧର୍ବ-ମାନଙ୍କ ହସ୍ତରେ ପତିତ ହେଲେ । ଦୁର୍ଯ୍ୟୋଧନଙ୍କ ଅମାତ୍ୟମାନେ ପଳାୟନ କରି ଯୁଧିଷ୍ଠିରଙ୍କ ଶରଣାପନ୍ନ ହୋଇ ଦୁର୍ଯ୍ୟୋଧନାଦି କୌରବ ଓ ତଦୀୟ କୁଳବଧୂମାନଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କଲେ । ଦୁର୍ଯ୍ୟୋଧନଙ୍କୁ ସାହାଯ୍ୟ କରିବା ପାଇଁ ଭୀମ ଅନିଚ୍ଛୁକ ଥିଲେ । କିନ୍ତୁ ମହାନୁଭବ ଯୁଧିଷ୍ଠିର ଭୀମଙ୍କୁ କହିଲେ ଯେ, 'କୁରୁବଂଶୀୟ ଲଲନାଗଣର ଅପମାନ ହିଁ ଆମର ଅପମାନ । ଦୁର୍ଯ୍ୟୋଧନ ଆମ୍ଭମାନଙ୍କର ଶତ୍ରୁ ବା ମିତ୍ର ହୋଇପାରନ୍ତି । ମାତ୍ର କୁଳାଙ୍ଗନାମାନଙ୍କୁ ରକ୍ଷା କରିବା ଓ ସେମାନଙ୍କୁ ସମ୍ମାନ ଦେବା ବଂଶୀୟ ପ୍ରତ୍ୟେକ ବ୍ୟକ୍ତିଙ୍କର ଏକ ମହାନ କର୍ତ୍ତବ୍ୟ ।' ସେ ଭୀମଙ୍କୁ ଏହିପରି ପ୍ରବୋଧ ଦେଇ ତାଙ୍କ ସହିତ ନକୁଳ, ସହଦେବ ଓ ଅର୍ଜ୍ଜୁନଙ୍କୁ ଦୁର୍ଯ୍ୟୋଧନ ଉଦ୍ଧାରାର୍ଥେ ପ୍ରେରଣ କଲେ । ଭୀମାର୍ଜ୍ଜୁନଙ୍କ ସହିତ ଗନ୍ଧର୍ବମାନଙ୍କର ଘୋର ଯୁଦ୍ଧ ହେଲା । ଗନ୍ଧର୍ବସେନାର ପରାଜୟ ପରେ ନିଜେ ଚିତ୍ରସେନ ଯୁଦ୍ଧ ଭୂମିରେ ଅବତୀର୍ଣ୍ଣ ହେଲେ । ଅର୍ଜ୍ଜୁନଙ୍କ ସହିତ ଚିତ୍ରସେନ ଆଉ ଯୁଦ୍ଧ କଲେନାହିଁ । ସେ ରାଜପତ୍ନୀ ଓ ମହିଳାମାନଙ୍କ ସହିତ ଦୁର୍ଯ୍ୟୋଧନଙ୍କୁ ଧରି ଯୁଧିଷ୍ଠିରଙ୍କ ସମୀପରେ ଉପସ୍ଥିତ ହେଲେ । ଯୁଧିଷ୍ଠିର ସେମାନଙ୍କୁ ମଧୁର ଓ କୋମଳ ବ୍ୟବହାରରେ ପରିତୃପ୍ତ କରି ହସ୍ତିନା ଯିବା ପାଇଁ ଅନୁରୋଧ କଲେ । ଚିତ୍ରସେନ ବନ୍ଦୀମାନଙ୍କୁ ଯେଉଁ ଶିଷ୍ଟ ବ୍ୟବହାର କରିଥିଲେ, ସେଥିପାଇଁ ଯୁଧିଷ୍ଠିର ତାଙ୍କୁ ପ୍ରଶଂସା କଲେ । ହୃତଦର୍ପ ଦୁର୍ଯ୍ୟୋଧନ ଲଜ୍ଜାରେ ମୃତ ପ୍ରାୟ ହୋଇ ହସ୍ତିନାକୁ ଫେରିଗଲେ ।

(ମହାଭାରତ)

ଧୃତରାଷ୍ଟ୍ରଙ୍କର ଗୋଟିଏ ପୁତ୍ରର ନାମ ମଧ୍ୟ ଚିତ୍ରସେନ ଥିଲା ।

**ଚିତ୍ରାଙ୍ଗଦ**—ମହାରାଜ ଶାନ୍ତନୁଙ୍କ ପୁତ୍ର ଓ ମହାବୀର ଭୀଷ୍ମଙ୍କ ବୈମାତ୍ରେୟ ଭ୍ରାତା । ଏ ସତ୍ୟବତୀଙ୍କ ଗର୍ଭରୁ ଜନ୍ମି ଥିଲେ । ଏହାଙ୍କ କନିଷ୍ଠ ଭ୍ରାତାଙ୍କ ନାମ ବିଚିତ୍ରବୀର୍ଯ୍ୟ । ତରୁଣ ବୟସ୍କ ଥିବାବେଳେ ମହାରାଜ ଶାନ୍ତନୁ ପରଲୋକ ଗମନ କଲେ । ଭୀଷ୍ମ ପୂର୍ବପ୍ରତିଜ୍ଞା ରକ୍ଷା କରି ରାଜା ନ ହେବାରୁ ଚିତ୍ରାଙ୍ଗଦ ଅଭିଷିକ୍ତ ହେଲେ । ରାଜା ଚିତ୍ରାଙ୍ଗଦ ପ୍ରଜାମାନଙ୍କର ପ୍ରୀତିଭାଜନ ଥିଲେ । ଥରେ ଗନ୍ଧର୍ବରାଜଙ୍କ ସହିତ ଚିତ୍ରାଙ୍ଗଦଙ୍କର ଯୁଦ୍ଧ ହେଲା । ଶାନ୍ତନୁପୁତ୍ର ଏ ଯୁଦ୍ଧରେ ପରାସ୍ତ ଓ ନିହତ ହେଲେ । ଅପ୍ରାପ୍ତ ବୟସ୍କ ବିଚିତ୍ରବୀର୍ଯ୍ୟ କୁରୁରାଜ୍ୟର ଅଧିପତି ହେଲେ । (ମହାଭାରତ—ଆଦିପର୍ବ) । କଳିଙ୍ଗ ବା ଦଶାର୍ଣ୍ଣ ଦେଶର ଜନୈକରାଜାଙ୍କ ନାମଥିଲା ଚିତ୍ରାଙ୍ଗଦ ।

**ଚିତ୍ରାଙ୍ଗଦା**—ଅର୍ଜୁନଙ୍କ ପତ୍ନୀ । ମଣିପୁର ରାଜା ଚିତ୍ରବାହନ [illegible] ଏହାଙ୍କର ପିତା । ଚିତ୍ରାଙ୍ଗଦାଙ୍କ ଗର୍ଭରେ ମହାବୀର ଅର୍ଜୁନଙ୍କ ଔରସରେ ମହାପରାକ୍ରମ-ଶାଳୀ ବଭ୍ରୁବାହନଙ୍କ ଜନ୍ମ । ଅପୁତ୍ରିକ ମାତାମହଙ୍କ ମୃତ୍ୟୁ ପରେ ବଭ୍ରୁବାହନ ମଣିପୁରର ରାଜପଦ ପ୍ରାପ୍ତ ହୋଇଥିଲେ । ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞର ଯଜ୍ଞାଶ୍ୱ ଯୋଗୁଁ ଏହାଙ୍କର ଅର୍ଜୁନଙ୍କ ସହିତ ଯୁଦ୍ଧ ହୋଇଥିଲା । ଅର୍ଜୁନ ଏହି ଯୁଦ୍ଧରେ ପରାସ୍ତ ହୋଇଥିଲେ । (ମହାଭାରତ)

(୨) ରାବଣର ଏକ ପତ୍ନୀଙ୍କ ନାମ ଚିତ୍ରାଙ୍ଗଦା ।

(୩) କୃପାସିନ୍ଧୁ ମିଶ୍ରଙ୍କ ଉତ୍କଳ ଇତିହାସରୁ ଜଣାଯାଏ କଳିଙ୍ଗ ରାଜକନ୍ୟାଙ୍କ ନାମ ଥିଲା ଚିତ୍ରାଙ୍ଗଦା ଓ ଏ କୁରୁରାଜ ଦୁର୍ଯୋଧନଙ୍କର ପତ୍ନୀ ଥିଲେ ।

**ଚିତ୍ରାଶ୍ୱ**—ସାବିତ୍ରୀଙ୍କ ସ୍ୱାମୀ ସତ୍ୟବାନଙ୍କ ନାମାନ୍ତର । କୃଷ୍ଣସିଂହ, ମହାଭାରତ ବନପର୍ବରେ ଲେଖିଛନ୍ତି—ସତ୍ୟବାନ ଚିତ୍ରରେ ଅଶ୍ୱ ଲେଖନ୍ତି । ଏଥି ପାଇଁ ତାଙ୍କୁ ଚିତ୍ରାଶ୍ୱ କୁହାଯାଇଛି ।

**ଚୈତ୍ରରଥ**—କୁବେରଙ୍କ ପ୍ରମୋଦ ଉଦ୍ୟାନର ନାମ । ଚିତ୍ରରଥ ଗନ୍ଧର୍ବ ଏ ଉଦ୍ୟାନର ଜଗୁଆଳି ।

**ଚ୍ୟବନ**—ଏକ ବିଖ୍ୟାତ ପ୍ରାଚୀନ ଋଷି । ଭୃଗୁଙ୍କ ଔରସରେ ପୁଲୋମାଙ୍କ ଗର୍ଭରୁ ଏହାଙ୍କର ଜନ୍ମ । କୌଣସି ରାକ୍ଷସ ଏହାଙ୍କ ମାତା ଗର୍ଭବତୀ ଥିବାବେଳେ ବଳପୂର୍ବକ ଅପହରଣ କରିନେଉଥିବା ବେଳେ ଗର୍ଭସ୍ଥ ଶିଶୁ କ୍ରୁଦ୍ଧ ହୋଇ ଭୂପତିତ ହେଲା ଏବଂ କ୍ରୋଧାଗ୍ନି ଦ୍ୱାରା ରାକ୍ଷସକୁ ଧ୍ୱଂସ କରିଦେଲା । ବେଗବଶତଃ ଗର୍ଭରୁ ଚ୍ୟୁତ ହୋଇଥିବାରୁ ଏ ଚ୍ୟବନ ନାମରେ ଅଭିହିତ ହୋଇଥିଲେ । ଥରେ ଚ୍ୟବନ, ଦେବ ସଭାରେ ଥିବାବେଳେ ଜାଣିପାରିଲେ ଯେ ମହାରାଜ କୁଶିକବଂଶର କ୍ଷାତ୍ରତେଜ ତାଙ୍କ ବଂଶକୁ ସଂକ୍ରାମିତ ହେବ । ଯଦ୍ଦ୍ୱାରା ତାଙ୍କ ବଂଶର ସତ୍ତ୍ୱଗୁଣପ୍ରଧାନ ବ୍ରାହ୍ମଣମାନେ କ୍ଷତ୍ରିୟ ହୋଇଯିବେ ସେଥିଲାଗି ସେ କୁଶିକଙ୍କୁ ଅଭିଶାପାନଳ ଦ୍ୱାରା ଧ୍ୱଂସ କରିବାକୁ ଚେଷ୍ଟା କଲେ । ସେ କୁଶିକ ଓ ତାଙ୍କର ସ୍ତ୍ରୀଙ୍କୁ ଦୀର୍ଘକାଳ ପର୍ଯ୍ୟନ୍ତ ନିଜ ସେବାରେ ନିଯୋଜିତ କଲେ । ରାଜଦମ୍ପତି ଋଷିଙ୍କ ସେବାରେ ପ୍ରାଣପଣେ ଯତ୍ନ କରିଥିଲେ । ଥରେ ଚ୍ୟବନ ରାଜା ଓ ରାଣୀଙ୍କୁ ଘୋଡ଼ା ଭଳି ଯାନରେ ଯୋଚି ସେମାନଙ୍କୁ ନିଷ୍ଠୁର ଭାବରେ ପ୍ରହାର କରିବାକୁ ଲାଗିଲେ । ସେମାନେ ଅମ୍ଳାନ

ବଦନରେ ଏ ଅତ୍ୟାଗ୍ନିର ସହିବାକୁ ଚ୍ୟବନ ଆଉ ଶାପ ଦେବେ କଣ ସେମାନଙ୍କ ଉପରେ ତୃପ୍ତ ହୋଇ ଅଭୟ ଦେଲେ ।

ଚ୍ୟବନଙ୍କ ପୁତ୍ରର ନାମ ଔର୍ବ ଓ ନାତିର ନାମ ଋଚୀକ । ଋଚୀକ ମହାରାଜ କୁଶିକଙ୍କ ପୁତ୍ର ଗାଧିରାଜାଙ୍କ କନ୍ୟାକୁ ବିବାହ କରିଥିଲେ । ଋଚୀକଙ୍କ ପୁତ୍ର ଜମଦଗ୍ନି ଓ ନାତି ରାମ । ଏହି ରାମ ପରଶୁରାମ ନାମରେ ବିଦିତ । ଗାଧିରାଜଙ୍କ ପୁତ୍ର ବିଶ୍ୱାମିତ୍ର କଠୋର ତପସ୍ୟା ବଳରେ ବ୍ରାହ୍ମଣତ୍ୱ ଲାଭ କରିଥିଲେ । (ଋଚୀକ ଓ ଔର୍ବ ଦେଖ)

ଏକଦା ଚ୍ୟବନ ଏକ ପୁଷ୍କରିଣୀ କୂଳରେ ଥିବା ଅରଣ୍ୟରେ ତପସ୍ୟା କରୁଥିଲେ । ତାଙ୍କର ଆଖି ଦୁଇଟି ଛଡ଼ା ସମସ୍ତ ଶରୀରରେ ଏକ ବଡ଼ ଉଇହୁଙ୍କା ହୋଇଯାଇଥିଲା । ସେହି ହୁଙ୍କା ଭିତରେ ଆଖି ଦୁଇଟି ଅତି ତେଜସ୍କର ଦେଖା ଯାଉଥିଲା । ରାଜା ଶର୍ଯ୍ୟାତି ସେ ବଣକୁ ପାରିଧି କରିବାପାଇଁ ଆସିଥିଲେ । ତାଙ୍କ ସହିତ ରାଜକୁମାରୀ ସୁକନ୍ୟା ମଧ୍ୟ ଥିଲେ । ସୁକନ୍ୟା ଅରଣ୍ୟରେ ବୁଲୁ ବୁଲୁ ଚ୍ୟବନଙ୍କ ଆଖି ଦୁଇଟି ଦେଖି କୌତୂହଳୀ ହୋଇ ସେଥିରେ ଦୁଇଟି କଣ୍ଟା ଫୋଡ଼ି ଦେଲେ । ମହର୍ଷି ଚ୍ୟବନ କ୍ରୋଧ କରି ରାଜାଙ୍କ ସୈନ୍ୟସାମନ୍ତଙ୍କର ମଳମୂତ୍ର ବନ୍ଦ କରି ଦେଲେ । ବହୁ ଅନୁସନ୍ଧାନ ପରେ ରାଜା ଶର୍ଯ୍ୟାତି ଏହା ଜାଣି ଋଷିଙ୍କ ଶରଣାପନ୍ନ ହେଲେ । ମୁନି ରାଜାଙ୍କ ଅନୁରୋଧରେ ଶାପ ପ୍ରତ୍ୟାହାର କଲେ ଏବଂ ରାଜକୁମାରୀଙ୍କୁ ବିବାହ ହୋଇଥିଲେ । ଏକଦା ଅଶ୍ୱିନୀକୁମାର ଯୁଗଳ, ସୁନ୍ଦରୀ ସୁକନ୍ୟାଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ପ୍ରେମଭିକ୍ଷା କଲେ । ମାତ୍ର ପତିପ୍ରାଣା ସୁକନ୍ୟା ଏ ପ୍ରସ୍ତାବରେ ସମ୍ମତା ହେଲେ ନାହିଁ । ଅଶ୍ୱିନୀକୁମାର ସୁକନ୍ୟାଙ୍କ ପତିବ୍ରତ୍ୟର ପୁରସ୍କାର ସ୍ୱରୂପ ଚ୍ୟବନଙ୍କୁ ନବ ଯୌବନ ସମ୍ପନ୍ନ କରିଦେଲେ । ବୈଦ୍ୟକ ଗ୍ରନ୍ଥରେ ପ୍ରମାଣ ଅଛି ଯେ ଅଶ୍ୱିନୀକୁମାର ଚ୍ୟବନଙ୍କୁ ଯେଉଁ ଔଷଧ ଦେଇଥିଲେ, ତାହାର ନାମ ଚ୍ୟବନପ୍ରାଶ । ମହର୍ଷି ଚ୍ୟବନ ଏହି ଉପକାର ଭୁଲି ନ ଥିଲେ । ସେ ତାଙ୍କ ଶ୍ୱଶୁରଙ୍କ ଯଜ୍ଞରେ ଅଶ୍ୱିନୀକୁମାରଙ୍କୁ ସୋମପାନ କରାଇଥିଲେ । ଏଥିରେ ଇନ୍ଦ୍ର କ୍ରୁଦ୍ଧ ହୋଇ ମୁନିଙ୍କ ପ୍ରତି ବଜ୍ର ଉଠାଇଲେ । ମୁନି ଇନ୍ଦ୍ରଙ୍କ ହସ୍ତ ସ୍ତମ୍ଭନ କରି ଦେଲେ । ହୋମ ବଳରେ ଏକ ରାକ୍ଷସ ଉତ୍ପନ୍ନ କରି ଇନ୍ଦ୍ରଙ୍କୁ ବଧ କରିବାପାଇଁ ଆଦେଶ ଦେଲେ । ଇନ୍ଦ୍ର ମୁନିଙ୍କର ଶରଣାପନ୍ନ ହେଲେ, ଋଷି ତାହାଙ୍କୁ କ୍ଷମା କଲେ । ଆସ୍ତିକ, ଚ୍ୟବନ ମହର୍ଷିଙ୍କ ଶିଷ୍ୟ ଥିଲେ ।

(ମହାଭାରତ, ଆଦି ଓ ଅନୁଶାସନପର୍ବ)

●



**ଛାୟା**—ସୂର୍ଯ୍ୟ ପତ୍ନୀ । ସଂଜ୍ଞା ନାମରେ ସୂର୍ଯ୍ୟଙ୍କର ଏକ ପତ୍ନୀ ଥିଲେ । ଏହି ସ୍ତ୍ରୀ ଗର୍ଭରୁ ଯମ ଓ ଯମୁନା ଜନ୍ମିଥିଲେ । ସଂଜ୍ଞା ସୂର୍ଯ୍ୟଙ୍କର ତେଜ ସହି ନ ପାରି ନିଜ ଛାୟାରୁ ଠିକ୍ ଆପଣାପରି ଏକ ସ୍ତ୍ରୀ ମୂର୍ତ୍ତି ସୃଷ୍ଟି କରି ତାଙ୍କୁ ସୂର୍ଯ୍ୟଙ୍କ ନିକଟରେ ରହିବାକୁ ଅନୁରୋଧ କଲେ ଏବଂ ନିଜ ପୁତ୍ର-କନ୍ୟାଙ୍କ ଲାଳନ-ପାଳନଭାର ତାଙ୍କ ଉପରେ ନ୍ୟସ୍ତ କରି ପିତୃଗୃହକୁ ଚାଲିଗଲେ । ପିତା ବିଶ୍ୱକର୍ମା ତାଙ୍କର ଏ କାର୍ଯ୍ୟକୁ ପସନ୍ଦ କଲେ ନାହିଁ । ପୁଣି ସ୍ୱାମୀ ଗୃହକୁ ଫେରିଯିବା ପାଇଁ କହିଲେ । କିନ୍ତୁ ସଂଜ୍ଞା ସ୍ୱାମୀ ଗୃହକୁ ଗଲେ ନାହିଁ । ସେ ଉତ୍ତର କୁରୁବର୍ଷ ଯାଇ ସେଠାରେ ଘୋଟକୀ ରୂପ ଧରି ଆନନ୍ଦରେ ବିଚରଣ କରିବାକୁ ଲାଗିଲେ । ଏଣେ ଛାୟାଙ୍କୁ ନିଜର ପତ୍ନୀ ବିଚାରି ସୂର୍ଯ୍ୟ ତାଙ୍କୁ ଉପଭୋଗ କଲେ । ତାଙ୍କ ଗର୍ଭରୁ ସାବର୍ଣ୍ଣି ଓ ଶନୈଶ୍ଚର ନାମକ ଦୁଇ ପୁତ୍ର ଜନ୍ମିଲେ । ଅନନ୍ତର ଛାୟା ନିଜ ପୁତ୍ରମାନଙ୍କୁ ଭଲପାଇ ଯମଙ୍କୁ ଅବହେଳା କରିବାରୁ ଯମ ତାଙ୍କୁ ପଦାଘାତ କଲେ । ବିମାତାଙ୍କ ଅଭିଶାପରେ ଯମଙ୍କର ପାଦ କୁଷ୍ଠ ଗ୍ରସ୍ତ ହୋଇଗଲା । ଯମ ଏକଥା ପିତାଙ୍କୁ ଜଣାଇଲେ । ସୂର୍ଯ୍ୟ ତାଙ୍କର ଅଭିଶାପ ମୋଚନ କରି ପାରିଲେ ନାହିଁ, ମାତ୍ର ସେ ଛାୟାଙ୍କ ପ୍ରତି ଅତି କ୍ରୁଦ୍ଧ ହେଲେ । ଛାୟା ଏହି ସୁଯୋଗ ପାଇ ସଂଜ୍ଞାଙ୍କର ସବୁକଥା କହିଦେଲେ । ସୂର୍ଯ୍ୟ ଶ୍ୱଶୁର ବିଶ୍ୱକର୍ମାଙ୍କ ନିକଟକୁ ଯାଇ ସଂଜ୍ଞାଙ୍କର ସବୁ ବିଷୟ ଜଣାଇଲେ । ବିଶ୍ୱକର୍ମା କହିଲେ—'ସଂଜ୍ଞା ତୁମର ତେଜ ସହି ନ ପାରି ମୋ ଘରକୁ ଆସିଥିଲା, ମୁଁ ପୁଣି ଆପଣଙ୍କ ପାଖକୁ ଫେରିଯିବା ପାଇଁ ତାଙ୍କୁ କହିଲି ।' ତହୁଁ ସୂର୍ଯ୍ୟ ଫେରି ଆସି ସଂଜ୍ଞାଙ୍କ ଅବସ୍ଥିତିର ଅନୁସନ୍ଧାନ କଲେ । ସେ ଏକ ଘୋଟକ ରୂପ ଧାରଣ କରି ସଂଜ୍ଞାଙ୍କ ସହିତ ଉତ୍ତର କୁରୁବର୍ଷରେ ବିଚରଣ କରିବାକୁ ଲାଗିଲେ । ଉଭୟଙ୍କ ସଙ୍ଗମରେ ଅଶ୍ୱିନୀକୁମାର ଯୁଗଳ ଉତ୍ପନ୍ନ ହେଲେ । ପରେ ସୂର୍ଯ୍ୟ ନିଜର ତେଜ ହ୍ରାସ କରିବା ପାଇଁ ପ୍ରତିଶ୍ରୁତି ଦେବାରୁ ସଂଜ୍ଞା ପୁନର୍ବାର ତାଙ୍କ ପାଖକୁ ଆସିଲେ । (ଅଶ୍ୱିନୀକୁମାର ଦେଖ)

**ଛିନ୍ନମସ୍ତା**—ତନ୍ତ୍ରୋକ୍ତ ଦଶ ମହାବିଦ୍ୟା ଅନ୍ତର୍ଗତ ଷଷ୍ଠ ମହାବିଦ୍ୟା । ତନ୍ତ୍ର ଅନୁସାରେ ଏହାଙ୍କ ରୂପ—ଆପଣା ହାତରେ ନିଜର ମୁଣ୍ଡ କାଟି ତାହାକୁ

ବାମହସ୍ତରେ ଧରିଛନ୍ତି । କଟା ହୋଇଥିବା ବେକରୁ ଉଠୁଥିବା ରକ୍ତର ୯ରେ ସେହି କଟାମୁଣ୍ଡର ପାଟିରେ ପଡ଼ୁଅଛି ଓ କଟାମୁଣ୍ଡଟି ଉକ୍ତ ରକ୍ତଧାର ପାନ କରୁଅଛି ।





**ଜଗଦ୍‌ଗୌରୀ**—ଦୁର୍ଗା । ନାଗମାନଙ୍କ ଭଗିନୀ ଓ ଜରତ୍କାରୁ ଋଷିଙ୍କ ପତ୍ନୀ ମନସା ଦେବୀଙ୍କର ନାମାନ୍ତର । (ହିନ୍ଦୀ ଶବ୍ଦସାଗର)

**ଜଗଦ୍ଧାତ୍ରୀ**—ଚତୁର୍ହସ୍ତ ସମନ୍ୱିତ ସିଂହବାହିନୀ ଦେବୀ । ଶାରଦୀୟ ଦୁର୍ଗାପୂଜା ପରେ ଏହି ଦେବୀଙ୍କର ପୂଜା ହୁଏ । ଏକଦା ଦେବତାମାନଙ୍କ ମଧ୍ୟରେ କେତେଜଣ ମିଳି ସିଦ୍ଧାନ୍ତ କଲେ ଯେ ସେମାନଙ୍କ ଉପରେ ଆଉ କୌଣସି ଦେବତା ନାହିଁ । ସେମାନେ ହିଁ ଈଶ୍ୱର ! ପରମେଶ୍ୱର ବୋଲି ଅନ୍ୟ କୌଣସି ଦେବତାର ଅସ୍ତିତ୍ୱ ନାହିଁ । ଭଗବତୀ ଦୁର୍ଗା ଏହି ଉଦ୍ଧତ ଦେବତାମାନଙ୍କର ମନୋଭାବ ଜାଣି କୋଟି-ସୂର୍ଯ୍ୟପ୍ରଭାସମ ଏକ ଉଗ୍ର ଜ୍ୟୋତିର୍ମୟୀ ମୂର୍ତ୍ତିରୂପେ ସେମାନଙ୍କ ସମ୍ମୁଖରେ ଆବିର୍ଭୂତା ହେଲେ । ଅଗ୍ନି, ବାୟୁ ପ୍ରଭୃତି ଦେବତା-ମାନେ ଏହି ଜ୍ୟୋତିର ସ୍ୱରୂପ ନିରୂପଣ କରିବା ପାଇଁ ଅସମର୍ଥ ହେଲେ । ସେମାନେ ପରାମର୍ଶ କରି ପ୍ରଥମେ ପବନ ଦେବତାଙ୍କୁ ସେହି ଜ୍ୟୋତି ସମୀପକୁ ପଠାଇଲେ । ଜ୍ୟୋତିରେ ଅନ୍ତର୍ନିହିତା ଦୁର୍ଗା ଗୋଟିଏ ଘାସ ଗଛ ଆଗରେ ରଖି ପବନଙ୍କୁ କହିଲେ—'ଯଦି ତୁମେ ଏହି ଘାସ ଗଛଟି ଉପାଡ଼ି ପାରିବ, ତେବେ ତୁମକୁ ମୁଁ ଶକ୍ତିଶାଳୀ ବୋଲି ମନେ କରିବି ।' ପବନ ବହୁତ ଚେଷ୍ଟା କଲେ, ମାତ୍ର ପାରିଲେ ନାହିଁ । ତା'ପରେ ଅଗ୍ନି ଉପସ୍ଥିତ ହେଲେ । ତାଙ୍କୁ ସେହି ଘାସ ଗଛଟିକୁ ପୋଡ଼ି ପାଉଁଶ କରିବା ପାଇଁ ଆଦେଶ ହେଲା, ମାତ୍ର ସେ ତାହା କରିପାରିଲେ ନାହିଁ । ତେଣୁ ଏହି ଉଦ୍ଧତ ଦେବତାମାନେ ଏହି ଦେବୀଙ୍କୁ ପରମେଶ୍ୱରୀ ବୋଲି ଆରାଧନା କଲେ । ଦେବୀ ତେଜଃପୁଞ୍ଜ ମଧ୍ୟରୁ ଜଗଦ୍ଧାତ୍ରୀରୂପରେ ଆବିର୍ଭୂତା ହେଲେ । ଏହି ମୂର୍ତ୍ତି ଚତୁର୍ଭୁଜା,

ସିଂହସ୍କନ୍ଧା, ହାତ୍ୟମୁଖୀ ଓ ସିଂହବାହିନୀ । ଏହାଙ୍କର ପରିଧେୟ ରକ୍ତବସ୍ତ୍ର । ସର୍ବାବୟବ ଅଳଙ୍କାର ବିଭୂଷିତ । କାର୍ତ୍ତିକ ଶୁକ୍ଳପକ୍ଷ ନବମୀ ଦିନ ଏହାଙ୍କର ପୂଜା ହୁଏ ।

**ଜଗନ୍ନାଥ**—ଭାରତର କ୍ଷେତ୍ର ମଧ୍ୟରେ ଏକତମ କ୍ଷେତ୍ର । ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବିରାଜିତ ବିଷ୍ଣୁ ପ୍ରତିମା । ଏହା ଭାରତରେ ଚାରିଗୋଟି ପୁଣ୍ୟଧାମରୁ ଏକତମ । ଯଥା – ଦକ୍ଷିଣରେ ରାମନାଥ, ପୂର୍ବରେ ଜଗନ୍ନାଥ, ପଶ୍ଚିମରେ ଦ୍ୱାରକାନାଥ ଓ ଉତ୍ତରରେ ବଦ୍ରିନାଥ । ଜଗନ୍ନାଥ ଓଡ଼ିଶାର ପୂର୍ବାଞ୍ଚଳ ସମୁଦ୍ର କୂଳରେ ପୁରୀ ବା ପୁରୁଷୋତ୍ତମ ଧାମରେ ଅବସ୍ଥିତ । ପୁରାଣ ମତରେ ଜଗନ୍ନାଥ, ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କର ଦାରୁବ୍ରହ୍ମ ରୂପ । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି ଯେ ବିଶ୍ୱାବସୁ ନାମକ ଜଣେ ଶବର ନୀଳାଚଳର ଅରଣ୍ୟ ମଧ୍ୟରେ ଦାରୁବ୍ରହ୍ମଙ୍କୁ ପୂଜା କରୁଥିଲେ । ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ ହେବାରୁ ସେ ତାଙ୍କର ବ୍ରାହ୍ମଣ ମନ୍ତ୍ରୀ ବିଦ୍ୟାପତିଙ୍କୁ ପଠାଇ ଶବରର ସନ୍ଧି ଠିକଣା କଲେ ଓ ଶବର ତାଙ୍କୁ ଦାରୁ ବ୍ରହ୍ମଙ୍କୁ ନ ଦେଖାଇବାରୁ ବିଦ୍ୟାପତି ଶବରର ଅବିବାହିତା ଯୁବତୀ କନ୍ୟା ସଙ୍ଗେ ପ୍ରଣୟ କରି ଦାରୁ ବ୍ରହ୍ମଙ୍କୁ ଦେଖି ସେଠାରୁ ଫେରିଯାଇ ଇନ୍ଦ୍ରଦ୍ୟୁମ୍ନଙ୍କୁ ନେଇ ଆସିଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦାରୁବ୍ରହ୍ମ ଦେଖା ଦେଲେନାହିଁ । ବିଦ୍ୟାପତି ଉକ୍ତ ଶବର କନ୍ୟାକୁ ବିଭା ହେଲେ । ପରେ ବହୁ ପ୍ରଯତ୍ନରେ ସ୍ୱପ୍ନାଦେଶରେ ଇନ୍ଦ୍ରଦ୍ୟୁମ୍ନ ଦାରୁ ବ୍ରହ୍ମଙ୍କୁ ସମୁଦ୍ରରେ ଭାସି ଆସୁଥିବାର ଦେଖି ତାଙ୍କୁ ଆଣି ସେଥିରୁ ମୂର୍ତ୍ତି ଗଢ଼ାଇ ତାଙ୍କ ପାଇଁ ମନ୍ଦିର ତୋଳାଇଲେ ଏବଂ ସେ ମନ୍ଦିର ପ୍ରତିଷ୍ଠା କରିବାପାଇଁ ବ୍ରହ୍ମାଙ୍କୁ ଡାକିବାକୁ ସ୍ୱର୍ଗକୁ ଗଲେ । ସେ ଫେରୁ ଫେରୁ ବହୁତ ଦିନ ଗତ ହେବାରୁ ସମୁଦ୍ରର ଉଡ଼ାବାଲିରେ ଦେଉଳଟି ପୋତି ହୋଇଗଲା । ଗାଳମାଧବ ରାଜାଙ୍କ ଘୋଡା ଖୁରାରେ ଦେଉଳର ନୀଳଚକ୍ରର ଅଗ୍ରଭାଗ ବାଜିବାରୁ ସେ ତାକୁ ଖୋଳାଇ ଦେଉଳ ବାହାର କଲେ, ଓ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ନେଇ ଫେରିଲା ବେଳକୁ ଗାଳମାଧବ ସେ ଦେଉଳକୁ ତିଆରି କରିଛନ୍ତି ବୋଲି ଦାବୀ କଲେ । ପରେ ବ୍ରହ୍ମା ଅନେକ ପ୍ରମାଣ ପାଇ ଇନ୍ଦ୍ରଦ୍ୟୁମ୍ନଙ୍କ ପକ୍ଷ ସାବ୍ୟସ୍ତ କଲେ । ବିଶ୍ୱାବସୁ ଶବରର ବଂଶଧରମାନେ 'ଦଇତା' ଓ ବିଦ୍ୟାପତି ବଂଶଧରମାନେ 'ପତି' ନାମରେ ଅଦ୍ୟାବଧି ଜଗନ୍ନାଥଙ୍କ ସେବକରୂପେ ଗଣ୍ୟ ।

ମତାନ୍ତରେ ଜଗନ୍ନାଥଙ୍କୁ 'ବୌଦ୍ଧାବତାର' ବୋଲାଯାଏ । ତାଙ୍କର ଗଠନ ପୁରାଣୋକ୍ତ କୌଣସି ଦେବାଦେବୀଙ୍କ ବର୍ଣ୍ଣନା ଓ ଧ୍ୟାନର ଅନୁରୂପ

ନ ହେବାରୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ସ୍ଥିର କରିଅଛନ୍ତି ଯେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରୂପ ବୌଦ୍ଧମାନଙ୍କର ତ୍ରିପିଟକ ବୌଦ୍ଧ, ଧର୍ମ ଓ ସଙ୍ଘର ଚିହ୍ନ। ଜଗନ୍ନାଥଙ୍କୁ ବୌଦ୍ଧ ଅବତାରରୂପେ ସ୍ୱୀକାର କରି ଉତ୍କଳୀୟ ପ୍ରତିଭା ବୌଦ୍ଧ ଓ ବୈଷ୍ଣବଧର୍ମ ମତର ସମନ୍ୱୟ ସମ୍ପାଦନ କରି ହିନ୍ଦୁଧର୍ମକୁ ସାର୍ବଜନୀନ ଧର୍ମରେ ପରିଣତ କରିଅଛି ଓ ଜଗନ୍ନାଥଙ୍କ ଭୋଗ, ମହାପ୍ରସାଦ ସେବନରେ ଜାତିଭେଦ ରଖିନାହିଁ। ଫଳତଃ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀଠାରୁ ୬୦୦ ବର୍ଷ ମଧ୍ୟରେ ବୌଦ୍ଧଧର୍ମର ମହାଯାନ ଶାଖା, ବୈଷ୍ଣବ ଧର୍ମଭାବ ସଙ୍ଗେ ମିଶି ଯାଇଥିଲା। ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ନିମ୍ବକାଠ ନିର୍ମିତ ଓ ଏ ମୂର୍ତ୍ତିମାନ ସାଧାରଣତଃ ୧୨ ବର୍ଷରେ ଥରେ ବଦଳାଯାନ୍ତି। ଉକ୍ତ ଦାରୁବ୍ରହ୍ମ ମୂର୍ତ୍ତି ମଧ୍ୟରେ ଯେଉଁ ବ୍ରହ୍ମ ପଦାର୍ଥ ସ୍ଥାପିତ, ପାଟକନାରେ ଗୁଡ଼ାଇହୋଇ ରହିଥିବା ଜନଶ୍ରୁତି ଅଛି ତାହା ବୁଦ୍ଧଦେବଙ୍କ ଦାନ୍ତ ବୋଲି କେତେ ପଣ୍ଡିତ ମନେକରନ୍ତି। ପୂର୍ବେ ଏଥିଯୋଗୁଁ ପୁରୀର ନାମ ଦନ୍ତପୁର ଥିଲା। ଜଗନ୍ନାଥଙ୍କ ରଥଯାତ୍ରା ବୌଦ୍ଧମାନଙ୍କ ଯାତ୍ରାର ଅନୁକରଣ ବୋଲି ପଣ୍ଡିତମାନେ କହନ୍ତି। ପୁରୀରୁ ବୁଦ୍ଧଙ୍କ ଦାନ୍ତ ସିଂହଳକୁ ପଠାଯାଇଥିବା କଥା ମଧ୍ୟ କେହି କେହି କହନ୍ତି। ପରେ ଅନଙ୍ଗଭୀମଦେବ ଇନ୍ଦ୍ରଦ୍ୟୁମ୍ନଙ୍କ ଜୀର୍ଣ୍ଣ ଦେଉଳକୁ ଭାଙ୍ଗି ନୂଆ ଦେଉଳ କଲେ ଓ ପରବର୍ତ୍ତୀ ରାଜାମାନେ ତାହାର ସଂସ୍କାର କଲେ। ଜଗନ୍ନାଥ ମନ୍ଦିରର ପ୍ରଥମ ରଚୟିତା—ରାଜା ଇନ୍ଦ୍ରଦ୍ୟୁମ୍ନ, ଦ୍ୱିତୀୟ ରଚୟିତା—ରାଜା ଯଯାତିକେଶରୀ ଓ ତୃତୀୟ ରଚୟିତା—ରାଜା ଅନଙ୍ଗଭୀମଦେବ। (ଭାଷାକୋଷ)

**ଜଟାୟୁ**—ସମ୍ପାତି ସାରଥି ଅରୁଣଙ୍କ ପୁତ୍ର। (ଅରୁଣ ଦେଖ) ଅଯୋଧ୍ୟାଧିପତି ମହାରାଜ ଦଶରଥଙ୍କ ସହିତ ଏହାଙ୍କର ସଖ୍ୟ ଥିଲା। ସୀତାହରଣ ସମୟରେ ଜଟାୟୁ ସୀତାଦେବୀଙ୍କ କ୍ରନ୍ଦନ ଶୁଣି ବ୍ୟଥିତ ହୋଇ ରାବଣର ଗତିରୋଧ କରିଥିଲେ। ମାତ୍ର ରାକ୍ଷସରାଜର ଅସ୍ତ୍ରାଘାତରେ ମୃତପ୍ରାୟ ହେଲେ। ରାବଣ ସୀତାଙ୍କୁ ଧରି ଲଙ୍କାକୁ ପ୍ରସ୍ଥାନ କଲା। ଜଟାୟୁ ରାମଙ୍କୁ ସୀତାହରଣ ସମ୍ବାଦ ଦେଇ ଦେହତ୍ୟାଗ କଲେ। ରାମଚନ୍ଦ୍ର ପିତୃ ସଖାଙ୍କ ମୃତ ଦେହର ଯଥାବିଧି ସତ୍କାର କଲେ। (ରାମାୟଣ, ଅରଣ୍ୟକାଣ୍ଡ)

**ଜଟାସୁର**—ରାକ୍ଷସ ବିଶେଷ। ଯୁଧିଷ୍ଠିରାଦି ବଦରିକାଶ୍ରମରେ ଅବସ୍ଥାନ କରିଥିବା ସମୟରେ ଏକଦା ଜଣେ ରାକ୍ଷସ ଦ୍ରୌପଦୀ ଅପହରଣ ଅଭିପ୍ରାୟରେ ମନ୍ତ୍ରୀଦକ୍ଷ, ସର୍ବଶାସ୍ତ୍ରଜ୍ଞ ଉତ୍କୃଷ୍ଟ ବ୍ରାହ୍ମଣ ବୋଲି ଆତ୍ମପରିଚୟ ପ୍ରଦାନ କରି

ପାଣ୍ଡବମାନଙ୍କ ସହିତ ମିଳିତ ହେଲା ଏବଂ ସ୍ୱାଭପ୍ରାପ୍ତ ସିଦ୍ଧି ନିମିତ୍ତ ଉପଯୁକ୍ତ ଅବସର ଅପେକ୍ଷା କରିବାକୁ ଲାଗିଲା । ଦିନେ ଭୀମସେନ ମୃଗୟାକୁ ଯାଇ-ଥିବାବେଳେ, ଏହି ଦୁଷ୍ଟ ରାକ୍ଷସ ଯୁଧିଷ୍ଠିର, ସହଦେବ ଓ ନକୁଳଙ୍କୁ ବନ୍ଧନ କରି ସେମାନଙ୍କ ସହିତ ଦ୍ରୌପଦୀଙ୍କୁ ଅପହରଣ କରିନେଲା । ଭୀମସେନ ମୃଗୟାରୁ ଫେରିବା ସମୟରେ କୃଷ୍ଣା ଓ ଭାଇମାନଙ୍କୁ ଦେଖି ରାକ୍ଷସକୁ ଆକ୍ରମଣ କରି ବଧ କଲେ ଏବଂ ଭ୍ରାତା ଓ ଭାର୍ଯ୍ୟାଙ୍କୁ ମୁକ୍ତକରି ଫେରି ଆସିଲେ ।

(ମହାଭାରତ, ବନପର୍ବ)

**ଜଟିଳ** — ଜନୈକ କୃଷ୍ଣଭକ୍ତ ବାଳକ । ଏହାଙ୍କ ବିଷୟରେ ଅନେକ ପ୍ରକାର ଉପକଥା ଶୁଣାଯାଏ । ଏ ବାଳକଟିର ଭକ୍ତିରେ ବଶୀଭୂତ ହୋଇ ନିଜେ ଶ୍ରୀକୃଷ୍ଣ ଏହାଙ୍କ ସହିତ ଖେଳାଖେଳି କରୁଥିଲେ ଓ ବିପଦ ବେଳେ ଏହାଙ୍କୁ ସାହାଯ୍ୟ କରୁଥିଲେ ।

**ଜଟିଳା**—ଶ୍ରୀରାଧାଙ୍କ ଶାଶୁ ବୁଢ଼ୀ । ଜଟିଳାଙ୍କର ଏକମାତ୍ର କନ୍ୟାଙ୍କ ନାମ କୁଟିଳା । ଜଟିଳା କୃଷ୍ଣାନୁରାଗିଣୀ ଶ୍ରୀମତୀଙ୍କ ଚରିତ୍ର ଏକାନ୍ତ ଦୋଷଦୁଷ୍ଟ ବୋଲି ସନ୍ଦେହ କରିଥିଲେ । (କୃଷ୍ଣଲୀଳା) । ଗୌତମବଂଶୀୟା ଏକ ଋଷିକନ୍ୟାଙ୍କର ନାମ ମଧ୍ୟ ଜଟିଳା । (ହିନ୍ଦୀ ଶବ୍ଦସାଗର)

**ଜଡ଼ଭରତ**—ପ୍ରାଚୀନ କାଳରେ ଶାଳଗ୍ରାମ ନାମକ ସ୍ଥାନରେ ଭରତନାମକ ଏକ ରାଜା ବାନପ୍ରସ୍ଥ ଅବଲମ୍ବନ ପୂର୍ବକ ଭଗବାନଙ୍କଠାରେ ଚିତ୍ତ ସମର୍ପଣ କରି ରହିଥିଲେ । ଏହି ମହାଭାଗ ଅହିଂସାଦି ସଦ୍‌ଗୁଣ ଓ ଚିତ୍ତସଂଯମରେ ଅଶେଷ ଉନ୍ନତି ଲାଭ କରିଥିଲେ । ସେ ନିରନ୍ତର ଏପରିକି ସ୍ୱପ୍ନାବସ୍ଥାରେ ମଧ୍ୟ ଭଗବାନଙ୍କ ପବିତ୍ର ନାମ ଜପ କରୁଥିଲେ । ଏହି ଯୋଗରତ ରାଜା ସର୍ବଦା ଭଗବଦ୍‌ ଅର୍ଚ୍ଚନା ପାଇଁ ନାନା ପ୍ରକାର ପୁଷ୍ପ ସମିଧ ସଂଗ୍ରହ କରିବାକୁ ବଣକୁ ଯାଉଥିଲେ । ଦିନେ ରାଜା ସ୍ନାନାର୍ଥେ ନଦୀକୁ ଯାଇଥିଲେ । ସେଠାରେ ସ୍ନାନାଦି ନିତ୍ୟକର୍ମ ସମାପନ କରୁଛନ୍ତି, ଏପରି ସମୟରେ ଦେଖିଲେ ଏକ ଆସନ୍ନ ପ୍ରସବା ହରିଣୀ ତୃଷାର୍ତ୍ତ ହୋଇ ନଦୀକୁ ଆସୁଛି । ମୃଗୀ ଜଳପାନ କରି ଫେରିବାପାଇଁ ଉଦ୍ୟମ କରୁଥିବା ବେଳେ ହଠାତ୍ ଏକ ଭୟାନକ ସିଂହନାଦ ଶ୍ରୁତିଗୋଚର ହେଲା । ହରିଣୀ ସେ ଶବ୍ଦ ଶୁଣି ହଠାତ୍ ଲମ୍ଫ ପ୍ରଦାନ କଲା ଏବଂ ଉଚ୍ଚ ତୀର ଉପରକୁ ଉଠିବାକୁ ଚେଷ୍ଟା କଲା । ସେ ସମୟରେ ତାର ଗର୍ଭସ୍ଥ ଶିଶୁଟି ଭୂତଳରେ ପତିତ ହେଲା ଏବଂ ତଦ୍‌ଜନିତ ବାଧାରେ ମୃଗୀ ପ୍ରାଣ ତ୍ୟାଗ କଲା । ଶିଶୁଟି ନଦୀ ଜଳରେ ପଡ଼ି ଭାସି

ଯିବାବେଳେ ଭରତଙ୍କର ଦୃଷ୍ଟି ପଡ଼ିଲା । ସେ ତାକୁ ସେଠାରୁ ଉଦ୍ଧାର କରି ଆଶ୍ରମକୁ ନେଇ ଆସିଲେ । ସେହି ଦିନଠାରୁ ସେ ମୃଗଶିଶୁର ପରିଚର୍ଯ୍ୟାରେ ଲାଗିଲେ । ତାଙ୍କର ସମୁଦାୟ ଧର୍ମ କର୍ମ ଲୋପ ହେଲା । ସେ କେବଳ ମୃଗ ସମ୍ବନ୍ଧରେ ଚିନ୍ତା କରି କରି ମୃତ୍ୟୁ ମୁଖରେ ପଡ଼ିଲେ । ମୃତ୍ୟୁ ସମୟରେ ମୃଗଚିନ୍ତା କରିଥିବା ଯୋଗୁଁ ସେ ଏକ ଜାତସ୍ମର ମୃଗରୂପେ କାଳଞ୍ଜର ପର୍ବତରେ ପୁନର୍ବାର ଜନ୍ମଗ୍ରହଣ କଲେ । ପୂର୍ବଜନ୍ମ ବୃତ୍ତାନ୍ତ ମନରେ ପଡ଼ିବା ମାତ୍ରେ ମୃଗରୂପୀ ଭରତ ମାତାପିତାଙ୍କୁ ତ୍ୟାଗ କରି ପୁନର୍ବାର ଶାଳଗ୍ରାମ ନାମକ ସ୍ଥାନକୁ ଆସିଲେ । ନିଜ କର୍ମ ଦୋଷରୁ ସେ ପଶୁ ଯୋନିରେ ଜନ୍ମିଛନ୍ତି ଜାଣି ନିଜ ଆଶ୍ରମରେ ଶୁଷ୍କ ତୃଣାଦି ଭକ୍ଷଣ କରି ଅବସ୍ଥାନ କଲେ । ଯଥା ସମୟରେ ଦେହତ୍ୟାଗ କରିବା ପରେ ସେ ଏକ ବ୍ରାହ୍ମଣ ବଂଶରେ ଜନ୍ମ ଗ୍ରହଣ କଲେ । ପୁଣି ଯେପରି ଅଧୋଗତି ନହେବ ସେଥିଲାଗି ସେ ସଂସାର ପ୍ରତି ଅନାସକ୍ତ ହୋଇରହିଲେ । କାହା ସହିତ ଅଧିକ କଥାବାର୍ତ୍ତା କଲେ ନାହିଁ । ସେ ମନୁଷ୍ୟମାନଙ୍କ ସମକ୍ଷରେ ଆପଣାକୁ ଜଡ଼ ଓ ପାଗଳରୂପେ ପରିଚୟ ଦେଲେ । ଏଥିଲାଗି ସେ 'ଜଡ଼ ଭରତ' ନାମରେ ବିଖ୍ୟାତ ହୋଇଥିଲେ । ସେ ସର୍ବଦା ମଳିନ ବସ୍ତ୍ର ପରିଧାନ କରି ଦେହ ଅପରିଷ୍କୃତ ରଖୁଥିଲେ ଏବଂ ଦାନ୍ତ ମଧ୍ୟ ଘଷୁ ନଥିଲେ । ତାଙ୍କର ଗଭୀର ଶାସ୍ତ୍ରଜ୍ଞାନ ଥିଲା । ସେ କେବେହେଲେ ଗୁରୁଙ୍କଠାରୁ ଅଧ୍ୟୟନ କରୁନଥିଲେ ଏବଂ ଅସ୍ପଷ୍ଟ ଅଳ୍ପ ବାକ୍ୟ ବ୍ୟବହାର କରୁଥିଲେ । ଖଣ୍ଡ, ପରିବା, ବନର ଫଳମୂଳ ଯାହା କିଛି ତାଙ୍କର ଆହାର୍ଯ୍ୟ ଥିଲା । ତାଙ୍କର ସ୍ଥୂଳ ଶରୀର ଓ ଜଡ଼ ବୁଦ୍ଧି ଦେଖି ଲୋକେ ତାଙ୍କୁ ଯଥେଷ୍ଟ ଖାଇବାକୁ ଦେଇ ତାଙ୍କ ଦ୍ୱାରା ଅନେକ କାମ କରାଇ ନେଉଥିଲେ । ନଗରବାସୀମାନେ ତାଙ୍କୁ ନିର୍ବୁଦ୍ଧିଆ ଓ ପାଗଳ ଭାବି ଯଥେଷ୍ଟ ଅପମାନ ଦେଉଥିଲେ । ତାଙ୍କ ପିତାଙ୍କ ମୃତ୍ୟୁ ପରେ ଭାଇ ଓ ଭାଉଜ-ମାନେ ତାଙ୍କୁ ଯଥେଚ୍ଛ ବ୍ୟବହାର କରୁଥିଲେ । ଏକଦା ସୌବୀର-ରାଜ, ଶିବିକାରୋହଣ କରି ଇକ୍ଷୁମତୀ ନଦୀତୀରସ୍ଥ କପିଳାଶ୍ରମକୁ ଗମନ କରୁଥିଲେ । ଦୁଃଖପୂର୍ଣ୍ଣ ସଂସାରରେ ମନୁଷ୍ୟ କଅଣ କରିବା ଉଚିତ ଏହି କଥା ବୁଝିବା ତାଙ୍କର ଉଦ୍ଦେଶ୍ୟ ଥିଲା । ରାଜାଙ୍କ ସାରଥିର କଥା ଅନୁସାରେ ବିନା ପାରିଶ୍ରମିକରେ ଜଡ଼ ଭରତ ଶିବିକା ବାହକର କାର୍ଯ୍ୟରେ ନିଯୁକ୍ତ ହେଲେ । ଅନ୍ୟାନ୍ୟ ଶିବିକାବାହୀମାନେ ଦ୍ରୁତ ଗତିରେ ଯାଉଥିବା ବେଳେ ଭରତଙ୍କ ଗତି ଶିଥିଳ ହେବାରୁ ଶିବିକାଟି ବିଷମ ଗତି ପ୍ରାପ୍ତ ହେଲା । ରାଜା ଏଥିଯୋଗୁଁ ଅସୁବିଧା ଭୋଗି କହିଲେ, 'ତୁମେତ ବେଶ୍ ରୋଟା ମୋଟା ହୋଇଛ, ଅଥଚ ଏତେ ଅଳ୍ପବାଟ ବୁଲିଆସି ହାଲିଆ ହୋଇଯାଉଛ

କାହିଁକି ?' ରାଜାଙ୍କ କଥା ଶୁଣି ଭରତଙ୍କର ବାକ୍‌ସ୍ଫୂର୍ତ୍ତି ହେଲା । ସେ କହିଲେ—'ମୁଁ ସ୍ଥୂଳମୋଟା ନୁହେଁ, ମୁଁ ମଧ୍ୟ ଆପଣଙ୍କ ଶିବିକା ବହନ କରି ନାହିଁ କିମ୍ବା ମୁଁ ମଧ୍ୟ କ୍ଲାନ୍ତ ବୋଧ କରୁନାହିଁ ।' ସୌବୀର ରାଜା ତାଙ୍କ ଏ ସମସ୍ତ କଥାର ମର୍ମ ପଚାରିଲେ । ଭରତ କହିଲେ—'ମୁଁ ଆତ୍ମା, ଆତ୍ମା ଦେହ ନୁହେଁ । ଆତ୍ମାର କ୍ଷୟ ବୃଦ୍ଧି ନାହିଁ । ଆତ୍ମା ଏକ ଅକ୍ଷୟ, ନିର୍ଗୁଣ, ଶାନ୍ତମୟ ଓ ପ୍ରକୃତିରୁ ଭିନ୍ନ । ସୁତରାଂ ମୁଁ ସ୍ଥୂଳ ନୁହେଁ କି କ୍ଲାନ୍ତ ନୁହେଁ । ଯେହେତୁ ମୁଁ ଶାନ୍ତମୟ । ମୁଁ ଶିବିକା ବହନ କରି ନାହିଁ । ଯେହେତୁ ଶିବିକା କାଷ୍ଠବିଶେଷ ଏବଂ ବୃକ୍ଷରୁ ଜାତ ହୋଇଛି । ଶିବିକାଟିକୁ କୁଠାର ଦ୍ୱାରା ହାଣି ଦେଲେ ତାହା ଖଣ୍ଡ ଖଣ୍ଡ ହୋଇ କାଷ୍ଠ ହୋଇଯିବ, ଆଉ ଶିବିକା ହୋଇ ରହିବ ନାହିଁ । ପୁଣି କାଷ୍ଠ ବୃକ୍ଷରୁ ଜନ୍ମେ । ସୁତରାଂ ମୁଁ ଯେ ଶିବିକା ବହନ କରିଛି ଏହା ସତ୍ୟ ନୁହେଁ ବରଂ ଶିବିକା ମୋତେ ବୋହିଛି ବୋଲି କହିଲେ ସତ୍ୟ ହେବ, ଯେହେତୁ ଯେଉଁ ପଞ୍ଚଭୂତରୁ ବୃକ୍ଷ ନିର୍ମିତ, ସେହି ପଞ୍ଚଭୂତହିଁ ମୋତେ ବହନ କରିଛି । କୁଠାର ଦ୍ୱାରା ଶିବିକା ଭେଦ କଲେ ଶିବିକା ଦେଖା ମିଳିବନାହିଁ, ଏହା କାଷ୍ଠ ଖଣ୍ଡ ମାତ୍ର । ସେହିପରି ମୋ ଦେହ ଅନ୍ୱେଷଣ କଲେ କେହି ମୋତେ ପାଇବେ ନାହିଁ ବରଂ ହସ୍ତପଦାଦି ଅବୟବମାନଙ୍କୁ ଦେଖିପାରିବେ । ମୁଁ ଦେହ ନୁହେଁ, ଦେହରୁ ଭିନ୍ନ ।'

ସୌବୀରରାଜ ଶିବିକାବାହୀ ବ୍ରାହ୍ମଣର ଏହି ଜ୍ଞାନଗର୍ଭ ନୀତିପୂର୍ଣ୍ଣ ଉପଦେଶ ଓ ପରମାର୍ଥ ତତ୍ତ୍ୱ ଶୁଣି ଅତିଶୀଘ୍ର ଶିବିକାରୁ ଓହ୍ଲାଇ ତାଙ୍କର ପାଦଧରି କ୍ଷମା ମାଗିଲେ । ସଙ୍ଗେ ସଙ୍ଗେ ବ୍ରାହ୍ମଣଙ୍କୁ କହିଲେ—'ଆପଣ କିଏ ? ଏପରି କଦାକାର ବେଶ ଧରିଛନ୍ତି କାହିଁକି ? ପୁଣି ଏଠାକୁ ଆସିବାର କାରଣ ବା କଣ ?' ବ୍ରାହ୍ମଣ ଉତ୍ତର ଦେଲେ, 'ମୁଁ କିଏ, ଏହାର ଉତ୍ତର ଦେବା ବଡ଼ କଠିନ କଥା । ତେବେ ହେଲେ ମଧ୍ୟ ଉପଲକ୍ଷ ନିମିତ୍ତ ମୁଁ ସଂସାର ବିଚରଣ କରୁଅଛି, ଏ କଥା ସତ୍ୟ । ମୁଁ ଆତ୍ମା, ଆତ୍ମା ଦେବ, ମାନବ, ପଶୁ, ବା ଅସୁର ନୁହେଁ । କେବଳ କର୍ମ ଭୋଗ ପାଇଁ ଏହା ଶରୀରବଦ୍ଧ ଭୋଗ ହୋଇପାରେ । ଧର୍ମ ଓ ଅଧର୍ମରୁ ସୁଖ ଦୁଃଖର ଉତ୍ପତ୍ତି ହୁଏ ଏବଂ କର୍ମଜନିତ ଭୋଗ ନିମିତ୍ତ ଜୀବ ବା ଆତ୍ମା ଦେହ ଧାରଣ କରିଥାଏ । ଅତଏବ କର୍ମଜନିତ ସୁଖ ଦୁଃଖ ଭୋଗପାଇଁ ଏଠାକୁ ମୋର ଆଗମନ । ସେଥିପାଇଁ କିଛି କାରଣ ନାହିଁ ।' ଏହିପରି ବହୁ ପ୍ରକାର ପରମାର୍ଥ ତତ୍ତ୍ୱ ସମ୍ବନ୍ଧେ ଉପଦେଶ ଲାଭ କରି ରାଜା ଭେଦଜ୍ଞାନ ପରିତ୍ୟାଗ କରିଥିଲେ ଏବଂ ଏହି ବ୍ରାହ୍ମଣରୂପୀ ଜଡ଼ ଭରତ ମଧ୍ୟ ପୂର୍ବଜନ୍ମ ସ୍ମରଣ ପୂର୍ବକ ଜ୍ଞାନ ଲାଭ କରି ଏହି ଜନ୍ମରେ ମୋକ୍ଷ ଲାଭ କଲେ । (ବିଷ୍ଣୁପୁରାଣ)

ଭରତ ବୋଲି ଆଉ ଜଣେ ରାଜା ଥିଲେ । ତାଙ୍କ ଅଧିକୃତ ରାଜ୍ୟର ନାମ ଭାରତବର୍ଷ । ପ୍ରମାଣ ଯଥା—

'ତତଶ୍ଚ ଭାରତଂ ବର୍ଷଂ ଏତଲ୍ଲୋକେଷୁ ଗୀୟତେ ।
ଭରତାୟ ଯତଃ ପିତ୍ରାଦତ୍ତଂ ପ୍ରାତିଷ୍ଠତା ବନମ୍ ।'

ଭରତଙ୍କ ଜନକ ମହାରାଜ ଋଷଭ ବାନପ୍ରସ୍ଥ ଅବଲମ୍ବନ କରିବା ସମୟରେ ନିଜ ପୁତ୍ର ହସ୍ତରେ ଏହି ଦେଶ ଅର୍ପଣ କରିଯାଇଥିଲେ । ଏହି ହେତୁରୁ ଏହି ଭରତଶାସିତ ଦେଶକୁ ଭାରତବର୍ଷ ବୋଲିଯାଏ । ପୁରାଣମତେ ପୃଥିବୀ ସପ୍ତ ଦ୍ୱୀପରେ ବିଭକ୍ତ । ଏତନ୍ମଧ୍ୟରେ ଜମ୍ବୁଦ୍ୱୀପ ନାମକ ଭୂଖଣ୍ଡରେ ଅଗ୍ନୀଧ୍ର ନାମକ ଏକ ରାଜା ରାଜତ୍ୱ କରୁଥିଲେ । ଅଗ୍ନୀଧ୍ରଙ୍କର ନଅଗୋଟି ପୁତ୍ର ଥିଲେ, ଯଥା—ନାଭି, କିମ୍ପୁରୁଷ, ହରି, ଇଲାବୃତ, ରମ୍ୟ, ହିରଣ୍ମାନ୍, କୁରୁ, ଭଦ୍ରାଶ୍ୱ ଓ କେତୁମାଲ । ଏହି ନଅ ପୁତ୍ର ଜମ୍ବୁଦ୍ୱୀପକୁ ନଅ ଭାଗରେ ବିଭକ୍ତ କରି ରାଜତ୍ୱ କରିଥିଲେ ଏବଂ ସେମାନଙ୍କ ନାମାନୁସାରେ ସେହି ଶାସିତ ଭୂଖଣ୍ଡମାନଙ୍କ ନାମିତ କରିଥିଲେ । ସେହିଦିନଠାରୁ ନାଭିବର୍ଷ, କିମ୍ପୁରୁଷ ବର୍ଷ, ଇତ୍ୟାଦି ନଅଟି ନାମର ସୃଷ୍ଟି ହେଲା । ନାଭିଙ୍କ ପୁତ୍ର ଋଷଭ । ଋଷଭଙ୍କର ବହୁତରଗୁଡ଼ିଏ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ଭରତ ସର୍ବଶ୍ରେଷ୍ଠ ଓ ଜ୍ୟେଷ୍ଠ । ଋଷଭ ଜ୍ୟେଷ୍ଠ ପୁତ୍ରଙ୍କ ହସ୍ତରେ ରାଜ୍ୟ ସମର୍ପଣ କରି ବନଗମନ କଲେ । ସେହି ଦିନଠାରୁ ତାଙ୍କ ଶାସିତ ରାଜ୍ୟ ଭାରତବର୍ଷ ହୋଇରହିଛି । (ଭରତ ଦେଖ)

**ଜନକ**—ବିଦେହ ବା ମିଥିଳାର ରାଜା । ଏହି ବଂଶର ପୂର୍ବପୁରୁଷ ନିମି । ନିମିଙ୍କ ପୁତ୍ର ମିଥି । ଏହି ମିଥିଙ୍କ ନାମାନୁସାରେ ବିଦେହର ନାମ ମିଥିଳା ହୋଇଥିଲା । ମିଥିଙ୍କ ପୁତ୍ର ଜନକ । ଏହି ଜନକଙ୍କଠାରୁ ତଦ୍‌ବଂଶୀୟ ରାଜାମାନେ 'ଜନକ' ଏହି ଉପନାମେ ନାମିତ ହୋଇଥିଲେ । ସୀତାଦେବୀଙ୍କ ପିତାଙ୍କ ନାମ ସୀରଧ୍ୱଜ ଜନକ । ସୀରଧ୍ୱଜଙ୍କ କନିଷ୍ଠ ଭ୍ରାତା କୁଶଧ୍ୱଜ । କୁଶଧ୍ୱଜ ଜନକ ଭରତ ଓ ଶତ୍ରୁଘ୍ନଙ୍କ ଶ୍ୱଶୁର । (ରାମାୟଣ-ଆଦିକାଣ୍ଡ, କୁଶଧ୍ୱଜ ଦେଖ)

**ଜନଦେବ**—ମିଥିଳାର ରାଜା । ଏହାଙ୍କ ସଭାରେ ନାନାବିଧ ଉପାସନାମାର୍ଗ ପ୍ରଦର୍ଶକ ବହୁ ଦାର୍ଶନିକ ପଣ୍ଡିତ ନିରନ୍ତର ବାସ କରିଥିଲେ । ଏହି ସମୁଦାୟ ପଣ୍ଡିତମାନଙ୍କ ମଧ୍ୟରେ କେତେକ ଲୋକାୟତ ମତବାଦୀ ଥିଲେ । ସେମାନଙ୍କ ମଧ୍ୟରୁ କେହି କେହି ଦେହ ଧ୍ୱଂସ ହେବା ସଙ୍ଗେ ସଙ୍ଗେ ଆତ୍ମାର ଧ୍ୱଂସ ହୁଏ

ବୋଲି ସ୍ୱୀକାର କରୁଥିଲେ । କେହି କେହି ଦେହକୁ ଅବିନାଶୀ ବୋଲି ମଧ୍ୟ ଜ୍ଞାନ କରୁଥିଲେ । ରାଜା ଏଥିଲାଗି ପଣ୍ଡିତମାନଙ୍କ ପ୍ରତି ଅସନ୍ତୁଷ୍ଟ ହେଉଥିଲେ । ରାଜା ପରଲୋକ, ପୁନର୍ଜନ୍ମ, ଆତ୍ମତତ୍ତ୍ୱ ପ୍ରଭୃତି ବିଷୟରେ ସୁମୀମାଂସାରେ ଉପନୀତ ହୋଇ ନପାରି ମାନସିକ ଅଶାନ୍ତିରେ କାଳ କଟାଉଥିଲେ । ଏକଦା କପିଳାଙ୍କ ପୁତ୍ର ମହାମୁନି ପଞ୍ଚଶିଖ ସମଗ୍ର ପୃଥିବୀ ପର୍ଯ୍ୟଟନ ପୂର୍ବକ ମିଥିଳାରେ ଉପସ୍ଥିତ ହେଲେ । ପଞ୍ଚଶିଖ କପିଳା ନାମ୍ନୀ କୌଣସି ବ୍ରାହ୍ମଣୀର ସ୍ତନ୍ୟପାନ କରି ତାହାର ପୁତ୍ରତ୍ୱ ସ୍ୱୀକାର କରିଥିଲେ । ଏଥିଲାଗି ସେ କପିଳାପୁତ୍ର ବା କପିଳ ନାମରେ ଖ୍ୟାତ ହୋଇଥିଲେ । ରାଜା ଜନଦେବ ପଞ୍ଚଶିଖାଚାର୍ଯ୍ୟଙ୍କ ନିକଟରୁ ମୋକ୍ଷ ତତ୍ତ୍ୱଜ୍ଞାନ ଲାଭ କରି ମନୁଷ୍ୟଭୋଗ୍ୟ ସକଳ ବସ୍ତୁ ତ୍ୟାଗ କରି ମୁକ୍ତି ଲାଭ କଲେ । (ମହାଭାରତ-ଶାନ୍ତିପର୍ବ)

**ଜନମେଜୟ**—(୧) ପୁରୁଙ୍କ ପୁତ୍ର ଓ ଯଯାତିଙ୍କ ପୌତ୍ର । ଏହି ଜନମେଜୟଙ୍କ ପୁତ୍ର ପ୍ରଚିନ୍ୱନ୍ତ ନିଜ ବାହୁବଳରେ ସମଗ୍ର ପୂର୍ବଦିଗ୍‌ଭାଗ ଜୟ କରିଥିଲେ ।
(ହରିବଂଶ)

(୨) ରାଜା ପରୀକ୍ଷିତଙ୍କ ପୁତ୍ର ଓ ତୃତୀୟ ପାଣ୍ଡବ ଅର୍ଜୁନଙ୍କ ପ୍ରପୌତ୍ର । ରାଜା ପରୀକ୍ଷିତ ସର୍ପ ଦଂଶନରେ ପ୍ରାଣତ୍ୟାଗ କରିଥିଲେ । ଏଥିଲାଗି ତଦୀୟ ପୁତ୍ର ଜନମେଜୟ ସର୍ପକୁଳ ନିର୍ମୂଳ କରିବା ଅଭିପ୍ରାୟରେ ସର୍ପଯଜ୍ଞ ଅନୁଷ୍ଠାନ କଲେ । ପରୀକ୍ଷିତହନ୍ତା ତକ୍ଷକ ପ୍ରାଣ ଭୟରେ ଇନ୍ଦ୍ରଙ୍କ ଶରଣ ନେଲେ । ସର୍ପଯଜ୍ଞ ନିବାରଣ ନିମିତ୍ତ ନାଗରାଜ ବାସୁକି ନିଜର ଭଉଣୀ ଓ ଜରତ୍କାରୁ ମୁନିଙ୍କ ପୁତ୍ର ଆସ୍ତିକ ମହର୍ଷିଙ୍କୁ ଜନମେଜୟଙ୍କ ନିକଟକୁ ପଠାଇଲେ । ଆସ୍ତିକ ଜନମେଜୟଙ୍କ ସର୍ପ ଯଜ୍ଞର ଭୂୟସୀ ପ୍ରଶଂସା କଲେ । ଜନମେଜୟ କହିଲେ ଯଦି ଇନ୍ଦ୍ର ତକ୍ଷକକୁ ଛାଡୁନାହାନ୍ତି ତେବେ ଦେବରାଜଙ୍କ ସହିତ ତକ୍ଷକ ଏହି ଯଜ୍ଞ କୁଣ୍ଡରେ ପଡି ଭସ୍ମୀଭୂତ ହୁଅନ୍ତୁ । ପୁରୋହିତମାନେ ସେହି ବ୍ୟବସ୍ଥା କଲେ । ଇନ୍ଦ୍ର ଓ ତକ୍ଷକ ଉଭୟେ ଯଜ୍ଞ କୁଣ୍ଡ ପ୍ରତି ଆକୃଷ୍ଟ ହୋଇ ଆସିଲେ । ଇନ୍ଦ୍ର ବାଧ ହୋଇ ତକ୍ଷକଙ୍କୁ ପରିତ୍ୟାଗ କରନ୍ତେ ଆସ୍ତିକ ବେଦଧ୍ୱନି ଦ୍ୱାରା ଜନମେଜୟଙ୍କ ସନ୍ତୋଷ ବିଧାନ କରି ସର୍ପଯଜ୍ଞ ବନ୍ଦ କରାଇଦେଲେ । ଏହିପରି ଆସ୍ତିକଙ୍କ ମାତୁଳ କୁଳର ରକ୍ଷା ହେଲା । ସେହି ଦିନଠାରୁ ଆସ୍ତିକଙ୍କୁ ସ୍ମରଣ କଲେ ସର୍ପାଘାତ ନିବାରିତ ହୁଏ ବୋଲି ଏକ ପ୍ରବଚନ ଅଛି ।

**ଜନଲୋକ**—ହିନ୍ଦୁ ଶାସ୍ତ୍ରୋକ୍ତ ସପ୍ତ ଭୁବନ ମଧ୍ୟରୁ ଏହା ମହଃଲୋକର ପରବର୍ତ୍ତୀ ଓ ତପଃଲୋକର ପୂର୍ବବର୍ତ୍ତୀ ଭୁବନ । ଏଥିରେ ବ୍ରହ୍ମାଙ୍କ ମାନସ-ପୁତ୍ର ଊର୍ଦ୍ଧ୍ୱରେତା ଋଷିମାନେ ବାସ କରନ୍ତି । (ଭୂଗୋଳକୋଷ)

**ଜନା**—ମାହିଷ୍ମତୀ ନଗରର ରାଜା ନୀଳଧ୍ୱଜଙ୍କ ମହିଷୀ, ଏହାଙ୍କ ପୁତ୍ରର ନାମ ପ୍ରବୀର ଓ କନ୍ୟାର ନାମ ସ୍ୱାହା । ଅଗ୍ନି ସ୍ୱାହାଙ୍କୁ ବିବାହ କରିଥିଲେ । ଜନାଙ୍କ ପରାମର୍ଶ ମତେ ପ୍ରବୀର ପାଣ୍ଡବମାନଙ୍କ ଅଶ୍ୱମେଧ ଯଜ୍ଞର ଯଜ୍ଞାଶ୍ୱ ବନ୍ଧନ କରି ରଖିଥିଲେ । ଶ୍ରୀକୃଷ୍ଣଙ୍କ ସାହାଯ୍ୟରେ ବହୁକଷ୍ଟରେ ଅର୍ଜୁନ ପ୍ରବୀରଙ୍କୁ ପରାସ୍ତ ଓ ନିହତ କଲେ । ପୁତ୍ର ଶୋକାତୁର ଜନା ଗଙ୍ଗାରେ ପ୍ରାଣ ବିସର୍ଜନ କରି ସଂସାର ଜ୍ୱାଳାରୁ ମୁକ୍ତିଲାଭ କଲେ । (ଜୈମିନୀ ଭାରତ)

**ଜମଦଗ୍ନି**—ମହର୍ଷି ଋଚୀକଙ୍କ ପୁତ୍ର (ଋଚୀକ ଦେଖ) । ଏ ଜଣେ ବୈଦିକ ଋଷି । ଋଗ୍‌ବେଦ ସୂକ୍ତ ପାଠ କଲେ ଦେଖାଯାଏ ଯେ ବିଶ୍ୱାମିତ୍ର ଓ ଜମଦଗ୍ନି ଉଭୟେ ବଶିଷ୍ଠଙ୍କ ପ୍ରତିପକ୍ଷ । ଜମଦଗ୍ନି, ରାଜା ପ୍ରସେନଜିତ୍‌ଙ୍କ କନ୍ୟା ରେଣୁକାଙ୍କୁ ବିବାହ କରିଥିଲେ । ଏହାଙ୍କ ଗର୍ଭରୁ ଜମଦଗ୍ନିଙ୍କର ପାଞ୍ଚପୁତ୍ର ଜନ୍ମ ହେଲେ । ଯଥା—ରୁମ୍‌ଣ୍ୱାନ୍, ସୁଷେଣ, ବସୁ, ବିଶ୍ୱାବସୁ ଓ ରାମ (ପରଶୁରାମ) । ପରଶୁରାମ ସବୁ ସାନ ହେଲେ ମଧ୍ୟ ଗୁଣରେ ସମସ୍ତଙ୍କ ଅପେକ୍ଷା ଜ୍ୟେଷ୍ଠ ଥିଲେ । (ମହାଭାରତ ବନପର୍ବ) କାହାରି କାହାରି ମତରେ ଏହି ପୁତ୍ରଙ୍କ ନାମ ଥିଲା—ନୀଳ ରାମ, ହଳୀ ରାମ, ବଳରାମ ଓ ପରଶୁରାମ ।

ଏକଦା ଜମଦଗ୍ନିଙ୍କ ପତ୍ନୀ ରେଣୁକା ସ୍ନାନାର୍ଥେ ଗମନ କରି ଦେଖିଲେ ରାଜା ଚିତ୍ରରଥ ତାଙ୍କ ଭାର୍ଯ୍ୟାଙ୍କ ସହିତ ଜଳକ୍ରୀଡ଼ା ରତ ହୋଇଛନ୍ତି । ଏହା ଦେଖି ରେଣୁକା କାମାସକ୍ତ ହୋଇ ଚିତ୍ରରଥଙ୍କ ସହିତ ବ୍ୟଭିଚାରରେ ଲିପ୍ତ ହେଲେ । ଜମଦଗ୍ନି ସେହି ଅବସ୍ଥାରେ ପ୍ରତ୍ୟାଗତ ରେଣୁକାଙ୍କୁ ଦେଖି ତାଙ୍କ ଚରିତ୍ରରେ ସନ୍ଦିଗ୍ଧ ହୋଇ ପୁତ୍ରମାନଙ୍କୁ ମାତୃବଧ ନିମିତ୍ତ ଆଦେଶ ଦେଲେ । ପରଶୁରାମଙ୍କ ବ୍ୟତୀତ ଅନ୍ୟ ଭାଇମାନେ ମାତୃବଧ କରିବାକୁ ଅସମ୍ମତ ହେବାରୁ ପିତୃଶାପ ପ୍ରାପ୍ତ ହେଲେ । କେବଳ ପରଶୁରାମ କୁଠାର ଆଘାତରେ ମାତାଙ୍କ ମସ୍ତକ ଛେଦନ କଲେ । ଜମଦଗ୍ନି ପ୍ରୀତ ହୋଇ ତାଙ୍କୁ ବର ଯାଚିଲେ । ପରଶୁରାମ କହିଲେ—'ମୋର ମାଆ ଯେପରି ପାପମୁକ୍ତ ହେବେ ଓ ପୁଣି ଜୀଇଁ ଉଠିବେ ଆପଣ ତାହାର ବନ୍ଦୋବସ୍ତ କରିଦଅନ୍ତୁ । ପୁଣି ମୁଁ ଯେପରି ସମସ୍ତଙ୍କର ଅଜେୟ ହେବି ମୋତେ ସେପରି ବର ଦିଅନ୍ତୁ ।' ରେଣୁକା ପୁଣି

ଜାଁ ଉଠିଲେ ଏବଂ ତାଙ୍କର ଜଡ଼ ଭାବାପନ୍ନ ପୁତ୍ରମାନଙ୍କର ଜଡ଼ତ୍ୱ ଦୂର ହେଲା ।

ଜମଦଗ୍ନି ହୈହୟରାଜ କାର୍ତ୍ତିବୀର୍ଯ୍ୟଙ୍କ ଦ୍ୱାରା ନିହତ ହେଲେ । ପିତାଙ୍କ ମୃତ୍ୟୁର ପ୍ରତିଶୋଧ ନେବା ପାଇଁ ପରଶୁରାମ ଏକବିଂଶବାର ପୃଥିବୀ ନିକ୍ଷତ୍ରିୟା କଲେ । ଏତେ ଯତ୍ନ କରି ମଧ୍ୟ ପରଶୁରାମ କ୍ଷତ୍ରିୟମାନଙ୍କୁ ନିର୍ମୂଳ କରି ପାରିଲେ ନାହିଁ । କେତେକ କ୍ଷତ୍ରିୟ ପତ୍ନୀବିଶେଷ ଯତ୍ନ କରି ନିଜ ନିଜ ପୁତ୍ରମାନଙ୍କୁ ରକ୍ଷା କରିଥିଲେ । ପୌରବରାଜଙ୍କ ଜ୍ଞାତି ବିଦୂରଥଙ୍କ ପୁତ୍ର ଋକ୍ଷବାନ୍ ପର୍ବତରେ ଭାଲୁମାନଙ୍କ ଯତ୍ନରେ ରକ୍ଷିତ ହୋଇଥିଲେ । ମହର୍ଷି ପରାଶର ସୌଦାସଙ୍କ ପୁତ୍ରକୁ ରକ୍ଷା କରିଥିଲେ । ଏହାଙ୍କ ନାମ ସର୍ବକର୍ମା । ପ୍ରତର୍ଦ୍ଦନଙ୍କ ପୁତ୍ର ମହାବଳ ଗୋଶାଳାରେ ଲୁଚି ରହିଲେ । ମହାରାଜ ଶିବିଙ୍କ ପୁତ୍ର ଗଉଡ଼ ଗୋଷ୍ଠରେ ଆତ୍ମରକ୍ଷା କରିଥିଲେ । ଦଶରଥଙ୍କ ପୁତ୍ର ଓ ଦାଧି-ବାହନଙ୍କ ପୌତ୍ର ମହର୍ଷି ଗୌତମ କର୍ତ୍ତୃକ ରକ୍ଷିତ ହୋଇଥିଲେ । ପ୍ରଭୂତ ଅର୍ଥବଳସମ୍ପନ୍ନ ରାଜା ବୃହଦ୍ରଥ ଗୃଧ୍ରକୂଟ ପର୍ବତରେ ଗୋଲାଙ୍ଗୁଳା ଜାତୀୟ ବାନରଙ୍କ ଦ୍ୱାରା ରକ୍ଷିତ ହୋଇଥିଲେ । ମରୁତ୍ତବଂଶୀୟ ବହୁ ସଂଖ୍ୟକ କ୍ଷତ୍ରିୟ ସମୁଦ୍ର ଭିତରେ ଲୁଚି ରହିଥିଲେ ଏବଂ ସେମାନେ କେଶ ପରିବର୍ତ୍ତନ କରି ସ୍ଥପତି ଓ ସ୍ୱର୍ଣ୍ଣକାରମାନଙ୍କ ଆଶ୍ରୟରେ ରହିଲେ । ମହର୍ଷି କଶ୍ୟପ ଏହି ସକଳ କ୍ଷତ୍ରିୟ ରାଜକୁମାର ଓ ସେମାନଙ୍କ ପୁତ୍ର, ପୌତ୍ରମାନଙ୍କୁ ଆଣି ରାଜ୍ୟରେ ଅଭିଷିକ୍ତ କରାଇଥିଲେ ।

ମହର୍ଷି ଜମଦଗ୍ନି ଗୋତ୍ର ପ୍ରବର୍ତ୍ତକ ଋଷିମାନଙ୍କ ମଧ୍ୟରେ ଅନ୍ୟତମ ।

(ମହାଭାରତ-ଶାନ୍ତିପର୍ବ)

ପ୍ରମାଣ ଯଥା –

"ଜମଦଗ୍ନିର୍ଭରଦ୍ୱାଜୋ ବିଶ୍ୱାମିତ୍ରାତ୍ରିଗୋତମାଃ ।
ବଶିଷ୍ଠକାଶ୍ୟପାଗସ୍ତ୍ୟମୁନୟୋ ଗୋତ୍ରକାରିଣଃ ।"

(ମନୁ ସଂହିତା)

**ଜୟ**—ଏହାଙ୍କର ଜନୈକ ସହୋଦର ବିଜୟ । ଏ ଦୁଇ ସହୋଦର ବୈକୁଣ୍ଠର ଦ୍ୱାରରକ୍ଷକ । ଏକଦା ଏ ଦୁହେଁ ସନକାଦି ଋଷିମାନଙ୍କୁ ବ୍ରହ୍ମଦର୍ଶନରେ ବାଧା ଦେବାରୁ ସେମାନଙ୍କ ଦ୍ୱାରା ଅଭିଶପ୍ତ ହୋଇଥିଲେ । କିନ୍ତୁ ଏମାନଙ୍କ ଅନୁନୟରେ ଋଷିମାନେ ପ୍ରୀତ ହୋଇ କହିଲେ – 'ଆମ୍ଭମାନଙ୍କର ଶାପ ବ୍ୟର୍ଥ

ହେବନାହିଁ । ତେବେ ତୁମ୍ଭେମାନେ ଦୁଇପ୍ରକାର ମୁକ୍ତିରୁ ଯେ କୌଣସି ପ୍ରକାର ମୁକ୍ତି ପାଇ ପାର । ତୁମ୍ଭେମାନେ ବିଷ୍ଣୁଙ୍କ ସହିତ ଶତ୍ରୁତା କରି ମୁକ୍ତି ଲାଭ କରି ପାର, ଅଥବା ତାଙ୍କ ସହିତ ମିତ୍ରତା କରି ମୁକ୍ତ ହୋଇପାର । ଜୟ, ବିଜୟ ଶୀଘ୍ର ମୁକ୍ତିକାମୀ ହୋଇ ବିଷ୍ଣୁଙ୍କ ଶତ୍ରୁତାଚରଣ କରିବା ଉଚିତ ମନେ କରିଥିଲେ । ମୁନିଗଣ ତଥାସ୍ତୁ ଉଚ୍ଚାରଣ କରି ଅନ୍ତର୍ହିତ ହେଲେ । ମୁନିମାନଙ୍କ ଶାପରୁ ସତ୍ୟ ଯୁଗରେ ଜୟ ହିରଣ୍ୟାକ୍ଷ, ତ୍ରେତା ଯୁଗରେ ରାବଣ, ଦ୍ୱାପର ଯୁଗରେ ଶିଶୁପାଳ, ଏବଂ ବିଜୟ ସତ୍ୟ ଯୁଗରେ ହିରଣ୍ୟକଶିପୁ, ତ୍ରେତାରେ କୁମ୍ଭକର୍ଣ୍ଣ, ଦ୍ୱାପରରେ ଦନ୍ତବକ୍ର ହୋଇ ଜନ୍ମି ବିଷ୍ଣୁଙ୍କ ସହ ଶତ୍ରୁତାଚରଣ କରି ତାଙ୍କରି ଦ୍ୱାରା ନିହତ ହେଲେ । ପୁଣି ସେମାନେ ବୈକୁଣ୍ଠର ଦ୍ୱାରପାଳ ହୋଇରହିଲେ ।

**ଜୟଦ୍ରଥ**—ସିନ୍ଧୁ ଦେଶର ରାଜା । ଦୁର୍ଯ୍ୟୋଧନଙ୍କ ଭଗିନୀ ଦୁଃଶଳାଙ୍କୁ ଜୟଦ୍ରଥ ବିବାହ କରିଥିଲେ । ଏହାଙ୍କ ପିତାଙ୍କ ନାମ ସୁରଥ । ବୃଦ୍ଧକ୍ଷତ୍ର ବୋଲି ଏହାଙ୍କର ଅନ୍ୟ ଏକ ନାମଥିଲା । ପାଣ୍ଡବମାନେ କାମ୍ୟକ ବନରେ ଥିବାବେଳେ ଥରେ ଜୟଦ୍ରଥ ଦ୍ରୌପଦୀଙ୍କୁ ଅପହରଣ କରି ନେଇ ଆସିବା ପାଇଁ ବିଚାର କଲେ । ପାଣ୍ଡବମାନେ କେହି ପର୍ଣ୍ଣ କୁଟୀରରେ ନଥିବା ବେଳେ ସେ ବଳପୂର୍ବକ ଦ୍ରୌପଦୀଙ୍କୁ ନେଇ ଆସିଲେ । ମହା ବଳଧାରୀ ଭୀମ ଏହା ଦେଖି ତାଙ୍କୁ ପରାସ୍ତ କରି ଦ୍ରୌପଦୀଙ୍କୁ ଉଦ୍ଧାର କରିନେଲେ । ଅର୍ଜୁନ ଓ ଭୀମଙ୍କ ଦ୍ୱାରା ଜୟଦ୍ରଥ ଯଥେଷ୍ଟ ରୂପେ ଅପମାନିତ ଓ ଲାଞ୍ଛିତ ହୋଇଥିଲେ । ସେମାନେ ଜୟଦ୍ରଥଙ୍କ ଚୁଟି କାଟି ମୁଣ୍ଡ ଲଣ୍ଡା କରି ଛାଡିଦେଲେ । ଏହି ଅପମାନର ପ୍ରତିଶୋଧ ନେବାପାଇଁ ଜୟଦ୍ରଥ କଠିନ ତପସ୍ୟା ଆରମ୍ଭ କଲେ । ସେ ବୈରାଗ୍ୟ ବସ୍ତୁରୁ ଇନ୍ଦ୍ରିୟମାନଙ୍କୁ ନିବୃତ୍ତ ରଖି ଦେବ ଦେବ ମହାଦେବଙ୍କ ଆରାଧନାରେ ନିଯୁକ୍ତ ରହିଲେ । ମହାଦେବ ତାଙ୍କ ସ୍ତବରେ ସନ୍ତୁଷ୍ଟ ହୋଇ ତାଙ୍କୁ ବର ଯାଚିଲେ । ଜୟଦ୍ରଥ କହିଲେ—'ମୁଁ ଏକାକୀ ରଥାରୂଢ଼ ହୋଇ ଯେପରି ପାଣ୍ଡବମାନଙ୍କୁ ପରାସ୍ତ କରିପାରିବି, ମୋତେ ସେହି ବର ଦିଅନ୍ତୁ ।' ମହାଦେବ କହିଲେ—'ତୁମ୍ଭେ କେବଳ ଅର୍ଜୁନଙ୍କ ବ୍ୟତୀତ ଅନ୍ୟାନ୍ୟ ପାଣ୍ଡବମାନଙ୍କୁ ଦିନେ ହେଲେ ନିବାରଣ କରି ପାରିବ ।' ମହାଦେବ ଏହି ବର ଦେଇ ଅନ୍ତର୍ହିତ ହେଲେ । ମହାଦେବଙ୍କ ଏହି ବର ପ୍ରସାଦରୁ ଜୟଦ୍ରଥ ଅଭିମନ୍ୟୁ ବଧ ସମୟରେ ଦ୍ରୋଣ ନିର୍ମିତ ଚକ୍ରବ୍ୟୂହର ଦ୍ୱାର ରକ୍ଷାରେ ନିଯୁକ୍ତ ହୋଇ ଯୁଧିଷ୍ଠିର, ଭୀମ, ନକୁଳ ଓ ସହଦେବଙ୍କୁ ପରାଜିତ କରିପାରିଥିଲେ । ଏମାନଙ୍କ ମଧ୍ୟରୁ କେହି ହେଲେ ବ୍ୟୂହ ଭିତରେ ପ୍ରବେଶ କରି ପାରିଲେ ନାହିଁ

କମ୍ବା ଅଭିମନ୍ୟୁଙ୍କୁ ସାହାଯ୍ୟ ଦେଇ ପାରିଲେ ନାହିଁ । ଅର୍ଜୁନ ସଂଶପ୍ତକ-ମାନଙ୍କ ସହିତ ଯୁଦ୍ଧ କରୁଥିବାରୁ ଏ ଯୁଦ୍ଧରେ ଯୋଗ ଦେଇ ପାରି ନଥିଲେ । ସେ ପୁତ୍ରବଧ ବୃତ୍ତାନ୍ତ ଶ୍ରବଣ କରି ପ୍ରତିଜ୍ଞା କଲେ ଯେ ସୂର୍ଯ୍ୟାସ୍ତ ପୂର୍ବରୁ ସେ ନିଶ୍ଚୟ ଜୟଦ୍ରଥଙ୍କୁ ବଧ କରିବେ । ତାହା ଯଦି ନହୁଏ, ତେବେ ନିଜେ ଅଗ୍ନି ଜାଳି ପ୍ରାଣ ବିସର୍ଜନ କରିବେ । ଭଗବାନ ଶ୍ରୀକୃଷ୍ଣଙ୍କ ସାହାଯ୍ୟ ବଳରୁ ଅର୍ଜୁନ ଜୟଦ୍ରଥଙ୍କୁ ବଧ କଲେ । ଜୟଦ୍ରଥଙ୍କୁ ତାଙ୍କ ପିତା ଅଭୟ ଦେଇଥିଲେ, ଯେ ତାଙ୍କର ମସ୍ତକ ଭୂତଳରେ ନିକ୍ଷେପ କରିବ, ତାର ମୁଣ୍ଡ ଟିକି ଟିକି ହୋଇ ଶହେଖଣ୍ଡ ହୋଇଯିବ । ସେଥିଲାଗି ଅର୍ଜୁନ ଜୟଦ୍ରଥଙ୍କ ମୁଣ୍ଡ କାଟି ତାଙ୍କ ପିତା ତପସ୍ୟା କରୁଥିବା ସ୍ଥଳକୁ ପବନାସ୍ତ୍ରରେ ଉଡ଼ାଇ ନେଲେ ଏବଂ ସେହି ମୁଣ୍ଡଟିକୁ ତପସ୍ୟାରତ ପିତାଙ୍କ କୋଳରେ ପକାଇ ଦେଲେ । ଜୟଦ୍ରଥଙ୍କ ପିତା ତପସ୍ୟାରୁ ଉଠିବାବେଳେ ସେ ମୁଣ୍ଡଟି ତଳେ ପଡ଼ିଗଲା ଏବଂ ତାଙ୍କର ମୁଣ୍ଡଟି ଟିକି ଟିକି ହୋଇ ଶହେ ଖଣ୍ଡ ହୋଇଗଲା ।

(ମହାଭାରତ, ବନ ଓ ଦ୍ରୋଣ ପର୍ବ)

**ଜୟନ୍ତ**—(୧) ଅଯୋଧ୍ୟାଧିପତି ଦଶରଥଙ୍କର ଏକ ମନ୍ତ୍ରୀଙ୍କ ନାମ ।

(ରାମାୟଣ ଆଦିକାଣ୍ଡ)

(୨) ଦେବରାଜ ଇନ୍ଦ୍ରଙ୍କ ପୁତ୍ର । ପାରିଜାତ ହରଣ ସମୟରେ ଶଚୀ-ନନ୍ଦନ ଜୟନ୍ତଙ୍କ ସହିତ କୃଷ୍ଣପୁତ୍ର ପ୍ରଦ୍ୟୁମ୍ନଙ୍କର ଯୁଦ୍ଧ ହୋଇଥିଲା ।

(ହରିବଂଶ)

(୩) ବିରାଟ ଭବନରେ ଭୀମଙ୍କ ଛଦ୍ମ ନାମ ।

**ଜୟନ୍ତୀ**—(୧) ଇନ୍ଦ୍ରଙ୍କର କନ୍ୟାର ନାମ ।

(୨) ଦୁର୍ଗାଙ୍କର ନାମାନ୍ତର ।

(୩) ହିନ୍ଦୁମାନଙ୍କର ବ୍ରତ ବିଶେଷ । ଶିବରାତ୍ରି, ଜନ୍ମାଷ୍ଟମୀ, ନୃସିଂହ ଜନ୍ମ, ବାମନ ଜନ୍ମ, ରାମନବମୀ ଓ ମହାଷ୍ଟମୀ ଏଗୁଡ଼ିକୁ ଷଡ୍‌ଜୟନ୍ତୀ ବୋଲି କୁହାଯାଏ ।

**ଜରତ୍କାରୁ**—ନାଗରାଜ ବାସୁକିଙ୍କ ଭିଣୋଇ । ବାସୁକିଙ୍କ ଭଗିନୀ ନାମ ମଧ୍ୟ ଜରତ୍କାରୁ । ଏହାଙ୍କ ପୁତ୍ରର ନାମ ଆସ୍ତିକ, ଆସ୍ତିକଙ୍କ ମାତା ଜରତ୍କାରୁ ଦିନେ ଜରତ୍କାରୁଙ୍କୁ ସନ୍ଧ୍ୟା ହୋଇ ଯାଉଥିବା ଭୟରେ ନିଦରୁ ଉଠାଇ

ଦେଲେ । ଅସମୟରେ ନିଦ୍ରାଭଙ୍ଗ ଦୋଷରୁ ଜରତ୍କାରୁ ପତ୍ନୀଙ୍କୁ ତ୍ୟାଗକରି ପ୍ରସ୍ଥାନ କଲେ । ସେତେବେଳେ ଜରତ୍କାରୁ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ —'ତୁମେ କାନ୍ଦିବା ଉଚିତ୍ ନୁହେଁ । ତୁମର ଗର୍ଭରେ ଗୋଟିଏ ପୁତ୍ର ସନ୍ତାନ ଅଛି । "ଅଛି" ଏହି ପ୍ରକୃତ ଶବ୍ଦର "ସଂସ୍କୃତ" ହେଉଛି 'ଅସ୍ତି' । ଏହି ଅସ୍ତି ଶବ୍ଦରୁ ପୁତ୍ରର ନାମ ହେଲା ଆସ୍ତିକ ।

**ଜରା** —(୧) ରାକ୍ଷସୀ ବିଶେଷ । ଏହି ରାକ୍ଷସୀ ମଗଧରାଜ ଜରାସନ୍ଧଙ୍କ ଅର୍ଦ୍ଧ ଶରୀର ସଂଯୋଜିତ କରି ତାହାଙ୍କୁ ଜୀବିତ କରିଥିଲେ । (ଜରାସନ୍ଧ ଦେଖ) । ବ୍ରହ୍ମା ଏହାଙ୍କର ନାମ ଗୃହଦେବୀ ଦେଇଥିଲେ । ଏହି ଜରା ଷଷ୍ଠୀଦେବୀ ନାମରେ ପରିଚିତ । ଏହି ଗୃହଦେବୀଙ୍କ ମୂର୍ତ୍ତି ଘରେ ରଖିଲେ ଘର ଧନଧାନ୍ୟ ପୂର୍ଣ୍ଣ ହୁଏ । (ମହାଭାରତ ଆଦିପର୍ବ).

(୨) ଜଣେ ବ୍ୟାଧ । ଯଦୁବଂଶ ଧ୍ୱଂସ ପରେ କୃଷ୍ଣ ଯେତେବେଳେ ବୃକ୍ଷ ମୂଳରେ ଧ୍ୟାନମଗ୍ନ ଥିଲେ ସେତେବେଳେ ଏହି ବ୍ୟାଧ ମୃଗ ଭ୍ରମରେ ଶ୍ରୀକୃଷ୍ଣଙ୍କୁ ବାଣବିଦ୍ଧ କରି ବଧ କରିଥିଲେ । ପ୍ରବାଦ ଅଛି ପୂର୍ବ ଜନ୍ମରେ ଏହି ବ୍ୟାଧ କପିରାଜ ବାଲୀଙ୍କ ପୁତ୍ର ଅଙ୍ଗଦ ଥିଲେ । (ଶ୍ରୀମଦ୍‌ଭାଗବତ)

**ଜରାସନ୍ଧ**—ମଗଧର ବିଖ୍ୟାତ ରାଜା, ଏହାଙ୍କ ପିତାଙ୍କ ନାମ ବୃହଦ୍ରଥ । ରାଜା ବୃହଦ୍ରଥ ପୁତ୍ର ପ୍ରାପ୍ତି ଆଶାରେ ଚଣ୍ଡକୌଶିକଙ୍କର ଆରାଧନା କଲେ । ଚଣ୍ଡକୌଶିକ ତାଙ୍କ ଉପରେ ତୃପ୍ତ ହୋଇ ତାଙ୍କୁ ଗୋଟିଏ ଫଳ ଦେଲେ, ଏବଂ କହିଲେ ଏ ଫଳଟି ରାଣୀଙ୍କୁ ଖାଇବାକୁ ଦେଲେ ଗୋଟିଏ ପୁତ୍ର ଲାଭ ହେବ । ବୃହଦ୍ରଥଙ୍କର ଦୁଇଟି ରାଣୀ ଥିଲେ । ସେ ଦେବଦତ୍ତ ଫଳଟିକୁ ଦୁଇ ଭାଗକରି ଖାଇବାକୁ ଦେଲେ । ଉଭୟ ରାଣୀ ଅଧେ ଅଧେ ପୁଅ ପ୍ରସବ କଲେ । ରାଜା ଏ ଅସ୍ୱାଭାବିକ ସନ୍ତାନ ଦେଖି ସେହି ଦୁଇଖଣ୍ଡ ଯାକ ଶ୍ମଶାନରେ ଫିଙ୍ଗି ଦେବାକୁ ଆଦେଶ ଦେଲେ । ଏହି ଶ୍ମଶାନରେ ଜରା ନାମ୍ନୀ ଏକ ରାକ୍ଷସୀ ବାସ କରିଥିଲା । ସେ ଏହି ଦୁଇଖଣ୍ଡ ଶିଶୁକୁ ଯୋଡ଼ି ଗୋଟିଏ ପୂର୍ଣ୍ଣାବୟବ ବିଶିଷ୍ଟ ପୁତ୍ର ପ୍ରସ୍ତୁତ କରି ତାକୁ ଜୀବଦାନ କରିଥିଲା । ସେହି ଦିନଠାରୁ ଏହି ଶିଶୁର ନାମ ହେଲା ଜରାସନ୍ଧ । ରାକ୍ଷସୀ, ରାଜା ବୃହଦ୍ରଥଙ୍କୁ ଏହି ଶିଶୁ ଅର୍ପଣ କରି କହିଲା—'ମହାରାଜ, ଏ ଶିଶୁ ଏକ ପ୍ରବଳ ପରାକ୍ରମଶାଳୀ ରାଜା ହେବ । ଏହାର ସନ୍ଧିସ୍ଥଳ ଭିନ୍ନ ନ ହେଲେ ଏ ମରିବ ନାହିଁ ।' ଏହି ଜରାସନ୍ଧର ଦୁଇଟି କନ୍ୟା । ଅସ୍ତି ଓ ପ୍ରାପ୍ତି । କେହି କେହି ଏ ଦୁହିଁଙ୍କୁ ହେତ ଓ ପ୍ରହେତ ବୋଲି କହନ୍ତି । ମଥୁରାଧିପତି କଂସ ଏହି ଦୁଇ କନ୍ୟାଙ୍କୁ ବିବାହ

ହୋଇଥିଲେ । (କଂସ ଦେଖ) । ଶ୍ୱଶୁରଙ୍କ ସାହାଯ୍ୟରେ କଂସ, ପିତା ଉଗ୍ରସେନଙ୍କୁ ସିଂହାସନଚ୍ୟୁତ କରି ମଥୁରା ସିଂହାସନ ଅଧିକାର କରିଥିଲେ । କଂସନିଧନ ଉପରେ ଜରାସନ୍ଧ କ୍ରୁଦ୍ଧ ହୋଇ ମଥୁରା ଆକ୍ରମଣ କରିବାରୁ ଏବଂ କାଳଯବନକୁ ଶ୍ରୀକୃଷ୍ଣଙ୍କ ବିରୁଦ୍ଧରେ ଉତ୍ତେଜିତ କରିବାରୁ ଶ୍ରୀକୃଷ୍ଣ ଦେଖିଲେ ଯେ ମଥୁରା ଆକ୍ରମଣ ଯୋଗେ ଯଦୁବଂଶ ପକ୍ଷରେ ଆତ୍ମରକ୍ଷା କରିବା ଦୁଷ୍କର ହେବ । ସେ ସେମାନଙ୍କୁ ମଥୁରା ତ୍ୟାଗ କରିବା ପାଇଁ ପରାମର୍ଶ ଦେଇ ପଶ୍ଚିମ ସମୁଦ୍ର ତୀରବର୍ତ୍ତୀ ଦ୍ୱାରାବତୀ (ଦ୍ୱାରକା) ନଗରୀରେ ରହିବା ଲାଗି ନିର୍ଦ୍ଦେଶ ଦେଲେ । ଯାଦବମାନେ ଦ୍ୱାରାବତୀରେ ପ୍ରତିଷ୍ଠିତ ହେବା ପରେ ଶ୍ରୀକୃଷ୍ଣ ମଥୁରାକୁ ଆସି କୌଶଳରେ କାଳଯବନକୁ ନିହତ କରିଥିଲେ ।

(କାଳଯବନ ଦେଖ)

ଯୁଧିଷ୍ଠିର ରାଜସୂୟ ଯଜ୍ଞ ଆରମ୍ଭ କଲେ । ଜରାସନ୍ଧକୁ ପରାସ୍ତ ନକଲେ ଯଜ୍ଞ ସମ୍ପନ୍ନ ହୋଇ ପାରିବ ନାହିଁ, ତେଣୁ ସେ ଶ୍ରୀକୃଷ୍ଣଙ୍କ ସାହାଯ୍ୟ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ, ଭୀମ ଓ ଅର୍ଜୁନଙ୍କ ସହିତ ମଗଧ ଆଡ଼କୁ ଅଗ୍ରସର ହେଲେ । ଏମାନେ ସ୍ନାତକ ବ୍ରାହ୍ମଣରୂପେ ମଗଧ ରାଜଧାନୀ ଗିରିବ୍ରଜରେ ପ୍ରବେଶ କଲେ । କ୍ରମେ ଏମାନେ ଜରାସନ୍ଧଙ୍କ ରାଜଭବନ ମଧ୍ୟକୁ ଗଲେ । ଏମାନଙ୍କୁ ବ୍ରହ୍ମଚାରୀ ଦେଖି କେହି ବାଧା ଦେଲେନାହିଁ । ଠିକ୍ ରାତ୍ରି ଅର୍ଦ୍ଧ ସମୟରେ ଜରାସନ୍ଧ ଏମାନଙ୍କୁ ଅଭ୍ୟର୍ଥନା କଲେ । ଏମାନେ ଆତ୍ମପରିଚୟ ଦେଇସାରି ଜରାସନ୍ଧଙ୍କୁ ଯୁଦ୍ଧାର୍ଥେ ଆହ୍ୱାନ କଲେ । ଶ୍ରୀକୃଷ୍ଣଙ୍କ ସଙ୍କେତ ଅନୁସାରେ ଭୀମଙ୍କ ସହିତ ଜରାସନ୍ଧଙ୍କର ମଲ୍ଲଯୁଦ୍ଧ ହେଲା । ଭୀମ ମଲ୍ଲଯୁଦ୍ଧରେ ଜରାସନ୍ଧକୁ ତଳେ ପକାଇ ଦୁଇ ଖଣ୍ଡ କରି ଚିରି ଦେବାରୁ ସେ ପ୍ରାଣତ୍ୟାଗ କଲା ।

(ମହାଭାରତ ସଭାପର୍ବ)

**ଜହ୍ନୁ** —ବିଖ୍ୟାତ ରାଜର୍ଷି । ଏ ସରିତ୍କୁଳେଶ୍ୱରୀ ଗଙ୍ଗାକୁ ପାନ କରି ଦେଇଥିଲେ । ଏହାଙ୍କର ପିତା ସୁହୋତ୍ର ଓ ମାତା କେଶିନୀ । ଉର୍ବଶୀଙ୍କ ଗର୍ଭରୁ ରାଜା ପୁରୁରବାଙ୍କର ସାତଗୋଟି-ପୁତ୍ର ଜନ୍ମ ହୋଇଥିଲେ । ଏହାଙ୍କର ନାମ ଯଥା— ଆୟୁ, ଅମାବସୁ, ବିଶ୍ୱାୟୁ, ଶ୍ରୁତାୟୁ, ଦୃଢ଼ାୟୁ, ବନାୟୁ, ଓ ଶତାୟୁ । ଅମାବସୁଙ୍କ ପୁତ୍ର ଭୀମ ଓ ନଗ୍ନଜିତ । ଭୀମଙ୍କ ପୁତ୍ର କାଞ୍ଚନପ୍ରଭ, କାଞ୍ଚନପ୍ରଭଙ୍କ ପୁତ୍ର ସୁହୋତ୍ର, ସୁହୋତ୍ରଙ୍କ ପୁତ୍ର ଜହ୍ନୁ । ଜହ୍ନୁ ସର୍ବବୋଧ ନାମକ ଏକ ମହାଯଜ୍ଞ ଅନୁଷ୍ଠାନ କରି ଜଗତରେ ସୁଖ୍ୟାତିପ୍ରାପ୍ତ ହୋଇଥିଲେ । ସରିଦ୍ବରା ଗଙ୍ଗା ଏହାଙ୍କୁ ପତିରୂପେ ବରଣ କରିବା ପାଇଁ ଅଭିସାରିକା ବେଶରେ

ଏହାଙ୍କ ନିକଟକୁ ଆସିଲେ । କିନ୍ତୁ ଜହ୍ନୁ ଗଙ୍ଗାଙ୍କୁ ପ୍ରତ୍ୟାଖ୍ୟାନ କଲେ । ଅପମାନିତା ହୋଇ ଗଙ୍ଗା ତାଙ୍କର ସଭାସ୍ଥଳ ଜଳପ୍ଲାବିତ କରିଦେଲେ । ରାଜର୍ଷି ଜହ୍ନୁ କ୍ରୁଦ୍ଧ ହୋଇ ଗଙ୍ଗାଙ୍କୁ ପାନ କରିଦେଲେ । ଏହା ଦେଖି ମହର୍ଷିମାନେ ରାଜର୍ଷିଙ୍କ ଦ୍ୱାରା ପୀତ ଗଙ୍ଗାଙ୍କୁ ସେହିଦିନଠୁ ଜାହ୍ନବୀ ଆଖ୍ୟା ଦେଲେ । ଜହ୍ନୁ ଯୁବନାଶ୍ୱଙ୍କ ଦୁହିତା କାବେରୀଙ୍କର ପାଣିଗ୍ରହଣ କରିଥିଲେ । ଏହାଙ୍କ ଗର୍ଭରୁ ଜହ୍ନୁଙ୍କ ଔରସରୁ ସୁନହ ନାମକ ପୁତ୍ର ଜନ୍ମିଥିଲେ । (ହରିବଂଶ)

ରାମାୟଣ ଓ ବିଷ୍ଣୁପୁରାଣରେ ଏ ଉପାଖ୍ୟାନଟି ଭିନ୍ନ ପ୍ରକାର ଦୃଷ୍ଟ ହୁଏ । ଯେତେବେଳେ ଭଗୀରଥ ପିତୃମାନଙ୍କ ଉଦ୍ଧାର କଲେ ଗଙ୍ଗାଙ୍କୁ ଘେନି ଆସିଲେ ସେତେବେଳେ ମର୍ତ୍ତ୍ୟରେ ରାଜର୍ଷି ଜହ୍ନୁ ଏକ ଯଜ୍ଞ ଅନୁଷ୍ଠାନ କରୁଥିଲେ । ଗଙ୍ଗା ଜହ୍ନୁଙ୍କ ଯଜ୍ଞଭୂମି ପ୍ଲାବିତ କରିବାରୁ ତାଙ୍କର ସକଳ ପ୍ରକାର ଯଜ୍ଞସାମଗ୍ରୀ ଭାସିଗଲା । ରାଜର୍ଷି ଜହ୍ନୁ ଏଥିରେ କ୍ରୋଧ କରି ଗଙ୍ଗାଙ୍କୁ ପାନ କରିଦେଲେ । ପରେ ଭଗୀରଥଙ୍କ ବିନମ୍ର ବାକ୍ୟରେ ତୃପ୍ତି ଲାଭ କରି ସେ କର୍ଣ୍ଣ (ମତାନ୍ତରରେ ଜାନୁ) ବାଟେ ଗଙ୍ଗାଙ୍କୁ ବାହାର କରିଦେଲେ ।

**ଜହ୍ନୁ ଆଶ୍ରମ**—ପ୍ରୟାଗ ତୀର୍ଥ, ଗଙ୍ଗା ଯମୁନାର ସଙ୍ଗମସ୍ଥଳ ।

**ଜଗୁଲାଇ, ଜାଗୁଳେଇ**—ଦେବୀ ବିଶେଷ । ଜାଗ୍ରଦ୍‌ଗୌରୀ ବୋଲି ଏହାଙ୍କୁ କହନ୍ତି । ଶ୍ରାବଣ ମାସର କୃଷ୍ଣପଞ୍ଚମୀ ରାତିରେ ଗ୍ରାମର ଦ୍ୱାରେ ଦ୍ୱାରେ ପିଠା ଭୋଗ ଲାଗି ହେବା ଦେବୀବିଶେଷ । ଏ ଦେବୀଙ୍କ ବିଷୟରେ ଗୋଟିଏ ଗୀତ ଅଛି—'ଜାଗୁଳେଇ ଉଠୁଁ ଯାଉଛି ଦାଣ୍ଡେ, ଫୁଲ ଦୁବ ଧରି ଉଠଲେ ଘାଣ୍ଡେ ।' ପୁରୀ ଶାସନମାନଙ୍କରେ ନିଜେ ସଂଗ୍ରାହକ ଏ ଗୀତ ଶୁଣିଛନ୍ତି । ଏଠାରେ ଜାଗୁଲାଇ ପଞ୍ଚମୀର ଏକ ଉଦାହରଣ ଦିଆଯାଉଛି—

ଜାଗୁଲାଇ ମା ଜାଗୁଲାଇ ସବୁ ଘରଁଙ୍କର ମାଆ ।
ବରି ଚକୁଳି ଖାଇବୁ ଯେବେ ମୋ ଦୁଆରକୁ ଆ ।

**ଜାତୁକର୍ଣ୍ଣ, ଜାତୂକର୍ଣ୍ଣ**—ମୁନିବିଶେଷ, ଏ ଗୋଟିଏ ଉପସ୍ମୃତି ରଚନା କରିଥିଲେ । ହରିବଂଶ ଅନୁସାରେ ଅଷ୍ଟାବିଂଶ ଦ୍ୱାପର ଯୁଗରେ ଏହାଙ୍କର ଜନ୍ମ ହୋଇଥିଲା । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଜାନପଦୀ**—ଅପ୍ସରାବିଶେଷ । ଏହାଙ୍କୁ ଇନ୍ଦ୍ର ଶରଦ୍ୱାନ୍ ଋଷିଙ୍କ ତପସ୍ୟା ଭଙ୍ଗ କରିବାକୁ ପଠାଇଥିଲେ । ମହର୍ଷି ବିମୋହିତ ହୋଇ ତାଙ୍କର ଶୁକ୍ରପାତ ହେଲା । ସେହି ଶୁକ୍ରରୁ କୃପ ଓ କୃପୀ ଜନ୍ମିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଜାନୁଘଣ୍ଟ**—ସତ୍ୟଯୁଗର ରାଜଚକ୍ରବର୍ତ୍ତୀ ବିଶେଷ । ସତ୍ୟଯୁଗରେ ଛଅ ଜଣ ଚକ୍ରବର୍ତ୍ତୀ ରାଜତ୍ୱ କରୁଥିଲେ । ଯଥା—ବଳି, ବେଣ, ମାନଧାତା ବା ମାନ୍ଧାତା, ପୁରୁରବା, ଜାନୁଘଣ୍ଟ ଓ ପରଶୁରାମ । ଉକ୍ତ ଜାନୁଘଣ୍ଟ ଜାନୁରେ ଘଣ୍ଟା ବାନ୍ଧିଥିଲେ । ମାଦଳାପାଞ୍ଜିରେ ଏହାଙ୍କର ନାମ ଉଲ୍ଲେଖ ଅଛି । କିନ୍ତୁ ସଂସ୍କୃତ ଗ୍ରନ୍ଥମାନଙ୍କରେ ଜାନୁଘଣ୍ଟ ପରିବର୍ତ୍ତେ ଧୁନ୍ଧୁମାର ଓ ପରଶୁରାମଙ୍କ ବଦଳରେ କାର୍ତ୍ତିବୀର୍ଯ୍ୟଙ୍କ ନାମ ଦୃଷ୍ଟ ହୁଏ । ଚକୁଳିଆ ପଣ୍ଡାଙ୍କ ଗୀତରୁ ଜଣାଯାଏ—

ବଳି ବେଣ ମାନଧାତା ଛଡ଼ ଚକ୍ରବର୍ତ୍ତୀ
ଏମାନେ ଗଲେଣି ମାତ୍ର ରହିଛି କୀରତି । (ଭାଷାକୋଷ)

**ଜାବାଳ**—ଏ ଜାବାଲା ନାମ୍ନୀ ଋଷିପତ୍ନୀଙ୍କ ପୁତ୍ର ଥିଲେ । ଛାନ୍ଦୋଗ୍ୟ ଉପନିଷଦରେ ଲେଖା ଅଛି ଯେ ଏ ଋଷିମାନଙ୍କଠାରୁ ବେଦ ଶିକ୍ଷା କରିବାକୁ ଯିବା ସମୟରେ ଋଷିମାନେ ତାଙ୍କୁ ତାଙ୍କ ପିତାଙ୍କ ନାମ ପଚାରିଲେ । ଏ ତାହା ଜାଣି ନଥିବାରୁ ଯାଇ ମାତାଙ୍କୁ ପଚାରିଲେ । ମାତା କହିଲେ – ମୁଁ ଯୌବନରେ ବହୁ ପୁରୁଷ ସଙ୍ଗମ କରିଥିଲି ତୁମେ କାହାର ଔରସଜ ମୁଁ କହି ପାରିବି ନାହିଁ । ଏ ଫେରିଯାଇ ଋଷିଙ୍କୁ ସେହି କଥା କହିଲେ । ଋଷି ଏହାଙ୍କ ସତ୍ୟବାଦିତାରେ ସନ୍ତୁଷ୍ଟ ହୋଇ ଏହାଙ୍କ ଉପନୟନ କର୍ମ କଲେ । ଏହାଙ୍କର ଅନ୍ୟ ନାମ ସତ୍ୟକାମ ବା ସତ୍ୟକାମ ଜାବାଲ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଜାବାଳ**—ଜାବାଲି କଶ୍ୟପବଂଶୀୟ । ଏ ଦଶରଥଙ୍କ ଗୁରୁ ଓ ଜଣେ ମନ୍ତ୍ରୀ ଥିଲେ । ରାମଚନ୍ଦ୍ରଙ୍କ ବନବାସ ସମୟରେ ଏ ଚିତ୍ରକୂଟକୁ ଯାଇ ବନରୁ ପ୍ରତ୍ୟାଗମନ କରିବାକୁ ରାମଚନ୍ଦ୍ରଙ୍କୁ ବୁଝାଇଲେ । ଏହାଙ୍କ ଉପଦେଶରେ ଚାର୍ବାକ ମତର ଆଭାସ ମିଳେ । (ଚାର୍ବାକ ଦେଖ) (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଜାମଦଗ୍ନ୍ୟ, ଜମଦଗ୍ନେୟ**—ବିଷ୍ଣୁଙ୍କ ଅବତାର ଭେଦ । ଗୀତଗୋବିନ୍ଦର ଉକ୍ତି—

କ୍ଷତ୍ରିୟରୁଧିରମୟେ ଜଗଦପଗତ ପାପଂ,
ସ୍ନପୟସି ପୟସି ଶମିତଭବତାପମ୍,
କେଶବଧୃତ, ଭୃଗୁପତିରୂପ, ଜୟ ଜଗଦୀଶ ହରେ ।

ଋଷି ଜମଦଗ୍ନି ଏହାଙ୍କର ପିତା । ଏହାଙ୍କର ପ୍ରକୃତ ନାମ ରାମ । ମହାଦେବଙ୍କଠାରୁ ପରଶୁ ଅସ୍ତ୍ର ଲାଭ କରିଥିବା ଯୋଗୁଁ ଏ ପରଶୁରାମ ନାମରେ

କାମିତ ହୋଇଥିଲେ । ଋଚୀକ ପ୍ରଦତ୍ତ ଚରୁ ପ୍ରଭାବରୁ ବିଶ୍ୱାମିତ୍ର ରାଜକୁମାର ହେଲେ ମଧ୍ୟ ବ୍ରହ୍ମର୍ଷି ହୋଇଥିଲେ ଏବଂ ଜାମଦଗ୍ନ୍ୟ ଋଷି ହେଲେ ମଧ୍ୟ କ୍ଷାତ୍ରଧର୍ମରେ ଦୀକ୍ଷିତ ଥିଲେ । (ଋଚୀକ, ଜମଦଗ୍ନି ଓ ପରଶୁରାମ ଦେଖ) । ମହାଭାରତ ବନପର୍ବରେ ବର୍ଣ୍ଣିତ ଘଟଣାଟି କିଛି ଅନ୍ୟରୂପ । ଏଥିରୁ ଜଣାଯାଏ ଯେ ଋଚୀକ ସତ୍ୟବତୀଙ୍କୁ ଚରୁ ଦେଇ ନଥିଲେ, ଋଚୀକଙ୍କ ପିତା ଭୃଗୁ ଦେଇଥିଲେ ।

ପିତୃ ବାକ୍ୟରେ ପରଶୁରାମ ଜନନୀଙ୍କର ମସ୍ତକ ଛେଦନ କରିଥିଲେ । ଏହାପରେ ଜମଦଗ୍ନି ପୁଅଙ୍କୁ ବର ଦେବାକୁ ଚାହିଁଲେ । ପରଶୁରାମ ଚାରିଗୋଟି ବର ପ୍ରାର୍ଥନା କଲେ, ଯଥା—(୧) ମୋର ମାଆ ପୁଣି ଜୀଇଁ ଉଠନ୍ତୁ ଏବଂ ଏହି ହତ୍ୟାକାଣ୍ଡ ଯେପରି ତାଙ୍କ ମନରେ ନ ରହେ । (୨) ଯୁଦ୍ଧରେ ମୋର କେହି ପ୍ରତିଦ୍ୱନ୍ଦୀ ନ ହୁଅନ୍ତୁ । (୩) ମୁଁ ଦୀର୍ଘଜୀବୀ ହୋଇ ରହିବି । (୪) ମୋର ଭାଇମାନେ ଏହିକ୍ଷଣି ସଂଜ୍ଞା ଲାଭ କରି କାର୍ଯ୍ୟକ୍ଷମ ହୁଅନ୍ତୁ ।

ଜମଦଗ୍ନି ସନ୍ତୁଷ୍ଟ ଚିତ୍ତରେ ଏହିସବୁ ବର ଦେଲେ । ସେହିକ୍ଷଣି ପରଶୁରାମଙ୍କ ମାଆ ପୁଣି ଜୀଇଁ ଉଠିଲେ ଓ ଭାଇମାନେ ସଂଜ୍ଞା ଲାଭ କରି କାର୍ଯ୍ୟକ୍ଷମ ହେଲେ ।

ଏକଦା ହୈହୟପତି କାର୍ତ୍ତବୀର୍ଯ୍ୟ ପରଶୁରାମଙ୍କ ଅନୁପସ୍ଥିତ ସମୟରେ ଜମଦଗ୍ନିଙ୍କୁ ବଧ କଲେ । ପରଶୁରାମ ଘରକୁ ଆସି ମାଆଙ୍କଠାରୁ ଏକଥା ଶୁଣି ସେହିକ୍ଷଣି ହୈହୟ ଦେଶକୁ ଗଲେ । ରାଜା କାର୍ତ୍ତବୀର୍ଯ୍ୟଙ୍କ ସହସ୍ର ବାହୁ ଛେଦନ କରି ତାଙ୍କୁ ବଧ କଲେ ଓ ହୋମ ଧେନୁ ଉଦ୍ଧାର କରି ଆଣିଲେ । (କାର୍ତ୍ତବୀର୍ଯ୍ୟ ଦେଖ) ମହାଭାରତ ଶାନ୍ତି ପର୍ବର ଘଟଣା କିଛି ଅନ୍ୟ ରୂପରେ ବର୍ଣ୍ଣିତ ହୋଇଅଛି । ଏଥିରୁ ଜଣାଯାଏ କାର୍ତ୍ତବୀର୍ଯ୍ୟଙ୍କ ବାଣାଗ୍ନିରେ ବଶିଷ୍ଠ ଆଶ୍ରମ ଦଗ୍ଧୀଭୂତ ହୋଇଗଲା । ବଶିଷ୍ଠ ତାଙ୍କୁ ଅଭିଶାପ ଦେଲେ ଯେହେତୁ ତୁମେ ଅକାରଣରେ ମୋ ତପୋବନ ଧ୍ୱଂସ କଲ ସେଥିଲାଗି ଜମଦଗ୍ନି ପୁତ୍ର ପରଶୁରାମ ତୁମର ଏହି ସହସ୍ରଟି ଯାକ ବାହୁ ଛେଦନ କରିବେ । ସେହି ଦିନଠାରୁ କାର୍ତ୍ତବୀର୍ଯ୍ୟ ବ୍ରାହ୍ମଣମାନଙ୍କୁ ଡରି କେବଳ ସେହି ଜାତିର ହିତ କର୍ମରେ ବ୍ୟାପୃତ ରହିଲେ । ଦିନେ ତାଙ୍କ ପୁଅମାନେ ତାଙ୍କ ଅଜ୍ଞାତରେ ଜମଦଗ୍ନିଙ୍କୁ ବଧକରି ତାଙ୍କ ହୋମ ଧେନୁ ନେଇ ଆସିଲେ । ପରଶୁରାମ ଏହା ଜାଣି ହୈହୟ ରାଜ୍ୟକୁ ଯାଇ କାର୍ତ୍ତବୀର୍ଯ୍ୟଙ୍କୁ ବଧକରି ହୋମ ଧେନୁ ଉଦ୍ଧାର କଲେ ।

କେବଳ କାର୍ତ୍ତବୀର୍ଯ୍ୟଙ୍କୁ ବଧ କରି ପରଶୁରାମ କ୍ଷାନ୍ତ ହେଲେନାହିଁ । ସେ ପିତୃବଧର ପ୍ରତିଶୋଧ ନେବା ପାଇଁ ଏକୋଇଶ ଥର ପୃଥିବୀ ନିକ୍ଷତ୍ରିୟ କଲେ । ସେ କ୍ଷତ୍ରିୟ ରକ୍ତରେ କୁରୁକ୍ଷେତ୍ର ନିକଟବର୍ତ୍ତୀ ସ୍ୟମନ୍ତପଞ୍ଚକରେ ପାଞ୍ଚଗୋଟି ହ୍ରଦ ନିର୍ମାଣ କରି ଏହି ହ୍ରଦରେ ପିତୃପୁରୁଷମାନଙ୍କୁ ତର୍ପଣ କରି ମହର୍ଷି ଋଚିକଙ୍କ ସାକ୍ଷାତ ଲାଭ କଲେ । ଋଚିକ ତାଙ୍କୁ କ୍ଷତ୍ରିୟ ବଧ କାର୍ଯ୍ୟରୁ ନିବୃତ୍ତ ହେବାପାଇଁ କହିଲେ । ପରଶୁରାମ ସେଥିରୁ ନିବୃତ୍ତ ହୋଇ କଶ୍ୟପ ପ୍ରଜାପତିଙ୍କୁ ପୃଥିବୀ ଦାନ କଲେ ଏବଂ ବ୍ରାହ୍ମଣପ୍ରଦତ୍ତ ପୃଥିବୀରେ ଆଉ ବାସ କରିବେ ନାହିଁ ବୋଲି ସମୁଦ୍ର ମଧ୍ୟସ୍ଥ ମହେନ୍ଦ୍ର ପର୍ବତକୁ ଯାଇ ସେଠାରେ ରହିଲେ । ପରଶୁରାମଙ୍କ ଆଦେଶରେ ସମୁଦ୍ରରୁ ଅପହୃତ ହୋଇ ମହେନ୍ଦ୍ର ତାଙ୍କର ବାସୋପଯୋଗୀ ହୋଇଥିଲା ।

ପରଶୁରାମ ଗନ୍ଧମାଦନ ପର୍ବତରେ ତପସ୍ୟା କରି ମହାଦେବଙ୍କ ସନ୍ତୋଷରୁ ତାଙ୍କ ବରଲାଭର ପ୍ରମାଣ ସ୍ୱରୂପ ତାଙ୍କଠାରୁ ତେଜୋମୟ ପରଶୁ ଅସ୍ତ୍ର ଲାଭ କରିଥିଲେ ।

ରାମ ସୀତାଙ୍କୁ ବିବାହ କରି ଯେତେବେଳେ ମିଥିଲାରୁ ଅଯୋଧ୍ୟାକୁ ଫେରିଲେ ସେତେବେଳେ ତାଙ୍କ ସହିତ ପରଶୁରାମଙ୍କର ସାକ୍ଷାତ ହେଲା । କ୍ଷତ୍ରିୟ କୁଳର ସ୍ୱନକୁଠାର ହୋଇଛନ୍ତି ଭାବି ପରଶୁରାମ ରାମଙ୍କୁ ବଧ କରିବା ପାଇଁ ଅଗ୍ରସର ହେଲେ । ଦଶରଥ କନ୍ତୁ ଏହି ଘଟଣାରେ ଭୀତତ୍ରସ୍ତ ହୋଇ ଉଠିଲେ । ମାତ୍ର ରାମ ତାଙ୍କୁ ଆଶ୍ୱାସନା ଦେଇଥିଲେ । ପରଶୁରାମ ଶ୍ରୀରାମଙ୍କୁ ନିଜ ଧନୁରେ ଶର ଯୋଜନା କରିବା ପାଇଁ କହିଲେ । ରାମଚନ୍ଦ୍ର ଶର-ଯୋଜନ ସମର୍ଥ ହେବା ମାତ୍ରେ ପରଶୁରାମ ପରାଜୟ ସ୍ୱୀକାର କଲେ । ଶ୍ରୀରାମ ପଚାରିଲେ—'ବର୍ତ୍ତମାନ ଏହି ଶର ସଂପାତରେ ମୁଁ ଆପଣଙ୍କ ତପସ୍ୟାର୍ଜିତ ଲୋକ ନଷ୍ଟ କରିବି ନା ଆପଣଙ୍କ ଗତିରୋଧ କରିବି ।' ପରଶୁରାମଙ୍କ ଅଭିପ୍ରାୟ ଅନୁସାରେ ଶ୍ରୀରାମ ଶର ତ୍ୟାଗକରି ପରଶୁରାମଙ୍କ ଗତି ନାଶ ନ କରି ତପସ୍ୟାର୍ଜିତ ଲୋକ ନାଶ କଲେ । ଏହାପରେ ପରଶୁରାମ ମହେନ୍ଦ୍ରାଚଳକୁ ଗମନ କଲେ । (ରାମାୟଣ, ଆଦିକାଣ୍ଡ)

ପରଶୁରାମ ସମୁଦ୍ର ଗର୍ଭରୁ କଙ୍କଣ ପ୍ରଦେଶ ଉଦ୍ଧାର କରି ବ୍ରାହ୍ମଣ-ମାନଙ୍କର ଆବାସ ସ୍ଥାପନ କରିଥିଲେ । ଏଥିରୁ ଚିନ୍ତାଶୀଳ ବ୍ୟକ୍ତିମାନେ ଅନୁମାନ କରନ୍ତି ଯେ ସାମୁଦ୍ରିକ ଜଳଦସ୍ୟୁମାନଙ୍କ ହସ୍ତରୁ ସେ କଙ୍କଣ ପ୍ରଦେଶ ଅଧିକାର କରି ସେଠାରେ ବ୍ରାହ୍ମଣ ଉପନିବେଶ ସ୍ଥାପନ କରିଥିଲେ ।

**ଜାମ୍ବବ**—ରାମାୟଣ ବର୍ଣ୍ଣିତ ଭଲ୍ଲୁକରାଜ ଜାମ୍ବବାନ୍ ।

**ଜାମ୍ବବତୀ** - ଶ୍ରୀକୃଷ୍ଣଙ୍କ ପତ୍ନୀ । ଶ୍ରୀକୃଷ୍ଣଙ୍କ ଶ୍ୱଶୁର ସତ୍ରାଜିତଙ୍କର ସ୍ୟମନ୍ତକ ନାମରେ ଏକ ମଣି ଥିଲା । ସତ୍ରାଜିତଙ୍କ କନିଷ୍ଠ ଭ୍ରାତା ପ୍ରସେନଜିତ ଏହି ଉଜ୍ଜ୍ୱଳମଣିକୁ କଣ୍ଠରେ ଲଗାଇ ଅଶ୍ୱାରୋହଣପୂର୍ବକ ମୃଗୟା କରି ଗଲେ । ଗୋଟିଏ ସିଂହ ତାଙ୍କୁ ଆକ୍ରମଣ କରି ବଧ କଲା ଏବଂ ମଣିଟିକୁ ନେଇ ଗିରି ଗହ୍ୱର ମଧ୍ୟରେ ପଶିଗଲା । ପରେ ଜାମ୍ବବାନ୍ ଉକ୍ତ ସିଂହକୁ ବଧକରି ମଣିନେଇ ଚାଲିଗଲେ । ସେ ଅତି ସ୍ନେହରେ ଏ ମଣିଟିକୁ ନିଜର କନ୍ୟା ଜାମ୍ବବତୀଙ୍କୁ ଦେଲେ । ଜାମ୍ବବତୀ ଏହାକୁ ଗୋଟିଏ ସୁନ୍ଦର ଖେଳନା ଭାବି ତାହା ଧରି ସଖୀମାନଙ୍କ ସହିତ ରାଜମାର୍ଗରେ ଖେଳୁଥିଲେ । ଏଣେ ସତ୍ରାଜିତ ମନେ କଲେ ଯେ ଶ୍ରୀକୃଷ୍ଣ ପ୍ରସେନଙ୍କୁ ହତ୍ୟା କରି ଏ ମଣି ଅପହରଣ କରି ନେଇଛନ୍ତି । ଶ୍ରୀକୃଷ୍ଣ ଏହି ଅପଯଶ ଦୂରୀକରଣ ପାଇଁ ମଣି ଅନ୍ୱେଷଣରେ ବାହାରିଲେ । ବାଟରେ ଯାଉ ଯାଉ ସେ ସହଚରମାନଙ୍କ ସହିତ ପ୍ରସେନଙ୍କ ମୃତ ଦେହ ଦେଖିଲେ । ତେଣୁ ଅନୁଚରମାନଙ୍କୁ ଗୁହା ବାହାରେ ଅପେକ୍ଷା କରିବାପାଇଁ କହି ଶ୍ରୀକୃଷ୍ଣ ଗୁହା ଭିତରେ ପଶିଲେ । ସେହି ବାଟେ ସେ ଋକ୍ଷରାଜଙ୍କ ନଗରୀ ମଧ୍ୟକୁ ଗଲେ । ଦେଖିଲେ ରାଜମାର୍ଗରେ ରାଜକୁମାରୀ ମଣିଟି ଧରି ଖେଳୁଛନ୍ତି । ଅଦୃଷ୍ଟପୂର୍ବ ନରମୂର୍ତ୍ତି ଦେଖି ଜାମ୍ବବତୀ କ୍ରନ୍ଦନ କଲେ । ଏଥିରେ ଜାମ୍ବବାନ କ୍ରୋଧାନ୍ଧ ହୋଇ ଅଗ୍ରସର ହେଲେ ଏବଂ ଶ୍ରୀକୃଷ୍ଣଙ୍କୁ ପ୍ରାକୃତ ପୁରୁଷ ମନେକରି ଯୁଦ୍ଧ କଲେ । ଯୁଦ୍ଧରେ ପରାସ୍ତ ହୁଅନ୍ତେ ଜାମ୍ବବାନ୍ ଶ୍ରୀକୃଷ୍ଣଙ୍କ ସ୍ତୁତି କଲେ ଓ ସ୍ୟମନ୍ତକ ମଣି ସହିତ କନ୍ୟା ଜାମ୍ବବତୀଙ୍କୁ ତାଙ୍କୁ ସମର୍ପଣ କଲେ । ଶ୍ରୀକୃଷ୍ଣ ତାଙ୍କୁ ପତ୍ନୀରୂପେ ଗ୍ରହଣ କରି ମଣି ସହିତ ମଥୁରାକୁ ପ୍ରତ୍ୟାଗମନ କଲେ । ଜାମ୍ବବତୀଙ୍କ ଗର୍ଭରୁ ଶ୍ରୀକୃଷ୍ଣଙ୍କ ଔରସରେ ୧୦ ଗୋଟି ପୁତ୍ର ଜାତ ହେଲେ । ଯଥା—ସାମ୍ବ, ସୁମିତ୍ର, ପୁରୁଜିତ୍, ଶତଜିତ୍, ସହସ୍ରଜିତ୍, ବିଜୟ, ଚିତ୍ରକେତୁ, ବସୁମାନ, ଦ୍ରାବିଡ ଓ କ୍ରତୁ ।

(ଭାଗବତ ଦଶମସ୍କନ୍ଧ)

**ଜାମ୍ବବାନ୍** - ଋକ୍ଷପତି । ଏ ଭଲ୍ଲୁକରାଜ ବ୍ରହ୍ମାଙ୍କ ପୁତ୍ର । ତ୍ରେତାଯୁଗରେ କପିରାଜ ସୁଗ୍ରୀବଙ୍କର ସେନାପତିରୂପେ ଶ୍ରୀରାମଚନ୍ଦ୍ରଙ୍କୁ ସୀତା ଉଦ୍ଧାର କରିବାରେ ସହାୟତା କରିଥିଲେ । ଦ୍ୱାପର ଯୁଗରେ ସ୍ୟମନ୍ତକ ମଣି ବିଷୟ ନେଇ ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ ହେଲା ଏବଂ ଯୁଦ୍ଧାବସାନ ପରେ ଏହି ମଣି ସହିତ ଜାମ୍ବବାନ୍ ନିଜ

କନ୍ୟା ଜାମ୍ବବତୀଙ୍କୁ ଶ୍ରୀକୃଷ୍ଣଙ୍କୁ ସମର୍ପଣ କଲେ । ଚିନ୍ତାଶୀଳ ବ୍ୟକ୍ତିମାନେ ଅନୁମାନ କରନ୍ତି ଜାମ୍ବବାନ୍ ଏକ ଅନାର୍ଯ୍ୟ ରାଜା ।

(ରାମାୟଣ, ଶ୍ରୀମଦ୍‌ଭାଗବତ ଓ ଜାମ୍ବବତୀ ଦେଖ) ।

**ଜାମ୍ବୁମାଳୀ**—ରାକ୍ଷସବିଶେଷ । ହନୁମାନ ଲଙ୍କାରେ ସୀତାଙ୍କ ଠାବ କରିବା ପରେ ଅଶୋକବନ ଉଜାଡ଼ିବା ବେଳେ ଏହି ଜାମ୍ବୁମାଳୀ ହନୁମାନଙ୍କ ଦ୍ୱାରା ନିହତ ହୋଇଥିଲେ । ଏ ପ୍ରହସ୍ତ ନାମକ ଅସୁରର ପୁତ୍ର । (ରାମାୟଣ)

**ଜୃମ୍ଭକାସ୍ତ୍ର**—ଯେଉଁ ଅସ୍ତ୍ର ମାରିଲେ ଶତ୍ରୁମାନେ କେବଳ ହାଇମାରି ହାଲିଆ ହୋଇ ନିଦରେ ଶୋଇପଡ଼ନ୍ତି । ରାମଚନ୍ଦ୍ର ତାଡ଼କାଦି ରାକ୍ଷସମାନଙ୍କୁ ବଧ କରିବାବେଳେ ବିଶ୍ୱାମିତ୍ର ପ୍ରସନ୍ନ ହୋଇ ରାମଙ୍କୁ ଏହି ଅସ୍ତ୍ରଗୁଡ଼ିକ ପ୍ରଦାନ କରିଥିଲେ । ଘୋର ତପସ୍ୟା କରି ବିଶ୍ୱାମିତ୍ର ଏ ଅସ୍ତ୍ର ଅଗ୍ନିଙ୍କଠାରୁ ପାଇଥିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଜୈଗୀଷବ୍ୟ**—ବିଖ୍ୟାତ ଋଷି ଅସିତଦେବଳଙ୍କ ଗୁରୁ । ପୂର୍ବକାଳରେ ଅସିତ-ଦେବଳ ନାମକ ଜଣେ ଋଷି ଗାର୍ହସ୍ଥ୍ୟ ଧର୍ମ ଅବଲମ୍ବନ କରି ଆଦିତ୍ୟ ତୀର୍ଥରେ ଅବସ୍ଥାନ କରିଥିଲେ । କେତେକାଳ ପରେ ମହର୍ଷି ଜୈଗୀଷବ୍ୟ ଏହି ଆଶ୍ରମକୁ ଆସି ଯୋଗାଭ୍ୟାସ କଲେ ଏବଂ ଅଳ୍ପକାଳ ମଧ୍ୟରେ ସିଦ୍ଧି ଲାଭ କଲେ । ମହର୍ଷି ଦେବଳ ଏହାଙ୍କ ଯୋଗବଳ ଦେଖି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

(ମହାଭାରତ-ଶଲ୍ୟପର୍ବ)

**ଜୈମିନ**—ବିଖ୍ୟାତ ହିନ୍ଦୁ ଦର୍ଶନ ପ୍ରଣେତା । ଏହାଙ୍କ ରଚିତ ଦର୍ଶନର ନାମ ପୂର୍ବମୀମାଂସା । ଏହାକୁ ମଧ୍ୟ ଜୈମିନଦର୍ଶନ ବୋଲି କହନ୍ତି । ହିନ୍ଦୁ ଷଡ଼୍-ଦର୍ଶନ ମଧ୍ୟରେ ଏହା ଅନ୍ୟତମ । ଏହା ଦ୍ୱାଦଶ ଅଧ୍ୟାୟରେ ବିଭକ୍ତ । ଏହି ଦର୍ଶନରେ ଅନେକ ବେଦମନ୍ତ୍ରର ମୀମାଂସା ଥିବାରୁ ଏହାକୁ ମୀମାଂସାଦର୍ଶନ ବୋଲାଯାଏ । ଯେଉଁ ଯେଉଁ ବିଷୟରେ ବେଦ ସହିତ ସ୍ମୃତିର ବିରୋଧ ଅଛି, ସେହି ବିଷୟର ମୀମାଂସା ଏହି ଦର୍ଶନରେ ଦେଖାଯାଏ; ତେଣୁ ଏହି ଦର୍ଶନ ଶ୍ରୁତି ଓ ସ୍ମୃତିର ମଧ୍ୟବର୍ତ୍ତୀ ବୋଲି କୁହାଯାଏ । ଜୈମିନଦର୍ଶନରେ ପ୍ରଥମେ ଅଛି—"ଅଥାତୋ ଧର୍ମଜିଜ୍ଞାସା ।" ଆର୍ଯ୍ୟ ପ୍ରେରିତ ଯେଉଁ ଯାଗଯଜ୍ଞାଦି ହୁଏ, ତାହାକୁ ଜୈମିନଦର୍ଶନ ଧର୍ମ ବୋଲି କହେ । ଅର୍ଥାତ୍ ଆର୍ଯ୍ୟଙ୍କ ଉପଦେଶ କ୍ରମେ ଅନୁଷ୍ଠିତ ଯାଗାଦିହିଁ ଧର୍ମ । ଯାହା ଅନୁଷ୍ଠାନ କଲେ ମଙ୍ଗଳ ହୁଏ ତାହାହିଁ ଧର୍ମ । "ଯ ଏବ ଶ୍ରେୟସ୍କରଃ ସ ଏବ ଧର୍ମ ଶବ୍ଦେନୋଚ୍ୟତେ" (ମୀମାଂସା ସୂତ୍ରଭାଷ୍ୟ) ।

ଏହି ଦର୍ଶନରେ ମନ୍ତ୍ରାତିରିକ୍ତ ଦେବତା ସ୍ୱୀକୃତ ହୋଇନାହିଁ । ଯଦି କୌଣସି ଘଟରେ ଇନ୍ଦ୍ରଙ୍କୁ ଆବାହନ କରାଯାଏ ଏବଂ ଦେବରାଜ ସେହି ଘଟରେ ଅଧିଷ୍ଠିତ ହୁଅନ୍ତି, ତେବେ ଐରାବତାରୂଢ଼ ଇନ୍ଦ୍ରଙ୍କ ଭାରରେ ଘଟଟି ନିଶ୍ଚୟ ଚୂର୍ଣ୍ଣୀଭୂତ ହେବ । ଏତେ କ୍ଷୁଦ୍ର ଘଟରେ ବୃହଦାକୃତିର ଐରାବତ ଓ ଇନ୍ଦ୍ରଙ୍କର ଆବେଶ ଏକବାର ଅସମ୍ଭବ । ସୁତରାଂ ଯେଉଁ ମନ୍ତ୍ରରେ ଯେଉଁ ଦେବତାଙ୍କୁ ଆବାହନ କରାଯାଏ ସେହି ମନ୍ତ୍ରକୁହିଁ ଦେବତା ବୋଲି ସ୍ୱୀକାର କଲେ ଆଉ କୌଣସି ସନ୍ଦେହ ରହିବନାହିଁ ।

ଜୈମିନି କୃଷ୍ଣଦ୍ୱୈପାୟନ ବେଦବ୍ୟାସଙ୍କ ଶିଷ୍ୟ, ସେ ଏହାଙ୍କଠାରୁ ବେଦ ଓ ମହାଭାରତ ଶିକ୍ଷା କରିଥିଲେ । ମୀମାଂସା ବ୍ୟତୀତ ଜୈମିନିଙ୍କ ଦ୍ୱାରା ଏକ ସଂହିତା ରଚିତ ହୋଇଥିଲା, ଏହା ଜୈମିନି ଭାରତ ନାମରେ ଖ୍ୟାତ । ସୁମନ୍ତୁ ଓ ସୂତ୍ୱାନ୍ ନାମକ ଏହାଙ୍କର ଦୁଇ ପୁତ୍ର ଥିଲେ । ଉଭୟେ ବିଦ୍ୱାନ୍ ଓ କୃତୀ । ଏ ଉଭୟେ ବେଦର ସଂହିତା ରଚନା କରିଥିଲେ । ପ୍ରବାଦ ଅଛି ପାଞ୍ଚ ଜଣ ଋଷିଙ୍କ ନାମ ଉଚ୍ଚାରଣ କଲେ ବଜ୍ରପାତ ନିବାରିତ ହୁଏ । ଜୈମିନି ସେମାନଙ୍କ ମଧ୍ୟରୁ ଏକତମ । ପ୍ରମାଣ ଯଥା—

ଜୈମିନିଶ୍ଚ ସୁମନ୍ତୁଶ୍ଚ ବୈଶମ୍ପାୟନ ଏବ ଚ
ପୁଲସ୍ତ୍ୟଃ ପୁଲହଶ୍ଚୈବ ପଞ୍ଚୈତେ ବଜ୍ର ବାରକାଃ ।

**ଜ୍ୱର**—ଦୈତ୍ୟରାଜ ବାଣଙ୍କ ସେନାପତି । ଏହାର ତିନିପାଦ, ତିନି ମୁଣ୍ଡ, ଛଅ ବାହୁ ଓ ନଅ ଚକ୍ଷୁ । ମହାଦେବ ଏହାକୁ ସୃଷ୍ଟି କରି ବାଣର ସାହାଯ୍ୟାର୍ଥେ ପ୍ରେରଣ କରିଥିଲେ । ଶ୍ରୀକୃଷ୍ଣ, ବଳରାମ ଓ ପ୍ରଦ୍ୟୁମ୍ନଙ୍କ ସହ ବାଣ ହସ୍ତରୁ ଅନିରୁଦ୍ଧଙ୍କୁ ଉଦ୍ଧାର କରିବା ପାଇଁ ଯାଇଥିଲେ । (ଅନିରୁଦ୍ଧ ଦେଖ) । ଶ୍ରୀକୃଷ୍ଣ ବାଣର ସେନାପତି ଜ୍ୱର ଦ୍ୱାରା ଆକ୍ରାନ୍ତ ହୋଇ ପୀଡ଼ାଗ୍ରସ୍ତ ହେଲେ । ଏଥିଲାଗି ଶ୍ରୀକୃଷ୍ଣ ଆଉ ଏକ ଜ୍ୱର ସୃଷ୍ଟି କଲେ । ଏହି ଜ୍ୱର ଶ୍ରୀକୃଷ୍ଣଙ୍କ ଶରୀରରେ ପ୍ରବିଷ୍ଟ ଜ୍ୱରକୁ ଧରି ଆଣିଲା । ଜ୍ୱର ଶ୍ରୀକୃଷ୍ଣଙ୍କୁ ବିନୟପୂର୍ବକ ସ୍ତୁତି କରିବାରୁ ଶ୍ରୀକୃଷ୍ଣ ତା ଉପରେ ସନ୍ତୁଷ୍ଟ ହେଲେ ଏବଂ ତାକୁ ବର ଯାଚିଲେ । ଜ୍ୱର କହିଲା ମୋଛଡ଼ା ଅନ୍ୟ କେହି ପୃଥିବୀରେ ରହିବେ ନାହିଁ । ଶ୍ରୀକୃଷ୍ଣ ତଥାସ୍ତୁ ଉଚ୍ଚାରଣ କଲେ । (ହରିବଂଶ)



## ଝ

**ଝଷକେତନ, ଝଷକେତୁ, ଝଷଧ୍ୱଜ, ଝଷାଙ୍କ**—କନ୍ଦର୍ପଙ୍କ ରଥ ପତାକାରେ ମାଛର ଚିହ୍ନ ଥିବାରୁ ସେ ଏହି ନାମରେ ନାମିତ ହୁଅନ୍ତି । (କାମ, କନ୍ଦର୍ପ ଦେଖ)

**ଝୁଲଣ**—ଶ୍ରାବଣ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କର ଦୋଳରେ ଝୁଲିବା ଉତ୍ସବ । ପୁରୀ ଓ ବୃନ୍ଦାବନରେ ଏହି ଯାତ୍ରା ଉପଲକ୍ଷେ ବିଶେଷ ଉତ୍ସବ ହୁଏ ।

•

## ଟ ଠ

## ଡ

**ଡାକ ଋଷି**—କେତେକ ପ୍ରବଚନ ରଚୟିତା ପ୍ରାଚୀନ ଋଷିଙ୍କ କଳ୍ପିତ ନାମ । ଫଳିତ ଜ୍ୟୋତିଷ, କୃଷି ଗଣିତ, ଋତୁ, ଶୁଭାଶୁଭ, ଶକୁନ, ବୃଷ୍ଟି, ଆସନ୍ନ ଦୁର୍ଭିକ୍ଷ ଆଦି ସମ୍ବନ୍ଧେ କେତେଗୁଡ଼ିଏ ପ୍ରବଚନ ଡାକ ଋଷିଙ୍କ ଦ୍ୱାରା ରଚିତ ବୋଲି ଜନସାଧାରଣ କହନ୍ତି । ଏହି ବଚନମାନ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ଓ ଭିନ୍ନ ଭିନ୍ନ ଭାଷାରେ ମଧ୍ୟ ଚଳିବାର ଦେଖାଯାଏ । (ଭାଷାକୋଷ)

**ଡାକିନୀ**—କାଳୀଙ୍କ ଗଣ ବା ଅନୁଚରବିଶେଷ, ପିଶାଚୀ ବିଶେଷ ।

**ଡାମର**—ତନ୍ତ୍ରଗ୍ରନ୍ଥବିଶେଷ, ଏହା ଶିବ କଥିତ ଶାସ୍ତ୍ର, ଏଥିର ଛଅଭାଗ ଅଛି । ଯୋଗଡ଼ାମର, ଶିବଡ଼ାମର, ଦୁର୍ଗାଡ଼ାମର, ସାରସ୍ୱତଡ଼ାମର, ବ୍ରହ୍ମ ଡାମର ଓ

ଗନ୍ଧର୍ବଡ଼ାମର, ଉଡ୍‌ଡୀଶ ଡାମର, ଆଦି ତନ୍ତ୍ରରେ ମୋହନ, ବଶୀକରଣ, ଉଚ୍ଚାଟନ, ମାରଣଆଦି ଅଭିଚାର ମନ୍ତ୍ର ଓ ପ୍ରୟୋଗ ଆଦି ଲେଖାଅଛି ।

(ଭାଷାକୋଷ)

**ଡମ୍ବକ**—ଶାଲ୍ୱନଗରର ରାଜା ବ୍ରହ୍ମଦତ୍ତଙ୍କ ପୁତ୍ର । ଏହାଙ୍କର ବୈମାତ୍ରେୟ ଭ୍ରାତା ହଂସ । ହଂସ ଓ ଡମ୍ବକ ମହାଦେବଙ୍କ ବର ପ୍ରସାଦରୁ ଦେବାସୁର ଗନ୍ଧର୍ବ-ମାନଙ୍କ ଦ୍ୱାରା ଅବଧ ହୋଇଥିଲେ । ବିରୂପାକ୍ଷ ଓ କୁମ୍ଭୋଦର ନାମକ ଦୁଇଟି ଭୂତ ସଦର ଏମାନଙ୍କ ସହିତ ସବୁବେଳେ ରହୁଥାନ୍ତି । ଥରେ ଏମାନେ ଦୁର୍ବାସା ମୁନିଙ୍କୁ ଅପମାନ ଦେଇ ତାଙ୍କର କମଣ୍ଡଳୁ, ଦଣ୍ଡ ଓ ପାତ୍ର ପ୍ରଭୃତି ଛିନ୍ନଭିନ୍ନ କରିଦେଲେ । ମୁନି ଶ୍ରୀକୃଷ୍ଣଙ୍କ ନିକଟରେ ଏସବୁ କଥା କହି ସେମାନଙ୍କ ଔଦ୍ଧତ୍ୟର ପ୍ରତିକାର କରିବା ପାଇଁ କହିଲେ । ଶ୍ରୀକୃଷ୍ଣ ହଂସ ଓ ଡମ୍ବକ ସହିତ ଯୁଦ୍ଧ ଆରମ୍ଭ କଲେ । ଡମ୍ବକ ସହିତ ସାତ୍ୟକି ଯୁଦ୍ଧ କଲେ, ଶ୍ରୀକୃଷ୍ଣ ହଂସ ସହିତ ଯୁଦ୍ଧ କରି କରି ଅନେକ ଦୂର ଚାଲିଗଲେ । ଡମ୍ବକ ମନେକଲା ତାର ଭାଇ ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ହୋଇଅଛି । ତେଣୁ ସେ ଯୁଦ୍ଧ ଛାଡ଼ି ଯମୁନାରେ ପଶି ନିଜ ଜିଭ ନିଜେ ଉପାଡ଼ି ପ୍ରାଣତ୍ୟାଗ କଲା । (ହରିବଂଶ)

•



**ଢେଙ୍କା** – ପ୍ରାଚୀନ କାଳରେ ଢେଙ୍କାନାଳରେ ରାଜତ୍ୱ କରୁଥିବା ଋଣପ୍ରିୟ ଶବର ରାଜା । ରାଧାନାଥ କହନ୍ତି—

କପିଳାଶ କୋଳ ନିବାସୀ ଶବର ।
ଋଣରଙ୍କ ଢେଙ୍କା ଯା ବଂଶଶେଖର ।''

ଏହାର ବାସସ୍ଥାନ ଶାଳିଆ ପର୍ବତ । ଶ୍ରୀଧର ଭଞ୍ଜ ନାମକ ଜଣେ କ୍ଷତ୍ରିୟ ରାଜା ତାକୁ ପରାଜିତ କରି ତାହା ନାମରେ ରାଜ୍ୟର ନାମ ଢେଙ୍କାନାଳ ଦେଲେ । (ଭାଷାକୋଷ)

•



**ତଅପୋଇ**—ଖଡ଼ୁରୁକୁଣି ଓଷାବର୍ଣ୍ଣିତ ଜନୈକ ସାଧବଙ୍କ ଏକମାତ୍ର କନ୍ୟାର ନାମ ।

**ତକ୍ଷ**—ରାଜା ଭରତଙ୍କ ପୁତ୍ର । ଏ ଗାନ୍ଧାର ଦେଶର ରାଜା ଥିଲେ । ଏହାଙ୍କ ରାଜଧାନୀ ଥିଲା ତକ୍ଷଶିଳା ।

**ତକ୍ଷକ**—ଅଷ୍ଟ ନାଗମାନଙ୍କ ମଧ୍ୟରେ ଅନ୍ୟତମ । ଏ କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭରୁ ଜନ୍ମି ଥିଲେ । ସର୍ପରାଜ ବାସୁକି ଏହାଙ୍କର ଭାଇ । ଖାଣ୍ଡବ ବନରେ ଏହାଙ୍କର ନିବାସ । ଏ ପରୀକ୍ଷିତ ମହାରାଜଙ୍କୁ ବ୍ରହ୍ମଶାପ ଅନୁଯାୟୀ ଦଂଶନ କରିବାରୁ ପରୀକ୍ଷିତ ପ୍ରାଣ ହରାଇଲେ । ପରୀକ୍ଷିତଙ୍କ ମୃତ୍ୟୁ ପରେ ତଦୀୟ ପୁତ୍ର ଜନମେଜୟ ସର୍ପଯଜ୍ଞ କରି ସର୍ପକୁଳ ନିର୍ମୂଳ କରିବାକୁ ଉଦ୍ୟତ ହେବାରୁ ଆସ୍ତିକ ମୁନିଙ୍କ ଚେଷ୍ଟାରେ ଉକ୍ତ ଯଜ୍ଞାଗ୍ନିରେ ନ ପଡ଼ି ତକ୍ଷକ ରକ୍ଷା ପାଇଥିଲେ । (ଆସ୍ତିକ ଦେଖ) ଶରୀରସ୍ଥ ଦଶଗୋଟି ବାୟୁ ମଧ୍ୟରୁ ଗୋଟିଏ । ଶରୀରସ୍ଥ ଦଶ ବାୟୁ ଯଥା—ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ, ତକ୍ଷକ, ଧନଞ୍ଜୟ, ପୌଣ୍ଡ୍ରକ, ଦେବଦତ୍ତ, ଶଙ୍ଖ । ଭାଗବତରେ ଲିଖିତ ପ୍ରସେନଜିତ୍‌ଙ୍କ ପୁଅ । (ଭାଷାକୋଷ)

**ତନ୍ତ୍ରୀପାଳ**—ବିରାଟ ରାଜ୍ୟରେ ଛଦ୍ମବେଶଧାରୀ ପାଣ୍ଡବମାନଙ୍କର ଅଜ୍ଞାତ ବନବାସ କାଳରେ ସହଦେବ ଧାରଣ କରିଥିବା ନାମ ।

**ତପତୀ**—ସୂର୍ଯ୍ୟକନ୍ୟା । ଏ ଛାୟାଙ୍କ ଗର୍ଭରୁ ଜନ୍ମିଥିଲେ । (ଛାୟା ଦେଖ) । କୁରୁବଂଶରେ ଋକ୍ଷନାମକ ଏକ ବିଖ୍ୟାତ ରାଜା ଥିଲେ । ଋକ୍ଷଙ୍କ ପୁତ୍ର ସମ୍ବରଣ ଅତି ସୂର୍ଯ୍ୟଭକ୍ତ ଥିଲେ । ସୂର୍ଯ୍ୟଦେବ ତାଙ୍କ ତପସ୍ୟାରେ ଅତିଶୟ ତୁଷ୍ଟ ହୋଇ ତାଙ୍କୁ ସ୍ୱୀୟ କନ୍ୟା ତପତୀଙ୍କୁ ଅର୍ପଣ କରିଥିଲେ ।

(ମହାଭାରତ ଆଦିପର୍ବ)

**ତପନତନୟ**—(କର୍ଣ୍ଣ ଦେଖ) ସୁଗ୍ରୀବଙ୍କ ନାମାନ୍ତର, ଯମ ଓ ଶନିଗ୍ରହ ।

**ତପୋବନ**—ତୀର୍ଥ ସ୍ଥାନବିଶେଷ । ଏହା ହରିଦ୍ୱାରର ଉତ୍ତରରେ ହୃଷୀକେଶ ଓ ଲଛମନ୍ ଝୁଲାର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । କେହି କେହି କହନ୍ତି ଏହା ବୃନ୍ଦାବନର ଅନ୍ତର୍ଗତ ଏବଂ ଏଠାରେ ଗୋପୀମାନେ କାତ୍ୟାୟନୀ ବ୍ରତ ଅନୁଷ୍ଠାନ କରିଥିଲେ । (ଭାଷାକୋଷ)

**ତପୋଲୋକ**—ସପ୍ତଭୁବନ ମଧ୍ୟରୁ ତପଃ ନାମକ ଭୁବନ । ଏହା ଜନଲୋକର ଊର୍ଦ୍ଧ୍ୱରେ, ପୁରାଣମତରେ ଏହା ପୃଥିବୀଠାରୁ କୋଟି ଯୋଜନ ଊର୍ଦ୍ଧ୍ୱରେ ଅବସ୍ଥିତ । ବଙ୍ଗୀୟ ପଣ୍ଡିତ ଉମେଶଚନ୍ଦ୍ର ବିଦ୍ୟାରତ୍ନଙ୍କ ପ୍ରଣୀତ 'ମାନବେର ଜନ୍ମଭୂମି' ନାମକ ଗ୍ରନ୍ଥ ମତରେ ତପୋଲୋକ 'ହିରଣ୍ମୟ ବର୍ଷ'ର ନାମାନ୍ତର ଏବଂ ଋଷିଆ ଦେଶସ୍ଥ ସାଇବେରିଆର ଅନ୍ତର୍ଗତ । ଉକ୍ତ ଗ୍ରନ୍ଥ ମତରେ ମହର୍ଲୋକ, ତପୋଲୋକ ଓ ବ୍ରହ୍ମଲୋକ ମିଶି ତ୍ରିଦିବ ଅର୍ଥାତ୍ ବର୍ତ୍ତମାନର ସମଗ୍ର ସାଇବେରିଆ ପ୍ରଦେଶ । (ଭାଷାକୋଷ)

**ତମସା**—ବାଲ୍ମୀକି ଆଶ୍ରମ ନିକଟବର୍ତ୍ତୀ ନଦୀ ବିଶେଷ । ଏହି ନଦୀ ଯମୁନାର ଉତ୍ପତ୍ତି ସ୍ଥାନର ନିକଟବର୍ତ୍ତୀ ଗଡ଼ୱାଲ୍ (ଘରୱାଲ୍) ଦେଶରେ ପ୍ରବାହିତ । ଗୋଟିଏ ବ୍ୟାଧ କ୍ରୌଞ୍ଚ ଯୁଗଳ ମଧ୍ୟରୁ ଗୋଟିକୁ ମାରି ପକାଇବା ଦେଖି ନଦୀ ନିକଟସ୍ଥ ଏହି ଅରଣ୍ୟରେ ବାଲ୍ମୀକି ମୁନିଙ୍କ ମୁଖରୁ ଛନ୍ଦୋବଦ୍ଧ ପ୍ରଥମ ଶ୍ଲୋକ ଉଚ୍ଚାରିତ ହୋଇଥିଲା । ଯଥା—

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ ।
ଯତ୍ କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତମ୍ । (ରାମାୟଣ)

**ତାଡ଼କା**—ସୁକେତୁ ନାମକ ଯକ୍ଷର ଦୁହିତା । ସୁକେତୁ ନିଃସନ୍ତାନ ହେବାରୁ କ୍ଷୁବ୍ଧ ହୋଇ ବ୍ରହ୍ମାଙ୍କୁ ଆରାଧନା କଲେ । ପ୍ରଜାପତି ବ୍ରହ୍ମାଙ୍କ କୃପାରୁ ସେ ତାଡ଼କା ନାମ୍ନୀ କନ୍ୟା ପ୍ରାପ୍ତ ହେଲେ । ଜମ୍ଭ ପୁତ୍ର ସୁନ୍ଦ ସହିତ ତାଡ଼କାର ବିବାହ ହୋଇଥିଲା । କୌଣସି କାରଣବଶତଃ ମହର୍ଷି ଅଗସ୍ତିଙ୍କ ଯୋଗୁଁ ସୁନ୍ଦର ପ୍ରାଣନାଶ ହୋଇଗଲା । ତାଡ଼କା ସ୍ୱାମୀ ନିଧନରେ କ୍ରୋଧପରବଶ ହୋଇ ଅଗସ୍ତିଙ୍କ ବିନାଶ ସାଧନ କରିବା ଲାଗି ନିଜ ପୁତ୍ର ମାରୀଚ ସହିତ ଅଗସ୍ତ୍ୟାଶ୍ରମକୁ ଗଲା । ଅଗସ୍ତିଙ୍କ ଅଭିଶାପ ଯୋଗେ ମାଆ ପୁଅ ଉଭୟେ ରାକ୍ଷସ ଓ ରାକ୍ଷସୀ ହୋଇଗଲେ । ସେହି ଦିନଠାରୁ ବ୍ରାହ୍ମଣଜାତି ପ୍ରତି ଉଭୟଙ୍କର ଅଶେଷ କ୍ରୋଧ ଜାତ ହେଲା । ବ୍ରାହ୍ମଣ ଦେଖିଲେ ଏ ଉଭୟେ ତାଙ୍କୁ ଆକ୍ରମଣ କରି ହତ୍ୟା କରୁଥିଲେ । ଏହାରି ଉପରେ ମହର୍ଷି ଅଗସ୍ତିଙ୍କ

ଆଶ୍ରମ କ୍ରମେ ମହାରଣ୍ୟରେ ପରିଣତ ହେଲା । ସେଠାରେ କେହି ହେଲେ ମୁନିଋଷି ରହିଲେ ନାହିଁ । ଏହାପରେ ଏହି ଅରଣ୍ୟ 'ତାଡ଼କାବନ' ନାମରେ ଅଭିହିତ ହୋଇଥିଲା । ମୁନିମାନେ ଏହି ମାଆ ପୁଅଙ୍କ ଉପଦ୍ରବରେ ପ୍ରମାଦ ଗଣିବାକୁ ଲାଗିଲେ । ଅବଶେଷରେ ମହର୍ଷି ବିଶ୍ୱାମିତ୍ର ଅଯୋଧ୍ୟାକୁ ଆଗମନ କରି ତାଡ଼କା ବଧ ନିମିତ୍ତ ଅଯୋଧ୍ୟାଧିପତି ଦଶରଥଙ୍କଠାରୁ ତାହାଙ୍କ ପୁତ୍ର ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ସେହିଠାକୁ ନେଇଗଲେ । ସେହିଠାରେ ଶ୍ରୀରାମଙ୍କ ବାଣା-ଘାତରେ ତାଡ଼କା ପ୍ରାଣତ୍ୟାଗ କଲା । ବାମ୍ଭ ବାଣରେ ମାରୀଚ ଉଡ଼ିଯାଇ ସମୁଦ୍ର କୂଳରେ ପଡ଼ିଲା । ସୀତାହରଣ ସମୟରେ ଏହି ମାରୀଚ ରାବଣ ଅନୁରୋଧରେ କନକମୃଗ ହେବା କଥା ରାମାୟଣରେ ଅନୁସନ୍ଧେୟ ।

**ତାପ୍ତୀ**—ସ୍କନ୍ଦପୁରାଣ ତାପୀ ଖଣ୍ଡରେ ଲେଖାଅଛି ଯେ ବରୁଣ ଅଗସ୍ତ୍ୟମୁନିଙ୍କ ଶାପରେ ସମ୍ବରଣ ନାମରେ ସୋମବଂଶର ରାଜା ହେଲେ ଓ ବହୁ ତପସ୍ୟା କରି ସୂର୍ଯ୍ୟଙ୍କ ପରମରୂପବତୀ ଓ ପାପନାଶିନୀ କନ୍ୟା ତାପୀଙ୍କୁ ବିବାହ କଲେ । ତାପୀ, ତାପନ୍ତୀ ବା ତାପ୍ତୀ ନଦୀରୂପେ ଧରାତଳରେ ବହୁଅଛନ୍ତି । ଏ ନଦୀରେ ସ୍ନାନ କଲେ ସବୁ ପାତକ ନାଶହୁଏ । ଏହା ତଟରେ ଗଜତୀର୍ଥ, ଅକ୍ଷମାଳା-ତୀର୍ଥ ଆଦି ଅନେକ ତୀର୍ଥ ଅଛି, ଓ ତଟ ଦେଶର ଭିନ୍ନ ଭିନ୍ନ ସ୍ଥାନରେ ୧୦୮ ମହାଲିଙ୍ଗ ଅଛନ୍ତି । (ହିନ୍ଦୀ ଶବ୍ଦସାଗର, ଭିଷାକୋଷ)

**ତାରକ**—(୧) ଦେବଦ୍ୱେଷୀ ଅସୁରବିଶେଷ । ତପସ୍ୟାରେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଏ ଦୁଇଗୋଟି ବର ପାଇଥିଲେ । ପ୍ରଥମତଃ ପୃଥିବୀରେ ତାହା ଅପେକ୍ଷା ଅଧିକତର ବଳଶାଳୀ ଆଉ କେହି ଯେପରି ଜନ୍ମ ଗ୍ରହଣ ନ କରେ । ଦ୍ୱିତୀୟତଃ ଦେବଦେବ ମହାଦେବଙ୍କ ଔରସଜାତ ପୁତ୍ର ଦ୍ୱାରା ତାର ନିଧନ ହେବ । ବ୍ରହ୍ମାଙ୍କ ବର ପ୍ରସାଦରୁ ରାକ୍ଷସ ଅତି ପରାକ୍ରମୀ ହୋଇ ଦେବତା-ମାନଙ୍କ ଉପରେ ନାନା ଉତ୍ପୀଡ଼ନ ଆରମ୍ଭ କଲା । ଦେବତାମାନେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ବ୍ରହ୍ମା କହିଲେ, 'ମୁଁ ତାକୁ ମାରି ପାରିବି ନାହିଁ । ଯେହେତୁ ମୋହର ବର ପ୍ରସାଦରୁ ତାରକ କେବଳ ଶିବଙ୍କ ପୁତ୍ର ଦ୍ୱାରା ନିଧନ ହେବ ବୋଲି ଅଭୟ ପାଇଛି । ଅତଏବ ଯେପରି ଶିବଙ୍କର ସନ୍ତାନ ଉତ୍ପତ୍ତି ହେବ ସେ ବିଷୟରେ ସମସ୍ତଙ୍କର ଯତ୍ନ କରିବା ଉଚିତ ।' ଦେବତାମାନେ କନ୍ଦର୍ପଙ୍କୁ ସଙ୍ଗରେ ଧରି ଯୋଗମଗ୍ନ ଶିବଙ୍କ ନିକଟକୁ ଗମନ କଲେ । ଏହି ସମୟରେ ହିମାଦ୍ରିତନୟା ପାର୍ବତୀ ଶିବଙ୍କ ଆରାଧନା ନିମିତ୍ତ ପୁଷ୍ପ ଚୟନ କରି ତାଙ୍କ ସମ୍ମୁଖରେ ଥିଲେ । କାମଦେବ ବାଣ ନିକ୍ଷେପ କଲେ । କନ୍ଦର୍ପ ଶରାହତ

ମହାଦେବ ଚଞ୍ଚଳମନା ହେଲେ ଓ ତାଙ୍କର ଯୋଗଭଗ୍ନ ହେଲା । ସେ କ୍ରୋଧକଷାୟିତ ନେତ୍ରରେ ଇତସ୍ତତଃ ଦୃଷ୍ଟିପାତ କଲେ । ଦେବତାମାନେ ଭୟରେ ପଳାଇ ଗଲେ । ମାତ୍ର କନ୍ଦର୍ପ ପଳାୟନ କରିବାକୁ ଅବସର ପାଇଲେ ନାହିଁ । ସେ ମହାଦେବଙ୍କ ନେତ୍ରାଗ୍ନିରେ ଭସ୍ମ ହୋଇଗଲେ । ଅନନ୍ତର ମହାଦେବ ସେଠାରୁ ପଳାଇ ଯାଇ ଅନ୍ୟତ୍ର ଯୋଗମଗ୍ନ ହେଲେ । ପାର୍ବତୀ ମହାଦେବଙ୍କୁ ନ ପାଇ କଠୋର ତପସ୍ୟା କରିବାକୁ ଲାଗିଲେ । ଏହାପରେ ତପସ୍ୟାରେ କୃତକାର୍ଯ୍ୟ ହୋଇ ପାର୍ବତୀ ମହାଦେବଙ୍କୁ ସ୍ୱାମୀରୂପେ ବରଣ କଲେ । ଶିବପାର୍ବତୀଙ୍କର ବିବାହ ହେଲା । ବିବାହ ପରେ ହରଗୌରୀ ମିଳନ ହେଲେ ମଧ୍ୟ ବହୁକାଳ ପର୍ଯ୍ୟନ୍ତ କୌଣସି ସନ୍ତାନର ଉତ୍ପତ୍ତି ହେଲା ନାହିଁ । ଦେବତା-ମାନେ ଚିନ୍ତାକୁଳ ହେଲେ । ତାରକର ଉତ୍ପୀଡ଼ନ ଆଉ ସେମାନେ ସହ୍ୟ କରି ପାରିଲେ ନାହିଁ । ପରେ ଅଗ୍ନି କପୋତରୂପ ଧାରଣ କରି ମହାଦେବଙ୍କ ସମୀପସ୍ଥ ହେଲେ । ମହାଦେବ କପୋତ ବେଶଧାରୀ ଅଗ୍ନିଙ୍କୁ ତଦୀୟ ଶୁକ୍ର ଧାରଣ କରିବାପାଇଁ ଆଦେଶ ଦେଇ ସମ୍ଭୋଗରହିତ ହେଲେ । ମାତ୍ର ଅଗ୍ନି ଶିବବୀର୍ଯ୍ୟ ଧାରଣ କରି ନ ପାରି ତାହା ଗଙ୍ଗାରେ ନିକ୍ଷେପ କଲେ । ଗଙ୍ଗା ମଧ୍ୟ ଏ କାର୍ଯ୍ୟରେ ଅସମର୍ଥା ହୋଇ ତାହାକୁ ହିମାଳୟ ପାର୍ଶ୍ୱସ୍ଥ ଶରବଣରେ ତ୍ୟାଗ କଲେ । ଏଥିରେ ଦେବତାମାନେ ପ୍ରମାଦ ଗଣି ସେହି ଶୁକ୍ର ରକ୍ଷା ପାଇଁ ଷଡ୍ କୃତ୍ତିକାଙ୍କୁ ପଠାଇଲେ । କୃତ୍ତିକାମାନେ ସେହି ରେତଃ ପାନ କରି ଗର୍ଭବତୀ ହେଲେ । ଏକ ସମୟରେ ସେମାନଙ୍କର ପ୍ରସବ ହେଲା । ଏହି ଛଅ ଗର୍ଭଜାତ ଏକତ୍ର ମିଳିତ ହେବା ପରେ ପୃଥିବୀ ଏହି ପୁତ୍ରଟିକୁ ରଖିଲେ । ଏହି ପୁତ୍ର ଶରବଣରେ ଅବସ୍ଥାନ କରି ବଢ଼ିବାକୁ ଲାଗିଲା । ଏହାଙ୍କ ନାମ ହେଲା କାର୍ତ୍ତିକେୟ । କାର୍ତ୍ତିକେୟଙ୍କ ବୟୋବୃଦ୍ଧି ପରେ ଦେବତାମାନେ ତାରକାସୁରର ଉତ୍ପୀଡ଼ନ ବୃତ୍ତାନ୍ତ ତାଙ୍କୁ ଜଣାଇଲେ । କାର୍ତ୍ତିକ ଦେବ-ସେନାପତି ପଦରେ ନିଯୁକ୍ତ ହୋଇ ଅବ୍ୟର୍ଥ ଶକ୍ତି ପ୍ରଭାବରେ ତାରକାସୁରକୁ ବଧ କଲେ । (ମହାଭାରତ-ଅନୁଶାସନ ପର୍ବ, କାର୍ତ୍ତିକେୟ ଦେଖ) ।

(୨) ଇନ୍ଦ୍ରଦ୍ୱେଷୀ ଅସୁରବିଶେଷ । ଏ ଅସୁର ଦ୍ୱାରା ଇନ୍ଦ୍ର ଅତିଶୟ ଉତ୍ପୀଡ଼ିତ ହେବାରୁ ବିଷ୍ଣୁ ନପୁଂସକ ରୂପ ଧାରଣ କରି ଏହାକୁ ବଧ କଲେ । (ଗରୁଡ଼ ପୁରାଣ)

**ତାରା**—(୧) କପୀନ୍ଦ୍ର ବାଲୀଙ୍କ ମହିଷୀ । ସୁଷେଣ ନାମକ ବାନରରାଜା ଏହାଙ୍କର ପିତା ଓ ଅଙ୍ଗଦ ଏହାଙ୍କର ଏକମାତ୍ର ପୁତ୍ର । ରାମଚନ୍ଦ୍ରଙ୍କ ଦ୍ୱାରା ବାଲୀ ବଧ

ହେବାପରେ ଦେବର ସୁଗ୍ରୀବଙ୍କୁ ତାଙ୍କ ପତିରୂପେ ବରଣ କରିଥିଲେ ।
(ରାମାୟଣ)

ଲୌକିକ ବ୍ୟବହାରରେ ଏହାଙ୍କ ନାମ ପଞ୍ଚ କନ୍ୟାରୂପେ ଗ୍ରହଣ କରାଯାଇଛି । ତେଣୁ ଏ ପଞ୍ଚ କନ୍ୟା ପ୍ରାତଃ ସ୍ମରଣୀୟା ହୋଇଛନ୍ତି—

"ଅହଲ୍ୟା ଦ୍ରୌପଦୀ ତାରା କୁନ୍ତୀ ମନ୍ଦୋଦରୀ ତଥା ।
ପଞ୍ଚକନ୍ୟାଂ ସ୍ମରେନ୍ନିତ୍ୟଂ ମହାପାତକନାଶନମ୍ ।"

(୨) ଦଶ ମହାବିଦ୍ୟା ଅନ୍ତର୍ଗତ ଏକ ବିଦ୍ୟା । ତନ୍ତ୍ରରେ ଏ ନୀଳବର୍ଣ୍ଣା, ଲୋଲଜିହ୍ୱା, କରାଳବଦନା, ସର୍ପାବଦ୍ଧା, ଏକଜଟା, ତ୍ରିନୟନା, ଲମ୍ବୋଦରୀ, ଚତୁର୍ହସ୍ତା, ବ୍ୟାଘ୍ରଚର୍ମାମ୍ବରା ବୋଲି ବର୍ଣ୍ଣିତ ହୋଇଅଛନ୍ତି । ଚାରି ହାତରେ ଯଥାକ୍ରମେ ନୀଳପଦ୍ମ, ଖଡ୍ଗ, କାତି ଓ ନରମୁଣ୍ଡ ଧରି ଶିବା (ବିଲୁଆ) ଉପରେ ଆରୋହଣ କରିଥିବାର ବର୍ଣ୍ଣିତ ହୋଇଅଛି । (ଜ୍ଞାନେନ୍ଦ୍ର, ଭାଷାକୋଷ)

(୩) ଦେବଗୁରୁ ବୃହସ୍ପତିଙ୍କ ପତ୍ନୀ । ଚନ୍ଦ୍ର ତାରାଙ୍କର ଅପରୂପ ଲାବଣ୍ୟରେ ବିମୁଗ୍ଧ ହୋଇ ତାହାଙ୍କୁ ହରଣ କଲେ । ବୃହସ୍ପତି ଚନ୍ଦ୍ରଙ୍କର ଏ ଦୁଷ୍କୃତି ସ୍ୱା, ଦେବତାମାନଙ୍କୁ ଜଣାଇ ପ୍ରତିକାର ଲୋଡ଼ିଲେ । ଦେବତା ଓ ଋଷିମାନେ ତାରାଙ୍କୁ ବୃହସ୍ପତିଙ୍କୁ ଫେରାଇ ଦେବା ପାଇଁ ଚନ୍ଦ୍ରଙ୍କୁ ଅନୁରୋଧ କଲେ । ମାତ୍ର ଚନ୍ଦ୍ର ଏଥିରେ ରାଜି ହେଲେ ନାହିଁ । ରୁଦ୍ରଦେବ ବୃହସ୍ପତିଙ୍କ ପକ୍ଷ ନେଇ ଯୁଦ୍ଧ କରିବା ପାଇଁ ଅଗ୍ରସର ହେଲେ । ବ୍ରହ୍ମା ଏହା ଏକ ଭାବୀ ବିପଦ ହେବ ବୋଲି ବିଚାରି ତାରାଙ୍କୁ ଚନ୍ଦ୍ରଙ୍କଠାରୁ ନେଇ ବୃହସ୍ପତିଙ୍କୁ ଦେଲେ । ତାରା ସେତେବେଳେ ଗର୍ଭବତୀ ଥିଲେ । ଏହି ଗର୍ଭରୁ ଉତ୍ପନ୍ନ ସନ୍ତାନଙ୍କ ନାମ ହେଲା ବୁଧ । ବୃହସ୍ପତିଙ୍କ ଅଭିଶାପରେ ଚନ୍ଦ୍ରଙ୍କ କଳାର କ୍ଷୟ ଘଟିଲା ।

**ତାଳଧ୍ୱଜ**—ବଳରାମଙ୍କ ରଥର ନାମ । ଶ୍ରୀକୃଷ୍ଣଙ୍କ ନାମାନ୍ତର, ବଳରାମ ।

**ତାଳବନ**—ଗୋବର୍ଦ୍ଧନ ପର୍ବତର ଉତ୍ତରରେ ଯମୁନା କୂଳରେ ଥିବା ପ୍ରାଚୀନ-କାଳର ଏକ ତାଳବୃକ୍ଷର ବଣ । ଏହିଠାରେ ବଳରାମ ଧେନୁକା ନାମକ ଅସୁରକୁ ବିନାଶ କରିଥିଲେ । (ଶ୍ରୀମଦ୍‌ଭାଗବତ)

**ତଳୋତ୍ତମା**—ପ୍ରାଚୀନକାଳରେ ଦୈତ୍ୟରାଜ ହିରଣ୍ୟକଶିପୁଙ୍କ ବଂଶରେ ନିକୁମ୍ଭ ନାମକ ଏକ ଅସୁର ଜନ୍ମିଥିଲା । ଏହି ନିକୁମ୍ଭର ଦୁଇଟି ପୁତ୍ର—ସୁନ୍ଦ ଓ

ଉପସୁନ୍ଦ । ଏ ଦୁଇ ଭାଇ ତ୍ରିଲୋକବିଜୟୀ ହେବା କାମନାରେ ବିନ୍ଧ୍ୟାଚଳରେ କଠୋର ତପସ୍ୟା କରିଥିଲେ । ବ୍ରହ୍ମା ଏହି ତପସ୍ୟାରେ ତୃପ୍ତ ହୋଇ ବର ଦେବାକୁ ଆସିଲେ । ରାକ୍ଷସଦ୍ୱୟ ବର ମାଗିଲେ, 'ଆମ୍ଭେମାନେ ତ୍ରିଲୋକବାସୀ କୌଣସି ଲୋକ ଦ୍ୱାରା ବିନାଶ ପ୍ରାପ୍ତ ହେବୁ ନାହିଁ । ଯଦି ବିବାଦପରାୟଣ ହୋଇ ଆମ୍ଭେମାନେ ପରସ୍ପର ଯୁଦ୍ଧ କରୁ ତେବେ ଜଣେ ଅନ୍ୟଜଣଙ୍କୁ ମୃତ୍ୟୁ ଦେଇପାରିବ ନଚେତ୍ ଆମ୍ଭେମାନେ ମରିବୁ ନାହିଁ ।' ବ୍ରହ୍ମା ସେମାନଙ୍କୁ ବର ଦେଇ ପ୍ରସ୍ଥାନ କରିବା ପରେ ଅସୁରଦ୍ୱୟ ଋଷିମାନଙ୍କ ଉପରେ ପ୍ରବଳ ଅତ୍ୟାଚାର ଆରମ୍ଭ କଲେ । ଯଜ୍ଞ କାର୍ଯ୍ୟ ସବୁ ଲୋପ ହେବାକୁ ବସିଲା । ରାକ୍ଷସଙ୍କ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ଋଷିମାନେ ବ୍ରହ୍ମାଙ୍କ ଶରଣାର୍ଥୀ ହେଲେ । ବ୍ରହ୍ମା ବିଶ୍ୱକର୍ମାଙ୍କୁ ସ୍ମରଣ କରି କହିଲେ—'ତୁମେ ଏକ ତ୍ରିଲୋକ-ସୁନ୍ଦରୀ ରମଣୀ ସୃଷ୍ଟି କର ।' ବିଶ୍ୱକର୍ମା ଏ ଜଗତରେ ଯେତେ ପ୍ରକାର ରତ୍ନ ଥିଲା ସେସବୁ ତିଳ ତିଳ କରି ଏକ ରମଣୀରତ୍ନ ସୃଷ୍ଟି କଲେ । ଏହି ସ୍ତ୍ରୀର ନାମ ହେଲା ତିଳୋତ୍ତମା । ବ୍ରହ୍ମା ଏହି ସ୍ତ୍ରୀକୁ ସୁନ୍ଦ ଓ ଉପସୁନ୍ଦ ନିକଟକୁ ପଠାଇଲେ । ଦୁଇ ଭାଇ ଏ ଅପୂର୍ବ ଲାବଣ୍ୟବତୀ ରମଣୀକୁ ଦେଖି ତାହା ପାଇଁ ବିବାଦ କରି ମଲେ । ତ୍ରିଭୁବନ ଶାନ୍ତ ହେଲା । ଯୋଗୀ ଋଷିମାନେ ଯଥାବିଧି ଯଜ୍ଞକାର୍ଯ୍ୟ ସମାପନ କଲେ । (ମହାଭାରତ ଆଦିପର୍ବ)

ଏହି ସ୍ୱର୍ଗବେଶ୍ୟା ଦୁର୍ବାସାଙ୍କ ଶାପରେ ବାଲୀରାଜାଙ୍କ କନ୍ୟାରୂପେ ଜନ୍ମିଥିଲେ । (ବ୍ରହ୍ମବୈବର୍ତ୍ତ, ଶ୍ରୀକୃଷ୍ଣ ଖଣ୍ଡ)

**ତୁଳସୀ** – ଗୋପିକା ବିଶେଷ । ଏହାର ଜନ୍ମ ବିବରଣ ବ୍ରହ୍ମବୈବର୍ତ୍ତ ପୁରାଣରେ ଦେଖାଯାଏ । ଏ ଗୋଲୋକରେ କୃଷ୍ଣପ୍ରିୟା ରାଧିକାଙ୍କର ସହଚରୀ ଥିଲେ । ଶ୍ରୀମତୀ ରାଧିକା ଦେଖିଲେ ଯେ ତୁଳସୀ ଶ୍ରୀକୃଷ୍ଣଙ୍କ ସହିତ କ୍ରୀଡ଼ାରତ ହୋଇଛି । ତେଣୁ ତାକୁ ରାଧା ଅଭିଶାପ ଦେଲେ 'ତୁ ମନୁଷ୍ୟ ଜନ୍ମ ଲାଭ କର ।' ତୁଳସୀ ଏଥିଲାଗି ଶ୍ରୀକୃଷ୍ଣଙ୍କ ଶରଣାପନ୍ନ ହେଲା । ଶ୍ରୀକୃଷ୍ଣ କହିଲେ—'ତୁ ମାନବୀ ହେଲେ ମଧ୍ୟ ତପସ୍ୟା ବଳରେ ମୋର ଅଂଶ ପ୍ରାପ୍ତ ହେବୁ ।' ରାଧିକାଙ୍କ ଶାପରେ ତୁଳସୀ ଧର୍ମଧ୍ୱଜ ରାଜାଙ୍କ ଔରସରେ ତାଙ୍କ ପତ୍ନୀ ମାଧବୀଙ୍କ ଗର୍ଭରୁ ଜନ୍ମ ହେଲେ । ଏହି କନ୍ୟାର ରୂପ ଲାବଣ୍ୟ ଦେଖି ସମସ୍ତେ ଅନ୍ୟ ପଦାର୍ଥ ସହିତ ତାହାକୁ ତୁଳନା କରିବାକୁ ଅସମର୍ଥ ହେବାରୁ ଏହାର ନାମ ରଖାଯାଇଥିଲା ତୁଳସୀ । ତୁଳସୀ ବନରେ କଠୋର ତପସ୍ୟା କଲା । ତାର ତପସ୍ୟାରେ ପ୍ରୀତ ହୋଇ ବ୍ରହ୍ମା ତାକୁ ବର ଯାଚିଲେ । ତୁଳସୀ କୃଷ୍ଣଙ୍କୁ ସ୍ୱାମୀରୂପେ ଲାଭ କରିବା ପାଇଁ ପ୍ରାର୍ଥନା କଲା । ବ୍ରହ୍ମା କହିଲେ—'ଶ୍ରୀକୃଷ୍ଣଙ୍କ

ଅଙ୍ଗସମ୍ଭୂତ ସୁଦାମା ଗୋପାଳ ଗୋଲୋକରେ ବାସ କରୁଛି । ସୁଦାମା ଶ୍ରୀରାଧାଙ୍କ ଶାପରେ ଏବେ ଶଙ୍ଖଚୂଡ଼ ହୋଇ ଜନ୍ମିଛି । ତୁ ବର୍ତ୍ତମାନ ତାକୁ ସ୍ୱାମୀରୂପେ ବରଣ କର । ପରେ ତୋତେ ଶ୍ରୀକୃଷ୍ଣ ପ୍ରାପ୍ତି ହେବ । ତୁ ଅତ ପବିତ୍ରଭାବରେ ତାଙ୍କ ଅଙ୍ଗ ସଙ୍ଗ ଲାଭ କରିବୁ ।' ବ୍ରହ୍ମା ଗିବା ପରେ ଶଙ୍ଖଚୂଡ଼ ସହିତ ତୁଳସୀର ପରିଣୟ ସମ୍ପାଦିତ ହେଲା । କ୍ରମେ ଶଙ୍ଖଚୂଡ଼ର ଉତ୍ପାତରେ ଦେବତାମାନେ ପ୍ରମାଦ ଗଣିଲେ । ଶଙ୍ଖଚୂଡ଼କୁ ବ୍ରହ୍ମାଙ୍କର ବର ଥିଲା ଯେ, ତା ସ୍ତ୍ରୀର ସତୀତ୍ୱ ନଷ୍ଟ ନ ହେଲେ ସେ ମରିବ ନାହିଁ । ଦେବ ରକ୍ଷା ଉଦ୍ଦେଶ୍ୟରେ ନାରାୟଣ ଶଙ୍ଖଚୂଡ଼ ମୂର୍ତ୍ତି ଧରି ତୁଳସୀର ସତୀତ୍ୱ ନଷ୍ଟ କଲେ । ଶିବଙ୍କ ଯୋଗେ ଦାନବରାଜ ଶଙ୍ଖଚୂଡ଼ ବଧ ହେଲା । ତାର ଅସ୍ଥି ସବୁ ଲବଣ ସମୁଦ୍ରରେ ପଡ଼ିଲା । ସେହି ଅସ୍ଥି ଗୁଡ଼ିକ ହେଲା ଶଙ୍ଖ । ଏବେ ଶଙ୍ଖ ଦେବାର୍ଚ୍ଚନା ଓ ଅନ୍ୟାନ୍ୟ ମାଙ୍ଗଳିକ କାର୍ଯ୍ୟରେ ବ୍ୟବହୃତ ହେଉଛି । ତୁଳସୀ ନିଜର ସତୀତ୍ୱ ନଷ୍ଟ ହୋଇଛି ଜାଣି ନାରାୟଣଙ୍କୁ ଶାପ ଦେଲା—'ତୁମେ ପାଷାଣ ହୋଇ ରହ ।' ସ୍ୱାମୀର ମୃତ୍ୟୁ ସମ୍ବାଦ ଶ୍ରବଣ କରି ସତୀ ତୁଳସୀ ନାରାୟଣଙ୍କ ପାଦପଦ୍ମ ତଳେ ପତିତ ହେଲା । ନାରାୟଣ କହିଲେ—'ତୋର ଦେହର ଗଣ୍ଡକୀ ନଦୀ ହେଉ । ତୋର କେଶଗୁଡ଼ିକ ତୁଳସୀବୃକ୍ଷରୂପେ ଜନ୍ମୁ । ତୁ ଲକ୍ଷ୍ମୀଭଳି ମୋର ପ୍ରିୟା ହେବୁ । (ବ୍ରହ୍ମବୈବର୍ତ୍ତ ପ୍ରକୃତିଖଣ୍ଡ)

ପଦ୍ମପୁରାଣ ମତରେ—ଜଳଧର ବା ଜଳନ୍ଧର ନାମକ ଅସୁରର ପତ୍ନୀ ଥିଲେ ବୃନ୍ଦା । ଏ କାଳନେମୀ ଅସୁରର ଝିଅ । ଜଳନ୍ଧର ଇନ୍ଦ୍ରଙ୍କୁ ପରାସ୍ତ କରି ସ୍ୱର୍ଗରେ ରାଜା ହେବାକୁ ଇଚ୍ଛା କରିବାରୁ ଇନ୍ଦ୍ର ଶିବଙ୍କ ଶରଣାପନ୍ନ ହେଲେ । ପୁଣି ଜଳନ୍ଧର ପାର୍ବତୀଙ୍କୁ ଲାଭ କରିବା ପାଇଁ ଶିବଙ୍କ ପାଖକୁ ଦୂତ ପଠାଇବାରୁ ଶିବ କ୍ରୋଧରେ ଏହା ସହିତ ଯୁଦ୍ଧ କଲେ । ମାତ୍ର ପତିପରାୟଣା ବୃନ୍ଦାଙ୍କ ଯୋଗୁଁ ଜଳନ୍ଧରର କିଛି କ୍ଷତି ହେଲାନାହିଁ । ବିଷ୍ଣୁ ଜଳନ୍ଧର ରୂପରେ ବୃନ୍ଦାଙ୍କ ସତୀତ୍ୱ ନଷ୍ଟ କରିବା ଯୋଗେ ଜଳନ୍ଧରର ପତନ ଦେଲା । ବୃନ୍ଦା ବିଷ୍ଣୁଙ୍କର ଏହି କୁକାର୍ଯ୍ୟ ଜାଣିପାରି ତାଙ୍କୁ ଅଭିଶାପ ଦେବାକୁ ଉଦ୍ୟତ ହେଲେ । ବିଷ୍ଣୁ କହିଲେ—'ତୁମେ ସ୍ୱାମୀସହ ସହମୃତା ହୁଅ । ତୁମ୍ଭ ଚିତାଭସ୍ମରୁ ତୁଳସୀ, ଧାତ୍ରୀ, ପଲାଶ ଓ ଅଶ୍ୱତ୍ଥ ବୃକ୍ଷ ହୋଇ ଯୁଗେ ଯୁଗେ ପୂଜା ପାଉଥାଉ ।'

**ତୁଳସୀକ୍ଷେତ୍ର**—କଟକ ଜିଲ୍ଲାର ଆଧୁନିକ କେନ୍ଦ୍ରାପଡ଼ା । ଲଳିତଗିରିବାସୀ କନ୍ଦରପୁରର କନ୍ୟାର ନାମ ତୁଳସୀ । ବଳରାମ ଏହାଙ୍କୁ ସଂହାର କରି

ତୁଳସୀଙ୍କୁ ବିବାହ ହୋଇଥିଲେ । ଏବେ କେନ୍ଦ୍ରାପଡ଼ାରେ ବଳଦେବଜୀଉଙ୍କ ମନ୍ଦିର ଅଛି । ଏହି କେନ୍ଦ୍ରାପଡ଼ାର ଅନ୍ୟନାମ ତୁଳସୀକ୍ଷେତ୍ର । କବି ରାଧାନାଥ ଗାଇଛନ୍ତି—

ପବିତ୍ର ତୁଳସୀକ୍ଷେତ୍ର ବହି ମୁଦ
ବିରାଜନ୍ତି ଯହିଁ ପ୍ରଭୁ ହଳାୟୁଧ ।

**ତୁଳାଧାର**—(୧) ବାରଣସୀବାସୀ ଏକ ଧର୍ମ ପରାୟଣ, ବ୍ରହ୍ମତତ୍ତ୍ୱଜ୍ଞ ବଣିକ । ଏ ମହର୍ଷି ଜାବାଳିଙ୍କୁ ମୋକ୍ଷ ଧର୍ମର ଉପଦେଶ ଦେଇଥିଲେ । (ମହାଭାରତ) (୨) ବାରଣସୀନିବାସୀ ଏକ ବ୍ୟାଧ, ମାତୃ ଓ ପିତୃ ସେବାପରାୟଣ ହୋଇଥିବାରୁ ଏ ସମଦର୍ଶୀ ହୋଇଥିଲେ । ସମସ୍ତଙ୍କର ଜୀବନ ବୃତ୍ତାନ୍ତ ସେ ଅନାୟାସରେ ଜାଣି ପାରୁଥିଲେ ।

**ତୃଣବିନ୍ଦୁ**—ଏହି ଋଷି ୧୪ଶ ଦ୍ୱାପର ଯୁଗରେ ସକଳ ବେଦକୁ ବିଭକ୍ତ କରି ବେଦବ୍ୟାସ ନାମରେ ଖ୍ୟାତ ହୋଇଥିଲେ ।

**ତୃଣାବର୍ତ୍ତ**—କଂସର ଅନୁଚର ଏକ ଦାନବ ବିଶେଷ । କଂସ ଦ୍ୱାରା ପ୍ରେରିତ ହୋଇ ଶ୍ରୀକୃଷ୍ଣ ବଧାର୍ଥେ ଗୋପକୁ ଆସି ବାୟୁରୂପେ କୃଷ୍ଣଙ୍କୁ ଧରି ପଳାଇଗଲା । ଶ୍ରୀକୃଷ୍ଣ ତା କାନ୍ଧରେ ପର୍ବତ ତୁଲ୍ୟ ଭାରି ହେବାରୁ ଅସୁର ଶ୍ରୀକୃଷ୍ଣଙ୍କୁ ଫିଙ୍ଗି ମାରିଦେବାକୁ ବସିଲା । ମାତ୍ର କୃଷ୍ଣ ତାର ତଣ୍ଟି ଚିପି ତାକୁ ମାରି ପକାଇଲେ । (ଭାଗବତ, ଦଶମସ୍କନ୍ଧ) ।

**ତୈତ୍ତିରୀୟ**—ତିତ୍ତିରି ମୁନିଙ୍କ ରଚିତ ଯଜୁର୍ବେଦ ଶାଖାଧ୍ୟାୟୀ ବ୍ରାହ୍ମଣ । ତିତ୍ତିରି ନାମକ ଋଷି ପ୍ରବର୍ତ୍ତିତ ଯଜୁର୍ବେଦାନ୍ତର୍ଗତ ୮୬ଶ ଶାଖା ମଧ୍ୟରୁ ଏକତମ । ଏହା ଆତ୍ରେୟସ୍ୱ ଅନୁକ୍ରମଣିକା ଓ ପାଣିନିଙ୍କ ଅନୁସାରେ ପୁରାଣରେ ଲେଖାଅଛି ଯେ, ଏକଦା ବୈଶମ୍ପାୟନ ବ୍ରହ୍ମହତ୍ୟା କରିଥିଲେ । ଏଥିର ପ୍ରାୟଶ୍ଚିତ୍ତ ପାଇଁ ଯଜ୍ଞ କରିବାକୁ ଆପଣା ଶିଷ୍ୟମାନଙ୍କୁ ଆଦେଶ ଦେଲେ । ଆଦେଶ ଅନୁସାରେ ସବୁ ଶିଷ୍ୟମାନେ ଯଜ୍ଞ କରିବାକୁ ପ୍ରସ୍ତୁତ ହେଲେ, କିନ୍ତୁ ଯାଜ୍ଞବଲ୍‌କ୍ୟ ପ୍ରସ୍ତୁତ ହୋଇ ନଥିବା ଦେଖି ବୈଶମ୍ପାୟନ କୁପିତ ହୋଇ କହିଲେ, 'ତୁମ୍ଭେ ଆମ୍ଭର ଶିଷ୍ୟତ୍ୱ ପରିତ୍ୟାଗ କର ।' ଏଥିରେ ଯାଜ୍ଞବଲ୍‌କ୍ୟ ଗୁରୁଙ୍କଠାରୁ ଯାହା ଶିକ୍ଷା କରିଥିଲେ ତାହା ସବୁ ବାନ୍ତି କରି ପକାଇଲେ । ଏହା ଦେଖି ତାଙ୍କର ସହପାଠୀମାନେ ତିତ୍ତିରି ପକ୍ଷୀରୂପ ଧରି ତାହା ଖୁଣ୍ଟି ନେଲେ । ଏହାହିଁ ତୈତ୍ତିରୀୟ ଶାଖା ହେଲା । ଏହି ଶାଖାର ଉପନିଷଦ ତିନି ଭାଗରେ ବିଭକ୍ତ । ପ୍ରଥମ ଭାଗର ନାମ

ସଂହିତୋପନିଷଦ ବା ଶିକ୍ଷାବଲ୍ଲୀ, ଏଥିରେ ବ୍ୟାକରଣ ଓ ଅଦ୍ୱୈତବାଦ ଚର୍ଚ୍ଚା ହୋଇଅଛି । ଦ୍ୱିତୀୟ ଭାଗ ଆନନ୍ଦବଲ୍ଲୀ ଓ ତୃତୀୟ ଭାଗ ଭୃଗୁବଲ୍ଲୀ; ୨ୟ ଓ ୩ୟ ଭାଗକୁ ସମ୍ମିଳିତ ଭାବରେ ବାରୁଣୀ ଉପନିଷଦ ବୋଲଯାଏ । ତୈତ୍ତିରୀୟ ଉପନିଷଦରେ, ବ୍ରହ୍ମବିଦ୍ୟା, ଶ୍ରୁତି, ସ୍ମୃତି, ଇତିହାସ ବିଷୟର ଚର୍ଚ୍ଚା ହୋଇଅଛି । ଶଙ୍କରାଚାର୍ଯ୍ୟ ଏହି ଉପନିଷଦର ଗୋଟିଏ ଉତ୍କୃଷ୍ଟ ଭାଷ୍ୟ କରିଅଛନ୍ତି (ହିନ୍ଦୀ ଶବ୍ଦସାଗର, ଭାଷାକୋଷ) ।

**ତୋମର**—ପ୍ରାଚୀନ ଅସ୍ତ୍ର ବିଶେଷ । ଏହା କାଷ୍ଠାଗ୍ର ଓ ଲୌହ ଦ୍ୱାରା ନିର୍ମିତ । ଏହା ଅଗ୍ନିଦେବଙ୍କ ଅସ୍ତ୍ର । ଏଥିରେ ବେଣ୍ଟ ଲାଗିଥାଏ ।

**ତ୍ରିକୂଟ** - ପ୍ରାଚୀନ ପର୍ବତ ବିଶେଷ । ଲବଣ ସମୁଦ୍ର ମଧ୍ୟରେ ଅବସ୍ଥିତ ତିନିଗୋଟି ଶିଖର ବିଶିଷ୍ଟ ପର୍ବତ । ଏହା ଉପରେ ଲଙ୍କା ନଗରୀ ନିର୍ମିତ ହୋଇଥିଲା । ପ୍ରମାଣ ଯଥା—'ତତୋ ଦଦର୍ଶ ନଗରଂ ତ୍ରିକୂଟାଚଲ ମୂର୍ଦ୍ଧନି ।' (ଅଧ୍ୟାତ୍ମ-ରାମାୟଣ, ସୁନ୍ଦର କାଣ୍ଡ ୧ । ୪୦) (୨) କ୍ଷୀର ସମୁଦ୍ରସ୍ଥ ପର୍ବତ ବିଶେଷ, ଯହିଁରେ ସୁନା, ରୁପା ଓ ଲୁହାର ତିନିଗୋଟି ଶୃଙ୍ଗ ଅଛି । ଏଥିରେ ବିଷ୍ଣୁପୁର ବୈକୁଣ୍ଠ ଅବସ୍ଥିତ । ପ୍ରମାଣ, ଭାଗବତରେ—ପର୍ବତ ତ୍ରିକୂଟ ଯେ ନାମ— ସର୍ବ ସମ୍ପଦ ମୂଳଧାମ (ଜଗନ୍ନାଥ ଭାଗବତ) ।

**ତ୍ରିଗର୍ତ୍ତ**—ପ୍ରାଚୀନ ଦେଶ ବିଶେଷ । ବିରାଟ ପର୍ବରେ ଅଛି ଏ ଦେଶର ରାଜା ତ୍ରିଗର୍ତ୍ତ, ବିରାଟଙ୍କ ଧେନୁ ହେନି ଆସିଥିଲେ । ଏଥିପାଇଁ ବିରାଟ ରାଜା ତାଙ୍କ ସହିତ ଯୁଦ୍ଧ କରିବାକୁ ଯାଇଥିଲେ । ପ୍ରମାଣ—ତ୍ରିଗର୍ତ୍ତ ମାରିବାକୁ ଯାଇଛନ୍ତି ବାରୁ । (କୃଷ୍ଣସିଂହ ବିରାଟପର୍ବ) ।

**ତ୍ରିଜଟ**—ବ୍ରାହ୍ମଣ ବିଶେଷ । ରାମଚନ୍ଦ୍ର ବନଯାତ୍ରା ସମୟରେ ଏହାଙ୍କୁ ଅନେକ ଗ୍ରାମ ଦାନ କରିଥିଲେ (ହିନ୍ଦୀ ଶବ୍ଦସାଗର)

**ତ୍ରିଜଟା**—ଲଙ୍କେଶ୍ୱର ରାବଣଙ୍କ ଅନ୍ତଃପୁରସ୍ଥା ରାକ୍ଷସୀ । ଏ ସୀତାଙ୍କର ରକ୍ଷିକା ଥିଲେ । ଅନ୍ୟାନ୍ୟ ରାକ୍ଷସୀମାନଙ୍କ ତୁଳନାରେ ତ୍ରିଜଟା ସୀତାଙ୍କ ପ୍ରତି ଅତି ସଦୟ ବ୍ୟବହାର କରିଥିଲେ । ଏ ବିଭୀଷଣଙ୍କ କନ୍ୟା ।

(ରାମାୟଣ, ସୁନ୍ଦରକାଣ୍ଡ)

**ତ୍ରିତ**—ଗୌତମ ମୁନିଙ୍କ ପୁତ୍ର । ଏକତ ଓ ଦ୍ୱିତ ଏହାଙ୍କର ଆଉ ଦୁଇଟି ଭାଇ । ଏମାନେ ସମସ୍ତେ ତପୋବଳସମ୍ପନ୍ନ ଥିଲେ । ତ୍ରିତ ଅନ୍ୟ ଦୁଇ ଭାଇଙ୍କ ଅପେକ୍ଷା କର୍ମ ଓ ଅଧ୍ୟୟନ ଯୋଗୁ ଶ୍ରେଷ୍ଠ ଥିଲେ । ଏକଦା ତିନିଭାଇ ଏକାଠି

ହୋଇ ପଶୁ ସଂଗ୍ରହ ନିମିତ୍ତ ଗ୍ରାମାନ୍ତର ଗମନ କଲେ । ପଶୁ ସଂଗ୍ରହ ହେବା ପରେ ଦୁଇ ଭାଇ ଏହାଙ୍କୁ ଅରଣ୍ୟରେ ଛାଡ଼ି ପଶୁ ଧରି ଘରକୁ ଆସିଲେ । ତ୍ରିତ ଅରଣ୍ୟରେ ଗୋଟିଏ ବୃକ (ହେଟାବାଘ)ର ସମ୍ମୁଖୀନ ହେଲେ ଏବଂ ସେଠାରୁ ଭୟରେ ପଳାଇ ଯାଉ ଯାଉ ଗୋଟିଏ କୂଅରେ ପଡ଼ିଲେ । ଏହି ତୃଣଲତାବୃତ କୂପ ଭିତରେ ବସି ସେ ସୋମ ଯାଗ ଅନୁଷ୍ଠାନ କଲେ । କଥିତ ଅଛି ଦେବତାମାନେ ଏହି ଯଜ୍ଞରେ ଉପସ୍ଥିତ ହୋଇଥିଲେ ଏବଂ ଏହି କୂଅ ଭିତରେ ସରସ୍ୱତୀ ନଦୀଙ୍କର ଆବିର୍ଭାବ କରାଇଥିଲେ । ଏଥିଲାଗି ଏ କୂପଟି ଉଦପାନ ତୀର୍ଥ ନାମରେ ଖ୍ୟାତ ହୋଇଅଛି । ଏ ତୀର୍ଥର ଜଳ ପାନ କଲେ ସୋମପାନର ଫଳ ଲାଭ ହୁଏ । ଏହାଙ୍କ ଅଭିଶାପରୁ ଅନ୍ୟ ଦୁଇ ଭାଇ ବୃକ ହୋଇ ଅରଣ୍ୟରେ ରହିଲେ । (ମହାଭାରତ-ଶଲ୍ୟପର୍ବ)

**ତ୍ରିନାଥମେଳା**—ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପୂଜା ବିଶେଷ । ଏହି ପୂଜା ଶାସ୍ତ୍ରୀୟ ନୁହେଁ, ଲୋକାଚାରରୂପେ ଏ ବିଧାନ ଗ୍ରାମେ ଗ୍ରାମେ ପାଳିତ ହୁଏ । ଏଥିରେ ପଇସାକର ପାନ, ପଇସାକର ତେଲ ଓ ପଇସାକର ଗଞ୍ଜେଇ ତିନି ଦେବତାଙ୍କ ନାମରେ ଉତ୍ସର୍ଗ କରାଯାଏ । ତ୍ରିନାଥମେଳା ନାମକ ଏକ ଗୀତ ବୋଲାଯାଏ । ତେଲ ଜଳେ, ପାନ ଓ ଗଞ୍ଜେଇ ଉପସ୍ଥିତ ଭକ୍ତମାନେ ଖାଆନ୍ତି ।

**ତ୍ରିପତି**—ଆଧୁନିକ ତିରୁପତି ନଗର । ଏହା ମାନ୍ଦ୍ରାଜ ପ୍ରଦେଶସ୍ଥ ଆରକଟ୍ ଜିଲ୍ଲାର ଚନ୍ଦ୍ରଗିରି ତାଲୁକାରେ ଥିବା ପ୍ରଧାନ ନଗର । ଭାରତର ଏକ ପ୍ରସିଦ୍ଧ ତୀର୍ଥ । ଏ ସ୍ଥାନର ତିରୁମଲ ପର୍ବତ ଉପରେ ଦେବ ମନ୍ଦିର ପ୍ରତିଷ୍ଠିତ । ଏହି ପର୍ବତ ସପ୍ତଶୃଙ୍ଗ ବିଶିଷ୍ଟ । ଛଅ ଗୋଟି ଶୃଙ୍ଗ ଅତିକ୍ରମ କରିଗଲେ ଶେଷାଚଳ ନାମକ ସପ୍ତମ ଶୃଙ୍ଗରେ ଶ୍ରୀନିବାସ ଦେବଙ୍କ ମନ୍ଦିର ଦୃଷ୍ଟିଗୋଚର ହୁଏ । ଏହାର ଅନ୍ୟନାମ ବେଙ୍କଟାଦ୍ରି । ଏହି ଦେବ ବିଗ୍ରହ ଶ୍ରୀନିବାସ ଦେବ, ବାଲାଜୀ ନାମରେ ବୈଷ୍ଣବମାନଙ୍କ ଦ୍ୱାରା ଅଭିହିତ ହୁଅନ୍ତି । ବାଲାଜୀ, ଶ୍ରୀ ଓ ଭୂ ଶକ୍ତିସମନ୍ୱିତ କୃଷ୍ଣପ୍ରସ୍ତର ନିର୍ମିତ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି । ଏଠାରେ ସ୍ୱାମୀତୀର୍ଥ ପାଣ୍ଡବତୀର୍ଥ ଓ କପିଳତୀର୍ଥମାନ ଅଛି । ଏଠାରେ ରାମାନୁଜ ଜନ୍ମ ଗ୍ରହଣ କରିଥିଲେ । (ମଦନମୋହନ, ତୀର୍ଥ ଦର୍ଶନ) ଏ ମନ୍ଦିରର ଖଣ୍ଡାବୃତ୍ତିରୁ ବହୁ ଧନ ଆଦାୟ ହୋଇ ଦେବଙ୍କ ସେବା ପୂଜାରେ ବ୍ୟୟିତ ହୁଏ । (ଭାଷାକୋଷ)

**ତ୍ରିପିଟକ**—ବୌଦ୍ଧଧର୍ମ ଗ୍ରନ୍ଥ । ବୁଦ୍ଧଙ୍କ ଉପଦେଶମାନ ତାଙ୍କ ମୃତ୍ୟୁ ପରେ ଭକ୍ତମାନେ ସଂଗ୍ରହ କରି ଏ ଗ୍ରନ୍ଥ ରଚନା କରିଥିଲେ । ଏହା ତିନି ଭାଗ(ପିଟକ)ରେ

ବିଭକ୍ତ । ଯଥା—ସୂତ୍ର ପିଟକ, ବିନୟ ପିଟକ ଓ ଅଭିଧର୍ମ ପିଟକ । (୧) ସୂତ୍ର ପିଟକରେ ବୁଦ୍ଧ ଭିନ୍ନ ଭିନ୍ନ ଘଟଣାରେ ଦେଇଥିବା ସାନ ବଡ଼ ଉପଦେଶମାନ ଲିଖିତ ହୋଇଅଛି । (୨) ବିନୟ ପିଟକରେ ବୌଦ୍ଧ ଭିକ୍ଷୁ ଓ ଶ୍ରାବକମାନଙ୍କ ଆଚରଣ ବିଷୟକ ନିୟମମାନ ରହିଅଛି । (୩) ଅଭିଧର୍ମ ପିଟକରେ ତତ୍ତ୍ୱ, ନୈତିକ ଧର୍ମ ଓ ନିର୍ବାଣ ବର୍ଣ୍ଣିତ ହୋଇଅଛି । ଏହି ଅଭିଧର୍ମପିଟକ ବୌଦ୍ଧ ଦର୍ଶନର ମୂଳଦୁଆ । ବୌଦ୍ଧମାନେ ମହାଯାନ, ମଧ୍ୟମଯାନ, ଓ ହୀନଯାନ ଏହିପରି ତିନିଗୋଟି ସମ୍ପ୍ରଦାୟରେ ବିଭକ୍ତ । ମହାଯାନ ତ୍ରିପିଟକ ସଂସ୍କୃତ ଭାଷାରେ ଲିଖିତ ଓ ଏହା ନେପାଳ, ତିବ୍ବତ, ଚୀନ, ଆସାମ, ଭୂଟାନ, ରୁଷିଆ ଓ ଜାପାନରେ ଆଦୃତ । ହୀନଯାନ ତ୍ରିପିଟକ ପାଲି ଭାଷାରେ ଲିଖିତ ଓ ଏହା ବ୍ରହ୍ମଦେଶ, ଶ୍ୟାମ ଓ ଲଙ୍କାରେ ଆଦୃତ । ତ୍ରିପିଟକର ମଧ୍ୟମଯାନ ସଂସ୍କରଣ ବର୍ତ୍ତମାନ ମିଳୁନାହିଁ ।

ବୁଦ୍ଧଙ୍କ ନିର୍ବାଣ ପରେ ତାଙ୍କ ଶିଷ୍ୟମାନେ ତ୍ରିପିଟକକୁ ସଂଗ୍ରହ କରି ରାଜଗୃହ ନିକଟସ୍ଥ ଏକ ଗିରିଗୁହାରେ ରଖିଥିଲେ । ପରେ ଅଶୋକ ଗୋଟିଏ ବୌଦ୍ଧ ଭିକ୍ଷୁ ସମ୍ମିଳନୀ ଆହ୍ୱାନ କରି ତହିଁରେ ଆଲୋଚନା ପରେ ତ୍ରିପିଟକର ଗୋଟିଏ ବିଶୁଦ୍ଧ ସଂସ୍କରଣ ପାଲି ଭାଷାରେ ସମ୍ପାଦନ କଲେ । ଏହାହିଁ ହୀନଯାନମାନଙ୍କ ଗ୍ରନ୍ଥ । ତ୍ରିପିଟକରେ ନାରାୟଣ, ଜନାର୍ଦ୍ଦନ, ଶିବ, ବ୍ରହ୍ମା, ବରୁଣ ଆଦି ଦେବତାମାନଙ୍କର ନାମ ଉଲ୍ଲେଖ ଅଛି ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ତ୍ରିପୁର**—ମୟଦାନବ ନିର୍ମିତ ସୁନା, ରୂପା ଓ ଲୁହାର ତିନି ଗୋଟି ନଗର । ଏଥିରେ ତାରକାସୁରର ତିନି ପୁଅ—ତାରକାକ୍ଷ, କମଳାକ୍ଷ ଓ ବିଦ୍ୟୁନ୍ମାଳୀ ବାସ କରୁଥିଲେ । ସ୍ୱର୍ଣ୍ଣପୁର ସ୍ୱର୍ଗରେ, ରୌପ୍ୟପୁର ଅନ୍ତରୀକ୍ଷରେ ଓ ଲୌହପୁର ମର୍ତ୍ତ୍ୟରେ ଥିଲା । ଶିବ ଗୋଟିଏ ବାଣରେ ଏ ତିନି ପୁରକୁ ପୋଡି ଏ ତିନି ଅସୁରଙ୍କୁ ମାରି ପକାଇଥିଲେ । (ଭାଷାକୋଷ)

**ତ୍ରିପୁରାରି**—ମହାଦେବଙ୍କ ନାମାନ୍ତର । ପୁରତ୍ରୟ ବିନାଶ କରି ମହାଦେବଙ୍କର ଏ ନାମ ହୋଇଥିଲା । ତାରକାସୁରର ତିନି ପୁଅ—ତାରକାକ୍ଷ, କମଳାକ୍ଷ ଓ ବିଦ୍ୟୁନ୍ମାଳୀ । ଏମାନେ କଠୋର ତପସ୍ୟା କରି ବ୍ରହ୍ମାଙ୍କ ନିକଟରୁ ଏହି ବର ଲାଭ କରିଥିଲେ ଯେ ତିନି ଭାଇ ତିନି ଗୋଟି ସ୍ୱତନ୍ତ୍ର ପୁରରେ ବାସ କରିବେ । ସହସ୍ର ବର୍ଷପରେ ଏହି ପୁରତ୍ରୟ ଏକତ୍ର ମିଳିତ ହେବ । ଯଦି ସେହି

ସମସ୍ତରେ କେହି ଏକ ବାଣରେ ଏହି ସମବେତ ପୁରତ୍ରୟଙ୍କୁ ବିନାଶ କରି ପାରେ ତେବେ ତାହାର ହାତରେ ତିନି ଭାଇଙ୍କର ମୃତ୍ୟୁ ହେବ । ଏହି ବର ଲାଭ କରି ସେମାନେ ମୟଦାନବଙ୍କୁ ତିନିଗୋଟି ପୁର ନିର୍ମାଣ କରିବାପାଇଁ ଆଦେଶ ଦେଲେ । ମୟଦାନବ ସ୍ୱୀୟ ତପୋବଳରେ ସ୍ୱର୍ଗରେ କାଞ୍ଚନମୟ, ଅନ୍ତରୀକ୍ଷରେ ରଜତମୟ ଓ ପୃଥ୍ୱୀରେ ଲୌହମୟ ଏହିପରି ତିନି ଗୋଟି ପୁର ନିର୍ମାଣ କରିଥିଲେ । ତାରକାକ୍ଷ ସୁବର୍ଣ୍ଣମୟ ପୁରୀରେ, କମଳାକ୍ଷ ରଜତମୟ ନଗରରେ ଓ ବିଦ୍ୟୁନ୍ମାଳୀ ଲୌହମୟ ପୁରରେ ବାସକରି ଆଧିପତ୍ୟ ବିସ୍ତାର କରିଥିଲେ । ତାରକାକ୍ଷର ପୁତ୍ର ହରି ତପସ୍ୟାରେ ବ୍ରହ୍ମାଙ୍କୁ ତୃପ୍ତ କରି ବରଲାଭ କଲା ଯେ ସେ ତାର ନଗର ମଧ୍ୟରେ ଏକ ସରୋବର ଖନନ କରିବ । ଏହି ପୁଷ୍କରିଣୀରେ ଅସ୍ତ୍ରାହତ ଯେ କୌଣସି ବ୍ୟକ୍ତିଙ୍କୁ ବୁଡ଼ାଇଲେ ସେ ତତ୍କ୍ଷଣାତ୍ ପୁନର୍ଜୀବନ ଲାଭ କରିବ । ଏହି ହେତୁରୁ ରାକ୍ଷସମାନେ ବଳଦୃପ୍ତ ହୋଇ ଦେବତାମାନଙ୍କ ଉପରେ ଅତ୍ୟାଚାର ଚଳାଇଲେ । ଦେବତାମାନେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ବ୍ରହ୍ମା କହିଲେ—'ମୋ ବର ପ୍ରସାଦରୁ ରାକ୍ଷସମାନେ ଏପରି ଗର୍ବିତ ହୋଇଛନ୍ତି । କେବଳ ଶିବହିଁ ଏମାନଙ୍କୁ ସଂହାର କରି ପାରିବେ । ତେଣୁ ଆମେ ସମସ୍ତେ ଚାଲ ଶିବଙ୍କ ନିକଟକୁ ଯିବା ଓ ଦୁଃଖ ନିବେଦନ କରିବା ।' ମହାଦେବ ଦେବତାମାନଙ୍କ କଲ୍ୟାଣ ସାଧନ ପାଇଁ ଦାନବମାନଙ୍କୁ ବଧ କରିବା ନିମିତ୍ତ ପ୍ରତିଜ୍ଞା କଲେ । ଶିବ ଦିବ୍ୟ ରଥରେ ଆରୋହଣ କଲେ । ବ୍ରହ୍ମା ହେଲେ ତାଙ୍କର ସାରଥୀ । କିଛି ଦୂର ଅଗ୍ରସର ହେବା ପରେ ଶିବ ଅଶ୍ୱ ପୃଷ୍ଠରେ ଆରୋହଣ କରି ବୃଷର ମସ୍ତକରେ ପାଦ ଦେଇ ଦାନବ ନଗରୀକୁ ନିରୀକ୍ଷଣ କଲେ । ମହାଦେବ ପାଶୁପତାସ୍ତ୍ର ସଂଯୋଜନ କରି ତ୍ରିପୁରର ମିଳନ ଅପେକ୍ଷାରେ ରହିଲେ । ତିନିପୁରଯାକ ସମବେତ ହେବା ମାତ୍ରେ ମହାଦେବ ବାଣ ସନ୍ଧାନ କରି ଏହାକୁ ଭେଦ କଲେ, ତିନିପୁର ଶିବଙ୍କ ବାଣବିଦ୍ଧ ହେବା ଦ୍ୱାରା ଭୂତଳରେ ପତିତ ହେଲା । ପୁରାନ୍ତର୍ଗତ ଅସୁରମାନେ ଆର୍ତ୍ତନାଦ କରିବାକୁ ଲାଗିଲେ । ମହାଦେବ ଅସୁରମାନଙ୍କୁ ଦଗ୍ଧ କରି ପଶ୍ଚିମ ସମୁଦ୍ରରେ ପକାଇଦେଲେ । ଦେବତାମାନେ ପରମ ସୁଖରେ ସ୍ୱର୍ଗରାଜ୍ୟ ଭୋଗ କଲେ । (ମହାଭାରତ କର୍ଣ୍ଣପର୍ବ, ହରିବଂଶ) ।

**ତ୍ରିବେଣୀ**—ଗଙ୍ଗା, ଯମୁନା ଓ ସରସ୍ୱତୀ ମିଳନସ୍ଥଳ, ପ୍ରୟାଗ । ଏ ତିନି ନଦୀ ପ୍ରଥମେ ପ୍ରୟାଗରେ ମିଳିତ ହୋଇଥିବାରୁ ଉକ୍ତ ସ୍ଥାନକୁ ଯୁକ୍ତବେଣୀ ଏବଂ ବଙ୍ଗଦେଶର ହୁଗୁଲୀଠାରେ ମୁକ୍ତହୋଇଛନ୍ତି ବୋଲି ଉକ୍ତ ସ୍ଥାନକୁ ମୁକ୍ତବେଣୀ କହନ୍ତି । (ଭାଷାକୋଷ)

**ତ୍ରିବେଣୀଘାଟ**—ହାବଡ଼ାଠାରୁ ୩୦ ମାଇଲ୍ ଦୂରରେ ହୁଗୁଳି ଜିଲାରେ ଭାଗୀରଥୀ ସଙ୍ଗେ ଅନ୍ୟ ଦୁଇଟି ନଦୀ ମିଳିତ ହୋଇଅଛି । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ଏହିଠାରେ ଏକ ଘାଟ ନିର୍ମାଣ କରିଥିଲେ । ଏହା ଗୋଟିଏ ତୀର୍ଥସ୍ଥାନ । ଯେଉଁମାନେ ଗଙ୍ଗାରେ ଅସ୍ଥି ଦେବାକୁ ଯାଆନ୍ତି ସେମାନେ ଏହିଠାରେ ଶ୍ରାଦ୍ଧ କରି ଅସ୍ଥି ନିକ୍ଷେପ କରନ୍ତି ଓ ଏଠାରେ ତ୍ରିବେଣୀ ଅମାବାସ୍ୟା (ମାଘ ଅମାବାସ୍ୟା) ଦିନ ଗୋଟିଏ ବଡ଼ ମେଳା ହୁଏ ।

**ତ୍ରିଶଙ୍କୁ**—ସୂର୍ଯ୍ୟବଂଶୀୟ ରାଜା । ସଶରୀରରେ ସ୍ୱର୍ଗଲାଭ କାମନା କରି ତ୍ରିଶଙ୍କୁ କୁଳଗୁରୁ ବଶିଷ୍ଠଙ୍କୁ ଯଜ୍ଞ କରିବା ପାଇଁ ଅନୁରୋଧ କରିଥିଲେ । ବଶିଷ୍ଠ ଏହା ଅତି ଅସମ୍ଭବ ବୋଲି କହିଲେ । ଗୁରୁଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବା ପରେ ରାଜା ଗୁରୁପୁତ୍ରମାନଙ୍କୁ ଏ ବିଷୟରେ ଯଜ୍ଞ କରିବା ପାଇଁ କହିଲେ । ସେମାନେ କହିଲେ ଯେ ଆମ୍ଭେମାନେ ଏହା କରି ପାରିବୁ ନାହିଁ । ପିତାଙ୍କୁ ଅପମାନିତ କରି ଆମ୍ଭମାନଙ୍କର ଏଥିରେ ହସ୍ତକ୍ଷେପ କରିବା ପାପ ହେବ । ରାଜା କହିଲେ—ଗୁରୁ ମୋତେ ଯେପରି ପ୍ରତ୍ୟାଖ୍ୟାନ କଲେ ଆପଣମାନେ ମଧ୍ୟ ତଦ୍ରୂପ ଅନାଦର ପ୍ରକାଶ କଲେ । ଏହି କାରଣରୁ ମୁଁ ବର୍ତ୍ତମାନ ଗୁରୁକୁଳ ତ୍ୟାଗ କରି ଯିବି । ବଶିଷ୍ଠଙ୍କ ପୁତ୍ରମାନେ ଏଥିରେ କ୍ରୁଦ୍ଧ ହୋଇ କହିଲେ—ତୁମେ ଚଣ୍ଡାଳତ୍ୱ ଲାଭ କର । ରାଜା ସେହିକ୍ଷଣି ଚଣ୍ଡାଳ ହୋଇଗଲେ । ତାଙ୍କ ଦେହରୁ ରାଜଶ୍ରୀ ଲୋପ ପାଇଲା । ଦେହ ବିବର୍ଣ୍ଣ ହେଲା । ମନୋବୃତ୍ତି ମଳିନତା ଭଜିଲା । ମନ୍ତ୍ରୀମାନେ ଚଣ୍ଡାଳରୂପୀ ରାଜାଙ୍କୁ ପରିତ୍ୟାଗ କଲେ । ରାଜା ଏହିପରି ଦୁର୍ଦ୍ଦଶାଗ୍ରସ୍ତ ହୋଇ ବିଶ୍ୱାମିତ୍ରଙ୍କ ଶରଣାପନ୍ନ ହେଲେ । ବିଶ୍ୱାମିତ୍ର ଯୋଗ ବଳରେ ରାଜାଙ୍କର ଏ ଦୁର୍ବ୍ୟବହାର କାରଣ ବୁଝି ପାରି ଦୟାଯୁକ୍ତ ହୋଇ ତାଙ୍କୁ ସଶରୀରରେ ସ୍ୱର୍ଗରେ ସ୍ଥାନ ଦେବା ଲାଗି ଏକ ଯଜ୍ଞ ଅନୁଷ୍ଠାନ କରିବା ପାଇଁ ପ୍ରତିଶ୍ରୁତ ଦେଲେ । ବିଶ୍ୱାମିତ୍ର ପୁତ୍ରମାନଙ୍କୁ ଯଜ୍ଞର ଆୟୋଜନ କରିବା ପାଇଁ ଆଦେଶ ଦେଲେ । ବେଦବିତ୍ ଋଷିମାନଙ୍କୁ ନିମନ୍ତ୍ରଣ କରି ଆଣିବା ପାଇଁ ଶିଷ୍ୟମାନେ ଚତୁର୍ଦ୍ଦିଗକୁ ପ୍ରେରିତ ହେଲେ । ବଶିଷ୍ଠଙ୍କ ପୁତ୍ରମାନେ ଓ ଋଷି ମହୋଦୟ ଏ ଯଜ୍ଞରେ ଯୋଗ ଦେବେ ନାହିଁ ବୋଲି କାରଣ ଦର୍ଶାଇ କହିଲେ—ଯେଉଁ ଯଜ୍ଞରେ କ୍ଷତ୍ରିୟ ଯାଜକ ବିଶେଷତଃ ଯଜ୍ଞକର୍ତ୍ତା ଚଣ୍ଡାଳ ଭାବାପନ୍ନ ସେ ଯଜ୍ଞକୁ ଦେବତା ଓ ଋଷିମାନେ କିପରି ହବି ଭୋଜନ କରିବେ ? ବିଶ୍ୱାମିତ୍ର ଏ କଥା ଶୁଣି ବିଶେଷ କ୍ରୁଦ୍ଧ ହେଲେ । ସେ ବଶିଷ୍ଠ ପୁତ୍ରମାନଙ୍କୁ କୁକୁର ମାଂସ ଭୋଜୀ ଡମ ହେବାକୁ ଏବଂ ମହୋଦୟ ନିଷାଦତ୍ୱ ଲାଭ କରିବା ପାଇଁ ଅଭିଶାପ ଦେଲେ । ଏଣେ ବିଶ୍ୱାମିତ୍ରଙ୍କ ଅନୁରୋଧରେ

ବେଦଜ୍ଞ ଋଷିମାନେ ଯଜ୍ଞ ଆରମ୍ଭ କଲେ । ସ୍ୱୟଂ ବିଶ୍ୱାମିତ୍ର ଯଜ୍ଞର ନେତୃତ୍ୱ ନେଲେ । ମାତ୍ର କୌଣସି ଦେବତା ଏ ଯଜ୍ଞକୁ ଆଗମନ କଲେ ନାହିଁ । ତେଣୁ ବିଶ୍ୱାମିତ୍ର କ୍ରୁଦ୍ଧ ହୋଇ ନିଜ ତପସ୍ୟା ବଳରେ ତାଙ୍କୁ ସ୍ୱର୍ଗକୁ ପ୍ରେରଣ କରିବା ପ୍ରୟାସ କଲେ । ରାଜା ଧୀରେ ଧୀରେ ସ୍ୱର୍ଗ ଆଡ଼କୁ ଶୂନ୍ୟ ପଥରେ ଗମନ କରିବାକୁ ଲାଗିଲେ । ଦେବରାଜ ଇନ୍ଦ୍ର ତ୍ରିଶଙ୍କୁଙ୍କୁ ସ୍ୱର୍ଗରେ ସ୍ଥାନ ଦେବାକୁ କୁଣ୍ଠିତ ହୋଇ ନିଷେଧ ଆଜ୍ଞା ପ୍ରଚାର କଲେ । ବିଶ୍ୱାମିତ୍ର କ୍ରୁଦ୍ଧ ହୋଇ ଦ୍ୱିତୀୟ ସ୍ୱର୍ଗ ଓ ମର୍ତ୍ତ୍ୟ ସୃଷ୍ଟି କଲେ । ଦକ୍ଷିଣ ଦିଗରେ ସପ୍ତର୍ଷିମଣ୍ଡଳ ଓ ନକ୍ଷତ୍ରଗଣ ସୃଷ୍ଟି ହେଲେ । ଦେବତାମାନେ ସଙ୍କଟ କାଳ ଉପସ୍ଥିତ ହେଲା ବୋଲି ମନେକରି ବିଶ୍ୱାମିତ୍ରଙ୍କ ଶରଣାପନ୍ନ ହେଲେ । ବିଶ୍ୱାମିତ୍ର କହିଲେ — ତ୍ରିଶଙ୍କୁ ଆଉ ଅଧଃପତିତ ହେବନାହିଁ । ଦେବତାମାନେ ଏଥିରେ ସ୍ୱୀକୃତ ହେଲେ । ସେହି ଦିନଠାରୁ ତ୍ରିଶଙ୍କୁ ଅଧୋବଦନ ହୋଇ ବିଶ୍ୱାମିତ୍ର ସୃଷ୍ଟ ଧ୍ରୁବ ଓ ଅମର ନକ୍ଷତ୍ର ପରିବେଷ୍ଟିତ ହୋଇ ଅନ୍ତରୀକ୍ଷରେ ବିରାଜମାନ ହେଲେ । (ରାମାୟଣ-ଆଦିକାଣ୍ଡ)

(୨) ହରିବଂଶରେ ଅନ୍ୟ ଏକ ତ୍ରିଶଙ୍କୁର ବିଷୟ ବର୍ଣ୍ଣିତ ହୋଇଅଛି । ଏ ମହାରାଜ ଏୟ୍ୟା ବରୁଣଙ୍କ ପୁଅ । ଏହାଙ୍କର ମୂଳ ନାମ ସତ୍ୟବ୍ରତ । ସତ୍ୟବ୍ରତ ଅନ୍ୟର ବିବାହିତା ପତ୍ନୀକୁ ହରଣ କରି ପିତାର ଅସନ୍ତୋଷଭାଜନ ହୋଇଥିଲେ । ତତ୍ପରେ ଗୁରୁ ବଶିଷ୍ଠଙ୍କ ପୟସ୍ୱିନୀ ଗାଈକୁ ହତ୍ୟା କରି ଏହାର ମାଂସ ଖାଇବାରୁ ଏହି ପାପରେ ସତ୍ୟବ୍ରତ ତ୍ରିଶଙ୍କୁ ନାମରେ ଅଭିହିତ ହୋଇଥିଲେ । ନିଜର ଦୁଷ୍ଚରିତ ହେତୁ ସେ ପିତୃ ରାଜ୍ୟରୁ ବହିଷ୍କୃତ ହେଲେ । ଏହି ଅବସ୍ଥାରେ ତାଙ୍କ ପ୍ରତି ବିଶ୍ୱାମିତ୍ରଙ୍କର ଦୟା ହେଲା । ବିଶ୍ୱାମିତ୍ର ତାଙ୍କୁ ପୈତୃକ ରାଜ୍ୟରେ ଅଭିଷିକ୍ତ କଲେ । ପୁଣି ଏହାଙ୍କୁ ସ୍ୱର୍ଗକୁ ପଠାଇବା ଲାଗି ଏକ ଯଜ୍ଞ ମଧ୍ୟ କଲେ । ଦେବତାମାନେ ଏହାଙ୍କୁ ସ୍ୱର୍ଗରେ ସ୍ଥାନ ଦେବାକୁ ସମ୍ମତ ହେଲେ । ଏହାଙ୍କର ପତ୍ନୀଙ୍କ ନାମ ସତ୍ୟରଥା । ହରିଶ୍ଚନ୍ଦ୍ର ଏହାଙ୍କ ପୁତ୍ର । (ହରିବଂଶ)

●



**ଦଅଣା ଚୋରି, ଦୟଣା ଚୋରି**—ଦମନକ ଚତୁର୍ଦ୍ଦଶୀର ବ୍ୟାବହାରିକ ଶବ୍ଦ । ଚୈତ୍ର ଶୁକ୍ଳପକ୍ଷରେ ଅନୁଷ୍ଠିତ ବିଷ୍ଣୁଙ୍କର ଦମନକ ଚତୁର୍ଦ୍ଦଶୀ ଯାତ୍ରା ବା ଉତ୍ସବ । ପ୍ରାଚୀନ କାଳରେ ଦମନକ ନାମକ ଏକ ଅସୁର ସମୁଦ୍ର ମଧ୍ୟରେ ରହି ଲୋକଙ୍କୁ ବହୁ କଷ୍ଟ ଦେଉଥିଲା । ଶ୍ରୀଭଗବାନ୍ ମତ୍ସ୍ୟରୂପ ଧାରଣ କରି ସେହି ଅସୁରକୁ କୂଳକୁ ଟାଣି ଆଣି ସଂହାର କଲେ । ସେଠାରେ ସୁଗନ୍ଧ ତୃଣ ଜାତ ହେଲା । ତହୁଁ ଭଗବାନ୍ ଏ ତୃଣକୁ ବନମାଳାରେ ଧାରଣ କଲେ । ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଏ ଅସୁର ନିହତ ହୋଇଥିବାରୁ ଉକ୍ତ ଚତୁର୍ଦ୍ଦଶୀ ଦମନକ ଚତୁର୍ଦ୍ଦଶୀ ନାମରେ ଖ୍ୟାତ । ଏ ଦିନ ଭକ୍ତମାନେ ଉକ୍ତ ତୃଣ ଆହରଣ କରି ଶ୍ରୀ ଭଗବାନଙ୍କ ମସ୍ତକରେ ଅର୍ପଣ କରନ୍ତି । ଏହା ଦଅଣା ଚୋରି ଯାତ୍ରା । (ମଦନ ମୋହନ–ତୀର୍ଥଦର୍ଶନ)

ପୁଣି ଶ୍ରୀକୃଷ୍ଣ ବଳରାମ ମଥୁରା ବିଜେ ହୋଇଥିବା ବେଳେ କଂସର ପ୍ରମୋଦ ଉପବନରେ ପଶି ଦମନକ ବା ଦଅଣା ଗଛ ଚୋରି କରିଥିବା ଉପାଖ୍ୟାନର ଏହା ଏକ ସ୍ମାରକ । ପୁରୀ ଜିଲ୍ଲା ଭିଙ୍ଗାରପୁର ଓ ଦୋରଡିଆ ଗ୍ରାମରେ ଏ ଦିନ ଖୁବ୍ ଆଡମ୍ବର ସହିତ ଏହି ଯାତ୍ରା ହୁଏ । (ଭାଷାକୋଷ)

**ଦଇତା**—ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବକ ବିଶେଷ । ଯେଉଁ ବିଶ୍ୱାବସୁ ଶବର ଜଗନ୍ନାଥଙ୍କୁ ପ୍ରଥମେ ପୂଜା କରୁଥିଲେ ଏବଂ ଇନ୍ଦ୍ରଦ୍ୟୁମ୍ନ ମହାରାଜା ଯାହାଙ୍କ-ଠାରୁ ଜଗନ୍ନାଥଙ୍କୁ ପୁରୀ କ୍ଷେତ୍ରକୁ ଆଣିଥିଲେ, ଏମାନେ ତାହାଙ୍କ ବଂଶଧର ବୋଲି କଥିତ । (ଦୀନକୃଷ୍ଣ ଦେଉଳତୋଳା, ଭାଷାକୋଷ)

**ଦଂଶ**—ଅସୁର ବିଶେଷ । ଭୃଗୁମୁନିଙ୍କ ଶାପରେ ଅଳର୍କ କୀଟ ରୂପ ଧାରଣ କରିଥିଲେ । (ଅଳର୍କ ଦେଖ)

**ଦକ୍ଷ**—ପ୍ରଜାପତି ବିଶେଷ । ଏହାଙ୍କ ଉତ୍ପତ୍ତି ସମ୍ବନ୍ଧେ ବିଭିନ୍ନ ପୁରାଣରେ ବିଭିନ୍ନ ମତବାଦ ଦୃଷ୍ଟ ହୁଏ ।

କାଳିକା ପୁରାଣ—ବ୍ରହ୍ମା ଜଗତ୍ ସୃଷ୍ଟି କରିବା ଇଚ୍ଛାରେ ନିଜ ଶରୀରକୁ ଦୁଇ ଭାଗରେ ବିଭକ୍ତ କଲେ । ଭାଗେ ସ୍ତ୍ରୀ ଓ ଅନ୍ୟ ଭାଗଟି ପୁରୁଷ । ଏହି ନାରୀ

ଗର୍ଭରୁ ବିରାଟ ପୁରୁଷଙ୍କ ଉତ୍ପତ୍ତି । ବିରାଟ ପୁରୁଷ ସ୍ୱାୟମ୍ଭୁବ ମନୁଙ୍କୁ ସୃଷ୍ଟି କଲେ । ସ୍ୱାୟମ୍ଭୁବ ତପସ୍ୟା ବଳରେ ବ୍ରହ୍ମାଙ୍କର ସନ୍ତୋଷ ଉତ୍ପାଦନ କରିଥିଲେ । ଅନନ୍ତର ବ୍ରହ୍ମା ସୃଷ୍ଟି ନିମିତ୍ତ ଦକ୍ଷଙ୍କୁ ଉତ୍ପାଦନ କଲେ । ଦକ୍ଷ ଯୋଗମାୟାଙ୍କୁ ଆରାଧନା କରି ଏହି ବର ଲାଭ କଲେ ଯେ ସ୍ୱୟଂ ଯୋଗମାୟା ଦକ୍ଷଙ୍କ କନ୍ୟାରୂପ ଜାତ ହେବେ ଏବଂ ମହାଦେବଙ୍କ ଗୃହିଣୀ ହେବେ । ଏହାପରି ଦକ୍ଷ, ସ୍ତ୍ରୀ ସଙ୍ଗ ବ୍ୟତୀତ ପ୍ରଜା ସୃଷ୍ଟି କରିବାକୁ ଲାଗିଲେ । ଏହି ପୁତ୍ର-ମାନେ ନାରଦଙ୍କ ପରାମର୍ଶରେ ପୃଥିବୀ ପର୍ଯ୍ୟଟନ କରିବାକୁ ଲାଗିଲେ । ଏହା ଦ୍ୱାରା ପ୍ରଜା ବୃଦ୍ଧି ହେଲା ନାହିଁ । ମୈଥୁନ ଦ୍ୱାରା ପ୍ରଜା ସୃଷ୍ଟି ମାନସରେ ଦକ୍ଷ ଅସିକ୍ନୀଙ୍କୁ ବିବାହ କଲେ । ଏହାଙ୍କୁ ସମ୍ଭୋଗ କରିବା ଫଳରେ ଯୋଗମାୟା ଜନ୍ମ ହେଲେ । ଏହାଙ୍କର ନାମ ସତୀ ।

ଗରୁଡ଼ ପୁରାଣ—ପ୍ରଜାପତି ବ୍ରହ୍ମା ପ୍ରଜାସୃଷ୍ଟି ମାନସରେ ଧର୍ମ, ରୁଦ୍ର, ମନୁ, ସନକ, ଭୃଗୁ ପ୍ରଭୃତିଙ୍କୁ ମାନସପୁତ୍ର ରୂପେ ଜାତ କରିଥିଲେ । ଦକ୍ଷିଣାଙ୍ଗୁଷ୍ଠରୁ ଦକ୍ଷ, ବାମାଙ୍ଗୁଷ୍ଠରୁ ଦକ୍ଷପତ୍ନୀଙ୍କୁ ସୃଷ୍ଟି କଲେ, ଦକ୍ଷ ଏହି ପତ୍ନୀଙ୍କ ସହବାସରେ ବହୁକନ୍ୟା ଜାତ କରିଥିଲେ । ତନ୍ମଧ୍ୟରୁ ସତୀଙ୍କୁ ରୁଦ୍ର ବିବାହ କରିଥିଲେ ।

ହରିବଂଶ—ଦକ୍ଷପ୍ରଜାପତି ଦ୍ୱିତୀୟ ଜନ୍ମରେ ଦଶ ପ୍ରଚେତାଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରି ଷଷ୍ଠ ମନ୍ୱନ୍ତରରେ ଅସିକ୍ନୀ ପତ୍ନୀଙ୍କ ଗର୍ଭରୁ ଷାଠିଏ ସଂଖ୍ୟକ ମାନସୀକନ୍ୟା ଜାତ କରିଥିଲେ । ତନ୍ମଧ୍ୟରୁ ୧୦ଟି ଧର୍ମଙ୍କୁ, ୧୩ଟି କଶ୍ୟପଙ୍କୁ, ଚନ୍ଦ୍ରଙ୍କୁ ୨୭ଟି, ୨ଟି କୃଶାଶ୍ୱଙ୍କୁ, ୨ଟି ଭୃଗୁଙ୍କୁ ୨ଟି ଅଙ୍ଗିରସଙ୍କୁ ଅର୍ପଣ କଲେ । ଏହି ସମୁଦାୟ କନ୍ୟାମାନଙ୍କ ଠାରୁ ଦୈତ୍ୟ, ଦାନବ, ନାଗ, ପଶୁ, ପକ୍ଷୀ ପ୍ରଭୃତି ନାନାଜାତି ଜୀବ ସୃଷ୍ଟି ହୋଇଥିଲେ ।

ହରିବଂଶ ୨ୟ ଓ ୩ୟ ଅଧ୍ୟାୟରେ ଲିଖିତ ହୋଇଛି ଯେ ବ୍ରହ୍ମାଙ୍କ ଦକ୍ଷିଣାଙ୍ଗୁଷ୍ଠରୁ ଦକ୍ଷ ଓ ବାମାଙ୍ଗୁଷ୍ଠରୁ ଦକ୍ଷପତ୍ନୀ ଉଦ୍ଭୂତ ହୋଇଥିଲେ । ପ୍ରଜାପତି ଦକ୍ଷ ପ୍ରଥମେ ଦେବତା, ଗନ୍ଧର୍ବ, ଅସୁର, ପଶୁ ପକ୍ଷୀ ପ୍ରଭୃତି ମନରୁ ସୃଷ୍ଟି କରି ଦେଖିଲେ ଯେ ମାନସସୃଷ୍ଟ ପ୍ରଜାବର୍ଗ ଅଧିକ ବୃଦ୍ଧିପ୍ରାପ୍ତ ହେଉ ନାହାନ୍ତି । ତେଣୁ ସ୍ତ୍ରୀ ପୁରୁଷ ସହଯୋଗରେ ପ୍ରଜାସୃଷ୍ଟି ଏକାନ୍ତ ବିଧେୟ ବୋଲି ସେ ବିଚାରିଲେ । ତେଣୁ ସେ ବୀରଣ ପ୍ରଜାପତିଙ୍କ କନ୍ୟା ଅସିକ୍ନୀଙ୍କୁ ବିବାହ କଲେ । ଏହାଙ୍କ ଗର୍ଭରୁ ପାଞ୍ଚ ହଜାର ପୁଅ ଜନ୍ମିଲେ । କିନ୍ତୁ ବ୍ରହ୍ମାଙ୍କ ମାନସପୁତ୍ର ନାରଦ, ହର୍ଯ୍ୟଶ୍ୱ ଓ ସବଲାଶ୍ୱପ୍ରଭୃତି ଦକ୍ଷ ପୁତ୍ରଙ୍କୁ ନାନାପ୍ରକାର

ଉପଦେଶ ଓ ଶାସ୍ତ୍ରପ୍ରତିପାଦ୍ୟ ପରାମର୍ଶ ପ୍ରଦାନ କରି ନିରୁଦ୍ଦେଶ୍ୟ କରିଦେଲେ । ସେମାନେ ଆଉ ପ୍ରଜାସୃଷ୍ଟି ବିଷୟରେ ମନୋଯୋଗ ଦେଲେ ନାହିଁ । ଏହା ଦେଖି ଦକ୍ଷ କ୍ରୋଧ ପରବଶ ହୋଇ ଅଭିଶାପାଦ୍ଧାରା ନାରଦଙ୍କୁ ସଂହାର କଲେ । ବ୍ରହ୍ମା ଦକ୍ଷଙ୍କ ନିକଟକୁ ଆସି ନିଜ ପୁତ୍ରର ପୁନର୍ଜୀବନ ପ୍ରାର୍ଥନା କଲେ । ଦକ୍ଷ ଅଭିସନ୍ଧି ରଖି କହିଲେ – ମୁଁ ମୋର କନ୍ୟା ଅସିକ୍ନୀଙ୍କୁ ପ୍ରଦାନ କରୁଛି ଆପଣ ତାଙ୍କୁ ନେଇ କଶ୍ୟପଙ୍କୁ ଦିଅନ୍ତୁ । ଏହାର ଗର୍ଭରୁ ନାରଦ ପୁଣି ଜନ୍ମ ହେବେ । ବ୍ରହ୍ମା ଦକ୍ଷ କନ୍ୟା ଅସିକ୍ନୀଙ୍କୁ କଶ୍ୟପଙ୍କ ହସ୍ତରେ ସମର୍ପଣ କଲେ । କଶ୍ୟପ ଅଭିଶାପାତ ଭୟରେ ଉକ୍ତ କନ୍ୟାଙ୍କୁ ଗ୍ରହଣ କଲେ । ଏହି କନ୍ୟା ଗର୍ଭରୁ ନାରଦ ପୁନର୍ବାର ଜନ୍ମଗ୍ରହଣ କଲେ ।

ଶ୍ରୀମଦ୍ ଭାଗବତ—ଦକ୍ଷ ବ୍ରହ୍ମାଙ୍କର ମାନସ ପୁତ୍ର । ସେ ମନୁ କନ୍ୟା ପ୍ରସୂତିଙ୍କୁ ବିବାହ କରିଥିଲେ । ଏହି ପ୍ରସୂତି ଗର୍ଭରୁ ଷୋଡ଼ଶ ଗୋଟି କନ୍ୟା ଜନ୍ମିଥିଲେ । ଏଥିରୁ ତେରଟି ଧର୍ମଙ୍କୁ, ଗୋଟିଏ ଅଗ୍ନିଙ୍କୁ, ଗୋଟିଏ ପିତୃଗଣଙ୍କୁ, ଅବଶିଷ୍ଟ କନ୍ୟା ସତୀଙ୍କୁ ମହାଦେବଙ୍କୁ ଅର୍ପଣ କରିଥିଲେ । ଦକ୍ଷ ସତୀଙ୍କୁ ଅତି ଭଲ ପାଉଥିଲେ । ଏକଦା ବିଶ୍ୱସ୍ରଷ୍ଟାମାନେ ଏକ ବଡ଼ ଯଜ୍ଞ କଲେ । ଏହି ଯଜ୍ଞରେ ସମସ୍ତ ଦେବତା ଯୋଗ ଦେଇଥିଲେ । ପ୍ରଜାପତି ଦକ୍ଷ ଏ ଯଜ୍ଞରେ ଉପସ୍ଥିତ ହେବାମାତ୍ରେ ସବୁ ଦେବତା ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ ମାତ୍ର ମହାଦେବ ଅନାଦର ପ୍ରକାଶ କଲେ । ଏଥିରେ ଦକ୍ଷ କ୍ରୁଦ୍ଧ ହୋଇ ଶିବ ନିନ୍ଦା କଲେ । ପୁଣି ଶିବଙ୍କର ଯଜ୍ଞରେ ଭାଗ ରହିବ ନାହିଁ ବୋଲି ଶାପଦେଲେ । ଏହାପରେ ସେ କ୍ରୁଦ୍ଧ ହୋଇ ଯଜ୍ଞସ୍ଥଳରୁ ବାହାରି ଗଲେ । ସେହି ଦିନଠାରୁ ଶିବ ଓ ଦକ୍ଷଙ୍କ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟି ହେଲା । କିଛି ଦିନ ପରେ ବ୍ରହ୍ମା ଦକ୍ଷଙ୍କୁ ପ୍ରଜାପତି ଅଧିକାର ପ୍ରଦାନ କଲେ । ଏଥିରେ ଦକ୍ଷ ଅତି ଗର୍ବିତ ହୋଇ ଉଠିଲେ । ସେ ଏକ ମହାଯଜ୍ଞର ଆୟୋଜନ କଲେ । ଏ ଯଜ୍ଞକୁ ସମସ୍ତେ ନିମନ୍ତ୍ରିତ ହେଲେ । କେବଳ ମହାଦେବ ଓ ସତୀ ଏଥିରୁ ବଞ୍ଚିତ ହୋଇ ରହିଲେ । ସତୀ ଏହା ଶୁଣି ପିତାଙ୍କ ଗୃହକୁ ଯିବାପାଇଁ ସ୍ୱାମୀଙ୍କ ଅନୁମତି ଭିକ୍ଷା କଲେ । ମହାଦେବ କିନ୍ତୁ ତାଙ୍କୁ ଅନୁମତି ଦେଲେ ନାହିଁ । ସତୀ ବିନା ନିମନ୍ତ୍ରଣରେ ସ୍ୱାମୀଙ୍କ ବଚନ ଉପେକ୍ଷା କରି ପିତାଳୟକୁ ଗଲେ । ଦକ୍ଷ ସତୀଙ୍କ ସମକ୍ଷରେ ଶିବନିନ୍ଦା କରିବାରୁ ସତୀ ଏହା ସହି ନ ପାରି ସେହି ଯଜ୍ଞସ୍ଥଳରେ ପ୍ରାଣତ୍ୟାଗ କଲେ । ନାରଦଙ୍କଠାରୁ ସତୀଙ୍କ ଦେହ ତ୍ୟାଗ ବୃତ୍ତାନ୍ତ ପାଇ ମହାଦେବ କ୍ରୋଧରେ ଉନ୍ମତ୍ତ ହୋଇ ପଡ଼ିଲେ । ସେହିକ୍ଷଣି ସେ ତାଙ୍କ ମସ୍ତକରୁ ଗୋଟିଏ ଜଟା ଛିଣ୍ଡାଇ ତଳେ

ପକାଇଦେଲେ । ଏହି ଜଟାରୁ ଶିବାନୁଚର ବୀରଭଦ୍ର ଜନ୍ମିଲେ । ଯଜ୍ଞ ଧ୍ୱଂସ କରିବା ପାଇଁ ବୀରଭଦ୍ର ଧାବମାନ ହେଲେ । ସେ ଭୃଗୁ ଋଷିଙ୍କ ଦାଢ଼ି ଉପାଡ଼ି ଦେଲେ, ସୂର୍ଯ୍ୟଙ୍କ ଦାନ୍ତ ଭାଙ୍ଗି ପକାଇଲେ ଏବଂ ଅସ୍ତ୍ରାଘାତରେ ଦକ୍ଷଙ୍କ ମୁଣ୍ଡ ଛିଣ୍ଡାଇ ଦେଲେ । ପରେ ଏହି ଛିନ୍ନ ମୁଣ୍ଡ ଯଜ୍ଞାଗ୍ନିରେ ଭସ୍ମ ହୋଇଗଲା । ବ୍ରହ୍ମା ଏ ବାର୍ତ୍ତା ଶୁଣି ଅନ୍ୟାନ୍ୟ ଦେବତାମାନଙ୍କ ସହିତ କୈଳାସକୁ ଗଲେ । ନାନା ସ୍ତବ ସ୍ତୁତିରେ ଶିବଙ୍କୁ ତୁଷ୍ଟ କରି ଦକ୍ଷଙ୍କ ଜୀବନ ପ୍ରାର୍ଥନା କଲେ । ମହାଦେବ କହିଲେ ଦକ୍ଷଙ୍କ ମୁଣ୍ଡ ଦଗ୍ଧ ହୋଇ ସାରିଛି । ବର୍ତ୍ତମାନ ଛାଗ ମୁଣ୍ଡ ତାଙ୍କର ମୁଣ୍ଡ ହେଉ । ବ୍ରହ୍ମା ମହାଦେବଙ୍କ ବାକ୍ୟାନୁସାରେ ଦକ୍ଷଙ୍କ ମୁଣ୍ଡରେ ଏକ ଛାଗ ମୁଣ୍ଡ ଯୋଜନା କଲେ । ଦକ୍ଷ ପୁଣି ଜୀଇଁ ଉଠି ଯଜ୍ଞ ସମାପନ କଲେ ଏବଂ ମହାଦେବଙ୍କୁ ନାନା ପ୍ରକାର ସ୍ତୁତି ପାଠରେ ତୃପ୍ତ କଲେ ।

ମହାଭାରତ—ଆଦିପର୍ବରୁ ଜଣାଯାଏ ଦକ୍ଷ ପ୍ରଚେତାଙ୍କ ପୁଅ । ଏହି ଦକ୍ଷଙ୍କଠାରୁ ପ୍ରଜାମାନେ ଜନ୍ମଲାଭ କରିଥିଲେ । ଏଥିଲାଗି ତାହାଙ୍କୁ ପିତାମହ କୁହାଯାଏ । ଦକ୍ଷ, ବୀରଣୀଙ୍କ ଗର୍ଭରୁ ଶହେ ପୁଅ, ପଚାଶ ଗୋଟି କନ୍ୟା ଜନ୍ମାଇ ଥିଲେ । ଏ କନ୍ୟାମାନଙ୍କ ମଧ୍ୟରୁ ଦଶଗୋଟି ଧର୍ମ ଓ ତେରଗୋଟି କଶ୍ୟପ, ୨୭ ଗୋଟି ଚନ୍ଦ୍ରଙ୍କୁ ଅର୍ପଣ କଲେ । ଦାକ୍ଷାୟଣୀ କଶ୍ୟପ ପତ୍ନୀମାନଙ୍କ ମଧ୍ୟରେ ଶ୍ରେଷ୍ଠା, ଏହାଙ୍କ ଗର୍ଭରୁ ଦ୍ୱାଦଶ ଆଦିତ୍ୟଙ୍କ ଜନ୍ମ । ତତ୍ପରେ ଇନ୍ଦ୍ରାଦି ଦେବତା ଓ ବିବସ୍ୱାନ୍ ଜନ୍ମିଥିଲେ । ବିବସ୍ୱାନ୍‌ଙ୍କର ବୈବସ୍ୱତ ମନୁ ଓ ଯମ ନାମକ ଦୁଇ ପୁତ୍ର ଥିଲେ ।

**ଦକ୍ଷିଣ**—ସୂର୍ଯ୍ୟଦେବ ଯଜ୍ଞ ଦକ୍ଷିଣା ସ୍ୱରୂପ ଏହି ଦିଗଟିକୁ ତାଙ୍କ ଗୁରୁ କଶ୍ୟପଙ୍କୁ ପ୍ରଦାନ କରିଥିଲେ । ତେଣୁ ଏହି ଦିଗଟିକୁ ଦକ୍ଷିଣ ଦିଗ ବୋଲାଯାଏ ।

**ଦକ୍ଷିଣା**—ପୁରାଣରେ ଦକ୍ଷିଣା ଯଜ୍ଞର ପତ୍ନୀରୂପେ କଳ୍ପିତା । ବ୍ରହ୍ମବୈବର୍ତ୍ତ ପୁରାଣରେ ଲେଖାଅଛି ଯେ କାର୍ତ୍ତିକପୂର୍ଣ୍ଣିମା ରାତିରେ ରାସୋତ୍ସବ ହେଉଥିବା ବେଳେ ଶ୍ରୀକୃଷ୍ଣଙ୍କ ଦକ୍ଷିଣାଂଶରୁ ଦକ୍ଷିଣାଙ୍କର ଉତ୍ପତ୍ତି ହୋଇଥିଲା ।
(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଦକ୍ଷିଣାଚାର**—ତନ୍ତ୍ରୋକ୍ତ ବାମାଚାର ଅନୁଷ୍ଠାନରେ ସାଧକ ପଞ୍ଚମକାର ଦ୍ୱାରା ଶକ୍ତିଙ୍କ ଉପାସନା କରେ । ଦକ୍ଷିଣାଚାରରେ ପଞ୍ଚମକାର ନାହିଁ । ଦକ୍ଷିଣାଚାରୀ ସାଧକ ଆପଣାକୁ ଶିବରୂପେ କଳ୍ପନା କରି ପଞ୍ଚତତ୍ତ୍ୱ ଦ୍ୱାରା ଶକ୍ତିଙ୍କ

ପୂଜା କରନ୍ତି । ଏହା ବାମାଗ୍ନର ଅପେକ୍ଷା ଶ୍ରେଷ୍ଠ ଓ ବୈଦିକ ବୋଲି ପରିଗଣିତ । (ହିନ୍ଦୀ ଶବ୍ଦସାଗର)

**ଦଗ୍‌ଧରଥ** – ଗନ୍ଧର୍ବ ବିଶେଷ । ଏହାଙ୍କର ପ୍ରକୃତ ନାମ ଅଙ୍ଗାରପର୍ଣ୍ଣ । ଏହାଙ୍କର ଚିତ୍ରବର୍ଣ୍ଣ ଚିତ୍ରିତ ଏକ ରଥ ଥିଲା । ପାଣ୍ଡବମାନେ ବନବାସ କରୁଥିବାବେଳେ ଅର୍ଜୁନଙ୍କ ସହିତ ଏହାଙ୍କର ଯୁଦ୍ଧ ହେଲା । ଅଙ୍ଗାରପର୍ଣ୍ଣ ପରାସ୍ତ ହୋଇ ତାଙ୍କ ରଥଟିକୁ ଦଗ୍‌ଧ କରିଦେଲେ । ସେହି ଦିନଠାରୁ ତାଙ୍କର ଦଗ୍‌ଧରଥ ନାମ ହୋଇଥିଲା ।

**ଦଣ୍ଡକ**—ଇକ୍ଷ୍ୱାକୁ ରାଜାଙ୍କ ପୁତ୍ର । ଏ ଶୁକ୍ରାଚାର୍ଯ୍ୟଙ୍କ ଶିଷ୍ୟ ଥିଲେ । ଏ ଥରେ ଗୁରୁ କନ୍ୟାଙ୍କ କୌମାର୍ଯ୍ୟ ଭଙ୍ଗ କରିବାରୁ ଗୁରୁଙ୍କ ଶାପରେ ଏହାଙ୍କ ପୁର ଭସ୍ମ ହେଲା ଓ ଏହାଙ୍କ ରାଜ୍ୟ ଦଣ୍ଡକାରଣ୍ୟରେ ପରିଣତ ହେଲା ।

(ହିନ୍ଦୀ ଶବ୍ଦସାଗର, ରୂପାକୋଷ)

**ଦଣ୍ଡକା**—କୃପାସିନ୍ଧୁଙ୍କ ଉତ୍କଳ ଇତିହାସରୁ ଜଣାଯାଏ—ଏହା ପୂର୍ବେ ଦଣ୍ଡକ ନୃପତିଙ୍କ ଦେଶ ଥିଲା । ଗୁରୁଙ୍କ ଶାପରେ ଏହା ଅରଣ୍ୟରେ ପରିଣତ ହେଲା । ଏହା ବିନ୍ଧ୍ୟ ପର୍ବତଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଠାରେ ରାମଚନ୍ଦ୍ର ବହୁଦିନ ବନବାସ କରିଥିଲେ ଓ ବିରାଧ ଇତ୍ୟାଦି ଅସୁରଙ୍କୁ ବଧ କରିଥିଲେ । ରାମାୟଣରେ ଦଣ୍ଡକାରଣ୍ୟ ଉତ୍କଳ ଦେଶରୁ ଆରମ୍ଭ ହୋଇ ଦାକ୍ଷିଣାତ୍ୟ ଆଡ଼କୁ ବ୍ୟାପିଥିଲା ।

**ଦଣ୍ଡୀ**—(୧) ଅବନ୍ତୀର ପ୍ରାଚୀନ ରାଜା ବିଶେଷ । ଏ ଉର୍ବଶୀଙ୍କୁ ଘୋଟକୀରୂପେ ପ୍ରାପ୍ତ ହୋଇଥିଲେ । ଏଥିଲାଗି କୃଷ୍ଣାର୍ଜୁନ ଯୁଦ୍ଧ ହୋଇ ଅଷ୍ଟବଜ୍ର ଭେଟ ହେବା ସଙ୍ଗେ ସଙ୍ଗେ ଉର୍ବଶୀ ସ୍ୱର୍ଗକୁ ଗଲେ । ଯୁଦ୍ଧ ବନ୍ଦ ହେଲା । (ଦଣ୍ଡୀପର୍ବ)

(୨) ସୂର୍ଯ୍ୟଙ୍କ ପାର୍ଶ୍ୱଚର ବିଶେଷ ।

**ଦତ୍ତାତ୍ରେୟ** – ବିଖ୍ୟାତ ଋଷି । ସ୍ୱୟଂ ବିଷ୍ଣୁ ଅତ୍ରି ପତ୍ନୀ ଅନସୂୟାଙ୍କ ଗର୍ଭରୁ ଦତ୍ତାତ୍ରେୟରୂପେ ଜନ୍ମଗ୍ରହଣ କରିଥିଲେ । କୁଶିକବଂଶୀୟ କୌଣସି କୁଷ୍ଠ ରୋଗଗ୍ରସ୍ତ ବ୍ରାହ୍ମଣ ପ୍ରତିଷ୍ଠାନପୁରରେ ବାସ କରୁଥିଲେ । ତାହାର ପତିବ୍ରତା ପତ୍ନୀ ବହୁ କ୍ଳେଶ ସହ୍ୟ କରି ପତିର ସେବା ଶୁଶ୍ରୂଷା କରୁଥାଏ ଏବଂ ସ୍ୱାମୀର ମନକୁ ଯୋଗାଇବା ଭଳି କାର୍ଯ୍ୟ ମଧ୍ୟ କରୁଥାଏ । ଏହି ବ୍ରାହ୍ମଣ ଦିନେ ଗୋଟିଏ ବେଶ୍ୟାକୁ ଦେଖି ତାହା ପ୍ରତି ଆସକ୍ତ ହେଲା ଏବଂ ତା ଘରକୁ ଯିବା

ପାଇଁ ପତ୍ନୀକୁ କହିଲା । ସାଧ୍ୱୀ ପତ୍ନୀ, ପତିକୁ କାନ୍ଧରେ ଧରି ବେଶ୍ୟା ଗୃହ ଅଭିମୁଖରେ ଗଲା । ବାଟରେ ଯାଉ ଯାଉ ଘୋର ଅନ୍ଧକାର ମଧ୍ୟରେ ଅଣି ମାଣ୍ଡବ୍ୟଙ୍କ ଦେହରେ କୁଷ୍ଠ ରୋଗୀର ପାଦ ବାଜିଲା । ଋଷି କ୍ରୋଧରେ ଶାପ ଦେଲେ, 'ରାତ୍ରି ପ୍ରଭାତ ହେବାମାତ୍ରେ ତୋର ମୃତ୍ୟୁ ଘଟୁ ।' ପତିବ୍ରତା ପତ୍ନୀ ଋଷିଙ୍କ ଅଭିଶାପ ଶୁଣି ବ୍ୟଥିତା ହେଲେ ଏବଂ ଦୃଢ଼ତାର ସହିତ କହିବାକୁ ଲାଗିଲେ—'ସୂର୍ଯ୍ୟ ଆଉ ଉଦୟ ହେବେ ନାହିଁ ।' ସାଧ୍ୱୀର ବଚନ ଅବ୍ୟର୍ଥ । ରାତ୍ରି ଅତୀତ ହେଲା ପରେ ମଧ୍ୟ ସୂର୍ଯ୍ୟୋଦୟ ହେଲା ନାହିଁ । ସୂର୍ଯ୍ୟାଲୋକ ଅଭାବରୁ ଜଗତ ବିନଷ୍ଟ ହେବା ଉପରେ ବସିଲା । ଦେବତାମାନେ ମହା ବ୍ୟସ୍ତ ହୋଇ ଏ କଥା ବ୍ରହ୍ମାଙ୍କୁ ଜଣାଇଲେ । ବ୍ରହ୍ମା କହିଲେ—'ପତିବ୍ରତା ରମଣୀର ବଚନରେ ଯେପରି ସୂର୍ଯ୍ୟୋଦୟ ହେଉ ନାହିଁ, ସେହିପରି ସାଧ୍ୱୀ ବାକ୍ୟରେ ସୂର୍ଯ୍ୟୋଦୟ କରାଇବା ଉଚିତ ।' ବ୍ରହ୍ମାଙ୍କ ପରାମର୍ଶମତେ ଦେବତା-ମାନେ ଅତ୍ରି ପତ୍ନୀ ଅନସୂୟାଙ୍କ ପାଖକୁ ଗଲେ । ଅନସୂୟା ବ୍ରାହ୍ମଣପତ୍ନୀ ନିକଟକୁ ଯାଇ ସୂର୍ଯ୍ୟୋଦୟ ପାଇଁ ଅନୁମତି ମାଗିଲେ ଏବଂ କହିଲେ ଯଦି ସୂର୍ଯ୍ୟୋଦୟ ହେଲେ ତୁମ ପତିଙ୍କର ବିନାଶ ଘଟେ ତେବେ ମୁଁ ତୁମ ପତିଙ୍କୁ ନବକଳେବରଯୁକ୍ତ କରି ପୁଣି ଜୀଆଇଦେବି । ଏହା ପରେ ବ୍ରାହ୍ମଣପତ୍ନୀ ଅନୁମତି ଦେଲେ । ସୂର୍ଯ୍ୟୋଦୟ ହେଲା । ଦେବତାମାନେ ସନ୍ତୁଷ୍ଟ ହୋଇ ଅନସୂୟାଙ୍କୁ ବର ଯାଚିଲେ । ଅନସୂୟା କହିଲେ—ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଯେପରି ମୋର ପୁତ୍ର ହେବେ ମୁଁ ତାହା କାମନା କରୁଛି । ସେହି ହେତୁରୁ ଅନସୂୟାଙ୍କ ଗର୍ଭରୁ ବ୍ରହ୍ମା ଚନ୍ଦ୍ରରୂପେ, ବିଷ୍ଣୁ ଦତ୍ତାତ୍ରେୟରୂପେ ଓ ଶିବ ଦୁର୍ବାସାରୂପେ ଜନ୍ମଗ୍ରହଣ କରିଥିଲେ ।

**ଦଧିବାମନ**—ବାମନାବତାରରେ ବିଷ୍ଣୁ ଦଧି ବହନ କରିଥିବା ସ୍ୱରୂପରେ ଅନୁସନ୍ଧେୟ । (ଭାଷାକୋଷ)

**ଦଧିମୁଖ**—ରାମଚନ୍ଦ୍ରଙ୍କ ବାନର ସେନାପତି ବିଶେଷ । ସୁଗ୍ରୀବଙ୍କ ଶ୍ୱଶୁର । କିଷ୍କିନ୍ଧ୍ୟା ମଧୁବନର ଉଦ୍ୟାନପାଳ ।

**ଦଧୀଚ**—ବ୍ରହ୍ମାଣ୍ଡ ପୁରାଣମତେ ଦଧୀଚ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର । ଏ ଅଥର୍ବାଙ୍କ ଔରସରେ ପ୍ରଜାପତିଙ୍କ କନ୍ୟା ଶାନ୍ତିଙ୍କ ଗର୍ଭରୁ ଜନ୍ମିଥିଲେ । ଋଗ୍‌ବେଦ ମତେ ଦଧୀଚ ଅଥର୍ବାଙ୍କ ପୁତ୍ର । ମହାଭାରତରେ ବର୍ଣ୍ଣିତ ହୋଇଛି ଦକ୍ଷ ଯେଉଁ ସମୟରେ ହରିଦ୍ୱାରଠାରେ ଶିବହୀନ ଯଜ୍ଞ ଅନୁଷ୍ଠାନ କରିଥିଲେ, ସେତେବେଳେ ଦଧୀଚ ତାଙ୍କୁ ବହୁ ପ୍ରକାର ଉପଦେଶ ଦେଇ ଶିବଙ୍କୁ ନିମନ୍ତ୍ରଣ

କରିବା ପାଇଁ ଅନୁରୋଧ କରିଥିଲେ । ମାତ୍ର ଦକ୍ଷ ଏହା ପ୍ରତ୍ୟାଖ୍ୟାନ କଲେ । ଦଧୀଚି ବିରକ୍ତ ହୋଇ ଦକ୍ଷଙ୍କ ଯଜ୍ଞ ସଭାରୁ ଚାଲିଗଲେ । ଯେତେବେଳେ ବୃତ୍ରାସୁର ଉପଦ୍ରବରେ ସ୍ୱର୍ଗ ଅସ୍ଥିର ହେଲା, ସେତେବେଳେ ଦଧୀଚିଙ୍କ ଅସ୍ଥିରେ ବଜ୍ର ତିଆରି ହେବ ଏବଂ ଏଥିରେ ବୃତ୍ର ସଂହାର ଘଟିବ ବୋଲି ଇନ୍ଦ୍ର ଜାଣି ଦଧୀଚିଙ୍କ ପାଖକୁ ଗଲେ । ତାଙ୍କୁ ଅସ୍ଥି ପ୍ରାର୍ଥନା କଲେ । ମାତ୍ର ଦଧୀଚି ଇନ୍ଦ୍ରଙ୍କ ଅପକାର କଥା ଭୁଲିଯାଇ ଅସ୍ଥି ଦେଲେ ଏବଂ ସେଥିରେ ବଜ୍ର ତିଆରି ହେଲା ଏବଂ ବୃତ୍ରର ନିଧନ ଘଟିଲା । ଦଧୀଚି ଉଗ୍ର ତପସ୍ୟା କରୁଥିବାବେଳେ ଇନ୍ଦ୍ର ତାହା ଭଙ୍ଗ କରିବା ପାଇଁ ଅଲମ୍ବୁଷା ନାମ୍ନୀ ଅପ୍ସରାକୁ ପଠାଇଥିଲେ । ତାକୁ ଦେଖି ଦଧୀଚିଙ୍କର ରେତଃପାତ ହେଲା । ସେହି ରେତଃରୁ ସାରସ୍ୱତ ନାମକ ପୁତ୍ର ଜାତ ହୋଇଥିଲେ ।

**ଦନୁ**—ପ୍ରଜାପତି ଦକ୍ଷଙ୍କ ଦୁହିତା ଓ କଶ୍ୟପଙ୍କ ପତ୍ନୀ । ଏହାଙ୍କ ଗର୍ଭରୁ ବାତାପି, ନରକ, ବୃଷପର୍ବା, ନିକୁମ୍ଭ, ପ୍ରଲମ୍ବ, ବନାୟୁ ପ୍ରଭୃତି ୪୦ ଗୋଟି ଦାନବ ଜନ୍ମିଥିଲେ ।

**ଦନ୍ତବକ୍ତ୍ର**—ଶିଶୁପାଳର ଭାଇ । ବିଷ୍ଣୁରୂପୀ ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ହୋଇ ବୈକୁଣ୍ଠ ଗମନ କରିଥିଲେ । ଏ ତ୍ରେତାରେ କୁମ୍ଭକର୍ଣ୍ଣ, ସତ୍ୟଯୁଗରେ ହିରଣ୍ୟକଶିପୁ ରାକ୍ଷସରୂପେ ଜନ୍ମିଥିଲେ । (ଜୟ ଦେଖ)

**ଦମ**—(୧) ବିଦର୍ଭରାଜାଙ୍କ ବଡ଼ପୁଅ, ଦମୟନ୍ତୀଙ୍କ ଭାଇ ।
(୨) ଚନ୍ଦ୍ରବଂଶୀୟ ଶିଶୁପାଳଙ୍କ ପିତା ଦମଘୋଷଙ୍କ ନାମାନ୍ତର ।

**ଦମଘୋଷ** – ଚନ୍ଦ୍ରବଂଶୀୟ ଜଣେ ରାଜା । ଏ ଚେଦି ଦେଶର ଅଧିପତି । ଦମଘୋଷ ଯଦୁବଂଶୀୟ ବସୁଦେବଙ୍କ ଦ୍ୱିତୀୟା ଭଗିନୀ ସୁପ୍ରଭାଙ୍କୁ ବିବାହ କରିଥିଲେ । ସୁପ୍ରଭାଙ୍କ ଗର୍ଭରୁ ଶିଶୁପାଳ ଓ ଦନ୍ତବକ୍ତ୍ର ଜନ୍ମିଥିଲେ । ବସୁଦେବଙ୍କ ଜ୍ୟେଷ୍ଠା ଭଗିନୀ କୁନ୍ତୀଙ୍କ ଗର୍ଭରୁ ଯୁଧିଷ୍ଠିରାଦି ପାଣ୍ଡବମାନଙ୍କ ଜନ୍ମ । ବସୁଦେବଙ୍କ ପୁତ୍ର ଶ୍ରୀକୃଷ୍ଣ । ଯୁଧିଷ୍ଠିର ଓ ଶିଶୁପାଳ ଶ୍ରୀକୃଷ୍ଣଙ୍କ ପିଉସୀ ପୁଅ ଭାଇ । (ହରିବଂଶ)

**ଦମନ**—ବିଦର୍ଭରାଜ ଭୀମଙ୍କ ପୁଅ । ସନ୍ତାନ ନ ହେବାରୁ ମହାରାଜ ଭୀମ ବହୁକାଳ ବିମର୍ଷ ଭାବେ ଅତିବାହିତ କରିଥିଲେ । ଏକଦା ଦମନ ନାମକ ଏକ ମହର୍ଷି ବିଦର୍ଭ ରାଜ୍ୟକୁ ଆସିଥିଲେ । ଏହାଙ୍କ ବର ପ୍ରସାଦରୁ ଭୀମଙ୍କର ତିନି ପୁଅ ଓ ଗୋଟିଏ ଝିଅ ହେଲା । ଦମନଙ୍କ ସ୍ମୃତି ରକ୍ଷାର୍ଥେ ସେ ନିଜର

ପିଲାଗୁଡ଼ିକର ନାମ ଏହି ପ୍ରକାର ଦେଲେ, ଯଥା—ଦମ, ଦନ୍ତ ଓ ଦମନ, କନ୍ୟାର ନାମ ଦମୟନ୍ତୀ । (ମହାଭାରତ, ବନପର୍ବ)

**ଦମୟନ୍ତୀ**—ବିଦର୍ଭାଧିପତି ଭୀମଙ୍କ ଦୁହିତା । ବ୍ରହ୍ମର୍ଷି ଦମନଙ୍କୁ ପରିତୁଷ୍ଟ କରି ଭୀମ ଏହି କନ୍ୟାରତ୍ନ ଲାଭ କରିଥିବା ଯୋଗୁଁ ଏହାଙ୍କର ନାମ ରଖିଥିଲେ ଦମୟନ୍ତୀ (ଦମନ ଦେଖ) । ଏହି ଲାବଣ୍ୟବତୀ କନ୍ୟାର ବିବାହ ନିମିତ୍ତ ଏକ ସ୍ୱୟମ୍ବରସଭା ଆହ୍ୱାନ କରାଯାଇଥିଲା । ଏ ସଭାକୁ ଦେବତାମାନେ ମଧ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ । ଦମୟନ୍ତୀ ହଂସ ମୁଖରୁ ନିଷଧରାଜ ନଳଙ୍କ ଗୁଣାବଳୀ ଶ୍ରବଣ କରି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ତେଣୁ ସେ ସ୍ୱୟମ୍ବର ସଭାରେ ଦେବତାମାନଙ୍କୁ ପ୍ରତ୍ୟାଖ୍ୟାନ କରି ନଳଙ୍କ ଗଳାରେ ବରମାଲ୍ୟ ଦେଲେ ।

କଳି ଓ ଶନି ଏଥିଲାଗି ଦମୟନ୍ତୀଙ୍କ ଉପରେ ରୁଷ୍ଟ ହେଲେ । ସେମାନେ ଦମୟନ୍ତୀଙ୍କୁ ବିପନ୍ନ କରିବା ପାଇଁ ଛିଦ୍ର ଖୋଜିଲେ । ମାତ୍ର ଅନେକ ଦିନ ଯାଏ ଅପେକ୍ଷା କଲେ । ଏଗାର ବର୍ଷ ପରେ କଳି ନଳଙ୍କ ଶରୀରରେ ପ୍ରବେଶ କଲେ । ନଳ ପଶାଖେଳରେ ହାରି ରାଜ୍ୟଭ୍ରଷ୍ଟ ହେଲେ । ତାଙ୍କ ଭାଇ ପୁଷ୍କର ରାଜସିଂହାସନ ଅଧିକାର କରି ବସିଲେ । ନଳ ଦମୟନ୍ତୀଙ୍କ ସହ ବନରେ ବିଚରଣ କଲେ । କଳି ଓ ଶନିଙ୍କ ପ୍ରଭାବ ଯୋଗେ ଉଭୟେ ପରସ୍ପରଠାରୁ ଭିନ୍ନ ହୋଇ ରହିଲେ । ବହୁବର୍ଷ ପରେ କଳି, ନଳଙ୍କ ଦେହରୁ ଚାଲିଗଲେ । ନଳ ଓ ଦମୟନ୍ତୀଙ୍କର ପୁଣି ମିଳନ ଘଟିଲା । ସେମାନେ ନିଷଧର ସିଂହାସନରେ ରାଜା, ରାଣୀରୂପେ ଅଭିଷିକ୍ତ ହେଲେ । (ମହାଭାରତ-ବନପର୍ବ, କଳି ଓ କର୍କୋଟକ ଦେଖ । ବିଶେଷ ବିବରଣ ପାଇଁ କବି ମଧୁସୂଦନକୃତ ନଳଚରିତ ପଠନୀୟ) ।

**ଦର୍ଶନ**—ଭାରତୀୟ ଦର୍ଶନଶାସ୍ତ୍ର ଛଅ ଭାଗରେ ବିଭକ୍ତ । ଯଥା—କପିଳଙ୍କ ସାଂଖ୍ୟ, ପତଞ୍ଜଳିଙ୍କ ଯୋଗ, ଗୌତମଙ୍କ ନ୍ୟାୟ, କଣାଦଙ୍କ, ବୈଶେଷିକ, ଜୈମିନିଙ୍କ ମୀମାଂସା, ବ୍ୟାସଙ୍କ ବେଦାନ୍ତ । ପ୍ରକୃତି, ଆତ୍ମା, ପରମାତ୍ମା ଓ ଜଗତର ନିୟାମକ ଧର୍ମ, ଜୀବନର ଅନ୍ତିମ ଲକ୍ଷ୍ୟ ଇତ୍ୟାଦି ଯେଉଁ ଶାସ୍ତ୍ରରେ ନିରୂପିତ ହୁଏ ତାକୁ ଦର୍ଶନଶାସ୍ତ୍ର ବୋଲାଯାଏ । ୟୁରୋପର ଗ୍ରୀସ୍ ଦେଶରେ ପ୍ରାଚୀନ କାଳରେ ସକ୍ରେଟିସ୍, ପ୍ଲେଟୋ, ଆରିଷ୍ଟଟଲ ଆଦି ପଣ୍ଡିତମାନେ ଦର୍ଶନ ଶାସ୍ତ୍ରର ଚର୍ଚ୍ଚା କରିଥିଲେ । (ଭାଷାକୋଷ)

**ଦଶଅବତାର**—'ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ' ନ୍ୟାୟରେ ଶିଷ୍ଟପାଳନ ଓ ଦୁଷ୍ଟଦଳନ ନିମନ୍ତେ ବିଷ୍ଣୁଙ୍କର ପୃଥିବୀରେ ଦଶବାର ଅବତରଣ ବା ଜୀବରୂପ ଧାରଣ । ଏହି ଅବତାରମାନ ଯଥା—ମତ୍ସ୍ୟ, କଚ୍ଛପ, ବରାହ, ବାମନ, ନୃସିଂହ, ପରଶୁରାମ, ରାମ, ବଳରାମ, ବୁଦ୍ଧ ଓ କଳ୍କି ।

ଶାସ୍ତ୍ରରେ ଅଛି ଯେ ଯେତେବେଳେ ପୃଥିବୀରେ ଅନ୍ୟାୟର ମାତ୍ରା ଅତି ବେଶି ହୋଇଯାଏ, ସେତେବେଳେ ଦୁଷ୍କୃତକାରୀ ବ୍ୟକ୍ତିଙ୍କୁ ନାଶ କରି ସୁକୃତମାନଙ୍କ ଉଦ୍ଧାର କରିବା ନିମନ୍ତେ ଭଗବାନ ପାର୍ଥିବ ରୂପ ଧାରଣ କରି ପୃଥିବୀରେ ଅବତୀର୍ଣ୍ଣ ହୋଇ ପୃଥିବୀକୁ ରକ୍ଷା କରନ୍ତି । ସାଧାରଣ ପ୍ରଚଳିତ ବିଶ୍ୱାସମତେ ପୂର୍ବୋକ୍ତ ଦଶଗୋଟି ଅବତାର ଛଡ଼ା ବିଷ୍ଣୁ ଅନ୍ୟାନ୍ୟ ଅନେକ ଅବତାର ଧରିଥିଲେ । ପାଶ୍ଚାତ୍ୟ ବିଜ୍ଞାନର ବିବର୍ତ୍ତନବାଦ (Evolution theory) ସହିତ ଏହି ଦଶ ଅବତାରବାଦକୁ ତୁଳନା କରିବା କୌତୁକାବହ । ଡାରଉଇନ୍‌ଙ୍କର ବିବର୍ତ୍ତନବାଦ (Darwin evolution theory) ଅନୁସାରେ ହିନ୍ଦୁମାନଙ୍କର ଦଶ ଅବତାର ତୁଳନା କଲେ ଜୀବ ସୃଷ୍ଟିରେ ବିବର୍ତ୍ତନର ଭିନ୍ନ ଭିନ୍ନ ଅନୁରୂପ କ୍ରମିକ ସୋପାନ ଦେଖାଯାଏ । ଯଥା—'ମତ୍ସ୍ୟ' ପ୍ରଥମ, ପୂର୍ଣ୍ଣଜଳରେ, । 'ମତ୍ସ୍ୟ'ରୁ ବିବର୍ତ୍ତନ ଦ୍ୱାରା ଉଭୟଚର (ବେଶି ସମୟ ଜଳରେ ଓ ଅଳ୍ପ ସମୟ ସ୍ଥଳରେ ବିଚରଣ କରୁଥିବା) 'କଚ୍ଛପ' । ତତ୍ପରେ ସ୍ଥଳଚର (ଅଧିକାଂଶ ସମୟ ସ୍ଥଳରେ ଓ ଅତି ଅଳ୍ପକାଳ ଜଳ ବା ପଙ୍କରେ ବିଚରଣକାରୀ) 'ବରାହ' । (ଏତେବେଳକୁ ପଶୁ ସୃଷ୍ଟିର ଆରମ୍ଭ) । 'ବରାହ' ପରେ 'ନୃସିଂହ' (ଅର୍ଥାତ୍ ଅଧା ପଶୁ ଓ ଅଧା ମନୁଷ୍ୟ ଓ ତାହାର ଅସ୍ତ୍ର, ଦନ୍ତ ଓ ନଖ) ; ତତ୍ପରେ 'ବାମନ' (ଅର୍ଥାତ୍ ସମସ୍ତ ଅଙ୍ଗ ବିଶିଷ୍ଟ ଓ କିନ୍ତୁ ମନୁଷ୍ୟର ପୂର୍ଣ୍ଣାକାର ପ୍ରାପ୍ତ ହୋଇ ନ ଥିବା ମନୁଷ୍ୟ) । ତତ୍ପରେ 'ପରଶୁରାମ' (ଅର୍ଥାତ୍ ପୂର୍ଣ୍ଣ ସଭ୍ୟତା ପାଇ ନ ଥିବା ଓ ପୂର୍ବପ୍ରସ୍ଥ ଆଦିମ ଅବସ୍ଥାର ମନୁଷ୍ୟ । (ତାହାର ଅସ୍ତ୍ର ଗୋଟିଏ ଲୌହଲୟ କୁଠାର) । ତତ୍ପରେ 'ଶ୍ରୀରାମ' (ଦୟା ଦାକ୍ଷିଣ୍ୟଯୁକ୍ତ, ସଦ୍‌ଗୁଣପୂର୍ଣ୍ଣ ଓ ସମାଜ ଏବଂ ରାଜ୍ୟ ପରିଚାଳନାରେ ଦକ୍ଷ ମନୁଷ୍ୟ, କିନ୍ତୁ କୃଷି ବିଦ୍ୟାରେ ନିପୁଣତା ଲାଭ କରି ନ ଥିବା ଅବସ୍ଥା) । ତତ୍ପରେ 'ବଳରାମ' (କୃଷିଜୀବୀ ଓ ସଂସାର କର୍ମରତ ମନୁଷ୍ୟ) । ତତ୍ପରେ 'ବୁଦ୍ଧ' (ଧର୍ମପ୍ରାଣତାଯୁକ୍ତ ଓ ଆଧ୍ୟାତ୍ମିକତା (Spirituality) ଯୁକ୍ତ ମନୁଷ୍ୟ ଓ ତତ୍ପରେ 'କଳ୍କି' ଅବତାର (ଯାହା ଏ ପର୍ଯ୍ୟନ୍ତ ହୋଇ ନାହିଁ) । ଏ ଜନସମାଜରେ ବିପ୍ଳବ ଓ ଭୟଙ୍କର ଗୋଳଯୋଗ ଓ ରକ୍ତପାତ ଘଟାଇବା ବ୍ୟକ୍ତି ଉକ୍ତ ଦୃଷ୍ଟିରେ ହିନ୍ଦୁମାନଙ୍କର ଏହି

'ଅବତାରବାଦ' ସହିତ ପାଶ୍ଚାତ୍ୟ 'ବିବର୍ତ୍ତନବାଦ'ର ତୁଳନା ଅତ୍ୟନ୍ତ କୌତୂହଳାବହ ଓ ଉପଦେଶପ୍ରଦ । (ଭାଷାକୋଷ)

**ଦଶକର୍ମ** – ଆର୍ଯ୍ୟମାନଙ୍କର ଦଶବିଧ ସଂସ୍କାର ବିଶେଷ । ଯଥା – ଗର୍ଭାଧାନ, ସବନ ବା ପୁଂସବନ, ସୀମନ୍ତୋନ୍ନୟନ, ଜାତକର୍ମ, ନାମକରଣ, ନିଷ୍କ୍ରାମଣ, ଅନ୍ନପ୍ରାଶନ, ଚୂଡ଼ାକରଣ ବା କର୍ଣ୍ଣବେଧ, ଉପନୟନ, ସମାବର୍ତ୍ତନ ବା ବିବାହ; ବର୍ତ୍ତମାନ ଭାରତସ୍ଥ ଆର୍ଯ୍ୟ ବଂଶଧରମାନେ ଏ ସଂସ୍କାରମାନ ଯଥା ସମୟରେ ନ କରି ବ୍ରତବେଳେ କଲ୍‌ନାଶକ୍ତି ଦ୍ୱାରା ଏକ ଅଥବା ଦୁଇଦିନ ମଧ୍ୟରେ ବିବାହ ଛଡ଼ା ନଅଗୋଟିଯାକ କର୍ମ ସମାଧାନ କରି ବିଧି ରକ୍ଷା କରୁଅଛନ୍ତି । (ଭାଷାକୋଷ)

**ଦଶ ଦାନ** - ମଲ ପରେ ମନୁଷ୍ୟଙ୍କୁ ପ୍ରେତପୁରୀକୁ ବେଷ୍ଟନ କରିଥିବା ତପ୍ତ ବୈତରଣୀ ନଦୀକୁ ପାର ହେବାକୁ ପଡ଼େ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ତେଣୁ ସେହି ନଦୀକୁ ନିରାପଦରେ ଉତ୍ତୀର୍ଣ୍ଣ ହୋଇପାରିବା ବିଶ୍ୱାସରେ ମନୁଷ୍ୟ ମରିବା ପୂର୍ବରୁ ବ୍ରାହ୍ମଣଙ୍କୁ ଦଶଗୋଟି ଦାନ କରେ । ଯଥା—ଗୋରୁ, ଭୂମି, ସୁନା, ବସ୍ତ୍ର, ଲୁହା ବା ଶାଳଗ୍ରାମ ଶିଳା, ତମ୍ବା ବା ଅନ୍ନ, ଘିଅ, ଯବ, ଜଳପାତ୍ର, ବିଞ୍ଚଣା । (ପ୍ରେତକୃତ୍ୟ ପଦ୍ଧତି, ଭାଷାକୋଷ)

**ଦଶମ ଅବତାର** – ବିଷ୍ଣୁଙ୍କର କଳିଯୁଗର ଶେଷ ଅବତାର । ଉକ୍ତ ଅଛି ଯେ – କଳିଯୁଗରେ ପାପର ମାତ୍ରା ଖୁବ୍ ବେଶି ହେଲେ ଭଗବାନ ଘୋଡ଼ାରେ ଚଢ଼ି ହାତରେ ଖଣ୍ଡା ଧରି ପୃଥିବୀରେ ଅବତୀର୍ଣ୍ଣ ହୋଇ ଦୁଷ୍ଟ ସଂହାର କରି ଶାନ୍ତି ପ୍ରତିଷ୍ଠା କରିବେ । ଏ ଅବତାର ଆଜିଯାଏ ପୃଥିବୀକୁ ଆସିନାହାନ୍ତି । (ଭାଷାକୋଷ)

**ଦଶ ମହାବିଦ୍ୟା**—ମହାଶକ୍ତି ବା ଦୁର୍ଗାଙ୍କର ଦଶବିଧା ମୂର୍ତ୍ତି । ଯଥା—କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ ଓ କମଳା ବା ରାଜରାଜେଶ୍ୱରୀ ।

**ଦଶରଥ** – ଅଯୋଧ୍ୟାର ରାଜା । ପିତାଙ୍କ ନାମ ଅଜ, ମାତା ଇନ୍ଦୁମତୀ । ଏ ବିଷ୍ଣୁ ଅବତାର ରାମଚନ୍ଦ୍ରଙ୍କ ପିତା । ଦଶରଥଙ୍କ ରାଜଧାନୀ ଅଯୋଧ୍ୟା ଏକ ଅତି ପ୍ରାଚୀନ ନଗରୀ । ଏହା ସରଯୂ ନଦୀ କୂଳରେ ଅବସ୍ଥିତ । ଏହାଙ୍କର ତିନିଗୋଟି ପ୍ରଧାନ ମହିଷୀ ଥିଲେ - କୌଶଲ୍ୟା, କୈକେୟୀ, ସୁମିତ୍ରା । ବହୁବର୍ଷଯାଏ ଦଶରଥଙ୍କର କୌଣସି ସନ୍ତାନସନ୍ତତି ହୋଇ ନଥିଲେ । ଶାନ୍ତା

ନାମ୍ନୀ ଏକମାତ୍ର କନ୍ୟା ଥିଲେ । ଦଶରଥ ସେ କନ୍ୟାଟିକୁ ତାଙ୍କର ପରମ ମିତ୍ର ଅଙ୍ଗ ଦେଶାଧିପତି ରୋମପାଦ (ଲୋମପାଦ)ଙ୍କୁ ପୋଷ୍ୟପୁତ୍ରିକା ରୂପେ ଅର୍ପଣ କରିଥିଲେ । ରୋମପାଦ ଏହି ଶାନ୍ତାଙ୍କୁ ବିଭାଣ୍ଡକ ଋଷିଙ୍କ ପୁତ୍ର ଋଷ୍ୟ-ଶୃଙ୍ଗଙ୍କ ସହିତ ବିବାହ କରି ଦେଇଥିଲେ । (ଋଷ୍ୟଶୃଙ୍ଗ ଦେଖ) ଅପୁତ୍ରିକ ବୃଦ୍ଧ ଦଶରଥ ବହୁକାଳ ଅତି ଦୁଃଖରେ ଅତିବାହିତ କଲା ପରେ ମନ୍ତ୍ରୀମାନଙ୍କ ପରାମର୍ଶରେ ଜାମାତା ଋଷ୍ୟଶୃଙ୍ଗଙ୍କ ଦ୍ୱାରା ଏକ ପୁତ୍ରେଷ୍ଟି ଯାଗ କଲେ । ସରଯୂ ଉତ୍ତରକୂଳରେ ଯାଗଶାଳା ନିର୍ମିତ ହେଲା । ଏହି ଯଜ୍ଞର ଚରୁ ଭକ୍ଷଣ କରି ମହିଷୀତ୍ରୟ ଅନ୍ତଃସତ୍ତ୍ୱା ହେଲେ । ଯଥା ସମୟରେ କୌଶଲ୍ୟାଙ୍କ ଗର୍ଭରୁ ରାମ, କୈକେୟୀଙ୍କ ଗର୍ଭରୁ ଭରତ ଓ ସୁମିତ୍ରାଙ୍କ ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ନାମକ ଦୁଇ ପୁତ୍ର ଜନ୍ମିଲେ । ପୁତ୍ରେଷ୍ଟି ପୂର୍ବରୁ ଦଶରଥ ମୃଗୟାର୍ଥେ ବନଗମନ କରି-ଥିଲେ । ସେ ଶବ୍ଦଭେଦୀ ବାଣର ପରୀକ୍ଷା ନିମନ୍ତେ ରାତ୍ରିରେ ନଦୀ କୂଳରେ ବସି ଏକ ଶବ୍ଦକୁ ଲକ୍ଷ୍ୟକରି ଶର ନିକ୍ଷେପ କଲେ । ଏହି ବାଣରେ ଅନ୍ଧମୁନିଙ୍କ ପୁତ୍ର ଆହତ ହୋଇଥିଲେ ଏବଂ ପ୍ରାଣ ବିସର୍ଜନ କଲେ । ପୁତ୍ର ଶୋକକାତର ଅନ୍ଧ-ମୁନି ଶାପ ଦେଲେ—'ତୁମେ ପୁତ୍ର ଶୋକରେ ପ୍ରାଣତ୍ୟାଗ କରିବ ।' ଶାପଗ୍ରସ୍ତ ହୋଇ ଦଶରଥ ବିପନ୍ନ ବଦନରେ ରାଜଧାନୀକୁ ଫେରିଲେ । (ଅନ୍ଧଦେଖ) ଅଯୋଧ୍ୟାର ଦକ୍ଷିଣରେ ଗଙ୍ଗାର ଉତ୍ତର ତୀରରେ ନିଷାଦପତି ଗୁହକଙ୍କ ରାଜ୍ୟ । ଏହାର ନାମ ଶୃଙ୍ଗବେରପୁର । ଗୁହକ ଏକ ଅନାର୍ଯ୍ୟଜାତୀୟ ରାଜା । ଏହି ରାଜାଙ୍କ ସହିତ ଦଶରଥଙ୍କର ମିତ୍ରତା ଥିଲା । ଦଶରଥ ମିଥିଳାର ରାଜା ଜନକଙ୍କ ଅଯୋନିଜା କନ୍ୟା ସୀତାଦେବୀଙ୍କ ସହିତ ରାମଙ୍କୁ ଓ ଔରସଜାତ କନ୍ୟା ଊର୍ମିଳାଙ୍କ ସହିତ ଲକ୍ଷ୍ମଣଙ୍କର ଏବଂ ଜନକଙ୍କ ଭାଇ କୁଶଧ୍ୱଜଙ୍କ କନ୍ୟା ଶ୍ରୁତକୀର୍ତ୍ତି ଓ ମାଣ୍ଡବୀଙ୍କୁ ଭରତ ଓ ଶତ୍ରୁଘ୍ନଙ୍କ ସହିତ ବିବାହ କରାଇଥିଲେ । ସୀତାଙ୍କ ବିବାହରେ ଏକ ପଣ ଥିଲା, ବିବାହାର୍ଥୀ ଜନକ ଗୃହରେ ରକ୍ଷିତ ହରଧନୁରେ ଶର ଯୋଜନା କରି ପାରିଲେ ସୀତାଙ୍କର ସ୍ୱାମୀରୂପେ ବିବେଚିତ ହେବେ । ରାମଚନ୍ଦ୍ର ନିର୍ବିବାଦରେ ଏହା କରିଥିଲେ, ମାତ୍ର ଦଶରଥ ଏ କାର୍ଯ୍ୟ କରିବା ପାଇଁ ପ୍ରିୟତମ ପୁତ୍ର ରାମଙ୍କୁ ମିଥିଳାକୁ ପ୍ରେରଣ କରି ନ ଥିଲେ । ତାଡ଼କା ରାକ୍ଷସୀ ଓ ତାର ସୁବାହୁ ମାରୀଚ ନାମକ ପୁତ୍ରଦ୍ୱୟଙ୍କ ଉପଦ୍ରବରେ ଋଷିମାନେ ଯାଗ ଯଜ୍ଞ କରି ପାରିଲେ ନାହିଁ, ଏମାନଙ୍କ ସଂହାର ପାଇଁ ବିଶ୍ୱାମିତ୍ର ମହର୍ଷି ଅଯୋଧ୍ୟାକୁ ଆସି ରାମ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ଗଲେ । ତାଡ଼କା ବନରେ ବିଶ୍ୱାମିତ୍ରଙ୍କ ପ୍ରରୋଚନାରେ ରାମ ତାଡ଼କାକୁ ବଧ କଲେ । ବାୟୁ ବାଣରେ ମାରୀଚକୁ ଉଡାଇ ଦେଲେ, ଅଗ୍ନି ବାଣରେ ସୁବାହୁକୁ ଭସ୍ମ କଲେ । ବିଶ୍ୱାମିତ୍ର ନିରାପଦରେ ଯଜ୍ଞକର୍ମ ସମାପନ କଲେ । ତା ପରେ ଋଷି ରାମ

ଲକ୍ଷ୍ମଣଙ୍କୁ ଧରି ମିଥିଳା ଗଲେ । ବାଟରେ ଗୌତମାଶ୍ରମ ପଡ଼ିଲା । ସେଠାରେ ଗୌତମଙ୍କ ସ୍ତ୍ରୀ ଅହଲ୍ୟା ପତିଶାପରେ ପାଷାଣୀ ହୋଇଥିଲେ । ରାମଙ୍କ ପାଦରଜ ସ୍ପର୍ଶରେ ସେ ମୁକ୍ତି ଲାଭକଲେ । ତା ପରେ ରାମ ମିଥିଳାକୁ ଯାଇ ହରଧନୁ ଭାଙ୍ଗି ସୀତାଙ୍କୁ ବିଭାହେଲେ । ଦଶରଥ ପୁତ୍ରର ବିବାହ କାର୍ଯ୍ୟରେ ଯୋଗଦେବା ପାଇଁ ସପରିବାର ମିଥିଳାକୁ ଗଲେ । ସେଠାରେ ଅନ୍ୟ ତିନି-ପୁତ୍ରଙ୍କର ବିବାହ କାର୍ଯ୍ୟ ମଧ୍ୟ ସମ୍ପନ୍ନ ହେଲା । ବିବାହ ପରେ ଦଶରଥ ପୁତ୍ର ଓ ପୁତ୍ରବଧୂମାନଙ୍କ ସହିତ ଅଯୋଧ୍ୟା ଫେରିଲେ । ବାଟରେ ପରଶୁରାମଙ୍କ ସହିତ ଭେଟ ହେଲା । ରାମ, ପରଶୁରାମଙ୍କ ଦର୍ପଦଳନ ପରେ ଅଯୋଧ୍ୟା ଆସିଲେ । କିଛିଦିନ ପରେ ରାମଙ୍କର ଅଭିଷେକ ସ୍ଥିର ହେବାରୁ ବିମାତା କୈକେୟୀ, ଦାସୀ ମନ୍ଥରାର ପ୍ରରୋଚନାରେ ଦଶରଥଙ୍କୁ ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ଦୁଇଟି ବରମାଗି ରାମଙ୍କୁ ଚଉଦବର୍ଷ ଯାଏଁ ବଣକୁ ପଠାଇଲେ ଏବଂ ଭରତଙ୍କୁ ରାଜ୍ୟ ସିଂହାସନରେ ବସାଇବା ପାଇଁ ଦଶରଥଙ୍କୁ ଟିକା କରାଇଲେ । ଭରତ ସେତେବେଳେ ଅଯୋଧ୍ୟାରେ ନଥିଲେ । ଦଶରଥ ପ୍ରିୟତମ ପୁତ୍ର ରାମଙ୍କ ବନବାସ କଷ୍ଟ କଥା ଭାଳି ଭାଳି ପ୍ରାଣତ୍ୟାଗ କଲେ । ଭରତ ମାମୁଁଘରୁ ଫେରି ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପାଦନ କଲେ । (ରାମାୟଣ)

**ଦଶହରା**—ଜ୍ୟେଷ୍ଠ ଶୁକ୍ଳଦଶମୀ, ଏହିଦିନ ଗଙ୍ଗାଙ୍କ ଜନ୍ମଦିବସ । ଅର୍ଥାତ୍ ଗଙ୍ଗା ପୃଥିବୀରେ ଅବତରଣ କରିଥିଲେ । ଏ ଦିନ ଗଙ୍ଗା ସ୍ନାନ ବିଶେଷ ପାପନାଶକ, ଏ ଦିନ ଗଙ୍ଗା ପୂଜା ଓ ଗଙ୍ଗା ସ୍ନାନ କଲେ ନିମ୍ନଲିଖିତ ଦଶଗୋଟି ପାପ ନାଶଯାଏ । ଯଥା—(୧) ତ୍ରିବିଧ କାୟିକ ପାପ— ପରଦାର ଗମନ, ଅଦତ୍ତ ପରଦ୍ରବ୍ୟ ହରଣ ବା ଚୋରି ଓ ହିଂସା (୨) ଚତୁର୍ବିଧ ବାଚନିକ ପାପ— ନିଷ୍ଠୁର ବାକ୍ୟ ବା ପାରୁଷ୍ୟ, ମିଥ୍ୟା ବା ଅନୃତ, କ୍ରୂରତା ବା ପୈଶୁନ୍ୟ, ଅସମ୍ବନ୍ଧ ପ୍ରଳାପ ବା ଏଣୁତେଣୁ ବକିବା । (୩) ତ୍ରିବିଧ ମାନସିକ ପାପ— ପରଦ୍ରବ୍ୟ ଗ୍ରହଣେଚ୍ଛା ବା ଲୋଭ, ପରର ଅନିଷ୍ଟ ଚିନ୍ତା ଓ ମିଥ୍ୟା ବିଷୟରେ ଅଭିନିବେଶ ବା ଚିନ୍ତା । (ଭାଷାକୋଷ)

(୨) ଆଶ୍ୱିନ ଶୁକ୍ଳ ଦଶମୀ, ବିଜୟା ଦଶମୀ । ଏହା ଦୁର୍ଗୋତ୍ସବର ଶେଷ ଦିନ । ଏ ଦିନ ମହା ସମାରୋହରେ ମୃଣ୍ମୟୀ ଦୁର୍ଗା ପ୍ରତିମାକୁ ଜଳରେ ବିସର୍ଜନ କରାଯାଏ ।

**ଦଶାଶ୍ୱମେଧ ଘାଟ**—(୧) କାଶୀର ଗଙ୍ଗାତଟସ୍ଥ ତୀର୍ଥଘାଟ ବିଶେଷ । କାଶୀ-ଖଣ୍ଡରେ ଲେଖାଅଛି ଯେ ଏଠାରେ ବ୍ରହ୍ମା ଦିବୋଦାସ ରାଜର୍ଷିଙ୍କ ସହାୟତାରେ

ଦଶଗୋଟି ଅଶ୍ୱମେଧ ଯାଗ କରିଥିଲେ । ପ୍ରଥମେ ଘାଟ ରୁଦ୍ର ସରୋବର ନାମରେ ପ୍ରସିଦ୍ଧ ଥିଲା । ବ୍ରହ୍ମା ଏଠାରେ ଦଶାଶ୍ୱମେଧେଶ୍ୱର ନାମକ ଶିବଲିଙ୍ଗ ସ୍ଥାପନ କରିଥିଲେ । ଏ ତୀର୍ଥରେ ସ୍ନାନ କରି ଉକ୍ତ ଶିବଲିଙ୍ଗଙ୍କୁ ଦର୍ଶନ କଲେ, ସମସ୍ତ ପାପ ଛୁଟିଯାଏ । (୨) ପ୍ରୟାଗ ଅନ୍ତର୍ଗତ ତ୍ରିବେଣୀ ନିକଟସ୍ଥ ତୀର୍ଥଘାଟ ବିଶେଷ । (ହିନ୍ଦୀ ଶବ୍ଦସାଗର)

**ଦାରୁକ**—ଶ୍ରୀକୃଷ୍ଣଙ୍କ ସାରଥି । ଅର୍ଜୁନ ସୁଭଦ୍ରାଙ୍କୁ ହରଣ କରି ନେବାବେଳେ ଦାରୁକ କହିଲେ—'ମୁଁ ଯାଦବମାନଙ୍କ ବିରୁଦ୍ଧରେ ରଥ ଚାଳନା କରି ପାରିବି ନାହିଁ । ଆପଣ ମୋତେ ବନ୍ଧନ କରି ନିଜର ଅଭୀଷ୍ଟ ପୂରଣ କରନ୍ତୁ ।' ଶ୍ରୀକୃଷ୍ଣଙ୍କ ଅନ୍ତିମବାର୍ତ୍ତା ଏହି ଦାରୁକ ଅର୍ଜୁନଙ୍କୁ ଜଣାଇଥିଲେ ।

(ମହାଭାରତ ମୂଷଳପର୍ବ)

**ଦାରୁଣ**—ପୀତାମ୍ବର ଦାସଙ୍କ କୃତ ନୃସିଂହପୁରାଣ ଅନ୍ତର୍ଗତ ମୂଢ଼ପୁରର କନିଷ୍ଠ ଭ୍ରାତା ।

**ଦିକ୍‌କନ୍ୟା**—ବରାହ ପୁରାଣରେ ଲେଖାଅଛି ଯେ ବ୍ରହ୍ମା ସୃଷ୍ଟି କରିବା ସମୟରେ ତାଙ୍କ କାନରୁ ୧୦ଟି କନ୍ୟା ଉତ୍ପନ୍ନ ହେଲେ । ସେମାନେ ଗୋଟିଏ ଗୋଟିଏ ଦିଗକୁ ଚାଲିଗଲେ । ବ୍ରହ୍ମା ୮ଗୋଟି ଦିକ୍‌ପାଳ ସୃଷ୍ଟି କରି ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ କନ୍ୟା ପ୍ରଦାନ କଲେ; ବ୍ରହ୍ମା ସ୍ୱୟଂ ଊର୍ଦ୍ଧ୍ୱକୁ ଗଲେ ଓ ଶେଷ ବା ବାସୁକିଙ୍କୁ ଅଧୋଦେଶରେ ରଖିଲେ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଦିକ୍‌ପତି-ପାଳ**— ପୂର୍ବାଦି ଦଶ ଦିଗର ରକ୍ଷକ ଦେବତାମାନେ । ପୂର୍ବ ଦିଗର ଇନ୍ଦ୍ର, ଦକ୍ଷିଣର ଯମ, ଉତ୍ତରର କୁବେର, ପଶ୍ଚିମର ବରୁଣ, ବାୟୁକୋଣର ବାୟୁ, ଐଶାନ୍ୟ କୋଣର ଶିବ ବା ଈଶାନ, ଅଗ୍ନିକୋଣର ଅଗ୍ନି, ନୈଋତ-କୋଣରେ ନୈଋତ, ଊର୍ଦ୍ଧ୍ୱଦିଗର ବ୍ରହ୍ମା ଏବଂ ଅଧୋଦିଗର ଅନନ୍ତ । କାହାରି କାହାରି ମତରେ ବ୍ରହ୍ମା ଓ ଅନନ୍ତଙ୍କୁ ଛାଡ଼ି ୮ ଦିଗର ଅଷ୍ଟ ଦିକ୍‌ପତି ସୂର୍ଯ୍ୟ, ଶୁକ୍ର, ମଙ୍ଗଳ, ରାହୁ, ଶନି, ସୋମ, ବୁଧ ଓ ବୃହସ୍ପତି । ପୂର୍ବାଦିକ୍ରମେ ଏହି ୮ଜଣ ଦିକ୍‌ପାଳ ଗ୍ରହ । (ଭାଷାକୋଷ)

**ଦିଗ୍‌ଗଜ**—ହିନ୍ଦୁ ପୁରାଣୋକ୍ତ ଯେଉଁ ୮ ଗୋଟି ହାତୀ ପୃଥିବୀର ୮ ଦିଗକୁ ରକ୍ଷା କରନ୍ତି । ପୂର୍ବାଦିକ୍ରମେ ସେମାନଙ୍କ ନାମ ଯଥା—ଐରାବତ (ପୂର୍ବ ଦିଗର), ପୁଣ୍ଡରୀକ (ପୂର୍ବ ଦକ୍ଷିଣରେ), ବାମନ (ଦକ୍ଷିଣର), କୁମୁଦ (ଦକ୍ଷିଣ-ପଶ୍ଚିମର)

ଅଞ୍ଜନ (ପଶ୍ଚିମରେ), ପୁଷ୍ପଦନ୍ତ (ପଶ୍ଚିମ-ଉତ୍ତରରେ), ସାର୍ବଭୌମ (ଉତ୍ତରରେ), ସୁପ୍ରତୀକ (ଉତ୍ତର-ପୂର୍ବରେ) । (ଭାଷାକୋଷ)

**ଦିତି**—ପ୍ରଜାପତି ଦକ୍ଷଙ୍କ କନ୍ୟା, କଶ୍ୟପଙ୍କ ପତ୍ନୀ, ଦୈତ୍ୟଗଣଙ୍କ ମାତା । ଦେବତାମାନଙ୍କ ଆକ୍ରମଣ ଯୋଗେ ଅସୁରମାନେ ବିନଷ୍ଟ ହେବାରୁ ଦିତି ସ୍ୱାମୀଙ୍କ ନିକଟରେ ଇନ୍ଦ୍ର ଦମନକାରୀ ଏକ ପୁତ୍ର ପ୍ରାପ୍ତି ପାଇଁ ପ୍ରାର୍ଥନା କଲେ । କଶ୍ୟପ ପତ୍ନୀଙ୍କ ପ୍ରାର୍ଥନା ପୂରଣ କରି କହିଲେ, 'ତୁମ୍ଭକୁ ସହସ୍ର ବର୍ଷ ଗର୍ଭ-ଧାରଣ କରିବାକୁ ପଡ଼ିବ ଏବଂ ସନ୍ତାନ ପ୍ରସବ ପର୍ଯ୍ୟନ୍ତ ସର୍ବଦା ଶୁଚି ହୋଇ ରହିବାକୁ ହେବ ।' ଦିତି ଯଥାସାଧ୍ୟ ସତର୍କତା ଅବଲମ୍ବନ କରି ଚଳିଲେ । ଇନ୍ଦ୍ର ସ୍ୱୀୟପଦର ଆଶଙ୍କା କରି ଦିତିଙ୍କ ଗର୍ଭ ନଷ୍ଟ କରିବାପାଇଁ ଛିଦ୍ରାନ୍ୱେଷଣ କରିବାକୁ ଲାଗିଲେ । ଦିନେ ଦିତି ଅଧୁଆ ଗୋଡରେ ଶୋଇଥିବା ବେଳେ ଇନ୍ଦ୍ର ଛିଦ୍ର ପାଇ ତାଙ୍କ ଗର୍ଭରେ ପଶି ବଜ୍ର ଦ୍ୱାରା ଗର୍ଭସ୍ଥ ସନ୍ତାନକୁ ୪୯ ଖଣ୍ଡ କରିଦେଲେ । ଏହି ସନ୍ତାନଗଣ ମରୁତ୍ ନାମରେ ପ୍ରସିଦ୍ଧି ଲାଭ କରିଥିଲେ ।

**ଦିବିରଥ**—ମହାରାଜ ଅଙ୍ଗଙ୍କ ପୌତ୍ର ଓ ଦଧିବାହନଙ୍କ ପୁତ୍ର । ଦିବିରଥଙ୍କ ପୁତ୍ର ଧର୍ମରଥ, ନାତି ଚିତ୍ରରଥ (ହରିବଂଶ) ।

**ଦିବୋଦାସ**—(୧) ବ୍ରଧ୍ୟଶ୍ୱଙ୍କ ପୁତ୍ର । ମେନକା ଗର୍ଭରୁ ଏହାଙ୍କର ଉତ୍ପତ୍ତି । ଏହାଙ୍କ ଭଗିନୀଙ୍କ ନାମ ଅହଲ୍ୟା

(୨) କାଶୀର ରାଜା ମନୁବଂଶୀୟ ରିପୁଞ୍ଜୟଙ୍କ ପୁତ୍ର । ତପସ୍ୟାରେ ବ୍ରହ୍ମାଙ୍କୁ ତୁଷ୍ଟ କରି ଏ ବରଲାଭ କରିଥିଲେ । ଏ ବର ଯୋଗେ ଦିବୋଦାସ ନାଗରାଜଙ୍କଠାରୁ ଅନଙ୍ଗମୋହିନୀ ନାମ୍ନୀ ଏକ ସ୍ତ୍ରୀକୁ ପତ୍ନୀରୂପେ ଲାଭ କରିଥିଲେ ଏବଂ ସ୍ୱର୍ଗରୁ ରତ୍ନ ଓ କୁସୁମ ଲାଭ କରିଥିଲେ । ଏଥିଲାଗି ସେ ଦିବୋଦାସ ନାମରେ ଖ୍ୟାତ । ଏ ବହୁକାଳ ପର୍ଯ୍ୟନ୍ତ କାଶୀରେ ରାଜପଣ କରିଥିଲେ ।

(୩) ଏହାଙ୍କର ପ୍ରତର୍ଦ୍ଦନ ନାମକ ପୁତ୍ର ଥିଲେ (ଗାଲବ ଦେଖ) । ଏହାଙ୍କ ପିତା ସୁଦେବ (ମହାଭାରତ-ଅନୁଶାସନ), ଆୟୁବଂଶୀୟ ସୁହୋତ୍ରପୁତ୍ର କାଶ ପ୍ରଥମ ରାଜା । ତାହାଙ୍କ ପୁତ୍ର କାଶୀରାଜ ବା କାଶ୍ୟଙ୍କ ନାମାନୁସାରେ ରାଜ୍ୟର ନାମ ହୋଇଥିଲା କାଶୀ । ଏ ବଂଶରେ ହର୍ଯ୍ୟଶ୍ୱ ନାମକ ଏକ ରାଜା ଜନ୍ମିଥିଲେ । ଯଦୁବଂଶୀୟ ହୈହୟ ପୁତ୍ରମାନଙ୍କ ଦ୍ୱାରା ଏ ନିହତ ହେଲେ । ହର୍ଯ୍ୟଶ୍ୱଙ୍କ ପରେ ସୁଦେବ କାଶୀର ରାଜା ହେଲେ । ସେ ହୈହୟ ପୁତ୍ରମାନଙ୍କୁ

ବଧ କଲେ । ସୁଦେବଙ୍କ ପୁତ୍ର ଦିବୋଦାସ କାଶୀର ରାଜା ହୋଇ ଏହାର ଦୁର୍ଗ ପ୍ରାକାରକୁ ସୁରକ୍ଷିତ କରିଥିଲେ । ଏହି ସମୟରେ କାଶୀ ଗଙ୍ଗାର ଉତ୍ତରତୀର ଓ ଗୋମତୀର ଦକ୍ଷିଣତୀର ପର୍ଯ୍ୟନ୍ତ ବ୍ୟାପୀ ରହିଥିଲା । (ମହାଭାରତ-ଅନୁଶାସନ) । ହରିବଂଶ ଓ ମତ୍ସ୍ୟପୁରାଣ ମତେ ହୈହୟବଂଶୀୟ ଭଦ୍ରଶ୍ରେଣ୍ୟ କାଶୀ ଅଧିକାର କରିଥିଲେ । ଦିବୋଦାସ ଏହାଙ୍କୁ ବଧ କରି କାଶୀର ରାଜା ହେଲେ । ଭଦ୍ରଶ୍ରେଣ୍ୟଙ୍କ ପୁତ୍ର ଦୁର୍ଦ୍ଦମ ଦିବୋଦାସଙ୍କୁ ପରାସ୍ତ କରି କାଶୀ ଅଧିକାର କଲେ । ଦିବୋଦାସଙ୍କ ପୁତ୍ର ପ୍ରତର୍ଦ୍ଦନ ଦୁର୍ଦ୍ଦମଙ୍କୁ ପରାଜିତ କରି ପିତୃରାଜ୍ୟ କାଶୀ ଅଧିକାର କରିଥିଲେ ।

**ଦିଳୀପ**—ବିଖ୍ୟାତ ଇଂରେଜ୍ ଐତିହାସିକ କର୍ଣ୍ଣେଲଟଡ୍ ଯେଉଁ ବଂଶାବଳୀ ପତ୍ରର ଉଲ୍ଲେଖ କରିଅଛନ୍ତି ସେଥିରୁ ଜଣାଯାଏ ଯେ ଦିଳୀପ ଦୁଇ ଜଣ । ଏହି ବଂଶଲତା ଉଦୟପୁର ମହାରାଣୀଙ୍କଠାରୁ ସଂଗୃହୀତ ହୋଇଥିଲା । ସେଥିରୁ ଜଣାଯାଏ ଯେ ଦିଳୀପ ଭଗୀରଥଙ୍କ ପିତା, ଆଉ ଜଣେ ଦିଳୀପ ରଘୁଙ୍କ ପିତା । ଏ ଦ୍ୱିତୀୟ ଦିଳୀପଙ୍କ ପୁତ୍ର ରଘୁ । ତାହାଙ୍କ ପୁତ୍ର ଅଜ ଓ ଅଜଙ୍କ ପୁତ୍ର ଦଶରଥ । କାଳିଦାସ କୃତ ରଘୁବଂଶ କାବ୍ୟ ସହିତ ଏହି ତାଲିକାର ସମତା ଅଛି । ରଘୁବଂଶରେ ମହାକବି କାଳିଦାସ ଦିଳୀପଙ୍କ ବିସ୍ତୃତ ବିବରଣୀ ଲିପିବଦ୍ଧ କରିଛନ୍ତି । ଏହି ଦିଳୀପ ଥରେ ସ୍ୱର୍ଗରୁ ଅଯୋଧ୍ୟାକୁ ଫେରିବା ବାଟରେ ସ୍ୱର୍ଗୀୟ ଗାଭୀ ସୁରଭିଙ୍କୁ ଅତିକ୍ରମ କରି ଆସିଲେ । ସୁରଭି ମର୍ତ୍ତ୍ୟର ରାଜାଙ୍କ ଦ୍ୱାରା ପୂଜିତ ନ ହେବାରୁ ଆପଣାକୁ ଅପମାନିତ ମନେକରି ଦିଳୀପଙ୍କୁ ଶାପ ଦେଲେ ଯେ ସେବା ଦ୍ୱାରା ତାଙ୍କର କନ୍ୟା ନନ୍ଦିନୀଙ୍କୁ ପରିତୃପ୍ତ ନ କଲେ ରାଜାଙ୍କର କଦାପି ସନ୍ତାନ ହେବନାହିଁ । ଦିଳୀପ ବହୁଦିନ ପର୍ଯ୍ୟନ୍ତ ନିଃସନ୍ତାନ ହେବା ପରେ ଅତି ବିଷଣ୍ଣ ଭାବରେ କୁଳଗୁରୁ ବଶିଷ୍ଠଙ୍କ ପାଖକୁ ସସ୍ତ୍ରୀକ ଗମନ କଲେ । ରାଣୀ ସୁଦକ୍ଷିଣା ଓ ରାଜା ଦିଳୀପ ବଶିଷ୍ଠଙ୍କ ଉପଦେଶ ଅନୁସାରେ ସୁରଭିଙ୍କ କନ୍ୟା ନନ୍ଦିନୀଙ୍କୁ ବହୁତ ସେବା କଲେ । ନନ୍ଦିନୀ ସେତେବେଳେ ବଶିଷ୍ଠଙ୍କ ଆଶ୍ରମରେ ଥିଲେ । ରାଜାରାଣୀଙ୍କ ସେବାରେ ନନ୍ଦିନୀ ସନ୍ତୁଷ୍ଟା ହୋଇ ତାଙ୍କୁ ପୁତ୍ରଲାଭ ବର ପ୍ରଦାନ କଲେ । କାଳକ୍ରମେ ସୁଦକ୍ଷିଣାଙ୍କ ଗର୍ଭରୁ ବଂଶ ପ୍ରବର୍ତ୍ତକ ମହାରାଜ ରଘୁ ଜନ୍ମ ହେଲେ । (ରଘୁବଂଶ)

(୨) ଚନ୍ଦ୍ରବଂଶୀ ରାଜା କୁରୁଙ୍କ ବଂଶଧର ଜଣେ ରାଜା ।

(ହିନ୍ଦୀ ଶବ୍ଦସାଗର)

**ଦୀର୍ଘତମା**—ଉତଥ୍ୟଙ୍କ ପୁତ୍ର । ଏ ଜନ୍ମାନ୍ଧ ଥିଲେ । (ମହାଭାରତ-ଆଦିପର୍ବ)

ଋଗ୍‌ବେଦର ପ୍ରଥମ ମଣ୍ଡଳରେ ଏ ଋଷିଙ୍କ ରଚିତ କେତେଗୁଡ଼ିଏ ସୂକ୍ତ ଅଛି । ମହାଭାରତରେ ଲେଖାଅଛି ଯେ, ଉତଥ୍ୟ ନାମରେ ଜଣେ ତେଜସ୍ୱୀ ମହର୍ଷି ଥିଲେ । ତାଙ୍କ ସ୍ତ୍ରୀ ମମତା ଗର୍ଭବତୀ ଥିବାବେଳେ ଉତଥ୍ୟଙ୍କ ସାନଭାଇ ବୃହସ୍ପତି ମମତାଙ୍କ ନିଷେଧ ସତ୍ତ୍ୱେ ତାଙ୍କ ସହବାସ କରିବାରୁ ଗର୍ଭସ୍ଥ ବାଳକ ଗର୍ଭରେ ଥାଇ ବୃହସ୍ପତିଙ୍କୁ ନିଷେଧ କଲେ ଓ ଗର୍ଭସ୍ଥ ଶିଶୁ ବୃହସ୍ପତିଙ୍କ ବୀର୍ଯ୍ୟକୁ ନିଜର ପାଦଦ୍ୱାରା ରୋକି ଦେଲେ । ଏଥିରେ ବୃହସ୍ପତି ଶିଶୁକୁ ଶାପ ଦେଲେ ଯେ ତୁ ଦୀର୍ଘତମା (ଅନ୍ଧ) ହୋଇ ଜନ୍ମିବୁ । ତଦନୁସାରେ ଏ ଶିଶୁ ଜନ୍ମାନ୍ଧ ହୋଇ ଜନ୍ମିଲେ ଓ ଏହାଙ୍କ ନାମ ଦୀର୍ଘତମା ହେଲା । ଦୀର୍ଘତମା ପ୍ରଦ୍ୱେଷୀ ନାମ୍ନୀ ବ୍ରାହ୍ମଣ କନ୍ୟାକୁ ବିବାହ କଲେ ଓ ତାଙ୍କ ଔରସରେ ଗୌତମ ଆଦି କେତେ ପୁତ୍ର ଜନ୍ମିଲେ, ପରେ ଦୀର୍ଘତମା କାମଧେନୁଙ୍କଠାରୁ ଗୋ-ଧର୍ମ ଶିକ୍ଷା କରି ଶ୍ରଦ୍ଧାପୂର୍ବକ ତାଙ୍କ ସଙ୍ଗେ ମୈଥୁନ ଆଦିରେ ପ୍ରବୃତ୍ତ ହେବାରୁ ପ୍ରଦ୍ୱେଷୀ ତାଙ୍କ ଉପରେ କ୍ରୁଦ୍ଧା ହୋଇ ତାଙ୍କୁ ପୋଷିବାକୁ ମନା କଲେ । ଦୀର୍ଘତମା ଏଥିରେ କ୍ରୁଦ୍ଧ ହୋଇ ଶାପ ଦେଲେ—'ଆଜିଠାରୁ ଆମ୍ଭେ ସମାଜରେ ଏହି ମର୍ଯ୍ୟାଦା ବାନ୍ଧିଲୁ ଯେ, ପ୍ରତ୍ୟେକ ସ୍ତ୍ରୀ ଏକମାତ୍ର ପତି ସଙ୍ଗେ ଅନୁରକ୍ତ ହେବ ଓ ପତି ଜୀଇ ଥାଉଁ ଥାଉଁ ବା ମୃତ ହେଲେ ମଧ୍ୟ ଅନ୍ୟ ପତି ଗ୍ରହଣ କଲେ ପତିତା ହେବ ।' ପ୍ରଦ୍ୱେଷୀ କ୍ରୁଦ୍ଧା ହୋଇ ତାଙ୍କୁ ଗଙ୍ଗାରେ ପକାଇଦେଲେ । ସେଠାରୁ ସେହି ସମୟରେ ଗାଧୋଇବାକୁ ଆସିଥିବା ବଳିରାଜା ତାଙ୍କୁ ନେଇ ନିଜ ଘରେ ରଖିଲେ ଓ ରାଜାଙ୍କ ପ୍ରାର୍ଥନା ଅନୁସାରେ ସେ ରାଣୀ ସୁଦେଷ୍ଣାଙ୍କ ଗର୍ଭରେ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁମ୍ହ ନାମକ ଅତ୍ୟନ୍ତ ତେଜସ୍ୱୀ ପୁତ୍ର ଜନ୍ମାଇଲେ ଓ ଏହାଙ୍କ ଆଶୀର୍ବାଦରେ ଏହି ପୁତ୍ର-ମାନଙ୍କ ନାମରେ ଦେଶମାନଙ୍କ ନାମ ହେଲା ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଦୁଃଶଳା**—ଅନ୍ଧରାଜ ଧୃତରାଷ୍ଟ୍ରଙ୍କର ଏକମାତ୍ର କନ୍ୟା । ଦୁର୍ଯ୍ୟୋଧନଙ୍କ କନିଷ୍ଠା ଭଗିନୀ । ସିନ୍ଧୁରାଜ ଜୟଦ୍ରଥ ଏହାଙ୍କର ସ୍ୱାମୀ । ଏହାଙ୍କ ପୁଅର ନାମ ସୁରଥ । କୁରୁକ୍ଷେତ୍ର ଯୁଦ୍ଧରେ ଜୟଦ୍ରଥ ଅର୍ଜୁନଙ୍କ ଦ୍ୱାରା ନିହତ ହେଲେ । ସେତେବେଳେ ସୁରଥ ଅପ୍ରାପ୍ତ ବୟସ୍କ ଥିଲେ । ଦୁଃଶଳା ନାବାଳକ ପୁତ୍ରର ଅଭିଭାବିକା ରୂପେ ସିନ୍ଧୁ ରାଜ୍ୟ ଶାସନ କରିଥିଲେ । ଯୁଧିଷ୍ଠିରଙ୍କ ଅଶ୍ୱମେଧଯଜ୍ଞ ସମୟରେ ଅର୍ଜୁନ ଯଜ୍ଞାଶ୍ୱ ଧରି ସିନ୍ଧୁଦେଶରେ ପହଞ୍ଚିଲେ । ପିତୃହନ୍ତାର ଆଗମନରେ ସୁରଥ ଭୟ ଅଭିଭୂତ ହୋଇ ପ୍ରାଣ ବିସର୍ଜନ କଲେ । ଅର୍ଜୁନ ଏହା ଜାଣି ସୁରଥଙ୍କ ନାବାଳକ ପୁତ୍ରକୁ ସିନ୍ଧୁରାଜ୍ୟରେ ଅଭିଷିକ୍ତ କଲେ (ମହାଭାରତ) ।

**ଦୁଃଶାସନ**—ଧୃତରାଷ୍ଟ୍ରଙ୍କ ପୁତ୍ର । ଦୁର୍ଯୋଧନଙ୍କ କନିଷ୍ଠ ଭ୍ରାତା । ଦୁର୍ଯୋଧନ ସର୍ବଦା ଏହାର ପରାମର୍ଶକ୍ରମେ କାର୍ଯ୍ୟ କରୁଥିଲେ । ଏ କୁରୁକ୍ଷେତ୍ର ଯୁଦ୍ଧର ମୂଳ କାରଣ । ଦ୍ୟୂତ କ୍ରୀଡାରେ ପାଣ୍ଡବମାନେ ପରାଜିତ ହେବା ପରେ ଦୁଃଶାସନ ପାଣ୍ଡବ ପାଟରାଣୀ ଦ୍ରୌପଦୀଙ୍କ କେଶାକର୍ଷଣ କରି ସଭା ମଧ୍ୟକୁ ଆଣି ବିବସ୍ତ୍ର କରିଥିଲେ । ମାତ୍ର ଭଗବାନ ଶ୍ରୀକୃଷ୍ଣଙ୍କ ସାହାଯ୍ୟବଳରେ ଦ୍ରୌପଦୀଙ୍କ ମାନ ରକ୍ଷା ହେଲା । ଦୁଃଶାସନ ଯେତେ ଚେଷ୍ଟା କଲେ ମଧ୍ୟ ଦ୍ରୌପଦୀଙ୍କୁ ବିବସ୍ତ୍ରା କରି ପାରିଲେନାହିଁ । ଏହି ଅପମାନର ପ୍ରତିଶୋଧ ନେବାପାଇଁ ଭୀମ ବଦ୍ଧ ପରିକର ହେଲେ ଏବଂ କୃଷ୍ଣାଙ୍କ ବେଣୀ ମୁକ୍ତ ରହିଲା । କୁରୁକ୍ଷେତ୍ର ଯୁଦ୍ଧରେ ଭୀମ ଦୁଃଶାସନର ବକ୍ଷ ବିଦାରି ସେହି ରକ୍ତରେ ଦ୍ରୌପଦୀଙ୍କ ବେଣୀ ବନ୍ଧନ କରି ପ୍ରତିଜ୍ଞା ପୂରଣ କରିଥିଲେ । (ମହାଭାରତ)

**ଦୁନ୍ଦୁଭି**—ମହିଷରୂପୀ ଦାନବ । ବାଳି ଏ ରାକ୍ଷସକୁ ବଧ କରି ଏହାର ଦେହ ଋଷ୍ୟମୂକ ପର୍ବତ ଉପରେ ପକାଇ ଦେଇଥିଲେ । ସେହିଦିନଠାରୁ ମତଙ୍ଗ ମହର୍ଷିଙ୍କ ଶାପଯୋଗେ ବାଳି ଋଷ୍ୟମୂକ ପର୍ବତକୁ ଯାଉନଥିଲେ । ରାମଚନ୍ଦ୍ର ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ଦୁନ୍ଦୁଭିର ଅସ୍ଥି କଙ୍କାଳ ଗୋଡ଼ରେ ଉଠାଇ ଫିଙ୍ଗି ଦେଇଥିଲେ । (ରାମାୟଣ କିଷ୍କିନ୍ଧ୍ୟାକାଣ୍ଡ)

**ଦୁର୍ଗା**—ଆଦ୍ୟା ଶକ୍ତି । ଦୁର୍ଗ ନାମକ ଅସୁରକୁ ବିନାଶ କରି ଆଦ୍ୟା, ଦୁର୍ଗା ନାମରେ ବିଖ୍ୟାତ ହୋଇଥିଲେ । ପ୍ରମାଣ କାଶୀ ଖଣ୍ଡେ, ଯଥା—"ଆଦ୍ୟ ପ୍ରଭୃତି ମେ ନାମ ଦୁର୍ଗେତି ଖ୍ୟାତିମେଷ୍ୟତି । ଦୁର୍ଗ ଦୈତ୍ୟସ୍ୟ ସମରେ ପାତନାଦିତି ।" ମହିଷାସୁର ଦେବତାମାନଙ୍କୁ ସ୍ୱର୍ଗରୁ ବିତାଡ଼ିତ କରି ସ୍ୱର୍ଗରାଜ୍ୟ ଅଧିକାର କରିଥିଲା । ଦେବତାମାନେ ଦୁଃଖିତ ହୋଇ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ବ୍ରହ୍ମା ଦେବତାମାନଙ୍କ ସହିତ ମହାଦେବଙ୍କ ନିକଟକୁ ଗଲେ । ଶିବଙ୍କ ନିକଟରେ ଦେବତାଙ୍କ ଦୁଃଖ ନିବେଦନ କରନ୍ତେ ସେ କ୍ରୁଦ୍ଧ ହୋଇଉଠିଲେ । ତାଙ୍କ ବଦନ ମଣ୍ଡଳରୁ ଏକ ଅପୂର୍ବ ତେଜଃ ନିର୍ଗତ ହେଲା । ବ୍ରହ୍ମା ଓ ଅନ୍ୟାନ୍ୟ ଦେବତାଙ୍କ ମୁଖରୁ ମଧ୍ୟ ଏକ ତେଜଃ ନିର୍ଗତ ହେଲା । ସମବେତ ତେଜୋରାଶି ଏକ ରମଣୀ ମୂର୍ତ୍ତି ପରିଗ୍ରହ କଲା । ଦେବତାମାନେ ସ୍ୱ ସ୍ୱ ଆୟୁଧ ଏହି ରମଣୀଙ୍କୁ ପ୍ରଦାନ କଲେ । ଏହି ଦେବୀ ମହିଷାସୁରକୁ ତିନି ଥର ବଧ କରିଥିଲେ । ପ୍ରଥମବାର ଉଗ୍ରଚଣ୍ଡୀରୂପେ, ଦ୍ୱିତୀୟବାର ଭଦ୍ରକାଳୀରୂପେ ଓ ତୃତୀୟବାର ଦୁର୍ଗାରୂପେ । (ଉଗ୍ରଚଣ୍ଡୀ ଦେଖ) ମହିଷାସୁର ଭଦ୍ରକାଳୀଙ୍କ ଷୋଡ଼ଶ ଭୁଜା ମୂର୍ତ୍ତି ରାତ୍ରିରେ ସ୍ୱପ୍ନରେ ଦେଖି ତା ଆରଦିନ ତାଙ୍କୁ ଆରାଧନା କରିଥିଲା । ଦେବୀ ମହିଷାସୁର ନିକଟରେ ଉପସ୍ଥିତ ହୁଅନ୍ତେ ଅସୁର କହିଲା—

'ଆପଣ ମୋତେ ବିନାଶ କରନ୍ତୁ, ଏଥିଲାଗି ମୋର ଦୁଃଖ ନାହିଁ । ମାତ୍ର ଆପଣଙ୍କ ସହିତ ମୁଁ ଯେପରି ପୂଜିତ ହେବି ତାହା ଆପଣ ବିଧାନ କରନ୍ତୁ ।' ଦେବୀ କହିଲେ—'ଉଗ୍ରଚଣ୍ଡା, ଭଦ୍ରକାଳୀ ଓ ଦୁର୍ଗା ଏହି ତିନି ମୂର୍ତ୍ତିରେ ତୁମେ ସର୍ବଦା ମୋର ପଦଲଗ୍ନ ହୋଇରହିବ ଏବଂ ସମସ୍ତଙ୍କ ଦ୍ୱାରା ପୂଜିତ ହେବ ।

(ଦେବୀ ଭାଗବତ, ମାର୍କେଣ୍ଡେୟଚଣ୍ଡୀ, କାଳିକାପୁରାଣ)

**ଦୁର୍ବାସା**—ଅତ୍ରି ମୁନିଙ୍କ ଔରସରେ ସତୀ ଅନସୂୟାଙ୍କ ଗର୍ଭରୁ ମହାଦେବଙ୍କ ଅଂଶୀଭୂତ ହୋଇ ଦୂର୍ବାସା ଜନ୍ମଲାଭ କରିଥିଲେ । (ଦତ୍ତାତ୍ରେୟ ଦେଖ) । ଦୂର୍ବାସା ଅତି କୋପନ ସ୍ୱଭାବ ଋଷି । ଔର୍ବ ମୁନିକୁମାରୀ କନ୍ଦଳୀ ଏହାଙ୍କର ପତ୍ନୀ ଥିଲେ । ଦୂର୍ବାସାଙ୍କ ଅଭିଶାପରେ ଦେବରାଜ ଇନ୍ଦ୍ର ଲକ୍ଷ୍ମୀଭ୍ରଷ୍ଟ ହୋଇଥିଲେ । ପୁଣି ଶକୁନ୍ତଳା ଏହାଙ୍କ ଅଭିସମ୍ପାତ ଯୋଗେ ଦୁଷ୍ମନ୍ତଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ଅଶେଷ ଯାତନା ଭୋଗିଥିଲେ । ଥରେ ପାୟସ ଭୋଜନ କରିବା ପାଇଁ ଦୂର୍ବାସା ଶ୍ରୀକୃଷ୍ଣଙ୍କୁ କହିବାରୁ ଶ୍ରୀକୃଷ୍ଣ ତାଙ୍କୁ ଉତ୍ତମ ପାୟସ ଦେଲେ । ମାତ୍ର ଦୂର୍ବାସା ତାହା ଖାଇବେ କଅଣ ଓଲଟି ସେହି ତପ୍ତ ପାୟସ ଶ୍ରୀକୃଷ୍ଣଙ୍କ ସର୍ବାଙ୍ଗରେ ଲେପନ କରିବାକୁ ଲାଗିଲେ । ବ୍ରାହ୍ମଣ ପ୍ରତି ଭକ୍ତି ପ୍ରଦର୍ଶନ କରି ଶ୍ରୀକୃଷ୍ଣ ପଦତଳେ ପାୟସ ଲେପନ କରିବା ନିମିତ୍ତ ଅନୁମତି ଦେଲେ ନାହିଁ । ଦୂର୍ବାସା କହିଲେ, 'ତୁମେ ପାଦରେ ପାୟସ ଲେପନ କରିବା ନିମିତ୍ତ ଅନୁମତି ନ ଦେବାରୁ ପାଦଦେଶ ବ୍ୟତୀତ ଶରୀରର ଅନ୍ୟାନ୍ୟ ଅଙ୍ଗ ସବୁ ଅଭେଦ୍ୟ ହେବ ।' ଏହି ହେତୁରୁ ମୃତ୍ୟୁ ସମୟରେ ଶ୍ରୀକୃଷ୍ଣ ବ୍ୟାଧଶବରର ବାଣରେ ପାଦବିଦ୍ଧ ହୋଇଥିଲେ । ଦୂର୍ବାସାଙ୍କ ଶାପରୁ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଯଦୁବଂଶନାଶକ ମୂଷଳ ପ୍ରସବ କରିଥିଲେ । ଏହି ଦୂର୍ବାସା କୁନ୍ତୀଭୋଜ ନନ୍ଦିନୀ କୁନ୍ତୀଙ୍କ ପରିଚର୍ଯ୍ୟାରେ ତୃପ୍ତ ହୋଇ ତାହାଙ୍କୁ ଯେଉଁ ମନ୍ତ୍ର ଶିକ୍ଷା ଦେଇଥିଲେ ସେହି ପ୍ରଭାବରେ କର୍ଣ୍ଣ ଓ ପାଣ୍ଡବମାନେ ଜନ୍ମଲାଭ କରିଥିଲେ ।

(ମହାଭାରତ, ବ୍ରହ୍ମବୈବର୍ତ୍ତ, ଶ୍ରୀମଦ୍‌ଭାଗବତ)

**ଦୁର୍ଯ୍ୟୋଧନ**—ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠ ପୁତ୍ର । ମହାଭାରତ ଯୁଦ୍ଧରେ ଏ କୌରବମାନଙ୍କର ନେତା ଥିଲେ । ଦୁର୍ଯ୍ୟୋଧନ ଭୀମଙ୍କ ସମବୟସ୍କ । ଏ ସର୍ବଦା ଭୀମର ମହାବଳ ଓ ପରାକ୍ରମ ଦେଖି ଈର୍ଷ୍ୟାନ୍ୱିତ ହେଉଥିଲେ । ବାଲ୍ୟକାଳରେ ଖେଳ କୌତୁକ ବେଳେ ଏ ଭୀମଙ୍କୁ ବିଷପାନ କରାଇ ନଦୀରେ ନିକ୍ଷେପ କରି ଦେଇଥିଲେ । ଭୀମ କିନ୍ତୁ ସର୍ପରାଜ ବାସୁକୀଙ୍କ ଦ୍ୱାରା ପାତାଳକୁ ନୀତ ହେଲେ ଏବଂ ବିଷ ଜ୍ୱାଳାରୁ ମୁକ୍ତିଲାଭ କଲେ । ଧୃତରାଷ୍ଟ୍ର ବୟୋଜ୍ୟେଷ୍ଠ ଭ୍ରାତୃଷ୍ପୁତ୍ର ଯୁଧିଷ୍ଠିରଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ ସୁଦ୍ଧା ଦୁର୍ଯ୍ୟୋଧନଙ୍କ ଆପତ୍ତି ହେତୁରୁ ତାହା ହୋଇ ପାରିଲା ନାହିଁ ।

ଦୁର୍ଯୋଧନଙ୍କ କୁପରାମର୍ଶରେ ଧୃତରାଷ୍ଟ୍ର କୁନ୍ତୀଙ୍କ ସହ ପାଣ୍ଡୁପୁତ୍ରମାନଙ୍କୁ ରାଜଧାନୀ ହସ୍ତିନାପୁରରୁ ଅପସୃତ କରି ଦେଇ ବାରଣାବତକୁ ପ୍ରେରଣ କଲେ । ଦୁର୍ଯୋଧନ ସେଠାରେ ପାଣ୍ଡବମାନଙ୍କୁ ଗୃହ ମଧ୍ୟରେ ବନ୍ଦୀ କରି ଦଗ୍ଧ କରିଦେବା ପାଇଁ ଚେଷ୍ଟା କଲେ । କିନ୍ତୁ ସେଥିରେ ସଫଳକାମ ହୋଇ ପାରିଲେ ନାହିଁ । ପାଣ୍ଡବମାନେ କୌଶଳ କ୍ରମେ ରାତିରେ ବାରଣା-ବତରୁ ପଳାଇଯାଇ ଆତ୍ମରକ୍ଷା କଲେ । ସେମାନେ ପଞ୍ଚାଳ ରାଜ୍ୟରେ ପହଞ୍ଚିଲେ । ସେତେବେଳେ ଦ୍ରୁପଦ ପଞ୍ଚାଳର ରାଜାଥିଲେ । ମହାଭାରତ ସମୟରେ ପଞ୍ଚାଳ ଦୁଇ ଭାଗରେ ବିଭକ୍ତ ହୋଇଥିଲା—(୧) ଉତ୍ତର ପଞ୍ଚାଳ, (୨) ଦକ୍ଷିଣ ପଞ୍ଚାଳ । ବର୍ତ୍ତମାନର ରୋହିଲଖଣ୍ଡ ଧେ କାଳର ଉତ୍ତର ପଞ୍ଚାଳ । ଏହାର ପ୍ରାଚୀନ ରାଜଧାନୀ ଅହିଚ୍ଛତ୍ରୀ । ସମତଳ ଗାଙ୍ଗେୟ ପ୍ରଦେଶ ବା ଗଙ୍ଗାର ଦୋଆବ ସେ ସମୟର ଦକ୍ଷିଣ ପଞ୍ଚାଳ । ଏହାର ପ୍ରାଚୀନ ରାଜଧାନୀ କାମ୍ପିଲ୍ୟ । ଦ୍ରୁପଦଙ୍କ ସହ କୌରବମାନଙ୍କର ଶତ୍ରୁତା ଥିଲା । ପାଣ୍ଡବମାନେ ଦ୍ରୁପଦଙ୍କ କନ୍ୟା ଦ୍ରୌପଦୀଙ୍କୁ ବିବାହ କରିବା ଯୋଗେ ସେ ଶତ୍ରୁତା ଆହୁରି ଘନୀଭୂତ ହେଲା । ଏଥିଲାଗି ଅନେକେ କୁରୁ ପାଣ୍ଡବ ଯୁଦ୍ଧକୁ କୁରୁ ପାଞ୍ଚାଳ ଯୁଦ୍ଧ ବୋଲି କହିଥାନ୍ତି । ଏଥିରେ ପାଣ୍ଡବମାନେ ଉପଲକ୍ଷଣ ମାତ୍ର । ଦ୍ରୌପଦୀଙ୍କ ବିବାହ ପାଇଁ ଏକ ସ୍ୱୟମ୍ବର ସଭା ଆହୂତ ହେଲା । ଯୁଧିଷ୍ଠିରାଦି ଛଦ୍ମ ବେଶରେ ସେଠାରେ ଉପସ୍ଥିତ ହୋଇଥିଲେ । କୌରବ-ମାନେ ଲକ୍ଷ୍ୟ ଭେଦରେ ପରାଙ୍ମୁଖ ହେବାରୁ ବ୍ରାହ୍ମଣ ବେଶଧାରୀ ଅର୍ଜୁନ ଏହି ଲକ୍ଷ୍ୟ ଭେଦ କରି ଦ୍ରୌପଦୀଙ୍କୁ ଲାଭ କଲେ ।

ଦ୍ରୁପଦ ଏକ ପରାକ୍ରାନ୍ତ ରାଜା । ପୁଣି ପାଣ୍ଡବମାନେ ତାଙ୍କର ଜାମାତା । ପଳାୟିତ ପାଣ୍ଡବମାନେ ଜଣେ ବଳିଷ୍ଠ ରାଜାଙ୍କର ସହାୟତା ଲାଭ କରି ଧୃତରାଷ୍ଟ୍ରଙ୍କ ନିକଟକୁ ଅର୍ଦ୍ଧରାଜ୍ୟ ପ୍ରାପ୍ତି ପାଇଁ ଏକ ମଧ୍ୟସ୍ଥ ପ୍ରେରଣ କଲେ । ବୃଦ୍ଧ ରାଜା ଧୃତରାଷ୍ଟ୍ର ଏଥିରେ ରାଜି ହୋଇ ପାଣ୍ଡବମାନଙ୍କୁ ଡ଼କାଇ ଅର୍ଦ୍ଧେକ ରାଜ୍ୟ ଦେଲେ । ଇନ୍ଦ୍ରପ୍ରସ୍ଥ ଏହାର ରାଜଧାନୀ ହେଲା । ଏଠାରେ ପାଣ୍ଡବ-ମାନେ ରାଜତ୍ୱ କଲେ । କେତେକାଳ ପରେ ଶ୍ରୀକୃଷ୍ଣଙ୍କ ସହାୟତାରେ ଧର୍ମରାଜ ଯୁଧିଷ୍ଠିର ରାଜସୂୟ ଯଜ୍ଞ ଅନୁଷ୍ଠାନ କଲେ । ଶ୍ରୀକୃଷ୍ଣଙ୍କ କୃପାରୁ ଏ ଯଜ୍ଞ ଅତି ଆଡ଼ମ୍ବର ସହିତ ପରିସମାପ୍ତ ହେଲା । ଏଥିରେ ଦୁର୍ଯୋଧନ ଅାହୁରି ଈର୍ଷାନ୍ୱିତ ହେଲେ । ସେ ମାତୁଳ ଶକୁନିଙ୍କ ପରାମର୍ଶରେ ଯୁଧିଷ୍ଠିରଙ୍କୁ ଅକ୍ଷକ୍ରୀଡ଼ା ପାଇଁ ଆହ୍ୱାନ କଲେ । ଶକୁନି କୌଶଳକ୍ରମେ ଯୁଧିଷ୍ଠିରଙ୍କୁ ପରାସ୍ତ କରିବାରୁ ପାଣ୍ଡବମାନେ ୧୨ ବର୍ଷ ବନବାସ ଓ. ବର୍ଷେ ଅଜ୍ଞାତବାସ

କରିଥିଲେ । ପୁଣି ଯୁଧିଷ୍ଠିର ଦ୍ୟୁତ କ୍ରୀଡାରେ ହାରିଯିବାରୁ ଦୁର୍ଯ୍ୟୋଧନ, ଦୁଃଶାସନ ଦ୍ୱାରା କେଶାକର୍ଷଣପୂର୍ବକ ପଣରୂପେ ଥିବା ପାଣ୍ଡବ ପାଟରାଣୀ ଦ୍ରୌପଦୀଙ୍କୁ ରାଜ ସଭାକୁ ଅଣାଇ ବିବସ୍ତ୍ର କରିବା ସକାଶେ ଚେଷ୍ଟା କଲେ । କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କ ସହାୟତାରୁ କୃଷ୍ଣା ଏହି ଅପମାନରୁ ରକ୍ଷା ପାଇଥିଲେ । ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ କୋଡ଼ରେ ବସାଇବା ପାଇଁ ମଧ୍ୟ ଆହ୍ୱାନ କଲେ । ଧର୍ମପତ୍ନୀ ଉପରେ ଏହି ଅକଥନୀୟ ଅତ୍ୟାଚାର ହେବା ଦେଖି ଭୀମ ଆଉ ସହି ପାରିଲେ ନାହିଁ । ସେ ଦୁର୍ଯ୍ୟୋଧନର ଉରୁଭଙ୍ଗ କରିବାକୁ ଓ ଦୁଃଶାସନଙ୍କ ରକ୍ତରେ କୃଷ୍ଣାଙ୍କ ବେଣୀବନ୍ଧନ କରିବା ପାଇଁ ପ୍ରତିଜ୍ଞା କଲେ ।

ଅନନ୍ତର ପାଣ୍ଡବମାନେ ସତ୍ୟରକ୍ଷା କରିବା ପାଇଁ ବନଗମନ କଲେ । ଏଥିରେ ଦୁର୍ଯ୍ୟୋଧନ ପରମ ଆନନ୍ଦିତ ହେଲେ । ସେ ନିଜର ଐଶ୍ୱର୍ଯ୍ୟ ଦେଖାଇ ହେବା ବାହାନାରେ ଘୋଷଯାତ୍ରା କଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ଚିତ୍ରସେନ ଗନ୍ଧର୍ବଙ୍କ ଦ୍ୱାରା ପରାସ୍ତ ହୋଇ ବନ୍ଦୀ ହେଲେ, ରାଜଦାରାମାନେ ଘୋର ଅପମାନ ଭୋଗିଲେ । ଯୁଧିଷ୍ଠିର ଏ ସମ୍ବାଦ ପାଇ ଭୀମ ଓ ଅର୍ଜୁନଙ୍କୁ କୌରବମାନଙ୍କୁ ମୁକ୍ତ କରି ଆଣିବା ପାଇଁ ପଠାଇଲେ । ଚିତ୍ରସେନ ଅର୍ଜୁନଙ୍କ ଦ୍ୱାରା ପରାସ୍ତ ହେଲେ ଏବଂ କୌରବ ଓ ସେମାନଙ୍କ ପରିବାରକୁ ଭୀମାର୍ଜୁନଙ୍କ ହସ୍ତରେ ସମର୍ପଣ କଲେ । ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ଡାକି ନାନାପ୍ରକାର ଉପଦେଶ ଦେଇ ବିଦାୟ କରିଦେଲେ । ଏଥିରେ ଦୁର୍ଯ୍ୟୋଧନ ମର୍ମପୀଡିତ ହୋଇଥିଲେ ।

ଏହା ପରେ ପାଣ୍ଡବମାନେ ବର୍ଷେକାଳ ବିରାଟରାଜ୍ୟରେ ଅଜ୍ଞାତବାସ କଲେ । ଅଜ୍ଞାତବାସ ସମୟରେ ବିରାଟଙ୍କ ଦୁର୍ଦାନ୍ତ ଶାଳକ କୀଚକ ଭୀମସେନଙ୍କ ଦ୍ୱାରା ନିହତ ହୋଇଥିଲେ । କୀଚକ ଭୟରେ କୌଣସି ରାଜା ଏପରିକି କୌରବମାନେ ମଧ୍ୟ ବିରାଟ ଆକ୍ରମଣ କରୁ ନ ଥିଲେ । ତେଣୁ କୀଚକ ମରଣ ପରେ ବିରାଟଙ୍କ ଗୋଧନ ଆକ୍ରମଣ କରିବା ପାଇଁ ଦୁର୍ଯ୍ୟୋଧନ ସସୈନ୍ୟେ ଅଭିଯାନ ଚଳାଇ ଅର୍ଜୁନଙ୍କ ଦ୍ୱାରା ପରାସ୍ତ ହେଲେ । ଏହା ପରେ ବିରାଟ ପାଣ୍ଡବମାନଙ୍କୁ ଚିହ୍ନି ପାରି ଗୌରବ ସହକାରେ ଗ୍ରହଣ କଲେ । ଅଭିମନ୍ୟୁଙ୍କ ସହିତ ବିରାଟ ରାଜକୁମାରୀ ଉତ୍ତରାଙ୍କର ବିବାହ ସମ୍ପାଦିତ ହେଲା । ବନବାସ ଓ ଅଜ୍ଞାତବାସ ପରେ ଶ୍ରୀକୃଷ୍ଣଙ୍କ ମଧ୍ୟବର୍ତ୍ତିତାରେ ପାଣ୍ଡବମାନେ ପାଞ୍ଚଖଣ୍ଡ ମାତ୍ର ଗ୍ରାମ ଦୁର୍ଯ୍ୟୋଧନଙ୍କୁ ମାଗିଲେ । ମାତ୍ର କ୍ରୂର ଦୁର୍ଯ୍ୟୋଧନ ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମାଣ ଭୂମି ଦେବେ ନାହିଁ ବୋଲି କହିଲେ । ମହାଭାରତ ଯୁଦ୍ଧର ସୂତ୍ରପାତ ହେଲା । ପାଣ୍ଡବ ଓ କୌରବମାନେ ଉଭୟେ ଶ୍ରୀକୃଷ୍ଣଙ୍କ

ସହାୟତା ଭିକ୍ଷା କଲେ । ଶ୍ରୀକୃଷ୍ଣ ସ୍ୱୟଂ ଅର୍ଜୁନଙ୍କ ପ୍ରାର୍ଥନାରେ ପାଣ୍ଡବପକ୍ଷ ଅବଲମ୍ବନ କଲେ ଏବଂ କୌରବମାନଙ୍କୁ ନାରାୟଣୀ ସେନା ପ୍ରଦାନ କଲେ । ପ୍ରଥମ ଦଶ ଦିନ ଯୁଦ୍ଧ ପରେ ପିତାମହ ଭୀଷ୍ମଙ୍କର ପତନ ହେଲା । ପାଞ୍ଚ ଦିନ ଯୁଦ୍ଧ ପରେ ଦ୍ରୋଣ ଦେହତ୍ୟାଗ କଲେ । ଅଢେଇ ଦିନ ଯୁଦ୍ଧ ପରେ କର୍ଣ୍ଣ ଏବଂ ଓଳିଏ ମାତ୍ର ଯୁଦ୍ଧ କରି ଶଲ୍ୟ ପ୍ରାଣ ହରାଇଲେ । ଏହାପରେ କୌରବ ପକ୍ଷ ପରାଜିତ ହେଲେ । ଦୁର୍ଯୋଧନ ପ୍ରାଣ ଭୟରେ ପଳାୟନ କରି ବ୍ୟାସ ସରୋବରରେ ଲୁଚି ରହିଲେ । ମାତ୍ର ଭୀମସେନଙ୍କ ପରୁଷ ବାକ୍ୟ ସହି ନପାରି ଯୁଦ୍ଧ କରିବାପାଇଁ ସେଠାରୁ ବାହାରି ଆସିଲେ । ଭୀମ ଧୃତ ପ୍ରତିଜ୍ଞା ସ୍ମରଣ କରି ଗଦା ଯୁଦ୍ଧରେ ତାଙ୍କର ଊରୁ ଭାଙ୍ଗି ଦେଲେ । ଦୁର୍ଯୋଧନ ମୃତପ୍ରାୟ ହୋଇ ସେଠାରେ ପଡ଼ିରହିଲେ । ପାଣ୍ଡବମାନେ ତାଙ୍କୁ ଛାଡ଼ି ଶିବିରକୁ ଫେରିଲେ । ଦ୍ରୋଣପୁତ୍ର ଅଶ୍ୱତ୍ଥାମା ସେ ସମୟରେ ଦୁର୍ଯୋଧନଙ୍କ ନିକଟକୁ ଯାଇ ସାକ୍ଷାତ କଲେ । ଦୁର୍ଯୋଧନଙ୍କ ଅନୁରୋଧକ୍ରମେ ଅଶ୍ୱତ୍ଥାମା ପାଣ୍ଡବ ଶିବିରରେ ପଶି ଦ୍ରୌପଦୀଙ୍କ ପାଞ୍ଚ ପୁତ୍ରଙ୍କୁ ବଧ କରି ତାଙ୍କର ମୁଣ୍ଡ ଛେଦି ଆସିଲେ । ପୁଣି ଦ୍ରୌପଦୀଙ୍କ ପଞ୍ଚପୁତ୍ର ବିନାଶ ହେବା ସମ୍ବାଦ ତାଙ୍କୁ ଦେଲେ । ପାଣ୍ଡବବଂଶ ଲୋପ ହୋଇଛି ଜାଣି ଦୁର୍ଯୋଧନ ଆନନ୍ଦରେ ମହାନିଦ୍ରାରେ ଶୋଇପଡିଲେ । (ମହାଭାରତ)

**ଦୁର୍ହ୍ୟ**—ଶର୍ମିଷ୍ଠାଙ୍କ ଗର୍ଭଜାତ ଯଯାତିଙ୍କର ଏକ ପୁତ୍ର । ଯଯାତି ଦିଗ୍‌ବିଜୟ କରିବା ପରେ ପୁତ୍ରମାନଙ୍କ ମଧ୍ୟରେ ପୃଥିବୀକୁ ବାଣ୍ଟି ଦେଲେ । ପଶ୍ଚିମ ଦିଗର ଦେଶମାନ ଦୁର୍ହ୍ୟଙ୍କ ଭାଗରେ ପଡିଲା । ଯଯାତି ଆପଣାର ବାର୍ଦ୍ଧକ୍ୟକୁ ପୁତ୍ରମାନଙ୍କ ଯୌବନ ସଙ୍ଗେ ବଦଳ କରିବାକୁ କହିବାରୁ ଏ ମନାକଲେ । ଯଯାତି କ୍ରୁଦ୍ଧ ହୋଇ ଏହାଙ୍କୁ ଶାପ ଦେଲେ ତୋର କୌଣସି ପ୍ରିୟ ଅଭିଳାଷ ପୂର୍ଣ୍ଣ ହେବନାହିଁ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଦୁଷ୍ମନ୍ତ**—ପୌରବବଂଶୀୟ ବିଖ୍ୟାତ ରାଜା । ମହାକବି କାଳିଦାସ ରଚିତ ଅଭିଜ୍ଞାନଶାକୁନ୍ତଳ ନାମକ ନାଟକର ନାୟକ । ଭରତଙ୍କ ପିତା । ଶକୁନ୍ତଳା ଏହାଙ୍କର ଧର୍ମପତ୍ନୀ । ଏହାଙ୍କ ଗର୍ଭରୁ ଦୁଷ୍ମନ୍ତଙ୍କ ଔରସରେ ଏକ ପୁତ୍ର ଜନ୍ମିଥିଲେ । ଏହାଙ୍କର ନାମ ଥିଲା ସର୍ବଦମନ । ପରେ ଏ ଭରତ ନାମ ଧାରଣ କରି ରାଜତ୍ୱ କଲେ । ଏହି ଭରତଙ୍କ ନାମାନୁସାରେ ଭାରତବର୍ଷ ହୋଇଛି ବୋଲି କେହି କେହି କହିଆନ୍ତି । ମହାଭାରତୋକ୍ତ ଦୁଷ୍ମନ୍ତ ଶକୁନ୍ତଳା ଉପାଖ୍ୟାନଟି ଅତି ମନୋହର ।

**ଦୂତୀ**—ଗୋପିକା ବିଶେଷ । ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ମଧ୍ୟରେ ସମ୍ବାଦବାହିକା କାର୍ଯ୍ୟ କରୁଥିବା ସଖୀ । ବିପ୍ର ପୀତାମ୍ବରଙ୍କ କୃତ ନୃସିଂହ ପୁରାଣ ମତେ ଖଣ୍ଡକ୍ଷୀର ଏହାଙ୍କର ପୁତ୍ର । ଏ ଜଣେ ବଶିଷ୍ଠ ସିଦ୍ଧ ଯୋଗୀ ଥିଲେ ।

**ଦୂଷଣ**—ଲଙ୍କେଶ୍ୱର ରାବଣଙ୍କର ସେନାପତି ବିଶେଷ । ଏହାର ଅପର ଭ୍ରାତାଙ୍କ ନାମ ଖର । ରାବଣଙ୍କ ରାଜ୍ୟ ଗୋଦାବରୀ ତୀର ଦଣ୍ଡକାରଣ୍ୟ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଖର ଓ ଦୂଷଣ ଚଉଦ ସହସ୍ର ସେନା ସହିତ ଏହି ରାଜ୍ୟର ପ୍ରାନ୍ତ ରକ୍ଷା କରୁଥିଲେ । ରାବଣର ଭଗିନୀ ସୂର୍ପଣଖା ଏହି ବନରେ ବିଚରଣ କରୁଥିଲା । ସୂର୍ପଣଖା ମଦନସୁନ୍ଦର ରାମଙ୍କୁ ପଞ୍ଚବଟୀ ବଣରେ ଦେଖି ତାଙ୍କର ସ୍ତ୍ରୀ ହେବା ଅଭିପ୍ରାୟରେ ଆଶ୍ରମ ନିକଟକୁ ଗଲା । ପରିଣାମରେ ଏହାର ନାସାକର୍ଣ୍ଣ ଲକ୍ଷ୍ମଣଙ୍କ ଦ୍ୱାରା ଛେଦିତ ହେବା ଯୋଗେ ଖର ଓ ଦୂଷଣ ରାମଙ୍କୁ ଆକ୍ରମଣ କରି ପରାସ୍ତ ଓ ନିହତ ହେଲେ । ଅକମ୍ପନ ନାମକ ଏକ ରାକ୍ଷସ ରାବଣକୁ ଏହି ଦୁଃସମ୍ବାଦ ଦେବାପାଇଁ ଲଙ୍କାକୁ ପଳାଇଗଲା (ରାମାୟଣ) ।

**ଦୃଷଦ୍‌ବତୀ**—ପ୍ରାଚୀନ ଭାରତର ନଦୀ ବିଶେଷ । ଦୃଷଦ୍‌ବତୀ ନଦୀର ନାମ ଋଗ୍‌ବେଦରେ ଅଛି । ସମ୍ଭବତଃ ଏ ନଦୀର ଆଧୁନିକ ନାମ ଘର୍ଘର ବା ରାକ୍ଷୀ; ଏହା ଥାନେଶ୍ୱରର ୧୩ ମାଇଲ ଦକ୍ଷିଣରେ ବହୁଅଛି । ମହାଭାରତରେ ଏ ନଦୀ କୁରୁକ୍ଷେତ୍ରର ଅନ୍ତର୍ଗତ ଥିବାର ବୋଲାଯାଇଅଛି । ମନୁ ସ୍ମୃତିରେ ଏହା ବ୍ରହ୍ମାବର୍ତ୍ତର ସୀମା ବୋଲି ଲେଖାଅଛି (ହିନ୍ଦୀ ଶବ୍ଦସାଗର) । ପଶ୍ଚିମରେ ସରସ୍ୱତୀ ଓ ପୂର୍ବରେ ଦୃଷଦ୍‌ବତୀ ନଦୀ ମଧ୍ୟସ୍ଥ ଅଞ୍ଚଳକୁ ଆର୍ଯ୍ୟାବର୍ତ୍ତ ବୋଲା ଯାଉଥିଲା । (ଭାଷାକୋଷ)

**ଦେବକ**—(୧) ଭୋଜବଂଶୀୟ ଆହୁକଙ୍କ ପୁତ୍ର । ଏହାର ଭ୍ରାତା ଉଗ୍ରସେନ ଏବଂ କନ୍ୟା ଦେବକୀ । ଦେବକ ଶ୍ରୀକୃଷ୍ଣଙ୍କ ମାତାମହ ।

(୨) ଯୁଧିଷ୍ଠିରଙ୍କ ଏକ ପୁତ୍ର । (ହିନ୍ଦୀ ଶବ୍ଦସାଗର)

**ଦେବକୀ**– ଏ ବସୁଦେବଙ୍କ ସ୍ତ୍ରୀ ଓ କଂସର ଭଗିନୀ ଥିଲେ । ଏହାଙ୍କ ଗର୍ଭଜାତ ଶିଶୁ ଦ୍ୱାରା ନିଜର ମୃତ୍ୟୁ ହେବ ବୋଲି କଂସ ନାରଦଙ୍କଠାରୁ ଅବଗତ ହୋଇ ଦେବକୀ ଓ ବସୁଦେବଙ୍କୁ କାରାଗାରରେ ବନ୍ଦୀ କରି ଦେବକୀ ଗର୍ଭଜାତ ସାତଗୋଟି ଶିଶୁଙ୍କୁ ହତ୍ୟା କଲା । ଅଷ୍ଟମ ଗର୍ଭରେ ଶ୍ରୀକୃଷ୍ଣ ଜାତ ହେଲେ ଓ ଯୋଗମାୟା ବଳରେ ବସୁଦେବ ସେହି ରାତ ମଧ୍ୟରେ ତାଙ୍କୁ ଗୋପପୁରକୁ ନେଇ ନନ୍ଦଙ୍କ ଭାର୍ଯ୍ୟା ଯଶୋଦାଙ୍କ କୋଳରେ ରଖି ଯଶୋଦାଙ୍କ ଗର୍ଭଜାତ

ବାଳିକାକୁ ଆଣି ଶ୍ରୀକୃଷ୍ଣଙ୍କ ଅଶୌଚ ଶଯ୍ୟାରେ ରଖିଲେ । ଉକ୍ତ ବାଳିକାକୁ କଂସ ଧରି କଚାଡ଼ିବା ବେଳେ ସେ (ଶିଶୁରୂପ ଧାରିଣୀ ଦୁର୍ଗା) କଂସ ହସ୍ତରୁ ଖସିଯାଇ ଶୂନ୍ୟରେ ମିଶିଗଲେ ଓ ଶ୍ରୀକୃଷ୍ଣ ଘୋଷପୁରରେ ବଢ଼ିଲେ ।

(ଭାଷାକୋଷ)

**ଦେବଗିରି**—(୧) ଏହା ଏକ ପ୍ରାଚୀନ ପର୍ବତ । କାର୍ତ୍ତିକେୟଙ୍କର ଏହି ପର୍ବତ ବାସଭୂମି ବୋଲି ସ୍କନ୍ଦ ପୁରାଣରେ ବର୍ଣ୍ଣିତ ହୋଇଅଛି । (୨) ଗୁଜୁରାଟର ରୈବତକ ପର୍ବତ । ଆଧୁନିକ ଗିର୍ଣ୍ଣାର ପାହାଡ଼ (ହିନ୍ଦୀ ଶବ୍ଦସାଗର) ।

**ଦେବଗୃହ**—ବାବା ବୈଦ୍ୟନାଥଙ୍କ ଧାମ ।

**ଦେବଦଳନ**—ଇନ୍ଦ୍ରଜିତଙ୍କ ରଥର ନାମ । ଇନ୍ଦ୍ରଜିତ ବଟ ପ୍ରଭାବରୁ ନିକୁମ୍ଭିଳା-ବଟ ତଳେ ବସି ତପସ୍ୟା କରିସାରିବା ପରେ ଯଜ୍ଞକୁଣ୍ଡରୁ ଏହି ରଥ ବାହାରିଥିଲା । ଏହି ରଥରେ ବସି ସେ ସମସ୍ତଙ୍କୁ ଜିଣି ପାରୁଥିଲା । ଏହି ରଥର ଅନ୍ୟ ନାମ ଦେବଦହନ (ରାମାୟଣ) ।

**ଦେବପ୍ରୟାଗ**—ଗୋଟିଏ ସ୍ଥାନ ସହର । ଏହା ଶ୍ରୀବଦରୀନାଥଙ୍କ ନିକଟରେ ବହୁଥିବା ଅଲକାନନ୍ଦା ଓ ଗଙ୍ଗୋତ୍ରୀରୁ ପ୍ରବାହିତା ଭାଗୀରଥୀଙ୍କ ସଙ୍ଗମ ସ୍ଥଳରେ ଅବସ୍ଥିତ । ଏହା ଏକ ହିନ୍ଦୁ ତୀର୍ଥ ।

(ମଦନମୋହନ, ତୀର୍ଥଦର୍ଶନ ୪ର୍ଥ ଖଣ୍ଡ)

**ଦେବଯାନୀ**—ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା । ମହାରାଜ ନହୁଷଙ୍କ ପୁତ୍ର ଯଯାତିଙ୍କ ପତ୍ନୀ । ଏ ବ୍ରାହ୍ମଣ କନ୍ୟା ହୋଇ କ୍ଷତ୍ରିୟଙ୍କୁ ପତିରୂପରେ ବରଣ କରିଥିଲେ । (କଚ ଦେଖ) । ଦୈତ୍ୟରାଜ ବୃଷପର୍ବାଙ୍କ ଦୁହିତା ଶର୍ମିଷ୍ଠାଙ୍କ ସହିତ ଦେବଯାନୀଙ୍କର ସୌହାର୍ଦ୍ଦ ଥିଲା । ଏକଦା ଉଭୟେ ସହଚରୀ ପରିବୃତ ହୋଇ ଜଳକ୍ରୀଡ଼ାରେ ରତ ଥିଲେ । ଏହି ସମୟରେ ଇନ୍ଦ୍ର ବାୟୁରୂପ ଧାରଣ କରି ସରୋବର ତଟସ୍ଥିତ ପରିଧେୟ ବସ୍ତ୍ରଗୁଡ଼ିକ ଏକାଠି କରିଦେଲେ । ଶର୍ମିଷ୍ଠା ଜଳ ମଧ୍ୟରୁ ବାହାରି ଆସି ଭ୍ରମବଶତଃ ଦେବଯାନୀଙ୍କ ବସ୍ତ୍ର ପିନ୍ଧି-ପକାଇଲେ । ଏହି ବସ୍ତ୍ର ପରିବର୍ତ୍ତନ ଯୋଗେ ଉଭୟଙ୍କ ମଧ୍ୟରେ ଘୋର କଳହର ସୂତ୍ରପାତ ହେଲା । ଶର୍ମିଷ୍ଠା କ୍ରୋଧରେ ଶୁକ୍ରାଚାର୍ଯ୍ୟଙ୍କୁ ଅସୁରମାନଙ୍କର ସ୍ତାବକ ବୋଲି ଗାଳିଦେଲେ ଏବଂ ଦେବଯାନୀଙ୍କୁ ଗୋଟିଏ ଶୁଷ୍କ କୂପରେ ପକାଇ ଦେଇ ଘରକୁ ଆସିଲେ । ଘଟଣାକ୍ରମେ ରାଜା ଯଯାତି କୂପ ନିକଟରେ

ଉପସ୍ଥିତ ହେଲେ । ସେ ଦେବଯାନୀଙ୍କ ଆର୍ତ୍ତନାଦ ଶୁଣିପାରି ସେଠାକୁ ଗଲେ ଏବଂ ତାଙ୍କୁ କୂପରୁ ଉଦ୍ଧାର କଲେ । ଦେବଯାନୀ ଯଯାତିଙ୍କୁ କୃତଜ୍ଞତା ଜ୍ଞାପନ କରିଥିଲେ । ରାଜା ଯଯାତି ତାଙ୍କୁ ସମୁଚିତ ସମ୍ଭାଷଣ କରି ଫେରିଗଲେ । ଦେବଯାନୀ ସେଠାରୁ ଆଉ ଗୃହକୁ ଗଲେନାହିଁ । ସେ ପୁଣି ଦୈତ୍ୟ ନଗରୀରେ ପଦାର୍ପଣ କରିବେନାହିଁ ବୋଲି ସଂକଳ୍ପ କଲେ । ଜଣେ ଦାସୀ ଦ୍ୱାରା ତାଙ୍କ ଦୁର୍ଦ୍ଦଶାର କଥା ଓ ସଂକଳ୍ପ କାହାଣୀ ପିତାଙ୍କ ନିକଟକୁ କହି ପଠାଇଲେ । ଶୁକ୍ରାଚାର୍ଯ୍ୟ କନ୍ୟା ସମୀପରେ ଉପସ୍ଥିତ ହୋଇ ଆମୂଳଚୂଳ ସମସ୍ତ ଘଟଣା ବୁଝିନେଲେ ଏବଂ ପ୍ରିୟତମା କନ୍ୟାର ଅପମାନରେ ଦୁଃଖିତ ହୋଇ ଦୈତ୍ୟନଗରୀ ତ୍ୟାଗ କରି ବାହାରି ଯିବାପାଇଁ ଦୈତ୍ୟରାଜ ବୃଷପର୍ବାଙ୍କୁ ଜଣାଇଲେ । ବୃଷପର୍ବା ମହାବିପଦ ଉପସ୍ଥିତ ହେଲା ଜାଣି ଗୁରୁଙ୍କୁ ଏ କାର୍ଯ୍ୟରୁ ବିରତ ହେବାପାଇଁ ଅନୁରୋଧ କଲେ । ଶୁକ୍ର କହିଲେ—'ତୁମେ ମୋ କନ୍ୟାର ସନ୍ତୋଷ ବିଧାନ କର । ଯଦି ସେ ଏଠାରେ ରହିବା ପାଇଁ ମଙ୍ଗି ଯାଏ, ତେବେ ମୋର ଆଉ କୌଣସି ଆପତ୍ତି ରହିବନାହିଁ ।' ବୃଷପର୍ବା ଦେବଯାନୀଙ୍କ ସମୀପକୁ ଯାଇ ସବୁକଥା ଜଣାଇଲେ । ଦେବଯାନୀ କହିଲେ—'ଯଦି ତୁମର ଦୁହିତା ସହସ୍ର ଦାସୀ ପରିବୃତା ହୋଇ ମୋର ଦାସୀରୂପେ ରହିବେ ଏବଂ ମୋର ସେବା କରିବାପାଇଁ ମଙ୍ଗିବେ ତେବେ ମୁଁ ମୋର ପ୍ରଭଙ୍କୁ ଫେରାଇ ନେବି ।' ଦୈତ୍ୟରାଜ ବୃଷପର୍ବା ଏଥିରେ ସମ୍ମତ ହେଲେ । ଦେବଯାନୀ ଘରକୁ ଆସିଲେ । ଏହାପରେ ଶର୍ମିଷ୍ଠା ତାଙ୍କର ଦାସୀ ହୋଇ ରହିଲେ । ଏକଦା ଦେବଯାନୀ, ଶର୍ମିଷ୍ଠା ଓ ତାଙ୍କ ସହସ୍ର ଦାସୀ ପରିବୃତା ହୋଇ ପୂର୍ବୋକ୍ତ ସନ୍ନିହିତ ବନରେ ବିଚରଣ କରୁଥିବା ବେଳେ ଯଯାତି ସେଠାକୁ ଆସିଲେ । ଦେବଯାନୀ, ତାହାଙ୍କୁ ପତିରୂପେ ବରଣ କଲେ । ଶୁକ୍ରାଚାର୍ଯ୍ୟ ଏହି ବିବାହରେ ସମ୍ମତ ହେଲେ । ଯଯାତି ନାନାପ୍ରକାର ଉପଢୌକନ ସହ ଶର୍ମିଷ୍ଠା ଓ ଦାସୀମାନଙ୍କୁ ଘେନି ଦେବଯାନୀଙ୍କ ସହିତ ନିଜ ନଗରକୁ ପ୍ରସ୍ଥାନ କଲେ । କାଳକ୍ରମେ ଯଯାତିଙ୍କ ଔରସରେ ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ନାମକ ଦୁଇପୁତ୍ର ଏବଂ ଦାସୀ ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟୁ, ଅନୁ ଓ ପୁରୁ ନାମକ ତିନିପୁତ୍ର ଜନ୍ମିଲେ । ଦେବଯାନୀ ଦେଖିଲେ ସ୍ୱାମୀ ଅଧର୍ମାଚାରୀ ହୋଇ ଦାସୀ ପ୍ରତି ଆସକ୍ତ ହୋଇଛନ୍ତି ଏବଂ ଦାସୀ ଗର୍ଭରେ ଅଧିକ ସନ୍ତାନ ଉତ୍ପାଦନ କରିଛନ୍ତି । ସ୍ୱାମୀଙ୍କର ଏ ବ୍ୟବହାରରେ ସେ ଅପମାନିତ ହୋଇ ପିତାଙ୍କୁ ସ୍ୱାମୀଙ୍କର ଅଧର୍ମାଚାର ବିଷୟ ଜଣାଇଲେ । ଶୁକ୍ରାଚାର୍ଯ୍ୟ କ୍ରୁଦ୍ଧ ହୋଇ ଶାପଦେଲେ—'ରାଜା, ତୁମେ ଧର୍ମଜ୍ଞ ହୋଇ ଯେଉଁ କାରଣରୁ ଅଧର୍ମାଚାର କଲ, ସେଥିଲାଗି ତୁମେ ଅକାଳରେ ବାର୍ଦ୍ଧକ୍ୟ ଅବସ୍ଥା

ପ୍ରାପ୍ତ ହେବ ।' ତଥାପି ଶୁକ୍ରାଚାର୍ଯ୍ୟଙ୍କୁ ବହୁ ଅନୁନୟ ବିନୟ କରି କ୍ଷମା ମାଗିଲେ । ଶୁକ୍ର ପ୍ରୀତିପୂର୍ବକ କହିଲେ—'ମୋର ଅଭିଶାପ ବ୍ୟର୍ଥ ହେବନାହିଁ । ତେବେ ତୁମେ ଯଦି ଅନ୍ୟ ଜଣକୁ ତୁମର ବାର୍ଦ୍ଧକ୍ୟ ଦେଇପାରିବ ଏବଂ ସେ ଆନନ୍ଦରେ ତାହା ଗ୍ରହଣ କରିବ, ତେବେ ତୁମେ ପୁଣି ଯୌବନ ଅବସ୍ଥା ଲାଭ କରିବ ।' ଯଯାତି ପୁତ୍ରମାନଙ୍କୁ ଆହ୍ୱାନ କରି ଜରାଗ୍ରହଣ ପାଇଁ ଅନୁରୋଧ କଲେ । ପୁରୁଙ୍କ ବ୍ୟତୀତ ତାଙ୍କର ଅନ୍ୟ କେହି ଏ ଅନୁରୋଧ ରକ୍ଷା କଲେ ନାହିଁ । ଯଯାତି ପୁରୁଙ୍କୁ ଜରାଦାନ କରି କେତେକାଳ ପରେ ପୁଣି ତାହା ତାଙ୍କଠାରୁ ଫେରାଇ ନେଲେ ଏବଂ ପୁରୁଙ୍କୁ ରାଜ୍ୟର ଉତ୍ତରାଧିକାରୀରୂପେ ମନୋନୀତ କଲେ ।

**ଦେବଳ**—ଅସିତ ମୁନିଙ୍କ ପୁତ୍ର । ବ୍ୟାସଦେବଙ୍କ ଶିଷ୍ୟ । ରମ୍ଭାଙ୍କ ଶାପରେ ଏ ଅଷ୍ଟାବକ୍ର ହୋଇଥିଲେ । (ଅଷ୍ଟାବକ୍ର ଦେଖ) ଦେବଲ ମୁନିଙ୍କ ଶାପରୁ ହୁହୁ ଗନ୍ଧର୍ବ କୁମ୍ଭୀର ହୋଇଥିଲେ ।

**ଦେବବର୍ଣ୍ଣିନୀ**—ଭରଦ୍ୱାଜଙ୍କ କନ୍ୟା । ବିଶ୍ରବା ମୁନିଙ୍କ ପତ୍ନୀ । ବୈଶ୍ରବଣ ନାମକ ପୁତ୍ର ଏହାଙ୍କ ଗର୍ଭରୁ ବିଶ୍ରବାଙ୍କ ଔରସରେ ଜନ୍ମ ହୋଇଥିଲେ । ଏହାଙ୍କର ଅନ୍ୟନାମ କୁବେର । ଏ ଧନାଧକ୍ଷ । ପ୍ରଥମେ ଲଙ୍କା ଏହାଙ୍କର ରାଜଧାନୀ ଥିଲା । ପରେ ବୈମାତ୍ରେୟ ପୁତ୍ର ରାବଣଙ୍କୁ ଏ ଲଙ୍କା ଅର୍ପଣ କରି ହିମାଳୟସ୍ଥ ଉତ୍ତରରେ ଥିବା ଅଳକାପୁରୀରେ ବାସ କଲେ । (କୁବେର ଦେଖ)

**ଦେବସାବର୍ଣ୍ଣି**—ତ୍ରୟୋଦଶ ମନୁ ।

**ଦେବସେନା**—ସାବିତ୍ରୀ ଗର୍ଭଜାତ ପ୍ରଜାପତିଙ୍କ କନ୍ୟା । ଏହାଙ୍କର ଅନ୍ୟନାମ ଷଷ୍ଠୀ । ଏ ମାତୃକାଶ୍ରେଷ୍ଠା ଓ ଶିଶୁ ପାଳିକା । ଦେବ-ସେନାପତି କାର୍ତ୍ତିକେୟ ଏହାଙ୍କର ସ୍ୱାମୀ । ଏହାଙ୍କର ଭଗ୍ନୀଙ୍କ ନାମ ଦୈତ୍ୟସେନା ।

**ଦେବହୂତି**—ସ୍ୱାୟମ୍ଭୁବ ମନୁଙ୍କ କନ୍ୟା । କର୍ଦ୍ଦମ ଋଷିଙ୍କ ପତ୍ନୀ । କପିଳ ମୁନିଙ୍କ ମାତା । କପିଳ-ଦେବହୂତି ସମ୍ବାଦ ଶ୍ରୀମଦ୍‌ଭାଗବତରେ ଏକ ବିଶିଷ୍ଟ ଦାର୍ଶନିକ ଉପାଖ୍ୟାନ । କପିଳଙ୍କ ବ୍ୟତୀତ ଏହାଙ୍କର ନଅଟି କନ୍ୟା ଥିଲେ ।

**ଦେବାନ୍ତକ**—ରାମାୟଣ ବର୍ଣ୍ଣିତ ରାକ୍ଷସ ବିଶେଷ । ରାବଣର ଏକ ପୁତ୍ର ।

**ଦେବାପି**—ରାଜା ଶାନ୍ତନୁଙ୍କ ଭାଇ । ଏ ଧର୍ମାତ୍ମା ଥିଲେ । ତପୋବଳରେ ବ୍ରାହ୍ମଣତ୍ୱ ଲାଭ କରିଥିଲେ ।

**ଦେବକାତୀର୍ଥ** – ହିନ୍ଦୁମାନଙ୍କର ତୀର୍ଥବିଶେଷ । ସରସ୍ୱତୀ ନଦୀ ।

**ଦେବୀରଥ**—ସୁଭଦ୍ରାଙ୍କ ରଥର ନାମ ।

**ଦୈତ୍ୟଗୁରୁ**—ଶୁକ୍ରଙ୍କର ନାମାନ୍ତର ।

**ଦୈତ୍ୟସେନା** - ପ୍ରଜାପତିଙ୍କ କନ୍ୟା ଓ ଦେବସେନାଙ୍କ ଭଗିନୀ । କେଶୀ ଦାନବର ଭାର୍ଯ୍ୟା । କେଶୀ ଏହାଙ୍କୁ ବଳପୂର୍ବକ ହରଣ କରି ବିବାହ କରିଥିଲେ (ମହାଭାରତ, ବନପର୍ବ) ।

**ଦୋଳଯାତ୍ରା** – ଫାଲ୍‌ଗୁନ ମାସ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ଶ୍ରୀକୃଷ୍ଣଙ୍କ ଦୋଳଖେଳ ଉତ୍ସବ । ଦୋଳଯାତ୍ରା ଦୁଇ ପ୍ରକାର । ଯଥା—(୧) ରାଜଦୋଳ : ଏହା ଫଗୁଦଶମୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ହୁଏ । (୨) ପଞ୍ଚୁଦୋଳ — ଫଗୁଣ ପୂର୍ଣ୍ଣିମାଠାରୁ ଚୈତ୍ର କୃଷ୍ଣ ପଞ୍ଚମୀ ପର୍ଯ୍ୟନ୍ତ ହୁଏ । ଶ୍ରୀକୃଷ୍ଣଙ୍କ ବିଗ୍ରହକୁ ନେଇ ଦୋଳମଣ୍ଡପରେ ଲୋକେ ଦୋଳି ଖେଳାନ୍ତି ଓ ଆପଣା ମଧ୍ୟରେ ଅବିର ବୋଳାବୋଳି ଓ ପିଚକାରୀ ମରାମରି ହୁଅନ୍ତି ଓ ନୃତ୍ୟ ଗୀତାଦିରେ ଲାଗନ୍ତି । ଏହା ଗଉଡମାନଙ୍କର ପ୍ରଧାନ ଉତ୍ସବ । (ଭାଷାକୋଷ)

**ଦ୍ୱାଦଶଯାତ୍ରା** – ପୁରୀ ଜଗନ୍ନାଥ ମହାପ୍ରଭୁଙ୍କର ବାର ଗୋଟି ପ୍ରଧାନ ପର୍ବ । ନିମ୍ନଲିଖିତ ଯାତ୍ରାମାନଙ୍କୁ ଦ୍ୱାଦଶଯାତ୍ରା କୁହାଯାଏ ଯଥା—(୧) ବୈଶାଖ ଶୁକ୍ଳ ତୃତୀୟା ଅକ୍ଷୟ ତୃତୀୟା । (୨) ଜ୍ୟେଷ୍ଠ ପୂର୍ଣ୍ଣିମା— ଦେବସ୍ନାନ । (୩) ଆଷାଢ଼ ଶୁକ୍ଳ ଦ୍ୱିତୀୟା—ଶ୍ରୀଗୁଣ୍ଡିଚ୍ଚା, ରଥଯାତ୍ରା । (୪) ଆଷାଢ଼ ଶୁକ୍ଳ ଏକାଦଶୀ—ହରିଶୟନ । (୫) ଶ୍ରାବଣ ସଂକ୍ରାନ୍ତି – ଦକ୍ଷିଣାୟନ ସଂକ୍ରାନ୍ତି । (୬) ଭାଦ୍ର ଶୁକ୍ଳ ଏକାଦଶୀ—ପାର୍ଶ୍ୱ ପରିବର୍ତ୍ତନ । (୭) କାର୍ତ୍ତିକ ଶୁକ୍ଳ ଏକାଦଶୀ—ଦେବୋତ୍ଥାପନ । (୮) ମାର୍ଗଶୀର ଶୁକ୍ଳ ଷଷ୍ଠୀ—ପ୍ରାବରଣ ଷଷ୍ଠୀ । (୯) ପୌଷପୂର୍ଣ୍ଣିମା— ପୁଷ୍ୟାଭିଷେକ । (୧୦) ମାଘସଂକ୍ରାନ୍ତି – ମକର ସଂକ୍ରାନ୍ତି । (୧୧) ଫାଲ୍‌ଗୁନ ପୂର୍ଣ୍ଣିମା—ଦୋଳଯାତ୍ରା । (୧୨) ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ—ଦମନକ ଚତୁର୍ଦ୍ଦଶୀ ବା ଦଅଣା ଲାଗି । (ଭାଷାକୋଷ)

**ଦ୍ୱାପର** – ହିନ୍ଦୁ ପୁରାଣ ମତରେ ସୃଷ୍ଟିର ତୃତୀୟ ଯୁଗ । ଏହାର କାଳ ୮ ଲକ୍ଷ ୬୪ ହଜାର ବର୍ଷ । ଏହି ଯୁଗରେ ଶ୍ରୀକୃଷ୍ଣ ଓ ବୌଦ୍ଧ ଅବତାରଦ୍ୱୟ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ପୁଣ୍ୟ ଓ ପାପ ସମାନ ଥିଲା । ମନୁଷ୍ୟର ଦେହର ପରିମାଣ ସାତ ହାତ ଓ ପରମାୟୁ ଏକ ହଜାର ବର୍ଷ ଥିଲା । ଯୁଧିଷ୍ଠିର ଦ୍ୱାପର ଯୁଗର ଶେଷ ରାଜା ଥିଲେ । (ଭାଷାକୋଷ)

**ଦ୍ୱାରକା**—ଶ୍ରୀକୃଷ୍ଣଙ୍କ ରାଜଧାନୀ । ଏବେ ପ୍ରକୃତ ଦ୍ୱାରକା ନାହିଁ । ଭାଗବତ ମତରେ—

'ନାମ ମାତ୍ରକ ମୋର ଥିବ,
ଜଳେ ଦ୍ୱାରକା ନାଶ ଯିବ ।'

**ଦ୍ୱିବିଦ**—ବାନର ବିଶେଷ । ଦେବ ବିରୋଧୀ ନାରକାସୁର ସହିତ ଏହାର ମିତ୍ରତା ଥିଲା । ବଳଦେବ ଏହାଙ୍କୁ ବଧ କରିଥିଲେ (ବିଷ୍ଣୁ ପୁରାଣ) । ରାମାୟଣ ଯୁଗର ଦ୍ୱିବିଦ ସୁଗ୍ରୀବଙ୍କର ଦ୍ୱାରପାଳ ଥିଲେ । ପ୍ରମାଣ ଯଥା—ବୈଦେହୀଶ ବିଳାସେ—

ବସିଥିଲା ଦ୍ୱିବିଦ ନାମରେ କପି ଦ୍ୱାରେ,
ବୋଇଲେ ଲକ୍ଷ୍ମଣ କହ ଆଗତ ରାଜାରେ ।
(ଉପେନ୍ଦ୍ର ଭଞ୍ଜ)

**ଦ୍ୱୈପାୟନ**—(କୃଷ୍ଣ ଦ୍ୱୈପାୟନ ଦେଖ)

**ଦ୍ୟୁମତ୍‌ସେନ**—ଶାଲ୍ୱ ଦେଶର ରାଜା । ପୁତ୍ରଙ୍କ ନାମ ସତ୍ୟବାନ୍ ଓ ପୁତ୍ରବଧୂଙ୍କ ନାମ ସାବିତ୍ରୀ । ଦୈବଦୁର୍ବିପାକବଶତଃ ଦ୍ୟୁମତ୍ସେନ ଅନ୍ଧ ହୋଇଥିଲେ । କେତେକ କୁଚକ୍ରୀ ବ୍ୟକ୍ତି ମିଳିତ ହୋଇ ତାଙ୍କୁ ରାଜ୍ୟଚ୍ୟୁତ କରି ଦେଇଥିଲେ । ଦ୍ୟୁମତ୍ସେନ ରାଜ୍ୟଭ୍ରଷ୍ଟ ହୋଇ ରାଣୀ ଶୈବ୍ୟାଙ୍କ ସହିତ ଏକମାତ୍ର ପୁତ୍ର ସତ୍ୟବାନଙ୍କୁ ସଙ୍ଗେ ଘେନି ଅରଣ୍ୟରେ ଆଶ୍ରୟ ନେଇଥିଲେ । ଏକଦା ମଦ୍ର ଦେଶାଧିପତି ନିଜ କନ୍ୟାର ପ୍ରତିଜ୍ଞା ପୂରଣ ପାଇଁ ଏହି ବଣକୁ ଆସି ସତ୍ୟବାନଙ୍କ ସହିତ ନିଜର କନ୍ୟା ସାବିତ୍ରୀଙ୍କୁ ବିବାହ କରି ଦେଇଥିଲେ । ସତ୍ୟବାନ ଅଳ୍ପାୟୁ ଥିଲେ । ବିବାହ ହେବା ବର୍ଷେ ପରେ ତାଙ୍କର ମୃତ୍ୟୁ ହେଲା । ସାବିତ୍ରୀ ଯମରାଜଙ୍କୁ ନିଜର ପାତିବ୍ରତ୍ୟ ବଳରେ ବିମୁଗ୍ଧ କରି କେତୋଟି ବର ମାଗିଲେ । ସେହି ବର ପ୍ରଭାବରେ ଶ୍ୱଶୁର ଚକ୍ଷୁଲାଭ କଲେ, ରାଜ୍ୟ ପାଇଲେ, ସତ୍ୟବାନ ଜୀଇଁ ଉଠିଲେ । ଯଥାକାଳରେ ଦ୍ୟୁମତ୍ସେନ ସତ୍ୟବାନଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କରି ବାନପ୍ରସ୍ଥ ଅବଲମ୍ବନ କଲେ ।
(ମହାଭାରତ-ବନପର୍ବ)

**ଦ୍ରୁପଦ**—ଚନ୍ଦ୍ରବଂଶୀୟ ପୃଷତ ରାଜାଙ୍କ ପୁତ୍ର । ଦ୍ରୌପଦୀ ଏହାଙ୍କର କନ୍ୟା । ପଞ୍ଚାଳ ଏହାଙ୍କର ରାଜ୍ୟ । ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ନାମରେ ଏହାଙ୍କର ଦୁଇ

ପୁତ୍ର ଥିଲେ । ଦ୍ରୁପଦ ମହାଭାରତ ଯୁଦ୍ଧରେ ନିହତ ହୋଇଥିଲେ । ରାଜା ପୃଷତଙ୍କ ସହିତ ଭରଦ୍ୱାଜ ଋଷିଙ୍କର ବନ୍ଧୁତା ଥିଲା । ଦ୍ରୁପଦ ଓ ଭରଦ୍ୱାଜ-ନନ୍ଦନ ଦ୍ରୋଣ ସମବୟସ୍କ । ଦ୍ରୁପଦ ଭରଦ୍ୱାଜ ଆଶ୍ରମରେ ରହି ପାଠ ପଢୁଥିବା ବେଳେ ଦ୍ରୋଣ ଏହାଙ୍କର ସହପାଠୀ ଥିଲେ । ଉଭୟଙ୍କ ମଧ୍ୟରେ ଯଥେଷ୍ଟ ବନ୍ଧୁତା ଥିଲା । ପାଠାନ୍ତେ ଦ୍ରୁପଦ ଆସି ରାଜା ହେଲେ । ରାଜ-ଗର୍ବରେ ସେ ଆଉ ଦ୍ରୋଣଙ୍କୁ ଚିହ୍ନିଲେ ନାହିଁ । ଦ୍ରୋଣ ଏହି ପ୍ରତିହିଂସା ସାଧନ କରିବା ପାଇଁ ସୁଯୋଗ ଖୋଜୁଥିଲେ । ଦୈବବଶତଃ ପାଣ୍ଡବ ଓ କୌରବମାନଙ୍କ ଗୁରୁରୂପେ ସେ ହସ୍ତିନାରେ ରହି ରାଜପୁତ୍ରମାନଙ୍କୁ ଧନୁର୍ବେଦ ଶିକ୍ଷା ଦେଲେ । ଶିକ୍ଷାନ୍ତେ ବିଦ୍ୟାର୍ଥୀମାନଙ୍କଠାରୁ ଗୁରୁଦକ୍ଷିଣା ସ୍ୱରୂପ ଦ୍ରୁପଦଙ୍କୁ ବନ୍ଦୀ କରି ଆଣିବା ପାଇଁ ସେ ଆଦେଶ ଦେଲେ । ଅର୍ଜୁନ ଦ୍ରୁପଦଙ୍କୁ ପରାସ୍ତ କରି ବାନ୍ଧି ଆଣିଲେ । ଦ୍ରୁପଦ ନିଜ ଭୁଲ ବୁଝିପାରି ଦ୍ରୋଣଙ୍କୁ ନିଜ ରାଜ୍ୟରୁ ଅଧେ ଦେଇଥିଲେ । ଭାରତ ଯୁଦ୍ଧରେ ଦ୍ରୋଣଙ୍କ ସହିତ ଯୁଦ୍ଧ କରି ଦ୍ରୁପଦ ନିହତ ହେଲେ । ଦ୍ରୁପଦଙ୍କ ପୁତ୍ର ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କର ବଧ ସାଧନ କଲେ । ଦ୍ରୁପଦଙ୍କର ଅନ୍ୟ ସନ୍ତାନ ନପୁଂସକ ଭାବାପନ୍ନ ଶିଖଣ୍ଡୀ ମହାରଥୀ ଭୀଷ୍ମଙ୍କର ମୃତ୍ୟୁର କାରଣ ହୋଇଥିଲେ । (ମହାଭାରତ)

**ଦ୍ରୋଣ**—(୧) ଭରଦ୍ୱାଜ ଋଷିଙ୍କ ପୁତ୍ର । ଗଙ୍ଗା ନିକଟରେ ଭରଦ୍ୱାଜ ଋଷିଙ୍କ ଆଶ୍ରମ ଥିଲା । ଦିନେ ଭରଦ୍ୱାଜ ଗଙ୍ଗା ସ୍ନାନ କରିବାକୁ ଯାଇଥିଲେ । ସେଠାରେ ସେ ଘୃତାଚୀ ଅପ୍ସରା ସ୍ନାନ କରୁଥିବା ଦେଖିଲେ । ଅପ୍ସରା ଦିଗମ୍ବରୀ ଅବସ୍ଥାରେ ପାଣିରୁ ଉଠିବା ମାତ୍ରେ ଭରଦ୍ୱାଜ ତାଙ୍କୁ ଦେଖି କାମାର୍ତ୍ତ ହେଲେ । ଋଷିଙ୍କର ରେତଃ ସ୍ଖଳିତ ହେଲା । ଭରଦ୍ୱାଜ ଏହି ରେତଃକୁ ଦ୍ରୋଣ ନାମକ ଯଜ୍ଞୀୟ ପାତ୍ରରେ ଧରି ରଖିଲେ । ଏହି ରେତଃରୁ ଏକ ପୁତ୍ର ଜାତ ହେଲା । ପୁତ୍ରଟି ଦ୍ରୋଣ ପାତ୍ରରୁ ଉତ୍ପନ୍ନ ହୋଇଥିବାରୁ ଭରଦ୍ୱାଜ ଏହି ସନ୍ତାନର ନାମ ରଖିଲେ ଦ୍ରୋଣ । ଅଗ୍ନିବେଶ୍ୟ ନାମକ ଋଷି ଭରଦ୍ୱାଜଙ୍କର ଶିଷ୍ୟ ଥିଲେ । ଭରଦ୍ୱାଜ ଏହାଙ୍କୁ ଆଗ୍ନେୟାସ୍ତ୍ର ଶିକ୍ଷା ଦେଇଥିଲେ । ଦ୍ରୋଣ ଏହି ଅଗ୍ନିବେଶ୍ୟଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କଲେ । ଅଗ୍ନିବେଶ୍ୟ ଗୁରୁପୁତ୍ର ପୁଣି ନିଜର ଶିଷ୍ୟ ଦ୍ରୋଣଙ୍କୁ ଆଗ୍ନେୟାସ୍ତ୍ର ଦାନ କରିଥିଲେ । ପୂର୍ବକାଳରେ ନାନାବିଧ ଆଗ୍ନେୟାସ୍ତ୍ର ଯୁଦ୍ଧରେ ବ୍ୟବହୃତ ହେଉଥିଲା । ରାମାୟଣ ଓ ମହାଭାରତ ଯୁଗରେ 'ନାଳିକ' ଯନ୍ତ୍ରର ଉଲ୍ଲେଖ ଦୃଷ୍ଟ ହୁଏ । ନାଳିକ ଯନ୍ତ୍ରର ଆକାର ଓ କାର୍ଯ୍ୟ ପାଠ କଲେ ଏହା ବର୍ତ୍ତମାନ ଯୁଗର ବନ୍ଧୁକ ପରି ବୋଧ ହୁଏ । ଦ୍ରୋଣ ପିତାଙ୍କ ଆଦେଶକ୍ରମେ ଶରଦ୍ୱାନଙ୍କ କନ୍ୟା କୃପୀଙ୍କୁ ବିବାହ

କରିଥିଲେ । ଅଶ୍ୱତ୍ଥାମା ଏହାଙ୍କର ପୁତ୍ର । ଜନ୍ମ ସମୟରେ ଏହି ସନ୍ତାନ ଉଚ୍ଚୈଃଶ୍ରବା ଅଶ୍ୱ ପରି ଉଚ୍ଚସ୍ୱର ବିଶିଷ୍ଟ ଶବ୍ଦ କରିଥିବାରୁ ଏହି ନାମରେ ନାମିତ ହୋଇଥିଲେ । ଦ୍ରୋଣ ମହେନ୍ଦ୍ର ପର୍ବତକୁ ଯାଇ ଭୃଗୁପୁତ୍ର ପରଶୁରାମଙ୍କ ଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ ଏବଂ ତାଙ୍କଠାରୁ ସବୁ ଉତ୍କୃଷ୍ଟ ଅସ୍ତ୍ରମାନ ନେଇ ଆସିଥିଲେ ।

ଅର୍ଜ୍ଜୁନ ଗୁରୁଦକ୍ଷିଣା ଦେବା ପାଇଁ ଇଚ୍ଛା ପ୍ରକାଶ କରନ୍ତେ ଦ୍ରୋଣ କହିଲେ—'ଦେଖ ଅର୍ଜ୍ଜୁନ, ତୁମ ସହିତ ମୁଁ ଯେବେ ଯୁଦ୍ଧ କରିବାପାଇଁ ଇଚ୍ଛା ପ୍ରକାଶ କରେ କିମ୍ବା ପରିସ୍ଥିତି ଦୃଷ୍ଟିରୁ ଯୁଦ୍ଧ କରିବାପାଇଁ ଅଗ୍ରସର ହୁଏ, ତେବେ ତୁମେ କୌଣସି ପ୍ରକାର ସଙ୍କୋଚ ବୋଧ ନକରି ମୋ ବିପକ୍ଷରେ ଦଣ୍ଡାୟମାନ ହେବ ।' ଅର୍ଜ୍ଜୁନ ଏହି ପ୍ରତିଶ୍ରୁତି ରକ୍ଷା କରି କୁରୁକ୍ଷେତ୍ର ଯୁଦ୍ଧରେ ଦ୍ରୋଣଙ୍କ ସହିତ ଭୀଷଣ ଯୁଦ୍ଧରେ ମାତିଥିଲେ । ସେତିକିବେଳେ ଦ୍ରୋଣ ଅଶ୍ୱତ୍ଥାମାଙ୍କ ମରଣ ବାର୍ତ୍ତା ଶୁଣି ହତଜ୍ଞାନ ହେଲେ । ଏହି ଅବସରରେ ଧୃଷ୍ଟଦ୍ୟୁମ୍ନ ସହସା ଦ୍ରୋଣଙ୍କ ରଥରେ ଚଢ଼ିଯାଇ ଖଡ୍ଗାଘାତରେ ତାଙ୍କର ମସ୍ତକ ଛେଦନ କଲେ ।

(୨) ମେଘ ବିଶେଷର ନାମ ଦ୍ରୋଣ । ଚାରି ପ୍ରକାର ମେଘ ମଧ୍ୟରୁ ଏହା ଏକତମ । ଜ୍ୟୋତିଷ ମତରେ ଏହା ମେଘମାନଙ୍କର ଏକ ଅଧିପତିଙ୍କ ନାମ । ଯେଉଁ ବର୍ଷ ଦ୍ରୋଣମେଘ ମେଘନାୟକ ହୁଅନ୍ତି, ସେ ବର୍ଷ ପୃଥିବୀରେ ଅଧିକ ବୃଷ୍ଟି ହୁଏ । (ହିନ୍ଦୀ ଶବ୍ଦସାଗର)

**ଦ୍ରୌପଦୀ**—ପାଞ୍ଚାଳରାଜ ଦ୍ରୁପଦଙ୍କ ଯଜ୍ଞବେଦୀସମ୍ଭୂତା କନ୍ୟା । ଏହାଙ୍କର ବର୍ଣ୍ଣ କୃଷ୍ଣ ହୋଇଥିବାରୁ ଏହାଙ୍କର ଅପର ନାମ କୃଷ୍ଣା । ସ୍ୱୟମ୍ବର ସ୍ଥାନରେ ଅର୍ଜ୍ଜୁନ ଲକ୍ଷ୍ୟ ଭେଦ କରି ଏହାଙ୍କୁ ଲାଭ କରିଥିଲେ ଏବଂ ମାତୃବଚନ କ୍ରମେ ପାଞ୍ଚ ଭାଇ (ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ) ଏହାଙ୍କର ପାଣିଗ୍ରହଣ କଲେ । ଦ୍ରୌପଦୀ ପତିମାନଙ୍କ ସହିତ ବନବାସ କରି ଅଶେଷ ଦୁଃଖ କଷ୍ଟ ଭୋଗିଥିଲେ ଏବଂ ଅଜ୍ଞାତବାସ ବେଳେ ବିରାଟ ରାଜ୍ୟରେ ସୈରନ୍ଧ୍ରୀ (ଦାସୀ) ବେଶରେ ରହିଥିଲେ । ଦୁର୍ଯ୍ୟୋଧନ ଓ ଦୁଃଶାସନ କୌରବ ରାଜସଭାରେ ଏହାଙ୍କୁ ଯଥେଷ୍ଟ ଅପମାନ ଦେଇଥିଲେ । ମହାବଳଧାରୀ ଭୀମ କୁରୁକ୍ଷେତ୍ର ଯୁଦ୍ଧରେ ଏହି ଅପମାନର ପ୍ରତିଶୋଧ ନେଲେ । ଯୁଦ୍ଧାନ୍ତେ ଦ୍ରୌପଦୀ ପତିମାନଙ୍କ ସହିତ କିଛି କାଳ ସୁଖରେ ରହିଲେ । ପାଣ୍ଡବମାନଙ୍କ ମହାପ୍ରସ୍ଥାନ

ସମୟରେ ପତିବ୍ରତା କୃଷ୍ଣା ଏମାନଙ୍କ ସହିତ ହିମାଳୟ ଆରୋହଣ କରିବା-ବେଳେ ତୁଷାରାଚ୍ଛନ୍ନ ପଥରେ ଦେହତ୍ୟାଗ କଲେ ।

ପାଞ୍ଚ ପତିଙ୍କ ଔରସରେ ଏହାଙ୍କ ଗର୍ଭରୁ ପାଞ୍ଚୋଟି ପୁତ୍ର ଜନ୍ମିଥିଲେ—ଯୁଧିଷ୍ଠିରଙ୍କ ଔରସରେ ପ୍ରତିବିନ୍ଧ୍ୟ, ଭୀମଙ୍କର ଶ୍ରୁତସୋମ, ଅର୍ଜ୍ଜୁନଙ୍କର ଶ୍ରୁତକର୍ମା, ନକୁଳଙ୍କର ଶତାନିକ ଓ ସହଦେବଙ୍କର ଶ୍ରୁତସେନ ।

•

# ଧ

**ଧନଞ୍ଜୟ** –(୧) ଅର୍ଜ୍ଜୁନଙ୍କ ନାମାନ୍ତର । ଅର୍ଜ୍ଜୁନ କୁବେରଙ୍କୁ ଜୟ କରି ନିଜ ମାତା କୁନ୍ତୀଙ୍କ ପାଇଁ କୁବେର ଭଣ୍ଡାରରୁ ସହସ୍ର ସୁବର୍ଣ୍ଣ-ଚମ୍ପକ ଆହରଣ କରିଥିଲେ । ରାଜ କବି କୃଷ୍ଣସିଂହଙ୍କ ବିରାଟପର୍ବ ଉତ୍ତର ଗୋଗ୍ରହ ଉପାଖ୍ୟାନରେ ଏହି 'ଧନଞ୍ଜୟ' ପଦର ବ୍ୟାଖ୍ୟା କରାଯାଇଛି—

ଧନ ମୁଁ ଆଣିଲି କରି ଦେଶ ଜୟ
ତେଣୁ ମୋର ନାମ ଅଟେ ଧନଞ୍ଜୟ ।

(୨) ଅଗ୍ନିଙ୍କ ନାମ । ଅଗ୍ନି ପୂଜା କଲେ ଧନ ପ୍ରାପ୍ତି ହୁଏ ।

(୩) ସର୍ପ ବିଶେଷ । ଏ ଜଳାଶୟମାନଙ୍କର ଅଧିପତି ବୋଲି ପୁରାଣରୁ ଜଣାଯାଏ । (ହିନ୍ଦୀ ଶବ୍ଦସାଗର)

**ଧନଦ, ଧନପତି** –(କୁବେର ଦେଖ) । ବାମନ ପୁରାଣମତେ "ଧନପତି" ଦେହସ୍ଥ ବାୟୁ ବିଶେଷକୁ ବୁଝାଯାଏ । ଏହି ବାୟୁ ବ୍ରହ୍ମାଙ୍କ ମୁଖରୁ ନିର୍ଗତ ହୋଇ ତାଙ୍କର ଆଦେଶରେ ମୂର୍ତ୍ତିବିଶିଷ୍ଟ ଏବଂ ଧନପତି ନାମରେ ଆଖ୍ୟାତ ହୋଇଥିଲେ । ଏହି ମୂର୍ତ୍ତି ବ୍ରହ୍ମାଙ୍କ ଆଦେଶମତେ ଦେବତାମାନଙ୍କର ଧନ ରକ୍ଷଣାବେକ୍ଷଣରେ ନିଯୁକ୍ତ ହୋଇଥିଲେ ।

**ଧନୁର୍ବେଦ** – ବିଶ୍ୱାମିତ୍ରଙ୍କ ପ୍ରଣୀତ ଯଜୁର୍ବେଦର ଉପବେଦ ବିଶେଷ । ଧନୁର୍ବିଦ୍ୟା ବିଷୟକ ଉପଦେଶପୂର୍ଣ୍ଣ ଶାସ୍ତ୍ର । ପ୍ରାଚୀନ କାଳରେ ଭାରତବର୍ଷରେ ଓ

ଇଉରୋପ, ଆମେରିକା, ଆଫ୍ରିକା ଆଦି ସବୁଠି ଧନୁର ବ୍ୟବହାର ଥିଲା । ଭାରତରେ ଧନୁର୍ବେଦ, ଯଜୁର୍ବେଦର ଉପବେଦରୂପେ ଗଣ୍ୟ ହେଉଥିଲା । ଧନୁର୍ବେଦର ବର୍ଣ୍ଣନା, ଶୁକ୍ରନୀତି, କାମନ୍ଦକୀ ନୀତି, ଅଗ୍ନିପୁରାଣ, ବୀରଚିନ୍ତାମଣି, ବୃଦ୍ଧ ଶାର୍ଙ୍ଗଧର, ଯୁକ୍ତି କଳ୍ପତରୁ, ନୀତିମୟୂଖ ଆଦି ଗ୍ରନ୍ଥରେ ମିଳେ । ଧନୁର୍ବେଦର ଚାରି ପାଦ(ଭାଗ) ଥିଲା । ଯଥା ଦୀକ୍ଷାପାଦ, ସଂଗ୍ରହପାଦ, ସିଦ୍ଧିପାଦ ଓ ପ୍ରୟୋଗପାଦ । ପ୍ରାଚୀନ କାଳରେ ଦୁଇଟି ଜ୍ୟା ଥିବା ବାଟୁଳିଢେଙ୍କା (ଉପଲକ୍ଷେପକ)ର ବ୍ୟବହାର ମଧ୍ୟ ଥିଲା । ଧନୁ, ଗୁଣ ଓ ଶରର ପରିମାଣ ଓ ନିର୍ମାଣ ପ୍ରଣାଳୀ ଓ ଏଥିର ପ୍ରୟୋଗ ପ୍ରଣାଳୀ ପୂର୍ବେ ଭାରତରେ ବିଶଦରୂପେ ଶିକ୍ଷା ଦିଆଯାଉଥିଲା । ଶର ବା ବାଣମାନ ଫଳା ଅନୁସାରେ ନାନାପ୍ରକାର ଥିଲା । ଶରର ଗତିକୁ ସିଧା ରଖିବା ପାଇଁ ଶର ପଛରେ ପକ୍ଷ ଲଗାଯାଉଥିଲା । ରାମାୟଣ ଓ ମହାଭାରତ ଆଦିରେ ଶବ୍ଦଭେଦୀ ବାଣ ମରାଯିବା ବିଷୟ ଲେଖାଅଛି । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଧନ୍ୱନ୍ତରି**—(୧) ଦେବ ବୈଦ୍ୟ ବିଶେଷ । ଏ ସମୁଦ୍ର ମନ୍ଥନରୁ ଜାତ ହୋଇଥିଲେ । ଦୁର୍ବାସାଙ୍କ ଶାପରେ ଇନ୍ଦ୍ର ଶ୍ରୀଭ୍ରଷ୍ଟ ହେବାରୁ ବ୍ରହ୍ମାଙ୍କ ନିର୍ଦ୍ଦେଶ କ୍ରମେ ଦେବତାମାନେ ସମୁଦ୍ର ମନ୍ଥନ କଲେ । ସେହି ମନ୍ଥନରୁ ଲକ୍ଷ୍ମୀ ଜାତ ହେଲେ । ସମୁଦ୍ର ମନ୍ଥନରୁ ମଧ୍ୟ ନାନାବିଧ ପଦାର୍ଥ ଲାଭ ହୋଇଥିଲା । ଏହି ମନ୍ଥନରେ ମନ୍ଦର ପର୍ବତ ମନ୍ଥନ ଦଣ୍ଡ, ବିଷ୍ଣୁରୂପୀ କୂର୍ମ ମନ୍ଦରର ଅଧିଷ୍ଠାନ ଏବଂ ବାସୁକି ମନ୍ଥନ ରଜ୍ଜୁ ହୋଇଥିଲେ । ସମୁଦ୍ରରୁ ପ୍ରଥମେ ଚନ୍ଦ୍ର, ତାପରେ ଯଥାକ୍ରମେ ଲକ୍ଷ୍ମୀ, ସୁରା, ଉଚ୍ଚୈଃଶ୍ରବା, କୌସ୍ତୁଭ, ପାରିଜାତବୃକ୍ଷ, ସୁରଭୀ ଗାଈ, ଅମୃତହସ୍ତା ଧନ୍ୱନ୍ତରି ଏବଂ ସର୍ବ ଶେଷରେ ବିଷ ଉତ୍ପନ୍ନ ହୋଇଥିଲା । ବ୍ରହ୍ମବୈବର୍ତ୍ତ ମତରେ ଧନ୍ୱନ୍ତରି ତତ୍ପରେ ସୁଧା, ଉଚ୍ଚୈଃଶ୍ରବାଃଅଶ୍ୱ, ଐରାବତହସ୍ତୀ, ସୁଦର୍ଶନଚକ୍ର ଏବଂ ସର୍ବ ଶେଷରେ ଲକ୍ଷ୍ମୀ ଉତ୍ପନ୍ନ ହୋଇଥିଲେ । ଶ୍ରୀମଦ୍ଭାଗବତ ମତରେ ପ୍ରଥମେ ବିଷ ତାପରେ କ୍ରମେ ବାରୁଣୀ, ପାରିଜାତ, ଅପ୍ସରାଗଣ, ଚନ୍ଦ୍ର, ବିଷ, ଅମୃତ ସହିତ ଧନ୍ୱନ୍ତରି ଓ ସର୍ବଶେଷରେ ଲକ୍ଷ୍ମୀ । ମତ୍ସ୍ୟପୁରାଣରୁ ଜଣାଯାଏ—ପ୍ରଥମେ ବିଷ, ତତ୍ପରେ ସୁରା, ଉଚ୍ଚୈଃଶ୍ରବା, କୌସ୍ତୁଭ, ଚନ୍ଦ୍ର, ଅମୃତ ସହିତ ଧନ୍ୱନ୍ତରି, ଲକ୍ଷ୍ମୀ, ଅପ୍ସରା, ସୁରଭୀ, ପାରିଜାତ ଓ ସର୍ବଶେଷରେ ବରୁଣଛତ୍ର ଓ କର୍ଣ୍ଣାଭରଣ । ଧନ୍ୱନ୍ତରି ଉତ୍ପନ୍ନ ହେବା ପରେ ଦେବ ବୈଦ୍ୟରୂପେ ନିଯୁକ୍ତ ହେଲେ । ଏ ବେଦକ ଓ ମହାଦେବଙ୍କ ଶିଷ୍ୟ ।

(ବିଷ୍ଣୁପୁରାଣ, ମହାଭାରତ, ବ୍ରହ୍ମବୈବର୍ତ୍ତ, ହରିବଂଶ)

(୨) ହରିବଂଶରେ ଧନ୍ୱନ୍ତରିଙ୍କ ଉତ୍ପତ୍ତି ଭିନ୍ନ ପ୍ରକାର । ଏଥିରେ ବର୍ଣ୍ଣିତ ହୋଇଛି ସମୁଦ୍ର ମନ୍ଥନରୁ ଧନ୍ୱନ୍ତରି ଉଦ୍ଭୂତ ହେବା ପରେ ବିଷ୍ଣୁଙ୍କ ସମ୍ମୁଖରେ ଦେଖି କହିଲେ —'ପ୍ରଭୋ, ମୁଁ ଆପଣଙ୍କ ପୁତ୍ର । ଆପଣ ଦୟାପୂର୍ବକ ମୋ ପାଇଁ ହୋମ ଭାଗ ବିଧାନ କରିଦିଅନ୍ତୁ ଏବଂ ମୋର ରହିବାପାଇଁ ସ୍ଥାନ ନିର୍ଦ୍ଦେଶ କରନ୍ତୁ ।' ବିଷ୍ଣୁ କହିଲେ —'ବତ୍ସ, ଦେବତାମାନେ ହୋମ ବିଭାଗ କରି ନେଇଛନ୍ତି । ବର୍ତ୍ତମାନ ମୁଁ ତୁମ ପାଇଁ ଆଉ ହୋମ ଭାଗ ଦେଇପାରିବି ନାହିଁ । ତୁମେ ଏ ଜନ୍ମରେ ଦେବପୂଜ ହୋଇଛ । ଅପର ଜନ୍ମରେ ତୁମର ବିଶେଷ ଖ୍ୟାତି ଲାଭ ହେବ । ଗର୍ଭାବସ୍ଥାରେ ତୁମର ଅଣିମାଦି ସିଦ୍ଧି ଲାଭ ହେବ ଏବଂ ତୁମେ ସେହି ଶରୀର ଦ୍ୱାରାହିଁ ଦେବତ୍ୱ ଲାଭ କରିପାରିବ । ତୁମେ ଆୟୁର୍ବେଦକୁ ଆଠ ଭାଗରେ ବିଭକ୍ତ କରିବ ।' ବିଷ୍ଣୁ ଧନ୍ୱନ୍ତରିଙ୍କୁ ଏହି ବର ଦେଇ ଅନ୍ତର୍ହିତ ହେଲେ ।

(୩) ଭାବ ପ୍ରକାଶରେ ଲିଖିତ ଅଛି—ଧନ୍ୱନ୍ତରି ଇନ୍ଦ୍ରଙ୍କ ଅନୁରୋଧରେ ମନୁଷ୍ୟ ଜନ୍ମ ଗ୍ରହଣ କରି କାଶୀରେ ଜନ୍ମ ହୋଇଥିଲେ । ତାଙ୍କର ନାମ ଦିବୋଦାସ ହୋଇଥିଲା । ଦିବୋଦାସ କାଶୀର ବିଖ୍ୟାତ ରାଜା ଥିଲେ । ଦେବରାଜ ଇନ୍ଦ୍ର ପୃଥିବୀବାସୀଙ୍କୁ ନାନାପ୍ରକାର ବ୍ୟାଧିଗ୍ରସ୍ତ ହେବା ଦେଖି ସ୍ୱର୍ଗ ବୈଦ୍ୟ ଧନ୍ୱନ୍ତରିଙ୍କୁ ମନୁଷ୍ୟ ଜନ୍ମ ଗ୍ରହଣ କରି ପୃଥିବୀରେ ଅବତୀର୍ଣ୍ଣ ହେବାପାଇଁ ଅନୁରୋଧ କରିଥିଲେ । ଧନ୍ୱନ୍ତରି ଇନ୍ଦ୍ରଙ୍କଠାରୁ ଆୟୁର୍ବେଦ ଶିକ୍ଷା କରି କାଶୀରେ ଦିବୋଦାସରୂପେ ଜନ୍ମ ଗ୍ରହଣ କଲେ । ଦିବୋଦାସ ବହୁ ତପସ୍ୟା ଦ୍ୱାରା ବ୍ରହ୍ମାଙ୍କ ତୃପ୍ତି ସାଧନ କରିଥିଲେ । ବ୍ରହ୍ମା ପ୍ରୀତ ହୋଇ ଦିବୋଦାସଙ୍କୁ କାଶୀ ସିଂହାସନରେ ପ୍ରତିଷ୍ଠିତ କଲେ । ଦିବୋଦାସ ରାଜା ହୋଇ ଲୋକରେ ଆୟୁର୍ବେଦ ପ୍ରଚାର କରିଥିଲେ । ଏହାଙ୍କ ପ୍ରଣୀତ ଗ୍ରନ୍ଥର ନାମ 'ଧନ୍ୱନ୍ତରି ସଂହିତା ।'

**ଧବଳେଶ୍ୱର**—କଟକ ନିକଟସ୍ଥ ମହାନଦୀ ଗର୍ଭସ୍ଥ ଆଠଗଡ଼ ରାଜ୍ୟର ଗୋଟିଏ ପାହାଡ଼ ଉପରେ ଥିବା ଶିବଲିଙ୍ଗ । ଏହା ଆଠଗଡ ରାଜ୍ୟର ଅନ୍ତର୍ଗତ । ଏ ସ୍ଥାନଟି ଅତି ମନୋହର । ପ୍ରବାଦ ଅଛି ଯେ କୌଣସି ଭକ୍ତର ଆର୍ତ୍ତିନାଦ(ଡାକ) ଶୁଣି ଏହି ଠାକୁର କଳା ବଳଦକୁ ଧଳା କରି ଦେଇଥିଲେ । କାର୍ତ୍ତିକପୂର୍ଣ୍ଣିମା ସମୟରେ ଏଠାରେ ବହୁ ସହସ୍ର ଉତ୍କଳୀୟ, ବିଶେଷତଃ କଟକ ଜିଲ୍ଲା ଓ ଗଡ଼ଜାତର ଯାତ୍ରୀ ଏକତ୍ର ହୋଇ ବୃହଦ୍ ବ୍ରତ (ବଡ଼ଓଷା) କରନ୍ତି । କଟକ ଜିଲ୍ଲାର ମଫସଲରେ ମଧ୍ୟ ଏ ଉଦ୍ଦେଶ୍ୟରେ ଅନେକ

ବଡଓଷା ବ୍ରତ ପାଳିଥାନ୍ତି । ବଡଓଷାର ପ୍ରସାଦ ମଣ୍ଡା ଓ ଖିରସା । ଏହି ଖିରସାକୁ ଚରଣ ବୋଲି କହନ୍ତି । ଇତିହାସରୁ ଜଣାଯାଏ ପୁରୁଷୋତ୍ତମ-ଦେବଙ୍କ ମହିଷୀ ପଦ୍ମାବତୀ ଏହି ମହାଦେବଙ୍କୁ ଆରାଧନା କରି ପ୍ରତାପରୁଦ୍ରଙ୍କୁ ପୁତ୍ରରୂପେ ଲାଭ କରିଥିଲେ ।

**ଧର୍ମ**—ବ୍ରହ୍ମାଙ୍କ ଦକ୍ଷିଣାଙ୍ଗରୁ ଧର୍ମଙ୍କର ଉତ୍ପତ୍ତି । ବରାହ ପୁରାଣରେ ଏହାଙ୍କ ଉତ୍ପତ୍ତି ବିଷୟରେ ଲେଖାଅଛି—ବ୍ରହ୍ମା ସୃଷ୍ଟି କରିବାକୁ ଅଭିଳାଷୀ ହୋଇ ଅତ୍ୟନ୍ତ ଚିନ୍ତାପରାୟଣ ହେଲେ । ଚିନ୍ତାଶୀଳ ବ୍ରହ୍ମାଙ୍କ ଦକ୍ଷିଣାଙ୍ଗରୁ ଏକ ପୁରୁଷଙ୍କର ଉତ୍ପତ୍ତି ହେଲା । ଏ ହେଉଛନ୍ତି ଧର୍ମ । ଏହାଙ୍କ କର୍ଣ୍ଣରେ ଶ୍ୱେତ କୁଣ୍ଡଳ, ଗଳାରେ ଶ୍ୱେତ ମାଳା ଓ ଅଙ୍ଗ ଅନୁଲେପିତ । ବ୍ରହ୍ମା କହିଲେ—'ତୁମେ ଚତୁଷ୍ପାଦ ବୃଷଭାକୃତି, ତୁମେ ଜ୍ୟେଷ୍ଠ ବା ପ୍ରଧାନ ହୋଇ ପ୍ରଜାପାଳନ କର ।' ଏହି ଧର୍ମ ସତ୍ୟଯୁଗରେ ଚତୁଷ୍ପାଦ, ତ୍ରେତାରେ ତ୍ରିପାଦ, ଦ୍ୱାପରରେ ଦ୍ୱିପାଦ ଏବଂ କଳିରେ ଏକପାଦ ବିଶିଷ୍ଟ ହୋଇ ପ୍ରଜାପାଳନ କରିବାକୁ ଲାଗିଲେ । ସେ ବ୍ରାହ୍ମଣମାନଙ୍କୁ ସମ୍ପୂର୍ଣ୍ଣରୂପେ, କ୍ଷତ୍ରିୟମାନଙ୍କୁ ତିନିଭାଗରେ, ବୈଶ୍ୟମାନଙ୍କୁ ଦୁଇଭାଗରେ ଏବଂ ଶୂଦ୍ରମାନଙ୍କୁ ଗୋଟିଏ ଭାଗରେ ରକ୍ଷା କରିବାକୁ ଲାଗିଲେ । ଗୁଣ, ଦ୍ରବ୍ୟ, କ୍ରିୟା ଓ ଜାତି ଏହି ଚାରୋଟି ଧର୍ମଙ୍କର ପାଦ । ବେଦରେ ଏହାଙ୍କର ନାମ ତ୍ରିଶୃଙ୍ଗ । ଏହାର ଦୁଇଟି ମୁଣ୍ଡ ଓ ସାତୋଟି ହାତ । ଏକାଦଶୀ ତିଥିରେ ଧର୍ମ ଅଧିଷ୍ଠିତ । ଏହି ତିଥିରେ ଧର୍ମ ଉଦ୍ଦେଶ୍ୟରେ ଯେଉଁମାନେ ଉପବାସ କରନ୍ତି, ସେମାନଙ୍କର ସକଳ ପାପ ଧ୍ୱଂସ ହୁଏ ।

ବାମନ ପୁରାଣ ମତରେ ଧର୍ମଙ୍କ ଭାର୍ଯ୍ୟା ଅହିଂସା, ଅହିଂସାଙ୍କ ଗର୍ଭରୁ ଧର୍ମଙ୍କର ଚାରିଗୋଟି ପୁତ୍ର ଜନ୍ମିଥିଲେ—ସନତ୍କୁମାର, ସନାତନ, ସନକ ଓ ସନନ୍ଦ, ପୁରାଣାନ୍ତରେ ଏମାନେ ବ୍ରହ୍ମାଙ୍କ ମାନସପୁତ୍ର ବୋଲି ଜଣାଯାଏ । ଚନ୍ଦ୍ର ଗୁରୁପତ୍ନୀ ତାରାଙ୍କୁ ହରଣ କରିବା ଯୋଗେ ଧର୍ମ ପ୍ରପୀଡ଼ିତ ହୋଇ ଅରଣ୍ୟବାସୀ ହୋଇଥିଲେ । ସେହି ଦିନଠାରୁ ସେହି ଅରଣ୍ୟକୁ ଧର୍ମାରଣ୍ୟ ବୋଲିଯାଇଥିଲା ।

(୨) ବୌଦ୍ଧମାନଙ୍କର ତିନି ଉପାସ୍ୟ ଦ୍ରବ୍ୟ ମଧ୍ୟରୁ ଗୋଟିକୁ ଧର୍ମ ବୋଲିଯାଏ । ବୁଦ୍ଧ, ସଂଘ ଓ ଧର୍ମ । ପ୍ରାୟ ସବୁ ଧର୍ମରେ ଈଶ୍ୱର ବିଶ୍ୱାସ, ଈଶ୍ୱରାଜ୍ଞାପାଳନ, ଲୋକୋପକାର, ଅହିଂସା, ଇନ୍ଦ୍ରିୟସଂଯମ, ସତ୍ୟବାଦିତା, ପରଲୋକରେ ବିଶ୍ୱାସ ସୂଚିତ ହୋଇଅଛି । ସବୁ ଧର୍ମର ମୂଳରେ ଈଶ୍ୱରଭକ୍ତି ରହିଅଛି । ବୌଦ୍ଧମାନେ ଈଶ୍ୱରଙ୍କ ସାକ୍ଷାତ ସମ୍ବନ୍ଧରେ ସ୍ୱୀକାର ନକଲେ

ମଧ୍ୟ ସେମାନଙ୍କ 'ନିର୍ବାଣ ବା ମୋକ୍ଷ' ହିନ୍ଦୁମାନଙ୍କର ମୁକ୍ତି ସଙ୍ଗେ ସମାନ । ନାସ୍ତିକମାନେ ଈଶ୍ୱରଙ୍କୁ ମାନନ୍ତି ନାହିଁ । କିନ୍ତୁ ସେମାନଙ୍କ ସଂଖ୍ୟା ସବୁ ଯୁଗରେ ଏତେ କମ୍ ଯେ ତାହା କେବେହେଁ ଗୋଟିଏ ସ୍ୱତନ୍ତ୍ର ଧର୍ମରୂପେ ପ୍ରତିଷ୍ଠିତ ହୋଇପାରିନାହିଁ । ଶ୍ରୁତି (ବେଦ), ସ୍ମୃତି (ମନ୍ୱାଦି ଧର୍ମଶାସ୍ତ୍ର) ଓ ପୁରାଣ (ବୈଦିକ ଯୁଗ ପରେ ରଚିତ ଶାସ୍ତ୍ର) ମାନଙ୍କରେ ନିର୍ଦ୍ଦିଷ୍ଟ ଉପଦେଶମାନ ସାଧାରଣତଃ 'ଧର୍ମ' ନାମରେ ଅଭିହିତ ହୁଏ । ଏଥିରେ ଈଶ୍ୱରୋପାସନା, ପରଲୋକ ଓ ଇହଲୋକର ମଙ୍ଗଳକର କର୍ମ, ସାମାଜିକ ଓ ବୈଜ୍ଞାନିକ ନିୟମମାନ, ଧନବିଭାଗ ଓ ଉତ୍ତରାଧିକାରିତ୍ୱ ଆଦି ନାନା ବିଷୟ ଅଛି । ଅନେକ ସମୟରେ ଏହି ଭିନ୍ନଭିନ୍ନ ଉପଦେଶମାନଙ୍କ ମଧ୍ୟରେ ବୈପରୀତ୍ୟ ବା ବୈଷମ୍ୟ ପରିଦୃଷ୍ଟ ହୁଏ । ଏଥିପାଇଁ ଋଷିମାନେ କହି ଯାଇଅଛନ୍ତି ଯେ ଶ୍ରୁତି, ସ୍ମୃତି, ପୁରାଣ ମଧ୍ୟରେ ଅସାମଞ୍ଜସ୍ୟ ଦେଖାଗଲେ ଆଦୌ ଶ୍ରୁତିବାକ୍ୟ ପାଳନୀୟ । କେହି କେହି କହିଅଛନ୍ତି ମହାଜନ ବା ମହାପୁରୁଷମାନେ ଯେଉଁ ବାଟରେ ଯାଇଅଛନ୍ତି ଓ ଯାହା ବହୁକାଳରୁ ଦେଶାଚାର ବା ଲୌକିକାଚାରରୂପେ ଚଳି ଆସୁଅଛି ତାହାହିଁ ପାଳନୀୟ । ଧର୍ମ ଶବ୍ଦର ଅର୍ଥ ବିଷୟ ମଧ୍ୟରେ ନାନା ମୁନିଙ୍କ ନାନା ମତ । ଅଭିଧାନ ମତରେ ସତ୍ସଙ୍ଗହିଁ ଧର୍ମ । ମହାଭାରତ ମତରେ ଧର୍ମର ଲକ୍ଷଣ ଅହିଂସା । ପୁରାଣରେ ଲେଖା ଅଛି ଯେ ଯଦ୍ଦ୍ୱାରା ଲୋକ ସ୍ଥିତି ବିହିତ ହୁଏ ତାହାକୁ ଧର୍ମ ବୋଲିଯାଏ । ଦୀପିକା ମତରେ, ପୁରୁଷର ବିହିତ କିମ୍ବା ସାଧ ଗୁଣକୁ ଧର୍ମ ବୋଲିଯାଏ । ଯୁକ୍ତିବାଦୀମାନେ କହନ୍ତି—ମନୁଷ୍ୟର ଯାହା କର୍ତ୍ତବ୍ୟ ତାହା ସମ୍ପାଦନ କରିବାକୁ ଧର୍ମ ବୋଲିଯାଏ । ମନର ଯେଉଁ ପ୍ରକୃତି ଦ୍ୱାରା ବିଶ୍ୱବିଧାତା ପରମାତ୍ମାଙ୍କ ପ୍ରତି ଭକ୍ତି ଜନ୍ମେ ଜ୍ଞାନବାଦୀମାନଙ୍କ ମତରେ ତାହାର ନାମ ଧର୍ମ । (ଭାଷାକୋଷ)

**ଧର୍ମଗ୍ରନ୍ଥ**—ଭିନ୍ନ ଭିନ୍ନ ଧର୍ମ ସମ୍ପ୍ରଦାୟର ଭିନ୍ନ ଭିନ୍ନ ଧର୍ମ ପୁସ୍ତକ ଅଛି । ଯଥା—ହିନ୍ଦୁମାନଙ୍କର ବେଦ, ସ୍ମୃତି, ପୁରାଣ, ମୁସଲମାନମାନଙ୍କର କୋରାଣ ସରିଫ୍, ବୌଦ୍ଧମାନଙ୍କର ତ୍ରିପିଟକ, ଶିଖମାନଙ୍କର ଗ୍ରନ୍ଥ ସାହେବ, ପାରସୀମାନଙ୍କର ଜେନ୍ଦାଭେସ୍ତା, ଜୈନମାନଙ୍କର କଲ୍ପସୂତ୍ର, ଖ୍ରୀଷ୍ଟିୟାନମାନଙ୍କର ବାଇବଲ ଇତ୍ୟାଦି ।

**ଧର୍ମଚକ୍ର**—ବୁଦ୍ଧଦେବଙ୍କ ଚାରିଗୋଟି ଉପଦେଶ । ବୁଦ୍ଧଙ୍କ ପ୍ରଚାରିତ ସତ୍ୟ ଚତୁଷ୍ଟୟ ଯଥା—(୧) ସଂସାର ନିରବଚ୍ଛିନ୍ନ ଦୁଃଖମୟ । (୨) ବିଷୟ ତୃଷ୍ଣାହିଁ ଦୁଃଖର ମୂଳକାରଣ । (୩) ବିଷୟ ତୃଷ୍ଣାକୁ ସମୂଳେ ଉତ୍ପାଟନ କରିବାହିଁ ଦୁଃଖର ନିବୃତ୍ତି । (୪) ବିଷୟ ନିବୃତ୍ତିର ଆଷ୍ଟାଙ୍ଗିକ ପଥ ।

ଯଥା —(କ) ସମ୍ୟକ୍ ଦୃଷ୍ଟି, (ଖ) ସମ୍ୟକ୍ ସଙ୍କଳ୍ପ, (ଗ) ସମ୍ୟକ୍ ବାକ୍ୟ—ସତ୍ୟ, ସରଳ ଓ ପ୍ରିୟ ବାକ୍ୟ, (ଘ) ସମ୍ୟକ୍ କର୍ମ—ସଦାଚରଣ, (ଙ) ସମ୍ୟକ୍ ଆଜୀବ—ସର୍ବଭୂତରେ ଅହିଂସାପୂର୍ଣ୍ଣ ସାଧୁ ଜୀବିକା ନିର୍ବାହ, (ଚ) ସମ୍ୟକ୍ ବ୍ୟାୟାମ—ଆତ୍ମସଂଯମ ପ୍ରଭୃତି ଉପାୟରେ ଆତ୍ମାର ଉନ୍ନତି ସାଧନ, (ଛ) ସମ୍ୟକ୍ ସ୍ମୃତି (ଜ) ସମ୍ୟକ୍ ସମାଧି—ଜୀବନର ସୁଗଭୀର ତତ୍ତ୍ୱମାନଙ୍କର ଧ୍ୟାନ, ମନନ ଓ ନିଦିଧ୍ୟାସନ । (ଭାରତୀକୋଷ)

**ଧର୍ମଧ୍ୱଜ**—ମିଥିଳାର ଜନକବଂଶୀୟ ଏକ ରାଜା । ଦଣ୍ଡନୀତି, ବେଦ ଓ ମୋକ୍ଷ ଶାସ୍ତ୍ରରେ ଏହାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଏକଦା ସୁଲଭା ନାମ୍ନୀ ଏକ ସନ୍ୟାସିନୀ ଯୋଗଧର୍ମ ଅବଲମ୍ବନ କରି ପୃଥିବୀର ନାନା ସ୍ଥାନ ପର୍ଯ୍ୟଟନ କରୁଥିଲେ । ସେ ଧାର୍ମିକ ମହାତ୍ମାମାନଙ୍କ ମୁଖରୁ ଧର୍ମଧ୍ୱଜଙ୍କ ବୃତ୍ତାନ୍ତ ଜାଣି ମିଥିଳାରେ ଉପଗତ ହେଲେ । ଧର୍ମଧ୍ୱଜଙ୍କର ମୋକ୍ଷ ଧର୍ମରେ ଅଧିକାର ହୋଇଛି କି ନାହିଁ ଏହା ପରୀକ୍ଷା କରିବା ପାଇଁ ନିଜରୂପ ପରିତ୍ୟାଗ କରି ଏକ ଅରୂପ ଲାବଣ୍ୟବତୀ ରମଣୀ ମୂର୍ତ୍ତି ଧାରଣ କରି ଭିକ୍ଷାଗ୍ରହଣ ଛଳରେ ରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ଧର୍ମଧ୍ୱଜ ଓ ସୁଲଭାଙ୍କ ମଧ୍ୟରେ ବହୁ ସମୟ ଯାଏ ଧର୍ମର ଗୂଢତତ୍ତ୍ୱ ଆଲୋଚନା ହେଲା । ସ୍ତ୍ରୀର ମୋକ୍ଷଧର୍ମ ସମ୍ବନ୍ଧୀୟ ଆଳାପ ଶୁଣି ଧର୍ମଧ୍ୱଜ ସ୍ତମ୍ଭିତ ହୋଇ ଯାଇଥିଲେ । (ମହାଭାରତ-ଶାନ୍ତିପର୍ବ)

**ଧର୍ମପୁତ୍ର**—ଯୁଧିଷ୍ଠିରଙ୍କ ନାମାନ୍ତର । ଦୁର୍ବାସାପ୍ରାପ୍ତ ମନ୍ତ୍ର ପ୍ରଭାବରେ କୁନ୍ତୀ ଧର୍ମଙ୍କୁ ଆକର୍ଷିତ କରିଥିଲେ । ଧର୍ମଙ୍କ ଔରସରେ କୁନ୍ତୀଙ୍କ ଗର୍ଭରୁ ଯୁଧିଷ୍ଠିର ଜାତ ହେଲେ । (ଦୁର୍ବାସା ଓ କୁନ୍ତୀ ଦେଖ)

**ଧର୍ମବକ**—ବକ ରୂପଧାରୀ ଧର୍ମ ବା ଈଶ୍ୱର । ଯୁଧିଷ୍ଠିରଙ୍କୁ ପରୀକ୍ଷା କରିବା ସକାଶେ ଧର୍ମବକ ତାଙ୍କୁ ଚାରୋଟି ପ୍ରଶ୍ନ କରିଥିଲେ । ଯୁଧିଷ୍ଠିର ଉକ୍ତ ପ୍ରଶ୍ନ ଗୁଡ଼ିକର ଯଥାଯଥ ଉତ୍ତର ଦେଇଥିଲେ । (କ) ପ୍ରଶ୍ନ—ପୃଥିବୀରେ ଠିକ୍ ବାଟ କ'ଣ ? (କଃ ପନ୍ଥାଃ ?) । ଉତ୍ତର—ବେଦ, ସ୍ମୃତି ଓ ପୁରାଣରେ ନାନା ପ୍ରକାର ବିଭିନ୍ନ ପନ୍ଥାର ଉଲ୍ଲେଖ ଅଛି, କିନ୍ତୁ ମହାଜନମାନେ ଯେଉଁ ପନ୍ଥା ବାଟେ ଯାଇଅଛନ୍ତି ତାହାହିଁ ପ୍ରକୃତ ପନ୍ଥା । (ଖ) ପ୍ରଶ୍ନ—ପୃଥିବୀରେ ଆଶ୍ଚର୍ଯ୍ୟ ବିଷୟ କଣ ? (କିମାଶ୍ଚର୍ଯ୍ୟଂ ?) । ଉତ୍ତର—ପ୍ରତିଦିନ ମନୁଷ୍ୟ ତା ଆଖି ଆଗରେ ସହସ୍ର ସହସ୍ର ଲୋକ ମରିବାର ଦେଖି ସୁଦ୍ଧା ବଞ୍ଚି ରହିଥିବା ଲୋକେ ବିଚାରନ୍ତି ଯେ ଆମେ ଚିରଜୀବୀ ହେବା, ଏହାହିଁ ଅତି ଆଶ୍ଚର୍ଯ୍ୟର ବିଷୟ ।

(ଗ) ପ୍ରଶ୍ନ—ପୃଥିବୀରେ କିଏ ସୁଖୀ ? (କଃ ମୋଦତେ ?) । ଉତ୍ତର—ଯେଉଁ ଲୋକ ଋଣ ନ କରି, ପ୍ରବାସକୁ ନଯାଇ, ଘରେ ବସି ମୁଠିଏ ଶାକାନ୍ନ ରନ୍ଧାନ୍ତେ ଖାଇବାକୁ ପାଏ ସେ ଏକା ସୁଖୀ । (ଘ) ପ୍ରଶ୍ନ - ସଂସାରର ଖବର କଅଣ ? (କା ଚ ବାର୍ତ୍ତା ?) ଉତ୍ତର—ଏ ସଂସାରରେ 'କାଳ' ବା 'ମୃତ୍ୟୁ' ସମସ୍ତଙ୍କୁ ଶାସନ କରୁଅଛି ଏହାହିଁ ବାର୍ତ୍ତା । (ମହାଭାରତ, ଭାଷାକୋଷ)

**ଧର୍ମବ୍ୟାଧ**—ଏକଦା କୌଶିକ ନାମକ ଏକ ବେଦଜ୍ଞ ତପସ୍ୱୀ ବ୍ରାହ୍ମଣ ଗୋଟିଏ ଗଛ ମୂଳରେ ବସି ବେଦମନ୍ତ୍ର ଉଚ୍ଚାରଣ କରୁଥିଲେ । ଏହି ସମୟରେ ଗୋଟିଏ ବକୀ ସେହି ବୃକ୍ଷ ଉପରୁ ତାଙ୍କ ଉପରେ ମଳତ୍ୟାଗ କଲା । ବ୍ରାହ୍ମଣ କ୍ରୁଦ୍ଧ ହୋଇ ତାହା ପ୍ରତି ଦୃଷ୍ଟିପାତ କରନ୍ତେ ସେ ଭସ୍ମ ହୋଇଗଲା । ବ୍ରାହ୍ମଣ ଏହା ଦେଖି ଅତି ଦୁଃଖିତ ହେଲେ । ଏହା ପରେ ସେ ଭିକ୍ଷା କରିବା ପାଇଁ ଲୋକାଳୟକୁ ଗଲେ । ସେ ଜନୈକ ଗୃହସ୍ଥ ଦ୍ୱାରରେ ଭିକ୍ଷା ମାଗିଲେ । ଗୃହିଣୀ ଭିକ୍ଷା ଦେଉଛି ବୋଲି କହି ଗୃହ ଭିତରକୁ ଗଲେ । ଏହି ସମୟରେ ତାଙ୍କର ପତି ଗୃହକୁ ଆସିଲେ । ଗୃହିଣୀ ପତିଙ୍କ ସେବାରେ ରତ ହେବା ଯୋଗୁଁ ଭିକ୍ଷା ଦେବାଲାଗି ବିଳମ୍ବ ହେଲା । ଏପରିକି ସେ ଅତିଥି କଥା ମଧ୍ୟ ଭୁଲିଗଲେ । ତା'ପରେ ମନେପଡ଼ିବାରୁ ଭିକ୍ଷା ଧରି ଆସିଲେ । ଗୃହିଣୀର ଲମ୍ବ ହେବା ଦେଖି ଏଣେ କୌଶିକ କ୍ରୋଧରେ ଅଗ୍ନିଶର୍ମା ହେଲେ । ଗୃହିଣୀ ତାଙ୍କ ପାଖରେ ପହଞ୍ଚିବା ମାତ୍ରେ ସେ ତାଙ୍କୁ ନାନାପ୍ରକାର ଭର୍ତ୍ସନା କଲେ ଏବଂ ତାଙ୍କୁ ଅଭିଶାପ ଦେବାପାଇଁ ଉଦ୍ୟତ ହେଲେ । ଗୃହିଣୀ କହିଲେ—'ମୋର ଯଦି ଆପଣ କିଛି ଦୋଷ ଦେଖି ପାରୁଛନ୍ତି, ତେବେ ଅଭିଶାପ ଦିଅନ୍ତୁ । ମାତ୍ର ମୁଁ କଣ କରିବି, ହଠାତ୍ ମୋର ପତି ଦେବତା ଆସିବାରୁ ତାଙ୍କ ସେବାରେ ଲାଗିଗଲି । ମାତ୍ର ଆପଣ ଯେ ମୋତେ ଅଭିଶାପର ଭୟ ଦେଖାଉଛନ୍ତି ସେଥିରେ ମୁଁ କିଛି ଭୟ କରୁନାହିଁ । ମୁଁ ତ ସେ ବକୀ ନୁହେଁ ଯେ ଆପଣଙ୍କ ଅଭିଶାପରେ ମରିଯିବି । ଆପଣ ବ୍ରାହ୍ମଣ, ଏ ପର୍ଯ୍ୟନ୍ତ ଧର୍ମତତ୍ତ୍ୱ ଆପଣଙ୍କର ଅଧିଗତ ହୋଇନାହିଁ । ଯଦି ଧର୍ମତତ୍ତ୍ୱ ସମ୍ବନ୍ଧେ ଆପଣ ଜ୍ଞାନଲାଭ କରିବାକୁ ଇଚ୍ଛୁକ ତେବେ ମିଥିଳାବାସୀ ଧର୍ମବ୍ୟାଧ ନିକଟକୁ ଯାଆନ୍ତୁ ।' ବ୍ରାହ୍ମଣ, ସ୍ତ୍ରୀଠାରୁ ଏକଥା ଶୁଣି ମିଥିଳାବାସୀ ଧର୍ମବ୍ୟାଧ ନିକଟକୁ ଗଲେ । ବ୍ୟାଧ ତାଙ୍କୁ ଦେଖି ଆଦର ଅଭ୍ୟର୍ଥନା କଲା ଏବଂ ସେ ସେହି ସ୍ତ୍ରୀ ବୋଲରେ ଏଠାକୁ ଆସିଛନ୍ତି ବୋଲି କହିଲା ଏବଂ ମୋ ଘର ଭିତରକୁ ଆସନ୍ତୁ ବୋଲି ସାଦରପୂର୍ବକ ନେଇଗଲା । ବ୍ୟାଧ ଏତେ ଧର୍ମଜ୍ଞ ହୋଇ ମାଂସ ବିକ୍ରୟ କରୁଛି ଦେଖି କୌଶିକ ତାକୁ ଘୃଣା କଲେ । ବ୍ୟାଧ କହିଲା—'ଏଇ ଯେ ମାଂସ

ବିଜସ୍ୱ କାର୍ଯ୍ୟ, ଏହା ମୋର କୌଳିକ ବ୍ୟବସାୟ । ବିଧାତା ପୂର୍ବରୁ ମୋପାଇଁ ଏ ବୃତ୍ତି ନିର୍ଧାର୍ଯ୍ୟ କରିଛନ୍ତି । ଏହା କହି ସେ ବ୍ରାହ୍ମଣଙ୍କୁ ନାନାବିଧ ଉପଦେଶ ପ୍ରଦାନ କଲେ । ଏହା ପରେ ତାଙ୍କର ପୂର୍ବଜନ୍ମ ବୃତ୍ତାନ୍ତ କହିଲେ । ସେ ପୂର୍ବ ଜନ୍ମରେ ଏକ ବେଦାଧ୍ୟାୟୀ ବ୍ରାହ୍ମଣ ଥିଲେ । କୌଣସି ରାଜାଙ୍କ ସହିତ ମୃଗୟା କରିବାକୁ ଯିବାବେଳେ ମୃଗରୂପୀ ଏକ ତପସ୍ୱୀଙ୍କୁ ବାଣବିଦ୍ଧ କରିଥିଲେ । ତାଙ୍କର ଶାପରେ ବ୍ରାହ୍ମଣ ଜାତିଚ୍ୟୁତ ବ୍ୟାଧରୂପେ ଶୂଦ୍ର ଯୋନିରେ ଜନ୍ମଲାଭ କରିଅଛନ୍ତି ।

**ଧର୍ମବ୍ରତା**—ଧର୍ମ ନାମକ ଏକ ରାଜାଙ୍କ ଔରସରେ, ତାଙ୍କ ପତ୍ନୀ ବିଶ୍ୱରୂପାଙ୍କ ଗର୍ଭରୁ ପ୍ରସୂତା ମରୀଚି ଋଷିଙ୍କ ପତ୍ନୀ । ଏ ପାତିବ୍ରତ୍ୟ ପାଇଁ ତପସ୍ୟା କରିଥିଲେ । ମରୀଚି ଏହାଙ୍କୁ ପୃଥିବୀରେ ସମସ୍ତଙ୍କଠାରୁ ଶ୍ରେଷ୍ଠା ପତିବ୍ରତା ଦେଖି ବିବାହ କରିଥିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଧର୍ମ ଭିକ୍ଷୁକ**—ମନୁ ସଂହିତାରେ ନଅ ଶ୍ରେଣୀର ଧର୍ମଭିକ୍ଷୁକ ଗଣନା ହୋଇଛନ୍ତି—(୧) ପୁତ୍ର କାମନାରେ ବିବାହ କରିବାକୁ ଇଚ୍ଛୁକ ବ୍ୟକ୍ତି । (୨) ଯଜ୍ଞ କରିବାକୁ ଇଚ୍ଛୁକ । (୩) ପଥିକ । (୪) ଯେ ଯଜ୍ଞରେ ସର୍ବସ୍ୱ ତ୍ୟାଗ କରି ନିର୍ଦ୍ଧନ ହୋଇଅଛି । (୫, ୬, ୭) ଗୁରୁ, ମାତା ଓ ପିତାଙ୍କ ଭରଣପୋଷଣାର୍ଥେ ସାହାଯ୍ୟପ୍ରାର୍ଥୀ । (୮) ଅଧ୍ୟୟନେଚ୍ଛୁ ବିଦ୍ୟାର୍ଥୀ ଓ (୯) ରୋଗୀ । ଏପରି ଧର୍ମଭିକ୍ଷୁକ ଶ୍ରେଷ୍ଠ ସ୍ନାତକରୂପେ ପରିଗଣିତ । ଏପରି ବ୍ୟକ୍ତିଙ୍କୁ ଯଜ୍ଞବେଦୀ ଭିତରେ ବସାଇ ଦକ୍ଷିଣା ସହିତ ଅନ୍ନଦାନ ଦେବା ବହୁ ପୁଣ୍ୟଜନକ । ଧର୍ମଭିକ୍ଷୁକ ଛଡ଼ା ଅନ୍ୟ ବ୍ରାହ୍ମଣଙ୍କୁ ଯଜ୍ଞ ବେଦୀର ବାହାରେ ବସାଇବା ଉଚିତ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଧର୍ମାରଣ୍ୟ**—ତୀର୍ଥରୂପେ ଗଣିତ ଅରଣ୍ୟ ବିଶେଷ । ରାଜକବି କୃଷ୍ଣସିଂହ ରଚିତ ମହାଭାରତ ବନପର୍ବରେ ପ୍ରମାଣ ଯଥା—"ଯେ ଧର୍ମାରଣ୍ୟେ ଧର୍ମ କରେ ଯେ ପାପରାଶି । ତାହା ଦେହରେ ଯୋଟି ନ ପାରଇ ଆସି ।" ପାଞ୍ଚାଳ ଓ ଉତ୍ତର କୋଶଳ ମଧ୍ୟବର୍ତ୍ତୀ ହିମାଳୟ ପାଦ ମୂଳସ୍ଥ ଅରଣ୍ୟ ଓ ଅମୂର୍ତ୍ତ ରାଜାଙ୍କ ଦ୍ୱାରା ସ୍ଥାପିତ ନଗର । ପ୍ରାଚୀନ ଭୂଗୋଳ ମତେ ପ୍ରାଗ୍‌ଜ୍ୟୋତିଷପୁର ।

(ଜ୍ଞାନେନ୍ଦ୍ର-ପରିଶିଷ୍ଟ)

ଚନ୍ଦ୍ର ଗୁରୁପତ୍ନୀ ତାରାଙ୍କୁ ହରଣ କରିବାରୁ ଧର୍ମ ପ୍ରପୀଡ଼ିତ ହୋଇ ଗହନ ବନରେ ପ୍ରବେଶ କଲେ । ସେହି ସମୟରେ ବ୍ରହ୍ମା କହିଲେ—'ଧର୍ମ, ତୁମେ

ଏହି ବନରେ ପ୍ରବେଶ କରିବାରୁ ଏହା ଧର୍ମାରଣ୍ୟ ନାମରେ ବିଖ୍ୟାତ ହେବ । (ବରାହପୁରାଣ,ସ୍ପଷ୍ଟାକୋଷ)

**ଧୁନ୍ଧୁ**—ରାକ୍ଷସ ବିଶେଷ । ପ୍ରସିଦ୍ଧ ରାକ୍ଷସ ମଧୁ ଏହାର ପିତା । ମଧୁ ଓ କୈଟଭ ଏ ଉଭୟଙ୍କୁ ବିଷ୍ଣୁ ସଂହାର କରିଥିଲେ । ଧୁନ୍ଧୁ ଉତଙ୍କ ମହର୍ଷିଙ୍କ ଆଶ୍ରମ ନିକଟବର୍ତ୍ତୀ ଏକ ବାଲୁକାମୟ ସମତଳ କ୍ଷେତ୍ରରେ ବାସ କରୁଥିଲା । ଲୋକ-ନାଶ ନିମିତ୍ତ ଏହି ରାକ୍ଷସ ମରୁକ୍ଷେତ୍ରରେ ଶୋଇ କଠୋର ତପସ୍ୟା କରୁଥିଲା । ଏକ ବର୍ଷ ଶ୍ୱାସରୋଧ କରିବା ପରେ ଯେବେ ଶ୍ୱାସ ତ୍ୟାଗ କଲା । ଏହି ଶ୍ୱାସ ତ୍ୟାଗରେ ବନ, ପର୍ବତାଦି କମ୍ପି ଉଠିଲା । ଧୂଳିରାଶି ନିର୍ଗତ ହୋଇ ଦିଙ୍‌ମଣ୍ଡଳ ଆଚ୍ଛାଦିତ କରିଦେଲା । ଦେବତାମାନେ ଏହି ରାକ୍ଷସ ଭୟରେ ଥରହର ହେବାକୁ ଲାଗିଲେ । ରାଜା ବୃହଦଶ୍ୱଙ୍କ ପୁତ୍ର କୁବଳୟାଶ୍ୱ ଏହାକୁ ବଧ କରିଥିଲେ । ବୃହଦଶ୍ୱ, ପୁତ୍ର କୁବଳୟାଶ୍ୱ ଉପରେ ରାଜ୍ୟ ଭାର ଅର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କଲେ । ମହର୍ଷି ଉତଙ୍କଙ୍କ ଅନୁରୋଧରେ କୁବଳୟାଶ୍ୱ, ପୁତ୍ରଗଣ ସହ ଧୁନ୍ଧୁକୁ ଆକ୍ରମଣ କଲେ । ଏହି ଯୁଦ୍ଧରେ କୁବଳୟାଶ୍ୱଙ୍କର ଶହେ ପୁଅ ମଧ୍ୟରୁ ୯୭ ଜଣ ବିନଷ୍ଟ ହେଲେ । ପୁତ୍ର ବଧରେ କ୍ଷୋଭିତ ହୋଇ କୁବଳୟାଶ୍ୱ ଧୁନ୍ଧୁକୁ ଆକ୍ରମଣ କଲେ । ସେ ଧୁନ୍ଧୁକୁ ହତ୍ୟାକରି ସେହିଦିନୁ ଧୁନ୍ଧୁମାର ଆଖ୍ୟାପ୍ରାପ୍ତ ହୋଇଥିଲେ ।

(କୁବଳୟାଶ୍ୱ ଦେଖ)

**ଧୂମକେତୁ**—ରାବଣର ଏକ ସୈନ୍ୟାଧକ୍ଷ ।

**ଧୂମାବତୀ**—ଦଶ ମହାବିଦ୍ୟା ଅନ୍ତର୍ଗତ ଏକ ବିଦ୍ୟା । ଏହାଙ୍କର ଉତ୍ପତ୍ତି ବିବରଣ ତନ୍ତ୍ରଶାସ୍ତ୍ରରୁ ଜଣାଯାଏ । ଏକଦା ପାର୍ବତୀ କ୍ଷୁଧାତୁରା ହୋଇ ମହାଦେବଙ୍କ ନିକଟରେ ଖାଦ୍ୟ ପ୍ରାର୍ଥନା କଲେ । ମାତ୍ର ଶିବ ଖାଦ୍ୟ ଦାନରେ ଅସମର୍ଥ ହେଲେ । କ୍ଷୁଧାତୁରା ପାର୍ବତୀ କିନ୍ତୁ କ୍ଷୁଧାଜ୍ୱାଳା ସହି ନ ପାରି ମହାଦେବଙ୍କୁ ଗ୍ରାସ କରିବାକୁ ବସିଲେ । ଏହା ଦ୍ୱାରା ପାର୍ବତୀଙ୍କ ଦେହରୁ ଧୂମ ନିର୍ଗତ ହେବାକୁ ଲାଗିଲା । ସେହି ଦିନଠାରୁ ସେ ଧୂମାବତୀ ଆଖ୍ୟା ପାଇଲେ । ସେତେବେଳେ ମହାଦେବ ମାୟା ବଳରେ ଶରୀର କମାଇ କହିଲେ—'ଦେବୀ, ତୁମେ ଯେତେବେଳେ ମୋତେ ଭକ୍ଷଣ କରିଛ, ସେତେବେଳୁ ତୁମେ ବିଧବା ହୋଇସାରିଲଣି । ତେଣୁ ତୁମକୁ ବିଧବା ବେଶରେ ରହିବାକୁ ହେବ । ଏହି ବେଶରେ ଲୋକମାନେ ତୁମକୁ ପୂଜା କରିବେ ଏବଂ ତୁମର ନାମ ଧୂମାବତୀ ହେବ । କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ପୁରଶ୍ଚରଣାଦିର

ସିଦ୍ଧି ନିମିତ୍ତ ଧୂମାବତୀଙ୍କ ମନ୍ତ୍ର ଜପାଦିର ବିଧି ଅଛି । (ତନ୍ତ୍ର) ଏହାଙ୍କର ରୂପବର୍ଣ୍ଣନା ଏହିପରି—ବିବର୍ଣ୍ଣା, ଚଞ୍ଚଳା, ଦୁଷ୍ଟା, ଦୀର୍ଘା, ମଳିନବସ୍ତ୍ରା, ବିମୁକ୍ତକୁନ୍ତଳା, ରୂକ୍ଷା, ବିଧବା, ବିରଳଦନ୍ତା, କାକଧ୍ୱଜରଥାରୂଢା, ବିଲମ୍ବିତ ପୟୋଧରା, ଶୂର୍ପହସ୍ତା, ଅତିରୁକ୍ଷାକ୍ଷା, ଧୃତହସ୍ତବରାନ୍ୱିତା, ଦୀର୍ଘ ନାସିକା, ଅତିକୁଟିଳା, କୁଟିଳେକ୍ଷଣା, କ୍ଷୁତ୍ପିପାସାର୍ଦ୍ଦିତା, ନିତ୍ୟଭୟପ୍ରଦା ଓ କଳହାସ୍ପଦା ।

**ଧୂମ୍ରଲୋଚନ**—ଦାନବେନ୍ଦ୍ର ଶୁମ୍ଭର ଜଣେକ ସେନାପତି । ଧୂମ୍ରଲୋଚନ ୬୦ ହଜାର ଅସୁର ସୈନ୍ୟ ସହିତ ଦୁର୍ଗାଙ୍କ ସଙ୍ଗେ ଯୁଦ୍ଧ କରିବା ଅଭିପ୍ରାୟରେ ଯାଇଥିଲା । ମାତ୍ର ମହାମାୟାଙ୍କ ଉଗ୍ର ହୁଙ୍କାରରେ ସସୈନ୍ୟେ ଧ୍ୱଂସ ହୋଇଥିଲା । (ଚଣ୍ଡୀ ସପ୍ତଶତୀ)

**ଧୃତରାଷ୍ଟ୍ର**—(୧) ଶାନ୍ତନୁ ନନ୍ଦନ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରଜ ପୁତ୍ର । କାଶୀରାଜଙ୍କ କନ୍ୟା ଅମ୍ବିକା ଏହାଙ୍କର ଜନନୀ । କାଶୀରାଜଙ୍କର ଅପର କନ୍ୟା ଅମ୍ବାଳିକା ବିଚିତ୍ରବୀର୍ଯ୍ୟଙ୍କୁ ମଧ୍ୟ ବିବାହ କରିଥିଲେ । ଅପୁତ୍ରିକ ଅବସ୍ଥାରେ ବିଚିତ୍ରବୀର୍ଯ୍ୟ ଦେହତ୍ୟାଗ କରିବାରୁ ତାଙ୍କର ମାତା ସତ୍ୟବତୀ ବଂଶ ଲୋପ ହୋଇଯିବ ବୋଲି ଚିନ୍ତିତା ହେଲେ । ସେଥିଲାଗି ସେ ତାଙ୍କ କାନୀନପୁତ୍ର କୃଷ୍ଣ-ଦ୍ୱୈପାୟନଙ୍କୁ ସ୍ମରଣ କଲେ । ବ୍ୟାସଦେବ ଉପସ୍ଥିତ ହୋଇ ଜନନୀଙ୍କ କଥା ରକ୍ଷା କଲେ । ସଙ୍ଗମ ସମୟରେ ମହର୍ଷିଙ୍କ ବୀଭତ୍ସ ରୂପ ଦେଖି ଅମ୍ବାଳିକା ପାଣ୍ଡୁବର୍ଣ୍ଣା ବିଶିଷ୍ଟା ହେବାରୁ ତାଙ୍କଠାରୁ ପାଣ୍ଡୁ ଜନ୍ମିଲେ ଏବଂ ଅମ୍ବିକା ଭୟରେ ଚକ୍ଷୁ ମୁଦ୍ରିତ କରିବାରୁ ଜନ୍ମାନ୍ଧ ଧୃତରାଷ୍ଟ୍ର ଜାତ ହେଲେ । ପୁଣି ଆଉଥରେ ସହବାସ କରିବା ପାଇଁ ସତ୍ୟବତୀ ପୁତ୍ରବଧୂଙ୍କୁ ଅନୁରୋଧ କଲେ । ମାତ୍ର ଅମ୍ବିକା ତାଙ୍କ ଦାସୀକୁ ଋଷିଙ୍କ ପାଖକୁ ପଠାଇ-ଦେଲେ । ଏହି ଦାସୀ ଗର୍ଭରୁ ମହାମତି ବିଦୁର ଜନ୍ମ ହୋଇଥିଲେ ।

ଧୃତରାଷ୍ଟ୍ର ଗାନ୍ଧାରରାଜ ସୁବଳଙ୍କ କନ୍ୟା ଗାନ୍ଧାରୀଙ୍କୁ ବିବାହ କରିଥିଲେ । ବ୍ୟାସଦେବଙ୍କ ବର ପ୍ରସାଦରୁ ଏହାଙ୍କର ଶହେ ପୁଅ ହେବାର କଥା । ମାତ୍ର ଗାନ୍ଧାରୀ ଦୁଇବର୍ଷ ଯାଏଁ ଗର୍ଭଧାରଣ କରି କୌଣସି ପୁତ୍ର ସନ୍ତାନ ପ୍ରସବ କଲେ ନାହିଁ । ଏଣେ କୁନ୍ତୀ ତିନୋଟି ସୁକୁମାର ପୁତ୍ର ସନ୍ତାନ ପାଇଛନ୍ତି ଶୁଣି ତାଙ୍କର ଅଶେଷ କ୍ରୋଧ ଜାତ ହେଲା । ସେ ତାଙ୍କ ଗର୍ଭକୁ ଆଘାତ କରିବାକୁ ଲାଗିଲେ । ହଠାତ୍ ଲୌହପିଣ୍ଡ ସଦୃଶ ଏକ ମାଂସପିଣ୍ଡ ତାଙ୍କ ଗର୍ଭରୁ ପ୍ରସୂତ ହେଲା । ଗାନ୍ଧାରୀ କ୍ରୋଧ ପରାୟଣା ହୋଇ ସେହି ପିଣ୍ଡଟିକୁ ନିକ୍ଷେପ କରି ଦେବାକୁ ବିଚାର କରୁଥିବାବେଳେ ହଠାତ୍ ବ୍ୟାସ

ସେଠାରେ ଉପସ୍ଥିତ ହୋଇ ଏପରି କରିବା ଉଚିତ ନୁହେଁ ବୋଲି କହିଲେ । ବ୍ୟାସଙ୍କ ପରାମର୍ଶରେ ଏହି ମାଂସ ପିଣ୍ଡକୁ ଜଳରେ ଧୋଇବା ମାତ୍ରେ ଏହା ଶହେ ଖଣ୍ଡରେ ବିଭକ୍ତ ହେଲା । ଏହି ଖଣ୍ଡଗୁଡ଼ିକ ଗୋଟିଏ ଗୋଟିଏ ଘୃତପୂର୍ଣ୍ଣ କଳସରେ ରଖାଗଲା । ଦୁଇ ବର୍ଷ ପରେ ଏହି କଳସଗୁଡ଼ିକ ମଧ୍ୟରୁ ପ୍ରଥମେ ଦୁର୍ଯ୍ୟୋଧନ ଜନ୍ମିଲେ । ଜନ୍ମିବାବେଳେ ଏହାଙ୍କର ସ୍ୱର ଠିକ୍ ଗଧ ଭଳି ଶୁଣାଗଲା । ନାନା ଦିଗରେ ଅମଙ୍ଗଳର ଚିହ୍ନ ଦୃଷ୍ଟ ହେଲା । ମହାତ୍ମା ବିଦୁର ଏହି ପୁତ୍ରକୁ ପରିତ୍ୟାଗ କରିବା ପାଇଁ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଲେ । ଅନନ୍ତର ଏକ ମାସ ପରେ ଆଉ ୯୯ଟି ପୁଅ ଓ ଦୁଃଶଳା ନାମ୍ନୀ ଏକ କନ୍ୟା ଜନ୍ମିଲା । ଧୃତରାଷ୍ଟ୍ରଙ୍କ ଶହେ ପୁଅର ନାମ ରାଜକବି କୃଷ୍ଣସିଂହକୃତ ମହାଭାରତରେ ଏପରି ନାମିତ କରାଯାଇଛି । ପ୍ରମାଣ ଯଥା—

ଦୁର୍ଯ୍ୟୋଧନ, ଦୁର୍ମର୍ଷ, କର୍ଣ୍ଣ, ଦୁଃଶାସନ
ଦୁଃଶଳ, ଦୁଃସହ ଯେ ଦୁର୍ଦ୍ଧର୍ଷ ବିକର୍ଣ୍ଣ ।

ବିବିଂଶତି, ଜରାସନ୍ଧ, ସୁଲୋଚନ
ବିନ୍ଦ, ଅନୁବିନ୍ଦ, ଯେ ଦୁର୍ଦ୍ଧର୍ଷ, ଦୁଷ୍କର୍ଣ୍ଣ ।

ଚିତ୍ର, ଉପଚିତ୍ର, ସୁବାହୁ, ଦୁର୍ମର୍ଷଣ
ଚିତ୍ରାକ୍ଷ, ଚିତ୍ରାଙ୍ଗଦ. ଦୁଷ୍ପ୍ରଧର୍ଷଣ ।

ଗୁରୁ, ସମ, ବିବିତ୍ସୁ, ବିକଟ ଦୁର୍ମଦ
ଦୁଷ୍ପ୍ରହର୍ଷ, ସୁନାଭ, ନନ୍ଦ, ଉପନନ୍ଦ ।

ଊର୍ଣ୍ଣନାଭ, ସେନାପତି, କୁଣ୍ଡୋଦର
ସୁଷେଣ, ବଳାକୀ, ସୁବର୍ମା, ମନୋହର ।

ସୁକୁଣ୍ଡଳ, ଚିତ୍ରବର୍ମା, ଯେ ଚିତ୍ରବାହୁ
ଭୀମ ବେଗ ତ ଭୀମବଳ, ଭୀମବାହୁ ।

ବଳବରଧନ, କୁଣ୍ଡାଶୀ, ଉଗ୍ରାୟୁଧ
ବିରାବୀ, ଦୃଢ଼ବର୍ମା, ତହୁଁ ଜରାସନ୍ଧ ।

କନକାୟୁ, ଦୃଢ଼କ୍ଷେତ୍ର ଯେ ପଣ୍ଡିତକ
ଉଗ୍ରଶ୍ରବା, ଉଗ୍ରସେନ ଯେ ସହସ୍ରବାକ ।

ଅପରାଜିତ, ସୋମକୀର୍ତ୍ତି, ସତ୍ୟସନ୍ଧ
ସେନାନୀ, ବିଶାଳାକ୍ଷ ପୁଣି ଦୃଢ଼ସନ୍ଧ ।

ଅନୃବର, ଦୁର୍ମୁଖ ତହୁଁ ଦୃଢ଼ହସ୍ତ
ବାତବେଗ, ସୁବର୍ଚ୍ଚା, କବଚୀ, ସୁହସ୍ତ ।

ନକ୍ଷଙ୍ଗୀ ଯେ ଆଦତ୍ୟକେତୁ, ଦଣ୍ଡଧର
ବହ୍ୱାଶୀ, ପାଶୀ, ନାଗଦନ୍ତ, ଦୁରାଧର ।

ଅଗ୍ରଯାୟୀ, ଉଗ୍ର, ଭୀମରଥ, ବୀରବାହୁ
ଅଲୋଲୁପ, ଅଭୟ, ପୁଣି ଦୀର୍ଘବାହୁ ।

ଦୀର୍ଘନେତ୍ର, ଦୃଢ଼ରଥ ଯେ ଭୀମଶର
ଅନାଧୃଷ୍ୟ, ବୀରଜ, କୁଣ୍ଡଭେଦୀ, ବୀର ।

ଚନ୍ଦ୍ରରୂପ, ଦୁଷ୍ପରାଜୟ, ଅୟୋବାହୁ
ଦୃଢ଼ାୟୁଧ, ଦୁର୍ବିମୋଚନ, ମହାବାହୁ ।

ଧନୁଗ୍ରହ, ଯେ ଚ୍ୟୂଢୋରୁ, କନକଧ୍ୱଜ
ରୌଦ୍ରକର୍ମା ମିଶିଣ ଏ ଶତ ଆତ୍ମଜ ।

(ମହାଭାରତ, ଆଦପର୍ବ)

ଗାନ୍ଧାରୀ ଯେତେବେଳେ ଦୀର୍ଘକାଳ ଯାଏଁ ଗର୍ଭକଷ୍ଟ ଭୋଗୁଥିଲେ, ସେତେବେଳେ ବୈଶ୍ୟଜାତୀୟା ଏକ ସ୍ତ୍ରୀ ଧୃତରାଷ୍ଟ୍ରଙ୍କ ସେବାରେ ନିଯୁକ୍ତ ଥିଲେ । ଧୃତରାଷ୍ଟ୍ର ଏହା ପ୍ରତି ଆକୃଷ୍ଟ ହୋଇ ଏହାର ଗର୍ଭ ସଞ୍ଚାର କଲେ । ଏହି ଗର୍ଭରୁ ଯୁଯୁତ୍ସୁ ନାମକ ପୁତ୍ର ଜନ୍ମିଥିଲେ । ଯୁଯୁତ୍ସୁ କରଣଜାତୀୟ ହୋଇଥିଲେ । କୁରୁକ୍ଷେତ୍ର ଯୁଦ୍ଧ ଅବସାନ ପରେ ଭୀମଙ୍କ ଦ୍ୱାରା ଧୃତରାଷ୍ଟ୍ରଙ୍କ ଶତପୁତ୍ର ନିହତ ହେବା ବାର୍ତ୍ତା ପାଇ ଧୃତରାଷ୍ଟ୍ର ଭୀମଙ୍କୁ ସସ୍ନେହ ଆଲିଙ୍ଗନ କରିବା ପାଇଁ ଖୋଜିଲେ । ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଲୌହ ନିର୍ମିତ ଭୀମଙ୍କର ଏକ ପ୍ରତିମୂର୍ତ୍ତି ତାଙ୍କୁ ଦିଆଗଲା । ଅନ୍ଧରାଜ କ୍ରୋଧାଲିଙ୍ଗନରେ ସେହି ଲୌହଭୀମଟିକୁ ଚୂର୍ଣ୍ଣୀଭୂତ କଲେ । ଯୁଦ୍ଧ ଶେଷ ପରେ ପାଣ୍ଡବମାନେ ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କରି ରାଜ୍ୟଭାର ଗ୍ରହଣ କରିବା ପରେ ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ସହିତ ବନଗମନ କଲେ । କିନ୍ତୁ ଛଅ ମାସ ପରେ ପ୍ରଜ୍ଜ୍ୱଳିତ ଦାବାନଳରୁ ଉଭୟେ ଉଭୟଙ୍କୁ ମୁକ୍ତ କରି ନପାରି ସେହି ଅଗ୍ନିରେ ପୋଡ଼ି ହୋଇ ମଲେ । ତାଙ୍କ ସହିତ ମନ୍ତ୍ରୀ ସଞ୍ଜୟ ମଧ୍ୟ ଯାଇଥିଲେ ମାତ୍ର ସେ ପଳାୟନ କରି କଷ୍ଟରେ ପ୍ରାଣରକ୍ଷା କଲେ । (ମହାଭାରତ)

(୨) ଏକ ନାଗର ନାମ ଧୃତରାଷ୍ଟ୍ର । କଦ୍ରୁ ଏହାଙ୍କର ମାତା । ଏହି ନାଗ ସହିତ ପାଣ୍ଡବମାନଙ୍କର ଘୋର ମନୋମାଳିନ୍ୟ ଜାତ ହୋଇଥିଲା ।

ଅର୍ଜ୍ଜୁନ ଅଶ୍ୱମେଧଯଜ୍ଞର ଅଶ୍ୱ ଧରି ମଣିପୁର ଯାଇଥିଲେ । ତଦୀୟ ପୁତ୍ର ବଭ୍ରୁବାହନ ଯଜ୍ଞାଶ୍ୱ ଅଟକାଇବାରୁ ଅର୍ଜ୍ଜୁନଙ୍କ ସହିତ ବଭ୍ରୁବାହନଙ୍କର ଯୁଦ୍ଧ ହେଲା । ଏହି ଯୁଦ୍ଧରେ ଅର୍ଜ୍ଜୁନ ସସୈନ୍ୟ ନିହତ ହେଲେ । ପତିଙ୍କ ନିଧନବାର୍ତ୍ତା ଶ୍ରବଣ କରି ବଭ୍ରୁବାହନଙ୍କ ମାତା ଚିତ୍ରାଙ୍ଗଦା ବିଳାପ କରିବାକୁ ଲାଗିଲେ । ଅର୍ଜ୍ଜୁନଙ୍କ ନାଗକନ୍ୟା ପତ୍ନୀ ଉଲୂପୀ ମଧ୍ୟ ସେଠାରେ ଉପସ୍ଥିତ ହୋଇ କାନ୍ଦିଲେ । ଉଲୂପୀଙ୍କ ପରାମର୍ଶ ଓ ମାତାଙ୍କର ଆଦେଶରେ ବଭ୍ରୁବାହନ ସଞ୍ଜୀବନ ମଣି ଆଣିବା ପାଇଁ ପାତାଳ ବା ନାଗଲୋକକୁ ଗଲେ । ଉଲୂପୀ କହିଲେ ଏହି ମଣି ସ୍ପର୍ଶରେହିଁ ଅର୍ଜ୍ଜୁନ ବଞ୍ଚି ଉଠିବେ । ଅନ୍ୟ ଦିଗରେ ଧୃତରାଷ୍ଟ୍ର ନାଗର ପରାମର୍ଶରେ ନାଗରାଜ ବାସୁକି ଏ ମଣି ଦେଲେ ନାହିଁ । ଏଥିଲାଗି ବାସୁକିଙ୍କ ସହିତ ବଭ୍ରୁବାହନଙ୍କର ଯୁଦ୍ଧ ହେଲା । ବାସୁକି ପରାସ୍ତ ହୋଇ ମଣି ଦାନ କଲେ । ନାଗଶ୍ରେଷ୍ଠ ଧୃତରାଷ୍ଟ୍ର ଏହା ଜାଣି ତାଙ୍କ ପୁତ୍ର ଦୁହିଁଙ୍କୁ ରଣକ୍ଷେତ୍ରକୁ ପଠାଇଲେ । ପିତାଙ୍କ ଉପଦେଶ ଅନୁସାରେ ଏ ଦୁଇଟିଯାକ ନାଗ କୁମାର ଅର୍ଜ୍ଜୁନଙ୍କ ମସ୍ତକ କର୍ତ୍ତନ କରି ନେଇଗଲେ । ଏଣେ ଅର୍ଜ୍ଜୁନଙ୍କର ମସ୍ତକଶୂନ୍ୟ ଦେଖି ମଣିପୁର ରାଜପ୍ରାସାଦରେ କ୍ରନ୍ଦନରୋଳ ଉଠିଲା । ଅବଶେଷରେ ଶ୍ରୀକୃଷ୍ଣଙ୍କ ଦ୍ୱାରା ନାଗ କୁମାର ଦ୍ୱୟ ନିହତ ହେଲେ ଏବଂ ଅର୍ଜ୍ଜୁନଙ୍କ ମସ୍ତକ ଉଦ୍ଧାର ହେଲା । ମସ୍ତକଟିକୁ ଅର୍ଜ୍ଜୁନଙ୍କ ଶରୀରରେ ସଂଯୋଗ କରି ଏହି ମଣି ସ୍ପର୍ଶ କଲାମାତ୍ରେ ଅର୍ଜ୍ଜୁନ ପୁଣି ଜୀଇଁ ଉଠିଲେ ।

(ଜୈମିନିଭାରତ)

(୩) ଜନମେଜୟ ରାଜାଙ୍କର ଏକ ପୁତ୍ରର ନାମ ଥିଲା ଧୃତରାଷ୍ଟ୍ର ।

**ଧୃତି**—(୧) ଷୋଡ଼ଶ ମାତୃକା ମଧ୍ୟରୁ ତ୍ରୟୋଦଶ ମାତୃକାଙ୍କ ନାମ । (୨) ଦକ୍ଷଙ୍କର ଏକ କନ୍ୟା ଓ ଧର୍ମଙ୍କ ସ୍ତ୍ରୀ । (୩) ଜୟଦ୍ରଥ ରାଜାଙ୍କର ଗୋଟିଏ ନାତିର ନାମ । (୪) ଏକ ବିଶ୍ୱଦେବା । (୫) ଚନ୍ଦ୍ରବଂଶୀୟ ବଭ୍ରୁରାଜାଙ୍କ ପୁଅ ।

**ଧୃଷ୍ଟକେତୁ**—ଚେଦିରାଜ ଶିଶୁପାଳଙ୍କ ପୁଅ । ଏ ମହାଭାରତ ଯୁଦ୍ଧରେ ପାଣ୍ଡବ ପକ୍ଷ ଅବଲମ୍ବନ କରିଥିଲେ । ଚତୁର୍ଦ୍ଦଶ ଦିନ ଯୁଦ୍ଧରେ ଦ୍ରୋଣଙ୍କ ଦ୍ୱାରା ନିହତ ହେଲେ । (ମହାଭାରତ, ଦ୍ରୋଣପର୍ବ)

**ଧୃଷ୍ଟଦ୍ୟୁମ୍ନ**—ପଞ୍ଚାଳରାଜ ଦ୍ରୁପଦଙ୍କ ପୁଅ । ମହାଭାରତ ଯୁଦ୍ଧରେ ପୁତ୍ରଶୋକାତୁର ଦ୍ରୋଣାଚାର୍ଯ୍ୟଙ୍କୁ ଧୃଷ୍ଟଦ୍ୟୁମ୍ନ ମସ୍ତକ ଛେଦନ କରି ବଧ କରିଥିଲେ । ଯୁଦ୍ଧ ଶେଷଦିନ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ପାଣ୍ଡବ ଶିବିରରେ ପ୍ରବେଶ କରି ଧୃଷ୍ଟଦ୍ୟୁମ୍ନଙ୍କୁ ମାରି ପକାଇଲେ । (ମହାଭାରତ)

**ଧେନୁକ**—ଅସୁର ବିଶେଷ । ଏହାର ଆକୃତି ଗଧ ପରି । ଏହି ନରମାଂସ ଲୋଲୁପ ରାକ୍ଷସକୁ ବଳରାମ ବଧ କରିଥିଲେ । ଥରେ ଶ୍ରୀକୃଷ୍ଣ ଓ ବଳରାମ ଗାଈ ଚରାଇ ଚରାଇ ତାଳବନରେ ଉପସ୍ଥିତ ହୋଇ ତାଳ ଝାଡ଼ିଲେ । ଏହି ବନରେ ଧେନୁକ ରାକ୍ଷସ ଥିଲା । ତାଳ ପଡ଼ିବା ଶବ୍ଦ ଶୁଣି ଧେନୁକ ସେହି ଆଡ଼କୁ ଧାଇଁ ଆସିଲା । ବଳରାମ ଏହାର ଗୋଡ଼ ଦୁଇଟା ଧରି ତାଳଗଛ ଉପରେ ପିଟି ଦେଲେ । ଏହି ଆଘାତରେ ଧେନୁକର ପ୍ରାଣ ହାନି ଘଟିଲା ।
(ଭାଗବତ ୧୦ମ ସ୍କନ୍ଧ)

**ଧୌମ, ଧୌମ୍ୟ** – ପାଣ୍ଡବମାନଙ୍କ ପୁରୋହିତ । ଏହାଙ୍କ ବଡ଼ ଭାଇ ଦେବଳ । ଚିତ୍ରରଥ ଗନ୍ଧର୍ବଙ୍କ ପରାମର୍ଶମତେ ପାଣ୍ଡବମାନେ ଧୌମ୍ୟଙ୍କୁ ପୁରୋହିତରୂପେ ବରଣ କରିଥିଲେ । ଧୌମ୍ୟ ନାରଦଙ୍କଠାରୁ ଏକ ସୂର୍ଯ୍ୟସ୍ତବ ପାଇଥିଲେ । ସେ ଯୁଧିଷ୍ଠିରଙ୍କୁ ଏହି ସ୍ତବ ଶିକ୍ଷା ଦେଇଥିଲେ । ଯୁଧିଷ୍ଠିର ଏହି ସ୍ତବ ପ୍ରସାଦରୁ ଅକ୍ଷୟତୂଣ ପ୍ରାପ୍ତ ହୋଇଥିଲେ । (ମହାଭାରତ)

(୨) ବ୍ୟାଘ୍ରପଦ ନାମକ ଋଷିଙ୍କ ପୁତ୍ର । ଶିବ ଭକ୍ତ, ଦିବ୍ୟଜ୍ଞାନସଂପନ୍ନ, ଅଜର ଓ ଅମର । ସତ୍ୟଯୁଗର ଏକ ଋଷି ।

(୩) ଆୟୋଦ ଋଷି । ଅରୁଣି, ଉପମନ୍ୟୁ ଓ ବେଦ ନାମକ ତିନି ପୁତ୍ରର ପିତା ।

(୪) ପଶ୍ଚିମ ଦିଗରେ ତାରାରୂପେ ଦେଖାଯାଉଥିବା ଏକ ଋଷି ।
(ଭାଷାକୋଷ)

**ଧ୍ରୁବ**—ରାଜା ଉତ୍ତାନପାଦଙ୍କ ପୁତ୍ର । ପ୍ରାଚୀନ କାଳରେ ପ୍ରିୟବ୍ରତ ଓ ଉତ୍ତାନପାଦ ନାମରେ ସ୍ୱାୟମ୍ଭୁବ ମନୁଙ୍କ ଦୁଇପୁତ୍ର ଥିଲେ । ରାଜା ଉତ୍ତାନପାଦଙ୍କର ଦୁଇଟି ରାଣୀ । ସୁନୀତି ଓ ସୁରୁଚି । ସୁରୁଚି ରାଜାଙ୍କର ଅଧିକ ସ୍ନେହପାତ୍ରୀ ଥିଲେ । ସୁନୀତିଙ୍କ ଗର୍ଭରୁ ଧ୍ରୁବ ଓ ସୁରୁଚିଙ୍କ ଗର୍ଭରୁ ଉତ୍ତମ ନାମକ ପୁତ୍ର ଜନ୍ମିଥିଲେ । ଏକଦା ରାଜା ଉତ୍ତାନପାଦ ଉତ୍ତମକୁ କୋଡ଼ରେ ଧରି ସିଂହାସନରେ ବସି ଅଛନ୍ତି, ଏମନ୍ତ ସମୟରେ ଧ୍ରୁବ ସେଠାକୁ ଆସି ପିତୃ କୋଳରେ ବସିବା ପାଇଁ ସିଂହାସନ ଉପରକୁ ଉଠିଲେ । ଗୌରବଶାଳିନୀ ସୁରୁଚି ସପତ୍ନୀ ପୁତ୍ରର ଏ ଆକାଂକ୍ଷା ଦେଖି, ସହି ନପାରି କହିଲେ—'ରେ ହତଭାଗ୍ୟ, ତୁ ତ ମୋ ଗର୍ଭରୁ ଜାତ ହୋଇନାହୁଁ । ଅକାରଣ ଏ ଉଚ୍ଚାଭିଳାଷ ପୋଷଣ କରୁଛୁ କାହିଁକି ? କେବଳ ମୋ ଗର୍ଭଜାତ ଉତ୍ତମହିଁ ଏହି ସିଂହାସନର ଯୋଗ୍ୟ ।'

ବିମାତାଙ୍କର ଏ ବାକ୍ୟବାଣରେ ଅଧୀର ହୋଇ ଧ୍ରୁବ କାନ୍ଦ କାନ୍ଦ ମାଆଙ୍କ ପାଖକୁ ଫେରି ଆସିଲେ । ସୁନୀତ ସୁକୁମାର ଧ୍ରୁବଙ୍କୁ କୋଳାଗ୍ରତ କରି କ୍ରନ୍ଦନର କାରଣ ଜିଜ୍ଞାସା କଲେ । ଧ୍ରୁବ ମାତୃ ସମୀପରେ ସକଳ ବୃତ୍ତାନ୍ତ ବର୍ଣ୍ଣନା କଲେ । ସୁନୀତ ଘନ ଘନ ଦୀର୍ଘଶ୍ୱାସ ତ୍ୟାଗ କରି ପୁଅଙ୍କୁ ବୁଝାଇ କହିଲେ—'ବାବୁ, ଏଥିଲାଗି ଅନ୍ୟ କାହାକୁ ଦୋଷ ଦେ ନାହିଁ । ଯେ ପରକୁ ଦୁଃଖ ଦିଏ, ସେ ଆପଣା ପ୍ରଦତ୍ତ ଦୁଃଖହିଁ ପରିଣାମରେ ଭୋଗ କରେ । ଆଉ ଦେଖ୍ ବାବୁ, ତୋର ବିମାତାହିଁ ପ୍ରକୃତ କଥା କହିଛନ୍ତି । ତୁ ହତଭାଗ୍ୟ, ମୋ ଗର୍ଭରୁ ଜାତ ହୋଇ ମୋରି ପରି ପିତାଙ୍କର ବିରାଗଭାଜନ ହୋଇଅଛୁ । ସୁନୀତ ପୁଣ୍ୟବତୀ, ସେ ସ୍ୱାମୀଙ୍କର ସ୍ନେହଭାଜନ ହୋଇଛି । ତା ଗର୍ଭରୁ ଉତ୍ତମ ଜାତ ହେବା ଯୋଗେ ସେ ରାଜାସନର ପ୍ରକୃତ ଦାୟାଦରୂପେ ପ୍ରଜାମାନଙ୍କ ଦ୍ୱାରା ପୂଜିତ ହେବ । ଯଦି ବିମାତାର ବାକ୍ୟ ତୋର ଏକାନ୍ତ ଅସହ୍ୟ ହେଉଛି ତେବେ ବାବୁ ମୋର ଇଚ୍ଛା ତପସ୍ୟା କରି ପୁଣ୍ୟ ସଞ୍ଚୟ କର । ତୋ ମନ ସର୍ବଦା ଧର୍ମପ୍ରବଣ ହେଉ, ନିବିଷ୍ଟ ମନରେ ହରିଙ୍କ ଆରାଧନା କଲେ ସେ ତୋତେ ସକଳ କଥା ଦେଇପାରିବେ । ତୁ ତାଙ୍କରି କୃପାରୁ ଉତ୍ତମ ପରି ସମ୍ପତ୍ତିଶାଳୀ, ଭାଗ୍ୟବାନ ହୋଇପାରିବୁ । ବାବୁ, ସେହି ପଦ୍ମପଲାଶଲୋଚନ ହରିଙ୍କ ବ୍ୟତୀତ କେହି ତୋର ଏ ଦୁଃଖ ଦୂର କରି ପାରିବେନାହିଁ ।' ଜନନୀଙ୍କର ଏ ବିଳାପ ଓ ପ୍ରାର୍ଥନାପୂର୍ଣ୍ଣ ବାକ୍ୟ ଶ୍ରବଣ କରି ଧ୍ରୁବଙ୍କ ମନରେ ଭାବାନ୍ତର ଜାତ ହେଲା । ସେ କହିଲେ—'ମାଆ, ତୁମର ଏହି ଉପଦେଶ ଲାଭ କରି ମୁଁ ବର୍ତ୍ତମାନ ପଦ୍ମପଲାଶଲୋଚନ ହରିଙ୍କ ଅନ୍ୱେଷଣରେ ଚାଲିଲି । ମୋତେ ବିଦାୟ ଦିଅ ।' ମାଆ ସାତ ବର୍ଷର ପୁଅର ଏ ଅଭୂତ ଧୀଶକ୍ତି ଦେଖି ପ୍ରମାଦ ଗଣିଲେ । ସେ ତାଙ୍କୁ ବୁଝାଇ ସୁଆଇ ଶୁଆଇ- ପକାଇଲେ । ମାତ୍ର ଧ୍ରୁବଙ୍କୁ ନିଦ୍ରା ହେଲାନାହିଁ । ଜନନୀ ନିଦ୍ରିତ ହୁଅନ୍ତେ ସେ ସେହି ରାତ୍ରିରେ ଗୃହତ୍ୟାଗ କରି ଘୋର ଅରଣ୍ୟକୁ ଚାଲିଗଲେ । ସେ ପୂର୍ବ ଦିଗକୁ ଗମନ କରି ମରୀଚ ପ୍ରଭୃତ ସପ୍ତର୍ଷିଙ୍କ ସାକ୍ଷାତ ଲାଭ କଲେ । ଲିଙ୍ଗପୁରାଣ ମତେ ଧ୍ରୁବଙ୍କର ବିଶ୍ୱାମିତ୍ରଙ୍କ ସହିତ ଓ ଭାଗବତ ମତେ ନାରଦଙ୍କ ସହିତ ସାକ୍ଷାତ ହେଲା ବୋଲି ଜଣାଯାଏ । ସେହିମାନଙ୍କଠାରୁ ଧ୍ରୁବ ତପସ୍ୟା ବିଷୟକ ଉପଦେଶ ଗ୍ରହଣ କରି ବିଷ୍ଣୁ ମନ୍ତ୍ର ଜପ କଲେ । ଧ୍ରୁବ ଯମୁନା ତୀରସ୍ଥ ମଧୁବନରେ ତପସ୍ୟା ଆରମ୍ଭ କଲେ । ରାମାୟଣ ପ୍ରସିଦ୍ଧ ଶତ୍ରୁଘ୍ନ ଏହିଠାରେ ମଧୁରାକ୍ଷସ ପୁତ୍ର ଲବଣକୁ ବଧ କରି ମଥୁରାପୁରୀ ସ୍ଥାପନ କରିଥିଲେ । ଇନ୍ଦ୍ରାଦି ଦେବତାମାନେ ଧ୍ରୁବଙ୍କ ତପସ୍ୟା ଭଗ୍ନ କରିବାକୁ ଚେଷ୍ଟା କଲେ ମଧ୍ୟ ଧ୍ରୁବ ଜୟୀ ହେଲେ । ଧ୍ରୁବ ବିଷ୍ଣୁଙ୍କ ସାକ୍ଷାତ ଲାଭ କରି ନିଜର ଅଭିଳାଷ ପୂର୍ଣ୍ଣ

କଲେ । ଉତ୍ତାନପାଦ ବାଳଭକ୍ତ ଧ୍ରୁବଙ୍କୁ ରାଜ୍ୟ ଅର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କଲେ । ଇତଃପୂର୍ବରୁ ଉତ୍ତମ ଯକ୍ଷମାନଙ୍କ ସହିତ ଯୁଦ୍ଧ କରି ନିହତ ହୋଇଥିଲେ । ଧ୍ରୁବ ଶିଶୁମାରଙ୍କ କନ୍ୟା ଭ୍ରାମୀଙ୍କୁ ବିବାହ କରିଥିଲେ । ଧ୍ରୁବଙ୍କର ଅପର ଭାର୍ଯ୍ୟାଙ୍କ ନାମ ଇଳା । ଇଳାଙ୍କ ଗର୍ଭରୁ ଉତ୍କଳ ଏବଂ ଭ୍ରାମୀଙ୍କ ଗର୍ଭରୁ କଳା ଓ ବତ୍ସର ନାମକ ଦୁଇ ପୁତ୍ର ଜନ୍ମିଥିଲେ । ଭ୍ରାତୃଘାତକ ଯକ୍ଷମାନଙ୍କ ସହିତ ଧ୍ରୁବ ଯୁଦ୍ଧ ଆରମ୍ଭ କଲେ । ମାତ୍ର ପିତାମହ ମନୁ ଏଥିରୁ ନିବୃତ୍ତ ହେବାକୁ କହିଲେ । ଯକ୍ଷରାଜ କୁବେର ଧ୍ରୁବଙ୍କ ଉପରେ ତୃପ୍ତ ହୋଇ ବରଦାନ କଲେ । ୩୬ ହଜାର ବର୍ଷ ଯାଏଁ ଧ୍ରୁବ ରାଜତ୍ୱ କରିଥିଲେ । ତାଙ୍କ ପୁତ୍ର ଉତ୍କଳଙ୍କ ନାମାନୁସାରେ ଆମ ଓଡ଼ିଶାର ନାମ ଉତ୍କଳ ହେବା କଥା କୌଣସି କୌଣସି ପୁରାଣରେ ଦୃଷ୍ଟ ହୁଏ ।

(ଭାଗବତ, ବିଷ୍ଣୁ ଓ ଲିଙ୍ଗପୁରାଣ)





**ନକୁଳ**—ପାଣ୍ଡୁଙ୍କ କ୍ଷେତ୍ରଜ ପୁତ୍ର । ପାଣ୍ଡୁଙ୍କ ମହିଷୀ ମାଦ୍ରୀଙ୍କ ଗର୍ଭରୁ ଅଶ୍ୱିନୀକୁମାର ଯୁଗଳଙ୍କ ଔରସରେ ଏହାଙ୍କର ଜନ୍ମ । ପାଣ୍ଡୁ ଶାପଗ୍ରସ୍ତ ହୋଇ ଦୁଇଟିଯାକ ପତ୍ନୀ (କୁନ୍ତୀ ଓ ମାଦ୍ରୀ)ଙ୍କ ସହିତ ବନବାସ କରିଥିଲେ । ଏହି ସମୟରେ ଦୁର୍ବାସା ପ୍ରଦତ୍ତ ମନ୍ତ୍ର ପ୍ରଭାବରେ କୁନ୍ତୀଙ୍କ ଗର୍ଭରେ ତିନି ପୁତ୍ର ଜନ୍ମ ହେଲେ । ଏହା ଦେଖି ମାଦ୍ରୀ ସ୍ୱାମୀଙ୍କ ନିକଟରେ ସନ୍ତାନ ପ୍ରାର୍ଥନା କଲେ । ପାଣ୍ଡୁଙ୍କ ଅନୁରୋଧକ୍ରମେ କୁନ୍ତୀ ମାଦ୍ରୀଙ୍କୁ ଦୁର୍ବାସାଲବ୍ଧ ମନ୍ତ୍ର ପ୍ରଦାନ କଲେ । ମାଦ୍ରୀ ଅଶ୍ୱିନୀକୁମାର ଯୁଗଳଙ୍କୁ ସ୍ମରଣ କରିବାରୁ ଏହି ମନ୍ତ୍ର ପ୍ରଭାବରେ ନକୁଳ ଓ ସହଦେବଙ୍କୁ ଗର୍ଭରେ ଧାରଣ କଲେ । ନକୁଳ ଓ ସହଦେବ ଅଜ୍ଞାତ ବନବାସ ସମୟରେ ମତ୍ସ୍ୟରାଜ ବିରାଟଙ୍କ ଭବନରେ ତନ୍ତ୍ରୀପାଳ ନାମ ଧାରଣ କରି ଗୋରକ୍ଷାରେ ନିଯୁକ୍ତ ଥିଲେ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସମୟରେ ନକୁଳ ଦଶାର୍ଣ୍ଣ ଓ ମାଳବ ପ୍ରଭୃତି ଏବଂ ସମୁଦ୍ର ତୀରବର୍ତ୍ତୀ ଅପର ଦେଶ ଜୟକରି

ପଞ୍ଚନଦ ପ୍ରଦେଶରେ ଉପନୀତ ହୋଇଥିଲେ । ତତ୍କାଳୀନ ପଞ୍ଚନଦ (ବର୍ତ୍ତମାନ ପଞ୍ଜାବ) ଅମର ପର୍ବତ ଓ ଦ୍ୱାରପାଳ ପ୍ରଭୃତି ଦେଶ ସେ ଜୟ କରିଥିଲେ । ଯାଦବମାନେ ଅଧୀନତା ସ୍ୱୀକାର କରିବା ପରେ ସେ ଭାରତର ଉତ୍ତର-ପଶ୍ଚିମସ୍ଥ ମ୍ଲେଚ୍ଛ, ପହ୍ଲବ ପ୍ରଭୃତି ଅସଭ୍ୟ ଜାତୀୟ ଲୋକମାନଙ୍କୁ ପରାସ୍ତ କରି ଇନ୍ଦ୍ରପ୍ରସ୍ଥକୁ ଫେରିଲେ । ନକୁଳ ଚେଦି ରାଜକନ୍ୟା କରେଣୁମତୀଙ୍କୁ ବିବାହ ହୋଇଥିଲେ । କରେଣୁମତୀଙ୍କ ଗର୍ଭରୁ ନକୁଳଙ୍କର ନିରମିତ୍ର ନାମକ ପୁତ୍ର ଜାତ ହୋଇଥିଲା ।

**ନକ୍ଷତ୍ର**—ଆକାଶରେ ରାତିରେ ଦେଖାଯିବା ଚନ୍ଦ୍ର ଛଡ଼ା ଆଉ ଉଜ୍ଜ୍ୱଳ ଜ୍ୟୋତିଷ୍କମାନଙ୍କୁ ତାରା କହନ୍ତି । ସେଥି ମଧ୍ୟରେ ପାଞ୍ଚଗୋଟି ଜ୍ୟୋତିଷ୍କ ଗ୍ରହ ଓ ଅନ୍ୟ ସମସ୍ତେ ତାରା । ତାରାଗଣ ଆମ୍ଭମାନଙ୍କ ଆଖିକୁ ଛୋଟ ଦେଖାଗଲେ ସୁଦ୍ଧା ସେମାନେ ସୂର୍ଯ୍ୟ ପରି ବା ସୂର୍ଯ୍ୟଠାରୁ ବଡ଼ । ସୌରଜଗତ୍ ପରି ପ୍ରତ୍ୟେକ ତାରାର ଗୋଟିଏ ଗୋଟିଏ ଜଗତ୍ ଅଛି । ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ଯେତେ ଦୂରରେ ଅଛନ୍ତି ତାରାମାନେ ତଦପେକ୍ଷା ବହୁ ଦୂରରେ ଅଛନ୍ତି । କୌଣସି କୌଣସି ତାରା ପୃଥିବୀଠାରୁ ଏତେ ଦୂରରେ ଅଛନ୍ତି ଯେ ସେମାନଙ୍କର ଆଲୋକ ପ୍ରତି ସେକେଣ୍ଡରେ ୧ ଲକ୍ଷ ୮୩ ହଜାର ମାଇଲ୍ ଗତି କରି ପୃଥିବୀରେ ପହଞ୍ଚିବାକୁ ୪ଶହ ବର୍ଷ ଲାଗେ । ପୃଥିବୀର ଖୁବ୍ ନିକଟବର୍ତ୍ତୀ ତାରାର ଆଲୋକ ପୃଥିବୀରେ ପହଞ୍ଚିବାକୁ ୩ ବରଷ ଲାଗେ । ପୃଥିବୀଠାରୁ ସୂର୍ଯ୍ୟ ଯେତେ ଦୂରରେ ଅବସ୍ଥିତ କୌଣସି କୌଣସି ତାରା ତହିଁ ଅପେକ୍ଷା ୨୦ ହଜାର ୬ ଶହ ଗୁଣ ଦୂରରେ ଅଛନ୍ତି । ସୂର୍ଯ୍ୟଙ୍କ ଚାରିପାଖେ ଯେଉଁପରି ପୃଥିବୀ ଓ ଗ୍ରହମାନେ ବୁଲୁଅଛନ୍ତି ସେହିପରି ଗୋଟିଏ ଗୋଟିଏ ତାରାର ଚାରିପାଖେ ଗୁଡ଼ିଏ ଗ୍ରହ ବୁଲୁଅଛନ୍ତି । ଏପରି ଅଗଣିତ ସୌର ଜଗତ୍ ସମ୍ମିଳିତ ବିଶ୍ୱ-ବ୍ରହ୍ମାଣ୍ଡ କି ପ୍ରକାଣ୍ଡ ତାହା କଳ୍ପନାରେ ସୁଦ୍ଧା ଠଉରାଇ ହେବ ନାହିଁ । (ହିନ୍ଦୀ ଶବ୍ଦସାଗର)

୨ । ତାରାପୁଞ୍ଜ (Constellation of Stars) କେତେକ ତାରାପୁଞ୍ଜ ନକ୍ଷତ୍ରରୂପେ ଓ କେତେକ ରାଶି ରୂପେ କଳ୍ପିତ ଓ ଆଉ କେତେକ ନକ୍ଷତ୍ରକୁ ମନୁଷ୍ୟର କଳ୍ପନାନୁସାରେ ବା ପୌରାଣିକ ଉପାଖ୍ୟାନମତେ ଭିନ୍ନ ଭିନ୍ନ ନାମ ଦିଆଯାଇଅଛି ।

୩ । ହିନ୍ଦୁ ଜ୍ୟୋତିଷୋକ୍ତ ୨୭ ଗୋଟି ତାରା ବା ତାରାପୁଞ୍ଜ—ଯାହାଙ୍କ ପାଖ ଦେଇ ଚନ୍ଦ୍ରମା ଗତି କରନ୍ତି । ସେହି ୨୭ ନକ୍ଷତ୍ରର ନାମ ଯଥା--ଅଶ୍ୱିନୀ,

ଦ୍ୱିକା, କୃତ୍ତିକା, ରୋହିଣୀ, ମୃଗଶିରା, ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା, ମଘା, ପୂର୍ବଫାଲ୍‌ଗୁନୀ, ଉତ୍ତର ଫାଲ୍‌ଗୁନୀ, ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା, ଅନୁରାଧା, ଜ୍ୟେଷ୍ଠା, ମୂଳା, ପୂର୍ବାଷାଢ଼ା, ଉତ୍ତରାଷାଢ଼ା, ଶ୍ରବଣା, ଧନିଷ୍ଠା, ଶତଭିଷା, ପୂର୍ବଭାଦ୍ରପଦ, ଉତ୍ତରଭାଦ୍ରପଦ ଓ ରେବତୀ ।

ନକ୍ଷତ୍ରମାନଙ୍କ ସମ୍ପର୍କରେ ବିଶେଷ ବିବରଣୀ — ପୃଥିବୀ ବର୍ଷକେ ଥରେ ସୂର୍ଯ୍ୟଙ୍କର ଚାରିପାଖେ ବୁଲି ଆସେ । କିନ୍ତୁ ଜ୍ୟୋତିଷ ଗଣନାର ସୁବିଧା ପାଇଁ ପଣ୍ଡିତମାନେ କଳ୍ପନା କରିଅଛନ୍ତି ଯେ ସମୁଦାୟ ଆକାଶ ବା ଖ ଗୋଳରେ ଥାଇ ସୂର୍ଯ୍ୟ ୧୨ ମାସ ବା ୩୬୫ ଦିନରେ ବା ଏକ ସୌର ବର୍ଷରେ ପୃଥିବୀର ଚାରିଆଡ଼େ ଥରେ ଘୂରି ଆସନ୍ତି । ବର୍ଷକ ୧୨ ମାସ ଥିବାରୁ ଖ-ଗୋଳ (୩୬୦ ଡିଗ୍ରୀ)କୁ ୧୨ଭାଗରେ ବିଭକ୍ତ କରାଯାଇଅଛି । ଏହି ପ୍ରତ୍ୟେକ ଭାଗ ୩୦ ଡିଗ୍ରୀ ଓ ପ୍ରତ୍ୟେକ ୩୦ ଡିଗ୍ରୀ ପରିମିତ ସୀମା ମଧ୍ୟରେ ଦେଖାଯାଉଥିବା କେତେକ ଉଜ୍ଜ୍ୱଳ ନକ୍ଷତ୍ରମାନଙ୍କୁ ଯୋଗ କରି ଗୋଟିଏ ଗୋଟିଏ ଜୀବ (ଯଥା—ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳ, ବିଛା, ଧନୁ, ମକର, କୁମ୍ଭ ଓ ମୀନ) ବା ବସ୍ତୁ (ଯଥା—ତୁଳାଯନ୍ତ୍ର, ଧନୁ, କୁମ୍ଭ)ର ଛବି କଳ୍ପନା ସାହାଯ୍ୟରେ ଅଙ୍କିତ କରାଯାଇ ସେହି ନକ୍ଷତ୍ରମାନଙ୍କୁ ସେହି ସେହି ଜୀବ ବା ବସ୍ତୁ ନାମରେ ଡକା ଯାଇଅଛି । ଉଦାହରଣ ସ୍ୱରୂପ ଦେଖାଯିବ ଯେ ଯେଉଁ ୩୦ ଡିଗ୍ରୀ ସୀମା ମଧ୍ୟରେ ବିଛାରାଶି ଅବସ୍ଥିତ, ସେଥିରେ ଥିବା ଉଜ୍ଜ୍ୱଳ ତାରାଗୁଡ଼ିକ ଯୋଗ କଲେ ଗୋଟିଏ କଙ୍କଡ଼ା ବିଛାର ରୂପ କଳ୍ପିତ ହୋଇ ପାରିବ । ଏଥିପାଇଁ ଉକ୍ତ ୩୦ ଡିଗ୍ରୀକୁ ବିଛାରାଶି ନାମରେ ଡକାଯାଏ । ଏହାହିଁ ରାଶିମାନଙ୍କର ନାମକରଣ ।

ଚନ୍ଦ୍ର ପୃଥିବୀର ଚାରିଆଡ଼େ ୩୦ ଦିନରେ ଥରେ ଘୂରି ଆସନ୍ତି । ଏଥିପାଇଁ ଚାନ୍ଦ୍ରମାନ ମାସକ ୩୦ ଦିନ ଓ ଚାନ୍ଦ୍ରମାନ ବର୍ଷକ ୩୬୦ ଦିନ ।

ପ୍ରତ୍ୟେକ ନକ୍ଷତ୍ର ପୃଥିବୀର ଚାରିଆଡ଼େ ୨୭ ଦିନରେ ଥରେ ଘୂରି ଆସେ । ଏଥିପାଇଁ ନାକ୍ଷତ୍ରିକ ମାସ ୨୭ ଦିନ । ନକ୍ଷତ୍ରମାନଙ୍କୁ ହିନ୍ଦୁ ଜ୍ୟୋତିଷିକମାନେ ୨୭ ଗୋଟି ସ୍ୱତନ୍ତ୍ର ତାରକା ବା ତାରକାପୁଞ୍ଜରେ ବିଭକ୍ତ କରି ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ନାମ ଦେଇ ଅଛନ୍ତି । ନକ୍ଷତ୍ର-ମାନଙ୍କ ଅବସ୍ଥିତି ବିଷୟ ଭାଗବତ ୫ମ ସ୍କନ୍ଧ ୨୩ ଅଧ୍ୟାୟରେ ବିବୃତ ହୋଇଅଛି । ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପରି ନକ୍ଷତ୍ରମାନେ ପୂର୍ବରେ ଉଦିତ ହୋଇ ପଶ୍ଚିମରେ ଅସ୍ତ ଯାଆନ୍ତି । ସବୁ ନକ୍ଷତ୍ର ଆକାଶର ଉତ୍ତର ଦିଗରେ ଥିବା

ଧ୍ରୁବ ନକ୍ଷତ୍ରକୁ କେନ୍ଦ୍ର (ବା କେଙ୍ଗଳାଗ୍ର ମେଖୀଶୁଣ୍ଡ) କରି ତାହାର ଚାରିଆଡ଼େ ପୂର୍ବରୁ ପଶ୍ଚିମକୁ ଘାଉଁରିଯାଇ ବୁଲୁଅଛନ୍ତି । ଧ୍ରୁବ ନକ୍ଷତ୍ର ପୃଥିବୀର ଉତ୍ତରମେରୁର ଠିକ୍ ମୁଣ୍ଡ ଉପର ଆକାଶରେ ଅବସ୍ଥିତ । ଏହା ସର୍ବଦା ଆକାଶରେ ଏକ ସ୍ଥାନରେ ସ୍ଥିର ହୋଇଥାଏ । ଏହାର ଉଦୟ ବା ଅସ୍ତ ନାହିଁ । ନାବିକମାନେ ଓ ମରୁଭୂମିରେ ଭୁଆଁ ବୁଲିବା ବାଟୋଇମାନେ ଏହି ଧ୍ରୁବ ନକ୍ଷତ୍ରକୁ ଦେଖି ଅକୂଳ ସମୁଦ୍ରରେ ଓ ଅପନ୍ତରା ମରୁଭୂମିରେ ରାତିରେ ବାଟ ନିର୍ଣ୍ଣୟ କରନ୍ତି । ଏ ଧ୍ରୁବ ନକ୍ଷତ୍ରକୁ ଚିହ୍ନିବା ସହଜ । ଉତ୍ତରାକାଶରେ ସପ୍ତର୍ଷିମଣ୍ଡଳ ନାମକ ୭ଟି ଉଜ୍ଜ୍ୱଳ ନକ୍ଷତ୍ର ବିଶିଷ୍ଟ ଗୋଟିଏ ନକ୍ଷତ୍ରପୁଞ୍ଜ ଅଛି । ଏହି ମଣ୍ଡଳର ମୁଣ୍ଡ ପାଖର ଦୁଇଟି ନକ୍ଷତ୍ରକୁ ଯୋଗ କରି ସେହି ଗାରକୁ ବଢ଼ାଇ ଦେଲେ ତାହା ଧ୍ରୁବ ତାରା ପାଖ ଦେଇ ଯିବ । ଥରେ ଧ୍ରୁବକୁ ଓ ସପ୍ତର୍ଷିମଣ୍ଡଳକୁ ଚିହ୍ନି ରଖିଲେ ତାରାମାନଙ୍କୁ ଚିହ୍ନିବାକୁ ସହଜ ହୁଏ । ପ୍ରତିଦିନ ପ୍ରତି ନକ୍ଷତ୍ର ପୂର୍ବଦିନ ଅପେକ୍ଷା ୪ ମିନଟ୍ ଲେଖାଏଁ ଡେରି କରି ଉଦିତ ହୁଏ, ଅର୍ଥାତ୍ ଆଜି ଯେଉଁ ତାରା ସନ୍ଧ୍ୟା ୭ଟା ବେଳେ ଉଇଁଛି କାଲି ସେ ତାରା ଉଇଁଲାବେଳକୁ ୭ଟା ବାଜି ୪ ମିନଟ୍ ହୋଇଥିବ । ସୂର୍ଯ୍ୟ ଯେଉଁ ରାଶିରେ ଯେଉଁ ମାସରେ ଅବସ୍ଥାନ କରୁଥାଆନ୍ତି, ସୌର ମାସର ନାମକରଣ ସେହି ରାଶିର ନାମ ଅନୁସାରେ ହୁଏ । ଯେଉଁ ଚାନ୍ଦ୍ର ମାସର ପୂର୍ଣ୍ଣିମାର ସନ୍ଧ୍ୟାରେ ଚନ୍ଦ୍ର ଯେଉଁ ନକ୍ଷତ୍ର ସଙ୍ଗେ ଉଦିତ ହୁଅନ୍ତି ସେହି ନକ୍ଷତ୍ରର ନାମ ଅନୁସାରେ ତତ୍ ପୂର୍ବବର୍ତ୍ତୀ ଚାନ୍ଦ୍ରମାସର ନାମକରଣ ହୁଏ ।

ଯଥା—ବୈଶାଖ ପୂର୍ଣ୍ଣିମାରେ ଚନ୍ଦ୍ର ବିଶାଖା ନକ୍ଷତ୍ର ସଙ୍ଗେ ଉଦିତ ହୁଅନ୍ତି ବୋଲି ପୂର୍ବବର୍ତ୍ତୀ ମାସର ନାମ ବୈଶାଖ । ଆକାଶରେ ନକ୍ଷତ୍ର ଓ ନକ୍ଷତ୍ରପୁଞ୍ଜମାନଙ୍କ ଅବସ୍ଥିତିମାନଙ୍କୁ ଧ୍ରୁବର ଅବସ୍ଥିତି ସଙ୍ଗେ ଓ ପରସ୍ପରର ଅବସ୍ଥିତି ସଙ୍ଗେ ତୁଳନା କଲେ ଧ୍ରୁବର ଅବସ୍ଥିତି ଅପରିବର୍ତ୍ତନୀୟ ବୋଲି ଜଣାଯାଏ । କିନ୍ତୁ ଆକାଶରେ ଆଉ କେତେଗୁଡ଼ିଏ ଉଜ୍ଜ୍ୱଳବସ୍ତୁ ବେଳେ ବେଳେ ଦେଖା ଦିଅନ୍ତି; ସେମାନଙ୍କ ଗତି ଓ ଅବସ୍ଥିତି ନିୟମିତ ନୁହେଁ । ଏମାନଙ୍କୁ ଗ୍ରହ ବୋଲିଯାଏ । ଏମାନେ ତାରା ନୁହନ୍ତି କିନ୍ତୁ ତାରା ପରି ଉଜ୍ଜ୍ୱଳ ଦେଖାଯିବାରୁ ଲୋକେ ଏହାଙ୍କୁ ବେଳେ ବେଳେ ଭ୍ରମରେ ତାରା ବୋଲି କହନ୍ତି । ଯଥା—ପାହାନ୍ତି ତାରା ବା ପହରଛଳିଆ ତାରା: ଏହା ଶୁକ୍ର ନାମରେ ଗୋଟିଏ ଗ୍ରହ ; ବୃହସ୍ପତି, ଶନି, ବୁଧ, ମଙ୍ଗଳ ମଧ୍ୟ ଗୋଟିଏ ଲେଖାଏଁ ଗ୍ରହ । ଆଖିକୁ ଦେଖାଯିବା ଗ୍ରହମାନଙ୍କ ସଂଖ୍ୟା ୫,

ଯଥା—ଶୁକ୍ର, ବୃହସ୍ପତି, ବୁଧ, ଶନି ଓ ମଙ୍ଗଳ । ଚନ୍ଦ୍ରର କକ୍ଷ ଓ କ୍ରାନ୍ତି ରେଖାର ଅଧଃପାତ ବିନ୍ଦୁକୁ କେତୁ ଓ ଊର୍ଦ୍ଧ୍ୱପାତ ବିନ୍ଦୁକୁ ରାହୁ ବୋଲି ଦୁଇଟି ଗ୍ରହରୂପେ ହିନ୍ଦୁ ଜ୍ୟୋତିଷୀମାନେ ଗଣନା କରିଅଛନ୍ତି । ଚନ୍ଦ୍ର, ସୂର୍ଯ୍ୟ, କେତୁ, ରାହୁ ଓ ଉପରୋକ୍ତ ୫ଟି ଗ୍ରହଙ୍କୁ ହିନ୍ଦୁମାନେ ନବଗ୍ରହରୂପେ ଗଣନା କରନ୍ତି ଓ ସୂର୍ଯ୍ୟଙ୍କୁ ଗ୍ରହରାଜ କହନ୍ତି ।

ପ୍ରାଚୀନ ହିନ୍ଦୁମାନେ ଚନ୍ଦ୍ରର ଗତିପଥର ସୀମା ମଧ୍ୟରେ ଥିବା ଭିନ୍ନ ଭିନ୍ନ ନକ୍ଷତ୍ରମାନଙ୍କୁ ୨୭ଟି ନାମ ଦେଇଥିଲେ ଓ ଏ ୨୭ ନକ୍ଷତ୍ରରୁ ଅଧିକା ଅଭିଜିତ୍ ନାମରେ ଆଉ ଗୋଟିଏ ନକ୍ଷତ୍ରକୁ ଗଣୁଥିଲେ । ଏହା ଛଡ଼ା ଆକାଶର ଭିନ୍ନ ଭିନ୍ନ ଅଞ୍ଚଳରେ ଥିବା ଆଉଗୁଡ଼ିଏ ନକ୍ଷତ୍ରକୁ ହିନ୍ଦୁମାନେ ନାମ ଦେଇଥିଲେ । ହିନ୍ଦୁମାନଙ୍କ ବାରଟି ରାଶି ସଙ୍ଗେ ପ୍ରାଚୀନ ମିଶର, ଆରବ୍, ଗ୍ରୀସ ଓ ରୋମ୍‌ବାସୀମାନଙ୍କ ପ୍ରଦତ୍ତ ନାମର ସାମଞ୍ଜସ୍ୟ ଅଛି । ଯଥା—ହିନ୍ଦୁମାନଙ୍କ ସିଂହ ରାଶି = ଗ୍ରୀକ୍‌ମାନଙ୍କର ଲିଓ = ସିଂହ; କିନ୍ତୁ ହିନ୍ଦୁମାନଙ୍କ ପ୍ରଦତ୍ତ ନକ୍ଷତ୍ରମାନଙ୍କ ନାମ ସଙ୍ଗେ ଗ୍ରୀକ୍ ଆଦିଙ୍କ ପ୍ରଦତ୍ତ ନକ୍ଷତ୍ରମାନଙ୍କ ନାମର ସାମଞ୍ଜସ୍ୟ ଦେଖାଯାଏ ନାହିଁ । ହିନ୍ଦୁ ଜ୍ୟୋତିଷୋକ୍ତ ୨୭ଟି ନକ୍ଷତ୍ର ଯଥାକ୍ରମେ ପଶ୍ଚିମରୁ ପୂର୍ବ ଆଡ଼କୁ ଗଣିବାକୁ ହେବ । ଏ ନକ୍ଷତ୍ରମାନଙ୍କ ଆକାରର ସୂଚନା ବରାହମିହିର ଓ କାଳିଦାସକୃତ ସଂସ୍କୃତ କଟପାୟା ନାମକ ଗ୍ରନ୍ଥରେ ଓ କବିସୂର୍ଯ୍ୟଙ୍କ ସମକାଳୀନ, କବିଚନ୍ଦ୍ରଙ୍କର ଓ ଆଧୁନିକ ଜ୍ୟୋତିଷୀ ଧର୍ମଦାସଙ୍କ ରଚିତ ଓଡ଼ିଆ ପଦ୍ୟ କଟପାୟାରେ ସୂଚିତ ହୋଇଅଛି ।

୫ ଗୋଲ = ୪ ସମକୋଣ = ୩୬୦ ଡ଼ିଗ୍ରୀ । ଏହି ୩୬୦ ଡ଼ିଗ୍ରୀକୁ ବାରଟି ରାଶି ଏବଂ ୨୭ ଗୋଟି ନକ୍ଷତ୍ର ଅଧିକାର କରିଅଛି । ପ୍ରତ୍ୟେକ ରାଶିର ଅଧିକୃତ ସ୍ଥାନ = $\frac{360}{12}$ = ୩୦ ଡିଗ୍ରୀ ଏବଂ ପ୍ରତ୍ୟେକ ନକ୍ଷତ୍ରର ଅଧିକୃତ ସ୍ଥାନ = $\frac{360}{27} = 13\frac{1}{3}$ ଡିଗ୍ରୀ ଅର୍ଥାତ୍ ପ୍ରତ୍ୟେକ ରାଶିର ସୀମା ମଧ୍ୟରେ $2\frac{1}{4}$ ନକ୍ଷତ୍ର ଅଛି ।

୧ । ମେଷ ରାଶି (ଲାଟିନ୍ Arils, ଇଂରେଜୀ Theram) = 1 ଅଶ୍ୱିନୀ ନକ୍ଷତ୍ର + 1 ଦ୍ୱିଜା + $\frac{1}{4}$ କୃତ୍ତିକା ।

୨ । ବୃଷରାଶି (ଲାଟିନ୍ Taurus, ଇଂରେଜୀ The bull) = $\frac{3}{4}$ କୃତ୍ତିକା + 1 ରୋହିଣୀ + $\frac{1}{2}$ ମୃଗଶିରା ।

୩। ମିଥୁନରାଶି (ଲାଟିନ୍ Gemini, ଇଂରେଜୀ The twins) = ½ ମୃଗଶିରା + 1 ଆର୍ଦ୍ରା + ¾ ପୁନର୍ବସୁ।

୪। କର୍କଟ ରାଶି (ଲାଟିନ୍ Canur, ଇଂରେଜୀ The crab) = ¼ ପୁନର୍ବସୁ + ୧ ପୁଷ୍ୟା + ୧ ଅଶ୍ଳେଷା।

୫। ସିଂହରାଶି (ଲାଟିନ୍ Leo, ଇଂରେଜୀ Lion) = ୧ ମଘା + ୧ ପୂର୍ବ ଫାଲ୍‌ଗୁନୀ + ¼ ଉତ୍ତର ଫାଲ୍‌ଗୁନୀ।

୬। କନ୍ୟାରାଶି (ଲାଟିନ୍ Virgo, ଇଂରେଜୀ Virgin) = ¾ ଉତ୍ତର ଫାଲ୍‌ଗୁନୀ + ୧ ହସ୍ତା + ½ ଚିତ୍ରା।

୭। ତୁଳାରାଶି (ଲାଟିନ୍ Libra, ଇଂରେଜୀ The scales) = ½ ଚିତ୍ରା + 1 ସ୍ୱାତୀ + ¾ ବିଶାଖା।

୮। ବିଛାରାଶି (ଲାଟିନ୍ Scorpio, ଇଂରେଜୀ Scorpion) = ¼ ବିଶାଖା + ୧ ଅନୁରାଧା + ୧ ଜ୍ୟେଷ୍ଠା।

୯। ଧନୁରାଶି (ଲାଟିନ୍ Sagitarius, ଇଂରେଜୀ The archer) = 1 ମୂଳା + 1 ପୂର୍ବାଷାଢ଼ା + ¼ ଉତ୍ତରାଷାଢ଼ା।

୧୦। ମକରରାଶି (ଲାଟିନ୍ Capricornus, ଇଂରେଜୀ Capricorn) = ¾ ଉତ୍ତରଷାଢ଼ା + 1 ଶ୍ରବଣା + ½ ଧନିଷ୍ଠା।

୧୧। କୁମ୍ଭରାଶି (ଲାଟିନ୍ Aquarius, ଇଂରେଜୀ Water-bearer) = ½ ଧନିଷ୍ଠା + 1 ଶତଭିଷା + ¾ ପୂର୍ବଭାଦ୍ରପଦ।

୧୨। ମୀନରାଶି (ଲାଟିନ୍ Pisces, ଇଂରେଜୀ fishes) = ¼ ପୂର୍ବ ଭାଦ୍ରପଦ + 1 ଉତ୍ତର ଭାଦ୍ରପଦ + ୧ ରେବତୀ।

ନକ୍ଷତ୍ରମାନଙ୍କର ପରିଚୟ—

(୧) ହିନ୍ଦୁ ମତରେ ନାମ—ଅଶ୍ୱିନୀ। ମେଷ ରାଶିରେ ଅବସ୍ଥିତ, ଉତ୍ତରାକାଶରେ ସ୍ଥିତ। ଆକାର ଓ ତାରକା ସଂଖ୍ୟା। ଯଥା—ଘୋଟକ

ଅନୁଜ୍ଜ୍ୱଳ ତାରା । ଏହି ତିନ ତାରାକୁ ଯୋଗକଲେ ଗୋଟିଏ ସ୍ଥୂଳକୋଣୀ ତ୍ରିଭୁଜ ହେବ । ଏହାକୁ ଘୋଡ଼ାର ମୁଣ୍ଡପରି କଳ୍ପନା କରାଯାଇ ପାରେ ।

ପାଶ୍ଚାତ୍ୟ ନାମ—(1) Hamla, (2) Sheritan, (3) Mesarthen.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—

In Aries—(1) Alpha Arietes (2) Beta Arietes, (3) Gamma Arietes.

କଷ୍ଟପାସ୍ତାରେ ଲକ୍ଷିତ ସୂଚନା—ଅଶ୍ୱମସ୍ତକାକାର ତିନଗୋଟି ତାରକା ।

(୨) ହିନ୍ଦୁ ମତରେ ନାମ-ଦ୍ୱିକା । ଭରଣୀ ବା ଯମ । ମେଷ ରାଶିରେ ଅବସ୍ଥିତ । ଉତ୍ତରାକାଶରେ ଅଶ୍ୱିନୀର ପଶ୍ଚିମରେ ସ୍ଥିତ । ଆକାର ଓ ତାରକା ସଂଖ୍ୟା—ତିନୋଟି କ୍ଷୀଣ ତାରା । ଏ ତିନ ତାରାକୁ ଯୋଗ କଲେ ଗୋଟିଏ ସମବାହୁ ତ୍ରିଭୁଜ ହେବ । ପାଶ୍ଚାତ୍ୟ ନାମ – Musca Borealis.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Aries—1. 35 Arietes. 2. 39 Arietes 3. 41 Arietes. କଷ୍ଟପାସ୍ତାରେ ଲକ୍ଷିତ ସୂଚନା—ତ୍ରିକୋଣାକାର ତିନ ତାରା ।

ହିନ୍ଦୁ ମତରେ ନାମ—କୃତ୍ତିକା, ମାତୃମଣ୍ଡଳ, ବହୁଳା ବା ଅନଳ ।

ମେଷରେ ¼ ଓ ବୃଷରେ ¾ରେ ଅବସ୍ଥିତ । ଆକାର ଓ ତାରକା ସଂଖ୍ୟା—୬ଟି ତାରା; ଏମାନଙ୍କୁ ଯୋଗ କଲେ ଗୋଟିଏ କଟାର ବା ବଢ଼େଇର କାଠ ମୁଗୁରର ଆକାର ହେବ । ସଂ ନାମ—(୧) ସମ୍ଭୂତି; (୨) ଅନସୂୟା (୩) ସନ୍ନତ (୪) ଲଜ୍ଜା (୫) ପ୍ରୀତି (୬) ଦେବସେନା ବା ଷଷ୍ଠୀ । ଓଡ଼ିଆ ବା ଦେଶୀୟ ନାମ—କାର୍ତ୍ତିକପୁଞ୍ଜ । ସମ୍ବଲପୁରୀ ନାମ—କଠଲ୍ଲି ତାରା (କଠଲ୍ଲି=ବଢ଼େଇର ମୁଗୁର) ପାଶ୍ଚାତ୍ୟ ନାମ—ଇଂ— Hen & Chickens; the pleides. ଆ—Ath thuraya. ଗ୍ରୀକ୍—pleides. virgili; Atlantaides ହେବ୍ରୁ—Kimha. ଲ୍ୟା. 1. Maia. 2. Taygeta. 3. Celoeno. 4. Electra. 5. Merobe; 6. Alcyone'

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In taurus·—
1. 19 Tauri; 2. 16 Tauri, 3. 17 Tauri; 4. 23 Tauri; 5. 27 Tauri; 6. Pitauri·

କଷ୍ଟପାସ୍ତାରେ ଲକ୍ଷିତ ସୂଚନା—ଅଗ୍ନି ଶିଖାରୂପୀ ଛଅଗୋଟି ତାରା ।

(୪) ହିନ୍ଦୁ ମତରେ ନାମ—ରୋହିଣୀ ବା ପ୍ରଜାପତି ବା ରୋହିତ ତାରା । ବୃଷ ରାଶିରେ ଅବସ୍ଥିତ । ଉତ୍ତର ଆକାଶରେ ଏହା ତ୍ରିଭୁଜାକୃତି । ଆକାର ଓ ତାରକା ସଂଖ୍ୟା—ପାଞ୍ଚଗୋଟି ତାରା । ଏ ପାଞ୍ଚ ତାରାକୁ ଯୋଗ କଲେ ଗୋଟିଏ ସମଦ୍ୱିବାହୁ ତ୍ରିଭୁଜ ବା ଶଗଡ଼ଦଣ୍ଡାର ଆକାର ହେବ ।

ଓଡ଼ିଆ ବା ଦେଶୀୟ ନାମ—ରୋହିଣୀ ଶକଟ । ପାଶ୍ଚାତ୍ୟ ନାମ—Hyades.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Taurus; 1. Acpha Tauri, 2. Theta Tauri; 3. Gamma Tauri 4. Delta Tauri; 5. Epsilon Tauri.

କଷ୍ଟପାସ୍ତାରେ ଲକ୍ଷିତ ସୂଚନା—ଶକଟାକୃତି ପାଞ୍ଚଗୋଟି ତାରା ।

(୫) ହିନ୍ଦୁ ମତରେ ନାମ—ମୃଗଶିରା ବା ବଧୂ ବା ଏଣକ । ବୃଷରେ ½, ମିଥୁନରେ ½, ଉତ୍ତରାକାଶରେ ଏହା ତ୍ରିଭୁଜାକୃତି ହୋଇ ଅବସ୍ଥିତ । ଆକାର ଓ ତାରକା ସଂଖ୍ୟା—ତିନିଗୋଟି ତାରା । ଏ ତିନି ତାରାକୁ ଯୋଗ କଲେ ଗୋଟିଏ ସୂକ୍ଷ୍ମକୋଣୀ ତ୍ରିଭୁଜ ହେବ । ଏହା ହରିଣ ମସ୍ତକରୂପେ କଳ୍ପିତ ।

ଓଡ଼ିଆ ବା ଦେଶୀୟ ନାମ—କାଳପୁରୁଷର ମୁଣ୍ଡ । ପାଶ୍ଚାତ୍ୟ ନାମ—Heka; Orionis head.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—1. Lambda Orionis; 2. Phi, Orionis. 3. $Phi_2$ Orionis.
କଷ୍ଟପାସ୍ତାରେ ଲକ୍ଷିତ ସୂଚନା—ବିଡ଼ାଳ ପଦାକୃତି ତିନୋଟି ତାରା ।

(୬) ହିନ୍ଦୁ ମତରେ ନାମ—ଆର୍ଦ୍ରା ବା ଶୂଳକ୍ଷ । ମିଥୁନ ରାଶିରେ ଅବସ୍ଥିତ । ଏହା ମୃଗଶିରାର ଦକ୍ଷିଣ ପଶ୍ଚିମରେ ସ୍ଥିତ । ଆକାର ଓ ତାରକା

ସଂଖ୍ୟା—ଗୋଟିଏ ହଳଦିଆ ଉଜ୍ଜ୍ୱଳ ତାରା । ଓଡ଼ିଆ ବା ଦେଶୀୟ ନାମ—କାଳପୁରୁଷର ଡାହାଣବାହୁ ଆ ମୁଣ୍ଡ । ପାଶ୍ଚାତ୍ୟ ନାମ—Betelgeux.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—Alpha Orionis. କଟପାୟାରେ ଲକ୍ଷିତ ସୂଚନା—କୁରୁବିନ୍ଦବର୍ଣ୍ଣର (ରକ୍ତାଭ) ଗୋଟିଏ ଉଜ୍ଜ୍ୱଳ ତାରା ।

(୭) ହିନ୍ଦୁ ମତରେ ନାମ—ପୁନର୍ବସୁ ବା ସୁରମାତା ମିଥୁନରେ ¾, କକଡ଼ାରେ ¼ ଅବସ୍ଥିତ । ଉତ୍ତରାକାଶରୁ ଦକ୍ଷିଣାକାଶ ପର୍ଯ୍ୟନ୍ତ ବିସ୍ତୃତ ଧନୁକାକାରରେ ଅବସ୍ଥିତ ଛଅଗୋଟି ତାରା । ଧନୁର ଦକ୍ଷିଣାର୍ଦ୍ଧ ଛାୟାପଥରୁ କାଟିଛି । ୧ ଓ ୨, ୩ ଓ ୪ ଚିହ୍ନିତ ତାରା ଉତ୍ତରାକାଶରେ, ୫।୬ ଦକ୍ଷିଣାକାଶରେ । ୩।୪ ଓ ୫।୬ ମଧ୍ୟରେ ଛାୟାପଥ ୧ ସୋମତାରା, ୨ ବସ୍ତୁତାରା, ୩ ପ୍ରତୁଷ, ୪ ପରମା ବା ଶ୍ରୀ, ୫ (ନାମ ଜଣାନାହିଁ) ୬ ପ୍ରଶ୍ନା ବା ଲୁବ୍ଧକ ।

ଆକାର ଓ ତାରକା ସଂଖ୍ୟା—ଛଅଗୋଟି ତାରା । ଏମାନଙ୍କୁ ଯୋଗ କଲେ ଗୋଟିଏ ଶରଯୁକ୍ତ ଧନୁପରି ଦେଖାଯାଏ । ପାଶ୍ଚାତ୍ୟ ନାମ—1. Castor; 2. Pollux; 3. Gomesia; 4. Procyon. or Mira or Lesser dog-star. 5. Murzim. 6. Sirius or Dog-star,

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—1 and 2 in Gemini; 1 Alpha Geminorum; 2. Beta Geminorum; 3 and 4 in Canis minoris; 3 Beta Canis minoris; 4. Alpha Canis minoris; 5 and 6 in Canis maioris; 5 Beta canis majoris; 6 Alpha canis majoris

କଟପାୟାରେ ଲକ୍ଷିତ ସୂଚନା—ଧନୁରାକୃତ ୫ ଗୋଟି ତାରା ।

(୮) ହିନ୍ଦୁ ମତରେ ନାମ—ପୁଷ୍ୟା ବା ଗୁରୁ । କକଡ଼ା ରାଶିରେ ଅବସ୍ଥିତ । ଉତ୍ତରାକାଶରେ; ତ୍ରିଭୁଜାକାର ତିନୋଟି କ୍ଷୀଣ ତାରା ମଧ୍ୟରେ ଦେଖାଯାଉଥିବା ମଧୁଚକ୍ରାକାର ତାରା ସ୍ତବକ । ଏହା କୁଲାଳଚକ୍ର ରୂପେ କଳ୍ପିତ ହୋଇପାରେ । ଆକାର ଓ ତାରକା ସଂଖ୍ୟା—କ୍ଷୀଣ ଧୂମ୍ରମୟ ତାରା ସ୍ତବକ ।

ପାଶ୍ଚାତ୍ୟ ନାମ—The Manger or Beehive, ଲାଟିନ୍—Praesepe; ଗ୍ରୀକ୍—Phatne.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In cancer; Small misty looking cluster enclosed by 1. Gauma cancri; 2. Delta cancri; 3. Theta cancri. Gamma and delta cancri are the twin asses and praesepe is the manger.

କଷ୍ଟପାସ୍ଥାରେ ଲିଖିତ ସୂଚନା—ବାଳକ ଭୂମିରେ ଖଡ଼ିପାଠ ଲେଖି ଲିଭାଇଥିବା ପରି ଦେଖାଯିବା ନକ୍ଷତ୍ର ।

ମନ୍ତବ୍ୟ—ପୌଷ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଅବସ୍ଥାନ କରନ୍ତି । ଏ ନକ୍ଷତ୍ରଯୁକ୍ତ ତିଥିରେ ଶ୍ୱେତପୁରୁଡ଼ୀ ମୂଳ ତୋଳି ଆଣି ଘରେ ରଖିଲେ ସର୍ପ ଭୟ ନିବାରିତ ହୁଏ ।

(୯) ହିନ୍ଦୁ ମତରେ ନାମ—ଅଶ୍ଳେଷା, ଭୁଜଙ୍ଗ ବା ସର୍ପ । କର୍କଟ ରାଶିରେ ଅବସ୍ଥିତ । ମଧ୍ୟାକାଶରେ ପୁଷ୍ୟାର ଦକ୍ଷିଣରେ ଅବସ୍ଥିତ । ଆକାର ଓ ତାରକା ସଂଖ୍ୟା—ଶ୍ୱାନପୁଚ୍ଛ ବା ବକ୍ର କଣ୍ଠା ବା ଏକ ଅଙ୍କ ୧ ଆକୃତିର ପୂର୍ବରୁ ପଶ୍ଚିମ ଆଡ଼କୁ କ୍ରମଶଃ ଅବସ୍ଥିତ ୬ଟି ତାରା ।

ପାଶ୍ଚାତ୍ୟ ନାମ—The head of Hydra; ଲାଟିନ୍ Caput Hydrae.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In hydra; 1. That hydrae, 2. Zeta hydrae; 3. Epsilon hydrae, 4. Delta hydrae, 5 Sigma hydrae, 6. Eta hydrae.

କଷ୍ଟପାସ୍ଥାରେ ଲିଖିତ ସୂଚନା—ଶ୍ୱାନପୁଚ୍ଛ ପ୍ରାୟ ଉର୍ଦ୍ଧ୍ୱାକୃତି ପାଞ୍ଚଗୋଟି ତାରା (ଏହା ପ୍ରକୃତରେ ୬ଟି ତାରା) ।

(୧୦) ହିନ୍ଦୁ ମତରେ ନାମ—ମଘା ବା ପିତୃ । ସିଂହ ରାଶିରେ ଅବସ୍ଥିତ । ଉତ୍ତରାକାଶରେ ସ୍ଥିତ ।

ଅକାର ଓ ତାରକା ସଂଖ୍ୟା – ଦାଆ ବା ଲଙ୍ଗଳାକୃତ ବା କଟାରର ଆକୃତବିଶିଷ୍ଟ ୫ ବା ୭ ତାରାର ୧ ଚକ୍ରିତ ଭାଗ ସମର ପୃଷ୍ଠ । ପାଶ୍ଚାତ୍ୟ ନାମ—The sickie in Leo ଆ । Algubu; Regulus. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିର୍ବିଜ ପରିଚୟ—Leo; 1. Regulus or Alpha leonis; 2. Eta Leonis, 3. Gamma Leonis; 4. Zeta Leonis; 5. Mu Leonis; 6. Epsilon Reonis.

କଟପାସ୍ଥାରେ ଲକ୍ଷିତ ସୂଚନା—ଲଙ୍ଗଳ ଆକୃତ ପାଞ୍ଚ ତାରା (ଲଙ୍ଗଳାକୃତ କଳ୍ପନା କଲେ ୨ ଚକ୍ରିତ ତାରାକୁ ବାଦ ଦିଆଯିବ) ।

(୧୧) ହିନ୍ଦୁ ମତରେ ନାମ—ପୂର୍ବ ଫାଲ୍‌ଗୁନୀ ବା ଯୋନିଭ, ବୈଦିକ ନାମ ଅର୍ଜୁନୀ । ସିଂହରାଶିରେ ଅବସ୍ଥିତ । ଉତ୍ତରାକାଶରେ ସ୍ଥିତ । ପାଶ୍ଚାତ୍ୟ ନାମ—ଆ. Alzubra. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିର୍ବିକ ପରିଚୟ—Leo, 1. Delta devnis, 2. Theta devnis.

କଟପାସ୍ଥାରେ ଲକ୍ଷିତ ସୂଚନା – ଉତ୍ତର ପଶ୍ଚିମ ହୋଇ ୨ ତାରା (ଖଟ୍ଟାକାର) ।

(୧୨) ହିନ୍ଦୁ ମତରେ ନାମ—ଉତ୍ତରା ଫାଲ୍‌ଗୁନୀ, ବା ଅର୍ଯ୍ୟମା, ବୈଦିକ ନାମ ଅର୍ଜୁନୀ ।

ସିଂହରେ ୩/୪; କନ୍ୟାରେ ୧/୪ ଉତ୍ତରାକାଶରେ ଅବସ୍ଥିତ । ଆକାର ଓ ତାରକା ସଂଖ୍ୟା—ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ୨ ତାରା । ଓଡ଼ିଆ ବା ଦେଶୀୟ ନାମ—ଉତ୍ତରା ଫାଲ୍‌ଗୁନୀ । ପାଶ୍ଚାତ୍ୟ ନାମ—ଆ At Sherfa. 1. Dene bola. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିର୍ବିକ ପରିଚୟ—Leo; 1. Dene bola; Beta Leonis; 2. 93 Leonis କଟପାସ୍ଥାରେ ଲକ୍ଷିତ ସୂଚନା—ଉତ୍ତର ଦକ୍ଷିଣ ହୋଇ ୨ ତାରା; ଶଯ୍ୟାକାର ।

ଦ୍ରଷ୍ଟବ୍ୟ—ପୂର୍ବ ଫାଲ୍‌ଗୁନୀ ଓ ଉତ୍ତର ଫାଲ୍‌ଗୁନୀର ତାରା ୪ଟି ଯୋଗ କଲେ ଗୋଟିଏ ଆୟତକ୍ଷେତ୍ର ହେବ । ଫଗୁଣପୂର୍ଣ୍ଣିମୀ ଦିନ ଚନ୍ଦ୍ର ଏ ନକ୍ଷତ୍ରରେ ଥାଆନ୍ତି । ପୂର୍ବ ଫାଲ୍‌ଗୁନୀ ଓ ଉତ୍ତର ଫାଲ୍‌ଗୁନୀର ୪ ତାରାର ଇଂରେଜୀ ନାମ The Rectangle.

(୧୩) ହିନ୍ଦୁ ମତରେ ନାମ—ହସ୍ତା ବା କର ଜନ୍ୟ ରାଶିରେ ଅବସ୍ଥିତ । ଦକ୍ଷିଣାକାଶରେ ମଘାର ଦକ୍ଷିଣ ପୂର୍ବରେ ସ୍ଥିତ । ଆକାର ଓ ତାରକା ସଂଖ୍ୟା—ହାତର ପାଞ୍ଚଗୋଟି ଆଙ୍ଗୁଠିକୁ ଭୂମିରେ ଚିପ ମାରିବା ଚିହ୍ନ ପରି ଅବସ୍ଥିତ ତାରା ପାଞ୍ଚଗୋଟି । ଓଡ଼ିଆ ବା ଦେଶୀୟ ନାମ—ସୁପର୍ଣ୍ଣ ମଣ୍ଡଳ ବା କରତଳ । ପାଶ୍ଚାତ୍ୟ ନାମ—The Corvus of the crow. 1. ଆ—Alchiba. 3. ଆ—Algorale. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In corvus Group; 1. Alpha corvi; 2. Beta corvi; 3. Delta corvi; 4. Ganema corvi, 5. Epsilon corvi; କଟପାଯ୍ଯାରେ ଲିଖିତ ସୂଚନା—କରାକୃତି ପାଞ୍ଚଗୋଟି ତାରା ।

ହସ୍ତା ମଣ୍ଡଳରେ—କନ୍ୟାରେ ଅବସ୍ଥିତ । ମଧ୍ୟାକାଶରେ ସ୍ଥିତ । ଆକାର ଓ ତାରକା ସଂଖ୍ୟା—କହୁଣିଠାରୁ ସମକୋଣରେ ଭଙ୍ଗା ହୋଇଥିବା ହାତର ଆକୃତିର ପାଞ୍ଚଗୋଟି ତାରା । ୧. କ୍ରୌଂପଦୀ । ୪. ଆପ । ୫. ଶବଳୀ । ୫ ଚିହ୍ନିତ ତାରା ଏଥିରେ ଯୋଗତାରା । ପାଶ୍ଚାତ୍ୟ ନାମ—1. ଆ.—Zabi Zaba; 3. ଆ—Raejiwah anwa; 5. ଲ—Vendi mi a trix. ଏହି ପୁଞ୍ଜର ନାମ ଆରବୀରେ Al anwa. ଆଲ୍ ଅନ୍ ବା ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In virgin; 1. Beta virginis, 2. Eta virginis, 3. Gamma virginis, 4. Delta virginis, 5. Epsilon virginis.

(୧୪) ହିନ୍ଦୁ ମତରେ ନାମ—ଚିତ୍ରା ବା ତ୍ୱଷ୍ଟା ବା ନାଭି ତାରା । କନ୍ୟାରେ ½, ତୁଳାରେ ½, ମଧ୍ୟାକାଶରେ ଅବସ୍ଥିତ । ଆକାର ଓ ତାରକା ସଂଖ୍ୟା—ଗୋଟିଏ ଉଜ୍ଜ୍ୱଳ ତାରା ।

ପାଶ୍ଚାତ୍ୟ ନାମ—ଇଂ—Spica; ଗ୍ରୀ—Stachys; ଫା—Zera; ଆ—Supei; ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In virgo; Alpha virgins.

କଟପାଯ୍ଯାରେ ଲିଖିତ ସୂଚନା—ମୁକ୍ତା ଭଳି ଉଜ୍ଜ୍ୱଳ ତାରା । ମନ୍ତବ୍ୟ—ଏହାର ବର୍ଣ୍ଣ ନୀଳାଭଶ୍ୱେତ । ଚୈତ୍ର ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଆସନ୍ତି ।

(୧୫) ହିନ୍ଦୁ ମତରେ ନାମ—ସ୍ୱାତୀ ବା ବାୟୁ ବା ନିଷ୍ଟ୍ୟା; ତୁଳ ରାଶିରେ ଅବସ୍ଥିତ । ଉତ୍ତରାକାଶରେ ଥିବେ । ଆକାର ଓ ତାରକା ସଂଖ୍ୟା—ଗୋଟିଏ ରକ୍ତାଭ ତାରା ।

ପାଶ୍ଚାତ୍ୟ ନାମ—Arcturus. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Libra; Alpha Bootes. କଟପାୟାରେ ଲକ୍ଷିତ ସୂଚନା—କୁଙ୍କୁମ ପ୍ରାୟ ଅରୁଣ ବର୍ଣ୍ଣ ଗୋଟିଏ ତାରା ।

(୧୬) ହିନ୍ଦୁ ମତରେ ନାମ—ବିଶାଖା । ତୁଳରେ ୩/୪ ବୃଶ୍ଚିକରେ ୧/୪ ॥ ଦକ୍ଷିଣାକାଶରେ ଚନ୍ଦ୍ରର ଦକ୍ଷିଣ ମୁଖରେ ଅବସ୍ଥିତ । ଆକାର ଓ ତାରକା ସଂଖ୍ୟା—ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ଦୁଇଟି ତାରା ॥

ପାଶ୍ଚାତ୍ୟ ନାମ—ଆ. ୧ । ଜୁବେନ୍ ଏଲ୍ ଚମେଲି । ଆ—ଜୁବେନ୍ ଏଲ୍ ଜେନୁବି । ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ In Libra; 1. Alpha Librae; 2. Beta Librae. କଟପାୟାରେ ଲକ୍ଷିତ ସୂଚନା—ତୋରଣ ବା ମାଳାକୃତ ପାଞ୍ଚ ଗୋଟି ତାରା ।

କଟପାୟା ମତରେ ତୋରଣାକୃତ ପାଞ୍ଚଗୋଟି ତାରା । ୨ ଚିହ୍ନିତ ତାରା ଏଥିର ଯୋଗ ତାରା । ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Libra; 1. Alpha Librae; 2. Beta Librae; 3. Delta Librae; 4. Gamma Librae; 5. Zeta Librae; ମନ୍ତବ୍ୟ—ବୈଶାଖ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଥାଆନ୍ତି । ଏହି ବିଶାଖା ଟାଟକର ତାରକାଦ୍ୱୟର (୧ ଓ ୨ର) ମଧ୍ୟ ଦେଇ ସୂର୍ଯ୍ୟ ଗତ କରନ୍ତି ।

(୧୭) ହିନ୍ଦୁ ମତରେ ନାମ—ଅନୁରାଧା ବା ମିତ୍ର; ବୃଶ୍ଚିକ ରାଶିରେ ଅବସ୍ଥିତ । ଦକ୍ଷିଣାକାଶରେ ସ୍ଥିତ । ପାଶ୍ଚାତ୍ୟ ନାମ—Scorpion's need. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Libra; 1. Lambda Librae; In Scorpio; 2. Delta Scorpii; 3. Omega Scorpii; 4. Nu Scorpii; 5. Beta Scorpii.

କଟପାୟାରେ ଲକ୍ଷିତ ସୂଚନା—ସପାକୃତ ପାଞ୍ଚଗୋଟି ତାରା; ସୂର୍ପ ବା ଜଳଧାରା ବା କଙ୍କଡ଼ା ବିଛାର ମୁଣ୍ଡ ।

ଆକାର ଓ ତାରକା ସଂଖ୍ୟା—କଟପାସ୍ତ୍ର ମତରେ ସପାକୃତ ୫ ତାରା ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତଷିକ ପରିଚୟ—In Scorpio; 1. Rho Scorpii; 2. Pi. Scorpii; 3. Delta Scorpii; 4. Omega Scorpii; 5. Beta Scorpii; କଟପାସ୍ତ୍ର ଲକ୍ଷିତ ସୂଚନା—କଙ୍କଡ଼ା ବସ୍ତୁର ଦୁଇ ଆଡ଼କୁ ନାହୁଡ ବାହାରିଥିବା ମୁଣ୍ଡ ।

(୧୮) ହିନ୍ଦୁ ମତରେ ନାମ - ଜ୍ୟେଷ୍ଠା ବା ବାସବ ବୃଶ୍ଚିକ ରାଶିରେ ଅବସ୍ଥିତ । ଦକ୍ଷିଣାକାଶରେ ଦେଖାଯାଏ । ଆକାର ଓ ତାରକା ସଂଖ୍ୟା—ଉତ୍ତର ପଶ୍ଚିମରୁ ଦକ୍ଷିଣ ପୂର୍ବକୁ ଅବସ୍ଥିତ ତିନଗୋଟି ତାରା ପାଶ୍ଚାତ୍ୟ ନାମ— Scorpion's body or back. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତଷିକ ପରିଚୟ—In Scorpio; 1. Sigma Scorpii, 2. Antares or Alpha Scorpii; 3. Tau Scorpii; କଟପାସ୍ତ୍ରରେ ଲକ୍ଷିତ ସୂଚନା—ବରାହ ଦନ୍ତପରି ତିନ ଗୋଟି ତାରକା; ସର୍ପାକୃତ ବା କୁଣ୍ଡଳାକୃତ ।

(୧୯) ହିନ୍ଦୁ ମତରେ ନାମ—ମୂଳା ଧନୁ ରାଶିରେ ଅବସ୍ଥିତ; ଦକ୍ଷିଣାକାଶରେ ଅବସ୍ଥିତ ।

ଆକାର ଓ ତାରକା ସଂଖ୍ୟା କଙ୍କଡ଼ା ବସ୍ତୁର ବଙ୍କା ଲାଞ୍ଜ ରୂପେ କଳ୍ପିତ । ଶଙ୍ଖ ବା ଧେନୁର କୋଟିରୂପେ ଅବସ୍ଥିତ ୯ଟି ତାରା । ୮ ଚହ୍ନିତ ଶ୍ୟାମ, ୯ ଚହ୍ନିତ ସବଳ, ୮ ଓ ୯ ଚହ୍ନିତ ତାରା ଯମଙ୍କର ୨ଟି କୁକୁର ବା ସାରମେୟ ଯୁଗଳ । ଓଡ଼ିଆ ବା ଦେଶୀୟ ନାମ ମୂଳା ଶଙ୍ଖ । ପାଶ୍ଚାତ୍ୟ ନାମ—Scorpion's tail; ୮ ଚହ୍ନିତ ଲଟିନ୍ Shoula, ୯ ଚହ୍ନିତ ଲଟିନ୍ Lesath, ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତଷିକ ପରିଚୟ—In Scorpio—1. Epsilon Scorpii; 2. Mu Scorpii; 3. Zeta Scorpii; 3. Eta Scorpii; 5. Theta Scorpii; 6. Tota Scorpii; 7. Kappa Scorpii; 8 Lambda Scorpii, 9. Upsilorn Scorpii; କଟପାସ୍ତ୍ର ଲକ୍ଷିତ ସୂଚନା—ଶଙ୍ଖାକୃତ ବା ସିଂହ ପୁଚ୍ଛାକୃତ ୯ ତାରା ।

(୨୦) ହିନ୍ଦୁ ମତରେ ନାମ—ପୂର୍ବାଷାଢ଼ା, ଧନୁ ରାଶିରେ ଅବସ୍ଥିତ । ଦକ୍ଷିଣାକାଶରେ ଛାୟା ପଥରେ ଅବସ୍ଥିତ ଓ ମୂଳା ଶଙ୍ଖର ପଶ୍ଚିମରେ । ବର୍ଗର ଚତୁର୍ଦ୍ଧ୍ୱକର ଗୋଟିଏ ବାହୁ ବର୍ଜିତ ।

ଆକାର ଓ ତାରକା ସଂଖ୍ୟା—କୁଲ୍ଲ ବା ସୂର୍ପ ଆକୃତ ଯୁକ୍ତ ୫ ତାରା । ୪ ଚହ୍ନିତ ତାରା ତୁଳସୀ ।

ପାଶ୍ଚାତ୍ୟ ନାମ—1, 2, 3 & 4 Called Archer's bow, 2. ଲାଟିନ୍ N. Kaus, 4. ଲାଟିନ୍ M. Kaus, 5. ଲାଟିନ୍ Kaus Australis.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Sagittarius; 1. Epsilon Sagittarii; 2. Delta Sagittarii, 3. Lambda Sagittarii, 4. Mu Sagittarii, 5. 4 Sagittarii. କଟପାୟାରେ ଲକ୍ଷିତ ସୂଚନା ହସ୍ତୀ ଦନ୍ତ ବା ସୂର୍ପାକୃତ ୪ ତାରା; ତାହାହେଲେ ୧ ଚହ୍ନିତ ତାରାକୁ ବାଦ୍ ଦେବାକୁ ହେବ ।

(୨୧) ହିନ୍ଦୁ ମତରେ ନାମ—ଉତ୍ତରାଷାଢ଼ା ବର୍ଣ; ଧନୁରେ ¼, ମକରରେ ¾; ଦକ୍ଷିଣାକାଶରେ ଛାୟାପଥର ପୂର୍ବରେ; ବଡ଼ମ ଚତୁର୍ଭୁଜ; ଆକାର ଓ ତାରକା ସଂଖ୍ୟା—କୁଲ୍ଲ ବା ସୂର୍ପ ପର ୪ ତାରା ।

ପାଶ୍ଚାତ୍ୟ ନାମ—Trapezium in Sagittarius. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତଷିକ ପରିଚୟ—In Sagittarius—1 Zeta Sagittarii, 2. Sigma Sagittarii, 3. Omicron Sagittarii, 4. Pi. Sagittarii.

କଟପାୟାରେ ଲକ୍ଷିତ ସୂଚନା—ସୂର୍ପାକୃତ ୯ ତାରା ।

(୨୨) ହିନ୍ଦୁ ମତରେ ନାମ—ଶ୍ରବଣା ବା କେଶବ ମକରରେ ଅବସ୍ଥିତ । ମାଧାକାଶରେ ସ୍ଥିତ । ଆକାର ଓ ତାରକା ସଂଖ୍ୟା—ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ୩ ତାରା; ଏହି ୩ ତାରାକୁ ଯୋଗ କଲେ ଗୋଟିଏ ଶର ବା ଯଷ୍ଟି ହେବ । ୧ କର୍ଣ୍ଣ, ୨ ବାସୁଦେବ, ପାଶ୍ଚାତ୍ୟ ନାମ—1 ଆ. Tarazed, 2 Altair, 3 ଆ—Alshain. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତଷିକ ପରିଚୟ—In Aquilla; 1 Gamma Aquilae; 2. Alpha Aquilae; Beta Aquilae; କଟପାୟାରେ ଲକ୍ଷିତ ସୂଚନା—ତ୍ରିଶୂଳ ବା ଶାମ୍ବୁକ ବା ଧନୁଶରାକୃତ ୩ ତାରା ।

(୨୩) ହିନ୍ଦୁ ମତରେ ନାମ—ଧନିଷ୍ଠା ବା ଶ୍ରବିଷ୍ଠା ବା ଧନୁ । ମକରରେ ½, କୁମ୍ଭରେ ½ । ଦକ୍ଷିଣାକାଶରେ, ଛାୟାପଥର ପୂର୍ବକୂଳରେ ଓ ଜ୍ୟେଷ୍ଠାର

ଉତ୍ତର ପୂର୍ବରେ । ଆକାର ଓ ତାରକା ସଂଖ୍ୟା—ଡୋର ଲଗିଥିବା କାଗଜ ଚକ୍ର (ଗୁଡ଼ି) ଆକାରର ୫ ତାରା । ୧ ବାସୁଦେବ, ୨ ରକ୍ତମୁଖୀ ।

ପାଶ୍ଚାତ୍ୟ ନାମ The Kite, 1 Sadalacin. 4 Rotaner. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ - In Delphinus; 1 Alpha Delphini, 2 Gamma Delphini, 3 Delta Delphini; 4 Beta Delphini, 5 Epsilon Delphini.

କଟପାୟାରେ ଲକ୍ଷିତ ସୂଚନା—ମର୍ଦ୍ଦଳାକାର ୫ ତାରା ।

(୨୪) ହିନ୍ଦୁ ମତରେ ନାମ—ଶତଭିଷା ବା ଶତ ତାରକା । କୁମ୍ଭ ରାଶିରେ ଅବସ୍ଥିତ । ଆକାର ଓ ତାରକା ସଂଖ୍ୟା—ମୁକ୍ତା ହାର ଛିଣ୍ଡି ଯାଇ କେଉଁଠାରେ ବୁଣି ହୋଇଯିବା ପରି ଇତସ୍ତତଃ ବିକ୍ଷିପ୍ତ ୭ଟି ଉଜ୍ଜ୍ୱଳ ତାରା । ୧ ଗାନ୍ଧାରୀ, ୨ ଧୃତରାଷ୍ଟ୍ର, ୩ ବିଦୁର, ୭ ଦୁର୍ଯ୍ୟୋଧନ ।

ପାଶ୍ଚାତ୍ୟ ନାମ—ଆରବୀ—Sadal Sad. 2 ଆରବୀ Sadal Melik, 3 ଆରବୀ Sadal Chiba, 7 ଆରବୀ Ancha. ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Aquarius; 1 Beta Aquarii, 2 Alpha Aquarii, 3 Gamma Aquarii, 4 Zeta Aquarii, 5 Eta Aquarii, 5 Lambda Aqarii, 7 Theta Aquarii.

କଟପାୟାରେ ଲକ୍ଷିତ ସୂଚନା—ମଣ୍ଡଳାକାର ବା ମୁକ୍ତାହାର ପରି ଶତ ତାରକା ।

(୨୫) ହିନ୍ଦୁ ମତରେ ନାମ—ପୂର୍ବ ଭାଦ୍ରପଦ । କୁମ୍ଭରେ ୩/୪, ମୀନରେ ୧/୪ । ଉତ୍ତରାକାଶରେ, ୨ଟି ଖଟଖୁରାର ଚତୁଷ୍ପଦ ୨ ଉଜ୍ଜ୍ୱଳ ତାରା । ଓଡ଼ିଆ ବା ଦେଶୀୟ ନାମ—ପୂର୍ବ ଭଦ୍ରବ । ପାଶ୍ଚାତ୍ୟ ନାମ—1 Scheat 2 Markali; ପାଶ୍ଚାତ୍ୟ ରାଶି ଅନୁସାରେ ପରିଚୟ—In Peqassus; 1 Beta Pegusii. 2 Alpha Pequsai. କଟାପାୟାରେ ଲକ୍ଷିତ ସୂଚନା—ଘଣ୍ଟା ବା ଖଟ ଆକୃତିର ୨ଟି ତାରା । ଭାଦ୍ର ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଥାଆନ୍ତି ।

(୨୬) ହିନ୍ଦୁ ମତରେ ନାମ—ଉତ୍ତର ଭାଦ୍ରପଦ । ମୀନ ରାଶିରେ ଅବସ୍ଥିତ । ପୂର୍ବ ଭାଦ୍ରପଦର ପୂର୍ବରେ ଉର୍ଦ୍ଧ୍ୱାକାଶରେ, ଦୁଇଟି ଛଟ ଝୁମ୍ପର ୨ଟି ଉଜ୍ଜ୍ୱଳ ତାରା । ଓଡ଼ିଆ ବା ଦେଶୀୟ ନାମ—ଉତ୍ତର ଭାଦ୍ରବ । ୨ ଟଙ୍କିତ ତାରାର ନାମ ସଂସ୍କୃତ—ଗୋପଦ । ପାଶ୍ଚାତ୍ୟ ନାମ—୧ । ଆରବୀ—Alpherat 2; ୨ । ଆରବୀ—Algenile. Note—The 4 Stas of Petirlea Bhadra pada and Uttara Bhadra pada are called the Square of Pegassus.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—1. In Andro meda; Alpha Andro medae; 2. In Pegassus; Gauma Pegasii.

କଷ୍ଟପାଥୁରେ ଲିଖିତ ସୂଚନା—ଦୁଇଟି ନର ମସ୍ତକ ବା ଭର ଆକୃତିର ୨ ତାରା ।

(୨୭) ହିନ୍ଦୁ ମତରେ ନାମ—ରେବତୀ । ମୀନ ରାଶିରେ ଅବସ୍ଥିତ । ଉର୍ଦ୍ଧ୍ୱାକାଶରେ; ଉତ୍ତର ଭାଦ୍ରପଦର ପୂର୍ବରେ ଆଖିକୁ ଦେଖାଯିବା ମତ୍ସ୍ୟାକୃତି ବା ଓଲଟ ଦେଉଳ ଆକୃତିର ୧୩ଟି ତାରା । ଆକାର ଓ ତାରକା ସଂଖ୍ୟା—ମତ୍ସ୍ୟାକାର ୧୩ ତାରା ।

ପାଶ୍ଚାତ୍ୟ ନାମ—ଗ୍ରୀକ୍ Mirach, ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—9 Stars in Andromeda and 4 in Piscis Australis. 1. Nu Andromedae; 2 Mu Andromedae; Beta Andromedae; 4. 82 Piscis Australis. 5 Epsilon Piscis Australis; 6 Lambeda Piscis Australis; 7. Psi Piscis Australis; 8 Zeta Andromedae; 9. Epsilon Andromedae; 10 Delta Andromedae; 11. Pi Andromedae; 12. Sigma Andromedae; 13. Theta Andromedae.

କଷ୍ଟପାଥୁରେ ଲିଖିତ ସୂଚନା—ମୃଦଙ୍ଗ ବା ମତ୍ସ୍ୟାକୃତି ୩୨ ତାରା ।

ଏ ତାରାମାନ ସଂଖ୍ୟାରେ ୩୨ ଥିଲେ ମଧ୍ୟ ଖାଲି ଆଖିକୁ ୧୩ଟି ସ୍ପଷ୍ଟ ଦେଖାଯାନ୍ତି ।

(୨୮) ହିନ୍ଦୁ ମତରେ ନାମ—ଅଭିଜିତ୍ ମକର ରାଶିରେ ଅବସ୍ଥିତ । ଉର୍ଦ୍ଧ୍ୱାକାଶରେ ଶ୍ରବଣାର ଉତ୍ତର ପଶ୍ଚିମ କୋଣରେ । ଆକାର ଓ ତାରକା

ସଂଖ୍ୟା—ନୀଳ ଓ ଉଜ୍ଜ୍ୱଳ ଗୋଟିଏ ତାରା; ପାଶ୍ଚାତ୍ୟ ନାମ—Vega, ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ—In Lyre; Alpha Lyra,

ମନ୍ତବ୍ୟ—ଅଶ୍ୱିନୀଠାରୁ ରେବତୀ ପର୍ଯ୍ୟନ୍ତ ୨୭ ନକ୍ଷତ୍ର ମଧ୍ୟରେ ଚନ୍ଦ୍ରମାନ ମାସକୁ ବାଣ୍ଟିଲାବେଳେ କିଛି ନଅଣ୍ଟ ଦେଖାଯିବାରୁ ହିନ୍ଦୁ ଜ୍ୟୋତିଷମାନେ ଏହାକୁ ଅଷ୍ଟାବିଂଶ ନକ୍ଷତ୍ରରୂପ ଗଣନା କରିଅଛନ୍ତି । ଅଭିଜିତ୍ ଧନିଷ୍ଠା ନକ୍ଷତ୍ରର ଉତ୍ତର ଲକ୍ଷ୍ୟ ଦିଗରେ ଅବସ୍ଥିତ । ସୌରଜଗତ୍ ଏହି ତାରା ଆଡ଼କୁ ଗତି କରୁଅଛି ବୋଲି ପାଶ୍ଚାତ୍ୟ ପଣ୍ଡିତମାନେ କହନ୍ତି । ବହୁ ସହସ୍ର ବର୍ଷ ପୂର୍ବେ ଏହି ତାରା Pole star ବା ଧ୍ରୁବତାରା ଥିବାର ପଣ୍ଡିତମାନେ ନିର୍ଣ୍ଣୟ କରନ୍ତି ।

ବିଶେଷ ଦ୍ରଷ୍ଟବ୍ୟ—ଏହି ୨୮ ନକ୍ଷତ୍ର ବା ତାରାପୁଞ୍ଜ ଛଡ଼ା ଆଉ ଅନେକ ଗୁଡ଼ିଏ ଉଜ୍ଜ୍ୱଳ ନକ୍ଷତ୍ର ବା ତାରକା ଦେଖାଯାନ୍ତି । ହିନ୍ଦୁ ଜ୍ୟୋତିଷମାନେ ତହିଁରୁ କେତେଗୁଡ଼ିକର ନାମକରଣ କରିଅଛନ୍ତି । ପାଶ୍ଚାତ୍ୟ ଜ୍ୟୋତିଷମାନେ ଅପେକ୍ଷାକୃତ ଅଧିକ ସଂଖ୍ୟକ ନକ୍ଷତ୍ର ଓ ନକ୍ଷତ୍ରପୁଞ୍ଜମାନଙ୍କ ନାମକରଣ କରିଅଛନ୍ତି ଯଥା—୨୯ ବଡ଼ ସପ୍ତର୍ଷିମଣ୍ଡଳ ବା ଚିତ୍ରଶିଖଣ୍ଡୀ (ଋକ୍ ବେଦରେ ଏହାଙ୍କୁ ଋକ୍ଷମଣ୍ଡଳ ବୋଲାଯାଇଅଛି) ଏହି ସାତ ଋଷିଙ୍କ ନାମ—କ୍ରତୁ, ପୁଲହ, ପୁଲସ୍ତ୍ୟ, ଅତ୍ରି, ଅଙ୍ଗିରା, ବଶିଷ୍ଠ, ମରୀଚି ।

୩୦—ଅରୁନ୍ଧତୀ । ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ମରିବାର ୬ ମାସ ପୂର୍ବରୁ ଏ ତାରା ମନୁଷ୍ୟର ଆଖିକୁ ଦେଖାଯାଏ ନାହିଁ । ଏଥି ସମ୍ବନ୍ଧେ ଶାସ୍ତ୍ରବଚନ ଯଥା—

ଦୀପନିର୍ବାଣଗନ୍ଧଂ ଚ ସୁହୃଦ୍‌ବାକ୍ୟମରୁନ୍ଧତୀଂ, ନ ଜିଘ୍ରନ୍ତି ନ ଶୃଣ୍ୱନ୍ତି ନ ପଶ୍ୟନ୍ତି ଗତାୟୁଷଃ । ଫଳତଃ ଏହି ନକ୍ଷତ୍ରଟି ଅତି କ୍ଷୁଦ୍ର ଥିବାରୁ କ୍ଷୀଣ ଦୃଷ୍ଟି-ବ୍ୟକ୍ତିଙ୍କୁ ଏହା ଦେଖାଯାଏ ନାହିଁ । ପୁରାଣରେ ଅଛି ଯେ ସପ୍ତର୍ଷି ପତ୍ନୀମାନଙ୍କୁ ଇନ୍ଦ୍ର ପ୍ରଲୋଭନ ଦେଖାଇବାରୁ ଅରୁନ୍ଧତୀଙ୍କ ଛଡ଼ା ଅନ୍ୟ ଛଅଜଣଙ୍କ ମନ ବିଚଳିତ ହେଲା । ସପ୍ତର୍ଷିମାନେ ଏ କଥା ଜାଣିପାରି ଅରୁନ୍ଧତୀଙ୍କୁ ବଶିଷ୍ଠଙ୍କ ପାଖେ ସ୍ଥାନ ଦେଲେ ବାକି ଛଅ ଜଣଙ୍କୁ ନିଜ ନିଜ ପାଖରୁ ତଡ଼ିଦେଲେ ଓ ସେମାନେ ଯାଇ କୃତ୍ତିକାପୁଞ୍ଜ (ହିନ୍ଦୁ ଜ୍ୟୋତିଷର ୩ୟ ନକ୍ଷତ୍ର) ରେ ରହିଲେ । ଅରୁ-ନ୍ଧତୀ ପତିବ୍ରତା ନାରୀର ଆଦର୍ଶ । ଏଥିପାଇଁ ବିବାହିତ ଦମ୍ପତି ବଶିଷ୍ଠ ଓ ଅରୁନ୍ଧତୀ ନକ୍ଷତ୍ରଦ୍ୱୟଙ୍କୁ ଦର୍ଶନ କରିବା ବିଧି ଅଛି ।

୩୧—ଧ୍ରୁବତାରା ବା ସୌମ୍ୟ ଧ୍ରୁବ ବା ଶିଶୁମାରପୁଚ୍ଛ—ସବୁ ନକ୍ଷତ୍ର ମଧ୍ୟରେ କେବଳ ଏହି ଧ୍ରୁବତାରା ସ୍ଥିର ଓ ଅଚଳ । ଆକାଶ ମଣ୍ଡଳର ଅନ୍ୟ ସମସ୍ତ ତାରା ଧ୍ରୁବକୁ କେନ୍ଦ୍ର କରି ପୂର୍ବରୁ ପଶ୍ଚିମକୁ ବେଙ୍ଗଲା ପରି ଘୂରୁଛନ୍ତି । ଭାଗବତ ୪ର୍ଥ ସ୍କନ୍ଧ ୧୯ । ୨୨ ଶ ଅଧ୍ୟାୟରେ ଏ ତାରାର ବିଷୟ ଲେଖାଅଛି । ଏ ତାରା ଅପେକ୍ଷାକୃତ ନିଷ୍ପ୍ରଭ ଥିଲେ ମଧ୍ୟ ଏହାର ଗତି ଅଛି । ଏ ପୃଥିବୀର ମେରୁଦଣ୍ଡର ବୃତ୍ତାକାର ଗତି ସଙ୍ଗେ କ୍ରମ କ୍ରମ ୨୮୦୦୦ ବର୍ଷରେ ଉତ୍ତର-କାଶରେ ଗୋଟିଏ ବୃତ୍ତ ଅଙ୍କିତ କରେ । ଏ ତାରା ପୃଥିବୀର ଉତ୍ତର ମେରୁର ଠିକ୍ ମୁଣ୍ଡ ଉପରେ ଅବସ୍ଥିତ । ଉତ୍ତର ମେରୁବାସୀ ଲୋକଙ୍କୁ ଏ ତାରା ମୁଣ୍ଡ ଉପରେ ଦେଖାଯାଏ । ଭଗବାନ୍ ଭକ୍ତ ଧ୍ରୁବଙ୍କ ତପସ୍ୟାରେ ପ୍ରୀତ ହୋଇ ତାଙ୍କୁ ଏ ସ୍ଥାନ ଦେଇଥିଲେ । ଏହି ତାରାକୁ ଲକ୍ଷ୍ୟ କରି ଉତ୍ତର ଦିଗ ନିର୍ଣ୍ଣୟ କରି ରାତ୍ରିରେ ପଥଭ୍ରାନ୍ତ ପଥିକ ଓ ନାବିକମାନେ ବାଟ ଠଉରାନ୍ତି ।

୩୨—ଶ୍ରେଷ୍ଠ ସପ୍ତର୍ଷିମଣ୍ଡଳ, ଶିଶୁମାର ମଣ୍ଡଳ; ଧ୍ରୁବମଣ୍ଡଳ. ଧ୍ରୁବପୁଞ୍ଜ, ଭାଗବତ ୪ର୍ଥ, ୯ମ ଓ ୫ମ ସ୍କନ୍ଧରେ ଧ୍ରୁବନକ୍ଷତ୍ର ଓ ଶିଶୁମାର ମଣ୍ଡଳର ବର୍ଣ୍ଣନା ଅଛି । ଶିଶୁମାର ଧ୍ରୁବଙ୍କ ଶ୍ୱଶୁର । ଏହାଙ୍କ କନ୍ୟା ଭ୍ରମିଙ୍କୁ ଧ୍ରୁବ ବିବାହ କରିଥିଲେ । ବଡ଼ ସପ୍ତର୍ଷିମଣ୍ଡଳର ଲାଞ୍ଜ ଆଡ଼େ ଏ ଧ୍ରୁବ ମଣ୍ଡଳର ମୁଣ୍ଡ ପାଖ ଏବଂ ଏହାର ଲାଞ୍ଜଆଡ଼େ ବଡ ସପ୍ତର୍ଷିମଣ୍ଡଳର ମୁଣ୍ଡ ପାଖ । ଏ ମଣ୍ଡଳର ଧ୍ରୁବ ଲାଞ୍ଜତାରା ସର୍ବୋଜ୍ଜ୍ୱଳ ।

୩୩—ଧ୍ରୁବ ମତ୍ସ୍ୟ—ସଂସ୍କୃତ ନାମ ଯମ ।

୩୪—କଶ୍ୟପୀୟ ମଣ୍ଡଳ—ଜମଦଗ୍ନି, ଗୋତମ, ବଶିଷ୍ଠ, ଅତ୍ରି, କଶ୍ୟପ । ଏହି ତାରାପୁଞ୍ଜ ପାଖରେ ଆଉ ଦୁଇଟି ତାରାଙ୍କୁ ବିଶ୍ୱାମିତ୍ର ଓ ଭରଦ୍ୱାଜ ବୋଲାଯାଏ । ଭାଗବତ ଅଷ୍ଟମ ସ୍କନ୍ଧ ୧୦ମ ଅଧ୍ୟାୟରେ ଏହି ପୁଞ୍ଜରେ ୭ଟି ଋଷି ଥିବାର ଉଲ୍ଲେଖ ଅଛି ।

୩୫—ବ୍ରହ୍ମକଟାହ ବା ବ୍ରହ୍ମମଣ୍ଡଳ—ସଂସ୍କୃତ ନାମ ହେଉଛି (୧) ବ୍ରହ୍ମା ବା ବ୍ରହ୍ମହୃଦୟ, (୨) ପ୍ରଜାପତି ବା ଉରଃ ୪ ଅଗ୍ନିବାଣ, ୭ ରାମବାଣ ।

୩୬—କାଳପୁରୁଷପୁଞ୍ଜ ବା ରୁଦ୍ର ବା ଅଗ୍ରହାୟଣ—ରୋହଣୀ ଓ ପୁନର୍ବସୁ ନକ୍ଷତ୍ର ମଧ୍ୟରେ ଥିବା ଧନୁର୍ଧାରୀ ପୁରୁଷର କାଳ୍ପନିକ ଆକୃତି ବିଶିଷ୍ଟ ତାରାଗଣ ।

୩୭—ଆପାଂବତ୍ସ ବା ଆପାଂନପାତ୍ (ସ୍କନ୍ଦ ବା କାର୍ତ୍ତିକେୟଙ୍କ ନାମାନ୍ତର) ।

୩୮—ଅଗସ୍ତ୍ୟ—୧୪୦୦୦ ବର୍ଷ ପୂର୍ବେ ଏହା ଦକ୍ଷିଣ ଧ୍ରୁବ ତାରକା ଥିଲା । ଏ ତାରା ଶରତ୍‌କାଳରେ ଦକ୍ଷିଣାକାଶରେ ରାତିରେ ଦେଖାଯାଏ । ଏଥିପାଇଁ କହନ୍ତି ଯେ ଅଗସ୍ତ୍ୟୋଦୟ ହେଲେ ବର୍ଷା ଋତୁର ଗୋଳିଆ ପାଣି ଓ କାଦୁଅବାଟ ଶୁଖିଯାଏ । ଏହାର ଦକ୍ଷିଣ ପୂର୍ବରେଥିବା କ୍ଷୁଦ୍ର ତାରା ଅଗସ୍ତ୍ୟଙ୍କ ସ୍ତ୍ରୀ ଲୋପାମୁଦ୍ରା ।

୩୯—ଯାମୀ ବା ଯମୁନା ବା ନଦୀମୁଖ ବା ଶୂଳତାରା ।

୪୦—ତ୍ରିଶଙ୍କୁ ମଣ୍ଡଳ ।

୪୧—ଜମ୍ବୁ ।

୪୨—ବିଜମ୍ବୁ ।

୪୩—ସାରମେୟଯୁଗଳ ବା କାଳକଣ୍ଠମଣ୍ଡଳ ।

୪୪—ପରଶୁରାମ ମଣ୍ଡଳ ।

୪୫—ମତ୍ସ୍ୟମୁଖ ।

୪୬—କାଳୀୟ ବା ହ୍ରଦସର୍ପ ବା ସିନ୍ଧୁମଣ୍ଡଳ ।

୪୭—ତମି-ମଣ୍ଡଳ ।

୪୮ ଅମୃତପାତ୍ରମଣ୍ଡଳ ବା କାଂସ୍ୟମଣ୍ଡଳ ।

୪୯—କେତୁ ।

୫୦—ମକ୍ଷିକାମଣ୍ଡଳ ।

୫୧—ନୌମଣ୍ଡଳ ବା ଅର୍ଣ୍ଣବଯାନ ।

୫୨—ଭାର୍ଗ୍ୟ ବା ବୀଣାମଣ୍ଡଳ ।

୫୩—ହଂସ ମଣ୍ଡଳ ।

୫୪—ନହୁଷ ।

୫୫—କପିଳ ।

୫୬—ଶେଫାଳିପୁଞ୍ଜ ।

୫୭—ଗରୁଡ଼ ।
୫୮ —ଶିବଭୂତେଶ ।
୫୯ — ଭକ୍ଷକପୁତ୍ର ।
୬୦ — କପୋତମଣ୍ଡଳ ।
୬୧ — କପୋତ ।
୬୨ —ମୂଲକ୍ଷକର୍ଣ୍ଣ ।
୬୩ — ଗ୍ରସ୍ତାପଥ । (ବିଶେଷ ବିବରଣ ପାଇଁ ଦେଖ— ଭଷାକୋଷ)

**ନଚିକେତା**— ଏ ବାଜଶ୍ରବା ଋଷିଙ୍କର ପୁତ୍ର ଥିଲେ । ବାଜଶ୍ରବା ଋଷି ଥରେ ଯଜ୍ଞର ଦକ୍ଷିଣା ପାଇଁ ସର୍ବସ୍ୱ ଦାନ କଲେ । ଏହି ସମୟରେ ନଚିକେତା ପିତାଙ୍କୁ ଏକାଧିକ ଥର ପଚାରିଲେ ମୋତେ କାହାକୁ ଦାନ କଲ ? ପିତା ବିରକ୍ତ ହୋଇ କହିଲେ ତୋତେ ମୃତ୍ୟୁକୁ ଦାନ କଲି । ଏହା ଶୁଣି ନଚିକେତା ମୃତ୍ୟୁଙ୍କ ପାଖକୁ ଗଲେ ଓ ସେଠାରେ ୩ ଦିନ ନିରାହାର ରହି ମୃତ୍ୟୁଙ୍କଠାରୁ ବ୍ରହ୍ମଜ୍ଞାନ ପ୍ରାପ୍ତ ହେଲେ । (ହିନ୍ଦୀ ଶବ୍ଦସାଗର, ଭଷାକୋଷ)

**ନନ୍ଦ**— ଶ୍ରୀକୃଷ୍ଣଙ୍କ ପାଳକ ପିତା । ମଥୁରା ଜିଲ୍ଲାର ଯମୁନାର ଅପର ତୀରରେ ପ୍ରାଚୀନକାଳରେ ଗୋକୁଳ ନାମକ ଏକ ଗ୍ରାମ ଥିଲା । ଏହି ଗ୍ରାମରେ ଗୋପ-ଜାତୀୟ ଲୋକେ ବାସ କରୁଥିଲେ । ନନ୍ଦ ଏହି ଗୋପମାନଙ୍କର ରାଜା । ଏତିକି ବେଳେ କଂସାସୁର ମଥୁରାର ସମ୍ରାଟ୍ ଥିଲେ । ନନ୍ଦ କଂସର ଏକ କରଦ ରାଜା । ଏହାଙ୍କ ପତ୍ନୀ ଯଶୋଦା । ଯେଉଁ ରାତ୍ରିରେ ଯଶୋଦାଙ୍କ ଗର୍ଭରୁ ମହାମାୟା କନ୍ୟାରୂପେ ଗୋକୁଳରେ ଅବତୀର୍ଣ୍ଣ ହେଲେ ସେହି ରାତରେ ଭଗବାନ୍ ଶ୍ରୀକୃଷ୍ଣ ମଥୁରାର ବନ୍ଦୀଶାଳାରେ ଦେବକୀଙ୍କ ଗର୍ଭରୁ ଜାତ ହୋଇଥିଲେ । କଂସ ଭୟରେ ବସୁଦେବ ଶ୍ରୀକୃଷ୍ଣଙ୍କୁ ଅର୍ଦ୍ଧ ରାତ୍ରିରେ ନନ୍ଦ ସଦନକୁ ନେଇ ଗଲେ ଏବଂ ଯଶୋଦାଙ୍କ ଅଙ୍କରେ ତଦୀୟ ନବପ୍ରସୂତା କନ୍ୟାଙ୍କୁ ପାଲଟି କରି ଘେନ ଆସିଲେ । ମହାମାୟାଙ୍କ ମାୟାରୁ ନନ୍ଦାଳୟରେ ସମସ୍ତେ ଅଚେତନ ହୋଇଥିବାରୁ କେହି ଏ କଥା ଜାଣି ପାରିଲେ ନାହିଁ । ଶ୍ରୀକୃଷ୍ଣ ନନ୍ଦ ସଦନରେ ଲାଳିତ, ପାଳିତ ଓ ବର୍ଦ୍ଧିତ ହୋଇ କଂସ ପ୍ରେରିତ ପୂତନାଦି ସମସ୍ତ ଅସୁରମାନଙ୍କୁ ବଧ କଲେ । ପରିଶେଷରେ କଂସ ଆହ୍ୱାନରେ ଅକ୍ରୂରଙ୍କ ଦ୍ୱାରା ମଥୁରା ଆସି ରଙ୍ଗସଭା ଦେଖିଲେ ଏବଂ ସେହିଠାରେ ମଧ୍ୟ କଂସକୁ ବଧ କରିଥିଲେ । କୃଷ୍ଣ ଗୋକୁଳ ତ୍ୟାଗ କରିବା ପରେ ପରେ ନନ୍ଦ ଯଶୋଦାଙ୍କ ଦୁଃଖର ସୀମା ରହିଲା ନାହିଁ । ଯେତେବେଳେ ହଂସ ଓ ଡମ୍ବକ

ସହିତ ଶ୍ରୀକୃଷ୍ଣଙ୍କର ଯୁଦ୍ଧ ହେଲା, ସେତେବେଳେ ସେ ବୃନ୍ଦାବନର ଗୋବର୍ଦ୍ଧନ ପର୍ବତକୁ ଆସିଥିଲେ । ଏହା ପରେ ପ୍ରଭାସ କ୍ଷେତ୍ରଠାରେ ତାଙ୍କର ନନ୍ଦ, ଯଶୋଦାଙ୍କ ସହିତ ମଧ୍ୟ ସାକ୍ଷାତ ହୋଇଥିଲା । ନନ୍ଦ ପୂର୍ବ ଜନ୍ମରେ ଦ୍ରୋଣ ନାମକ ଏକ ବସୁ ଥିଲେ । ବସୁଶ୍ରେଷ୍ଠ ଦ୍ରୋଣ ଓ ତାଙ୍କ ପତ୍ନୀ ଧରା ଜନ୍ମାନ୍ତର ଗ୍ରହଣପୂର୍ବକ ନନ୍ଦ ଯଶୋଦାରୂପେ ବ୍ରଜ ମଣ୍ଡଳରେ ଅବତୀର୍ଣ୍ଣ ହୋଇଥିଲେ । (ଭାଗବତ ୧୦ମ ସ୍କନ୍ଧ)

**ନନ୍ଦନ** — ସ୍ୱର୍ଗରେ ଥିବା ଇନ୍ଦ୍ରଙ୍କର କ୍ରୀଡ଼ା ଉଦ୍ୟାନ । କାମାକ୍ଷ୍ୟା ଦେଶର ପର୍ବତ ବିଶେଷ । ହିନ୍ଦୁପୁରାଣ ମତରେ କାମାକ୍ଷ୍ୟା ଦେବୀଙ୍କ ପୂଜା କରିବା ପାଇଁ ଇନ୍ଦ୍ର ସର୍ବଦା ଏ ପର୍ବତରେ ରହନ୍ତି । ଏଥିପାଇଁ ଲୋକେ ଏ ପର୍ବତକୁ ଯାଇ ଇନ୍ଦ୍ର ପୂଜା କରନ୍ତି । (ହିନ୍ଦୀ ଶବ୍ଦସାଗର)

**ନନ୍ଦପ୍ରୟାଗ**—ଭାରତସ୍ଥ ତୀର୍ଥ ବିଶେଷ । ଏହା ନନ୍ଦା ଓ ଅଳକାନନ୍ଦା ନଦୀଦ୍ୱୟର ସଙ୍ଗମସ୍ଥଳରେ ଅବସ୍ଥିତ । ଏହା ବଦରୀଧାମଠାରୁ ୫୪ ମାଇଲ ଦୂରବର୍ତ୍ତୀ । ଏଠାରେ କଣ୍ୱ ଋଷିଙ୍କ ଆଶ୍ରମ ଥିବାରୁ ଏହାର ଅନ୍ୟ ନାମ କଣ୍ୱାଶ୍ରମ । ଭାରତରେ ଥିବା ପ୍ରୟାଗ ନାମଧାରୀ ସାତଗୋଟି ତୀର୍ଥ ମଧ୍ୟରୁ ଏହା ଗୋଟିଏ ।

**ନନ୍ଦା**—ଭଗବତୀଙ୍କ ନାମାନ୍ତର । ବରାହପୁରାଣରେ ବ୍ରହ୍ମା ଦେବୀ ଭଗବତୀଙ୍କୁ କହିଛନ୍ତି—ହେ ଦେବୀ, ତୁମେ ଦେବତାମାନଙ୍କର ଏକ ମହତ୍ତ୍ୱ କାର୍ଯ୍ୟ ସମ୍ପାଦନ କରିଛ । ମାତ୍ର ତୁମକୁ ଆଉ ଗୋଟିଏ କାମ କରିବାକୁ ହେବ । ତୁମେ ଭବିଷ୍ୟତରେ ମହିଷାସୁରକୁ ବିନାଶ କରିବ । ଏହା ବ୍ରହ୍ମା କହିବା ପରେ ଦେବତାମାନେ ଦେବୀ ଭଗବତୀଙ୍କୁ ହିମାଳୟରେ ସ୍ଥାପନ କଲେ । ଦେବତା-ମାନେ ଅତି ଆନନ୍ଦିତ ହୋଇ ଦେବୀଙ୍କର ନାମ ଦେଲେ ନନ୍ଦା । ସ୍ଥାନାନ୍ତରରେ ଲେଖାଅଛି ଯେ ଦେବୀ ସୁରଲୋକ, ନନ୍ଦନ କାନନ ଏବଂ ପବିତ୍ର ହିମାଳୟରେ ଅବସ୍ଥାନ କରି ପରା ଆନନ୍ଦିତା ହୋଇଥିବାରୁ ନନ୍ଦା ନାମରେ ଖ୍ୟାତ ହୋଇଥିଲେ ।

**ନନ୍ଦାତୀର୍ଥ, ନନ୍ଦାଶ୍ରମ**—ମହାଭାରତରେ ଏ ତୀର୍ଥର ନାମ ଉଲ୍ଲେଖ ଅଛି । ଏଠାରେ ସର୍ବଦା ବତାସ ବହୁଥାଏ ଓ ପାଣି ବରଷୁଥାଏ । ଏହା ସାଧାରଣ ଲୋକଙ୍କ ଅଗମ୍ୟ । ଏଠାରେ ସର୍ବଦା ବେଦଧ୍ୱନି ଶୁଣାଯାଏ ମାତ୍ର କେହି ହେଲେ ବେଦ ପାଠକ ଦେଖାଯାନ୍ତି ନାହିଁ । ସକାଳେ ଓ ସନ୍ଧ୍ୟାବେଳେ

ଏଠାରେ ଅଗ୍ନିଦେବଙ୍କ ଦର୍ଶନ ମିଳେ । ଯୁଧିଷ୍ଠିର ଆପଣା ଭାଇମାନଙ୍କ ସଙ୍ଗେ ଥରେ ଏଠାକୁ ଯାଇଥିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ନନ୍ଦିଗ୍ରାମ**—ଅଯୋଧ୍ୟା ନିକଟବର୍ତ୍ତୀ ଗ୍ରାମ ବିଶେଷ । ରାମଙ୍କ ବନବାସ କାଳରେ ଭରତ ଏହି ଗ୍ରାମରେ ରହି ରାମଙ୍କ ପାଦୁକା ପୂଜା କରି ରାଜ୍ୟ ଶାସନ କରୁଥିଲେ ଓ ତପସ୍ୟାରତ ଥିଲେ । (ରାମାୟଣ, ଭାଷାକୋଷ)

**ନନ୍ଦିଘୋଷ**—ରଥଯାତ୍ରା ସମୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ଯେଉଁ ରଥରେ ବିଜେ କରନ୍ତି ।

**ନନ୍ଦିନୀ**—ବଶିଷ୍ଠଙ୍କ ହୋମଧେନୁର ନାମ । ଏ ସୁରଭିଙ୍କ ଦୁହିତା । ଏହାଙ୍କୁ ଆରାଧନା କରିବା ଯୋଗୁଁ ରାଜା ଦଳୀପ ରଘୁନାମକ କୁଳଦୀପକ ସନ୍ତାନ ଲାଭ କରିଥିଲେ । ଥରେ ରାଜା ବିଶ୍ୱାମିତ୍ର ଏ ଗାଈଟିକୁ ବଳପୂର୍ବକ ନେଇ ଯାଉଥିଲେ କିନ୍ତୁ ଯିବା ବାଟରେ ଏ ଗାଈ ଦେହରୁ ଅନେକ ଯବନ ଓ ମ୍ଳେଚ୍ଛ ସେନା ଜାତ ହୋଇ ବିଶ୍ୱାମିତ୍ରଙ୍କୁ ପରାସ୍ତ କରି ନନ୍ଦିନୀଙ୍କୁ ଛଡ଼ାଇ ଆଣିଲେ । (ରାମାୟଣ)

(୨) ଦୁର୍ଗା ଓ ଗଙ୍ଗାନଦୀଙ୍କ ନାମାନ୍ତର ।

(୩) ପରଶୁରାମଙ୍କ ମାତା ରେଣୁକାଙ୍କର ଅନ୍ୟନାମ ।

**ନନ୍ଦୀ**—ମହାଦେବଙ୍କ ଅନୁଚର ଓ ଗଣାଧିନାୟକ । ଶୈଳାଦମୁନି ଏହାଙ୍କ ପିତା । ସେ ଅନ୍ଧଥିଲେ । ସେ ଇନ୍ଦ୍ରଙ୍କ ସମୀପରେ ଏକ ଅଯୋନିଜ ଅମର ପୁତ୍ର ପ୍ରାର୍ଥନା କଲେ । ଇନ୍ଦ୍ର କହିଲେ—'ଏପରି ବର ଦେବା ମୋ ପକ୍ଷେ ଅସମ୍ଭବ, ଏପରିକ ବ୍ରହ୍ମା ବିଷ୍ଣୁ ସୁଦ୍ଧା ଏ ବର ଦେଇ ନ ପାରନ୍ତି । ଯଦି ତୁମ୍ଭେ ମହାଦେବଙ୍କୁ ସନ୍ତୁଷ୍ଟ କରି ପାରିବ ତେବେ ସେ ଦେଲେ ଦେଇ ପାରିବେ ।' ଏହା ପରେ ଶୈଳାଦ ତାହା କଲେ । ଶିବ ସନ୍ତୁଷ୍ଟ ହୋଇ କହିଲେ, 'ସେ ଅଯୋନିଜ ଓ ଅମର ହୋଇ ତାଙ୍କର ପୁତ୍ର ହେବେ ।' ତତ୍ପରେ ଶୈଳାଦ ଏକ ଯଜ୍ଞ କଲେ । ଏହି ଯଜ୍ଞାଗ୍ନିରୁ ଅମିତ ତେଜସମ୍ପନ୍ନ ନନ୍ଦୀ ଆବିର୍ଭୂତ ହେଲେ । ମହାଦେବ ଏହାଙ୍କୁ ପାର୍ଶ୍ୱଚର ଓ ଗଣାଧିନାୟକ ପଦରେ ନିଯୁକ୍ତ କଲେ । ନନ୍ଦୀ ମରୁତ୍‌କନ୍ୟା ସୁଯଶାଙ୍କର ପାଣିଗ୍ରହଣ କରିଥିଲେ । (ଲିଙ୍ଗ ପୁରାଣ)

**ନନ୍ଦୀ ଭୃଙ୍ଗୀ, ନନ୍ଦୀଭୃଙ୍ଗୀ**—ମହାଦେବଙ୍କ ପ୍ରଧାନ ଅନୁଚର ବା ଦ୍ୱାରପାଳଯୁଗଳ ।

**ନବକୁମାରୀ**—ଦୁର୍ଗା ପୂଜାର ନବରାତ୍ରରେ ପୂଜନୀୟ । ୯ଟି କୁମାରୀ, ଯାହାଙ୍କ-ଠାରେ ଯଥାକ୍ରମେ ୯ଟି ମୂର୍ତ୍ତି କଳ୍ପନା କରାଯାଏ । ଯଥା—କୁମାରିକା, ତ୍ରିମୂର୍ତ୍ତି, କଲ୍ୟାଣୀ, ରୋହିଣୀ, କାଳୀ, ଚଣ୍ଡିକା, ଶାମ୍ଭବୀ, ଦୁର୍ଗା ଓ ସୁଭଦ୍ରା । (ଭାଷାକୋଷ)

**ନବଖଣ୍ଡ**—ପୌରାଣିକ ଭୂଗୋଳ ଅନୁସାରେ ମେଦିନୀ ବା ପୃଥିବୀର ୯ଟି ବିଭାଗ । ଯଥା—ଭାରତଖଣ୍ଡ, ଇଳାବୃତ୍ତ, କିଂପୁରୁଷ, ଭଦ୍ର, କେତୁମାଳ, ହରି, ହିରଣ୍ୟ, ରମ୍ୟ ଓ କୁଶ । (ଭାଷାକୋଷ)

**ନବଗ୍ରହ**—ପୁରାଣବର୍ଣ୍ଣିତ ନଅଗୋଟି ପ୍ରସିଦ୍ଧ ଜ୍ୟୋତିଷ୍କ । ଯଥା—ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ ।

**ନବଦୁର୍ଗା**—ସପ୍ତଶତୀ ଚଣ୍ଡୀରେ ହରିହରବ୍ରହ୍ମା ବିରଚିତ ଦୁର୍ଗା କବଚରୁ ନବ-ଦୁର୍ଗାଙ୍କ ପରିଚୟ ମିଳେ । ଯଥା—ପାର୍ବତୀ ବା ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡା, ସ୍କନ୍ଦମାତା, କାତ୍ୟାୟିନୀ, କାଳରାତ୍ରି, ମହାଗୌରୀ ଓ ସିଦ୍ଧିଦା ବା ସିଦ୍ଧିଦାତ୍ରୀ ।

**ନବଧା ଭକ୍ତି**—ପ୍ରେମ ବା ଭକ୍ତିର ନଅଗୋଟି ଅଙ୍ଗ । ଯଥା—ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନା ବା ପୂଜା, ବନ୍ଦନା ବା ସ୍ତବ, ପରିଚର୍ଯ୍ୟା, ସଖ୍ୟ ବା ସଖା ଭାବରେ ସମ୍ଭାଷଣ ଓ ଦାସ୍ୟ ବା ଦାସରୂପେ ଆତ୍ମସମର୍ପଣ ପ୍ରମାଣ, ଯଥା—

ତସ୍ମାଦ୍ ଭାମିନି ସଂକ୍ଷେପାଦ୍ ବକ୍ଷ୍ୟେଽହଂ ଭକ୍ତିସାଧନମ୍
ସତାଂ ସଙ୍ଗତିରେବାତ୍ର ସାଧନଂ ପ୍ରଥମଂ ସ୍ମୃତମ୍ ।
ଦ୍ୱିତୀୟଂ ମତ୍ କଥାଲାପ ସ୍ତୃତୀୟଂ ମଦ୍ ଗୁଣେରିତମ୍
ବ୍ୟାଖ୍ୟାତୃତ୍ୱଂ ମଦ୍‌ବଚସାଂ ଚତୁର୍ଥଂ ସାଧନଂ ଭବେତ୍ ।
ଆଚାର୍ଯ୍ୟୋପାସନଂ ଭଦ୍ରେ ! ମଦ୍ ବୁଦ୍ଧ୍ୟାମାୟୟା ସଦା
ପଞ୍ଚମଂ ପୁଣ୍ୟଶୀଲତ୍ୱଂ ଯମାଦି ନିୟମାଦି ଚ ।
ନିଷ୍ଠା ମତ୍ପୂଜନେ ନିତ୍ୟଂ ଷଷ୍ଠଂ ସାଧନମୀରିତମ୍
ମମ ମନ୍ତ୍ରୋପାସକତ୍ୱଂ ସାଙ୍ଗ ସପ୍ତମମୁଚ୍ୟତେ ।

ମଦ୍‌ଭକ୍ତପୂଜାଭ୍ୟଧିକା ପୂଜା ସର୍ବଭୂତେଷୁ ମନ୍ମତିଃ
ବାହ୍ୟାର୍ଥେଷୁ ବିରାଗିତ୍ୱଂ ଶମାଦ ସହିତଂ ତଥା ।
ଅଷ୍ଟମଂ ନବମଂ ତତ୍ତ୍ୱ-ବିଚାରେ ମମ ଭାମିନି
ଏବଂ ନବବିଧା ଭକ୍ତି-ସାଧନଂ ଯସ୍ୟ କସ୍ୟ ବା ।

(ଅଧ୍ୟାତ୍ମରାମାୟଣ ଅରଣ୍ୟ କାଣ୍ଡ ଦଶମ ଅଧ୍ୟାୟ)

**ନବନିଧି** – କୁବେରଙ୍କ ନିକଟରେ ଥିବା ନଅଗୋଟି ରତ୍ନ । ଯଥା – ମୋତି ବା ମୁକ୍ତା, ମାଣିକ, ବୈଦୂର୍ଯ୍ୟ, ଗୋମେଦ, ବଜ୍ର ବା ହୀରକ, ବିଦ୍ରୁମ ବା ପ୍ରବାଳ, ପଦ୍ମରାଗ, ମର୍କତ ଓ ନୀଳକାନ୍ତ ।

ପୁରାଣ ମତରେ ଏହି ନବନିଧି ପ୍ରତ୍ୟେକେ ଗୋଟିଏ ଗୋଟିଏ ଗ୍ରହଙ୍କ ପ୍ରିୟନିଧି ଓ ତାହା ସେହି ସେହି ଗ୍ରହଙ୍କ ଦୋଷ ଶାନ୍ତି ପାଇଁ ଦାନ କରାଯାଏ ବା ଶରୀରରେ ଧାରଣ କରାଯାଏ । ମୋତି ବା ମୁକ୍ତା – ବୃହସ୍ପତିଙ୍କର, ମାଣିକ୍ୟ – ରବିଙ୍କର, ଗୋମେଦ – ରାହୁଙ୍କର, ହୀରକ ବା ବଜ୍ର – ଶୁକ୍ରଙ୍କର, ବିଦ୍ରୁମ ବା ପ୍ରବାଳ—ମଙ୍ଗଳଙ୍କର, ପଦ୍ମରାଗ ବା ପୁଷ୍ପରାଗ – ଚନ୍ଦ୍ରଙ୍କର, ମର୍କତ ବା ପାଚ – ବୁଧଙ୍କର, ନୀଳକାନ୍ତ ବା ଇନ୍ଦ୍ରନୀଳ – ଶନିଙ୍କର, କିନ୍ତୁ ହିନ୍ଦୀ ଶବ୍ଦସାଗର ନବରତ୍ନ ତଳେ କୋଷରେ ଲେଖି ଅଛନ୍ତି ଯେ ସୂର୍ଯ୍ୟଙ୍କ ଦୋଷ ଶାନ୍ତି ପାଇଁ ଲହସୁନିଆଁ (ବୈଦୁର୍ଯ୍ୟ) ଚନ୍ଦ୍ରମାଙ୍କ ପାଇଁ ନୀଲମ (ନୀଳକାନ୍ତ), ମଙ୍ଗଳଙ୍କ ପାଇଁ ମାଣିକ (ମାଣିକ୍ୟ), ବୁଧଙ୍କ ପାଇଁ ପୁଷ୍ପରାଗ (ପଦ୍ମରାଗ), ବୃହସ୍ପତିଙ୍କ ପାଇଁ ମୋତି, ଶୁକ୍ରଙ୍କ ପାଇଁ ହୀରା (ହୀରକ), ଶନିଙ୍କ ପାଇଁ ନୀଳ (ନୀଳରା), ରାହୁଙ୍କ ପାଇଁ ଗୋମେଦ ଓ କେତୁଙ୍କ ପାଇଁ ପନ୍ନା (ମରକତ) । (ଭାଷାକୋଷ)

**ନବଯୌବନ ବେଶ** – ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦାରୁମୂର୍ତ୍ତି ନୂତନ ଚର୍ଚ୍ଚିତ ହେଲା ପରେ ରଥକୁ ଯିବା ପୂର୍ବରୁ ଯେଉଁ ରୂପ ବା ବେଶରେ ସଜ୍ଜିତ ହୁଅନ୍ତି, ନେତ୍ରୋତ୍ସବରେ ହେବାରୂପ ବା ବେଶ । ଆଷାଢ଼ ଅମାବାସ୍ୟା ଦିଏ ଏ ବେଶ ହୁଏ । (ଭାଷାକୋଷ)

**ନବ ଲକ୍ଷଣ** – ବ୍ରାହ୍ମଣର ନଅଗୋଟି ଲକ୍ଷଣ ବା ଚିହ୍ନ । ଯଥା – ଆଗ୍ନିର, ବନସ୍ତ, ବିଦ୍ୟା, ପ୍ରତିଷ୍ଠା, ତୀର୍ଥଦର୍ଶନ, ନିଷ୍ଠା ବୃତ୍ତି, ତପ ଓ ଦାନ । ଯୋଗ ସାଧନର ନଅଗୋଟି ସୋପାନ; ସୃଷ୍ଟି, ସ୍ଥିତି, ପ୍ରଳୟ ସମ୍ବନ୍ଧୀୟ ନଅ ପ୍ରକାର ଐଶ୍ୱରିକ ଲକ୍ଷଣ ।

**ନବଶକ୍ତି** — ହିନ୍ଦୁପୁରାଣ ମତରେ ବିଶ୍ୱନିୟନ୍ତ୍ରୀ ନଅଗୋଟି ଶକ୍ତିରୂପିଣୀ ଦେବତା । ଯଥା — ପ୍ରଭା, ମାୟା, ଜୟା, ସୂକ୍ଷ୍ମା, ବିଶୁଦ୍ଧା, ନନ୍ଦିନୀ, ସୁପ୍ରଭା, ବିଜୟା ଓ ସର୍ବସିଦ୍ଧିଦା । ମତାନ୍ତରରେ ବିମଳା, ଉତ୍କର୍ଷିଣୀ, ଜ୍ଞାନକ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା, ଅନୁଗ୍ରହା ଓ ବିରଜା । (ଭାଷାକୋଷ)

**ନମୁଚି** — (୧) କାମ ବା ମଦନଙ୍କ ନାମାନ୍ତର । ମହାଦେବଙ୍କ ତୃତୀୟ ନେତ୍ରାଗ୍ନିରେ ଏ ଭସ୍ମୀଭୂତ ହୋଇଥିଲେ । (୨) ଦୈତ୍ୟ ବିଶେଷ । ମହାସୁର ଶୁମ୍ଭର ତୃତୀୟ ସହୋଦର । ଶୁମ୍ଭର କନିଷ୍ଠ ନିଶୁମ୍ଭ ଓ ତାର କନିଷ୍ଠ ନମୁଚି । (୩) ବିଖ୍ୟାତ ଅସୁର ରାଜା ବିଶେଷ । ଦେବରାଜ ଇନ୍ଦ୍ରଙ୍କ ସହିତ ଏହାର ବନ୍ଧୁତା ଥିଲା । ଇନ୍ଦ୍ର ବିଶ୍ୱାସଭଙ୍ଗ କରି ଏହି ରାକ୍ଷସକୁ ବଧ କରିବା ଦ୍ୱାରା ତାଙ୍କୁ ବ୍ରହ୍ମହତ୍ୟା ପାତକ ଲାଗିଲା । ପରେ ଅରୁଣା ନଦୀରେ ସ୍ନାନକରି ଇନ୍ଦ୍ର ଏହି ପାତକରୁ ମୁକ୍ତ ହେଲେ । ଅରୁଣା ସରିଦ୍‌ଶ୍ରେଷ୍ଠା ସରସ୍ୱତୀର ଏକ ଶାଖା । ଏକଦା ଦାନବରାଜ ନମୁଚି ଇନ୍ଦ୍ରଙ୍କୁ ଭୟ କରି ସୂର୍ଯ୍ୟରଶ୍ମି ମଧ୍ୟରେ ଲୁଚି ରହିଲା । ଇନ୍ଦ୍ର ତାକୁ ଦେଖିବା ମାତ୍ରେ ତା ସହିତ ମିତ୍ରତା ସ୍ଥାପନ କଲେ । ଦେବରାଜ ମିତ୍ର ନମୁଚିକୁ କହିଲେ—'ମୁଁ ପ୍ରତିଜ୍ଞା କରି ଏହି ସତ୍ୟରେ ଆବଦ୍ଧ ହୋଇ କହୁଛି ଯେ କି ଦିନ ବା ରାତ୍ରି ଅଥବା ଆର୍ଦ୍ର ବା ଶୁଷ୍କ ବସ୍ତୁ ଦ୍ୱାରା ତୁମକୁ ସଂହାର କରିବି ନାହିଁ ।' ଏହା ପରେ ଦିନେ ଇନ୍ଦ୍ର କାକରଜଳ ଦ୍ୱାରା ଚତୁର୍ଦ୍ଦିଗ ମାୟାରେ ସମାଚ୍ଛନ୍ନ କରି ସଲିଳ ଫେନ ଦ୍ୱାରା ରାକ୍ଷସର ମସ୍ତକ ଛେଦନ କଲେ । ସେହିକ୍ଷଣି ଛିନ୍ନ ମସ୍ତକ ଇନ୍ଦ୍ରଙ୍କ ପଛରେ ଗୋଡ଼ାଇ କହିଲେ—'ରେ ପାପୀ, ତୁ ମିତ୍ରଦ୍ରୋହୀ ହୋଇଛୁ ।' ଇନ୍ଦ୍ର ଭୟରେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ବ୍ରହ୍ମା ତାହାଙ୍କୁ ବିଧିପୂର୍ବକ ଯଜ୍ଞାନୁଷ୍ଠାନ କରି ଅରୁଣା ନଦୀରେ ସ୍ନାନ କରି ପାପମୁକ୍ତ ହେବାକୁ ଉପଦେଶ ଦେଲେ । ଇନ୍ଦ୍ର ସେହିପରି କରି ନିଷ୍ପାପ ହୋଇ ସ୍ୱର୍ଗକୁ ଗଲେ । ଛିନ୍ନ ମୁଣ୍ଡ ଅରୁଣାରେ ସ୍ନାନ କରି ଅକ୍ଷୟ ଲୋକ ପ୍ରାପ୍ତ ହେଲା । (ମହାଭାରତ-ଶଲ୍ୟପର୍ବ)

ହିନ୍ଦୀ ଶବ୍ଦସାଗରରୁ ଜଣାଯାଏ ଯେ—ଇନ୍ଦ୍ର ସରସ୍ୱତୀ ଓ ଅଶ୍ୱିନୀ-କୁମାରଦ୍ୱୟଙ୍କଠାରୁ ସମୁଦ୍ର ଫେନ ପରି ଏକ ବଜ୍ରାସ୍ତ୍ର ନେଇ ଏହାକୁ ବଧ କରିଥିଲେ ।

**ନର** — ଭାଗବତରେ ନର, ଭଗବାନଙ୍କ ଚତୁର୍ଥ ଅବତାର ବୋଲି ଜଣାଯାଏ । ଧର୍ମଙ୍କ ପତ୍ନୀ ମୂର୍ତ୍ତି ଏହାଙ୍କର ମାତା । ନର ଓ ନାରାୟଣ ଦୁଇଟି ମୂର୍ତ୍ତି ହେଲେ

ମଧ୍ୟ ଏକ ସପ୍ତାଂଶ । ଅପର କଳ୍ପରେ ନରସିଂହ ଦ୍ୱିଧା ବିଭକ୍ତ ହୋଇ ଏହି ମୂର୍ତ୍ତି ଧାରଣ କରିଥିଲେ । ମହାଭାରତରେ କୃଷ୍ଣ ଦ୍ୱୈପାୟନ ବ୍ୟାସ ଲେଖିଛନ୍ତି — ସ୍ୱାୟମ୍ଭୁବ ମନୁଙ୍କ ରାଜତ୍ୱ ସମୟରେ ନାରାୟଣ ଧର୍ମଙ୍କ ପୁତ୍ର ରୂପେ ନର, ନାରାୟଣ, ହରି ଓ ଶ୍ରୀକୃଷ୍ଣ ଏହି ଚାରି ଅଂଶରେ ଅବତୀର୍ଣ୍ଣ ହୋଇଥିଲେ । ଏମାନଙ୍କ ମଧ୍ୟରୁ ନର ଓ ନାରାୟଣ ଏ ଦୁହେଁ ବଦରିକାଶ୍ରମକୁ ଯାଇ କଠୋର ତପସ୍ୟା କରିଥିଲେ । ଏକଦା ଦେବର୍ଷି ନାରଦ ଏମାନଙ୍କ ଉପାସନା ଦେଖି ବିସ୍ମିତ ହେଲେ । ନାରଦ ପଚାରିଲେ—'ଚତୁରାଶ୍ରମବାସୀ ଲୋକମାନେ ମୁକ୍ତି ନିମିତ୍ତ ଯାହାଙ୍କୁ ଉପାସନା କରନ୍ତି, ସେ ପୁଣି କାହାର ପୂଜା କରୁଛନ୍ତି ?' ଏହା ଉତ୍ତରରେ ଭଗବାନ ନାରାୟଣ କହିଲେ—'ଏହା ଅତି ଗୋପନୀୟ । ତଥାପି ତୁମ୍ଭଙ୍କୁ ଅତି ଭକ୍ତିପରାୟଣ ବୋଲି ଜାଣି ଏହି ନିଗୂଢ଼ତତ୍ତ୍ୱ କହୁଛି, ଶୁଣ । ଯେ ସୂକ୍ଷ୍ମ, ଅବିଜ୍ଞେୟ, କାର୍ଯ୍ୟବର୍ଜ୍ଜିତ, ଅଚଳ, ନିତ୍ୟ ଏବଂ ନିର୍ଗୁଣାତୀତ, ଯାହାଙ୍କଠାରୁ ସତ୍ତ୍ୱାଦି ଗୁଣସମୂହ ସମୁଦ୍ଭୂତ, ଯେ ଅବ୍ୟକ୍ତ ହୋଇ ସୁଦ୍ଧା ବ୍ୟକ୍ତଭାବରେ ଅବସ୍ଥାନ କରି ପ୍ରକୃତି ନାମରେ ଅଭିହିତ ହୁଅନ୍ତି, ସେହି ପରମାତ୍ମାହିଁ ଆମ୍ଭମାନଙ୍କ ଉତ୍ପତ୍ତିର କାରଣ; ଆମ୍ଭେମାନେ ତାହାଙ୍କୁ ମାତା ପିତା କିମ୍ବା ପ୍ରକୃତଜ୍ଞାନରେ ଉପାସନା କରୁଅଛୁଁ ।' (ମହାଭାରତ) । ନର ଓ ନାରାୟଣଙ୍କ କଠୋର ତପସ୍ୟା ଦେଖି ଇନ୍ଦ୍ରାଦି ଦେବତାମାନେ ଭୀତ ହୋଇ କାମଦେବଙ୍କ ସହ ଅପ୍ସରାମାନଙ୍କୁ ପଠାଇ ତପୋଭଙ୍ଗ କରିବା ପାଇଁ ଚେଷ୍ଟା କଲେ । ଏମାନେ ଅପ୍ସରାମାନଙ୍କୁ ଦେଖି ଦେବତାମାନଙ୍କ ଉଦ୍ଦେଶ୍ୟ ବୁଝି ପାରିଲେ ଏବଂ ଦେବତା ଓ ଅପ୍ସରାମାନଙ୍କ ଗର୍ବ ଖର୍ବ କରିବା ମାନସରେ ଉର୍ବଶୀଙ୍କୁ ସୃଷ୍ଟି କଲେ । ଉର୍ବଶୀ ରୂପଯୌବନରେ ଅପ୍ସରାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠା । ଉର୍ବଶୀ ସୃଷ୍ଟ ହେବା ମାତ୍ରେ ନରନାରାୟଣ ତାହାଙ୍କୁ ସ୍ୱର୍ଗକୁ ପଠାଇଦେଲେ । ଏ ନରନାରାୟଣ ଦ୍ୱାପରଯୁଗରେ ଅର୍ଜୁନ ଓ ଶ୍ରୀକୃଷ୍ଣରୂପେ ଅବତୀର୍ଣ୍ଣ ହୋଇଥିଲେ । (ଶ୍ରୀମଦ୍ଭାଗବତ ଓ ମହାଭାରତ)

**ନରକ**—(୧) କଳିର ନାତି । ଭୟ ଔରସରେ ମୃତ୍ୟୁ ଗର୍ଭରୁ ଏହାର ଜନ୍ମ । (୨) ଦାନବ ବିଶେଷ, ପୃଥିବୀ ଗର୍ଭରୁ ଏହାର ଉତ୍ପତ୍ତି । (୩) ପରଲୋକରେ ପାପୀର ଦଣ୍ଡପ୍ରାପ୍ତି ସ୍ଥାନକୁ ନରକ କହନ୍ତି । ଏହି ନରକ ୨୯ ଗୋଟି । ଯଥା :—ତାମିସ୍ର, ଅନ୍ଧତାମିସ୍ର, ରୌରବ, ମହାରୌରବ, କୁମ୍ଭୀପାକ, କାଳସୂତ୍ର, ଅସିପତ୍ରବନ, ଶୂକରମୁଖ, ଅନ୍ଧକୂପ, କୃମିଭୋଜନ, ସନ୍ଦଂଶ, ତପ୍ତଶୂର୍ମି, ବଜ୍ରକଣ୍ଟକ, ଶାଲ୍ମଳୀ, ବୈତରଣୀ, ପୂୟୋଦ, ବିଶସନ, ଶ୍ୱାନଗତ, ଅବୀଚି, କ୍ଷାରକର୍ଦ୍ଦମ, ଦନ୍ଦଶୂକ, ସୂଚୀମୁଖ, ପ୍ରାଣରୋଧ, ଲାଳାଭକ୍ଷ, ଅୟଃପାନ, ଶୂଳପ୍ରୋତ, ଅବଟ, ନିରୋଧନ, ଓ ପର୍ଯ୍ୟାବର୍ତ୍ତନ ।

ଭାଗବତ ୫ମ ସ୍କନ୍ଧ ୨୬ ଅଧ୍ୟାୟର ଶୁକ ପରୀକ୍ଷିତ ସମ୍ବାଦରେ ଉକ୍ତ ୨୯ ନରକ ଓ କେଉଁପ୍ରକାର ପାପୀ କେଉଁ ନରକରେ ପଡ଼ି କି ଯନ୍ତ୍ରଣା ଭୋଗ କରେ ତାହା ବର୍ଣ୍ଣିତ ହୋଇଅଛି । ମନୁ ସ୍ମୃତିରେ ୨୬ ନରକର ଉଲ୍ଲେଖ ଅଛି ଓ ଅନ୍ୟାନ୍ୟ ପୁରାଣମାନଙ୍କରେ ମଧ୍ୟ ଭିନ୍ନ ଭିନ୍ନ ନରକକୁଣ୍ଡ (ବସାକୁଣ୍ଡ, ତପ୍ତକୁଣ୍ଡ, ସର୍ପକୁଣ୍ଡ, ଚକ୍ରକୁଣ୍ଡ) ମାନଙ୍କର ଉଲ୍ଲେଖ ଅଛି । ପୁରାଣ ଓ ସ୍ମୃତିରେ ନରକର ବର୍ଣ୍ଣନା ମିଳେ । କିନ୍ତୁ ହିନ୍ଦୁମାନଙ୍କର ପୁରାଣ ଅପେକ୍ଷା ପ୍ରାଚୀନ ଗ୍ରନ୍ଥମାନଙ୍କରେ ନରକର ଉଲ୍ଲେଖ ନାହିଁ । ଭିନ୍ନ ଭିନ୍ନ ପାପ କରିଥିବା ବ୍ୟକ୍ତିଙ୍କ ଆତ୍ମା ମୃତ୍ୟୁ ପରେ ଭିନ୍ନ ଭିନ୍ନ ପ୍ରକାର ନରକରେ ବହୁକାଳ ଯନ୍ତ୍ରଣା ଭୋଗ କରେ । ମୁସଲମାନ୍ ଓ ଖ୍ରୀଷ୍ଟିୟାନଙ୍କ ଧର୍ମଶାସ୍ତ୍ର ଅନୁସାରେ ନରକର କଳ୍ପନା ଅଛି, କିନ୍ତୁ ଏତେ ନରକର ଉଲ୍ଲେଖ ନାହିଁ । ସେମାନଙ୍କ ମତରେ ନରକରେ ସର୍ବଦା ଗନ୍ଧକର ନିଆଁ ଜଳୁଛି । (ହିନ୍ଦୀ ଶବ୍ଦସାଗର)

ହିନ୍ଦୁ ପୁରାଣ ମତରେ କଳିର ପୁତ୍ର ଭୟ ଓ ପୁତ୍ରୀ ମୃତ୍ୟୁଙ୍କଠାରୁ ଉତ୍ପନ୍ନ କାଳ୍ପନିକ ପୁରୁଷ, ଯେ ଆପଣା ଭଗିନୀ, ଯାତନାକୁ ବିବାହ କରିଥିଲେ ।

(ହିନ୍ଦୀ ଶବ୍ଦସାଗର)

ବିପ୍ରଚିତ୍ତି ଦାନବର ଏକ ପୁତ୍ରର ନାମ । (ହିନ୍ଦୀ ଶବ୍ଦସାଗର)

କୌଣସି କୌଣସି ପୁରାଣରେ ବିଭିନ୍ନ ଶ୍ରେଣୀର ପାପୀଙ୍କ ପାଇଁ ଭିନ୍ନ ଭିନ୍ନ ପ୍ରକାର ୮୬ଟି ନରକକୁଣ୍ଡ ନିର୍ଦ୍ଦିଷ୍ଟଥିବାର ଉଲ୍ଲେଖ ଅଛି, ଯଥା— ବିଷ୍ଠାକୁଣ୍ଡ, ବସାକୁଣ୍ଡ, ତପ୍ତକୁଣ୍ଡ, ସର୍ପକୁଣ୍ଡ, ପୂୟକୁଣ୍ଡ, ରୁଧିରକୁଣ୍ଡ ଇତ୍ୟାଦି ।

(ଭାଷାକୋଷ)

**ନରକାସୁର**—ବରାହ ଅବତାରରେ ବିଷ୍ଣୁଙ୍କ ଔରସରେ ପୃଥିବୀ ଗର୍ଭଜାତ ଅସୁର ବିଶେଷ : ବରାହ ଅବତାରରେ ବିଷ୍ଣୁ ପୃଥିବୀ ସଙ୍ଗେ ସହବାସ କରିବାରୁ ପୃଥିବୀ ଗର୍ଭବତୀ ହେଲେ । ତାଙ୍କ ଗର୍ଭରେ ଏକ ଉଗ୍ର ଓ ବଳୀ ଅସୁରଥିବା ଜାଣି ଦେବତାମାନେ ପୃଥିବୀଙ୍କ ପ୍ରସବ ରୋକଦେଲେ । ପୃଥିବୀ ବିଷ୍ଣୁଙ୍କୁ ପ୍ରାର୍ଥନା କରିବାରୁ ତ୍ରେତାଯୁଗରେ ରାବଣ ବଧ ପରେ ପୃଥିବୀ ପ୍ରସବ କରିବେ ବୋଲି ବିଷ୍ଣୁ ବର ଦେଲେ । ତଦନୁସାରେ ରାବଣ ବଧ ପରେ ପୃଥିବୀର ଯେଉଁ ସ୍ଥାନରୁ ସୀତାଙ୍କର ଜନ୍ମ ହୋଇଥିଲା ସେହି ସ୍ଥାନରୁ ନରକାସୁର ଜନ୍ମ ହେଲା । ରାଜା ଜନକ ଏହାକୁ ୧୬ ବର୍ଷ ପର୍ଯ୍ୟନ୍ତ ପାଳିଲେ । ୧୬ ବର୍ଷ ବୟସରେ ଆପଣା ମାତା ପୃଥିବୀଠାରୁ ଏ ଆପଣା ଜନ୍ମବୃତ୍ତାନ୍ତ ଅବଗତ ହୋଇ

ବିଷ୍ଣୁଙ୍କୁ ସ୍ମରଣ କରିବାରୁ ବିଷ୍ଣୁ ଏହାଙ୍କୁ ପ୍ରାଗ୍‌ଜ୍ୟୋତିଷପୁରର ରାଜା କରାଇଲେ । ଏ ବିଦର୍ଭ ରାଜକୁମାରୀ ମାୟାଙ୍କୁ ବିବାହ କଲା । ବ୍ରାହ୍ମଣ ଓ ଦେବତାଙ୍କ ସଙ୍ଗେ ବିରୋଧ ନ କରିବା ପାଇଁ ବିଷ୍ଣୁ ଏହାଙ୍କୁ ଚେତାଇଥିଲେ । ବାଣାସୁର ଥରେ ପ୍ରାଗ୍‌ଜ୍ୟୋତିଷପୁରକୁ ବୁଲିବାକୁ ଆସିଥିଲା । ସେହି ସମୟରେ ବାଣାସୁରର ସଂସର୍ଗରେ ଏ ଦୁଷ୍ଟ ହେଲା ଓ ଦେବତାମାନଙ୍କୁ କଷ୍ଟ ଦେଲା । ଦେବତାମାନେ କ୍ଷୁବ୍ଧ ହୋଇ ଏହାଙ୍କୁ ଶାପ ଦେଲେ । ଏ କଠୋର ତପସ୍ୟା ସାଧନ କରି ବହୁବାର ଇନ୍ଦ୍ରଙ୍କୁ ଜିତିଲା । ଶେଷରେ ଶ୍ରୀକୃଷ୍ଣ ପ୍ରାଗ୍‌ଜ୍ୟୋତିଷପୁର ଆକ୍ରମଣ କରି ସୁଦର୍ଶନ ଚକ୍ରରେ ଏହାଙ୍କୁ ବଧ କଲେ ।
(ହିନ୍ଦୀ ଶବ୍ଦସାଗର)

**ନରନାରାୟଣ**—(୧) ଶରଭରୂପୀ ମହାଦେବ ବଜ୍ରାଘାତରେ ନରସିଂହଙ୍କୁ ଦୁଇଭାଗରେ ବିଭକ୍ତ କରିଥିଲେ । ନରରୂପ ଦେହାର୍ଦ୍ଧରୁ ମହାତପା ମୁନିରୂପଧାରୀ ନର ଓ ସିଂହ ଦେହାର୍ଦ୍ଧରୁ ମହାତପା ନାରାୟଣ ନାମକ ଜନାର୍ଦ୍ଦନ ଉତ୍ପନ୍ନ ହେଲେ । (କାଳିକାପୁରାଣ)

(୨) ବ୍ରହ୍ମାଙ୍କ ହୃଦୟରୁ ଧର୍ମ ଉତ୍ପନ୍ନ ହେଲେ । ଧର୍ମ ଗୃହସ୍ଥାଶ୍ରମ ଅବଲମ୍ବନ କରି ଦକ୍ଷ ପ୍ରଜାପତିଙ୍କ ଦଶଗୋଟି କନ୍ୟାର ପାଣିଗ୍ରହଣ କଲେ । ଏମାନଙ୍କ ଗର୍ଭରୁ ହରି, କୃଷ୍ଣ, ନର ଓ ନାରାୟଣ ନାମକ ଚାରିପୁତ୍ର ଜନ୍ମ ହେଲେ । ଏମାନଙ୍କ ମଧ୍ୟରେ ହରି ଓ କୃଷ୍ଣ ସର୍ବଦା ଯୋଗରତ ରହୁଥିଲେ ଏବଂ ନର ଓ ନାରାୟଣ ବଦରିକାଶ୍ରମକୁ ଯାଇ ତପସ୍ୟା ଆରମ୍ଭ କଲେ । ଏଥିଲାଗି ବଦରିକାଶ୍ରମକୁ ନରନାରାୟଣାଶ୍ରମ ବୋଲି କହନ୍ତି । (ଦେବୀଭାଗବତ)

**ନରସିଂହ, ନୃସିଂହ**—ଭଗବାନଙ୍କ ଚତୁର୍ଥ ଅବତାର । ଦୈତ୍ୟରାଜ ହିରଣ୍ୟକଶିପୁକୁ ବଧ କରିବାପାଇଁ ଭଗବାନ୍ ହରି ଏହି ରୂପ ଧାରଣ କରିଥିଲେ । ଏହି ନୃସିଂହ ମୂର୍ତ୍ତି ଅର୍ଦ୍ଧେକ ନରାକୃତି ଓ ଅପର ଅର୍ଦ୍ଧ ସିଂହାକାର । ବ୍ରହ୍ମାଙ୍କ ବରରେ ହିରଣ୍ୟକଶିପୁ ଦେବାସୁର ଗନ୍ଧର୍ବ ଇତ୍ୟାଦିଙ୍କ ଦ୍ୱାରା ମରିବେ ନାହିଁ ବୋଲି ପ୍ରାର୍ଥନା କରିଥିଲେ । କୌଣସି ଅସ୍ତ୍ରଶସ୍ତ୍ର ତାଙ୍କ ଦେହରେ ଭେଦ କରିବ ନାହିଁ । ଏହି ବରଯୋଗେ ଦୈତ୍ୟରାଜ ସମଧିକ ଗର୍ବୀ ହୋଇ ଦେବତାମାନଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର ଆରମ୍ଭ କଲେ । ଦେବତାମାନେ ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ଦେବତାମାନଙ୍କୁ ଆଶ୍ୱାସନା ଦେଇ ବିଦାୟ କଲା ପରେ ବିଷ୍ଣୁ ଏ ବିଷୟରେ ଚିନ୍ତା କଲେ । ଅବଶେଷରେ ନୃସିଂହାବତାର ଧାରଣ କରିବା ଏକାନ୍ତ ଆବଶ୍ୟକ ବୋଲି ମନେକଲେ ।

ଭୟାବହ ନୃସିଂହମୂର୍ତ୍ତି ଧାରଣ କରି ବିଷ୍ଣୁ ହିରଣ୍ୟର ରାଜସଭାରେ ଆବିର୍ଭୂତ ହେଲେ । ଏହି ଅଦ୍ଭୁତ ଜୀବକୁ ବଧ କରିବା ପାଇଁ ରାକ୍ଷସରାଜ ଆଦେଶ ଦେଲେ । ଅସୁରଗଣ ନୃସିଂହଙ୍କୁ ଆକ୍ରମଣ କରି ପରାସ୍ତ ଓ ନିହତ ହେଲେ । ଅନ୍ୟ ଉପାୟ ନ ଦେଖି ହିରଣ୍ୟ ନିଜେ ଯୁଦ୍ଧାର୍ଥେ ଅଗ୍ରସର ହୋଇ ନିହତ ହେଲେ । (ହରିବଂଶ)

ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ପ୍ରସ୍ତାବ କିନ୍ତୁ ଅନ୍ୟରୂପ । ହିରଣ୍ୟ ତପୋବଳେ ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ ହୋଇ ଗର୍ବିତ ହୋଇଉଠିଲେ । ଦେବଭୂମି ଜୟ କରି ନିଜେ ଇନ୍ଦ୍ରାସନରେ ଅଧିଷ୍ଠିତ ହେଲେ । ହିରଣ୍ୟର ଚାରିଗୋଟି ପୁତ୍ର ମଧ୍ୟରେ ପ୍ରହ୍ଲାଦ ଅତି ବିଷ୍ଣୁଭକ୍ତ ଥିଲେ । ଭାଇ ହିରଣ୍ୟାକ୍ଷଙ୍କୁ ବିଷ୍ଣୁ ବଧ କରିଥିବାରୁ ସେହିଦିନଠାରୁ ହିରଣ୍ୟ ବିଷ୍ଣୁଙ୍କୁ ଶତ୍ରୁ ଦୃଷ୍ଟିରେ ଘୃଣା କରୁଥିଲେ । ତେଣୁ ପୁଅକୁ ବିଷ୍ଣୁ ଗୁଣଗାନରୁ ଫେରାଇ ନେବା ପାଇଁ ଅନେକ ଉପଦେଶ ଦେଲେ, ଦଣ୍ଡବିଧାନ କଲେ ମାତ୍ର ପ୍ରହ୍ଲାଦ ଥରେ ହେଲେ ବିଷ୍ଣୁନାମ ଗାନରୁ ବିରତ ହେଲେନାହିଁ । କ୍ରୋଧାନ୍ଧ ହିରଣ୍ୟ ଦିନେ ରାଜସଭା ଆହ୍ୱାନ କରି ପ୍ରହ୍ଲାଦଙ୍କୁ ପଚାରିଲେ—'ତୁ ଯେଉଁ ବିଷ୍ଣୁର ସର୍ବଦା ପରାୟଣ ହୋଇ ରହିଛୁ ସେ କେଉଁଠାରେ ଅଛି ?' ପ୍ରହ୍ଲାଦ କହିଲେ—'ସେ ହରି ସବୁଠାରେ ଥାଆନ୍ତି ।' ହିରଣ୍ୟ କ୍ରୋଧ ଜର୍ଜରିତ ହୋଇ ପଚାରିଲେ—'ତେବେ ମୋ ସିଂହାସନର ଏଇ ସ୍ତମ୍ଭରେ ତୋ ହରି ଅଛି ?' ପ୍ରହ୍ଲାଦ କହିଲେ—'ଏଥିରେ ଅସମ୍ଭବ କଣ ?' ହିରଣ୍ୟ କ୍ରୋଧରେ ସେହି ସ୍ତମ୍ଭକୁ ପଦାଘାତ କରନ୍ତେ ନୃସିଂହ ଆବିର୍ଭୂତ ହୋଇ ଅବଲୀଳାକ୍ରମେ ଅସୁରଟାକୁ ଧରିନେଲେ ଏବଂ ନଖାଘାତରେ ତାର ବକ୍ଷ ବିଦାରଣ କଲେ । ଏହା ପରେ ପ୍ରହ୍ଲାଦଙ୍କ ସ୍ତବରେ ତୃପ୍ତି ଲଭି କରି ନୃସିଂହ ଅନ୍ତର୍ଦ୍ଧାନ ହୋଇଗଲେ ।

**ନରେନ୍ଦ୍ର**—ପୁରୀ ସହରରେ ଅବସ୍ଥିତ ଏକ ବିଖ୍ୟାତ ପୁଷ୍କରିଣୀ । ଶ୍ରୀଜଗନ୍ନାଥ ମହାପ୍ରଭୁ ଚନ୍ଦନଯାତ୍ରାବେଳେ ଏହି ପୋଖରୀରେ ଚାପଖେଳନ୍ତି । ଏହା ଲମ୍ବରେ ୮୭୩ ଫୁଟ ଓ ୭୪୩ ଫୁଟ ଓସାର । କେହି କେହି କହନ୍ତି ରଣପୁର ରାଜା ନରେନ୍ଦ୍ର ମହାପାତ୍ର ଏହି ସରୋବର ଖୋଳାଇଥିଲେ । ମାତ୍ର ଇତିହାସରୁ ଜଣାଯାଏ ଗଜପତି ନରସିଂହଦେବଙ୍କ ଲକ୍ଷପୋଷୀ ନରେନ୍ଦ୍ର ମହାପାତ୍ର ନାମକ ମନ୍ତ୍ରୀଙ୍କ ଦ୍ୱାରା ଏହା ଖୋଦିତ ହୋଇଥିଲା । (ଭାଷାକୋଷ)

**ନର୍ମଦା**—ନଦୀ ବିଶେଷ । ଉତ୍ପତ୍ତି ସ୍ଥାନ ବିନ୍ଧ୍ୟ ପର୍ବତ, ପତନ ସ୍ଥାନ ଆରବ ସାଗର । ଏହି ନଦୀ ସମ୍ବନ୍ଧେ ଭକ୍ତକବି ବିପ୍ର ପୀତାମ୍ବର ତାଙ୍କ କୃତ ନୃସିଂହ-

ପୁରାଣରେ ଲେଖିଛନ୍ତି । ନର୍ମଦା ବେଶ୍ୟା କୁଳରେ ଜନ୍ମ ହୋଇଥିଲେ । ବେଶ୍ୟାବୃତ୍ତି ମଧ୍ୟ ତାର ପ୍ରଧାନ ଜୀବିକା ଥିଲା । ମାତ୍ର ସକାଳୁ ଯେଉଁ ପୁରୁଷ ତା ଗୃହରେ ଉପସ୍ଥିତ ହୋଇ ତାକୁ ଯାହା ଦେଉଥିଲେ ସେ ସନ୍ତୁଷ୍ଟ ହୋଇ ସେହି ରାତିଟି ତାହା ସହିତ ଯାପନ କରୁଥିଲା । ତାର ଏହି ପ୍ରତିଜ୍ଞାରେ ଦେବତାମାନେ ସନ୍ତୁଷ୍ଟ ହୋଇ ବର ଦେଲେ ଯେ ସେ ପର ଜନ୍ମରେ ନଦୀ-ରୂପରେ ନରଲୋକର ପରୋପକାର ସାଧନ କରିବ ଏବଂ ଗୋଟିଏ ତୀର୍ଥରୂପେ ଗଣ୍ୟ ହୋଇ ରହିବ ।

ପୁରାଣୋକ୍ତ ସାତଗୋଟି ତୀର୍ଥ ଅର୍ଥାତ୍ ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ, କାବେରୀ ମଧ୍ୟରୁ ଏହା ଏକତମ ।

(୨) ଜଣେ ଗନ୍ଧର୍ବ ସ୍ତ୍ରୀଙ୍କ ନାମ ନର୍ମଦା । ଏ କେତୁମତୀ, ସୁନ୍ଦରୀ ଓ ବାସୁଦେବଙ୍କ ଜନନୀ ।

**ନର୍ମଦେଶ୍ୱର**—ନର୍ମଦା ନଦୀ ଗର୍ଭରୁ ମିଳୁଥିବା ଏକ ପ୍ରକାର ଅଣ୍ଡାକାର ଶିବଲିଙ୍ଗ । ଏହା ସ୍ଫଟିକ ପରି ଶୁକ୍ଳ, ନାଲି ବା କଳା ରଙ୍ଗର ଅଟେ । ପୁରାଣ ଅନୁସାରେ ଏ ଲିଙ୍ଗର ପୂଜାରେ ବିଶେଷ ମାହାତ୍ମ୍ୟ ଅଛି ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ନଳ**—ନିଷାଧାଧିପତି । ରାଜା ବୀରସେନଙ୍କ ପୁତ୍ର । ସ୍ୱୟମ୍ବର ପ୍ରଥା ଅନୁସାରେ ବିଦର୍ଭ ରାଜକୁମାରୀ ଦମୟନ୍ତୀଙ୍କୁ ବିବାହ କରିଥିଲେ । ଦିନେ ଉଦ୍ୟାନ ଭ୍ରମଣ ବେଳେ ନଳ ଗୋଟିଏ ସୁବର୍ଣ୍ଣ ହଂସକୁ ଧରିଲେ । ହଂସ ମନୁଷ୍ୟ ପରି କହିଲେ—'ଆପଣ ମୋତେ ମୁକ୍ତ ଦିଅନ୍ତୁ । ମୁଁ ଆପଣଙ୍କର ବହୁତ ଉପକାର କରିବି । ଭୀମକନ୍ୟା ଦମୟନ୍ତୀଙ୍କ ନିକଟରେ ମୁଁ ଆପଣଙ୍କ ରୂପ, ଗୁଣ ଏପରି ବର୍ଣ୍ଣନା କରିବି ଯେପରି ସେ ଆପଣଙ୍କୁ ହିଁ ପତିରୂପେ ବରଣ କରିବେ ।' ନଳ ହଂସକୁ ଛାଡ଼ିଦେଲେ । ହଂସ ଦମୟନ୍ତୀଙ୍କ ନିକଟକୁ ଯାଇ ନଳଙ୍କର ସମସ୍ତ ବିବରଣ ଯଥାଯଥରୂପେ ବର୍ଣ୍ଣନା କଲେ । ସେଥିରେ ଦମୟନ୍ତୀ ନଳଙ୍କ ପ୍ରତି ଆକୃଷ୍ଟ ହେଲେ ଏବଂ ତାଙ୍କୁ ପତିରୂପେ ବରଣ କଲେ । (ମଧୁସୂଦନ କୃତ ନଳ ଚରିତରେ ସମସ୍ତ ବିଷୟ ଦ୍ରଷ୍ଟବ୍ୟ)

ନଳ ଜଣେ ଅତି ରୂପବନ୍ତ ଓ ଗୁଣବାନ୍ ରାଜା ଥିଲେ । ଅଶ୍ୱ ପରୀକ୍ଷା, ଅଶ୍ୱ ସଚାଳନ, ଅଗ୍ନି ବ୍ୟତୀତ ପାକ ସମ୍ପାଦନ, ବୃକ୍ଷର ପତ୍ର ସଂଖ୍ୟାଦି ଗଣନ

କରିବାରେ ଏହାଙ୍କର ଯଥେଷ୍ଟ ପାଣ୍ଡିତ୍ୟ ଥିଲା । ପୁଣ୍ୟଶ୍ଳୋକ ରାଜା ମଧ୍ୟରେ ନଳ ଅନ୍ୟତମ । ଏହାଙ୍କର ପୁତ୍ର ଇନ୍ଦ୍ରସେନ ଓ କନ୍ୟା ଇନ୍ଦ୍ରସେନା ।
(ଦମୟନ୍ତୀ, କର୍କୋଟକ ଓ କଳି ଦେଖ)

(୨) ରାମାୟଣ ଯୁଗର ଏକ ବାନର ସେନାପତି । ବିଶ୍ୱକର୍ମାଙ୍କ ଔରସରେ ଘୃତାଚୀ ଅପ୍‌ସରା ଗର୍ଭରୁ ନଳ ଜନ୍ମିଥିଲେ । ଏହାଙ୍କର ଏକ ଅସାଧାରଣ ଗୁଣ ଥିଲା । ଏ ଯେଉଁ ପଥର ଖଣ୍ଡକ ସ୍ପର୍ଶ କରୁଥିଲେ, ତାହା ଶୋଳପରି ଜଳରେ ଭାସି ଉଠୁଥିଲା । ରାମଚନ୍ଦ୍ର ଏହାଙ୍କ ଦ୍ୱାରା ଏକ ବିରାଟ ସେତୁ ନିର୍ମାଣ କରାଇ ବାନର ସେନା ସହିତ ଲଙ୍କାକୁ ଅଭିଯାନ ଚଳାଇଥିଲେ । (ରାମାୟଣ)

**ନଳକୂବର**—ଧନାଧିପ କୁବେରଙ୍କ ପୁତ୍ର । ଏହାଙ୍କ ଭାଇଙ୍କ ନାମ ମଣିଗ୍ରୀବ । ଏକଦା ଉଭୟ ଭ୍ରାତା ପର୍ବତ ହୋଇ କୈଳାସ ସମୀପସ୍ଥ ଗଙ୍ଗା ତୀରରେ ଥିବା ତପୋବନରେ ନାରୀମାନଙ୍କ ସହିତ କ୍ରୀଡ଼ାରେ ମତ୍ତଥିଲେ । ନାରଦ ଏହା ଦେଖି ଦୁଇ ଭାଇଙ୍କୁ ଅଭିଶାପ ଦେଲେ । ନାରଦଙ୍କ ଅଭିଶାପରେ ଦୁଇ ଭାଇଯାକ ଅର୍ଜୁନ ବୃକ୍ଷରୂପେ ଜାତ ହେଲେ (ଯାମଳାର୍ଜୁନ ଦେଖ, ଭାଗବତ ୧୦ମ ସ୍କନ୍ଧ) । ଏକଦା ସ୍ୱର୍ଗର ଅପ୍‌ସରା ରମ୍ଭା ଅଭିସାରିକା ବେଶରେ ନଳକୂବରଙ୍କ ସମୀପକୁ ଯାଉଥିଲେ । ପଥ ମଧ୍ୟରେ ଲଙ୍କେଶ୍ୱର ରାବଣ ତାଙ୍କୁ ଦେଖି କାମମୁଗ୍ଧ ହୋଇ ବଳପୂର୍ବକ ହରଣ କଲା । ରମ୍ଭା କ୍ଷୁବ୍ଧ ହୋଇ ରାବଣକୁ ଅଭିଶାପ ଦେଲା—'ଯଦି ରାବଣ କାମମୁଗ୍ଧ ହୋଇ ପରସ୍ତ୍ରୀ ହରଣ କରେ ତେବେ ତତ୍‌କ୍ଷଣାତ୍ ତାର ମୃତ୍ୟୁ ଘଟିବ ।' (ରାମାୟଣ ଉତ୍ତରକାଣ୍ଡ)

**ନହୁଷ**—ଚନ୍ଦ୍ରବଂଶୀୟ ରାଜା ଆୟୁଙ୍କ ପୁତ୍ର । ନହୁଷ ତପସ୍ୟା ଓ ଯଜ୍ଞାଦି କରି ଇନ୍ଦ୍ରତ୍ୱ ଲାଭ କରିଥିଲେ । ମହର୍ଷି ଅଗସ୍ତିଙ୍କ ଶାପରୁ ଏ ଇନ୍ଦ୍ର ପଦରୁ ଚ୍ୟୁତ ହୋଇ ପୃଥିବୀରେ ସର୍ପରୂପେ ଦଶହଜାର ବର୍ଷ ବାସ କରିଥିଲେ । ନହୁଷଙ୍କ ବହୁତ ଅନୁନୟ ବିନୟରେ ତୁଷ୍ଟ ହୋଇ ଅଗସ୍ତ୍ୟ କହିଲେ ଯେ ତୁମ ବଂଶରେ ଯୁଧିଷ୍ଠିର ନାମକ ଏକ ରାଜା ଜନ୍ମହେବେ, ତାଙ୍କର ଅନୁଗ୍ରହରୁ ତୁମେ ଶାପମୁକ୍ତ ହେବ ।

ପାଣ୍ଡବମାନଙ୍କ ବନବାସ କାଳରେ ମୃଗୟାଗାମୀ ଭୀମସେନ ସର୍ପରୂପୀ ନହୁଷଙ୍କ ଦ୍ୱାରା ଆକ୍ରାନ୍ତ ହେଲେ । ଭୀମଙ୍କ ପ୍ରତ୍ୟାବର୍ତ୍ତନରେ ବିଳମ୍ବ ହେବା ଦେଖି ଯୁଧିଷ୍ଠିର ତାଙ୍କୁ ଅନ୍ୱେଷଣ କରି ଗଲେ । ଯୁଧିଷ୍ଠିର ଭୀମସେନଙ୍କ

ଅବସ୍ଥା ଦେଖି ସେହି ମହାସର୍ପଙ୍କୁ ପରିଚୟ ପଚାରିଲେ ଏବଂ କି ପ୍ରକାର ଖାଦ୍ୟ ପଦାର୍ଥ ଦେଲେ ଭୀମସେନ ମୁକ୍ତ ହେବେ ତାହା ମଧ ଜିଜ୍ଞାସା କଲେ । ସର୍ପ ଆତ୍ମପରିଚୟ ଦେବା ପରେ ଶାପମୁକ୍ତ ହେଲେ ଏବଂ ଦିବ୍ୟରୂପ ଧାରଣ କରି ସ୍ୱର୍ଗ ପ୍ରସ୍ଥାନ କରିଥିଲା । (ମହାଭାରତ, ଆଦି, ବନ ଓ ଅନୁଶାସନ)

**ନଶିକେତା**—ନଚିକେତା ଦେଖ ।

**ନାନ୍ଦିମୁଖୀ**—ଅବନ୍ତୀ ନଗର ବାସିନୀ ମୁନି କନ୍ୟା ବିଶେଷ । ଏ ରାଧାକୃଷ୍ଣ ମିଳନରେ ଦୂତୀ କାର୍ଯ୍ୟ କରିଥିଲେ ।

**ନାଭଗ**—କରୁଷଙ୍କର ସାତଗୋଟି ପୁତ୍ର ଥିଲେ । ତନ୍ମଧ୍ୟରେ ଦିଷ୍ଟ ଏକତମ । ମହାରାଜ ଦିଷ୍ଟଙ୍କ ପୁତ୍ର ନାଭାଗ । ନାଭାଗ ପିତାଙ୍କ ଅଭିମତ ନ ଥାଇ ବୈଶ୍ୟ କନ୍ୟାର ପାଣିଗ୍ରହଣ କରି କୌଣସି ମୁନିଙ୍କ ଅଭିଶାପରେ ଋଷିତ୍ୱ ଲାଭ କରିଥିଲେ । (ମାର୍କଣ୍ଡେୟ ପୁରାଣ)

ବାଲ୍ମୀକି ରାମାୟଣ ମତରେ ନାଭାଗ ଅମ୍ବରୀଷଙ୍କ ପ୍ରପୌତ୍ର, ଯଯାତିଙ୍କ ପୁତ୍ର, ଅଜଙ୍କ ପିତା ଓ ଦଶରଥଙ୍କ ପିତାମହ ଥିଲେ ମାତ୍ର ଭାଗବତରେ ନାଭାଗ ଅମ୍ବରୀଷଙ୍କର ପିତା ବୋଲି ଲେଖାଅଛି ।

**ନାଭି, ନାଭୀ**—ଭାଗବତରୁ ଜଣାଯାଏ ଅଗ୍ନୀଧ୍ର ରାଜାଙ୍କର ନଅ ପୁଅ ମଧ୍ୟରୁ ନାଭି ଏକତମ । ଏ ଭରତଙ୍କ ପିତାମହ ଅଗ୍ନୀଧ୍ର ରାଜା ତାଙ୍କ ନଅ ପୁଅଙ୍କୁ ଜମ୍ବୁ ଦ୍ୱୀପର ନଅ ଖଣ୍ଡ ରାଜ୍ୟ ବାଣ୍ଟି ଦେଇଥିଲେ । ଏହାଙ୍କୁ ଯେଉଁ ଖଣ୍ଡ ଦେଇ-ଥିଲେ ତାହା ନାଭି, ପରେ ଏହା ଭାରତ ଖଣ୍ଡ ନାମରେ ପ୍ରସିଦ୍ଧ ହେଲା । ଏହାଙ୍କ ପତ୍ନୀ ମେରୁଦେବୀ । ନାଭି ଏହି ମେରୁଦେବୀଙ୍କ ସହ ପୁତ୍ର କାମନାରେ ଏକ ଯଜ୍ଞ କଲେ । ଏ ଯଜ୍ଞରେ ବିଷ୍ଣୁ ସନ୍ତୁଷ୍ଟ ହୋଇ ତାଙ୍କୁ ଦେଖା ଦେଲେ । ନାଭି ବିଷ୍ଣୁଙ୍କ ପରି ଏକ ପୁତ୍ର ଲାଭ କରିବା ପାଇଁ ପ୍ରାର୍ଥନା କଲେ । ବିଷ୍ଣୁ ଏଥିରେ ସ୍ୱୀକୃତ ହୋଇ ସ୍ୱୟଂ ଋଷଭ ଅବତାରରେ ମେରୁଦେବୀଙ୍କ ଗର୍ଭରୁ ଜନ୍ମିଲେ । ଏହି ଋଷଭ ଦେବଙ୍କୁ ଜୈନମାନେ ଆଦି ତୀର୍ଥଙ୍କର ବୋଲି ମାନନ୍ତି । ବିଷ୍ଣୁଙ୍କ ୨୪ ଅବତାର ମଧ୍ୟରୁ ଋଷଭ ଏକତମ ।

( ହିନ୍ଦୀଶବ୍ଦସାଗର, ଭାଷାକୋଷ)

**ନାଭିଗୟା**—ବୈତରଣୀ ତୀରରେ ଥିବା ଯାଜପୁର ନଗରର ପୌରାଣିକ ନାମ । କବିବର ରାଧାନାଥ ତାଙ୍କ ରଚିତ ଚନ୍ଦ୍ରଭାଗା କାବ୍ୟରେ 'ନାଭିଗୟା ପଦେ ବହେ ତରଙ୍ଗିଣୀ, ବୋଲି ଉଲ୍ଲେଖ କରିଅଛନ୍ତି । (ଗୟାପୁର ଦେଖ)

**ନାୟିକା**—ଅଷ୍ଟବିଧ ଦୁର୍ଗାଙ୍କ ଶକ୍ତି । ଯଥା—ଉଗ୍ରଚଣ୍ଡା, ପ୍ରଚଣ୍ଡା, ଚଣ୍ଡୋଗ୍ରା, ଚଣ୍ଡନାୟିକା, ଅତିଚଣ୍ଡା, ଚାମୁଣ୍ଡା, ଚଣ୍ଡା ଓ ଚଣ୍ଡବତୀ ।

(ବ୍ରହ୍ମବୈବର୍ତ୍ତ, ପ୍ରକୃତିଖଣ୍ଡ)

**ନାରକା** – ନରକାସୁର ଦେଖ ।

**ନାରଦ** – ବ୍ରହ୍ମାଙ୍କ ମାନସ ପୁତ୍ର । ବ୍ରହ୍ମା ପ୍ରଥମେ ମରୀଚି, ଅତ୍ରି ପ୍ରଭୃତିଙ୍କୁ ଓ ତତ୍ପରେ ସନକ, ସନନ୍ଦ, ସନାତନ, ସନତ୍କୁମାର, ଏବଂ ନାରଦଙ୍କୁ ସୃଷ୍ଟି କରିଥିଲେ । ଏହାଙ୍କ ବିବରଣ ପ୍ରାୟ ସବୁ ପୁରାଣରେ ଦୃଷ୍ଟ ହୁଏ । ନାର ଶବ୍ଦର ଅର୍ଥ ଜଳ । ସର୍ବଦା ତର୍ପଣ ପାଇଁ ଜଳଦାନ କରିବା ଦ୍ୱାରା ଏ ନାରଦରୂପେ ଖ୍ୟାତ ହୋଇଥିଲେ । ପ୍ରଜାପତି ଦକ୍ଷ ପ୍ରଜାସୃଷ୍ଟିର କାମନା-ବଶତଃ ବୀରଣ ପ୍ରଜାପତିଙ୍କ ତପଃ ପରାୟଣା ଲୋକଧାରିଣୀ କନ୍ୟା ଅସିକ୍ନୀଙ୍କୁ ବିବାହ କଲେ ଏବଂ ସ୍ତ୍ରୀଙ୍କ ଗର୍ଭରୁ ହର୍ଯଶ୍ୱ ପ୍ରଭୃତି ପାଞ୍ଚହଜାର ପୁତ୍ର ଜନ୍ମି-ଥିଲେ । ନାରଦ ନାନାବିଧ ଉପଦେଶ ଓ ଯୋଗଶାସ୍ତ୍ର ପ୍ରତିପାଦ୍ୟ ପରାମର୍ଶ ପୂର୍ବକ ହର୍ଯଶ୍ୱ, ଶବଲାଶ୍ୱ ପ୍ରଭୃତି ଦକ୍ଷ ପୁତ୍ରମାନଙ୍କୁ ସୃଷ୍ଟି କରିବାରୁ ବିରତ କରିଦେଇ ସଂସାରତ୍ୟାଗୀ କରାଇଦେଲେ । ଦକ୍ଷ ଏହା ଶୁଣି ଅତି କ୍ରୁଦ୍ଧ ହୋଇ ନାରଦଙ୍କୁ ଅଭିଶାପାନଳରେ ସଂହାର କଲେ । ବ୍ରହ୍ମା ଓ ମରୀଚି ପ୍ରଭୃତି ମହର୍ଷିମାନେ ଦକ୍ଷଙ୍କ ନିକଟରେ ନାରଦଙ୍କୁ ପୁଣି ବଞ୍ଚାଇଦେବାକୁ କହିଲେ । ଦକ୍ଷ ନିଜ କନ୍ୟାକୁ ବ୍ରହ୍ମାଙ୍କ ହସ୍ତରେ ଅର୍ପଣ କରି କହିଲେ—'ପ୍ରଜାପତି କଶ୍ୟପ ଏ କନ୍ୟାକୁ ବିବାହ କଲେ ତାଙ୍କ ଔରସରେ ଏ କନ୍ୟା ଗର୍ଭରୁ ନାରଦ ପୁଣି ଜାତ ହେବେ ।' ପରିଣାମରେ ତାହାହିଁ ହେଲା । କଶ୍ୟପ ଦକ୍ଷ-ତନୟାଙ୍କୁ ବିବାହ କଲେ । ଏହାଙ୍କ ଗର୍ଭରୁ ନାରଦ ପୁଣି ଜନ୍ମିଲେ ।

(ହରିବଂଶ)

ଶ୍ରୀମଦ୍ଭାଗବତରେ ବ୍ୟାସଙ୍କ ନିକଟରେ ନାରଦ ନିଜେ ଆତ୍ମଚରିତ କହିଛନ୍ତି । ତାହା ଏହିପରି—ପୂର୍ବ ଜନ୍ମରେ ନାରଦ ଏକ ବେଦଜ୍ଞ ବ୍ରାହ୍ମଣଙ୍କ ଦାସୀଙ୍କ ଗର୍ଭରୁ ଜନ୍ମିଥିଲେ । ବାଲ୍ୟକାଳରେ ସେ ଏହି ବେଦଜ୍ଞ ଋଷିମାନଙ୍କ ସେବା କର୍ମରେ ନିଯୁକ୍ତ ହୋଇଥିଲେ । ଏଥିଲାଗି ଋଷିମାନେ ତାଙ୍କୁ ଅତି ସ୍ନେହ କରୁଥିଲେ । ସେ ଦିନେ ଋଷିମାନଙ୍କ ଉଚ୍ଛିଷ୍ଟାନ୍ନ ଭୋଜନ କରି ପାପମୁକ୍ତ ହେଲେ । ତାଙ୍କର ଚିତ୍ତ ଶୁଦ୍ଧି ହେଲା । ଋଷିକଣ୍ଠ ଉଚ୍ଚାରିତ ହରି ଗୁଣଗାନରେ ତାଙ୍କ ମନ ନିରନ୍ତର ଆକୃଷ୍ଟ ହେଲା । ଏତେବେଳକୁ ତାଙ୍କୁ ମୋଟେ

ପାର୍ଶ୍ୱବର୍ତ୍ତୀ ହୋଇଥିଲା । ହଠାତ୍ ତାଙ୍କ ମାତା ସର୍ପଦଂଶନ ଯୋଗେ ପ୍ରାଣତ୍ୟାଗ କଲେ । ମାତାଙ୍କ ମରଣାନ୍ତେ ସେ ଆଶ୍ରମ ତ୍ୟାଗକରି ଉତ୍ତରଦିଗ ଆଡ଼କୁ ଗଲେ ଏବଂ ବୁଲି ବୁଲି ଏକ ଅରଣ୍ୟ ମଧ୍ୟରେ ପହଞ୍ଚିଲେ । ଅତି ଶୋଷ ଓ ଭୋକରେ ଆତୁର ହୋଇ ସେ ଗୋଟିଏ ହ୍ରଦରେ ସ୍ନାନ କରି ଜଳପାନ କଲେ । ସେହି ହ୍ରଦକୂଳସ୍ଥ ବଟବୃକ୍ଷ ମୂଳରେ ବସି ହରିଙ୍କ ଆରାଧନାରେ ନିଯୁକ୍ତ ହେଲେ । ତାଙ୍କର ଅପୂର୍ବ ମନୋନିବେଶ ଓ ଏକାଗ୍ର ଧ୍ୟାନଯୋଗେ ସେ ଅନ୍ତର ଭିତରେ ଭଗବାନଙ୍କ ଦର୍ଶନ ଲାଭକଲେ । ମାତ୍ର ଅଳ୍ପକାଳ ପରେ ଭଗବାନ ଅନ୍ତର୍ହିତ ହୋଇଯିବାରୁ ସେ ଅତି ବ୍ୟାକୁଳ ହୋଇଉଠିଲେ । ଭଗବାନ ତାଙ୍କୁ ଶୂନ୍ୟବାଣୀ ଦେଇ ସାନ୍ତ୍ୱନା ଦେଲେ—'ନାରଦ, ଏ ଜନ୍ମରେ ତୁମେ ମୋତେ ଦେଖି ପାରିବ ନାହିଁ । କାରଣ ଅଜିତେନ୍ଦ୍ରିୟ ଯୋଗୀମାନେ ସୁଦ୍ଧା ମୋର ଦର୍ଶନ ପାଆନ୍ତି ନାହିଁ ତେବେ ତୁମକୁ ମୁଁ ଯେ ଦେଖାଦେଲି ତାହା କେବଳ ତୁମର ମୋ ପ୍ରତି ଯେ ଅନୁରାଗ ଅଛି ତାହା ବୃଦ୍ଧି ହେବା ପାଇଁ । ମୋଠାରେ ଅନୁରାଗ ଜନ୍ମିଲେ ସାଧୁମାନେ ଇନ୍ଦ୍ରିୟ ଜୟକରି ମୋତେ ଲାଭ କରି ପାରିଆନ୍ତି । ଅତଏବ ସାଧୁସେବା ଦ୍ୱାରା ମୋଠାରେ ଚିତ୍ତ ବୃତ୍ତି ସମର୍ପଣ କର । ଅନ୍ତରେ ତୁମେ ଏହି ନିନ୍ଦନୀୟ ଲୋକ ପରିତ୍ୟାଗ କରି ମୋର ପାର୍ଶ୍ୱଚର ହୋଇ ପାରିବ ଏବଂ ସେହିଦିନଠାରୁ ତୁମ ମୋ ଭିତରେ ଆଉ ବିଚ୍ଛେଦ ଘଟିବ ନାହିଁ । ମୋ ଅନୁଗ୍ରହରୁ ପ୍ରଳୟ ପରେ ମଧ୍ୟ ତୁମର ସ୍ମୃତି ଜାଗ୍ରତ ହୋଇ ରହିବ । ସେହିଦିନଠାରୁ ସେ ହରିନାମ କୀର୍ତ୍ତନ କରିକରି ପୃଥିବୀ ପର୍ଯ୍ୟଟନ କଲେ । ଅନନ୍ତର ଭୋଗ ଶେଷରେ ତାଙ୍କର ପଞ୍ଚଭୌତିକ ଶରୀରର ଅବସାନ ଘଟିଲା । ଭଗବାନ ବିଷ୍ଣୁ କଳ୍ପାନ୍ତେ ଯେତେବେଳେ ସମୁଦ୍ର ଜଳରେ ଶୟନରତ ଥିଲେ, ସେତେବେଳେ ସେ ନିଶ୍ୱାସଯୋଗେ ଶ୍ରୀହରିଙ୍କ ଦେହରେ ପ୍ରବିଷ୍ଟ ହେଲେ । ଯୋଗ ନିଦ୍ରାରେ ସହସ୍ରଯୁଗ ଅତୀତ ହେଲା । ତା'ପରେ ଯେତେବେଳେ ଭଗବାନଙ୍କର ସୃଷ୍ଟି-ଇଚ୍ଛା ହେଲା ସେତେବେଳେ ନାରଦ, ମରୀଚି, ଅତ୍ରି ପ୍ରଭୃତି ଋଷିମାନେ ଭଗବାନ ବିଷ୍ଣୁଙ୍କ ମାନସରୁ ଉତ୍ପନ୍ନ ହେଲେ । (ଶ୍ରୀମଦ୍ଭାଗବତ ୧ମ ସ୍କନ୍ଧ)

ବ୍ରହ୍ମବୈବର୍ତ୍ତ ମତରେ ନାରଦ ବ୍ରହ୍ମାଙ୍କ ମାନସପୁତ୍ର । ଏ ବ୍ରହ୍ମାଙ୍କ କଣ୍ଠରୁ ଉତ୍ପନ୍ନ ହୋଇଥିଲେ । ବ୍ରହ୍ମା ଏହାଙ୍କୁ ତାଙ୍କର ଅପର ମାନସପୁତ୍ରଙ୍କ ସହିତ ସୃଷ୍ଟି କାର୍ଯ୍ୟର ଭାର ଅର୍ପଣ କଲେ । ନାରଦ ବୁଝିଲେ ପ୍ରଜାସୃଷ୍ଟି କାର୍ଯ୍ୟରେ ବ୍ୟାପୃତ ରହିଲେ ଈଶ୍ୱରଚିନ୍ତାରେ ବ୍ୟାଘାତ ଘଟିବ । ଏଥିଲାଗି ସେ ପିତୃ ଆଦେଶ ପାଳନ କରିବାକୁ କୁଣ୍ଠିତ ହେଲେ । ବ୍ରହ୍ମା କ୍ରୋଧାନ୍ଧ

ହୋଇ ତାଙ୍କୁ ଅଭିଶାପ ଦେଲେ । ବ୍ରହ୍ମାଙ୍କ ଶାପରେ ନାରଦ ଗନ୍ଧମାଦନ ପର୍ବତରେ ଗନ୍ଧର୍ବ ଯୋନିରେ ଜନ୍ମ ହେଲେ । ତାଙ୍କର ନାମ ହେଲା ଉପବର୍ହ । ଏହି ଜନ୍ମରେ ସେ ଗନ୍ଧର୍ବରାଜ ଚିତ୍ରରଥଙ୍କ ୫୦ ଗୋଟି କନ୍ୟାଙ୍କ ପାଣିଗ୍ରହଣ କଲେ । ଏ କନ୍ୟାମାନଙ୍କ ମଧ୍ୟରେ ମାଲାବତୀ ପ୍ରଧାନ ଥିଲେ । ଏକଦା ବ୍ରହ୍ମାଙ୍କ ସଭାରେ ସ୍ୱର୍ଗବେଶ୍ୟା ରମ୍ଭା ନୃତ୍ୟ କରୁଥିଲେ । ଉପବର୍ହ ତାହା ଦେଖି ଯାଇଥିଲେ । ରମ୍ଭାଙ୍କ ରୂପ ଯୌବନରେ ତାଙ୍କ ମନରେ କାମଭାବ ଜାଗ୍ରତ ହୋଇ ତାଙ୍କର ସ୍ଖଳନ ଘଟିଲା । ବ୍ରହ୍ମା ଏ ନୀଚ କାର୍ଯ୍ୟରେ ପୁଣି ଶାପ ଦେବାରୁ ସେ ଗନ୍ଧର୍ବରୂପ ତ୍ୟାଗକରି ନରଲୋକରେ ଜନ୍ମ ହେଲେ । କାନ୍ୟକୁବ୍ଜବାସୀ ଗୋପରାଜ ଦ୍ରୁମିଳଙ୍କ ପତ୍ନୀ କଳାବତୀଙ୍କ ଗର୍ଭରେ ନାରଦ ଜନ୍ମ ହେଲେ । କଳାବତୀ ବନ୍ଧ୍ୟା ଥିଲେ । କଶ୍ୟପ ନାରଦ ନାମକ ଏକ ଋଷି ସ୍ୱର୍ଗ ଅପ୍‌ସରା ମେନକାଙ୍କୁ ଦେଖି କାମମୋହିତ ହେଲେ ଏବଂ ତାଙ୍କର ରେତଃପାତ ହେଲା । କଳାବତୀ ଏହି ରେତଃ ଭକ୍ଷଣ କରି ଗର୍ଭବତୀ ହେଲେ । ଏହି ଗର୍ଭରୁ ନାରଦ ଜନ୍ମିଲେ । କଶ୍ୟପ ନାରଦଙ୍କ ଯୋଗେ ଜନ୍ମିଥିବାରୁ ଏହାଙ୍କ ନାମ ନାରଦ ହେଲା । ବାଳକମାନଙ୍କୁ ଜଳଦାନ ଓ ଜ୍ଞାନଦାନ କରୁଥିବାରୁ ଏବଂ ଏ ଜାତିସ୍ମର ଏ ମହାଜ୍ଞାନୀ ଥିବାରୁ ନାରଦ ଆଖ୍ୟା ପାଇଥିଲେ, ପ୍ରମାଣ ଯଥା—

ଦଦାତି ନାରଂ ଜ୍ଞାନଂ ଚ ବାଳକେଭ୍ୟଶ୍ଚ ବାଲକଃ ।
ଜାତିସ୍ମରୋ ମହାଜ୍ଞାନୀ ତେନାୟଂ ନାରଦାଭିଧଃ ।
(ବ୍ରହ୍ମବୈବର୍ତ୍ତ, ବ୍ରହ୍ମଖଣ୍ଡ)

ମହାଭାରତ ଶଲ୍ୟପର୍ବରୁ ଜଣାଯାଏ ଯେ ନାରଦ ବ୍ରହ୍ମାଙ୍କଠାରୁ ସଙ୍ଗୀତ ଶିକ୍ଷା କରିଥିଲେ । ଦକ୍ଷପୁତ୍ରଙ୍କୁ ସାଂଖ୍ୟଯୋଗ ଉପଦେଶ ଦେଇଥିଲେ ।

ଶ୍ରୀମଦ୍‌ଭାଗବତ, ବ୍ରହ୍ମାଣ୍ଡ ଓ ବିଷ୍ଣୁପୁରାଣ ଆଦିରେ ନାରଦଙ୍କ ବିଭିନ୍ନ ଜନ୍ମ ଓ ସଙ୍ଗୀତଶିକ୍ଷା ବିଷୟରେ କୌତୂହଳପ୍ରଦ କାହାଣୀମାନ ଅଛି । ବ୍ରହ୍ମାଙ୍କ ଶାପରେ ନାରଦ ସର୍ବଦା ଯାଯାବର ଜୀବନଯାପନ କରୁଥିଲେ । ପ୍ରମାଣ —

'ତସ୍ମାତ୍ତ୍ୱ ଲୋକେଷୁ ତେ ମୂଢ ନ ଭବେତ୍ ଭ୍ରମତଃ ପଦମ୍ ।'

ନାରଦ ଜଣେ ଯେ କଳହପ୍ରିୟ ଋଷି ବୋଲି ଜନପ୍ରବାଦ ଅଛି ତାହା କେବଳ କପୋଳ କଳ୍ପନା ମାତ୍ର । ବେଦରେ ନାରଦଙ୍କ ନାମ ମଧ୍ୟ ଅଛି । ଋଗ୍‌ବେଦ ସଂହିତାରୁ ଏହାର ପ୍ରମାଣ ମିଳେ । ନାରଦ, ପୁରାଣ, ବେଦାନ୍ତ,

ତନ୍ତ୍ର ଓ ମୃତଶାସ୍ତ୍ର ଆଦି ଅନେକ ଗ୍ରନ୍ଥର ପ୍ରଣେତା । ନାରଦସ୍ମୃତି ଏକ ପ୍ରସିଦ୍ଧଗ୍ରନ୍ଥ । ନାରଦ ପଞ୍ଚରାତ୍ର ମଧ୍ୟ ଏକ ଉପାଦେୟ ଗ୍ରନ୍ଥ ।

**ନାରସିଂହୀ**—ନରସିଂହ ମୂର୍ତ୍ତିଧାରଣୀ ଦୁର୍ଗାମୂର୍ତ୍ତି ବିଶେଷ । ସପ୍ତଶତୀ ଚଣ୍ଡୀରୁ ଏହାଙ୍କ ବର୍ଣ୍ଣନା ମିଳେ । ଅସୁର ବିନାଶ ସମୟରେ ଏ ଆବିର୍ଭୂତା ହୋଇଥିଲେ ।

**ନାରାୟଣ**—(୧) ନର ଦେଖ । (୨) ମହାପାପୀ ଅଜାମିଳଙ୍କ ପୁତ୍ର । ଅଜାମିଳ ଜୀବନବ୍ୟାପୀ ପାପ କାର୍ଯ୍ୟ କରିଥିଲେ ମଧ୍ୟ ମୃତ୍ୟୁ ବେଳକୁ ନାରାୟଣ ନାମ ଉଚ୍ଚାରଣ କରି ମୁକ୍ତି ଲାଭ କରିଥିଲେ ।

**ନାରୀକବଚ**—ସୂର୍ଯ୍ୟବଂଶୀୟ ରାଜା, ମୂଳକରାଜା । ଏ ଅଶ୍ମକ ରାଜାଙ୍କ ପୁତ୍ର ଓ ସୌଦାସଙ୍କ ପୌତ୍ର ଥିଲେ । ଯେତେବେଳେ ପରଶୁରାମ କ୍ଷତ୍ରିୟମାନଙ୍କୁ ବିନାଶ କରିବାରେ ଲାଗିଥିଲେ ଏ ଆପଣାକୁ ସ୍ତ୍ରୀମାନଙ୍କ ଦ୍ୱାରା ଘେରାଇ ବଞ୍ଚି-ଯାଇଥିଲେ । ଏଥିପାଇଁ ଏହାଙ୍କର ଏହି ନାମ । ଏହାଙ୍କଠାରୁ କ୍ଷତ୍ରିୟମାନଙ୍କର ପୁଣି ବଂଶ ବିସ୍ତାର ହେଲା । ଏଥିପାଇଁ ଏହାଙ୍କର ଅନ୍ୟନାମ ମୂଳକ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ନାରୀତୀର୍ଥ**—ଏକ ତୀର୍ଥ । ଯେଉଁଠାରେ ୫ ଜଣ ଅପ୍‌ସରା ବ୍ରାହ୍ମଣଙ୍କ ଶାପରେ ଜଳଜନ୍ତୁ ପାଲଟି ଯାଇଥିଲେ । ଅର୍ଜ୍ଜୁନ ଏମାନଙ୍କୁ ଶାପରୁ ଉଦ୍ଧାର କରିଥିଲେ । (ମହାଭାରତ, ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ନିକୁମ୍ଭ**—(୧) ଦୈତ୍ୟ ବିଶେଷ । ଏ ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ହୋଇଥିଲେ । (୨) କୁମ୍ଭକର୍ଣ୍ଣର ପୁତ୍ର । ରାବଣର ମନ୍ତ୍ରୀ, ଲଙ୍କା ଯୁଦ୍ଧରେ ନିହତ । କୁମ୍ଭର ସହୋଦର, (ରାମାୟଣ, ଲଙ୍କାକାଣ୍ଡ) (୩) ଶିବଙ୍କ ଅନୁଚର ବିଶେଷ । (୪) ପ୍ରହ୍ଲାଦଙ୍କର ଏକ ପୁତ୍ର (ହିନ୍ଦୀ ଶବ୍ଦସାଗର) (୫) ହରିବଂଶ ଲିଖିତ ହର୍ଯ୍ୟଶ୍ୱ ରାଜାଙ୍କ ପୁଅ । (୬) କୌରବ ସେନାପତି ଜଣେ ରାଜା (ହିନ୍ଦୀ ଶବ୍ଦସାଗର) (୭) କାର୍ତ୍ତିକେୟଙ୍କ ଗଣ ବିଶେଷ (ହିନ୍ଦୀ ଶବ୍ଦସାଗର) (୮) ସୁନ୍ଦ ଉପସୁନ୍ଦଙ୍କ ପିତା ।

**ନିକୁମ୍ଭିଳ**—ଲଙ୍କାର ଏକ ଉପବନ ବା ଗୁମ୍ଫା । ଏଠାରେ ଇନ୍ଦ୍ରଜିତ ଯଜ୍ଞ କରିଥିଲେ । ଏହା ଲଙ୍କାର ପଶ୍ଚିମରେ, ଏଠାରେ ଭଦ୍ରକାଳୀ ଦେବୀ ପୂଜିତା ହେଉଥିଲେ ।

**ନିକୁମ୍ଭିଲା ବଟ**—ନିକୁମ୍ଭିଲା ଉପବନରେ ଥିବା ଏକ ବରଗଛ । ଏହାର ମୂଳରେ ଇନ୍ଦ୍ରଜିତ୍ ଯଜ୍ଞ କରୁଥିଲେ ।

**ନିକ୍ଷୁଭା**—ସୂର୍ଯ୍ୟପତ୍ନୀ (ଭବିଷ୍ୟପୁରାଣ) ।

**ନିବାତକବଚ**—ଦୈତ୍ୟ ବିଶେଷ । ପ୍ରହ୍ଲାଦଙ୍କ ଭାଇ ସଂହ୍ଲାଦଙ୍କ ପୁତ୍ର । ଦୈତ୍ୟରାଜ ହିରଣ୍ୟକଶିପୁଙ୍କ ନାତି । ଏହାର ବଂଶୀୟ ରାକ୍ଷସମାନେ ନିବାତକବଚ ନାମରେ ବିଖ୍ୟାତ । ମହାଭାରତ ମତରେ ଏମାନଙ୍କ ସଂଖ୍ୟା ୩ କୋଟି । ଏହି ସମୁଦାୟ ଅସୁର ଇନ୍ଦ୍ରାଦି ଦେବତାମାନଙ୍କର ଘୋର ଶତ୍ରୁ ଥିଲେ । ପାଣ୍ଡବମାନେ ବନବାସ କରିବା ସମୟରେ ଅର୍ଜୁନ ଇନ୍ଦ୍ରଙ୍କ ନିକଟକୁ ଯାଇ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ । ଶିକ୍ଷାନ୍ତେ ଇନ୍ଦ୍ର ତାଙ୍କଠାରୁ ଗୁରୁଦକ୍ଷିଣା ଆଶାକଲେ । ଅର୍ଜୁନ ଏଥିରେ ପ୍ରତିଶ୍ରୁତ ହେଲେ । ଇନ୍ଦ୍ର ଅର୍ଜୁନଙ୍କୁ ନିବାତକବଚମାନଙ୍କୁ ବଧ କରିବା ପାଇଁ କହିଲେ । ଅର୍ଜୁନ ମାତଲିଙ୍କ ଚାଳିତ ଦିବ୍ୟରଥରେ ଆରୋହଣ କରି ଏମାନଙ୍କୁ ସଂହାର କଲେ ।
(ମହାଭାରତ-ବନପର୍ବ)

**ନିମି**—ସୀତାଦେବୀଙ୍କ ପିତା କୁଶଧ୍ୱଜ ଜନକଙ୍କର ପୂର୍ବପୁରୁଷ । ଏହାଙ୍କ ପୁତ୍ର ମିଥିଙ୍କ ନାମାନୁସାରେ ରାଜ୍ୟର ନାମ ମିଥିଳା ହୋଇଥିଲା । ମିଥିଙ୍କ ପୁତ୍ର ଜନକ । ଏହି ଜନକଙ୍କଠାରୁ ସେହି ବଂଶୀୟ ସବୁରାଜା ଜନକ ଉପନାମରେ ବିଖ୍ୟାତ (କୁଶଧ୍ୱଜ ଦେଖ) । (୨) ଇକ୍ଷ୍ୱାକୁ ରାଜପୁତ୍ର । ଦଶରଥଙ୍କ ପୂର୍ବ-ପୁରୁଷ । ନିମି ବଶିଷ୍ଠଙ୍କ ଅଭିଶାପରେ ନିଜ ଦେହକୁ ହରାଇବାରେ ଦେବତା-ମାନଙ୍କ ବରରେ ସେ ସବୁ ଜୀବଙ୍କର ଆଖିର ପଲକରେ ରହିଲେ । ଏଥିପାଇଁ ଆଖିର ପଲକର ନାମ ନିମିଷ । (ହିନ୍ଦୀ ଶବ୍ଦସାଗର) (୩) ଦତ୍ତାତ୍ରେୟ ଋଷିଙ୍କ ପୁତ୍ର । (ମହାଭାରତ) (୪) ହରିବଂଶୋକ୍ତ ଦାନବ ବିଶେଷ ।

**ନିଶୁମ୍ଭ**—ବିଖ୍ୟାତ ଦାନବ । କଶ୍ୟପଙ୍କ ଔରସରେ ଦନୁଙ୍କ ଗର୍ଭରୁ ଏହାର ଜନ୍ମ । ବଡଭାଇ ଶୁମ୍ଭ ଓ କନିଷ୍ଠ ଭ୍ରାତା ନମୁଚି । ନମୁଚି ଇନ୍ଦ୍ରଙ୍କ ଦ୍ୱାରା ନିହତ ହୋଇଥିଲେ । କନିଷ୍ଠ ଭାଇ ମରିଯିବାରୁ ଶୁମ୍ଭ ନିଶୁମ୍ଭ କ୍ରୁଦ୍ଧ ହୋଇ ସ୍ୱର୍ଗରାଜ୍ୟ ଆକ୍ରମଣ କଲେ । ଇନ୍ଦ୍ରଙ୍କୁ ସ୍ୱର୍ଗଚ୍ୟୁତ କରି ନିଜେ ସ୍ୱର୍ଗର ରାଜା ହେଲେ । ମହିଷାସୁରର ମନ୍ତ୍ରୀ ରକ୍ତବୀଜ ସହିତ ଏମାନଙ୍କର ସାକ୍ଷାତ ହେଲା । ରକ୍ତବୀଜଠାରୁ ଏମାନେ ମହିଷାସୁରର ମରଣ ବାର୍ତ୍ତା ଶୁଣି କାତ୍ୟାୟନୀଙ୍କୁ ବଧ କରିବା ପାଇଁ ସଂକଳ୍ପ କଲେ । ସେମାନେ ସୁଧୀର ନାମକ

ଏକ ଦୂତଙ୍କୁ ବିନ୍ଧ୍ୟାଚଳକୁ ଦେବୀଙ୍କ ନିକଟକୁ ପଠାଇଲେ । ଦୂତ ଦେବୀଙ୍କୁ ଜଣାଇଲା—'ତୁମେ ଯେପରି ଅନନ୍ୟା-ସୁନ୍ଦରୀ । ଶୁମ୍ଭ ନିଶୁମ୍ଭ ସେହିପରି ମହାବଳଶାଳୀ । ତେଣୁ ଯୋଗଂରେ ଯୋଗ୍ୟମିଳନ ହେଲଭଲ ତୁମେ ଏ ଦୁଇ ଭାଇରୁ ଜଣକୁ ବରମାଳା ଦେଇ ବରଣ କର ।' ଦେବୀ ଉତ୍ତର କଲେ—'ଅବଶ୍ୟ ତୁମେ ଯାହା କହିଲ ତାହା ନିଶ୍ଚିତ ସତ୍ୟ । ମାତ୍ର ମୁଁ ପ୍ରତିଜ୍ଞା କରିଛି, ଯେ ମୋତେ ଯୁଦ୍ଧରେ ପରାସ୍ତ କରିବ ମୁଁ ତାକୁ ପତିରୂପେ ବରଣ କରିବ ।' ଦୂତ ଏହି କଥା ଶୁଣି, ନିଶୁମ୍ଭଙ୍କୁ ଜଣାଇବା ମାତ୍ରେ ଦେବୀଙ୍କୁ ଧରି ଆଣିବା ପାଇଁ ସେମାନେ ଧୂମ୍ରଲୋଚନକୁ ପଠାଇଲେ । ଧୂମ୍ରଲୋଚନ ନିହତ ହେବା ପରେ ଚଣ୍ଡମୁଣ୍ଡ ଦେବୀଙ୍କ ଦ୍ୱାରା ବଧ ହେଲେ । ତା ପରେ ରକ୍ତବୀଜର ପତନ ହେଲା । ଘୋର ଯୁଦ୍ଧ ପରେ ଶୁମ୍ଭ ନିଶୁମ୍ଭ ନିହତ ହେଲେ । ଇନ୍ଦ୍ର ପୁନର୍ବାର ସ୍ୱର୍ଗରାଜ୍ୟର ଅଧିକାରୀ ହେଲେ । (ବାମନପୁରାଣ)

ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମାହାତ୍ମ୍ୟରେ ଶୁମ୍ଭ ନିଶୁମ୍ଭଙ୍କ ଉତ୍ପତ୍ତି ବିବରଣୀ ନାହିଁ । ଏଥିରେ ଏହି ଯୁଦ୍ଧ କଥା ଭିନ୍ନ ରୂପେ ବର୍ଣ୍ଣିତ ହୋଇଛି । ଦେବତାମାନେ ଶୁମ୍ଭ ନିଶୁମ୍ଭଙ୍କ ଅତ୍ୟାଚାରରେ କ୍ଷୋଭିତ ହୋଇ ଦେବୀଙ୍କର ଶରଣାପନ୍ନ ହେଲେ । ଦେବୀ ଏକ ମନୋହରରୂପ ଧାରଣ କଲେ । ଶୁମ୍ଭ ନିଶୁମ୍ଭଙ୍କ ସେନାପତି ଚଣ୍ଡମୁଣ୍ଡ ତାଙ୍କୁ ଦେଖି ଦୈତ୍ୟରାଜଙ୍କୁ କହିଲେ । ତା'ପରେ ସୁଗ୍ରୀବ ନାମକ ଏକ ଦୂତଙ୍କୁ ଦେବୀଙ୍କ ନିକଟକୁ ଶୁମ୍ଭ ନିଶୁମ୍ଭ ପଠାଇଥିଲେ । ଦେବୀ ଦୂତଙ୍କୁ କହିଲେ—'ମୋତେ ଯୁଦ୍ଧରେ ଯେ ପରାସ୍ତ କରିବ ମୁଁ ତାର ସ୍ତ୍ରୀ ହୋଇ ରହିବ ।' ଆଉସବୁ ବାମନପୁରାଣ ପରି । ରକ୍ତବୀଜ ମହିଷାସୁରର ମନ୍ତ୍ରୀ, ଚଣ୍ଡମୁଣ୍ଡ ଯେ ତାଙ୍କର ସେନାପତି ଏ ବିଷୟ ଚଣ୍ଡୀପୁରାଣରେ ନାହିଁ ।

**ନୀଳ**—(୧) ମାହିଷ୍ମତିପୁରର ରଜା । ଅଗ୍ନିଦେବ ଏହାଙ୍କର ପରମସୁନ୍ଦରୀ କନ୍ୟାର ରୂପରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିଥିଲେ । ଅଗ୍ନି, ରାଜା ନୀଳଙ୍କୁ ବର ଦେଇଥିଲେ ଯେ ଏହି ନଗରୀ ଅବରୋଧ କରିବ ସେ ଦଗ୍ଧ ହୋଇଯିବ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସମୟରେ ସହଦେବ ଏହି ନଗରୀ ଅବରୋଧ କରିଥିଲେ । ନିଜ ସୈନ୍ୟ ଅଗ୍ନିବେଷ୍ଟିତ ହୋଇଥିବା ଦେଖି ସହଦେବ ଅଗ୍ନିଙ୍କ ଉପାସନା କଲେ । ଅଗ୍ନି ସନ୍ତୁଷ୍ଟ ହୋଇ କହିଲେ ଯେ ନୀଳରାଜାଙ୍କ ପୂଜା ଗ୍ରହଣ କରି ସେ ଏଠାରୁ ନିର୍ବିବାଦରେ ଫେରିଯାଆନ୍ତୁ । ଅଗ୍ନିଙ୍କ ଆଦେଶରେ ସହଦେବ ପୂଜା ଗ୍ରହଣ କରି ରାଜସ୍ୱ ନେଇ ସେଠାରୁ ଦକ୍ଷିଣାଭିମୁଖରେ ଗଲେ । (ମହାଭାରତ)

(୨) ବାନର ସେନାପତି । ଲଙ୍କା ଯୁଦ୍ଧରେ ଏ ରାମଚନ୍ଦ୍ରଙ୍କର ପ୍ରଧାନ ସହାୟକ ଥିଲେ । (ରାମାୟଣ)

**ନୀଳକଣ୍ଠ**—ମହାଦେବଙ୍କ ନାମାନ୍ତର । ସମୁଦ୍ର ମନ୍ଥନ ସମୟରେ ମହାଦେବ ସମୁଦ୍ରୋତ୍ଥିତ କାଳକୂଟ ପାନ କରିବାରୁ ବିଷଜ୍ୱାଳାରେ ତାଙ୍କର କଣ୍ଠଦେଶ ନୀଳବର୍ଣ୍ଣ ଧାରଣ କଲା । ସେହି ସମୟରୁ ତାଙ୍କର ନାମ ନୀଳକଣ୍ଠ ।

**ନୀଳାଚଳ**—ପୁରୀ ଶ୍ରୀକ୍ଷେତ୍ରର ନାମ ।

**ନୈମିଷ, ନୈମିଷାରଣ୍ୟ**—ଋଷିଗଣ ଅଧ୍ୟୁଷିତ ପ୍ରାଚୀନ ବଣ ବିଶେଷ । ଏହା ହିନ୍ଦୁମାନଙ୍କର ଗୋଟିଏ ତୀର୍ଥ । କଥିତ ଅଛି ଯେ ଏଠାରେ ଶୁକ, ଶୌନକାଦି ଋଷିମାନେ ସମବେତ ଋଷିମାନଙ୍କୁ ମହାଭାରତ, ଭାଗବତ ଓ ପୁରାଣ ଆଦି ଶୁଣାଇଥିଲେ ।

ବରାହ ପୁରାଣ ମତରେ ଭଗବାନ୍ ଦାନବକୁଳ ନିର୍ମୂଳକରି ଗୌରମୁଖ ନାମକ ଋଷିଙ୍କୁ କହିଥିଲେ – ମୁଁ ଏହି ସ୍ଥାନରେ ନିମିଷ ମଧ୍ୟରେ ଦୈତ୍ୟକୁଳକୁ ନାଶ କଲି । ଅତଏବ ଆଜିଠାରୁ ଏହି ସ୍ଥାନ ନୈମିଷାରଣ୍ୟ ନାମରେ ପ୍ରସିଦ୍ଧ ହେବ ।

ବାୟୁ, ବ୍ରହ୍ମାଣ୍ଡ ଓ କୂର୍ମପୁରାଣ ମତରେ ଭଗବାନ୍ ସୂର୍ଯ୍ୟଙ୍କ ସମ ପ୍ରଭାବଶାଳୀ ଗୋଟିଏ ଚକ୍ର ସୃଷ୍ଟି କରି ତାହା ଗୁଡ଼ାଇ ପୂର୍ବକ ଋଷିମାନଙ୍କୁ କହିଥିଲେ ଯେ ଏ ଚକ୍ରର ନେମି ଯେଉଁଠାରେ ଶୀର୍ଣ୍ଣ ହେବ ସେହି ସ୍ଥାନହିଁ ତପଶ୍ଚରଣର ଉପଯୁକ୍ତ ସ୍ଥାନ ବୋଲି ଜଣାଯିବ । ଏହା ଶୁଣି ବ୍ରାହ୍ମଣ ଓ ଋଷିମାନେ ସେହି ଚକ୍ରର ପଛେ ପଛେ ଦଉଡ଼ିଲେ ଏବଂ ଯେଉଁ ସ୍ଥାନରେ ଚକ୍ରନେମି ଶୀର୍ଣ୍ଣହେଲା ସେହି ସ୍ଥାନରେ ତପସ୍ୟା କଲେ । ଏହା ନୈମିଷାରଣ୍ୟ ନାମରେ ବିଖ୍ୟାତ ହେଲା । (ହିନ୍ଦୀ ଶବ୍ଦସାଗର)

ଅଯୋଧ୍ୟାର ସୀତାପୁର ଜିଲ୍ଲାରେ ଏହା ଅବସ୍ଥିତ । ବିଷ୍ଣୁପୁରାଣ ମତରେ ଏ କ୍ଷେତ୍ରସ୍ଥ ଗୋମତୀ ନଦୀରେ ସ୍ନାନ କଲେ ସକଳ ପାପ କ୍ଷୟ ହୁଏ ।
(ଭାଷାକୋଷ)



# ପ

**ପକ୍ଷୀରାଜ** — ଗରୁଡ଼ଙ୍କ ଅନ୍ୟ ନାମ (ଗରୁଡ଼ ଦେଖ)

**ପଞ୍ଚଜନ** – ଅସୁର ବିଶେଷ । ଏହି ଅସୁର ହିରଣ୍ୟକଶ୍ୟପୁର ପୌତ୍ର । ପ୍ରହ୍ଲାଦ ଏହାର ପିତା । ଏ ସର୍ବଦା ପାତାଳରେ ଥାଏ । ଶ୍ରୀକୃଷ୍ଣ ଏହାକୁ ନିହତ କରିଥିଲେ । ଏହାର ଅସ୍ଥି ନିର୍ମିତ ଶଙ୍ଖର ନାମ ପଞ୍ଚଜନ୍ୟ । ଶ୍ରୀକୃଷ୍ଣ ଏହି ଶଙ୍ଖ ଲାଭ କରିଥିଲେ । ଭାଗବତ କହେ—'ନାମ ତାହାର ପଞ୍ଚଜନ୍ୟ, ମାୟାବୀ ଅସୁର ନନ୍ଦନ ।' ଶଙ୍ଖ ରୂପଧାରୀ ପାଞ୍ଚଜନ୍ୟ ଅସୁରର ଅସ୍ଥି, ଯାହାକୁ ଶ୍ରୀକୃଷ୍ଣ ଶଙ୍ଖରୂପେ ବ୍ୟବହାର କରୁଥିଲେ । (ହିନ୍ଦୀ ଶବ୍ଦସାଗର)

**ପଞ୍ଚତୀର୍ଥ** — ବରାହପୁରାଣ ମତେ ପାଞ୍ଚଗୋଟି ପୁଣ୍ୟସ୍ଥାନ । ଯଥା---ବିଶ୍ରାନ୍ତ, ଶୌକର, ନୈମିଷ, ପ୍ରୟାଗ ଓ ପୁଷ୍କର । (୨) କାଶୀରେ ଥିବା ପାଞ୍ଚଗୋଟି ଶିବାଧିଷ୍ଠିତ ପୁଣ୍ୟସ୍ଥାନ । ଯଥା—ଜ୍ଞାନବ୍ୟାପୀ, ନନ୍ଦିକେଶ୍ୱର, ତାରକେଶ୍ୱର, ମହାକାଳେଶ୍ୱର, ଦଣ୍ଡପାଣି । (୩) ପୁରୀ କ୍ଷେତ୍ରସ୍ଥ ପାଞ୍ଚଗୋଟି ପୁଣ୍ୟସ୍ଥାନ । ଯଥା—ମାର୍କଣ୍ଡେୟ, ଶ୍ୱେତଗଙ୍ଗା, ରୋହିଣୀକୁଣ୍ଡ, ସମୁଦ୍ର ଓ ଇନ୍ଦ୍ରଦ୍ୟୁମ୍ନ ।

**ପଞ୍ଚଦେବତା**—

ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା ।
ଭିନ୍ନାଭିନ୍ନଂ ନ କର୍ତ୍ତବ୍ୟଂ ପଞ୍ଚଦେବ ନମୋସ୍ତୁତେ ।
ଅର୍ଥାତ୍ ଗଣେଶ, ନାରାୟଣ, ଶିବ, ଅମ୍ବିକା ଓ ସୂର୍ଯ୍ୟ ଏ ପଞ୍ଚଦେବତା ।

**ପଞ୍ଚବଟୀ**—ଦଣ୍ଡକାରଣ୍ୟର ଅନ୍ତର୍ଗତ ଗୋଦାବରୀ ତୀରସ୍ଥ ଜନସ୍ଥାନ ମଧ୍ୟବର୍ତ୍ତୀ ବନ ବିଶେଷ । ଏହି ବନରେ ରାମଚନ୍ଦ୍ର ବାସ କରୁଥିବା ବେଳେ ରାବଣ ସୀତାଙ୍କୁ ହରଣ କରି ନେଇଥିଲା । ଏହା ଭାରତର ନାଗପୁର ଅଞ୍ଚଳସ୍ଥ ବୋଲି ଅନୁମିତ ହୁଏ । (ଭାଷାକୋଷ)

**ପଞ୍ଚଶିଖ**—ଏକ ବିଖ୍ୟାତ ଦାର୍ଶନିକ ମହାତ୍ମା ଆସୁରିଙ୍କ ଶିଷ୍ୟ । ଆସୁରି ବିଖ୍ୟାତ ସାଂଖ୍ୟ ଦର୍ଶନ ପ୍ରଣେତା କପିଳଙ୍କ ଶିଷ୍ୟ । ପଞ୍ଚଶିଖଙ୍କଠାରୁ ସାଂଖ୍ୟ ଦର୍ଶନ ମତବାଦ ଭାରତର ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇଥିଲା । ଆସୁରିଙ୍କ ସହଧର୍ମିଣୀଙ୍କ ନାମ କପିଳା । ପଞ୍ଚଶିଖ ପୁତ୍ର ଭାବରେ ଗୁରୁପତ୍ନୀଙ୍କ ସ୍ତନପାନ କରି ବଢ଼ିଥିବାରୁ ତାଙ୍କୁ କପିଳାପୁତ୍ର ନାମରେ ଅଭିହିତ କରାଯାଏ ।

(ମହାଭାରତ ଶାନ୍ତିପର୍ବ)

**ପଞ୍ଚାପ୍ସର**—ଦଣ୍ଡକାରଣ୍ୟସ୍ଥ ସରୋବର ବିଶେଷ । ମନ୍ଦକର୍ଣ୍ଣି ଋଷି ଏହି ସରୋବର ଖନନ କରାଇଥିଲେ । (ଆପ୍ଟେ) କେହି କେହି ଏହାକୁ ପମ୍ପାସର ବୋଲି କହନ୍ତି । ଏହା ଦାକ୍ଷିଣାତ୍ୟରେ ଅବସ୍ଥିତ । ଏଠାରେ ଶାତକର୍ଣ୍ଣି ବା ମନ୍ଦକର୍ଣ୍ଣି ନାମକ ଋଷି ତପସ୍ୟା କରୁଥିଲେ । ତାଙ୍କ ତପସ୍ୟାର କଠୋରତାରେ ଭୀତ ହୋଇ ତାଙ୍କ ତପୋଭଙ୍ଗ କରିବାପାଇଁ ଇନ୍ଦ୍ର ପାଞ୍ଚୋଟି ଅପ୍ସରାଙ୍କୁ ପଠାଇଥିଲେ । (ହିନ୍ଦୀ ଶବ୍ଦସାଗର) ଏହି ସରୋବରର ଜଳ ଭିତରେ ଶାତକର୍ଣ୍ଣି ଋଷି ଉକ୍ତ ପାଞ୍ଚଗୋଟି ଅପ୍ସରାଙ୍କ ପାଇଁ ଗୋଟିଏ ଗୃହ ନିର୍ମାଣ କରିଥିଲେ । (M.W ) ଏହି ହ୍ରଦ ଗର୍ଭରୁ ସର୍ବଦା ଅପ୍ସରାମାନଙ୍କ ଗୀତ ବାଦ୍ୟଧ୍ୱନି ଶୁଣାଯାଏ । (ରାମାୟଣ, ଅରଣ୍ୟକାଣ୍ଡ) । କାଳିଦାସ ରଘୁବଂଶରେ ଏହା ବର୍ଣ୍ଣନା କରିଛନ୍ତି । ଓଡ଼ିଆ କବି ୰ମଧୁସୂଦନ ରାଓ ତାଙ୍କ ରଚିତ 'ଅଯୋଧ୍ୟା ପ୍ରତ୍ୟାଗମନ' କବିତାରେ ଏହା ସମର୍ଥନ କରନ୍ତି । ଯଥା—'ପଞ୍ଚାପ୍ସର ସରେ ରାମରମଣୀ । ବୀଣାଧ୍ୱନି ଶୁଣି ଏଣୀନୟନୀ ।' (ଭାଷାକୋଷ)

**ପଞ୍ଚାଳ**—ଦ୍ରୁପଦଙ୍କ ରାଜ୍ୟ । ଗଙ୍ଗାର ଉତ୍ତର ଓ ଦକ୍ଷିଣରେ ଅବସ୍ଥିତ ପ୍ରାଚୀନ ଦେଶ ବିଶେଷ । ବର୍ତ୍ତମାନ ବରେଲିଠାରୁ ବୁନ୍ଦେଲା ଖଣ୍ଡ, ସିନ୍ଧିଆ ଇତ୍ୟାଦି ଏ ଦେଶର ଅନ୍ତର୍ଗତ । ସରସ୍ୱତୀ ଓ ଦୃଷଦ୍ବତୀ ନଦୀ ଦ୍ୱୟର ମଧ୍ୟବର୍ତ୍ତୀ ଦେଶର ନାମ ବ୍ରହ୍ମାବର୍ତ୍ତ । କୁରୁକ୍ଷେତ୍ର, ମତ୍ସ୍ୟ, ପଞ୍ଚାଳ ଓ ଶୂରସେନକ ଦେଶର ନାମ ବ୍ରହ୍ମର୍ଷି ଦେଶ । ଏମାନେ ବ୍ରହ୍ମାବର୍ତ୍ତର ସମୀପସ୍ଥ ଦେଶ । ଏତଦ୍ଦେଶପ୍ରସୂତ ବ୍ରାହ୍ମଣମାନଙ୍କଠାରୁ ପୃଥିବୀର ସମସ୍ତ ଲୋକମାନେ ସ୍ୱ ସ୍ୱ ଚରିତ୍ର ଶିକ୍ଷା କରିବେ । (ମନୁ ସଂହିତା) ରାଜା ହର୍ଯ୍ୟକ୍ଷ ଅଯୋଧ୍ୟାର ପଶ୍ଚିମ ଦେଶସ୍ଥ ରାଜ୍ୟ ଅଧିକାର କଲେ ଏବଂ କହିଲେ ଯେ ମୋର ପଞ୍ଚପୁତ୍ର (ମୁଦ୍‌ଗଳ, ସୃଞ୍ଜୟ, ବୃହଦିଷୁ, ପ୍ରବୀର ଓ କାମ୍ପିଲ୍ୟ) ମୋ ରାଜ୍ୟରକ୍ଷା ପାଇଁ ଅଳଂ (ଯଥେଷ୍ଟ) । ଏହି ଉପାଖ୍ୟାନରୁ (ପଞ୍ଚ + ଅଳଂ) ପଞ୍ଚାଳ ଶବ୍ଦର ଉତ୍ପତ୍ତି ହୋଇଥିବାର ପଣ୍ଡିତମାନେ କହନ୍ତି । ମହାଭାରତରେ ହିମାଳୟଠାରୁ

ଚର୍ମଣ୍ଵତୀ ବା ଚମ୍ବଲନଦୀ ପର୍ଯ୍ୟନ୍ତ ବିସ୍ତୃତ ଗଙ୍ଗାର ଉଭୟ ପାର୍ଶ୍ଵସ୍ଥ ଦେଶକୁ ପଞ୍ଚାଳଦେଶ ବୋଲି ବୋଲାଯାଇଅଛି । ଦ୍ରୁପଦ ପଞ୍ଚାଳର ରାଜା ଥିବାରୁ ତାଙ୍କ କନ୍ୟା ଦ୍ରୌପଦୀଙ୍କୁ ପାଞ୍ଚାଳୀ ବୋଲାଯାଏ । (ଭାଷାକୋଷ)

**ପତଞ୍ଜଳି**—ବିଖ୍ୟାତ ଯୋଗଶାସ୍ତ୍ର ପ୍ରଣେତା । ଏହାଙ୍କ ରଚିତ ଦର୍ଶନ ଶାସ୍ତ୍ରର ନାମ 'ପାତଞ୍ଜଳ ଦର୍ଶନ ।' କେହି କେହି କହନ୍ତି ଯୋଗଶାସ୍ତ୍ରକାର ପତଞ୍ଜଳି ଓ ପାଣିନିକୃତ ବ୍ୟାକରଣର ମହାଭାଷ୍ୟପ୍ରଣେତା ପତଞ୍ଜଳି ଏକ ବ୍ୟକ୍ତି । ମହାମୁନି କାତ୍ୟାୟନ ପାଣିନି ସୂତ୍ରର ଭ୍ରମ ପ୍ରଦର୍ଶନାର୍ଥେ 'ବାର୍ତ୍ତିକ' ରଚନା କରିଥିଲେ । ପାଣିନି ପକ୍ଷପାତୀ ପତଞ୍ଜଳି ପାଣିନି ସୂତ୍ରକୁ ସମର୍ଥନ କରି ଏକ ମହାଭାଷ୍ୟ ରଚନା କରିଥିଲେ । ଏହି ମହାଭାଷ୍ୟରେ କାତ୍ୟାୟନକୃତ ବାର୍ତ୍ତିକର ମତବାଦ ଖଣ୍ଡନ କରାଯାଇଛି । ପତଞ୍ଜଳି ଆହୁରି ଏକ ବୈଦ୍ୟକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ ।

କେହି କେହି କହନ୍ତି ଯୋଗଶାସ୍ତ୍ରକାର ପତଞ୍ଜଳି ମହାଭାଷ୍ୟକାର ପତଞ୍ଜଳି ଏ ଦୁହେଁ ଭିନ୍ନ ଭିନ୍ନ ବ୍ୟକ୍ତି ଏବଂ ଏହି ମହାଭାଷ୍ୟକାରହିଁ ବୈଦ୍ୟକ ଗ୍ରନ୍ଥର ପ୍ରଣେତା । ଏମାନଙ୍କ ମତରେ ଯୋଗସୂତ୍ରକାର ପତଞ୍ଜଳି ବ୍ୟାକରଣ-କାର ପାଣିନିଙ୍କ ପୂର୍ବବର୍ତ୍ତୀ । ସୁତରାଂ ପାଣିନିର ଭାଷ୍ୟକାର ପତଞ୍ଜଳି ମଧ୍ୟ ପୂର୍ବବର୍ତ୍ତୀ । ଆଉ କେହି କେହି ମଧ୍ୟ କହନ୍ତି ଯୋଗଶାସ୍ତ୍ରକାର, ମହାଭାଷ୍ୟକାର ଓ ବୈଦ୍ୟକ ଗ୍ରନ୍ଥ ପ୍ରଣେତା ପତଞ୍ଜଳି ପ୍ରତ୍ୟେକ ଏକ ଏକ ଭିନ୍ନ ବ୍ୟକ୍ତି । ଆଉ କିଏ କିଏ କହନ୍ତି ଦର୍ଶନକାର ପତଞ୍ଜଳି ପରାଶରପୁତ୍ର ବେଦବ୍ୟାସଙ୍କ ଶିଷ୍ୟ; କିଏ ବା କହେ ଜୈମିନିଙ୍କ ପୁତ୍ର ଅଥବା ପରାଶରଙ୍କ ପୁତ୍ର । ପତଞ୍ଜଳିଙ୍କ ଦର୍ଶନଶାସ୍ତ୍ର ଆଲୋଚନାର ସ୍ଥଳ ଏ ନୁହେଁ । ତଥାପି ଏତିକି କହିଲେ ଯଥେଷ୍ଟ ହେବ ଏହାଙ୍କ କୃତ ଦର୍ଶନ ଚାରିପାଦରେ ବିଭକ୍ତ । ଯଥା— ଯୋଗପାଦ, ସାଧନପାଦ, ବିଭୂତିପାଦ ଓ କୈବଲ୍ୟପାଦ । ପତଞ୍ଜଳି ଷଡ଼୍‌ବିଂଶତି ତତ୍ତ୍ୱକୁ ସ୍ଵୀକାର କରିଅଛନ୍ତି ।

**ପଦ୍ମନାଭ**—ଭଗବାନଙ୍କ ନାମାନ୍ତର । ବିଷ୍ଣୁଙ୍କ ନାଭିରୁ ଯେଉଁ ପଦ୍ମ ବାହାରିଥିଲା ସେହି ପଦ୍ମରେ ବ୍ରହ୍ମା ଥିଲେ ଏବଂ ବ୍ରହ୍ମା ତହିଁରୁ ବାହାରିଥିଲେ ।

(ଅଧ୍ୟାତ୍ମ ରାମାୟଣେ)

**ପଦ୍ମବର୍ଣ୍ଣ**—ମହାରାଜା ଯଦୁଙ୍କ ପୁତ୍ର । ଏ ନାଗକନ୍ୟା ଗର୍ଭରୁ ପ୍ରସୂତ ହୋଇଥିଲେ । ଏହାଙ୍କ ମାତାଙ୍କ ନାମ ମୁଚୁକୁଳା । (ହରିବଂଶ)

**ପଦ୍ମା**—(୧) ଲକ୍ଷ୍ମୀଙ୍କ ନାମାନ୍ତର (୨) ମନସାଦେବୀ (୩) ଚନ୍ଦ୍ରାବଳୀଙ୍କ ସଖୀ ବିଶେଷ ।

**ପଦ୍ମିନୀ**—କାମଶାସ୍ତ୍ରର ନିରୂପଣ ଅନୁସାରେ ପ୍ରଥମ ଶ୍ରେଣୀସ୍ଥ ଅତି ଉତ୍କୃଷ୍ଟା ସ୍ତ୍ରୀ ।

ଲକ୍ଷଣ ଯଥା—

ଭବତି କମଲନେତ୍ରା ନାସିକା କ୍ଷୁଦ୍ରରନ୍ଧ୍ରା,
ଅବିରଳ କୁଚଯୁଗ୍ମା ଦୀର୍ଘକେଶୀ କୃଶାଙ୍ଗୀ ।
ମୃଦୁବଚନ ସୁଶୀଳା ନୃତ୍ୟଗୀତାନୁରକ୍ତା ।
ସକଳ ତନୁ ସୁବେଶା ପଦ୍ମିନୀ ପଦ୍ମଗନ୍ଧା ।

**ପମ୍ପା**—ମଧ୍ୟ ଭାରତର ବିନ୍ଧ୍ୟାଚଳ ନିକଟରେ ଗୋଦାବରୀ ତୀରରେ ଅଗସ୍ତି ମୁନିଙ୍କ ଆଶ୍ରମ ନିକଟସ୍ଥ ଦଣ୍ଡକାରଣ୍ୟର ସରୋବର ବିଶେଷ । ରାମାୟଣ ଅରଣ୍ୟ କାଣ୍ଡରେ ବର୍ଣ୍ଣିତ—

ପମ୍ପାସର ମନୋହର ଦେଖନ୍ତି ଶ୍ରୀରାମ
ତାର ଜଳ କି ନିର୍ମଳ ସାଧୁମନ ସମ ।

(ବିଲଙ୍କା ରାମାୟଣ)

(୨) ଋଷ୍ୟମୂକ ପର୍ବତରୁ ବାହାରି ତୁଙ୍ଗଭଦ୍ରାରେ ପଡ଼ିଥିବା ନଦୀ ବିଶେଷ । ଏହି ନଦୀ କୂଳରେ ମତଙ୍ଗ ମହର୍ଷିଙ୍କର ଆଶ୍ରମ ଥିଲା । ରାମାୟଣ ବର୍ଣ୍ଣିତ ଏହି ନଦୀ ସ୍ଥିରଜଳା ଥିବାରୁ ଏହା ମଧ୍ୟ ସରୋବର ନାମରେ ଖ୍ୟାତ ।

(ଜ୍ଞାନେନ୍ଦ୍ର ଭାଷାକୋଷ)

**ପଯ୍ଗମ୍ବର**—ମୁସଲମାନମାନଙ୍କ ଧର୍ମଶାସ୍ତ୍ର ବର୍ଣ୍ଣିତ ଈଶ୍ୱର ପ୍ରେରିତ ଦୂତ ।

(ଭାଷାକୋଷ)

**ପରଶୁରାମ**—ମହର୍ଷି ଜମଦଗ୍ନିଙ୍କ ପୁତ୍ର, ଏହାଙ୍କର ମାତା ରେଣୁକା, ଏହାଙ୍କ ପିତାମହ ମହର୍ଷି ଋଚିକ ବ୍ରାହ୍ମଣ ବଂଶସମ୍ଭୂତ କିନ୍ତୁ ପିତାମହୀ ସତ୍ୟବତୀ କ୍ଷତ୍ରିୟ ବଂଶଜାତା । ପରଶୁରାମଙ୍କ ପ୍ରକୃତ ନାମ ରାମ । ଗନ୍ଧମାଦନ ପର୍ବତରେ କଠୋର ତପସ୍ୟା କରି ରାମ ମହାଦେବଙ୍କୁ ସନ୍ତୁଷ୍ଟ କରି ଏକ ତେଜୋମୟ ପରଶୁ ଲାଭ କରିଥିଲେ । ସେହିଦିନଠାରୁ ଏ ପରଶୁରାମ ନାମରେ ପରିଚିତ ହେଲେ । (ମହାଭାରତ ଶାନ୍ତିପର୍ବ) । ପରଶୁରାମ ନିଜ ପିତୃଙ୍କ ଆଦେଶରେ ଜନନୀ ରେଣୁକାଙ୍କର ମସ୍ତକ ଛେଦନ କରିଥିଲେ । ସେ ଏକୋଇଶବାର ପୃଥିବୀ

ନିକ୍ଷତ୍ରିୟ କରିବା ଉଦ୍ଦେଶ୍ୟରେ ଭ୍ରମଣ କରି କ୍ଷତ୍ରିୟ କୁଳ ନିର୍ମୂଳ କରିଥିଲେ । ରାମଚନ୍ଦ୍ର ବିବାହ ହୋଇ ସୀତାଙ୍କୁ ଘେନି ମିଥିଳାରୁ ଫେରି ଆସିବା ସମୟରେ ବାଟରେ ପରଶୁରାମଙ୍କ ସହ ଭେଟ ହେଲା । ପରଶୁରାମ ଶ୍ରୀରାମଙ୍କ ବଳ ପରୀକ୍ଷା ନିମିତ୍ତ ନିଜର ବୈଷ୍ଣବ ଧନୁ ରାମଙ୍କ ହାତକୁ ବଢ଼ାଇଦେଲେ । ଧନୁ ନେବା ସଙ୍ଗେ ସଙ୍ଗେ ପରଶୁରାମଙ୍କ ବିଷ୍ଣୁ ତେଜ ରାମଚନ୍ଦ୍ରଙ୍କ ଦେହକୁ ଚାଲିଗଲା, ହତପ୍ରଭ ହୋଇ ସେ ତପସ୍ୟା କରିବାକୁ ଚାଲିଗଲେ । ପରଶୁରାମ ଚିରଞ୍ଜୀବୀ । ପ୍ରମାଣ ଯଥା—

କୃପଃ ପରଶୁରାମଶ୍ଚ ସପ୍ତୈତେ ଚିରଞ୍ଜୀବିନଃ ।

**ପରାଶର**—ମହର୍ଷି ବଶିଷ୍ଠଙ୍କ ପୌତ୍ର ଓ ଶକ୍ତିଙ୍କ ପୁତ୍ର । ଏହାଙ୍କ ମାତାଙ୍କ ନାମ ଅଦୃଶ୍ୟନ୍ତୀ । ମହାଭାରତରେ ଏହାଙ୍କ ଜନ୍ମବିବରଣ ନିମ୍ନମତେ ଲିଖିତ ହୋଇଅଛି ।

ଏକଦା ଇକ୍ଷ୍ୱାକୁ ବଂଶଜାତ ରାଜା କଲ୍ମାଷପାଦ ମୃଗୟା ନିମିତ୍ତ ଘୋର ଅରଣ୍ୟରେ ଭ୍ରମଣ କରୁଥିଲେ । ରାଜା କ୍ଳାନ୍ତ ହୋଇ ଏକ ସଙ୍କୀର୍ଣ୍ଣ ଗିରିପଥ ଦେଇ ପ୍ରତ୍ୟାବୃତ୍ତ ହେଲେ । ଏହି ସମୟରେ ବଶିଷ୍ଠଙ୍କ ପୁତ୍ର ଶକ୍ତି ସେହି ବାଟ ଦେଇ ଅଗ୍ରସର ହେଉଥିଲେ । ରାଜା ତାଙ୍କୁ ବାଟରୁ ଆଡ଼େଇ ହୋଇ ଠିଆ ହେବା ପାଇଁ କହିଲେ ମାତ୍ର ଋଷିପୁତ୍ର ଶୁଣିଲେ ନାହିଁ । କଲ୍ମାଷପାଦ ଏଥିରେ କୋପାବିଷ୍ଟ ହୋଇ ଋଷିଙ୍କୁ ଚାବୁକରେ ଆଘାତ କଲେ । ଋଷି ରାଜାଙ୍କୁ ଅଭିଶାପ ଦେଲେ ଯେହେତୁ ତୁମେ ରାଜା ହୋଇ ମୋ ଭଳି ତପଃପ୍ରଭାବସମ୍ପନ୍ନ ଋଷିଙ୍କୁ ରାକ୍ଷସ ପରି କଶାଘାତ କଲ ସେହି ହେତୁରୁ ତୁମେ ବର୍ତ୍ତମାନଠାରୁ ରାକ୍ଷସ ହୋଇ ନରମାଂସ ଭୋଜନ କରିବା ନିମିତ୍ତ ସାରା ପୃଥିବୀ ପର୍ଯ୍ୟଟନ କରିବ । ରାଜା ରାକ୍ଷସ ହୋଇ ପ୍ରଥମେ ଶକ୍ତିଙ୍କୁ ଭକ୍ଷଣ କଲେ । ପରେ, ବଶିଷ୍ଠଙ୍କ ୯୯ ପୁତ୍ରଙ୍କୁ ଗୋଟି ଗୋଟିକରି ଖାଇଗଲେ । ବଶିଷ୍ଠଙ୍କ ଏହି ପୁତ୍ର ବିନାଶ ଚେଷ୍ଟାରେ ମହର୍ଷି ବିଶ୍ୱାମିତ୍ରଙ୍କର ମଧ୍ୟ ହାତ ଥିଲା । ପୁତ୍ରଶୋକକାତର ବଶିଷ୍ଠ ଏହା ଜାଣି ସୁଦ୍ଧା ବିଶ୍ୱାମିତ୍ରଙ୍କର କୌଣସି କ୍ଷତି କଲେନାହିଁ । ପୁତ୍ର ଶୋକରେ ଦେହତ୍ୟାଗ କରିବା ପାଇଁ ସେ ମେରୁ ପର୍ବତ ଶିଖରରୁ ଲମ୍ଫ ଦେଲେ । ଅଗ୍ନିରେ ପ୍ରବେଶ କଲେ, କଣ୍ଠରେ ପ୍ରସ୍ତର ଖଣ୍ଡ ବନ୍ଧନକରି ସମୁଦ୍ରରେ ଝାସ ଦେଲେ, ମାତ୍ର କୌଣସି ପ୍ରକାରେ ତାଙ୍କର ବିନାଶ ଘଟିଲା ନାହିଁ । ଆତ୍ମବିନାଶରେ ବ୍ୟର୍ଥ ଚେଷ୍ଟିତ ହୋଇ ସେ ଆଶ୍ରମକୁ ଫେରିଲେ । ଏହି ସମୟରେ ତାଙ୍କ ପୃଷ୍ଠଭାଗରୁ ବେଦଧ୍ୱନି ଶୁଣାଗଲା । ବଶିଷ୍ଠ ପଚାରିଲେ—'ମୋ

ପଛରେ ତୁମେ କିଏ ଆସୁଛ ?' ପଛରୁ ଉତ୍ତର ମିଳିଲା—'ମୁଁ ଆପଣଙ୍କ ଜ୍ୟେଷ୍ଠ ପୁତ୍ରବଧୂ ଅଦୃଶ୍ୟନ୍ତୀ । ମୋ ଗର୍ଭରେ ଆପଣଙ୍କ ପୌତ୍ର ଅଛି, ଏହି ସନ୍ତାନ ଦ୍ୱାଦଶବର୍ଷ ପର୍ଯ୍ୟନ୍ତ ଗର୍ଭରେ ରହି ବେଦାଧ୍ୟୟନ କରୁଛି ।' ବଶିଷ୍ଠ ଦେଖିଲେ ତାଙ୍କ ବଂଶରକ୍ଷାର ଏ ଏକ ମହତ୍ତ୍ୱ ସୂଚନା, ସେ ପୁତ୍ରବଧୂଙ୍କ ସଙ୍ଗରେ ଧୀର ଆଶ୍ରମ ଆଡ଼କୁ ଅଗ୍ରସର ହେଲେ, ପଥ ମଧ୍ୟରେ ରାକ୍ଷସଟିଏ ଅଦୃଶ୍ୟନ୍ତୀଙ୍କୁ ଗ୍ରାସ କରିବା ପାଇଁ ଧାବମାନ ହେଲା । ବଶିଷ୍ଠ ଯୋଗବଳରେ ଜାଣିପାରିଲେ ଏ ରାକ୍ଷସ ନୁହେଁ, ତଦୀୟ ପୁତ୍ରଙ୍କ ଅଭିଶାପରେ ରାକ୍ଷସ ସ୍ୱଭାବାପନ୍ନ କଲ୍ମାଷପାଦ । ବଶିଷ୍ଠ ପୁତ୍ରବଧୂଙ୍କୁ ଅଭୟ ଦେଇ ରାକ୍ଷସ ଦେହରେ ମନ୍ତ୍ରପୂତ ଜଳସେଚନ କରି ତାଙ୍କୁ ଶାପମୁକ୍ତ କଲେ । ବଶିଷ୍ଠ ରାଜାଙ୍କୁ ପୁତ୍ରପ୍ରାପ୍ତି ବର ଦେଇ ପୁଣି ଅଯୋଧ୍ୟାରେ ରାଜା ହେବା ସକାଶେ କହିଲେ । ଯଥା ସମୟରେ ଅଦୃଶ୍ୟନ୍ତୀ ଏକ ପୁତ୍ର ପ୍ରସବ କଲେ । ବଶିଷ୍ଠ ସେହି ସନ୍ତାନର ନାମ ଦେଲେ ପରାଶର । ପରାଶର ବୟଃପ୍ରାପ୍ତ ହେବା ପରେ ମାତୃ ମୁଖରୁ ପିତାଙ୍କ ନିଧନ ସମ୍ବାଦ ପାଇ ପିତୃହନ୍ତାର ଉଚ୍ଛେଦ ସାଧନ ପାଇଁ ଏକ ଯଜ୍ଞ କଲେ । ଏ ଯଜ୍ଞରେ ରାକ୍ଷସ ବଂଶର ଲୋପ ସାଧନ ଅଭିପ୍ରାୟ ଥିଲା । ମାତ୍ର ପୁଲସ୍ତ୍ୟ, ପୁଲହ ପ୍ରଭୃତି ମହର୍ଷିମାନେ ତାଙ୍କୁ ଏଥିରୁ ନିବୃତ୍ତ ହେବାକୁ ଉପଦେଶ ଦେଲେ । କହିଲେ— 'ତୁମର ପ୍ରକୃତ ପିତୃହନ୍ତା ବର୍ତ୍ତମାନ ଅମର ଲୋକରେ । ତାଙ୍କ ଉଦ୍ଦେଶ୍ୟରେ ଅନ୍ୟମାନଙ୍କୁ ବଧ କରିବା ତୁମର ଧର୍ମ ହେବନାହିଁ । ତେଣୁ ତୁମେ କ୍ରୋଧ ସମ୍ବରଣ କର । ଅକାରଣ ପ୍ରଜାକ୍ଷୟ କର ନାହିଁ ।'

ପରାଶର ଏକଥା ମାନି ଯଜ୍ଞରୁ ବିରତ ହେଲେ । ତାଙ୍କର କ୍ରୋଧାଗ୍ନି ହିମାଳୟ ଉତ୍ତରଦିଗସ୍ଥ ମହାବନରେ ନିକ୍ଷିପ୍ତ ହେଲା । ଅଦ୍ୟାବଧି ଏହି ଅଗ୍ନି ପ୍ରତି ପୂର୍ଣ୍ଣିମାଦିନ ରାକ୍ଷସ, ବୃକ୍ଷ ଓ ପ୍ରସ୍ତର ସହିତ ପର୍ବତକୁ ଦଗ୍ଧ କରିଥାଏ ।

(ମହାଭାରତ—ଆଦିପର୍ବ)

ପରାଶର ବେଦ ବିଭାଗକର୍ତ୍ତା କୃଷ୍ଣ ଦ୍ୱୈପାୟନଙ୍କ ପିତା । ପରାଶର ତୀର୍ଥଯାତ୍ରା ଉପଲକ୍ଷେ ନାନାଦେଶ ଭ୍ରମଣ କରି ଦିନେ ଯମୁନା କୂଳରେ ଉପସ୍ଥିତ ହେଲେ ଏବଂ ନଦୀ ପାରି କରିଦେବା ପାଇଁ ଧୀବରକୁ କହିଲେ । ଧୀବର ତଦୀୟ କନ୍ୟା ମତ୍ସ୍ୟଗନ୍ଧାକୁ ଏହି କର୍ମରେ ନିଯୁକ୍ତ କଲା । ନଦୀର ମଧ୍ୟ ଭାଗରେ ନୌକା ପ୍ରବେଶ ହେବାମାତ୍ରେ ମୁନି କାମାତୁର ହୋଇ ମତ୍ସ୍ୟଗନ୍ଧାର ସଙ୍ଗମପ୍ରାର୍ଥୀ ହେଲେ । ମତ୍ସ୍ୟଗନ୍ଧା ନଦୀର ଅପର ପାର୍ଶ୍ୱକୁ ଯାଇ ମୁନିଙ୍କ ଅଭିଳାଷ ପୂର୍ତ୍ତି କରିବା ଇଚ୍ଛା ପ୍ରକାଶ କଲା । ଦିବା ସଙ୍ଗମ ନିଷିଦ୍ଧ ଥିବା ଯୋଗୁଁ ଋଷିଙ୍କୁ ରାତ୍ରି ପର୍ଯ୍ୟନ୍ତ ଅପେକ୍ଷା କରିବା ପାଇଁ ମତ୍ସ୍ୟଗନ୍ଧା କହିଲା ।

ମାତ୍ର ମୁନି ତପଃ ପ୍ରଭାବରେ ଚତୁର୍ଦ୍ଦିଗ କୁଜ୍ଝଟିମୟ କରି ମତ୍ସ୍ୟଗନ୍ଧାକୁ ପଦ୍ମଗନ୍ଧାରୂପେ ପରିଣତ କରିଦେଲେ । ଏହି ସଙ୍ଗମ ଫଳରେ ବେଦବ୍ୟାସ ଉତ୍ପନ୍ନ ହେଲେ । ଏ ଦ୍ୱୀପରେ ଜନ୍ମ ହୋଇଥିବାରୁ ଏହାଙ୍କର ନାମ ଦ୍ୱୈପାୟନ । ଜନ୍ମ ପରେ ମାତୃ ଅନୁମତି ନେଇ ଦ୍ୱୈପାୟନ ତପସ୍ୟା କରିବାକୁ ଗଲେ । ବନକୁ ଯିବାବେଳେ ସେ ମାତାଙ୍କୁ କହିଗଲେ ଯେତେ-ବେଳେ ସେ ତାଙ୍କୁ ସ୍ମରଣ କରିବେ, ସେତେବେଳେ ସେ ତାଙ୍କ ପାଖରେ ପହଞ୍ଚିବେ ।

ପରାଶର ଯେଉଁ ସ୍ମୃତିଶାସ୍ତ୍ର ରଚନା କରିଥିଲେ ତାହାର ନାମ 'ପରାଶର ସଂହିତା', ଏହା ଏ ଯୁଗର ଏକ ପ୍ରଧାନ ସ୍ମୃତିଗ୍ରନ୍ଥ ।

**ପରିଘ**—ପ୍ରାଚୀନକାଳର ଯୁଦ୍ଧାସ୍ତ୍ର ବିଶେଷ । ଏହାର ଆକାର ମୁଦ୍‌ଗର ପରି ଗୋଲ ଓ ମୋଟା । ଏହା ପୁରୁଷ ପ୍ରମାଣ ଲମ୍ବା ଓ ବଳପୂର୍ବକ ଶତ୍ରୁ ପ୍ରତି ନିକ୍ଷିପ୍ତ ହେଉଥିଲା । ଏହାର ମୁଣ୍ଡରେ ଲୁହାବଳା ବସିଥିଲା । (ଭାଷାକୋଷ)

**ପରୀକ୍ଷିତ**—ତୃତୀୟ ପାଣ୍ଡବ ଅର୍ଜୁନଙ୍କ ପୌତ୍ର । କୁରୁକ୍ଷେତ୍ରରେ ଅନ୍ୟାୟ ଯୁଦ୍ଧରେ ନିହତ ମହାବୀର ଅଭିମନ୍ୟୁଙ୍କ ପୁତ୍ର । କୁଳର ଅତି କ୍ଷୀଣ ଅବସ୍ଥାରେ ଜନ୍ମି-ଥିବାରୁ କିମ୍ବା କୁରୁକୁଳ କ୍ଷୟ ପରେ ଜାତ ହୋଇଥିବାରୁ ଏହାଙ୍କର ଏ ନାମ ହୋଇଥିଲା । ମତ୍ସ୍ୟଦେଶାଧିପତି ବିରାଟଙ୍କ କନ୍ୟା ଉତ୍ତରା ଏହାଙ୍କର ଜନନୀ । ପରୀକ୍ଷିତ ରାଜା ହେବା ପରେ ଶୁଣି ପାରିଲେ ଯେ କଳି ତାଙ୍କ ରାଜ୍ୟରେ ପ୍ରବେଶ କରିଛି । ସେ ତାହାକୁ ଦମନ କରିବା ନିମିତ୍ତ ସରସ୍ୱତୀ ନଦୀକୂଳରେ ଉପସ୍ଥିତ ହେଲେ । ସେଠାରେ ସେ ଦେଖିଲେ ରାଜବେଶ ପରିହିତ ଏକ ଶୂଦ୍ର ଗୋଟିଏ ଗାଈ ଓ ଗୋଟିଏ ବୃଷଭକୁ ଦଣ୍ଡାଘାତ କରି ତାଡ଼ନା କରୁଛି । ସେ ବୃଷଭର ଗୋଟିଏ ମାତ୍ର ପାଦ ଅଛି, ଆଉ ତିନୋଟି ନାହିଁ । ପରୀକ୍ଷିତ ବୁଝିଲେ ଏହି ବୃଷଭ ତ୍ରିପାଦହୀନ ଧର୍ମ, ଗାଈଟି ପୃଥିବୀ ଏବଂ ଶୂଦ୍ର କଳି । ବୃଷଭଠାରୁ ତାହାର ପରିଚୟ ପାଇ ରାଜା ପରୀକ୍ଷିତ କଳିକୁ ବଧ କରିବା ନିମିତ୍ତ ଖଡ୍‌ଗ ଉତ୍ତୋଳନ କଲେ । କଳି ରାଜବେଶ ପରିତ୍ୟାଗ କରି ରାଜାଙ୍କ ପାଦତଳେ ପଡ଼ି ଶରଣାପନ୍ନ ହେଲା ଏବଂ ତାହାର ବାସସ୍ଥାନ ନିର୍ଦ୍ଦେଶ କରିଦେବା ପାଇଁ ଅନୁରୋଧ କଲା । କରୁଣାହୃଦୟ ପରୀକ୍ଷିତ କଳି ପାଇଁ ସ୍ଥାନ ନିର୍ଦ୍ଦେଶ କଲେ । ଦ୍ୟୂତ, ମଦ୍ୟାଦିପାନ, ସ୍ତ୍ରୀ, ହିଂସା ଏହି ଚାରିଗୋଟି ବିଷୟରେ ଚାରିପ୍ରକାର ଅଧର୍ମର ସ୍ଥାନ ଅଛି । ଦ୍ୟୂତରେ ମିଥ୍ୟା, ମଦ୍ୟପାନରେ

ମତ୍ତତା ନିମିତ୍ତ ତପସ୍ୟାବିନାଶ, ସ୍ତ୍ରୀ ଯୋଗେ ଶୌଚ ନାଶ, ହିଂସା ଓ ନିଷ୍ଠୁରତା ଯୋଗୁଁ ଦୟାହୀନତା ଇତ୍ୟାଦି ଅଧର୍ମ ରହିଛି ।

(ଭାଗବତ ପ୍ରଥମ ସ୍କନ୍ଧ)

ଏକଦା ପରୀକ୍ଷିତ ମୃଗୟାକୁ ଯାଇ ଏକ ବାଣବିଦ୍ଧ ମୃଗର ଅନୁସରଣରେ କ୍ଳାନ୍ତ ହୋଇପଡ଼ିଲେ ଏବଂ ତପସ୍ୟାରତ ଏକ ମୁନିଙ୍କୁ ଦେଖି ପଳାୟିତ ମୃଗର କଥା ପଚାରିଲେ । ମାତ୍ର ମୁନି କିଛି ଉତ୍ତର ଦେଲେ ନାହିଁ । ରାଜା ଋଷିଙ୍କୁ ନୀରବ ଦେଖି ସେ ରାଜଶ୍ରୀର ଅବମାନନା କରୁଛନ୍ତି ଭାବି ତାଙ୍କ ଗଳାରେ ଏକ ମୃତ ସର୍ପ ଲମ୍ବାଇଦେଇ ରାଜଧାନୀକୁ ଫେରି ଆସିଲେ । ଏହି ମୁନିଙ୍କର ଶୃଙ୍ଗୀ ନାମରେ ଏକ ମହାତେଜ ପୁତ୍ର ଥିଲା । ସେ ପୁତ୍ରର ଜଣେ ସଙ୍ଗୀ ତାକୁ କହିଲା—'ଆରେ, ତୁ ଆଉ ଏତେ ଗର୍ବିତ ହେଉଛୁ କାହିଁକି ? ତେଣେ ଦେଖିଲୁ ତୋ ପିତାଙ୍କ ବେକରେ କପଟ ଏକ ମଲା ସାପ ମାଳ ପରି ପଡ଼ିଛି ।' ଶୃଙ୍ଗୀ ଏକଥା ଶୁଣି ଅତି କ୍ରୁଦ୍ଧ ହୋଇ ଜଳସ୍ପର୍ଶ କରି ଅଭିଶାପ ଦେଲେ ଯେଉଁ ପାପାତ୍ମା ମୋର ନିରପରାଧ ପିତାଙ୍କ ଗଳାରେ ମୃତ ସର୍ପ ପକାଇଦେଇ ଯାଇଛି ତାକୁ ଏଇ ସାତଦିନ ଭିତରେ ତକ୍ଷକ ଦଂଶନ କରୁ । ଶୃଙ୍ଗୀଙ୍କ ପିତା ପୁତ୍ର ମୁଖରୁ ଏକଥା ଶୁଣି ତାଙ୍କୁ ନାନାପ୍ରକାର ଉପଦେଶ ଦେଇ ଅଭିଶାପ ପ୍ରତ୍ୟାହାର କରିନେବା ପାଇଁ କହିଲେ । ମାତ୍ର ଶୃଙ୍ଗୀ କୌଣସି ପ୍ରକାରେ ଏ କଥା ଶୁଣିଲେ ନାହିଁ କି ଶାପ ମଧ୍ୟ ଫେରାଇ ନେଲେ ନାହିଁ । ତେଣୁ ଋଷି ଗୌରମୁଖ ନାମକ ଶିଷ୍ୟକୁ ପରୀକ୍ଷିତଙ୍କ ନିକଟକୁ ପଠାଇ ସକଳ କଥା ଜଣାଇଦେଲେ ଏବଂ ତକ୍ଷକ ଆକ୍ରମଣ ଯେପରି ନ ହୁଏ ସେଥିପ୍ରତି ସାବଧାନ ରହିବା ପାଇଁ କହିଲେ । କ୍ରମେ ସପ୍ତମ ଦିନ ଉପସ୍ଥିତ ହେଲା । ତକ୍ଷକ କାଶ୍ୟପ ନାମକ ଜଣେ ବ୍ରାହ୍ମଣଙ୍କୁ ରାଜଧାନୀ ଆଡ଼କୁ ଯିବା ଦେଖି ପଚାରିଲେ—'ମହାଶୟ, ଏତେ ଚଞ୍ଚଳ ଗତିରେ ଆପଣ କେଉଁଆଡ଼େ ଯାଉଛନ୍ତି ?' ବ୍ରାହ୍ମଣ ଉତ୍ତର ଦେଲେ—'ଆଜି ତକ୍ଷକ ଆମ୍ଭମାନଙ୍କ ପାଳକ, ପରମ ଭାଗବତ ମହାରାଜ ପରୀକ୍ଷିତଙ୍କୁ ଦଂଶନ କରିବେ, ମୁଁ ରାଜାଙ୍କୁ ବଞ୍ଚାଇଦେବା ପାଇଁ ଯାଉଛି ।' ତକ୍ଷକ ଆତ୍ମ ପରିଚୟ ଦେଇ ପରୀକ୍ଷା ନିମିତ୍ତ ଗୋଟିଏ ବୃକ୍ଷକୁ ଦଂଶନ କଲେ । ବୃକ୍ଷଟି ସେହିକ୍ଷଣି ଭସ୍ମ ହୋଇଗଲା । ତକ୍ଷକ ଏ ବୃକ୍ଷଟିକୁ ପୁଣି ବଞ୍ଚାଇଦେବା ପାଇଁ ବ୍ରାହ୍ମଣଙ୍କୁ ଅନୁରୋଧ କଲେ । କାଶ୍ୟପ ଅବିଳମ୍ବେ ବୃକ୍ଷଟିକୁ ପୂର୍ଣ୍ଣ ଜୀବନ ଦାନ କଲେ । ତକ୍ଷକ ବୁଝିପାରିଲେ ପ୍ରଚୁର ଅର୍ଥ ଲାଳସାରେ ବ୍ରାହ୍ମଣ ରାଜପୁରକୁ ଯାଉଛନ୍ତି । ତହୁଁ ବ୍ରାହ୍ମଣଙ୍କୁ ସେ ଆଶାତୀତ ଅର୍ଥ ଦେଇ ରାଜାଙ୍କର ଚିକିତ୍ସା ନ କରିବାକୁ ଅନୁରୋଧ କଲେ ।

ବ୍ରାହ୍ମଣ ପ୍ରଚୁର ଧନଲାଭ କରି ଗୃହକୁ ଫେରିଗଲେ । ଯଥା ସମୟରେ ତକ୍ଷକ ପରୀକ୍ଷିତଙ୍କୁ ଦଂଶନ କରିବା ଫଳରେ ତାଙ୍କର ଦେହାବସାନ ଘଟିଲା ।
(ମହାଭାରତ ଆଦିପର୍ବ, ବିଷ୍ଣୁପୁରାଣ)

ଦେବୀ ଭାଗବତରେ ମୂଳ ଘଟଣା ଏହିପରି ବର୍ଣ୍ଣିତ ହୋଇଅଛି । କିନ୍ତୁ ସେଥିରୁ ଜଣାଯାଏ ପରୀକ୍ଷିତ ସପ୍ତତଳ ପ୍ରାସାଦ ନିର୍ମାଣ କରି ତାର ଚତୁର୍ଦ୍ଦିଗ ଅନେକ ରକ୍ଷୀମାନଙ୍କ ଦ୍ୱାରା ଘେରାଇ ରହିଥିଲେ । ତକ୍ଷକ କେତେଗୁଡ଼ିଏ ସର୍ପଙ୍କୁ ତପସ୍ୱୀ ବେଶରେ ସଜାଇ ସେମାନଙ୍କ ହସ୍ତରେ ସୁମିଷ୍ଟ ଫଳ ଉପହାର ଦେଇ ସେଠାକୁ ପ୍ରେରଣ କରିଥିଲେ । ସେହି ତପସ୍ୱୀମାନଙ୍କୁ ପ୍ରାସାଦ ରକ୍ଷକମାନେ ଗୃହ ମଧ୍ୟକୁ ଯିବା ପାଇଁ ଅନୁମତି ଦେଲେନାହିଁ । ମାତ୍ର ସେମାନଙ୍କ ପ୍ରଦତ୍ତ ଫଳଗୁଡ଼ିକ ରାଜାଙ୍କ ସମୀପକୁ ପଠାଇଦେଲେ । ସେତେବେଳକୁ ସନ୍ଧ୍ୟା ହୋଇ ଆସିଲାଣି । ବ୍ରହ୍ମଶାପ ବିଫଳ ହୋଇଛି ଭାବି ରଜା ସେହି ସୁମିଷ୍ଟ ଫଳରୁ ଗୋଟିଏ ଭାଙ୍ଗି ଦେଲେ । ତା ଭିତରେ ସେ ଏକ କ୍ଷୁଦ୍ର କୀଟ ଦେଖିବାକୁ ପାଇଲେ । ଏହି କ୍ଷୁଦ୍ର କୀଟ ଦ୍ୱାରା ଦଷ୍ଟ ହୋଇ ରାଜା ବ୍ରହ୍ମଶାପର ସମ୍ମାନ ରକ୍ଷା କରିବେ ବୋଲି ଭାବି ସେହି କୀଟଟିକୁ ଗ୍ରୀବାଦେଶରେ ଥୋଇଦେଲେ । ତକ୍ଷକ ସେତିକିବେଳେ ନିଜ ମୂର୍ତ୍ତି ଧାରଣ କରି ରାଜାଙ୍କୁ ଦଂଶନ କଲେ । ତାଙ୍କର ଦଂଶନରେ ପରୀକ୍ଷିତଙ୍କ ଦେହାବସାନ ଘଟିଲା । (ଦେବୀ ଭାଗବତ ୨ୟ)

**ପର୍ବତାସ୍ତ୍ର**—ପ୍ରାଚୀନକାଳର ଯୁଦ୍ଧାସ୍ତ୍ର ବିଶେଷ । ପୁରାଣାଦିରେ ବର୍ଣ୍ଣିତ ହୋଇଅଛି ଯେ ଶତ୍ରୁ ଉପରକୁ ଏହି ଶର ପ୍ରୟୋଗ କଲେ ସେଥିରୁ ବଡ଼ ବଡ ପଥର ଖଣ୍ଡମାନ ବାହାରି ଶତ୍ରୁମାନଙ୍କୁ ପେଷି ମାରି ପକାଉଥିଲା ଓ ନିଜ ସେନାର ଚାରିପାଖେ ପାହାଡ ପରି ପଥର ଗଦା ହୋଇ ଯାଉଥିବାରୁ ଶତ୍ରୁପକ୍ଷଙ୍କ ଆକ୍ରମଣରୁ ସେନା ରକ୍ଷା ପାଉଥିଲା । (ଭାଷାକୋଷ)

**ପର୍ଯ୍ୟଙ୍କ**—ନର୍ମଦା ନଦୀର ଉତ୍ତର ତୀରସ୍ଥ ପର୍ବତ ବିଶେଷ (ହିନ୍ଦୀ ଶବ୍ଦସାଗର) । ଏହାକୁ ବିନ୍ଧ୍ୟ ପର୍ବତର ପୁତ୍ର ବୋଲି କଳ୍ପନା କରାଯାଏ ।

**ପଶୁପତି**—ବ୍ରହ୍ମା ଆଦି ଯାବତୀୟ ଜଙ୍ଗମକୁ ପଶୁ ବୋଲାଯାଏ । ଏହି ସବୁର ସ୍ୱାମୀ ଯୋଗୁ ଶିବଙ୍କର ଅନ୍ୟ ନାମ ପଶୁପତି । ପ୍ରମାଣ ଯଥା—
ବରାହପୁରାଣେ—

ଅହଞ୍ଚ ସର୍ବବିଦ୍ୟାନାଂ ପତିରାଦ୍ୟଃ ସନାତନଃ ।
ଅହଂ ବୈପତି ଭାବେନ ପଶୂମଧ୍ୟେ ବ୍ୟବସ୍ଥିତଃ ।
ଅତଃ ପଶୁପତିର୍ନାମ ତଲ୍ଲୋକେ ଖ୍ୟାତମେଷ୍ୟତ ।

ଅର୍ଥାତ୍ ମୁଁ ସକଳ ବିଦ୍ୟାର ଆଦି ଓ ପତି ଏବଂ ପଶୁମଧ୍ୟରେ ପତି ଭାବରେ ବ୍ୟବସ୍ଥିତ ହୋଇଥିବାରୁ ଏଥିଲାଗି ଲୋକମାନେ ମୋତେ ପଶୁପତି କହନ୍ତି ।

**ପଶୁପାଳକ**—ଜଗନ୍ନାଥ ଓ ଲିଙ୍ଗରାଜ ମହାପ୍ରଭୁଙ୍କର ସେବକ ବିଶେଷ । ଏମାନେ ଦର୍ପଣ ଦେଖାଇ ଶ୍ରୀମୁଖ ପ୍ରକ୍ଷାଳନ, ଦାନ୍ତକାଠି ଲାଗି ଆଚମନ, ଧୂପଦୀପ ସହିତ ଶ୍ରୀଗୁଣ୍ଡିଚାରେ ପଞ୍ଚାମୃତସ୍ନାନ, ସୁଗନ୍ଧ ଅର୍ଶଲୀ ଲାଗି ଇତ୍ୟାଦି କରାଇବେ । ଏମାନେ ରଥ ଉପରେ ଠାକୁରଙ୍କୁ ଭୋଗ ଲଗାନ୍ତି ଓ ଦେବତାମାନଙ୍କୁ ବେଶ ଲାଗି କରନ୍ତି । (ଭାଷାକୋଷ)

**ପାଞ୍ଚଜନୀ**—ଶ୍ରୀକୃଷ୍ଣଙ୍କ ଶଙ୍ଖର ନାମ (ପଞ୍ଚଜନ୍ୟ ଦେଖ) ।

**ପାଞ୍ଚାଳୀ**—ଦ୍ରୌପଦୀଙ୍କ ନାମାନ୍ତର । (ପଞ୍ଚାଳ ଦେଖ)

**ପାଣିନି** –ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ସୂତ୍ରକାର । ଖ୍ରୀଷ୍ଟ ଜନ୍ମର ୪ର୍ଥ ଓ ପଞ୍ଚମ ଶତାବ୍ଦୀ ପୂର୍ବେ (ମତାନ୍ତରରେ ୭ମ ଶତାବ୍ଦୀ ପୂର୍ବେ) ଗାନ୍ଧାର ପ୍ରଦେଶାନ୍ତ ଶାଲାତୁର ଗ୍ରାମରେ ଏ ଜନ୍ମିଥିଲେ । ଏହାଙ୍କର ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ଆଠ ଅଧ୍ୟାୟରେ ବିଭକ୍ତ । ଏ ଗ୍ରନ୍ଥରେ ସୂତ୍ରିଏ ସୂତ୍ର ଉଦାହରଣସହ ଦିଆଯାଇଅଛି । ଆହୁରି ମଧ୍ୟ ଧାତୁପାଠର ଗୋଟିଏ ବ୍ୟାକରଣ ପରିଶିଷ୍ଟ ଏ ସଙ୍କଳନ କରିଥିଲେ । କଥିତ ଅଛି ଯେ ଏ ପ୍ରଥମେ ଶିକ୍ଷାଲାଭାର୍ଥେ ପାଟଳିପୁତ୍ରର ବର୍ଷ ନାମକ ଉପାଧ୍ୟାୟଙ୍କ ନିକଟରେ କେତେଦିନ ଅବସ୍ଥାନ କଲେ । କିନ୍ତୁ ଆଶାନୁରୂପ ପାଠୋନ୍ନତି ନ ହେବାରୁ ହିମାଳୟକୁ ଯାଇ ତପସ୍ୟା କଲେ ଓ ତପସ୍ୟା ଦ୍ୱାରା ମହାଦେବଙ୍କୁ ସନ୍ତୁଷ୍ଟ କରି ତାଙ୍କ ବରରେ ବ୍ୟାକରଣ ଶାସ୍ତ୍ରରେ ବ୍ୟୁତ୍ପନ୍ନ ହେଲେ । ଏହାଙ୍କ ମାତାଙ୍କ ନାମ ଦାକ୍ଷୀଦେବୀ ।

(ସୁବଳଚନ୍ଦ୍ର, ଭାଷାକୋଷ)

**ପାଣ୍ଡୁ**—ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରଜ ପୁତ୍ର । ମହର୍ଷି କୃଷ୍ଣଦ୍ୱୈପାୟନ ବ୍ୟାସଙ୍କ ଔରସରେ ଓ ବିଚିତ୍ରବୀର୍ଯ୍ୟଙ୍କ ବିଧବା ପତ୍ନୀ ଅମ୍ବାଲିକାଙ୍କ ଗର୍ଭରୁ ଜାତ ହୋଇଥିଲେ । (ଅମ୍ବାଲିକା ଦେଖ) । ଏହାଙ୍କର କୁନ୍ତୀ ଓ ମାଦ୍ରୀନାମ୍ନୀ ଦୁଇ ପତ୍ନୀ ଥିଲେ । ଭୋଜକନ୍ୟା କୁନ୍ତୀ ସ୍ୱୟମ୍ବର ସଭାରେ ପାଣ୍ଡୁଙ୍କୁ ବରମାଳ୍

ପ୍ରଦାନ କରି ବରଣ କରିଥିଲେ । ତା'ପରେ ଭୀଷ୍ମ ମଦ୍ରରାଜ କନ୍ୟା ମାଦ୍ରୀଙ୍କ ସହିତ ପାଣ୍ଡୁଙ୍କ ବିବାହ ଦେଇଥିଲେ । ପାଣ୍ଡୁ, ଧୃତରାଷ୍ଟ୍ର ଓ ବିଦୁରଙ୍କର ଅଭିଭାବକ ଥିଲେ ଭୀଷ୍ମ । ଯୁଧିଷ୍ଠିର, ଭୀମ ଓ ଅର୍ଜୁନ କୁନ୍ତୀଙ୍କ ଗର୍ଭରୁ ଏବଂ ନକୁଳ ଓ ସହଦେବ ମାଦ୍ରୀଙ୍କଠାରୁ ଉତ୍ପନ୍ନ ହୋଇଥିଲେ । ଏହି ପଞ୍ଚପାଣ୍ଡବ ପାଣ୍ଡୁଙ୍କର କ୍ଷେତ୍ରଜ ପୁତ୍ର । ଧର୍ମଙ୍କ ଔରସରେ ଯୁଧିଷ୍ଠିର, ବାୟୁଙ୍କ ଔରସରେ ଭୀମ, ଇନ୍ଦ୍ରଙ୍କ ଔରସରେ ଅର୍ଜୁନ, ଅଶ୍ୱିନୀକୁମାର ଯୁଗଳଙ୍କ ଔରସରେ ନକୁଳ ଓ ସହଦେବ ଜନ୍ମଗ୍ରହଣ କରିଥିଲେ । ଏହି କ୍ଷେତ୍ରଜ ପୁତ୍ରମାନେହିଁ ପାଣ୍ଡବ ନାମରେ ଖ୍ୟାତ ।

ପାଣ୍ଡୁ ଶାନ୍ତନୁଙ୍କ ନଷ୍ଟୋନ୍ମୁଖ କୀର୍ତ୍ତିର ଉଦ୍ଧାରକାରକ । ସେ ରାଜାମାନଙ୍କୁ ପରାସ୍ତ କରି ପ୍ରଭୂତ ଅର୍ଥ ସଞ୍ଚୟ କରିଥିଲେ । ତଦ୍ଦ୍ୱାରା ପାଞ୍ଚଗୋଟି ମହାଯଜ୍ଞ ଅନୁଷ୍ଠିତ ହୋଇଥିଲା । ଏହା ପରେ ସେ ପତ୍ନୀମାନଙ୍କ ସହିତ ବନଗମନ କଲେ । ଏହି ଅରଣ୍ୟରେ ଥରେ ଜଣେ ମହାତେଜସ୍ୱୀ ଋଷିପୁତ୍ର ମୃଗରୂପ ଧାରଣ କରି ଗୋଟିଏ ମୃଗୀ ସହିତ ସଙ୍ଗମରତ ଥିବା ବେଳେ ପାଣ୍ଡୁ ପାଞ୍ଚଟି ବାଣ ଦ୍ୱାରା ଏହି ମୃଗଦମ୍ପତିଙ୍କୁ ବିଦ୍ଧ କଲେ । ମୃଗରୂପୀ ଋଷିକୁମାର ଦେବସ୍ଥ ଅବସ୍ଥାରେ ପାଣ୍ଡୁଙ୍କୁ ଶାପ ଦେଲେ—'ମୁଁ ଜଣେ ଫଳମୂଳାହାରୀ ମୁନି । ମୋର ନାମ କମୁଦ୍ଧମ୍ୟ । ମୁଁ ମୃଗରୂପ ଧାରଣ କରି ମୃଗୀ ସହିତ ମୈଥୁନରତ ଥିଲି । ତୁମେ ମୋ ଅତୃପ୍ତି ସମୟରେ ମୋତେ ବଧ କଲ । ତୁମକୁ ଅବଶ୍ୟ ବ୍ରହ୍ମବଧ ପାପରେ କଳୁଷିତ ହେବାକୁ ପଡ଼ିବ ନାହିଁ । ମାତ୍ର ମୁଁ ଅଭିଶାପ ଦେଉଛି ଯେ ତୁମେ ସ୍ତ୍ରୀ ସହବାସ କଲେ ଅତୃପ୍ତ ଅବସ୍ଥାରେହିଁ ପ୍ରାଣତ୍ୟାଗ କରିବ ।' ଏଥିଯୋଗେ ପାଣ୍ଡୁ, ସ୍ତ୍ରୀ ସଂସର୍ଗ କରୁ ନଥିଲେ । କୁନ୍ତୀ ଦୁର୍ବାସାଙ୍କଠାରୁ ମନ୍ତ୍ରଲାଭ କରି ତାହାର ପ୍ରଭାବରେ ଦେବତାମାନଙ୍କୁ ଆହ୍ୱାନ କରି ତିନିପୁତ୍ର ଲାଭ କରିଥିଲେ । (କୁନ୍ତୀ ଦେଖ) ପାଣ୍ଡୁଙ୍କ ଅନୁରୋଧରେ କୁନ୍ତୀ ମାଦ୍ରୀଙ୍କୁ ଏହି ମନ୍ତ୍ର ଶିକ୍ଷାଦେବା ଯୋଗେ ମାଦ୍ରୀ ଅଶ୍ୱିନୀକୁମାର ଯୁଗଳଙ୍କ ସହବାସରେ ନକୁଳ ଓ ସହଦେବଙ୍କୁ ଜନ୍ମ କରିଥିଲେ । ବସନ୍ତ ସମୟରେ ଶତ ନିରୋଧ ସତ୍ତ୍ୱେ ପାଣ୍ଡୁ ମାଦ୍ରୀଙ୍କ ସହବାସ କାମନା କରି ମୃଗରୂପୀ ଋଷିଙ୍କ ଶାପରେ ଦେହତ୍ୟାଗ କଲେ । ମାଦ୍ରୀ ପତିଙ୍କ ସହଗମନରେ ଦେହ ଛାଡ଼ିଲେ । ଅରଣ୍ୟବାସୀ ଋଷିମାନେ କୁନ୍ତୀ ଓ ପଞ୍ଚପାଣ୍ଡବଙ୍କୁ ହସ୍ତିନାପୁରକୁ ନେଇଗଲେ । ଭୀଷ୍ମ ଓ ଧୃତରାଷ୍ଟ୍ର ଏ ଦୁର୍ଘଟଣାରେ ବିଶେଷ ଦୁଃଖିତ ହୋଇଥିଲେ । ମହାମତି ବିଦୁର ପାଣ୍ଡୁଙ୍କ ମୃତଦେହର ସତ୍କାରାଦି କଲେ ।

**ପାଣ୍ଡ୍ୟ**—ଦକ୍ଷିଣ ଭାରତର ପୁରାଣ ପ୍ରସିଦ୍ଧ ଏକ ରାଜା । ଏହା ଆଧୁନିକ ମାଲାବାର, କାନଡ଼ା ଓ କଙ୍କଣ ।

**ପାତାଳ**—ମର୍ତ୍ତ୍ୟର ନିମ୍ନସ୍ଥ ଭୁବନ । ପୁରାଣମାନଙ୍କ ମତରେ ପୃଥିବୀର ତଳେ କ୍ରମାଗତ ତଳକୁ ତଳ ସାତଗୋଟି ଭୁବନ ଅଛି । ତାକୁ ପାତାଳ ବୋଲାଯାଏ । ପାତାଳମାନଙ୍କର ସଂଖ୍ୟା ସାତଗୋଟି ଥିବା ବିଷୟରେ ସବୁ ପୁରାଣ ଏକମତ । କିନ୍ତୁ ସେମାନଙ୍କ ନାମ ସମ୍ବନ୍ଧେ ଭିନ୍ନ ଭିନ୍ନ ପୁରାଣ ଓ କୋଷମାନଙ୍କରେ ପାର୍ଥକ୍ୟ ଦେଖାଯାଏ । ଯଥା—

(୧) ଶବ୍ଦରତ୍ନାବଳୀ—ଅତଳ, ନିତଳ, ବିତଳ, ଗଭସ୍ତିମତ୍, ତଳ, ସୁତଳ, ପାତାଳ ।

(୨) ପଦ୍ମପୁରାଣ ପାତାଳଖଣ୍ଡ—ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ, ପାତାଳ ।

(୩) ଅଗ୍ନିପୁରାଣ—ଅତଳ, ସୁତଳ, ବିତଳ, ଗଭସ୍ତିମତ୍, ମହାତଳ, ରସାତଳ, ପାତାଳ ।

(୪) ପ୍ରକୃତିବାଦ—ତଳ, ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ ।

(୫) ଆପ୍ଟେ—ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ, ପାତାଳ ।

(୬) ସୁବଳଚନ୍ଦ୍ର—ଅତଳ, ବିତଳ, ସୁତଳ, ତଳାତଳ, ମହାତଳ ରସାତଳ, ପାତାଳ ।

(୭) ଜ୍ଞାନେନ୍ଦ୍ର—ଅତଳ, ବିତଳ, ସୁତଳ, ତଳାତଳ, ତଳ, ରସାତଳ ପାତାଳ ।

ଏହି ପାତାଳଲୋକରେ ନାଗମାନେ ବାସ କରନ୍ତି । ଏହା ସ୍ୱର୍ଗଠାରୁ ଅଧିକ ସୁଖମୟ ଥିବାରୁ ଏହାକୁ ବିଳସ୍ୱର୍ଗ ବୋଲାଯାଏ । ଏଥିରେ ସମୃଦ୍ଧ ଭବନ, ଉଦ୍ୟାନ, ବିହାର, କ୍ରୀଡ଼ାଚତ୍ୱରମାନ ଅଛି । ଏଠାରେ ମୟ ଦାନବମାନଙ୍କର ବାସ ଏବଂ ଏଠାରେ ମହାଦେବ ରହନ୍ତି । ଏଠାରେ

ବାବସରେ ସୂର୍ଯ୍ୟ ଶୀତଳ କରଣ ଦଅନ୍ତି ଓ ରାତରେ ଚନ୍ଦ୍ର କରଣରେ ଶୈତ୍ୟ ନ ଥାଏ, କେବଳ ଆଲୋକ ଥାଏ । ଏହି ସପ୍ତପାତାଳ ଅନନ୍ତ ବା ଶେଷ ନାଗଙ୍କ ମସ୍ତକ ଉପରେ ଅବସ୍ଥିତ । ଶେଷନାଗ ହାଇ ମାରିଲେ ସାଗ୍ରିତୋୟାବ୍ଧିକାନନ ସପ୍ତପାତାଳ କମ୍ପି ଉଠେ । ଏହାର ନଦୀର ନାମ ହାଟକୀ ବା ପାତାଳଗଙ୍ଗା ବା ଭୋଗବତୀ ।

(ବିଷ୍ଣୁପୁରାଣ—୨ । ୫, ଭାଷାକୋଷ)

**ପାତାଳଗଙ୍ଗା**—ପୁରାଣ ବର୍ଣ୍ଣିତ ପାତାଳଲୋକରେ ପ୍ରବାହିତା ନଦୀ । ଏହାର ଅନ୍ୟ ନାମ ଭୋଗବତୀ । ସ୍ୱର୍ଗ ଗଙ୍ଗାର ନାମ ମନ୍ଦାକିନୀ । ମର୍ତ୍ତ୍ୟ ଗଙ୍ଗାର ନାମ ଭାଗୀରଥୀ ଏବଂ ପାତାଳ ଗଙ୍ଗାର ନାମ ଭୋଗବତୀ ।

**ପାଦଗୟା**—ହିନ୍ଦୁଙ୍କର ତୀର୍ଥ ବିଶେଷ । (ଗୟା ଦେଖ)

**ପାବକ ଋଷି**—ବ୍ରହ୍ମାଙ୍କ ଅଙ୍ଗରୁ ଜାତ ୨୭ ଜଣ ଋଷି । ମହାଭାରତ ବନପର୍ବରେ ଲେଖାଅଛି ଯେ ବ୍ରହ୍ମାଙ୍କ ଅଙ୍ଗରୁ ୨୭ ଜଣ ପାବକ ଋଷି ଜାତ ହୋଇଥିଲେ । କ୍ରିୟାଭେଦରେ ଅଗ୍ନିଙ୍କର ଏହି ସବୁ ଭିନ୍ନ ଭିନ୍ନ ନାମ ମଧ୍ୟ ଅଛି । ଅଙ୍ଗିରା, ଦକ୍ଷିଣ, ଗାର୍ହପତ୍ୟ, ଆହବନୀୟ, ନିର୍ମନ୍ଥ୍ୟ, ବିଦ୍ୟୁତ, ଶୂର, ସମ୍ଭୃତି, ଲୌକିକ, ଜାଠର, ବିଷମ, କବ୍ୟ, କ୍ଷେମବାନ୍, ବୈଷ୍ଣବ, ଦସ୍ୟୁମାନ୍, ବଳଦ, ଶାନ୍ତ, ପୁଷ୍ଟ, ବିଭାବସୁ, ଜ୍ୟୋତିଷ୍ମାନ, ଭରତ, ଭଦ୍ର, ସ୍ୱିଷ୍ଟକୃତ୍, ବସୁମାନ୍, କ୍ରତୁ, ସୋମ ଓ ପିତୃମାନ୍ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପାବନ**—ହନୁମାନ୍ ଓ ଭୀମଙ୍କ ନାମାନ୍ତର ।

**ପାର୍ବତୀ**—ମହାଦେବଙ୍କ ପତ୍ନୀ । ଦକ୍ଷ ଯଜ୍ଞରେ ସତୀ ଅନିମନ୍ତ୍ରିତ ଭାବରେ ଯୋଗଦେବାରୁ ପିତାଙ୍କ ଦ୍ୱାରା ତିରସ୍କୃତ ହୋଇ ଏବଂ ପତି ନିନ୍ଦା ସହି ନ ପାରି ଦେହତ୍ୟାଗ ପରେ ପର୍ବତରାଜ ହିମାଳୟଙ୍କ ଗୃହରେ ମେନାଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ପର୍ବତରାଜ କନ୍ୟା ହୋଇଥିବାରୁ ଏ ପାର୍ବତୀ ନାମରେ ଖ୍ୟାତ । (ଦକ୍ଷ ଦେଖ)

**ପାରତ** - ଏକ ପ୍ରାଚୀନ ଦେଶ । ଏହା କାସ୍ପିୟାନ୍ ହ୍ରଦର ଦକ୍ଷିଣସ୍ଥ ପାହାଡ଼ର ଅପରପାର୍ଶ୍ୱରେ ଥିବା ପାରସ୍ୟ ଦେଶର ଗୋଟିଏ ପ୍ରଦେଶ । ପାରସ୍ୟ ଦେଶ ବହୁକାଳ ଯାଏ ଏଠା ଅଧିବାସୀଙ୍କ ଅଧୀନ ଥିଲା । ମନୁସଂହିତା, ମହାଭାରତ, ଓ ବୃହତ୍ ସଂହିତାରେ ଏ ଦେଶର ଓ ଜାତିର

ଉଲ୍ଲେଖ ଅଛି । ପ୍ରାଚୀନ ଶିଳାଲେଖରେ 'ପାର୍ଥିବ', ଶବ୍ଦର ଉଲ୍ଲେଖ ମିଳେ । କେହି କେହି 'ପହ୍ଲବ' ଶବ୍ଦକୁ ପାର୍ଥିବର ଅପଭ୍ରଂଶ ବୋଲି କହନ୍ତି । କିନ୍ତୁ ସଂସ୍କୃତ ସାହିତ୍ୟରେ ପାରତ ବା ପାରଦ ଓ ପହ୍ଲବ ଦୁଇ ପୃଥକ୍ ଜାତିର ଉଲ୍ଲେଖ ଅଛି । (ହିନ୍ଦୀ ଶବ୍ଦସାଗର, ଭିଷାକୋଷ)

**ପାରିଜାତ**—ଇନ୍ଦ୍ରଙ୍କ ଉଦ୍ୟାନର ପ୍ରଧାନ ବୃକ୍ଷ । ଏହା ସମୁଦ୍ର ମନ୍ଥନବେଳେ ଚନ୍ଦ୍ର ଓ ଲକ୍ଷ୍ମୀ ଆଦିଙ୍କ ସଙ୍ଗରେ ସମୁଦ୍ରରୁ ବାହାରିଥିଲା । ଇନ୍ଦ୍ର ଏହାକୁ ଆପଣା ନନ୍ଦନ ଉଦ୍ୟାନରେ ଲଗାଇଥିଲେ । ଶ୍ରୀକୃଷ୍ଣ ଉକ୍ତ ବୃକ୍ଷକୁ ଇନ୍ଦ୍ରଙ୍କ ଉଦ୍ୟାନରୁ ବଳପୂର୍ବକ ଆଣି ସତ୍ୟଭାମାଙ୍କ ବିହାର କାନନରେ ଲଗାଇଥିଲେ । (ଭିଷାକୋଷ)

(୨) ଐରାବତ ବଂଶଜ ଏକ ହାତୀର ନାମ । (ହିନ୍ଦୀ ଶବ୍ଦସାଗର)

(୩) ଏକ ଋଷିଙ୍କ ନାମ । (ହିନ୍ଦୀ ଶବ୍ଦସାଗର)

**ପାରିପାତ୍ର**—(କ) ସପ୍ତକୁଳାଚଳ ମଧ୍ୟରେ ଏକତମ । ଏହା ବିନ୍ଧ୍ୟ ପର୍ବତର ଅନ୍ତର୍ଗତ ବୋଲି କଥିତ । ଏଥିରୁ ବେଦସ୍ମୃତ, ବେଦବତୀ, ବୃତ୍ରଘ୍ନୀ, ସିନ୍ଧୁ, ଗ୍ରାନନ୍ଦିନୀ, ସଦାନୀରା, ମହୀ, ପାରା, ଚର୍ମଣ୍ୱତୀ, ନୂପୀ, ବିଦଶା, ବେନ୍ଦବତୀ, ଓ ଶିପ୍ରା ଆଦି ନଦୀ ବାହାରିଥିବାର ପ୍ରସିଦ୍ଧି ଅଛି । (ଭିଷାକୋଷ)

**ପାରିପ୍ଲବ**—ହିନ୍ଦୁମାନଙ୍କର ତୀର୍ଥ ବିଶେଷ । ରାଜକବି କୃଷ୍ଣସିଂହ କହନ୍ତି—

କୁରୁକ୍ଷେତ୍ରେ ପାରିପ୍ଲବରେ ସ୍ନାନ କଲେ ।
ଅଗ୍ନିଷ୍ଟୋମ ଫଳ ଲଭଇ ସେହି ଭଲେ ।
(ମହାଭାରତ, ବନପର୍ବ)

**ପାଶୁପତ**—ମହାଦେବଙ୍କ ଅସ୍ତ୍ର ବିଶେଷ । ଶିବଙ୍କ ଅମୋଘାସ୍ତ୍ର । ଅର୍ଜୁନଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ମହାଦେବ ଏହି ଅସ୍ତ୍ରକୁ ତାଙ୍କୁ ଉପହାର ଦେଇଥିଲେ । ଏହାର ଅନ୍ୟନାମ ପାଶୁପତାସ୍ତ୍ର ।

**ପାଶୁପତ ଦର୍ଶନ**—ସାଂପ୍ରଦାୟିକ ହିନ୍ଦୁ ଦର୍ଶନଶାସ୍ତ୍ର ବିଶେଷ । 'ସର୍ବାର୍ଥଦର୍ଶନ-ସଂଗ୍ରହ'ରେ ଏ ଦର୍ଶନର ନାମ ଉଲ୍ଲେଖ ଅଛି । ଏଥିରେ ଜୀବମାନଙ୍କୁ 'ପଶୁ' ସଂଜ୍ଞା ଦିଆଯାଇଅଛି ଓ ପଶୁପତି ଶିବ, ଜଗତର ଓ ଜୀବର ଅଧୀଶ୍ୱର ଥିବାର

ଲେଖାଅଛି । ମୁକ୍ତି ଦୁଇ ପ୍ରକାର । ଯଥା—ସବ ଦୁଃଖର ଅତ୍ୟନ୍ତ ନିବୃତ୍ତି ଓ ପରମୈଶ୍ୱର୍ଯ୍ୟ ପ୍ରାପ୍ତି ବୋଲି ଏଥିରେ ଲେଖାଅଛି । ଅନ୍ୟ ଦର୍ଶନମାନଙ୍କରେ ଦୁଃଖର ନିବୃତ୍ତିକୁ ମୁକ୍ତି ବୋଲିଯାଇଅଛି । କିନ୍ତୁ ପାଶୁପତ ଦର୍ଶନରେ ଦୁଃଖର ନିବୃତ୍ତି ସଙ୍ଗେ ପରମୈଶ୍ୱର୍ଯ୍ୟ ପ୍ରାପ୍ତି ନହେଲେ ମୁକ୍ତ ହେବନାହିଁ ବୋଲି ବର୍ଣ୍ଣିତ ହୋଇଅଛି । ଦୃକ୍‌ଶକ୍ତି ଓ କ୍ରିୟାଶକ୍ତି ପରମୈଶ୍ୱର୍ଯ୍ୟ ପ୍ରାପ୍ତିରୁ ମୁକ୍ତି ପାଇବାର ଦୁଇଟି ଫଳ । କେହି କେହି ଭଗବଦ୍‌ଦାସତ୍ୱ ପ୍ରାପ୍ତିକୁ ମୁକ୍ତି କହନ୍ତି । କିନ୍ତୁ ପାଶୁପତ ଦର୍ଶନ ମତରେ ଏହା ମୁକ୍ତି ନୁହେଁ, ବନ୍ଧନ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପିଙ୍ଗଳ**—ନାଗ ବିଶେଷ; ଛନ୍ଦୋଶାସ୍ତ୍ରକାର ଏକ ଆଚାର୍ଯ୍ୟଙ୍କ ନାମ । ଏ ଛନ୍ଦୋଶାସ୍ତ୍ରର ଆଦି ଆଚାର୍ଯ୍ୟ ଥିବାର କଥିତ ଓ ଏହାଙ୍କ ଗ୍ରନ୍ଥ ବେଦାଙ୍ଗ ମଧ୍ୟରେ ପରିଗଣିତ । (ହିନ୍ଦୀ ଶବ୍ଦସାଗର); ଏକାଦଶ ରୁଦ୍ରଙ୍କ ମଧ୍ୟରୁ ଏକତମ । ସୂର୍ଯ୍ୟଙ୍କ ପାରିପାର୍ଶ୍ୱିକ ବିଶେଷ । ବହ୍ନିର ବିଶେଷ । ମହାଯୁଗ ଚକ୍ରର ୬୦ ବର୍ଷ ମଧ୍ୟରୁ ଏକପଞ୍ଚାଶତ୍ତମ ବର୍ଷ । (ହିନ୍ଦୀ ଶବ୍ଦସାଗର) ମାର୍କଣ୍ଡେୟ ପୁରାଣୋକ୍ତ ଭାରତର ଉତ୍ତର ପଶ୍ଚିମରେ ଥିବା ଦେଶ ବିଶେଷ ।

(ହିନ୍ଦୀ ଶବ୍ଦସାଗର)

**ପିଙ୍ଗଳା**—(୧) ବାମନ ନାମକ ଦକ୍ଷିଣ ଦିଗ୍‌ଗଜର ସ୍ତ୍ରୀ । (୨) ଭାଗବତ ବର୍ଣ୍ଣିତ ଜଣେ ବେଶ୍ୟାର ନାମ । ବିଦେହ ନଗରବାସିନୀ ଏ ବେଶ୍ୟା ଏକ ସମୟରେ ପୂର୍ବ ନିର୍ଦ୍ଦିଷ୍ଟ ସଙ୍କେତ ସ୍ଥାନରେ ନାଗରର ଆଗମନ ପ୍ରତୀକ୍ଷା କରି ବ୍ୟର୍ଥ-ମନୋରଥ ହୋଇ ଅତ୍ୟନ୍ତ ମନଃକଷ୍ଟ ଭୋଗ କରିବା ଅବସ୍ଥାରେ ତାହା ମନରେ ଈଶ୍ୱରଭକ୍ତି ଉଦୟ ହେଲା ଓ ସେ ଏକାନ୍ତ ନିଷ୍ଠା ଦ୍ୱାରା ମୋକ୍ଷଲାଭ କଲା । ଭୀଷ୍ମଦେବ ମହାଭାରତରେ ଯୁଧିଷ୍ଠିରଙ୍କୁ ମୋକ୍ଷ ବିଷୟକ ଉପଦେଶ ଦେବା ପ୍ରସଙ୍ଗରେ ପିଙ୍ଗଳା ବେଶ୍ୟାର ଉଦାହରଣ ଦେଉଥିଲେ । [ଭାଷାକୋଷ], (୩) ନାଡ଼ୀ ବିଶେଷର ନାମ ଯୋଗଶାସ୍ତ୍ରୋକ୍ତ ଅସ୍ଥିବିଜ୍ଞାନ ମତରେ ଶରୀର ମଧ୍ୟସ୍ଥ ତିନିଗୋଟି ପ୍ରଧାନ ନାଡ଼ୀ ମଧ୍ୟରୁ ଏହା ଦକ୍ଷିଣ ପାର୍ଶ୍ୱ-ସ୍ଥିତ ନାଡ଼ୀ; ଏହା ମସ୍ତକଠାରୁ ମେରୁଦଣ୍ଡ ପର୍ଯ୍ୟନ୍ତ ଅବସ୍ଥିତ ଓ ଏହା ଶ୍ୱାସପ୍ରଶ୍ୱାସର ଏବଂ ବାୟୁ ଗମନାଗମନର ପ୍ରଧାନ ପଥ । ତନ୍ତ୍ର ମତରେ ଏ ନାଡ଼ୀରେ ସୂର୍ଯ୍ୟଙ୍କ ଅବସ୍ଥାନ । ପିଙ୍ଗଳା ନାଡ଼ୀବାଟେ ପବନ ଚାଲିବେଲେ ମନୁଷ୍ୟର ଡାହାଣ ନାକପୁଡ଼ା ବାଟେ ଶ୍ୱାସ ଯିବାଆସିବା କରେ । ଏ ନାଡ଼ୀରେ ଶ୍ୱାସ ଯିବାବେଳେ କଠିନ ବିଷୟର ପଠନ, ପାଠନ, ସ୍ତ୍ରୀ ପ୍ରସଙ୍ଗ,

ନୌକାରୋହଣ, ସୁରାପାନ, ଶତ୍ରୁଙ୍କୁ ଆକ୍ରମଣ, ଦ୍ୟୁତକ୍ରୀଡ଼ା ଆଦି କଲେ ଭଲ ଫଳ ହୁଏ । (ହିନ୍ଦୀ ଶବ୍ଦସାଗର)

**ପିଣ୍ଡାରକ**—ମହାଭାରତୋକ୍ତ ଦ୍ୱାରକାସ୍ଥିତ ହିନ୍ଦୁମାନଙ୍କର ତୀର୍ଥ ବିଶେଷ । ଏହା ଗୁଜୁରାଟରେ ସମୁଦ୍ରକୂଳଠାରୁ ପ୍ରାୟ ଏକ କୋଶ ଦୂରରେ ଅବସ୍ଥିତ । ସ୍କନ୍ଦପୁରାଣ, ଲିଙ୍ଗପୁରାଣ ଓ ମହାଭାରତରେ ଏହାର ଉଲ୍ଲେଖଅଛି । କଥିତ ଅଛି ଯେ ଏ ତୀର୍ଥରେ ସ୍ନାନ କରି ପାଣ୍ଡବମାନେ ଗୋହତ୍ୟା ପାପରୁ ମୁକ୍ତିଲାଭ କରିଥିଲେ । (୨) ବସୁଦେବ ଓ ରୋହିଣୀଙ୍କର ଗୋଟିଏ ପୁଅର ନାମ । (୩) ନାଗ ବିଶେଷ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ) ଏହାର ଅନ୍ୟ ନାମ ପିଣ୍ଡାର୍କ । ପ୍ରମାଣ ଯଥା—'ଭୂପତିଙ୍କ ପ୍ରେମପଞ୍ଚାମୃତରେ—ପ୍ରଭାସତୀର୍ଥେ ପ୍ରବେଶିଲେ, ପିଣ୍ଡାର୍କ ତୀର୍ଥେ ସ୍ନାନ କଲେ ।'

**ପିତୃଗଣ**—ମନୁଷ୍ୟମାନଙ୍କର ପୂର୍ବପୁରୁଷଙ୍କର ପନ୍ଦରଗୋଟି ଶ୍ରେଣୀ । ଅଗ୍ନିଷ୍ୱାତ୍ତାଦି ସପ୍ତ ଓ ମରୀଚି ପ୍ରଭୃତି ଅଷ୍ଟମୁନିଙ୍କଠାରୁ ଦେବ, ଦାନବ, ପ୍ରଭୃତିଙ୍କର ଉତ୍ପତ୍ତି ହୋଇଥିବାରୁ ଏମାନଙ୍କୁ ପିତୃଗଣ କହନ୍ତି । ଏମାନେ ଦକ୍ଷ ପ୍ରଜାପତିଙ୍କଠାରୁ ଜାତ । ଶାସ୍ତ୍ର ଅନୁସାରେ ଏହି ପ୍ରତ୍ୟେକଙ୍କର ଗୋଟିଏ ଲେଖାଏଁ ଗଣ ଅଛି । ଗରୁଡ଼ ପୁରାଣୋକ୍ତ ପିତୃମାନଙ୍କ ନାମ—ବିଶ୍ୱ, ବିଶ୍ୱଭୁକ୍, ଆରାଧ୍ୟ, ଧର୍ମ, ଧନ୍ୟ' ଶୁଭାସନ, ଭୂମିଜ, ଭୂମିକୃତ୍, ଭୂତି, କଲ୍ୟାଣ, କଲ୍ୟଦ, କଲ୍ୟତର, କଲ୍ୟତରାଶ୍ରୟ, କଲ୍ୟତାହେତୁ, ଅନଘ, ମହାନ, ମହାତ୍ମା, ମହିତ, ମହିମାବାନ୍, ମହାବଳ । (ଭାଷାକୋଷ)

**ପିତୃତିଥି** - ଅମାବାସ୍ୟା । ଏ ଦିନ ପିତୃଗଣେ ପଞ୍ଚଦଶ କଳାତ୍ମକ ଚନ୍ଦ୍ରଙ୍କର ସୁଧା ପାନ କରନ୍ତି । (ଭାଷାକୋଷ)

**ପିତୃତୀର୍ଥ**—ଦକ୍ଷିଣହସ୍ତର ତର୍ଜନୀ ଓ ଅଙ୍ଗୁଷ୍ଠମୂଳରେ ସ୍ଥିତ କର ତଳର ଅଂଶ । ଏହି ବାଟେ ପାଣିରେ ତର୍ପଣ କରି ଜଳ ଦେଲେ ପିତୃଗଣ ଗ୍ରହଣ କରନ୍ତି । ଗୟାଧାମର ଅନ୍ୟ ନାମ ପିତୃତୀର୍ଥ । ଏଠାରେ ପିଣ୍ଡ ଦେଲେ ପିତୃପୁରୁଷମାନେ ପ୍ରେତ ଯୋନିରୁ ମୁକ୍ତ ହୁଅନ୍ତି । (ଭାଷାକୋଷ)

**ପିତୃ ସମ୍ବତ୍ସର**—ପିତାଙ୍କର ମୃତ୍ୟୁ ଦିନଠାରୁ ବର୍ଷେ ପର୍ଯ୍ୟନ୍ତ ସମୟ । ଏହି ବର୍ଷକ ମଧ୍ୟରେ ପିତାଙ୍କୁ ପ୍ରତି ମାସରେ ଶ୍ରାଦ୍ଧ ଦେବାକୁ ହୁଏ ବୋଲି ଏ ସମୟରେ କ୍ରିୟା ଧରିଥିବା ପୁତ୍ର ଅନ୍ୟ ଗୃହସ୍ଥର ପାକରେ ଭୋଜନ କରେ ନାହିଁ ।

ଅଭ ମଧ୍ୟ ଲୋକଙ୍କର ବିଶ୍ୱାସ ଯେ ଏହି ବର୍ଷକ ମଧ୍ୟରେ ପୁତ୍ରକୁ ନାନା ଦୁଃଖଭୋଗ କରିବାକୁ ପଡ଼େ ଓ ଏ ଏକବର୍ଷକାଳ କଟିଗଲେ ଦୁଃଖ କମିଯାଏ । (ଭାଷାକୋଷ)

**ପିନାକ**—ଶିବଙ୍କ ଧନୁ, ଶିବଙ୍କ ତ୍ରିଶୂଳ । ଶିବଙ୍କର ଧନ୍ୱାକାର ବାଦ୍ୟଯନ୍ତ୍ର । ଏହାକୁ ଶିବ ଯୁଦ୍ଧ ସମୟରେ ଧନୁରୂପେ ଓ ନୃତ୍ୟକାଳରେ ବାଦ୍ୟରୂପେ ବ୍ୟବହାର କରନ୍ତି । (ଭାଷାକୋଷ)

**ପିପୀତକ**—ଭବିଷ୍ୟ ପୁରାଣୋକ୍ତ ଏକ ବ୍ରାହ୍ମଣଙ୍କ ନାମ । ଏହି ବ୍ରାହ୍ମଣଙ୍କୁ ଯମଦୂତମାନେ ଯମଲୋକକୁ ନେଇଗଲେ । ସେଠାରେ ତାଙ୍କୁ ଅତି ତୃଷା ହେବାରୁ ସେ ବିକଳରେ ଯମଙ୍କୁ ସ୍ତବ କଲେ । ଯମ ତାଙ୍କ ସ୍ତବରେ ପ୍ରସନ୍ନ ହୋଇ ତାଙ୍କୁ ମର୍ତ୍ତ୍ୟଲୋକକୁ ପଠାଇଦେଲେ ଏବଂ ପିପିତକୀ ବ୍ରତ କରିବା ପାଇଁ ଉପଦେଶ ଦେଲେ । ଏ ବ୍ରତରେ ଶୀତଳ ଜଳପୂର୍ଣ୍ଣକଳସ ବ୍ରାହ୍ମଣଙ୍କୁ ଦାନ କରାଯାଏ । ବୈଶାଖ ଶୁକ୍ଳ ଦ୍ୱାଦଶୀ ଦିନ ଏ ବ୍ରତ କରାଯାଏ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପୀଠ**—ମହାଦେବଙ୍କ ପତ୍ନୀ ସତୀଦେବୀଙ୍କର ମୃତ ଶରୀରର ଭିନ୍ନ ଭିନ୍ନ ଅବୟବ ଖଣ୍ଡମାନ ପଡ଼ିଥିବା ସ୍ଥାନ, ଯାହାକି ହିନ୍ଦୁମାନଙ୍କର ତୀର୍ଥରୂପେ ପରିଗଣିତ ହୋଇଅଛି; ସିଦ୍ଧକ୍ଷେତ୍ର । ସତ୍ୟଯୁଗରେ ଦକ୍ଷ ପ୍ରଜାପତି ଗୋଟିଏ ଯଜ୍ଞ ଅନୁଷ୍ଠାନ କଲେ । ସେହି ଯଜ୍ଞକୁ ଆପଣାର ଜ୍ୱାଇଁ ମହାଦେବଙ୍କୁ ନିମନ୍ତ୍ରଣ କଲେନାହିଁ । କିନ୍ତୁ ଦକ୍ଷ କନ୍ୟା ମହାଦେବଙ୍କ ପତ୍ନୀ ସତୀଦେବୀ ସେଠାକୁ ଯିବାରୁ ଦକ୍ଷ ମହାଦେବଙ୍କୁ ଗାଳିଦେଲେ । ସତୀ ସ୍ୱାମୀଙ୍କର ଅପମାନ ସହି ନ ପାରି ସେହି ଯଜ୍ଞକୁଣ୍ଡରେ ଝାମ୍ପ ଦେଇ ପ୍ରାଣତ୍ୟାଗ କଲେ । ମହାଦେବ ଆସି ଏହା ଦେଖି କୋପାନ୍ୱିତ ହୋଇ ଦକ୍ଷ ଯଜ୍ଞକୁ ନଷ୍ଟ କରି ସତୀଙ୍କ ମୃତ ଦେହକୁ କାନ୍ଧରେ ପକାଇ ତ୍ରିଭୁବନ ଭ୍ରମଣ କଲେ । ଏହା ଦେଖି ବିଷ୍ଣୁ ସୁଦର୍ଶନଚକ୍ର ଦ୍ୱାରା ସତୀଙ୍କ ଦେହକୁ ଖଣ୍ଡ ବିଖଣ୍ଡ କରିପକାଇଲେ ଓ ତାହାର ଅଂଶମାନ ଛିଟକି କରି ପଡ଼ିଲା । ଯେଉଁ ସବୁ ସ୍ଥାନରେ ଏହା ପଡ଼ିଲା ସେହି ସବୁ ସ୍ଥାନ ୫୧ଟି ପୀଠ ଓ ୨୬ଟି ଉପପୀଠ ନାମରେ ମହାତୀର୍ଥରୂପେ ପରିଗଣିତ ହେଲା । ପ୍ରତ୍ୟେକ ପୀଠରେ ଏକ ଦେବୀ ବା ଭୈରବୀ ଓ ଏକ ଭୈରବ ଉଦ୍ଭବ ହେଲେ । ପୀଠ ଓ ଉପପୀଠ ସମ୍ବନ୍ଧେ ପୁରାଣମାନଙ୍କରେ ସ୍ଥାନଭେଦ, ଅଙ୍ଗଭେଦ ଓ ମତଭେଦ ପରିଲକ୍ଷିତ ହୁଏ ।

**ପୁଣ୍ଡରୀକ ବାସୁଦେବ**—ପୁଣ୍ଡରୀକ ନାମଧାରୀ ଜଣେ ପୌରାଣିକ ରାଜା । ଏ ବିଷ୍ଣୁଙ୍କ ଭଳି ବେଶଭୂଷାଧରି ବିଷ୍ଣୁଙ୍କ ପରି ବିଖ୍ୟାତ ହେବାକୁ ଚେଷ୍ଟା କରି ହାସ୍ୟାସ୍ପଦ ହୋଇଥିଲେ । ଏହାଙ୍କ ଅନ୍ୟ ନାମ ପୌଣ୍ଡ୍ରିକ ଓ ପୁଣ୍ଡରୀକ ରାଜା । (ଭାଗବତ, ଭାଷାକୋଷ)

**ପୁଣ୍ଡ୍ର**—ବଳିଙ୍କ କ୍ଷେତ୍ରଜ ପୁତ୍ର । ଏହାଙ୍କ ନାମାନୁସାରେ ପୁଣ୍ଡ୍ର ଦେଶର ନାମ ହୋଇଥିଲା । (ଅଙ୍ଗ ଦେଖ) । ମହାଭାରତ ଅନୁସାରେ ବଳିରାଜାଙ୍କର ପାଞ୍ଚ ପୁତ୍ର ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମଙ୍କ ନାମ ଅନୁସାରେ ଭାରତର ପାଞ୍ଚଗୋଟି ପ୍ରଦେଶର ନାମ ହୋଇଥିଲା । (ହିନ୍ଦୀ ଶବ୍ଦସାଗର)

ପୁରାଣୋକ୍ତ ଭାରତର ପ୍ରାଚୀନ ଜାତିବିଶେଷଙ୍କ ନାମ (ହିନ୍ଦୀ ଶବ୍ଦସାଗର) । ବ୍ରହ୍ମାଣ୍ଡ ଓ ମତ୍ସ୍ୟପୁରାଣ ମତରେ ଏମାନେ ପୂର୍ବ ଭାରତରେ ବାସ କରୁଥିଲେ । ବିଷ୍ଣୁ ଓ ମାର୍କଣ୍ଡେୟ ପୁରାଣରେ ଏମାନେ ଦାକ୍ଷିଣାତ୍ୟବାସୀ ଥିବାର କୁହାଯାଇଅଛି । ଐତରେୟ ବ୍ରାହ୍ମଣରେ ଏମାନେ ବିଶ୍ୱାମିତ୍ରଙ୍କଠାରୁ ଶାପପ୍ରାପ୍ତ, ବିଶ୍ୱାମିତ୍ରଙ୍କର କେତେକ ପୁତ୍ରଙ୍କ ବଂଶଧର ଥିବାର ଓ ଶାପ ଯୋଗୁଁ ଏମାନେ ଦସ୍ୟୁ ଓ ଅନ୍ତ୍ୟଜ ହୋଇଥିବାର ବର୍ଣ୍ଣିତ ହୋଇଅଛି ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପୁରଞ୍ଜୟ**—ଜଣେ ସୂର୍ଯ୍ୟବଂଶୀୟ ପ୍ରାଚୀନ ରାଜା । ପ୍ରାଚୀନକାଳରେ ଦେବାସୁର ଯୁଦ୍ଧରେ ଦେବତାମାନେ ରାକ୍ଷସମାନଙ୍କ ଦ୍ୱାରା ପରାସ୍ତ ହୋଇ ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ବିଷ୍ଣୁଙ୍କ ଉପଦେଶମତେ ଦେବତାମାନେ ମହାରାଜା ପୁରଞ୍ଜୟଙ୍କୁ ସାହାଯ୍ୟ ଦେବାପାଇଁ ଅନୁରୋଧ କଲେ । ଦେବତାମାନେ ପୁରଞ୍ଜୟଙ୍କ ନିକଟକୁ ଯିବାବେଳେ ଇନ୍ଦ୍ରଙ୍କୁ ବୃଷଭରୂପ ଧାରଣ କରିବା ପାଇଁ କହିଲେ । ଇନ୍ଦ୍ର ପ୍ରଥମେ ବୃଷଭ ହେବାକୁ ଅମଙ୍ଗ ହେଲେ । ମାତ୍ର ପରେ ଦେବତାମାନଙ୍କ ଅନୁରୋଧ ରକ୍ଷା କରି ବୃଷଭରୂପ ଧରିଗଲେ । ପୁରଞ୍ଜୟ ବୃଷଭରୂପୀ ଇନ୍ଦ୍ରଙ୍କ କକୁଦ (ଚୂଳ) ଉପରେ ବସି ଯୁଦ୍ଧ କରି ରାକ୍ଷସମାନଙ୍କୁ ପରାସ୍ତ କଲେ । ସେହିଦିନଠାରୁ ପୁରଞ୍ଜୟଙ୍କର ଅନ୍ୟ ନାମ ହେଲା କକୁସ୍ଥ । ତାଙ୍କ ବଂଶୀୟ ରାଜାମାନେ ମଧ୍ୟ କକୁସ୍ଥ ନାମରେ ଜଗଦ୍‌ବିଖ୍ୟାତ ହୋଇଥିଲେ । (ବିଷ୍ଣୁପୁରାଣ)

**ପୁରଞ୍ଜନ**—(ଭାଗବତ ଚତୁର୍ଥ ସ୍କନ୍ଧ । ପଞ୍ଚବିଂଶତିତମ ଅଧ୍ୟାୟ ପୃଷ୍ଠା ୧୬୮) ।

**ପୁରନ୍ଦର**—ଇନ୍ଦ୍ରଙ୍କ ନାମାନ୍ତର । ଶତ୍ରୁ ନଗରୀ ବିଦାରଣ କରିପାରନ୍ତି ବୋଲି ଦେବରାଜଙ୍କର ଏହି ଆଖ୍ୟା ।

# ପୀଠସ୍ଥାନମାନଙ୍କ ନାମ

| ସେହି ସେହି ସ୍ଥାନରେ ପଡ଼ିଥିବା ସତୀଙ୍କ ଅଙ୍ଗର ନାମ | ଅଙ୍ଗ ପଡ଼ିବାର ସ୍ଥାନ | ସେଠାର ଭୈରବୀଙ୍କ ନାମ | ଭୈରବଙ୍କ ନାମ |
|---|---|---|---|
| ୧ | ୨ | ୩ | ୪ |
| ୧ । ବ୍ରହ୍ମରନ୍ଧ୍ର | ହିଙ୍ଗୁଳା (ବେଲୁଚିସ୍ଥାନ) | କୋଟ୍ଟରୀ | ଭୀମଲୋଚନ |
| ୨ । ତ୍ରିନେତ୍ର | ଶର୍କର | ମହିଷମର୍ଦ୍ଦିନୀ | ଚନ୍ଦ୍ରାଧୀଶ |
| ୩ । ନେତ୍ରାଂଶ ତାରା | ତାରା | ତାରିଣୀ | ଉନ୍ମତ୍ତ |
| ୪ । ବାମ କର୍ଣ୍ଣ | କରତୋୟାତଟ | ଅପର୍ଣ୍ଣା ବା ଶିଖରବାସିନୀ | ବାମେଶ ବା ମଦନଭୈରବ |
| ୫ । ଡାହାଣ କର୍ଣ୍ଣ | ଶ୍ରୀପର୍ବତ ବା କର୍ଣ୍ଣାଟ | ଶ୍ରୀସୁନ୍ଦରୀ ବା ଜୟଦୁର୍ଗା | ଅଭୀରୁ |
| ୬ । ନାସିକା | ସୁଗନ୍ଧା | ସୁନନ୍ଦା | ତ୍ର୍ୟମ୍ବକ |
| ୭ । ମନଃ ବା ଭ୍ରୂମଧ୍ୟ | ବଦ୍ରନାଥ | ପାପହର୍ତ୍ରୀ ବା ମହିଷମର୍ଦ୍ଦିନୀ | ବଦ୍ରନାଥ |
| ୮ । ବାମ ଗଣ୍ଡ | ଗୋଦାବରୀ | ବିଶ୍ୱମାତୃକା ବା ରାକିଣୀ | ବିଶ୍ୱେଶ ବା ଦଣ୍ଡପାଣି |
| ୯ । ଡାହାଣ ଗଣ୍ଡ | ଗଣ୍ଡକୀ | ଗଣ୍ଡକୀଚଣ୍ଡୀ | ଚକ୍ରପାଣି |
| ୧୦ । ଊର୍ଦ୍ଧ୍ୱଦନ୍ତ | ଅନଳ | ନାରାୟଣୀ | ସଂହୂର ବା ସଂହର |
| ୧୧ । ଅଧୋଦନ୍ତ | ପଞ୍ଚସାଗର | ବାରାହି | ମହାରୁଦ୍ର |
| ୧୨ । ଜିହ୍ୱା ବା ପଦାଙ୍ଗୁଳି | ଜ୍ୱାଳାମୁଖୀ ବା ବରଟ | ଅମ୍ବିକା | ଅମୃତାକ୍ଷ; ବଟୁକେଶ୍ୱର ବା ଉନ୍ମତ୍ତ ଭୈରବ |
| ୧୩ । କଣ୍ଠ | କାଶ୍ମୀର | ମହାମାୟା | ତ୍ରିସନ୍ଧ୍ୟା |
| ୧୪ । ଗ୍ରୀବା | ଶ୍ରୀହଟ୍ଟ ବା ଶ୍ରୀଶୈଳ | ମହାଲକ୍ଷ୍ମୀ | ସର୍ବାନନ୍ଦ ବା ସମ୍ବରନନ୍ଦ |
| ୧୫ । ଓଷ୍ଠ | ଭୈରବ ପର୍ବତ | ଅବନ୍ତୀ | ଲମ୍ବକର୍ଣ୍ଣ |
| ୧୬ । ଅଧର ବା ଉଦର | ପ୍ରଭାସ | ଚନ୍ଦ୍ରଘଣ୍ଟା | ବକ୍ରତୁଣ୍ଡ |
| ୧୭ । ମର୍ମ | ପ୍ରଭାସ ଖଣ୍ଡ | ସିଦ୍ଧେଶ୍ୱରୀ | ସିଦ୍ଧେଶ୍ୱରୀ |
| ୧୮ । ଚିବୁକ | ଜନସ୍ଥାନ | ଭ୍ରାମରୀ | ବିକୃତାକ୍ଷ |
| ୧୯ । ଦ୍ୱିହସ୍ତାଙ୍ଗୁଳି | ପ୍ରୟାଗ | କମଳା; କଲ୍ୟାଣୀ ବା ଲଳିତା | ବେଣୀମାଧବ ବା ଭବ |

| ୧ | ୨ | ୩ | ୪ |
|---|---|---|---|
| ୨୦ । ଡାହାଣ ହସ୍ତ | ମାନସ ସରୋବର | ଦାକ୍ଷାୟଣୀ | ହର ବା ଅମର |
| ୨୧ । ଡାହାଣ ବାହୁ | ଚଟ୍ଟଗ୍ରାମ | ଭବାନୀ | ଚନ୍ଦ୍ରଶେଖର |
| ୨୨ । ବାମ ସ୍କନ୍ଧ | ମିଥିଳା | ମହାଦେବୀ | ମହୋଦର |
| ୨୩ । ଡାହାଣ ସ୍କନ୍ଧ | ରତ୍ନାବଳୀ | କୁମାରୀ ବା ଶିବା | ଶିବ ବା କୁମାର |
| ୨୪ । ବାମ ମଣିବନ୍ଧ | ମଣିବନ୍ଧ | ଗାୟତ୍ରୀ | ଶଙ୍କର ବା ସର୍ବାନନ୍ଦ |
| ୨୫ । ଡାହାଣ ମଣିବନ୍ଧ | ମଣିଦେବ ବା ମଣିବନ୍ଧ | ସାବିତ୍ରୀ | ସ୍ଥାଣୁ ବା ସର୍ବାନନ୍ଦ |
| ୨୬ । ବାମ କହୁଣୀ | ଉଜ୍ଜୟିନୀ | ମଙ୍ଗଳଚଣ୍ଡିକା | କପିଳାମ୍ବର |
| ୨୭ । ଡାହାଣ କହୁଣୀ | ରଣଖଣ୍ଡ | ବହୁଳାକ୍ଷୀ | ମହାକାଳ |
| ୨୮ । ବାମ ବାହୁ | ବହୁଳା | ବହୁଳା | ଭୀରୁକ |
| ୨୯ । ଡାହାଣ ବାହୁ | ବକ୍ରେଶ୍ୱର | ବକ୍ରେଶ୍ୱରୀ | ବକ୍ରେଶ୍ୱର |
| ୩୦ । ବାମ ସ୍ତନ | ଜାଳନ୍ଧର | ତ୍ରିପୁରମାଳିନୀ | ଭୀଷଣ |
| ୩୧ । ଡାହାଣ ସ୍ତନ | ରାମଗିରି | ଶିବାନୀ | ଚଣ୍ଡ |
| ୩୨ । ପୃଷ୍ଠଦେଶ | ବୈବସ୍ୱତ ବା କନ୍ୟାଶ୍ରମ | ତ୍ରିପୁଟା ବା ସର୍ବାଣୀ | ଶମନକର୍ମୀ ବା ନିମିଷ |
| ୩୩ । ହୃଦୟ | ବୈଦ୍ୟନାଥ | ନବଦୁର୍ଗା ବା ଜୟଦୁର୍ଗା | ବୈଦ୍ୟନାଥ |
| ୩୪ । ନାଭି | ଉତ୍କଳ (ପୁରୀ), ବିରଜା-କ୍ଷେତ୍ର ବା ଯାଜପୁର | ବିରଜା ବା ବିମଳା | ଜୟ ବା ଜଗନ୍ନାଥ |
| ୩୫ । ଉଦର | ହରଦ୍ୱାର | ଦୈଭିବୀ | ବକ୍ର |
| ୩୬ । କାଖ | କୌଁକ | କୌଁକେଶ୍ୱରୀ | କୌଁକେଶ୍ୱର |
| ୩୭ । କଙ୍କାଳ | କାଞ୍ଚୀଦେଶ | ଦେବଗର୍ଭା | ରୁରୁ |
| ୩୮ । ବାମ ନିତମ୍ବ | କାଳମାଧବ | କାଳୀ | ଅସିତାଙ୍ଗ |
| ୩୯ । ଡାହାଣ ନିତମ୍ବ | ନର୍ମଦା | ଶୋଣାକ୍ଷୀ | ଭଦ୍ରସେନ |
| ୪୦ । ମହାମୁଦ୍ରା (ଯୋନି) | କାମରୂପ (ଆସାମ) | କାମାକ୍ୟା | ଉମାନନ୍ଦ |
| ୪୧ । ବାମ ଜାନୁ | ମାଳବ | ଶୁଭଚଣ୍ଡୀ | ତାମ୍ର |
| ୪୨ । ଡାହାଣ ଜାନୁ | ସ୍ରୋଙ୍କ | ଚଣ୍ଡିକା | ସଦାନନ୍ଦ |

| ୧ | ୨ | ୩ | ୪ |
|---|---|---|---|
| ୪୩ । ବାମ ଜଙ୍ଘ | ଜୟନ୍ତୀ (ଆସାମ) | ଜୟନ୍ତୀ | କ୍ରମଦୀଶ୍ୱର |
| ୪୪ । ଡାହାଣ ଜଙ୍ଘ ବା ଜାନୁ | ନେପାଳ ବା ମଗଧ | ମହାମାୟା ବା ସର୍ବାନନ୍ଦକରୀ | କାପାଳୀ ବା ବ୍ୟୋମକେଶ |
| ୪୫ । ବାମ ପାଦ | ଉଦୟେଣ (ତ୍ରିସ୍ରୋତା) | ଭ୍ରାମରୀ | ଅମ୍ବର |
| ୪୬ । ଡାହାଣ ପାଦ | ତ୍ରିପୁରା | ତ୍ରିପୁରା | ନଳ ବା ତ୍ରିପୁରେଶ |
| ୪୭ । ଡାହାଣ ପାଦାଙ୍ଗୁଷ୍ଠ | କ୍ଷୀରଗ୍ରାମ | ଯୋଗାଦ୍ୟା | କ୍ଷୀରଖଣ୍ଡ |
| ୪୮ । ,, ପାଦାଙ୍ଗୁଷ୍ଠ ଚତୁଷ୍ଟୟ | କାଳୀଘାଟ (କଲିକତା) | କାଳିକା | ନକୁଳେଶ |
| ୪୯ । ବାମ ଗୁଲ୍ଫ | ବିଭାସ | ଭୀମରୂପା ବା କପାଳିନୀ | କାପାଳୀ |
| ୫୦ । ଡାହାଣ ଗୁଲ୍ଫ | କୁରୁକ୍ଷେତ୍ର | ସାବିତ୍ରୀ, ସମ୍ଭବା ବା ବିମଳା | ସମ୍ବର୍ତ୍ତ ବା ସ୍ଥାଣୁ |
| ୫୧ । ବାମ ପାଦାଙ୍ଗୁଳି | ବୈଦ୍ୟନାଥ | ବିନ୍ଧ୍ୟବାସିନୀ | ପୂଜ୍ୟାଞ୍ଜନ |

(ବିଶ୍ୱକୋଷ)

## ଉପପୀଠମାନଙ୍କ ନାମ

| ପଡ଼ିଥିବା ସତୀଙ୍କ ଅଙ୍ଗ ବା ଅଳଙ୍କାରର ନାମ | ପଡ଼ିବା ସ୍ଥାନ | ଭୈରବୀ | ଭୈରବ |
|---|---|---|---|
| ୧ | ୨ | ୩ | ୪ |
| ୧ । କିରୀଟ | କିରୀଟ କୋଣା | ଭୁବନେଶୀ | ସିଦ୍ଧରୂପ |
| ୨ । କେଶ | କେଶଜାଲ (ବୃନ୍ଦାବନ) | ଉମା | ଭୂତେଶ |
| ୩ । କୁଣ୍ଡଳ ବା ମଣିକର୍ଣ୍ଣୀ | ବାରାଣସୀ ବା କାଶୀ | ବିଶାଳାକ୍ଷୀ ବା ଅନ୍ନପୂର୍ଣ୍ଣା | କାଳଭୈରବ ବା ବିଶ୍ୱେଶ୍ୱର |
| ୪ । ବାମଗଣ୍ଡାଂଶ | ଉଦ୍ଧର | ଉଦ୍ଧରଣୀ | ଉତ୍ପାଦନ |
| ୫ । ଡାହାଣ ଗଣ୍ଡାଂଶ | ଜଳସ୍ଥଳ | ଭ୍ରାମରୀ | ବିରୂପାକ୍ଷ |
| ୬ । ଓଷ୍ଠାଂଶ | ଅଟ୍ଟହାସ | ଫୁଲ୍ଲରା | ବିଶ୍ୱନାଥ ବା ବିଶ୍ୱେଶ |
| ୭ । ଦଣ୍ଡାଂଶ | ହରିଦ୍ୱାର | ସୁରେଶୀ | ସୁରେଶ |

| ୧ | ୨ | ୩ | ୪ |
|---|---|---|---|
| ୮ । ଉଚ୍ଛିଷ୍ଟ | ନୀଳାଚଳ ବା ପୁରୀ | ବିମଳା | ଜଗନ୍ନାଥ |
| ୯ । କଣ୍ଠହାର | ଅଯୋଧ୍ୟା | ଅନ୍ନପୂର୍ଣ୍ଣା | ହରନ୍ଧର |
| ୧୦ । ହ୍ୱାଗ୍ରାଂଶ | ନନ୍ଦୀପୁର | ନନ୍ଦନୀ | ନନ୍ଦକେଶ୍ୱର |
| ୧୧ । ଗ୍ରୀବାଂଶ ବା ଦକ୍ଷତଳ୍ପ | ଶ୍ରୀଶୈଳ | ସର୍ବେଶ୍ୱରୀ | ସର୍ବାନନ୍ଦ |
| ୧୨ । ଶିରାଂଶ | କାଳୀପୀଠ | ଚଣ୍ଡେଶ୍ୱରୀ | ଚଣ୍ଡେଶ୍ୱର |
| ୧୩ । ଓଷ୍ଠ | ଚଣ୍ଡ୍ରପୀଠ | ଚକ୍ରଧାରିଣୀ | ଶୂଳପାଣି |
| ୧୪ । ପାଣିପଦ୍ମ | ଯଶୋର | ଯଶୋରେଶ୍ୱରୀ | ପ୍ରଚଣ୍ଡ ବା ଚଣ୍ଡ |
| ୧୫ । ଦକ୍ଷାଂଶ | ସତ୍ତଚଳ | ସୁନନ୍ଦା | ସୁନନ୍ଦ |
| ୧୬ । ଚୂଡାଂଶ | ବୃନ୍ଦାବନ | କୁମାରୀ ବା କାତ୍ୟାୟନୀ | କୁମାର |
| ୧୭ । ବପୁ (ଚର୍ମ) | ଗୌରୀଶେଖର | ଯୁଗାଦ୍ୟା | ଭୀମ |
| ୧୮ । ଶିରନଳ | ନଳହାଟୀ | ସାଫାଳିକା ବା କାଳିକା | ଯୋଗୀଶ |
| ୧୯ । ନିତମ୍ବାଂଶ | ଶୋଣ | ଭଦ୍ରା | ଭଦ୍ରେଶ୍ୱର |
| ୨୦ । କକ୍ଷାଂଶ | ସର୍ବସେନା | ବିଶ୍ୱମାତା | ଦଣ୍ଡପାଣି |
| ୨୧ । ପଦାଂଶ | ତ୍ରିସ୍ରୋତା | ପାର୍ବତୀ | ଭୈରବେଶ୍ୱର |
| ୨୨ । ନୂପୁର | ଲଙ୍କା | ଇନ୍ଦ୍ରାକ୍ଷୀ | ରକ୍ଷେଶ୍ୱର |
| ୨୩ । ଚର୍ମାଂଶ | ନଷ୍ଟକ | ନଷ୍ଟକେଶ୍ୱରୀ ବା କାତ୍ୟାୟନୀ | ବାମଦେବ |
| ୨୪ । ଲୋମ | ପୁଣ୍ଡର | ସର୍ବାକ୍ଷିଣୀ | ସର୍ବ |
| ୨୫ । ଲୋମଖଣ୍ଡ | ତୈଳଙ୍ଗ | ଚଣ୍ଡନାୟିକା | ଚଣ୍ଡେଶ |
| ୨୬ । ଭଗ୍ନାଂଶ | ଶ୍ୱେତବନ୍ଧ | ଜୟା | ମହାଭୀମ |

(ଭକ୍ତିକୋଷ)

**ପୁରାଣ** — (ପୁରା = ପ୍ରାଚୀନକାଳର + ଅ ଘଟିତ ବା ଜାତ,) ଅତି ପ୍ରାଚୀନକାଳରେ ପ୍ରସିଦ୍ଧ ବ୍ୟକ୍ତି, ସମାଜ, ଧର୍ମ ଓ ଦେବତା ଆଦିଙ୍କ ଜନ୍ମ ଓ କ୍ରିୟାକଳାପ-ଆଦି ଅବଲମ୍ବନରେ ରଚିତ ଗ୍ରନ୍ଥ । ବ୍ୟାସାଦି ମୁନିଗଣ ରଚିତ ସର୍ଗ (ସୃଷ୍ଟି), ପ୍ରତିସର୍ଗ (ପ୍ରଳୟ) ବଂଶ (ବଂଶବିସ୍ତାର) ମନ୍ୱନ୍ତର (ଯୁଗାଂଶ ବିସ୍ତାର) ଓ ବଂଶାନୁଚରିତ (ବଂଶର ଇତିହାସ)—ଏ ପାଞ୍ଚ ଗୋଟି ଲକ୍ଷଣାକ୍ରାନ୍ତ ଗ୍ରନ୍ଥବିଶେଷ । (ଭାଷାକୋଷ)

ଏହି ପାଞ୍ଚଗୋଟି ବିଷୟ ପୁରାଣର ସାଧାରଣ ଲକ୍ଷଣ । କିନ୍ତୁ ବିବେଚନା ଦ୍ୱାରା ପ୍ରମାଣିତ କରାଯାଇଛି ଯେ ପୁରାଣମାନଙ୍କରେ ଏହି ପାଞ୍ଚଟିଠାରୁ ଅଧିକ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ ମଧ୍ୟ ଅଛି । ଉଦାହରଣ ସ୍ୱରୂପ, ଅଗ୍ନି ପୁରାଣକୁ ନିଆଯାଇ ପାରେ । ଏହାକୁ ଭାରତର ଜ୍ଞାନକୋଷ ବୋଲି କହିଲେ କିଛି ଅତ୍ୟୁକ୍ତି ହେବନାହିଁ । ପୁଣି କୌଣସି କୌଣସି ପୁରାଣରେ ଏହି ପାଞ୍ଚ ଲକ୍ଷଣର ଯଥାରୀତି ବର୍ଣ୍ଣନା ମିଳେ ନାହିଁ । ସୃଷ୍ଟିର ଆରମ୍ଭରୁ ମନୁଷ୍ୟ ସମାଜର ଇତିହାସ ଲେଖିବା ପାଇଁ ଯଦି ଦରକାର ହୁଏ ସେଥିପାଇଁ ପୁରାଣ ଏକମାତ୍ର ସହାୟକ ଓ ଉଜ୍ଜ୍ୱଳ ଆଦର୍ଶ ।

(ପଣ୍ଡିତ ଶ୍ରୀ ଜଗନ୍ନାଥ ରଥ, ସାହିତ୍ୟାଗ୍ରଣୀ, ସାହିତ୍ୟାଲଙ୍କାର ବିଦ୍ୟାଭୂଷଣଙ୍କ ଲିଖିତ 'ଗ୍ରନ୍ଥ ପ୍ରବେଶ', ପ୍ରବନ୍ଧ ଶ୍ରୀକୃଷ୍ଣ କେଶରୀ ପୁରାଣରେ ଦ୍ରଷ୍ଟବ୍ୟ, ପୁରାଣର ଯାବତୀୟ ବିଷୟ ଜାଣିବା ପାଇଁ ପାଠକମାନେ ଏହି ପ୍ରବନ୍ଧ ପାଠ କରନ୍ତୁ) ।

ପୁରାଣ ଅଠର ପ୍ରକାର । ମାତ୍ର ଏଗୁଡ଼ିକ ଅଲଗା ଅଲଗା ସ୍ୱତନ୍ତ୍ର ଗ୍ରନ୍ଥ ନୁହେଁ । କିନ୍ତୁ ଏକମାତ୍ର ପୁରାଣର ଏହା ୧୮ ଗୋଟି ପ୍ରକରଣ ମାତ୍ର । ଯେପରି ଏକ ଗ୍ରନ୍ଥରେ ବିଭିନ୍ନ ଅଧ୍ୟାୟ ବା ପରିଚ୍ଛେଦ ଥାଏ । ସେହିପରି ଏକ ପୁରାଣର ଏହା ୧୮ ପ୍ରକରଣ । ଏଣୁ ଏହାର କ୍ରମ ନିଶ୍ଚିତ ।

ମ ଦ୍ୱୟଂ ଭ ଦ୍ୱୟଂ ଚୈବ ବ୍ରତ୍ରୟଂ ବ ଚତୁଷ୍ଟୟମ୍ ।
ଅ ନା ପ ଲିଙ୍ଗ କୁସ୍କାନି ପୁରାଣାନି ପୃଥକ୍ ପୃଥକ୍ ॥

ଉପପୁରାଣ ମଧ୍ୟ ୨୦ ଗୋଟି ଯଥା—ସନତ୍କୁମାର, ନରସିଂହ, ନାନ୍ଦୀ, ଶିବଧର୍ମ, ଦୁର୍ବାସା, ନାରଦୀୟ, କପିଳ, ମାନବ, ଉଶନସ, ବ୍ରହ୍ମାଣ୍ଡ, ବରୁଣ, କାଳିକା, ବଶିଷ୍ଠ, ଲିଙ୍ଗ, ମହେଶ୍ୱର, ଶାମ୍ବ, ସୌର, ପରାଶର, ମାରୀଚ, ଭାର୍ଗବ । ('ଗ୍ରନ୍ଥ ପ୍ରବେଶ' ପ୍ରବନ୍ଧ ଦେଖ)

'ଗ୍ରନ୍ଥ ପ୍ରବେଶ', ପ୍ରବନ୍ଧରେ ପୁରାଣ ପରିଚୟ ଅଂଶ ଦେଖନ୍ତୁ । (କୃଷ୍ଣକେଶରୀ ମୁଦ୍ରିତ ଭାଗ $2\frac{1}{2}$ ଠାରୁ $3\frac{3}{4}$ ଯାଏ)

# ପୁରାଣଗୁଡ଼ିକର ବିଶେଷ ବିବରଣୀ

| କ୍ରମ ସଂଖ୍ୟା | ପୁରାଣ ନାମ | ଶ୍ଳୋକ ସଂଖ୍ୟା | ପ୍ରବକ୍ତା ମୁନି | ପ୍ରଧାନ ବିଷୟ |
|---|---|---|---|---|
| ୧ | ୨ | ୩ | ୪ | ୫ |
| ୧ | ବ୍ରହ୍ମ ପୁରାଣ | ୧୦ ହଜାର | ବ୍ୟାସ ଶିଷ୍ୟ ଲୋମହର୍ଷଣ | ସୂର୍ଯ୍ୟଦେବ |
| ୨ | ପଦ୍ମ " | ୫୫ ହଜାର | ଲୋମହର୍ଷଣ ସୁତ ଉଗ୍ରଶ୍ରବା | ସୃଷ୍ଟି ବର୍ଣ୍ଣନା |
| ୩ | ବିଷ୍ଣୁ " | ୨୩ " | ପରାଶର | ସୃଷ୍ଟି ବୃତ୍ତାନ୍ତ ଓ ଇତିହାସ |
| ୪ | ଶିବ " | ୨୪ " | ସୁତ | ମହାଦେବ |
| ୫ | ଶ୍ରୀମଦ୍ ଭାଗବତ | ୧୮ " | ଶୁକ | ବିଷ୍ଣୁ |
| ୬ | ନାରଦ ପୁରାଣ | ୨୫ " | ନାରଦ | ବିଷ୍ଣୁ |
| ୭ | ମାର୍କଣ୍ଡେୟ " | ୯ " | ମାର୍କଣ୍ଡେୟ | ଦୁର୍ଗା |
| ୮ | ଅଗ୍ନି " | ୧୫ " ୪ ଶହ | ବ୍ୟାସ ଶିଷ୍ୟ ସୁତ | ଅବତାର ଓ ରାଜବଂଶାବଳୀ |

| ୧ | ୨ | ୩ | ୪ | ୫ |
|---|---|---|---|---|
| ୯ | ଭବିଷ୍ୟ ,, | ୧୪ ,, ୫ ଶହ | ବ୍ୟାସ | ଭବିଷ୍ୟତ୍ ଘଟଣାବଳୀ |
| ୧୦ | ବ୍ରହ୍ମବୈବର୍ତ୍ତ ,, | ୧୮ ,, | ସୂତ | ଶ୍ରୀକୃଷ୍ଣ |
| ୧୧ | ଲିଙ୍ଗ ,, | ୧୧ ,, | ସୂତ | ମହାଦେବ |
| ୧୨ | ବରାହ ,, | ୨୦ ବା ୨୪ ହଜାର | ବ୍ୟାସ | ବରାହ ଅବତାର |
| ୧୩ | ସ୍କନ୍ଦ ,, | ୮୧ ,, ୧ ଶହ | ବ୍ୟାସ | ମହାଦେବ |
| ୧୪ | ବାମନ ,, | ୧୦ ,, | ବ୍ୟାସ ଶିଷ୍ୟ ଲୋମହର୍ଷଣ | ବଳି ବର୍ଣ୍ଣନ ଓ ବାମନ ଅବତାର |
| ୧୫ | କୂର୍ମ ,, | ୧୭ ,, | ବ୍ୟାସ | ଚତୁର୍ବର୍ଗ |
| ୧୬ | ମତ୍ସ୍ୟ ,, | ୧୪ ,, | ବ୍ୟାସ | ସୃଷ୍ଟି ବର୍ଣ୍ଣନା |
| ୧୭ | ଗରୁଡ଼ ,, | ୧୯ ,, | ବ୍ୟାସ | ଗରୁଡ଼ |
| ୧୮ | ବ୍ରହ୍ମାଣ୍ଡ ,, | ୧୨ ,, | ବ୍ୟାସ | ସୃଷ୍ଟି ଠାରୁ ପ୍ରଳୟ ପର୍ଯ୍ୟନ୍ତ |

**ପୁରୁ**—ମହାରାଜ ଯଯାତିଙ୍କ ପୁତ୍ର । ନହୁଷଙ୍କ ନାତି । ଯଯାତିଙ୍କର ଦୁଇଟି ପତ୍ନୀ ଥିଲେ—ଦେବଯାନୀ ଓ ଶର୍ମିଷ୍ଠା । ଦେବଯାନୀ ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଦୁହିତା ଏବଂ ଶର୍ମିଷ୍ଠା ରାକ୍ଷସରାଜ ବୃଷପର୍ବାଙ୍କ କନ୍ୟା । ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ଜନ୍ମିଥିଲେ । ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟୁ, ଅନୁ ଓ ପୁରୁ ନାମକ ତିନି ପୁତ୍ର ଭୂମିଷ୍ଠ ହୋଇଥିଲେ । ଶୁକ୍ରାଚାର୍ଯ୍ୟଙ୍କ ଶାପଯୋଗେ ଯଯାତି ଜରାଗ୍ରସ୍ତ ହେବାରୁ ରାଜା ଦୈତ୍ୟଗୁରୁଙ୍କୁ ଅନୁନୟ ବିନୟ କରିବା ଫଳରେ ଅନ୍ୟକୁ ନିଜର ଜରାବସ୍ଥା ଦାନ କରିବା କ୍ଷମତା ଲାଭ କଲେ । ତେଣୁ ଯଯାତି ପୁତ୍ରମାନଙ୍କୁ ଗୋଟିକ ପରେ ଗୋଟିଏ ଡାକି ପଚାରିଲେ । ପୁରୁଙ୍କ ଛଡ଼ା ଅନ୍ୟମାନେ ଅସମ୍ମତ ହେଲେ । ଯଯାତି ପୁରୁଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କଠାରୁ ଯୌବନ ଗ୍ରହଣ କରିଥିଲେ ଏବଂ କିଛି ଦିନ ଅନ୍ତେ ପୁରୁଙ୍କୁ ହିଁ ରାଜ୍ୟର ଉତ୍ତରାଧିକାରୀ ରୂପେ ମନୋନୀତ କଲେ । ପିତାଙ୍କ ଆଜ୍ଞାରେ ପୁରୁ ଅନ୍ୟ ଭାଇମାନଙ୍କୁ ଅତିକ୍ରମ କରି ରାଜା ହେଲେ । ପୁରୁଙ୍କର ତିନି ପୁଅ ଥିଲେ – ପ୍ରବୀର, ଈଶ୍ବର ଓ ରୌଦ୍ରାଶ୍ବ । (ମହାଭାରତ ଓ ହରିବଂଶ)

**ପୁରୁକୁତ୍ସ**—ମାନ୍ଧାତାଙ୍କ ପୁଅ । ରାଜା ଶଶବିନ୍ଦୁଙ୍କ କନ୍ୟା ଇନ୍ଦୁମତୀ ଏହାଙ୍କର ମାତା । ଏହାଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ନାମ ମୁଚୁକୁନ୍ଦ । ପୁରୁକୁତ୍ସଙ୍କ ସ୍ତ୍ରୀ ଋଷି ଶାପରେ ନଦୀରୂପେ ପରିଣତା ହୋଇଥିଲେ । ମହର୍ଷି ସୌଭରି ଏହାଙ୍କ ପଞ୍ଚାଶଠୀ ଭଉଣୀଙ୍କୁ ବିବାହ କରିଥିଲେ । ନର୍ମଦା ନଦୀର ଉତ୍ତର ତୀରବର୍ତ୍ତୀ ଦେଶସମୂହ ପୁରୁକୁତ୍ସଙ୍କ ରାଜ୍ୟ । ସେ ନର୍ମଦାଙ୍କ ଅନୁରୋଧରେ ପାତାଳକୁ ଯାଇ ବହୁ ଗନ୍ଧର୍ବଙ୍କୁ ବିନାଶ କରିଥିଲେ । (ହରିବଂଶ)

**ପୁରୁଜିତ୍**—ପାଣ୍ଡବଙ୍କ ମାମୁଁ । କୁନ୍ତୀଙ୍କ ଭାଇ । ଏହାଙ୍କ ପିତାଙ୍କ ନାମ କୁନ୍ତିଭୋଜ । ଭାଗବତମତେ ଶଶବିନ୍ଦୁବଂଶୀୟ ରୁଚକ ରାଜାଙ୍କ ପୁତ୍ର ।

**ପୁରୁରବା**—ବୁଧଙ୍କ ପୁତ୍ର ଓ ଚନ୍ଦ୍ରଙ୍କ ନାତି । ଚନ୍ଦ୍ର ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ଅପହରଣ କରି ନେଇଥିଲେ । ସେହି ସମୟରେ ଚନ୍ଦ୍ରଙ୍କ ଔରସରେ ତାରାଙ୍କ ଗର୍ଭରୁ ଏକ ପୁତ୍ର ଜନ୍ମିଥିଲେ । ଏହାଙ୍କ ନାମ ବୁଧ । ବୁଧ ରାଜପୁତ୍ରୀ ଇଳାଙ୍କୁ ବିବାହ କରିଥିଲେ । ଏହି ଇଳାଙ୍କ ଗର୍ଭରୁ ବୁଧଙ୍କର ଏକ ପୁତ୍ର ଜନ୍ମିଥିଲା । ସେହି ପୁତ୍ରଙ୍କ ନାମ ପୁରୁରବା । ଇନ୍ଦ୍ର ଶାପବଶତଃ ଉର୍ବଶୀ ପୁରୁରବାଙ୍କ ପତ୍ନୀରୂପେ ମର୍ତ୍ତ୍ୟଲୋକରେ ଜନ୍ମିଥିଲେ (ଉର୍ବଶୀ ଦେଖ) । ରାଜା ପ୍ରତିଶ୍ରୁତି ରକ୍ଷା କରି ନ ପାରିବା ଯୋଗେ ଉର୍ବଶୀ ତାଙ୍କୁ ପରିତ୍ୟାଗ କରି ଗଲେ । ପୁରୁରବା ଉର୍ବଶୀଙ୍କ ବିରହରେ ଦୁଃଖୀର ନାନା ସ୍ଥାନ ପର୍ଯ୍ୟଟନ କରିବାକୁ

ଲାଗିଲେ । ଅବଶେଷରେ କୁରୁକ୍ଷେତ୍ର ନାମକ ସ୍ଥାନରେ ତାଙ୍କର ଉର୍ବଶୀଙ୍କ ସହିତ ଭେଟ ହେଲା । ରାଜା ତାଙ୍କୁ ପୁଣି ଫେରି ଆସିବା ପାଇଁ ଅନୁରୋଧ କଲେ । ଉର୍ବଶୀ ରାଜାଙ୍କର ମନର ଅବସ୍ଥା ଜାଣି କହିଲେ, 'ମୁଁ ଆପଣଙ୍କ ସହଯୋଗରେ ଗର୍ଭବତୀ ହୋଇଛି । ବର୍ଷେ ପରେ ମୋର ଦୈବତେଗୁଡ଼ିଏ ସନ୍ତାନ ଜନ୍ମିବେ । ମୁଁ ସେମାନଙ୍କୁ ଧରି ଆପଣଙ୍କ ନିକଟକୁ ଆସିବି ଏବଂ ଗୋଟିଏ ରାତ୍ରି ଆପଣଙ୍କ ସହିତ ଯାପନ କରିବି ।' ଉର୍ବଶୀଙ୍କ ଗର୍ଭରେ ରାଜା ପୁରୂରବାଙ୍କର ଆୟୁ, ବିଶ୍ୱାୟୁ, ଶ୍ରୁତାୟୁ ପ୍ରଭୃତି ଛଅଗୋଟି ପୁତ୍ର ଜନ୍ମିଥିଲେ । ଉର୍ବଶୀ ଏମାନଙ୍କୁ ଧରି ପୁରୂରବାଙ୍କ ନିକଟକୁ ଆସିଲେ ଏବଂ ତାଙ୍କ ସହିତ ଗୋଟିଏ ରାତ୍ରି ବାସ କରି ଗଲେ । ପ୍ରୟାଗ ନଗରୀ ପୁରୂରବାଙ୍କ ରାଜଧାନୀ ଥିଲା । ଏହି ନଗରୀ ଗଙ୍ଗାତଟରେ ପ୍ରତିଷ୍ଠିତ ହୋଇଥିବାରୁ ଏହାକୁ ପ୍ରତିଷ୍ଠାନପୁର କହନ୍ତି । ପୁରୂରବା ଗନ୍ଧର୍ବମାନଙ୍କଠାରୁ ଗୋଟିଏ ଅଗ୍ନିପୂର୍ଣ୍ଣ ସ୍ଥାଳୀ ଲାଭ କରିଥିଲେ । ସେ ଏହି ଅଗ୍ନି ଦ୍ୱାରା ବହୁ ଯଜ୍ଞ ସମାପନ କରି ଯଜ୍ଞବଳରେ ଗନ୍ଧର୍ବଲୋକ ପ୍ରାପ୍ତ ହୋଇଥିଲେ ।

**ପୁରୋଚନ**—ଦୁର୍ଯ୍ୟୋଧନଙ୍କ ମିତ୍ର ଓ କର୍ମଚାରୀ । ଏ ଜାତିରେ ଯବନ । ଦୁର୍ଯ୍ୟୋଧନଙ୍କ ଆଦେଶରେ ପାଣ୍ଡବମାନଙ୍କୁ ବିନାଶ କରିବା ପାଇଁ ପୁରୋଚନ ବାରଣାବତ ନଗରୀରେ ଏକ ଜତୁଗୃହ ନିର୍ମାଣ କରିଥିଲେ । ବିଦୁରଙ୍କ ସାଙ୍କେତିକ ବଚନରେ ପାଣ୍ଡବମାନେ ପୁରୋଚନର ଏହି ଦୁରଭିସନ୍ଧି ଜାଣିପାରିଥିଲେ । ଭୀମସେନ ପୁରୋଚନଙ୍କ ଗୃହ ଓ ଜତୁଗୃହରେ ଅଗ୍ନି ଲଗାଇ ମାତା ଓ ଭ୍ରାତାମାନଙ୍କ ସହିତ ସୁଡ଼ଙ୍ଗ ପଥରେ ପଳାୟନ କଲେ । ପୁରୋଚନ ନିଜ ଘରେ ଅଗ୍ନିଦଗ୍ଧ ହୋଇ ପ୍ରାଣତ୍ୟାଗ କଲେ । (ମହାଭାରତ-ଆଦିପର୍ବ)

**ପୁଲସ୍ତ୍ୟ**—ସପ୍ତର୍ଷିମାନଙ୍କ ମଧ୍ୟରେ ଅନ୍ୟତମ । ପୁଲସ୍ତ୍ୟ ବ୍ରହ୍ମାଙ୍କ ମାନସ ପୁତ୍ର । ଏ ଜଣେ ପ୍ରଜାପତି ମଧ୍ୟରେ ଗଣ୍ୟ । ପୁଲସ୍ତ୍ୟଙ୍କ ପୁତ୍ରର ନାମ ବିଶ୍ରବା । ପୁଲସ୍ତ୍ୟଙ୍କ ଆଶ୍ରମ ସମୀପରେ ଅପ୍‌ସରା ଓ ମୁନି କନ୍ୟାମାନେ ମିଳିତ ହୋଇ ନୃତ୍ୟ ଗୀତାଦି କରୁଥାନ୍ତି । ଏଥିରେ ଋଷିଙ୍କର ତପସ୍ୟାଭଙ୍ଗ ହେବାର ଆଶଙ୍କା ଥାଏ । ଏଥିଲାଗି ଋଷି ଅଭିଶାପ ଦେଲେ ଯେଉଁ ସ୍ତ୍ରୀ ତାଙ୍କର ଦୃଷ୍ଟିପଥାରୂଢ଼ ହେବ ସେ ଗର୍ଭବତୀ ହୋଇଯିବ । ଦୈବକ୍ରମେ ତୃଣବିନ୍ଦୁ ଋଷିଙ୍କ କନ୍ୟା ହବିର୍ଭୂ ପୁଲସ୍ତ୍ୟଙ୍କ ଦୃଷ୍ଟିଗୋଚର ହେଲା । ଏହା ଦ୍ୱାରା ସେ ଗର୍ଭବତୀ ହୋଇଗଲା । ଅନନ୍ତର ତୃଣବିନ୍ଦୁଙ୍କ ଅନୁରୋଧକ୍ରମେ ପୁଲସ୍ତ୍ୟ ହବିର୍ଭୂଙ୍କୁ ବିବାହ କଲେ । ବିଶ୍ରବା ଏହାଙ୍କ ଗର୍ଭରୁ ଜନ୍ମିଥିଲେ । ବିଶ୍ରବାଙ୍କ ପ୍ରଥମା ପତ୍ନୀ ଦେବବର୍ଣ୍ଣିନୀଙ୍କ ଗର୍ଭରୁ ଧନାଧିପ କୁବେର ଭୂମିଷ୍ଠ ହୋଇଥିଲେ । ଅପର

ଭାର୍ଯ୍ୟା କୈକସୀଙ୍କ (ନିକଷା) ଗର୍ଭରୁ ରାବଣାଦ ଭ୍ରାତାନସ୍ତ ଜନ୍ମିଥିଲେ ।
(କୁବେର ଦେଖ, ରାମାୟଣ-ଉତ୍ତର କାଣ୍ଡ)

**ପୁଲହ**—ପୁଲସ୍ତ୍ୟଙ୍କ ପର ପୁଲହ ମଧ ବ୍ରହ୍ମାଙ୍କର ମାନସ ପୁତ୍ର । ଏ ସପ୍ତର୍ଷିଙ୍କ ମଧ୍ୟରେ ଅନ୍ୟତମ । ଏହାଙ୍କ ପତ୍ନୀଙ୍କ ନାମ ଗତ । ଏହାଙ୍କ ଗର୍ଭରୁ କର୍ମଶ୍ରେଷ୍ଠ, ବରୀୟାନ୍ ଓ ସହିଷ୍ଣୁ ନାମକ ତନ ପୁତ୍ର ଜନ୍ମିଥିଲେ ।
(ଭାଗବତ)

କାହାର କାହାର ମତରେ ପୁଲହଙ୍କ ପତ୍ନୀଙ୍କ ନାମ କ୍ଷମା । କ୍ଷମାଙ୍କ ଗର୍ଭରୁ କର୍ଦ୍ଦମ, ଅବରୀଳ ଓ ସହିଷ୍ଣୁ ନାମରେ ତନଗୋଟି ପୁତ୍ର ଭୂମିଷ୍ଠ ହୋଇଥିଲେ ।

**ପୁଲୋମ ବା ପୁଲୋମନ୍**—ଦୈତ୍ୟ ବଶେଷ । ଇନ୍ଦ୍ର ଏହାଙ୍କୁ ବଧ କର ତାହାର କନ୍ୟା ଶଚୀଙ୍କୁ ବବାହ କରଥିଲେ । ସେଥିପାଇଁ ପୁଲୋମଜା ବୋଲି ଶଚୀଙ୍କର ଅନ୍ୟ ନାମ ।

ପ୍ରମାଣ ଯଥା—ଅମରକୋଷେ 'ପୁଲୋମଜା ଶଚୀନ୍ଦ୍ରାଣୀ' ।

**ପୁଲୋମା**—ମହର୍ଷି ଭୃଗୁଙ୍କ ପତ୍ନୀ । ଚ୍ୟବନଙ୍କ ମାତା । ପୁଲୋମାଙ୍କ ପିତାଙ୍କ ନାମ ଦୈତ୍ୟରାଜ ବୈଶ୍ୱାନର ।

**ପୁଷ୍କର**—ନଷଧରାଜ ନଳଙ୍କ କନଷ୍ଠ ଭ୍ରାତା । ଏ ଦାସୀପୁତ୍ର, ଶୂଦ୍ରା ଗର୍ଭରୁ ନଷଧରାଜ ବୀରସେନଙ୍କ ଔରସରେ ଜନ୍ମିଥିଲେ । ମଧୁସୂଦନଙ୍କ ରଚତ 'ନଳଚରତ'ରେ ଶୂଦ୍ରା ଗର୍ଭଜାତ ବୋଲି ପ୍ରମାଣ ଦୃଷ୍ଟ ହୁଏ, ଯଥା—

ପୁଷ୍କର ନାମରେ ବୀରସେନଙ୍କ ସୁତ ।
ଷଣ୍ଢିସ୍ତ କୁହଇ ସେହି ଶୂଦ୍ର ସମ୍ଭୂତ ॥

ପୁଷ୍କର କଳଯୁଗ ସାହାଯ୍ୟରେ ଜ୍ୟେଷ୍ଠ ଭ୍ରାତା ନଳଙ୍କୁ ଅକ୍ଷ କ୍ରୀଡ଼ାରେ ପରାଜିତ କର ରାଜସିଂହାସନ ଅଧିକାର କରଥିଲେ ଏବଂ ନଳଙ୍କୁ ରାଜ୍ୟରୁ ବତାଡ଼ିତ କରଦେଲେ । କଳ ନଳଙ୍କୁ ପରତ୍ୟାଗ କରବା ପରେ ପୁନର୍ବାର ନଳ ପୁଷ୍କରଙ୍କୁ ଅକ୍ଷ କ୍ରୀଡ଼ାରେ ପରାସ୍ତ କର ରାଜା ହେଲେ ।

**ପୁଷ୍କରତୀର୍ଥ** – ତୀର୍ଥ ବିଶେଷ । ଏକ ହ୍ରଦ ମାତ୍ର । ଏହି କ୍ଷୁଦ୍ର ହ୍ରଦ ଆଜମୀର-ଠାରୁ ସାତ ମାଇଲ ଦୂରରେ ବାଲୁକା ସ୍ତୂପବେଷ୍ଟିତ ଉପତ୍ୟକା ମଧ୍ୟରେ ଅବସ୍ଥିତ । ହ୍ରଦଟି ବୃତ୍ତାକାର ଆକୃତି ବିଶିଷ୍ଟ, ଏହାର ଚତୁଃପାଖରେ ଦେବମନ୍ଦିର ଓ ସମାଧି ମନ୍ଦିରମାନ ଅଛି । ଏଠାରେ ବ୍ରହ୍ମାଙ୍କ ମନ୍ଦିର ଅଛି ଓ ବ୍ରହ୍ମାଙ୍କ ମୂର୍ତ୍ତି ପୂଜିତ ହୁଅନ୍ତି । ଏହାର ସ୍ଥାନୀୟ ଡାକ ନାମ ପୋକର୍ । କାର୍ତ୍ତିକପୂର୍ଣ୍ଣିମାରେ ଲକ୍ଷାଧିକ ହିନ୍ଦୁଯାତ୍ରୀ ଏଠାରେ ସ୍ନାନ କରନ୍ତି । ବ୍ରହ୍ମା ଏଠାରେ ସାବିତ୍ରୀଙ୍କ ଅନୁପସ୍ଥିତିରେ ଅନ୍ୟ ଗୋଟିଏ ସ୍ତ୍ରୀକୁ ସାବିତ୍ରୀ କଳ୍ପନା କରି ତାଙ୍କୁ ସାବିତ୍ରୀଙ୍କ ପ୍ରତିନିଧି କରି ଯଜ୍ଞ କରିଥିଲେ । ଏଠାରେ ବ୍ରହ୍ମାଙ୍କ ମୂର୍ତ୍ତି ଓ ମନ୍ଦିର ଅଛି । କଥିତ ଅଛି ଯେ ଭାରତବର୍ଷରେ କେବଳ ଏହିଠାରେହିଁ ବ୍ରହ୍ମାଙ୍କର ମୂର୍ତ୍ତି ପୂଜା ହେଉଅଛି । ଏଠାରେ ମଧ୍ୟ ସାବିତ୍ରୀ, ବଦରିନାରାୟଣ ଓ ବରାହଜୀଙ୍କ ମନ୍ଦିର ଅଛି । ଏହି ସମୟରେ ଏଠାରେ ଏକ ସପ୍ତାହବ୍ୟାପୀ ବଡ଼ ମେଳା ହୁଏ । ଗୋରୁ, ଘୋଡା ଓ ଓଟ ବିକ୍ରି ହୁଏ । ବର୍ଷେ ବର୍ଷେ ହଜାର ହଜାର ଓଟ, ମେଳାରେ ବିକ୍ରି ହୁଅନ୍ତି । କବିବର ରାଧାନାଥ କହିଛନ୍ତି—

"ସୁରୂପା ଅଂଶୁପା ଲେକେ ଅଗୋଚର,
ପୂଜାସ୍ପଦ ହେଲା ଗୋଷ୍ପଦ ପୁଷ୍କର ।"

ପଦ୍ମପୁରାଣରେ ଲେଖାଅଛି ଯେ ଏହିଠାରେ ଯଜ୍ଞ କରିବା ପୂର୍ବରୁ ବ୍ରହ୍ମାଙ୍କ ହାତରୁ ଗୋଟିଏ ପଦ୍ମଫୁଲ ଭୂମିରେ ଖସି ପଡ଼ିଥିଲା ଓ ଏହି ପଦ୍ମ ପଡିବାରୁ ରସାତଳରେ ତପସ୍ୟା କରୁଥିବା ଦେବଦ୍ରୋହୀ ବଜ୍ରନାଭ ନାମକ ଅସୁରର ମୃତ୍ୟୁ ଘଟିଲା । ବ୍ରହ୍ମାଙ୍କ ହାତରୁ ପୁଷ୍କର (ପଦ୍ମ) ଏଠାରେ ଖସି ପଡିବାରୁ ଏ ତୀର୍ଥର ନାମ ପୁଷ୍କର ହେଲା । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପୁଷ୍କଳାବତୀ**—ରାମଚନ୍ଦ୍ରଙ୍କ ଭ୍ରାତା ଭରତଙ୍କ ପୁତ୍ର ପୁଷ୍କଳଙ୍କ ଦ୍ୱାରା ସ୍ଥାପିତ ପଞ୍ଜାବ ଅନ୍ତର୍ଗତ ପ୍ରାଚୀନ ନଗରୀ । ଏହି ନଗରୀର ପ୍ରଶସ୍ତି ବିଷୟରେ ହିନ୍ଦୀ ଶବ୍ଦସାଗରରେ ଲେଖାଅଛି—ଏହା ଗାନ୍ଧାର ଦେଶର ପ୍ରାଚୀନ ରାଜଧାନୀ । ବିଷ୍ଣୁପୁରାଣରେ ଲେଖାଅଛି ଯେ, ଏହାକୁ ଭରତଙ୍କ ପୁତ୍ର ପୁଷ୍କଳ ସ୍ଥାପନ କରିଥିଲେ । ସିକନ୍ଦରଙ୍କ ଭାରତ ଆକ୍ରମଣ ସମୟରେ ଏ ନଗରୀ ଥିଲା । ଏରିଅନ୍ ଆଦି ଗ୍ରୀକ୍ ଲେଖକମାନେ ପେକୁକେଲ, ପ୍ୟୁକୋଲେଟିସ୍ ନାମରେ ଏହାକୁ ଉଲ୍ଲେଖ କରିଅଛନ୍ତି । ଏହାକୁ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଭାରତକୁ ଆସିଥିବା ଚୀନ୍ ପରିବ୍ରାଜକ ହୁଏନ୍ ସାଂ ଦେଖିଥିଲେ ଓ

ଏଠାରେ ଗୁରୁତ୍ୱ ହିନ୍ଦୁ ଦେବମନ୍ଦିର ଓ ବୌଦ୍ଧସ୍ତୂପ ଥିବାର ଲେଖିଅଛନ୍ତି । ପେଶାୱାରର ନଅକୋଶ ଉତ୍ତରରେ ସ୍ୱାତ ଓ କାବୁଲ ନଦୀର ସଙ୍ଗମସ୍ଥଳରେ ଥିବା ଆଧୁନିକ ହସ୍ତନଗର ଗ୍ରାମର ସ୍ଥାନରେ ଏ ନଗର ଥିଲା । (ଭୂଷାକୋଷ)

**ପୁଷ୍ପକ**—କୁବେରଙ୍କ ଆକାଶଯାନ । ରାବଣ କୁବେରଙ୍କୁ ଜୟ କରି ଏ ଯାନରେ ବସି ଦିଗ୍‌ବିଜୟ କରିଥିଲେ । ରାବଣ ବଧ ପରେ ରାମଚନ୍ଦ୍ର ଏହି ଯାନରେ ସୀତାଙ୍କ ସହିତ ଅନ୍ୟାନ୍ୟ ବାନରସେନାଙ୍କୁ ଧରି ଅଯୋଧ୍ୟାକୁ ଫେରି ଆସିଥିଲେ । ରାମଚନ୍ଦ୍ରଙ୍କ ଅଭିଷେକ ପରେ ଏହି ଯାନ ପୁଣି କୁବେରଙ୍କୁ ଅର୍ପଣ କରାଗଲା ।

**ପୁଷ୍ପଦନ୍ତ**—(୧) ଶିବଙ୍କ ଅନୁଚର ବିଶେଷ । ଏହି ଅନୁଚର ଏକଦା ଗୋପନରେ ମହାଦେବ ଓ ପାର୍ବତୀଙ୍କ କଥୋପକଥନ ଶୁଣିଥିଲେ । ଏଥିରେ ପାର୍ବତୀ ଅତି କ୍ରୁଦ୍ଧା ହେଲେ । ଗୌରୀଙ୍କ ଶାପରେ ପୁଷ୍ପଦନ୍ତ ମର୍ତ୍ତ୍ୟଲୋକରେ କୌଶାମ୍ବୀ ନଗରରେ ଏକ ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଥିଲେ । ଏହି ବ୍ରାହ୍ମଣର ନାମ ସୋମଦତ୍ତ । ସୋମଦତ୍ତ ପୁତ୍ରର ନାମ ଦେଲେ କାତ୍ୟାୟନ ବରରୁଚି ।

(୨) ଜଣେ ପ୍ରଧାନ ଗନ୍ଧର୍ବ । ପାର୍ବତୀଙ୍କ ସହଚରୀ ଜୟା ଏହାଙ୍କର ପତ୍ନୀ । କୌଣସି କାରଣବଶତଃ କେହି କେହି କହନ୍ତି ଶିବନିର୍ମାଲ୍ୟ ଲଙ୍ଘନ-ବଶତଃ ଶିବ ଏହାଙ୍କୁ ଅଭିଶାପ ଦେଲେ । ସେହି ଶାପଯୋଗେ ସେ ଆଉ ଆକାଶ ମାର୍ଗରେ ଯାଇ ପାରିଲେନାହିଁ । ପରେ ବହୁ ପ୍ରକାରେ ସେ ଶିବଙ୍କୁ ସ୍ତବ କଲେ । ଏହାଙ୍କ କୃତ ସ୍ତବର ନାମ ମହିମ୍ନସ୍ତବ । ଏହି ସ୍ତବପାଠରେ ଶିବ ପରମତୃପ୍ତି ଲାଭ କରି ପୁଷ୍ପଦନ୍ତଙ୍କୁ ପୁନରାୟ ଖେଚରତ୍ୱ ପ୍ରାପ୍ତ ହେବାକୁ କହିଲେ । ମହିମ୍ନସ୍ତବ ଶିବ ପୂଜାରେ ପଠିତ ହୁଏ ।

(୩) ଅଷ୍ଟଦିଗ୍‌ଗଜ ମଧ୍ୟରେ ଅନ୍ୟତମ । ଉତ୍ତର-ପଶ୍ଚିମ ଦିଗର ଅଧିପତି ବାୟୁ ଏହି ହସ୍ତୀ ଉପରେ ଆରୂଢ଼ ହୋଇ ଉକ୍ତ ଦିଗ ରକ୍ଷା କରିଥାନ୍ତି ।

(୪) ନାଗବିଶେଷଙ୍କର ନାମ ।

**ପୁତନା**—ଦାନବୀ ବିଶେଷ । ଏହି ଦାନବୀ କଂସକର୍ତ୍ତୃକ ଶ୍ରୀକୃଷ୍ଣ ବଧାର୍ଥେ ଗୋକୁଳକୁ ପ୍ରେରିତ ହୋଇଥିଲା । ଏହି ବାଳଘାତକ ଦାନବୀ ମାୟାବଳରେ ପରମ ସୁନ୍ଦରୀ ସ୍ତ୍ରୀରୂପ ଧାରଣ କରି ନନ୍ଦାଳୟରେ ଉପସ୍ଥିତ ହେଲା । ଶ୍ରୀକୃଷ୍ଣ

ଲୀଳାର କବି ଶଙ୍କରଚରଣ ଅଧିକାରୀ ପୂତନାର ରୂପ ବର୍ଣ୍ଣନା କରି ଯେଉଁ ବର୍ଣ୍ଣନା କରିଛନ୍ତି ତାହା ଏଠାରେ ଏକ ସୁନ୍ଦର ଉପଭୋଗ୍ୟ ସାହିତ୍ୟ । ( ଶ୍ରୀକୃଷ୍ଣ ଲୀଳା ୩୦ଶ ଗ୍ରନ୍ଥ ଦେଖ ) । ତାର ଏହି ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ନନ୍ଦରାଣୀ ଯଶୋଦା ତା କୋଳରେ ନେଇ ଶ୍ରୀକୃଷ୍ଣଙ୍କୁ ବଢ଼ାଇ ଦେଲେ । ପୂତନା ଅଶ୍ରଦ୍ଧାର ସହିତ ବିଷପୂର୍ଣ୍ଣ ସ୍ତନ ଦାନ କଲା । ଶ୍ରୀକୃଷ୍ଣ ସ୍ତନ ପାନ କରିବାକୁ ଲାଗିଲେ । ଦାନବୀ ସ୍ତନରେ ଭୟାନକ ଯନ୍ତ୍ରଣା ଅନୁଭବ କରି ନିଜର ଭୟଙ୍କର ମୂର୍ତ୍ତି ଧାରଣ କରି ଶ୍ରୀକୃଷ୍ଣଙ୍କ ମୁଖ ବିବରରୁ ସ୍ତନଟିକୁ ବାହାର କରି ନେବାପାଇଁ ଯେତେ ଯତ୍ନ କଲେ ମଧ୍ୟ ତାହା ହୋଇ ପାରିଲା ନାହିଁ । ପୂତନା ଅସହ୍ୟ ଯାତନା ସହି ପ୍ରାଣତ୍ୟାଗ କଲା । ଶ୍ରୀକୃଷ୍ଣ ଦାନବୀର ଅଙ୍ଗି ଉପରେ ଠିଆ ହୋଇ ନାଚିବାକୁ ଲାଗିଲେ । (ଭାଗବତ ଦଶମସ୍କନ୍ଧ)

ହରିବଂଶବର୍ଣ୍ଣିତ ପୂତନା ଘଟିତ ବୃତ୍ତାନ୍ତ ଅନ୍ୟ ପ୍ରକାର । ପୂତନା କଂସର ଧାତ୍ରୀ । କଂସ ଆଦେଶରେ ସେ ଗୋକୁଳକୁ ପ୍ରେରିତ ହୋଇଥିଲା । ଏହି ମାୟାବିନୀ ଧାତ୍ରୀ ଶକୁନି ବେଶ ଧାରଣପୂର୍ବକ ଅର୍ଦ୍ଧରାତ୍ରରେ ନନ୍ଦାଳୟରେ ପ୍ରବେଶ କରି ଶ୍ରୀକୃଷ୍ଣଙ୍କୁ ସ୍ତନଦାନ କରିଥିଲା । ଏହି ସମୟରେ ଗୋକୁଳବାସୀ ଗାଢ଼ ନିଦ୍ରାଭିଭୂତ ଥିଲେ । ଶ୍ରୀକୃଷ୍ଣ ସ୍ତନ୍ୟପାନ କରିବାକୁ ଲାଗିଲେ । ପୂତନା ଅସହ୍ୟ ଯାତନା ସହ୍ୟ କରି ଉଚ୍ଚସ୍ୱରରେ ଚିତ୍କାର କରିବାକୁ ଲାଗିଲା ଏବଂ ଅବିଳମ୍ବେ ଛିନ୍ନସ୍ତନ ହୋଇ ପ୍ରାଣତ୍ୟାଗ କଲା । ନନ୍ଦାଳୟରେ ସମସ୍ତେ ଜାଗ୍ରତ ହେଲେ ଏବଂ ପୂତନାର ମୃତ ଦେହ ଦେଖି ବିସ୍ମିତ ହୋଇଥିଲେ । ସେମାନେ କେହି ଏ ରାକ୍ଷସୀର ମୃତ୍ୟୁ କାରଣ ନିର୍ଣ୍ଣୟ କରି ପାରିଲେ ନାହିଁ ।

**ପୂର୍ଣ୍ଣମାସୀ**—ଗୋପପୁରବାସିନୀ ସନ୍ନ୍ୟାସିନୀ ବିଶେଷ । ଏ ଯୋଗମାୟାଙ୍କ ଅବତାର ଥିଲେ । ଏ ମାୟା ବିସ୍ତାର କରି ରାଧାକୃଷ୍ଣଙ୍କ ମିଳନ କରାଉଥିଲେ ଓ ସମସ୍ତଙ୍କୁ ମାୟାରେ ବଶୀଭୂତ କରିଥିଲେ । ଏହାଙ୍କ ହେତୁ ରାଧାଙ୍କ ଶାଶୁ ଜଟିଳା ରାଧାକୃଷ୍ଣ ପ୍ରଣୟ ସମ୍ବନ୍ଧରେ କିଛି ମାତ୍ର ଜାଣି ପାରି ନ ଥିଲେ ।
(ଭାଷାକୋଷ)

**ପୃଥା**—ଯଦୁବଂଶୀୟ ବସୁଦେବଙ୍କ ପିତା ଶୂରସେନଙ୍କ କନ୍ୟା ଓ ପାଣ୍ଡୁ ରାଜାଙ୍କ ପ୍ରଥମା ସ୍ତ୍ରୀ । ଶୂରସେନ ଆପଣାର ଅନପତ୍ୟ ପିଉସୀ ପୁଅ ଭାଇ କୁନ୍ତିଭୋଜଙ୍କ ନିକଟରେ ସତ୍ୟ କରିଥିଲେ ଯେ ତାଙ୍କର ପ୍ରଥମ ସନ୍ତାନକୁ ସେ ତାଙ୍କୁ ପାଳିବାକୁ ଦେବେ । ସେହି ସତ୍ୟ ଅନୁସାରେ ଶୂରସେନ ଆପଣା କନ୍ୟା ପୃଥାଙ୍କୁ

କୁନ୍ତିଭୋଜଙ୍କୁ ସମର୍ପଣ କଲେ । ଉକ୍ତ କନ୍ୟା ବାଲ୍ୟକାଳରୁ କୁନ୍ତିଭୋଜଙ୍କ ଦ୍ୱାରା ପାଳିତା ହୋଇ କୁନ୍ତୀ ନାମ ପାଇଥିଲେ । (ଭାଷାକୋଷ)

**ପୃଥିବୀ**—ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ପୃଥିବୀ ପୃଥୁ ନାମକ ରାଜାଙ୍କ ଧର୍ମକନ୍ୟା । ବେଣ ରାଜାଙ୍କ ପୁତ୍ର ପୃଥୁ ପ୍ରଜାପାଳନାର୍ଥେ ପୃଥିବୀକୁ ଗାଭୀ କରି ଏହାଠାରୁ ଶସ୍ୟାଦି ଦୋହନ କଲେ ଓ ଏହାକୁ ଆପଣାର କନ୍ୟା ବୋଲି କଳ୍ପନା କଲେ । ଜଗନ୍ନାଥ ଦାସଙ୍କ ଭାଗବତରେ ଅଛି—

ଏ ମୋର ଦୁହିତା ହୋଇବ ।<br>
ଏତେ ବଣ୍ଟିଲେ ନଷ୍ଟ ନୋହିବ ।<br>
ଜୀବର ଜୀବ ଦାତା ଯେଣୁ ।<br>
ଏହାର ପୃଥ୍ୱୀ ନାମ ତେଣୁ ।

ଆହୁରି ମଧ୍ୟ ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ପୃଥିବୀ ଚାରି କୋଣିଆ ଏବଂ ଏହାର ମଧ୍ୟ ରେଖା ନର୍ମଦା । ନର୍ମଦା ନଦୀ ଭାରତର ମଧ୍ୟ ସ୍ଥଳରେ ବିନ୍ଧ୍ୟାଚଳରୁ ବାହାରି ଭାରତକୁ ଆର୍ଯ୍ୟାବର୍ତ୍ତ ଓ ଦକ୍ଷିଣାପଥରୂପେ ଦୁଇ ଭାଗ କରିଅଛି । ଏଥିପାଇଁ ଅନୁମାନ କରାଯାଏ ଯେ ପୌରାଣିକ ଭୂଗୋଳରେ ଏକା ଭାରତବର୍ଷହିଁ ପୃଥିବୀ ନାମରେ ଖ୍ୟାତ ଥିଲା । ଆହୁରି ମଧ୍ୟ ପୁରାଣରେ ଅଛି ଯେ ପୃଥିବୀରେ ୭ଟି ସମୁଦ୍ର ଓ ସପ୍ତସମୁଦ୍ର ମଧ୍ୟରେ ୭ ଗୋଟି ଦ୍ୱୀପ ଥିଲା । ତହିଁ ମଧ୍ୟରୁ ଜମ୍ବୁ ଦ୍ୱୀପର ଏକାଂଶରେ ଭାରତ ଅବସ୍ଥିତ ଥିଲା । (ଜ୍ଞାନେନ୍ଦ୍ର)

ଆଧୁନିକ ଜ୍ୟୋତଷୀମାନଙ୍କ ଗଣନାକ୍ରମେ ସୌର ଜଗତ୍‌ରେ ଦୂରତ୍ୱ ବିଚାରରେ ପୃଥିବୀ ତୃତୀୟ ଗ୍ରହ । (ସୂର୍ଯ୍ୟ ଓ ପୃଥିବୀ ମଧ୍ୟରେ ବୁଧ ଓ ଶୁକ୍ର ଅଛନ୍ତି ।) ପୃଥିବୀର ପରିଧି ପ୍ରାୟ ୨୫୦୦୦ ମାଇଲ୍ ଓ ବ୍ୟାସ ପ୍ରାୟ ୮ ହଜାର ମାଇଲ । ପୃଥିବୀ ଆକାର ନାରଙ୍ଗ ପରି ଗୋଲ୍ ଓ ଏଥିର ଉତ୍ତର ଓ ଦକ୍ଷିଣ ଅଂଶ ଚେପ୍‌ଟା । ପୃଥିବୀ ଏକ ଅହୋରାତ୍ରରେ ଥରେ ଆପଣା ଅକ୍ଷଦଣ୍ଡ ଉପରେ ଘୂରେ ଓ ୩୬୫ ଦିନ ୬ ଘଣ୍ଟା ୯ ମିନିଟ୍‌ରେ ଥରେ ସୂର୍ଯ୍ୟର ଚାରିପାଖେ ବୁଲି ଆସେ । ସୂର୍ଯ୍ୟଠାରୁ ପୃଥିବୀ ୩୦ ଲକ୍ଷ ମାଇଲ ଦୂରରେ ଅଛି । ଜଳର ଗୁରୁତ୍ୱ ତୁଳନାରେ ପୃଥିବୀର ଗୁରୁତ୍ୱ ୫·୬ । ପୃଥିବୀର ଜଳଭାଗ ସ୍ଥଳଭାଗର ପ୍ରାୟ ତିନିଗୁଣ ।

ଆଧୁନିକ ବୈଜ୍ଞାନିକମାନେ କହନ୍ତି ପୃଥିବୀ ପ୍ରଭୃତି ଗ୍ରହସମୂହ ନୀହାରିକାମଣ୍ଡଳରୁ ଖଣ୍ଡିତ ଜ୍ୱଳନ୍ତ ଅଂଶ ଛିଟିକି ଯାଇ ତାହା କ୍ରମଶଃ ଥଣ୍ଡା ହୋଇ ବାଷ୍ପୀୟସ୍ଥ

ରୂପରୁ ତରଳ ରୂପ ଓ ତରଳ ରୂପରୁ ଘନରୂପ ଧାରଣ କରି ପୃଥିବୀରେ ପରିଣତ ହୋଇଅଛି । ପୃଥିବୀର ଉପରି ଅଂଶ ଥଣ୍ଡା ହୋଇଅଛି, କିନ୍ତୁ ଏହାର ଗର୍ଭରେ ଗରମ ତରଳ ବସ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ଅଛି । ହିନ୍ଦୁ ପୁରାଣ ମତରେ ପ୍ରଳୟ ଜଳରେ ଜନ୍ମି ଥିବା ଦୁଇଟି ରାକ୍ଷସ ମଧୁ, କୈଟଭଙ୍କୁ ବିଷ୍ଣୁ ବଧ କରିବାରୁ ତାଙ୍କ ମେଦରୁ ପୃଥିବୀ ଜାତ ହୋଇଅଛି । ଉପନିଷଦରେ ଲେଖାଅଛି ଯେ, ପରମାତ୍ମାଙ୍କଠାରୁ ପ୍ରଥମେ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ ଓ ଜଳରୁ ପୃଥିବୀ ଉତ୍ପନ୍ନ ହେଲା । (ହିନ୍ଦୀ ଶବ୍ଦସାଗର, ବିଶ୍ୱକୋଷ)

**ପୃଥୁ** — ବେଣ ରାଜାଙ୍କ ପୁତ୍ର । ପୃଥୁ ବାହୁବଳରେ ପୃଥିବୀସ୍ଥ ସମସ୍ତ ରାଜାଙ୍କୁ ପରାସ୍ତ କରିଥିଲେ । ଏହାଙ୍କ ଦ୍ୱାରା ପୃଥିବୀମଣ୍ଡଳ ପ୍ରୋଥିତ ହୋଇଥିଲା ବୋଲି ଏହାଙ୍କର ନାମ ହେଲା ପୃଥୁ । ମହର୍ଷିମାନେ ଏହାଙ୍କ ଦ୍ୱାରା ଅଧିଷ୍ଠିତ ରାଜସୂୟ ଯଜ୍ଞରେ ଉପସ୍ଥିତ ହୋଇ ଏହାଙ୍କୁ ସାମ୍ରାଜ୍ୟର ରାଜା ରୂପେ ଅଭିଷିକ୍ତ କରିଥିଲେ । ପୃଥୁଙ୍କ ରାଜତ୍ୱକାଳରେ ବିନା କର୍ଷଣରେ ଭୂମି ସବୁ ଅଭୀଷ୍ଟଫଳ ପ୍ରଦାନ କରୁଥିଲେ । ଗାଈଗୁଡ଼ିକ ଠିକ୍ କାମଧେନୁ ପରି ଥିଲେ । ପ୍ରବଳ ପ୍ରତାପଶାଳୀ ମହାରାଜା ପୃଥୁ ନାନା ଯଜ୍ଞ ଅନୁଷ୍ଠାନ କରି ସକଳ ପ୍ରାଣୀଙ୍କୁ ଅଭିଲଷିତ ଦ୍ରବ୍ୟ ପ୍ରଦାନ କରୁଥିଲେ । ଏହି ମହାତ୍ମା ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କରି ପୃଥିବୀର ଯାବତୀୟ ବହୁରି ସ୍ୱର୍ଣ୍ଣ ପ୍ରତିମୂର୍ତ୍ତି ପ୍ରସ୍ତୁତ କରି ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ସେ ୬୬ ହଜାର ସୁବର୍ଣ୍ଣଛତା ଖଚିତ ଏକ ମଣିମୟ ପୃଥିବୀ ନିର୍ମାଣ କରି ତାହାକୁ ବ୍ରାହ୍ମଣମାନଙ୍କୁ ଦେଇଥିଲେ ।

(ମହାଭାରତ-ଦ୍ରୋଣପର୍ବ)

ପୂର୍ବକାଳରେ ଅତ୍ରି ବଂଶରେ ଅଙ୍ଗ ନାମକ ଏକ ପ୍ରଜାପତିଥିଲେ । ଧର୍ମରାଜ ଦୁହିତା ସୁନୀଥାଙ୍କ ଗର୍ଭରୁ ଏହାଙ୍କର ବେଣ ନାମକ ଏକ ପୁତ୍ର ଜନ୍ମିଥିଲେ । ବେଣ ଅତି ପାଷାଣ୍ଡ, ଦୁରାଚାର ଓ କୁତ୍ସିତ ରାଜା । ଏହି ପାପାତ୍ମା ରାଜା ମନେକରିଥିଲେ ଯେ ତାଙ୍କଠାରୁ ଆଉ କିଏ ଅଧିକ ପୁଣ୍ୟବାନ୍ ନାହିଁ । ପୁଣି ସେ ଏକମାତ୍ର ପୂଜ୍ୟବ୍ୟକ୍ତି । ଚାର୍ଯ୍ୟତଃ ଦେବତାମାନଙ୍କ ଉଦ୍ଦେଶ୍ୟରେ ଏ ଯେଉଁ ଯାଗ ଯଜ୍ଞ ଆଦି ହେଉଛି ସେସବୁ ନିଷ୍ଫଳ ଆଡ଼ମ୍ବର ମାତ୍ର ।

ବେଣଙ୍କ ଅତ୍ୟାଚାରରେ ଲୋକେ ପ୍ରପୀଡ଼ିତ ହେବାକୁ ଲାଗିଲେ । ଅନନ୍ତର ମରୀଚ ପ୍ରମୁଖ ଋଷିମାନେ ଏହାଙ୍କ ଦୁର୍ବୃତ୍ତ ଆଚରଣ ସହି ନ ପାରି ଏଥିରୁ ନିବୃତ୍ତ ରହିବା ଲାଗି ବେଣଙ୍କୁ ଉପଦେଶ ଦେଲେ । ମାତ୍ର ଦୁରାତ୍ମା ବେଣ ସେମାନଙ୍କୁ ଉପହାସ କରିବାକୁ ଲାଗିଲେ । ଋଷିମାନେ କ୍ରୋଧାନ୍ଧ ହୋଇ

ସମସ୍ତେ ଏହି ବଳଗର୍ବିତ ରାଜା ବେଣଙ୍କୁ ନିଗ୍ରହ କରିବାକୁ ଲାଗିଲେ । ସେମାନେ ଏହାଙ୍କର ବାମ ଉରୁ ନିଷ୍ପେଷଣ କରିଦେଲେ । ଏହି ମଥ୍ୟମାନ ଉରୁଦେଶରୁ ଏକ କୃଷ୍ଣବର୍ଣ୍ଣ ପୁରୁଷ ଜାତ ହେଲା । ଜନ୍ମ ହେବା ମାତ୍ରେ ଏହି ପୁରୁଷ ଋଷିମାନଙ୍କ ଆଗରେ ଯୋଡ଼ହସ୍ତ ହୋଇ ଠିଆ ହେଲା । ଋଷିଶ୍ରେଷ୍ଠ ଅତ୍ରି ତାର ଏ ଅବସ୍ଥା ଦେଖି କହିଲେ—'ନିଷୀଦ' ଅର୍ଥାତ୍ ଉପବେଶନ କର । ଏହି ପୁରୁଷହିଁ ନିଷାଦ ବଂଶର ଆଦ୍ୟପୁରୁଷ । ଏହାଙ୍କଠାରୁ ଧୀବର ସମ୍ପ୍ରଦାୟ ସୃଷ୍ଟ ହୋଇଅଛନ୍ତି । ସୁତରାଂ ଧୀବରମାନଙ୍କୁ ବେଣ କଳୁଷସମ୍ଭୂତ ବୋଲି କୁହାଯାଏ । ଅନନ୍ତର ଋଷିମାନେ ବେଣଙ୍କ ଦକ୍ଷିଣ ବାହୁ ମନ୍ଥନ କରିବାକୁ ଲାଗିଲେ । ଏହି ବାହୁରୁ ପ୍ରଦୀପ୍ତ ଅନଳପ୍ରଭ ଏକ ମୂର୍ତ୍ତି ଉଦ୍ଭୂତ ହେଲା । ଏ ହେଉଛନ୍ତି ପୃଥୁ । ପୃଥୁ ଜନ୍ମକାଳରୁ କବଚ, ଧନୁ ଓ ଦିବ୍ୟଶର ଗ୍ରହଣ-ପୂର୍ବକ ଜାତ ହୋଇଥିଲେ । ସତ୍ପୁତ୍ର ପୃଥୁ ଜନ୍ମ ହେବା ମାତ୍ରେ ବେଣ ପୁନ୍ନାମ ନରକରୁ ପରିତ୍ରାଣ ଲାଭ କରି ସ୍ୱର୍ଗକୁ ଗମନ କଲେ । ଅନନ୍ତର ବ୍ରହ୍ମାଙ୍କ ସହିତ ଅନ୍ୟାନ୍ୟ ଦେବତାମାନେ ସେଠାରେ ଉପସ୍ଥିତ ହୋଇ ପୃଥୁଙ୍କୁ ଭୂମଣ୍ଡଳର ଏକାଧିପତ୍ୟବିଶିଷ୍ଟ ରାଜାରୂପେ ଅଭିଷିକ୍ତ କଲେ । ସେ ପୃଥିବୀବାସୀ ଜନମଣ୍ଡଳୀଙ୍କ ସୁଖସ୍ୱଚ୍ଛନ୍ଦତା ବିଧାନ କରି ରାଜତ୍ୱ କରିବାକୁ ଲାଗିଲେ । ଏକଦା ସମସ୍ତ ପ୍ରଜା ପୃଥୁଙ୍କ ନିକଟକୁ ଆସି ସେମାନଙ୍କ ବୃତ୍ତି ନିର୍ଦ୍ଧାରଣ କରିଦେବା ପାଇଁ ଅନୁରୋଧ କଲେ । ପୃଥୁ ସେମାନଙ୍କ ପ୍ରାର୍ଥନାରେ ପ୍ରୀତହୋଇ ଶର ସନ୍ଧାନ କରି ପୃଥିବୀକୁ ଆକ୍ରମଣ କଲେ । ପୃଥିବୀ ଏଥିରେ ଭୀତ ହୋଇ ଗୋରୂପ ଧାରଣ କରି ପଳାୟନ କଲେ । ପୃଥୁ ଧନୁର୍ବାଣ ଧରି ତାଙ୍କ ପଛରେ ଗୋଡ଼ାଇଲେ । ଏହିରୂପେ ଗୋରୂପଧାରିଣୀ ଧରିତ୍ରୀ ବ୍ରହ୍ମଲୋକ ପ୍ରଭୃତି ଭ୍ରମଣ କରି କୌଣସିଠାରେ ସ୍ଥିର ହୋଇ ରହି ପାରିଲେ ନାହିଁ । ସବୁଠାକୁ ପୃଥୁ ଶର ହସ୍ତରେ ତାହାର ଅନୁସରଣ କରିବାକୁ ଲାଗିଲେ । ଅବଶେଷରେ ପୃଥ୍ୱୀ ମହାରାଜ ପୃଥୁଙ୍କ ଶରଣ ନେଲେ । ପୃଥୁ କହିଲେ—'ହେ ଧରିତ୍ରୀ, ତୁମେ ସକଳ ପ୍ରଜାଙ୍କ ଜୀବିକାବିଧାନ କର ଏବଂ ମୋର କନ୍ୟାରୂପେ ରହ ।' ପୃଥିବୀ କହିଲେ—'ମୁଁ ଆପଣଙ୍କ ପ୍ରସ୍ତାବରେ ସମ୍ମତ ହେଉଛି, ମାତ୍ର କି ପ୍ରକାରରେ ଆପଣଙ୍କ ପ୍ରଜାଙ୍କୁ ମୁଁ ଧାରଣ କରି ପାରିବି ତାହା ନିର୍ଣ୍ଣୟ କର । ପ୍ରଜାମାନଙ୍କ ଜୀବିକା ନିର୍ଦ୍ଧାରଣ କରିବା ଲାଗି ମୋତେ ଦୋହନ କରିବାକୁ ହେବ । ମାତ୍ର ଏ ଦୋହନରେ ବତ୍ସ ଏକାନ୍ତ ଆବଶ୍ୟକ । ବତ୍ସ ବ୍ୟତୀତ କଦାପି କ୍ଷୀର ପ୍ରସ୍ରୁତ ହୋଇ ନ ପାରେ । ପୁଣି ମୋତେ ସମତଳ କରିବାକୁ ହେବ ନଚେତ୍ ମୋଠାରୁ ଦୁହିଁଜ, କ୍ଷୀର କି ରୂପେ ସବୁଠାରେ ସମପରିମାଣରେ ପ୍ରସ୍ରୁତ ହୋଇପାରିବ ?'

ପୃଥୁ ଏକଥା ଶୁଣି ତାଙ୍କ ଧନୁର ଅଗ୍ରଭାଗ ସାହାଯ୍ୟରେ ଅସଂଖ୍ୟ ପର୍ବତ ଉତ୍ସାରିତ କରି ଉପର୍ଯ୍ୟୁପରି ସ୍ଥାପନ କଲେ । ଏପରି ସମସ୍ତ ପୃଥିବୀ ସମତଳ ହୋଇଗଲା ।

ଅନନ୍ତର ମହାରାଜା ପୃଥୁ ସ୍ୱାୟମ୍ଭୁବ ମନୁଙ୍କୁ ବତ୍ସ କଳ୍ପନା କରି ଗୋରୂପା ପୃଥିବୀଙ୍କଠାରୁ ବିବିଧ ଶସ୍ୟଜାତ ଦ୍ରବ୍ୟ ଦୋହନ କରିଥିଲେ । ପ୍ରଜାଗଣ ସେହି ଅନ୍ନ ଦ୍ୱାରା ଏବେ ମଧ୍ୟ ଜୀବନଧାରଣ କରୁଛନ୍ତି । ଏହାପରେ ଋଷି-ମାନେ ସୋମଦେବଙ୍କୁ ବତ୍ସ କଳ୍ପନା କରି ପୁଣି ପୃଥିବୀଙ୍କୁ ଦୋହନ କଲେ । ଏଥର ଦୋହନକର୍ତ୍ତା ଥିଲେ ଦେବଗୁରୁ ବୃହସ୍ପତି, ବେଦ ଚତୁଷ୍ଟୟ ପାତ୍ର ଓ ଶାଶ୍ୱତ ତତ୍ତ୍ୱଜ୍ଞାନ ଦୁହ୍ୟମାନ ପଦାର୍ଥ । ତତ୍ପରେ ଇନ୍ଦ୍ରାଦି ଦେବତାମାନେ କାଞ୍ଚନ ପାତ୍ରରେ ପୁନର୍ବାର ପୃଥିବୀଙ୍କୁ ଦୋହନ କଲେ । ଏଥର ଦେବରାଜ ଇନ୍ଦ୍ର ହେଲେ ବତ୍ସ, ଦୋହନ କର୍ତ୍ତା ହେଲେ ସୂର୍ଯ୍ୟ । ଏଥିରୁ କ୍ଷୀରରୂପେ ଉତ୍ପାଦନ ହେଲା ଯଜ୍ଞୀୟ ହବି । ପୃଥୁଙ୍କର କନ୍ୟାତ୍ୱ ସ୍ୱୀକାର କରିବାରୁ ଧରଣୀର ନାମ ହେଲା ପୃଥ୍ୱୀ । ମହାରାଜ ପୃଥୁ ଏହିପରି ଅଲୋକସାମାନ୍ୟ ପ୍ରଭାବ ଦେଖାଇ ରାଜନ୍ୟମଣ୍ଡଳୀ ମଧ୍ୟରେ ଅଗ୍ରଣୀ ହୋଇଥିଲେ । (ହରିବଂଶ)

ଶ୍ରୀମଦ୍ ଭାଗବତରେ କିନ୍ତୁ ପୃଥୁଙ୍କ ଚରିତ୍ର ବର୍ଣ୍ଣନା ଏହିରୂପେ କରାଯାଇଛି । ବ୍ରାହ୍ମଣମାନେ ଅପୁତ୍ରିକ ବେଣଙ୍କ ବାହୁଦ୍ୱୟ ମନ୍ଥନ କରିବା ଦ୍ୱାରା ସେଥିରୁ ଗୋଟିଏ ପୁରୁଷ ଓ ଗୋଟିଏ ନାରୀ ଜାତ ହେଲେ । ବ୍ରାହ୍ମଣମାନେ କହିଲେ, ଯେହେତୁ ଏହି ପୁରୁଷ ସମସ୍ତ ରାଜାଙ୍କ ମଧ୍ୟରେ ପ୍ରଥମ ହେବ, ତେଣୁ ଏହାଙ୍କର ନାମ ରଖାଯିବ ପୃଥୁ, କନ୍ୟାର ନାମ ହେବ ଅର୍ଚ୍ଚି । ବ୍ରାହ୍ମଣମାନଙ୍କ ଅଭିପ୍ରାୟ ଅନୁଯାୟୀ ପୃଥୁ ଓ ଅର୍ଚ୍ଚି ଉଭୟେ ବିବାହ ବନ୍ଧନରେ ବାନ୍ଧିହେଲେ । ଏହାପରେ କୁବେର ପୃଥୁଙ୍କୁ ସୁବର୍ଣ୍ଣମୟ ଆସନ, ବରୁଣ ଶ୍ୱେତଛତ୍ର, ବାୟୁ ଦୁଇଟି ବ୍ୟଜନ, ବ୍ରହ୍ମା ବେଦମୟ କବଚ, ବିଷ୍ଣୁ ସୁଦର୍ଶନ ଚକ୍ର ଓ ଲକ୍ଷ୍ମୀ ଅନପାୟିନୀ ସମ୍ପତ୍ତି ପ୍ରଦାନ କଲେ । ଭଗବାନ ରୁଦ୍ର ଗୋଟିଏ ଅସି ଦେଲେ । ଅତଃପର ଅଗ୍ନି ପୃଥୁଙ୍କୁ ଛତା, ସୂର୍ଯ୍ୟ ରଶ୍ମିମୟ ବାଣ, ଭୂମି ଓ ଯୋଗମୟୀ ପାଦୁକା ଉପହାର ଦେଲେ ।

ଏହି ମହାତ୍ମା ପୃଥୁ ଭଗବାନଙ୍କର ଏକ ଅଂଶାବତାର, ଏ ପ୍ରତ୍ୟେକ ପ୍ରଜାଙ୍କ ପ୍ରତି ସମଭାବରେ ସୂର୍ଯ୍ୟଙ୍କ ତୁଲ୍ୟ ପ୍ରତାପ ବିସ୍ତାର କରିବାକୁ ଲାଗିଲେ । ପୃଥୁ ମନୋରଞ୍ଜନ କାର୍ଯ୍ୟଦ୍ୱାରା ସମସ୍ତଙ୍କର ପ୍ରୀତି ସମ୍ପାଦନ କରି ପାରିଥିଲେ ।

ସେଠାର ସ୍ତ୍ରୀମାନଙ୍କୁ ମାତୃଭୂଳ୍ୟ ଭକ୍ତି କରୁଥିଲେ । ଆପଣାର ପତ୍ନୀଙ୍କୁ ଅର୍ଦ୍ଧାଙ୍ଗିନୀ ସଦୃଶ ସ୍ନେହ କରୁଥିଲେ । ପୃଥୁ ଶତସଂଖ୍ୟକ ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କରିଥିଲେ । ମାତ୍ର ଏହାଙ୍କର ଶେଷ ଯଜ୍ଞ ସମାପ୍ତ ନହେଉଣୁ ଇନ୍ଦ୍ର ସେହି ଯଜ୍ଞ ଅଶ୍ୱ ଅପହରଣ କରିନେଲେ । ଏହାପରେ ପୃଥୁ ସନତ୍‌କୁମାରଙ୍କୁ ଆରାଧନା କରି ବ୍ରହ୍ମଜ୍ଞାନ ଲାଭ କଲେ ଏବଂ ଯଥା ସମୟରେ ସଦ୍‌ଗତି ଲାଭ କଲେ । ଅନ୍ୟାନ୍ୟ ଅଂଶ ହରିବଂଶ ଉପାଖ୍ୟାନ ତୁଲ୍ୟ ।

**ପୃଥୁଶ୍ରବା**—ସ୍କନ୍ଦଙ୍କ ଅନୁଚର ବିଶେଷ । ଶଶବିନ୍ଦୁ ରାଜାଙ୍କର ପୁତ୍ର ବିଶେଷ ।

**ପୌଣ୍ଡ୍ରକ**–(ପୁଣ୍ଡ୍ରକ ବାସୁଦେବ ଦେଖ) । ଏ ଜଣେ ରାଜା । ପୁଣ୍ଡ୍ର ଦେଶରେ ଏ ରାଜତ୍ୱ କରୁଥିଲେ । ଏହାଙ୍କୁ ପୌଣ୍ଡ୍ରକ ବାସୁଦେବ ବୋଲି କହନ୍ତି । ଏହାଙ୍କ ପିତାଙ୍କ ନାମ ବାସୁଦେବ । ବାସୁଦେବଙ୍କର ଦୁଇ ପତ୍ନୀ ଥିଲେ । ସୁତନୁ ଓ ନାରାଚୀ । ସୁତନୁଙ୍କ ଗର୍ଭରୁ କପିଳ ଜନ୍ମିଥିଲେ । କପିଳ ସଂସାରତ୍ୟାଗୀ ହୋଇ ଯୋଗ ସାଧନରେ ଦିନ କଟାଇଲେ । ପୌଣ୍ଡ୍ରକ ବାସୁଦେବ ନାମ ଧାରଣ କରି ରାଜ୍ୟ ଶାସନ କଲେ । ସେ ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କ ପ୍ରତିପତ୍ତି ଶୁଣି ତାଙ୍କୁ ସହି ପାରିଲେନାହିଁ । ଗୋପତନୟ ଶ୍ରୀକୃଷ୍ଣ ମୋର ନାମ ଚୋରାଇ ନେଇଛି ଭାବି ଦ୍ୱାରକା ଆକ୍ରମଣ କଲେ ଏବଂ ଶ୍ରୀକୃଷ୍ଣଙ୍କ ଦ୍ୱାରା ପ୍ରାଣ ହରାଇଲେ । (ହରିବଂଶ ଓ ଭାଗବତ)

**ପୌରବ**—ଯଯାତି ପୁତ୍ର ପୁରୁର ବଂଶଧରଗଣ । ଶର୍ମିଷ୍ଠା ଗର୍ଭଜାତ ଯଯାତିଙ୍କ କନିଷ୍ଠ ପୁତ୍ର ପୁରୁ ନିଜ ପିତାଙ୍କୁ ନିଜର ଯୌବନ ଦାନ କରି ଜରାବସ୍ଥା ଗ୍ରହଣ କରିଥିଲେ । ତାଙ୍କର ଏ ଅସାମାନ୍ୟ ଦୃଷ୍ଟାନ୍ତ ଯୋଗେ ତାଙ୍କର ନାମାନୁସାରେ ବଂଶଧରମାନଙ୍କୁ ପୌରବ ବୋଲି କହନ୍ତି । ପୁରାଣୋକ୍ତ ଜଣେ ହିନ୍ଦୁ ରାଜାଙ୍କ ନାମ ପୌରବ ଥିଲା । ଏ ରାଜା ତିନି ଲକ୍ଷ ଶ୍ୱେତାଶ୍ୱ ଦାନ ଓ ଅଶ୍ୱମେଧ ଯଜ୍ଞ କରି ସ୍ୱର୍ଗକୁ ଯାଇଥିଲେ । (ହିନ୍ଦୀ ଶବ୍ଦସାଗର)

**ପୌରବୀ**—ବସୁଦେବଙ୍କର ଏକ ପତ୍ନୀଙ୍କ ନାମ । ଏହାଙ୍କର ପ୍ରକୃତ ନାମ ଥିଲା ରୋହିଣୀ । କିନ୍ତୁ ବଳରାମଙ୍କ ମାତା ରୋହିଣୀଙ୍କ ନାମ ସହିତ କାଳେ ଏହାଙ୍କର ନାମର ଗଣ୍ଡଗୋଳ ହେବ ସେଥିପାଇଁ ଏହାଙ୍କୁ ଏହି ନାମ ଦିଆଯାଇଥିଲା ।

**ପୌର୍ଣ୍ଣମାସୀ**—(ପୂର୍ଣ୍ଣିମାସୀ ଦେଖ)

**ପ୍ରଚେତା**—ବ୍ରହ୍ମାଙ୍କ ପୁତ୍ର । ଲୋକ ପିତାମହ ବ୍ରହ୍ମା ନିଜ ଦେହରୁ ଦେବଦେବୀଙ୍କ ବହୁ ପୁତ୍ରମାନଙ୍କୁ ସୃଷ୍ଟି କରିଥିଲେ । ସେମାନଙ୍କ ନାମ—ଅତ୍ରି, ପୁଲସ୍ତ୍ୟ, ପୁଲହ, ମରୀଚି, ଭୃଗୁ, ଅଙ୍ଗିରା, କ୍ରତୁ, ବଶିଷ୍ଠ, ବୋଢୃ, କପିଳ, ଆସୁରି, କବି, ଶଙ୍କୁ, ଶଙ୍ଖ, ପଞ୍ଚଶିଖ ଓ ପ୍ରଚେତା । (ବ୍ରହ୍ମବୈବର୍ତ୍ତ, ଶ୍ରୀକୃଷ୍ଣ ଖଣ୍ଡ)

ରାଜା ପ୍ରାଚୀନ ବର୍ହିଙ୍କ ପୁତ୍ରମାନେ । ରାଜା ପୃଥୁଙ୍କର ନାତି ପ୍ରାଚୀନ ବର୍ହିଙ୍କର ୧୦ଟି ପୁତ୍ର । ପ୍ରତ୍ୟେକଙ୍କ ନାମ ପ୍ରଚେତା ଥିଲା । ଏମାନେ ଦଶ ହଜାର ବର୍ଷକାଳ ସମୁଦ୍ର ଭିତରେ ଥାଇ କଠିନ ତପସ୍ୟା କରି ବିଷ୍ଣୁଙ୍କଠାରୁ ପ୍ରଜା ସୃଷ୍ଟି କରିବାକୁ ବର ପାଇଥିଲେ । ଦକ୍ଷ ଏମାନଙ୍କର ପୁତ୍ର ଥିଲେ ।
(ହିନ୍ଦୀ ଶବ୍ଦସାଗର)

**ପ୍ରଜାପତି**—ବ୍ରହ୍ମାଙ୍କର ୧୦ ଜଣ ମାନସପୁତ୍ର । ଯେଉଁମାନେ ଜୀବଜଗତର ଆଦି ପୁରୁଷ । ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ, ଭୃଗୁ, ଦକ୍ଷ (ଅନ୍ୟ ମତରେ ପ୍ରଚେତା ଓ ନାରଦ ) । ଏହି ଦଶ ଜଣ ଋଷି ବ୍ରହ୍ମାଙ୍କ ମାନସପୁତ୍ର । (ଭାଷାକୋଷ)

**ପ୍ରଭାବତୀ**—ପ୍ରିୟବ୍ରତ ରାଜାଙ୍କ ସ୍ତ୍ରୀ । (ହିନ୍ଦୀ ଶବ୍ଦସାଗର)

**ପ୍ରତର୍ଦ୍ଦନ**—ଦିବୋଦାସଙ୍କ ପୁଅ, ମଦାଲସାଙ୍କ ସ୍ୱାମୀ ଓ ରାମଚନ୍ଦ୍ରଙ୍କ ସମସାମୟିକ ରାଜା । (ଗାଳବ ଦେଖ)

**ପ୍ରତୀପ**—ମହାରାଜ ଶାନ୍ତନୁଙ୍କ ପିତା । ଭୀଷ୍ମଙ୍କ ପିତାମହ ।

**ପ୍ରତିଷ୍ଠାନ**—ଭାରତର ପ୍ରାଚୀନ ନଗର ବିଶେଷ । ପ୍ରୟାଗର ପ୍ରାଚୀନ ନାମ । ଦାକ୍ଷିଣାତ୍ୟ ଅଧିପତି ଶାଳିବାହନଙ୍କ ରାଜଧାନୀ । (ଭାଷାକୋଷ)

ପ୍ରତିଷ୍ଠାନର ଆଧୁନିକ ନାମ ବିଠୋର । ଏହା ଗୋଦାବରୀ ତୀରରେ ଅବସ୍ଥିତ । (ହିନ୍ଦୀ ଶବ୍ଦସାଗର)

**ପ୍ରଦ୍ୟୁମ୍ନ**—ଶ୍ରୀକୃଷ୍ଣଙ୍କ ପୁତ୍ର । ରୁକ୍ମିଣୀ ଏହାଙ୍କର ମାତା । କାମଦେବ, ହର କୋପାନଳରେ ଭସ୍ମୀଭୂତ ହେବା ପରେ ପ୍ରଦ୍ୟୁମ୍ନ ନାମରେ ଶ୍ରୀକୃଷ୍ଣଙ୍କ ପୁତ୍ରରୂପେ ଜନ୍ମ ହୋଇଥିଲେ । ଶମ୍ବରାସୁର ନାମକ ଏକ ରାକ୍ଷସର ଶ୍ରୀକୃଷ୍ଣଙ୍କ ସହିତ ପ୍ରବଳ ଶତ୍ରୁତା ଥିଲା । ସେ ପ୍ରଦ୍ୟୁମ୍ନ ଜନ୍ମ ସାତଦିନ ପରେ ସୂତିକାଗାରରୁ ଶିଶୁଟିକୁ ହରିନେଇଥିଲା । ଦେବମାୟାଭିଜ୍ଞ ଶ୍ରୀକୃଷ୍ଣ ଏହା ଜାଣି ମଧ୍ୟ କିଛି

ପ୍ରତିକାର କଲେ ନାହିଁ । ମାୟାବତୀ ନାମକ ଏକ ସୁନ୍ଦରୀ ରମଣୀ ଶମ୍ବରାସୁରର ମହିଷୀ ଥିଲା । ତାଙ୍କର ପୁତ୍ର ନ ଥିଲା । ଶମ୍ବର, ଶିଶୁ ପ୍ରଦ୍ୟୁମ୍ନଙ୍କୁ ତାହାର ହାତରେ ଅର୍ପଣ କରି ଶିଶୁଟିକୁ ପୁତ୍ର ନିର୍ବିଶେଷରେ ପାଳନ କରିବା ପାଇଁ କହିଲା । ମାୟାବତୀ ଅନ୍ୟ କେହି ନୁହନ୍ତି, ସେ କନ୍ଦର୍ପ ମନୋହାରିଣୀ ସ୍ୱୟଂ ରତି ଦେବୀ । ପ୍ରଦ୍ୟୁମ୍ନଙ୍କୁ ଦେଖିବା ମାତ୍ରେ ମାୟାବତୀଙ୍କ ମନରେ ପୂର୍ବଜନ୍ମ ବୃତ୍ତାନ୍ତ ଜାଗ୍ରତ ହେଲା । ସେ ସ୍ୱାମୀଙ୍କୁ ପୁତ୍ର ଭୂଲ୍ୟ ଲାଳନପାଳନ କରିବାକୁ ଅଶୋଭ ମନେ କରି ତାଙ୍କୁ ଧାତ୍ରୀ ହସ୍ତରେ ଅର୍ପଣ କଲେ । ଯେତେବେଳେ ପ୍ରଦ୍ୟୁମ୍ନ ଯୌବନରେ ପଦାର୍ପଣ କଲେ ସେତେବେଳେ ମାୟାବତୀ ତାଙ୍କୁ ସ୍ୱାମୀ ଭାବରେ ଗ୍ରହଣ କରିବା ପାଇଁ ହାବ ଭାବ ପ୍ରକାଶ କଲେ । ପ୍ରଦ୍ୟୁମ୍ନ ମାୟାବତୀଙ୍କୁ ଡାକି କହିଲେ—'ତୁମେ ମୋ ପ୍ରତି ପୁତ୍ର ଭାବ ତ୍ୟାଗ କରି ଏପରି ବିପରୀତ ଭାବ ପୋଷଣ କରୁଛ କାହିଁକି ?' ମାୟାବତୀ ପ୍ରଦ୍ୟୁମ୍ନଙ୍କୁ ନିର୍ଜନକୁ ନେଇ କହିଲେ—'ନାଥ, ତୁମେ ମୋର ପୁତ୍ର ନୁହଁ । ଶମ୍ବର ମଧ୍ୟ ତୁମ୍ଭର ପିତା ନୁହେଁ । ତୁମେ ବୃଷ୍ଣିବଂଶସମ୍ଭୂତ । ରୁକ୍ମିଣୀ ତୁମର ଜନନୀ । ଦ୍ୱାରକାଧିପତି ଶ୍ରୀକୃଷ୍ଣ ତୁମ୍ଭର ପିତା । ତୁମ ଜନ୍ମର ସାତଦିନ ପରେ ଶମ୍ବର ତୁମ୍ଭଙ୍କୁ ସୂତିକାଗାରରୁ ଚୋରାଇ ଆଣିଛି । ମୁଁ ତୁମ ରୂପଦର୍ଶନରେ ମୁଗ୍‌ଧ ହୋଇ ଯାଇଛି । ବର୍ତ୍ତମାନ ତୁମ୍ଭେ ଶମ୍ବରାସୁରକୁ ବଧ କରି ମୋର ମନସ୍କାମନା ପୂର୍ଣ୍ଣ କର ।' ଏହା ଶୁଣି ପ୍ରଦ୍ୟୁମ୍ନ କୌଶଳକ୍ରମେ ଶମ୍ବରାସୁରର କ୍ରୋଧୋଦ୍ରେକ କରି ତାହା ସହିତ ଯୁଦ୍ଧ କଲେ । ବୈଷ୍ଣବାସ୍ତ୍ର ପ୍ରୟୋଗ କରି ତାକୁ ବଧ କଲେ ଏବଂ ମାୟାବତୀଙ୍କ ସହିତ ଦ୍ୱାରକାକୁ ଫେରିଗଲେ । ରୁକ୍ମ ପ୍ରଦ୍ୟୁମ୍ନଙ୍କର ମାମୁଁ । ପ୍ରଦ୍ୟୁମ୍ନ ଏହାଙ୍କ କନ୍ୟାର ପାଣି ଗ୍ରହଣ କରିଥିଲେ । ଅନିରୁଦ୍ଧ ଏହି କନ୍ୟାଗର୍ଭରୁ ଜାତ ହୋଇଥିଲେ । ପ୍ରଦ୍ୟୁମ୍ନ ଜଣେ ଅତି ପ୍ରତାପଶାଳୀ ବୀର ଥିଲେ । ସେ ଅନେକ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କୁ ସାହାଯ୍ୟ କରିଥିବା ପୁରାଣରେ ଲେଖା ଅଛି । ଯଦୁବଂଶ ଆତ୍ମଦ୍ରୋହରେ ଧ୍ୱଂସ ହେବାବେଳେ ପ୍ରଦ୍ୟୁମ୍ନ ମୃତ୍ୟୁ ମୁଖରେ ପତିତ ହୋଇଥିଲେ । ଅସୁରରାଜ ବଜ୍ରନାଭଙ୍କ କନ୍ୟାକୁ ପ୍ରଦ୍ୟୁମ୍ନ ଗାନ୍ଧର୍ବ ମତରେ ବିବାହ କରିଥିଲେ । ଏ ବିବାହ ଯୋଗେ ପ୍ରଭାବତୀ ଅନ୍ତଃସତ୍ତ୍ୱା ହେବାରୁ ରାକ୍ଷସମାନେ ତାଙ୍କ ବିରୁଦ୍ଧରେ ଯୁଦ୍ଧ କରି ନିହତ ହେଲେ । ପ୍ରଭାବତୀ ଗର୍ଭଜାତ ପୁତ୍ର ବଜ୍ରପୁରର ରାଜପଦରେ ଅଧିଷ୍ଠିତ ହେଲେ । (ବଜ୍ରନାଭ ଦେଖ, ହରିବଂଶ)

**ପ୍ରଦ୍ୟୋତ**—ପ୍ରାଚୀନ ରାଜା ଓ ଯକ୍ଷ ବିଶେଷ ।

**ପ୍ରଧା**—ପ୍ରଜାପତି ଋଷି କଶ୍ୟପଙ୍କ ଭାର୍ଯ୍ୟା । ଗନ୍ଧର୍ବ ଓ ଅପ୍ସରାମାନେ ଏହାଙ୍କଠାରୁ ଜନ୍ମିଥିଲେ । (ହରିବଂଶ, ଭାରତ)

**ପ୍ରବୀର**—ମାହିଷ୍ମତୀ ରାଜ୍ୟର ରାଜା ନୀଳଧ୍ୱଜ ଓ ରାଣୀ ଜ୍ୱାଳାଙ୍କ ପୁତ୍ର । ଏହାଙ୍କ ବିଷୟ ଜୈମିନି ମହାଭାରତରେ ଉଲ୍ଲିଖିତ ହୋଇଛି କିନ୍ତୁ ବ୍ୟାସଦେବଙ୍କ ମହାଭାରତରେ ନାହିଁ । ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞର ଘୋଟକ ମାହିଷ୍ମତୀ ନଗରୀରେ ପହଞ୍ଚିବା ବେଳେ ପ୍ରବୀର ବହୁ ସ୍ତ୍ରୀଙ୍କ ସହିତ ଉପବନରେ କ୍ରୀଡ଼ା କରୁଥିଲେ । ଜଣେ ପ୍ରେୟସୀ ମଦନମଞ୍ଜରୀର ଅନୁରୋଧରେ ରାଜକୁମାର ଉକ୍ତ ଘୋଡ଼ାକୁ ଧରି ରଖିଲେ । ଏଥିରେ ନୀଳଧ୍ୱଜ ରାଜାଙ୍କ ସହିତ ଅର୍ଜୁନ ଯୁଦ୍ଧ କଲେ । ନୀଳଧ୍ୱଜ ହାରିଗଲେ । ଅଗ୍ନିଦେବ ନୀଳଧ୍ୱଜଙ୍କର ଜାମାତା ଥିଲେ, ଅଗ୍ନିଙ୍କ ପରାମର୍ଶରେ ନୀଳଧ୍ୱଜ ଉକ୍ତ ଘୋଡ଼ାକୁ ଅର୍ଜୁନଙ୍କୁ ଫେରାଇ ଦେବାକୁ ଉଦ୍ୟତ ହେବାରୁ ରାଣୀ ଜ୍ୱାଳା ତାଙ୍କୁ ବହୁତ ଧିକ୍କାର କଲେ ଏବଂ ଅର୍ଜୁନଙ୍କ ସହିତ ଯୁଦ୍ଧ କରିବା ପାଇଁ ସ୍ୱାମୀଙ୍କୁ ଉତ୍ତେଜିତ କଲେ । ଯୁଦ୍ଧରେ ପ୍ରବୀର ହତ ହେଲେ ଓ ନୀଳଧ୍ୱଜ ଅର୍ଜୁନଙ୍କୁ ଅଶ୍ୱ ଫେରାଇଦେଲେ । ଏଥିରେ ଜ୍ୱାଳା କ୍ରୁଦ୍ଧା ହୋଇ ସ୍ୱାମୀଙ୍କ ଗୃହ ତ୍ୟାଗକରି ନିଜ ଭାଇଙ୍କ ନିକଟକୁ ଗଲେ । ଭାଇମାନେ ତାଙ୍କୁ ତଡ଼ି ଦେବାରୁ ଜ୍ୱାଳା ନୌକାରେ ଗଙ୍ଗା ପାରି ହୋଇ ଗଙ୍ଗା କୂଳରେ ରହିଲେ ଓ ଗଙ୍ଗାଙ୍କୁ କହିଲେ—'ଅର୍ଜୁନ ତୁମ ପୁଅ ଭୀଷ୍ମଙ୍କୁ ମାରିପକାଇଲେ । ଏଥିରେ ତୁମର ପ୍ରତିହିଂସା ହେଲା ନାହିଁ ।' ଗଙ୍ଗାଦେବୀ ଏହା ଶୁଣି ଅର୍ଜୁନଙ୍କ ପ୍ରତି କ୍ରୁଦ୍ଧା ହୋଇ ଅଭିଶାପ ଦେଲେ ଯେ ଛଅ ମାସ ମଧ୍ୟରେ ଅର୍ଜୁନଙ୍କ ମୁଣ୍ଡକାଟ ହେବ । ଏହା ଶୁଣି ଜ୍ୱାଳା ପ୍ରସନ୍ନା ହେଲେ ଓ ସେ ଅଗ୍ନିରେ ଝାସ ଦେଲେ ଏବଂ ଅର୍ଜୁନଙ୍କ ବଧାର୍ଥେ ତୀକ୍ଷ୍ଣ ବାଣର ରୂପ ଧାରଣ କରି ବଭ୍ରୁବାହନଙ୍କ ତୂଣୀରରେ ଯାଇ ରହିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପ୍ରବୃଷ**—ଭାଗବତୋକ୍ତ ଋଷଭ ଦେବଙ୍କ ଏକ ପୁତ୍ର ।

**ପ୍ରଭତୀର୍ଥ**—ଶିବ ପୁରାଣୋକ୍ତ ତୀର୍ଥ ବିଶେଷ ।

**ପ୍ରଭାବତୀ**—(୧) ସୂର୍ଯ୍ୟ ପତ୍ନୀ । (୨) ବଜ୍ରନାମକ ଅସୁରର କନ୍ୟା । (ପ୍ରଦ୍ୟୁମ୍ନ ଦେଖ) । (୩) ଅପ୍ସରା ବିଶେଷ । (୪) କୁମାରାନୁଚର ମାତୃକାବିଶେଷ । (୫) ମହାଦେବଙ୍କ ଅନୁଚର ଗଣଦେବତାଙ୍କ ବୀଣା । (୬) ମହାଭାରତୋକ୍ତ ତାପସୀ ବିଶେଷ । (ଭାଷାକୋଷ)

**ପ୍ରଭାସ**—ହିନ୍ଦୁ ଜାତିର ତୀର୍ଥ ବିଶେଷ । ଏହା ପଶ୍ଚିମ ଭାରତରେ ଅବସ୍ଥିତ । ସୋମତୀର୍ଥ ବୋଲି ଏହାକୁ କହନ୍ତି । ଚନ୍ଦ୍ର ଦକ୍ଷକନ୍ୟା ସପ୍ତବିଂଶତି ନକ୍ଷତ୍ରଙ୍କର ପାଣିଗ୍ରହଣ କରିଥିଲେ । କିନ୍ତୁ ସେ ସମସ୍ତଙ୍କ ପ୍ରତି ସମବ୍ୟବହାର ନ କରି ରୋହିଣୀଙ୍କଠାରେ ଅତ୍ୟନ୍ତ ଆସକ୍ତ ହେବାରୁ ଅପର କନ୍ୟାମାନଙ୍କର ନିବେଦନ ଶୁଣି ଦକ୍ଷ ପ୍ରଜାପତି କ୍ରୋଧାନ୍ୱିତ ହୋଇ ତାହାଙ୍କୁ ଅଭିଶାପ ଦେଲେ । ଚନ୍ଦ୍ର ଯକ୍ଷ୍ମାରୋଗରେ ଆକ୍ରାନ୍ତ ଓ ପ୍ରଭାହୀନ ହୋଇ ଏହି ପୁଣ୍ୟ କ୍ଷେତ୍ରରେ ବହୁକାଳ ତପସ୍ୟା କରି ରୋଗମୁକ୍ତ ହେଲେ ଏବଂ ନିଜର ପୂର୍ବ ପ୍ରଭା ଲଭ କଲେ । ତେଣୁ ଏହି କ୍ଷେତ୍ରରେ ନାମ ପ୍ରଭାସ ହେଲା । ଏହି ତୀର୍ଥରେ ଶ୍ରୀକୃଷ୍ଣ ଏକ ସହସ୍ର ବର୍ଷ ତପସ୍ୟା କରିଥିଲେ । (ତୀର୍ଥ ଦର୍ଶନ, ମଦନ ମୋହନ) ।

(ଭାଷାକୋଷ)

(୨) କୁବେରଙ୍କ ଅନୁଚର ବିଶେଷଙ୍କ ନାମ ।

(୩) ଅଷ୍ଟବସୁ ମଧ୍ୟରୁ ଜଣେ ।

**ପ୍ରଥମ**—ମହାଦେବଙ୍କ ପାରିଷଦଗଣ । ଏମାନଙ୍କର ସଂଖ୍ୟା ୩୬ କୋଟି । ଏମାନେ ନୃତ୍ୟଗୀତାଦି ବିଶାରଦ ମାୟାବୀ ଓ ନାନା ରୂପଧାରୀ । କାଳିକା ପୁରାଣ ମତରେ ଏମାନଙ୍କ ମଧ୍ୟରୁ କେତେକ ଭୋଗ ବିମୁଖ, ଯୋଗୀ ଓ ତ୍ୟାଗୀ । କେତେକ ଭୋଗ ପରାୟଣ ଓ କାମୁକ । ଶିବଙ୍କ କ୍ରୀଡ଼ାରେ ଏମାନେ ସହାୟକ । (ହିନ୍ଦୀ ଶବ୍ଦସାଗର)

**ପ୍ରମାଥୀ**—ରାମଚନ୍ଦ୍ରଙ୍କ ବାନର ସେନାର ଏକ ଯୂଥପତି । ଖରର ସହିତର ରାକ୍ଷସ ବିଶେଷ । ଧୃତରାଷ୍ଟ୍ରଙ୍କ ଏକ ପୁତ୍ର । (ହିନ୍ଦୀ ଶବ୍ଦସାଗର)

**ପ୍ରମିଳା**—ରାବଣର ପୁତ୍ରବଧୂ । ମେଘନାଦ ବା ଇନ୍ଦ୍ରଜିତର ସ୍ତ୍ରୀ । କେହି କେହି ଏହାକୁ ପରମିଳା ବୋଲି ମଧ କହନ୍ତି । ଅର୍ଜୁନଙ୍କର ଏକ ସ୍ତ୍ରୀଙ୍କ ନାମ ।

ଯୁଧିଷ୍ଠିରଙ୍କ ଯଜ୍ଞାଶ୍ୱ ଏହାଙ୍କ ରାଜ୍ୟ ନିକଟେ ଯିବାବେଳେ ପ୍ରମିଳା ତାକୁ ଧରି ଅର୍ଜୁନଙ୍କ ସହିତ ଯୁଦ୍ଧ କଲେ ଏବଂ ପରାସ୍ତ ହେବାରୁ ଅର୍ଜୁନଙ୍କୁ ବିବାହ କଲେ । ଏହାଙ୍କ ରାଜ୍ୟରେ କେବଳ ସ୍ତ୍ରୀମାନେ ବାସ କରୁଥିଲେ ।

(ଆପ୍ଟେ, ଭାଷାକୋଷ)

**ପ୍ରମଦ୍‌ବରା** – ଗନ୍ଧର୍ବରାଜ ବିଶ୍ୱାବସୁଙ୍କ ଔରସରେ ମେନକାଙ୍କ ଗର୍ଭରୁ ଏ କନ୍ୟାର ଉତ୍ପତ୍ତି । ପ୍ରମତି ଋଷିଙ୍କ ପୁତ୍ର ରୁରୁ ଏହାଙ୍କୁ ବିବାହ ହୋଇଥିଲେ । ମହର୍ଷି ଶୁନକ ଏହି ଦମ୍ପତିଙ୍କ ସନ୍ତାନ । (ମହାଭାରତ-ଆଦିପର୍ବ)

**ପ୍ରୟାଗ** – ହିନ୍ଦୁ ତୀର୍ଥ ମଧ୍ୟରେ ଏକ ପ୍ରାଚୀନ ନଗରୀ । ଏଠାରେ ଗଙ୍ଗା ଓ ଯମୁନା ମିଳିତ ହୋଇଅଛନ୍ତି । ସରସ୍ୱତୀ ଏଠାରେ ମିଳିତ ହୋଇଥିବାର ବୋଲାଯାଏ । କିନ୍ତୁ ବର୍ତ୍ତମାନ ସରସ୍ୱତୀର କୌଣସି ଚିହ୍ନ ଏଠାରେ ଦେଖାଯାଏ ନାହିଁ । ଗଙ୍ଗା ଓ ଯମୁନାର ସଙ୍ଗମ ସ୍ଥଳରେ ପୂର୍ବେ ବହୁ ଯାଗ ହୋଇଥିବାରୁ ଏହାର ନାମ ପ୍ରୟାଗ ହୋଇଅଛି । ଏହା ହିନ୍ଦୁ ତୀର୍ଥରୂପେ ବହୁ ପ୍ରାଚୀନ-କାଳରୁ ପ୍ରସିଦ୍ଧ । ରାମାୟଣରେ ଉଲ୍ଲେଖ ଅଛି ଯେ ରାଜାମାନଙ୍କ ଅଭିଷେକ ପାଇଁ ଏଠାରୁ ଜଳ ଯାଉଥିଲା । ରାମଚନ୍ଦ୍ର ବନଗମନ କାଳରେ ପ୍ରୟାଗରେ ଭରଦ୍ୱାଜ ମୁନିଙ୍କ ଆଶ୍ରମ ବାଟେ ଯାଇଥିଲେ । ପ୍ରୟାଗ ବହୁକାଳ ପର୍ଯ୍ୟନ୍ତ କୋଶଳ ରାଜ୍ୟର ଅନ୍ତର୍ଗତ ଥିଲା । ଅଶୋକ ଆଦି ବୌଦ୍ଧ ରାଜାଙ୍କ ସମୟରେ ଏଠାରେ ଅନେକ ବୌଦ୍ଧବିହାର ହୋଇଥିଲା । ଅଶୋକଙ୍କ ସ୍ତମ୍ଭ ଆଜି ମଧ୍ୟ କିଲ୍ଲା ମଧ୍ୟରେ ଅଛି । ଏ ସ୍ତମ୍ଭରେ ସମୁଦ୍ରଗୁପ୍ତଙ୍କ ପ୍ରଶସ୍ତି ଖୋଳା ଯାଇଅଛି । ଖ୍ରୀଷ୍ଟପଞ୍ଚମ ଶତାବ୍ଦୀର ପ୍ରାରମ୍ଭରେ ଚୀନ ପରିବ୍ରାଜକ ଫାହିଆନ୍ ଏଠାକୁ ଆସିଥିଲେ ଓ ସେ ସମୟରେ ଏହା କୋଶଳ ରାଜ୍ୟର ଅନ୍ତର୍ଗତ ଥିଲା । ଖ୍ରୀଷ୍ଟ ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନ୍‌ସାଂ ଏଠାକୁ ଆସି ଏଠାରେ ଅକ୍ଷୟବଟକୁ ଦେଖିଥିଲେ । ବର୍ତ୍ତମାନ ଇଂରେଜ କିଲ୍ଲା ମଧ୍ୟରେ ଅକ୍ଷୟବଟ ବିଦ୍ୟମାନ । ପୁରାଣମାନଙ୍କ ମଧ୍ୟରୁ ପ୍ରାଚୀନତମ ମତ୍ସ୍ୟପୁରାଣରେ ଏ ତୀର୍ଥର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ଏହା ପ୍ରଜାପତିଙ୍କ କ୍ଷେତ୍ର ବୋଲି ଉକ୍ତ ପୁରାଣରେ ଲେଖାଅଛି । ମାଘ ମାସରେ ଏଠାରେ ସବୁ ତୀର୍ଥମାନେ ବାସ କରନ୍ତି । ଏଥିପାଇଁ ମାଘ (ମକର) ମାସରେ ଏଠାରେ ତ୍ରିବେଣୀ ସଙ୍ଗମରେ ସ୍ନାନ ବହୁ ପୁଣ୍ୟପ୍ରଦ । ମତ୍ସ୍ୟପୁରାଣରେ ଗଙ୍ଗା ଯମୁନାର ଏଠାରେ ସଙ୍ଗମ ହୋଇଥିବାର ଲେଖାଅଛି, କିନ୍ତୁ ସରସ୍ୱତୀର ସଙ୍ଗମ ବିଷୟ ଲେଖାନାହିଁ । ସମ୍ଭବତଃ ଗଙ୍ଗା, ଯମୁନା ଦୁଇଟି ବେଣୀ ଓ ସମ୍ମିଳିତ ନଦୀଦ୍ୱୟର ଧାର ଗୋଟିଏ, ଏପରି ତ୍ରିବେଣୀ ଥିବାରୁ ଏହା ତ୍ରିବେଣୀ ନାମ ହୋଇଅଛି । ପ୍ରୟାଗର ଆଧୁନିକ ନାମ ଆଲ୍ଲାହାବାଦ (ଫା-ଇଲ୍ଲାହାବାଦ = ଈଶ୍ୱରଙ୍କ ନଗର) (ହିନ୍ଦୀ ଶବ୍ଦସାଗର)। ମୋଗଲ ସମ୍ରାଟଙ୍କ ସମୟରେ ଏହାର ଏହି ନାମ ହୋଇଅଛି । ବର୍ତ୍ତମାନ ଏହା ଉତ୍ତର ପ୍ରଦେଶରେ ଅବସ୍ଥିତ ଓ ଏଠାରେ ହାଇକୋର୍ଟ, ବିଶ୍ୱବିଦ୍ୟାଳୟ, କଲେଜ ଓ ସଙ୍ଗମ ସ୍ଥଳରେ ନଦୀ ତୀରରେ ଗୋଟିଏ ବଡ଼ କିଲ୍ଲା ଅଛି, ଏଠାରେ ବାର ବର୍ଷରେ ଥରେ କୁମ୍ଭମେଳା ହୁଏ । ତ୍ରିବେଣୀରେ ସ୍ନାନ କରି ହିନ୍ଦୁମାନେ ନୀଳମାଧବ ବିଗ୍ରହକୁ ଦର୍ଶନ କରନ୍ତି । ବର୍ତ୍ତମାନ ମଧ୍ୟ ଏଠାରେ ଗୋଟିଏ ରମଣୀୟ ସ୍ଥାନ ଅଛି, ତାହା ଭରଦ୍ୱାଜ ଆଶ୍ରମ ନାମରେ କଥିତ । ଏଠାରେ ନଦୀରେ ବହୁସଂଖ୍ୟକ ବଡ଼ କଚ୍ଛପ ଦେଖାଯାନ୍ତି ।

ମୋତିଲାଲ ନେହେରୁଙ୍କ ପ୍ରାସାଦ ଆନନ୍ଦଭବନ ଓ ବିସ୍ତୃତ ହତା ଏଠାରେ ଅଛି । ତାଙ୍କ ପୁତ୍ର ପଣ୍ଡିତ ଜବାହରଲାଲ ନେହେରୁ ଏହି ଗୃହ ଦେଶବାସୀଙ୍କୁ ଦାନ କରିଦେବା ପରେ ଏହି ଭବନ ସ୍ୱରାଜ୍ୟଭବନ ନାମରେ ନାମିତ ହୋଇଅଛି । (ଭାଷାକୋଷ)

**ପ୍ରଲମ୍ବ**—ଏକ ଦୁଷ୍ଟ ଦାନବ । ଶ୍ରୀକୃଷ୍ଣ, ବଳରାମ ଓ ଗୋପବାଳକମାନେ ଯେତେବେଳେ ଖେଳୁଥିଲେ ସେତେବେଳେ ଏହି ରାକ୍ଷସ ଗୋପାଳବେଶ ଧାରଣ କରି ସେମାନଙ୍କ ସହିତ ମିଳିତ ହେଲା । ଶ୍ରୀକୃଷ୍ଣ ଅସୁରର ଏହି ଅଭିସନ୍ଧି ବୁଝିପାରି ଗୋପବାଳକମାନଙ୍କ ସହିତ କୃତ୍ରିମ ମଲ୍ଲଯୁଦ୍ଧ ଆରମ୍ଭ କଲେ । ଏ କୃତ୍ରିମ ଯୁଦ୍ଧରେ ପଣ ହେଲା ଯେ ପରାଜିତ ବ୍ୟକ୍ତି ବିଜେତାକୁ କାନ୍ଧରେ ବସାଇ ବୋହିବ । ପ୍ରଲମ୍ବାସୁର ବଳରାମଙ୍କ ସହିତ ଯୁଦ୍ଧ କରି ପରାସ୍ତ ହେଲା ଏବଂ ତାଙ୍କୁ କାନ୍ଧରେ ବୋହିଲା । ବଳରାମଙ୍କୁ କିଛିଦୂର ନେବାପରେ ଅସୁର ତାଙ୍କୁ ବଧ କରିବ ବୋଲି ବିଚାରିଲା । ବଳରାମ ଏହା ଜାଣି ଏପରି ଭାରି ହେଲେ ଯେ ଅସୁର ଆଉ ତାଙ୍କୁ ବୋହି ପାରିଲା ନାହିଁ । ଅବଶେଷରେ ନିଜର ଭୟଙ୍କର ମୂର୍ତ୍ତି ପ୍ରକାଶ କରି ପ୍ରଲମ୍ବ ବଳରାମଙ୍କୁ ଆକ୍ରମଣ କଲା । ମାତ୍ର ଅବିଲମ୍ବେ ଦ୍ୱନ୍ଦ୍ୱ ଯୁଦ୍ଧରେ ବଳରାମଙ୍କ ଦ୍ୱାରା ନିହତ ହେଲା ।
(ଶ୍ରୀମଦ୍‌ଭାଗବତ ଦଶମସ୍କନ୍ଧ)

**ପ୍ରସୂତି**—ଦକ୍ଷଙ୍କ ପତ୍ନୀ ଓ ସତୀଙ୍କ ମାତା । ଦକ୍ଷ-ଯଜ୍ଞ ଧ୍ୱଂସ କରି ମହାଦେବ ଦକ୍ଷଙ୍କୁ ବିନାଶ କଲା ପରେ ପ୍ରସୂତିଙ୍କ ଅନୁରୋଧରେ ପୁନରାୟ ଦକ୍ଷଙ୍କୁ ଜୀଆଇ ଦେଇଥିଲେ ।

**ପ୍ରସେନ, ପ୍ରସେନଜିତ୍**—ଭାଗବତୋକ୍ତ ସତ୍ରାଜିତଙ୍କ ସାନଭାଇ । ଏ ଯଯାତିଙ୍କ ଜ୍ୟେଷ୍ଠ ପୁତ୍ର ଯଦୁଙ୍କ ବଂଶଧର ଥିଲେ (ଜ୍ଞାନେନ୍ଦ୍ର) । ପ୍ରସେନଜିତ୍‌ଙ୍କ ନିକଟରେ ସ୍ୟମନ୍ତକମଣି ଥିଲା । ସେ ତାକୁ ପିନ୍ଧି ଦିନେ ଶିକାରକୁ ଯାଇଥିଲେ । ଅରଣ୍ୟରେ ଗୋଟିଏ ସିଂହ ତାଙ୍କୁ ମାରି ଉକ୍ତ ମଣି ନେଇଗଲା । ଉକ୍ତ ସିଂହକୁ ଜାମ୍ବବାନ ମାରି ଉକ୍ତ ମଣି ନେଲେ । ପ୍ରସେନଜିତ୍‌ଙ୍କୁ ମାରି ତାଙ୍କଠାରୁ ମଣି ଛଡ଼ାଇ ନେଇଛନ୍ତି ବୋଲି ସତ୍ରାଜିତ ଶ୍ରୀକୃଷ୍ଣଙ୍କୁ ଅପବାଦ ଦେବାରୁ ଶ୍ରୀକୃଷ୍ଣ ଏ ଅପବାଦ କ୍ଷାଳନାର୍ଥେ ବନକୁ ଯାଇ ଜାମ୍ବବାନଙ୍କଠାରେ ଉକ୍ତ ମଣି ଦେଖିଲେ । ଜାମ୍ବବାନ୍ ଉକ୍ତ ମଣି ସହିତ ଆପଣା କନ୍ୟା ଜାମ୍ବବତୀଙ୍କୁ ଶ୍ରୀକୃଷ୍ଣଙ୍କଠାରେ ଅର୍ପଣ କଲେ । ଶ୍ରୀକୃଷ୍ଣ ଜାମ୍ବବତୀଙ୍କୁ ବିବାହ କଲେ ଓ ସ୍ୟମନ୍ତକ ମଣିକୁ ସତ୍ରାଜିତଙ୍କୁ ଦେଲେ ।
(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପ୍ରସ୍ରବଣ**—ମାଲ୍ୟବାନ୍ ପର୍ବତ । ବନସ୍ଥାନ ମଧ୍ୟବର୍ତ୍ତୀ ପର୍ବତ ବିଶେଷ । ପ୍ରମାଣ ଯଥା—କବି ରାଧାନାଥଙ୍କ ତୁଳସୀ ସ୍ତବକରେ—

ପ୍ରସ୍ରବଣ ଶିଖରେ କଲେ ବସତି ।
ସୌମିତ୍ରି ସଙ୍ଗେ ପ୍ରଭୁ ରଘୁପତି ।

**ପ୍ରହଲାଦ, ପ୍ରହ୍ଲାଦ**—ଦୈତ୍ୟପତି ହିରଣ୍ୟକଶିପୁଙ୍କ ପୁତ୍ର । ଏ ପରମ ବିଷ୍ଣୁଭକ୍ତ ଥିଲେ । ବାଲ୍ୟକାଳରୁ ଏହାଙ୍କର ବିଷ୍ଣୁଭକ୍ତି ପ୍ରକାଶ ପାଇଥିଲା । ଶୁକ୍ରାଚାର୍ଯ୍ୟଙ୍କ ଶିଷ୍ୟ ଷଣ୍ଡ ଓ ଅମର୍କ ଏହାଙ୍କର ଶିକ୍ଷାଗୁରୁ ଥିଲେ । ଏମାନେ ପ୍ରହ୍ଲାଦଙ୍କ ବିଷ୍ଣୁଭକ୍ତି ଦେଖି ତାହା ପରିତ୍ୟାଗ କରିବା ପାଇଁ ତାଙ୍କୁ ଉପଦେଶ ଦେଲେ । କିନ୍ତୁ ଏଥିରେ କୌଣସି ସୁଫଳ ଫଳିଲା ନାହିଁ । ବରଂ ପ୍ରହ୍ଲାଦଙ୍କ ଅନୁରୋଧ ଓ ଉପଦେଶ ବଳରେ ଅନ୍ୟାନ୍ୟ ଅସୁରପିଲାଙ୍କର ବିଷ୍ଣୁଙ୍କ ପ୍ରତି ଭକ୍ତି ଜାତ ହୋଇଥିଲା । ଷଣ୍ଡ ଓ ଅମର୍କ ଭାବୀ ବିପଦର ଆଶଙ୍କା କରି ଦୈତ୍ୟରାଜ ହିରଣ୍ୟଙ୍କୁ ଏହା ଜଣାଇଲେ । ହିରଣ୍ୟ ପୁତ୍ରଙ୍କୁ ନାନାପ୍ରକାର ଭର୍ତ୍ସନା କଲା । ମାତ୍ର ପ୍ରହ୍ଲାଦ ଏଥିରେ ଦବି ନଯାଇ ଯୋଡ଼ହସ୍ତରେ ପିତାଙ୍କୁ ଜଣାଇଲେ ବିଷ୍ଣୁଙ୍କ ବିନା ଜଗତରେ ଅନ୍ୟ କୌଣସି ଦେବତା ପୂଜ୍ୟ ନୁହନ୍ତି । ସେ ଏକାଧାରରେ ହର୍ତ୍ତା, କର୍ତ୍ତା ଓ ବିଧାତା । ଦୈତ୍ୟରାଜ କ୍ରୋଧରେ ଅଧୀର ହୋଇ କୁଳାଙ୍ଗାର ପୁତ୍ରର ବିନାଶ ସାଧନ କରିବା ପାଇଁ ବଦ୍ଧପରିକର ହେଲେ । ସେ ପୁତ୍ରଙ୍କୁ ହସ୍ତୀ ପଦତଳେ ନିକ୍ଷେପ କଲେ ଓ ବିଷ ପ୍ରୟୋଗ କଲେ । ପରେ ସମୁଦ୍ର ଜଳରେ ବିସର୍ଜନ କରି, ପର୍ବତ ଶୃଙ୍ଗ ଉପରୁ ଫିଙ୍ଗି, କୃତହାତ୍ରେକ୍ଷଣ କରି ମଧ୍ୟ ପ୍ରହ୍ଲାଦଙ୍କୁ ମାରି ପାରିଲେନାହିଁ । ସବୁ ବିପଦରୁ ପ୍ରହ୍ଲାଦଙ୍କୁ ରକ୍ଷାକଲେ ସେହି ଅନନ୍ତ ମହିମାମୟ, ପତିତପାବନ ବିଷ୍ଣୁ । ଶେଷରେ ରାକ୍ଷସରାଜ ଅତି କ୍ରୁଦ୍ଧ ହୋଇ ପ୍ରହ୍ଲାଦଙ୍କୁ କହିଲେ—'ହଇରେ ମନ୍ଦବୁଦ୍ଧି, ଏବେ ତୋର ନିତାନ୍ତ ମୃତ୍ୟୁ ଉପସ୍ଥିତ । ଯଦି ତୋର ବିଷ୍ଣୁ ସର୍ବତ୍ର ବିଦ୍ୟମାନ ବୋଲି କହୁଛୁ ତେବେ ଏହି ସମ୍ମୁଖବର୍ତ୍ତୀ ସ୍ତମ୍ଭ ଭିତରେ ସେ କାହିଁକି ନଥିବ ?' ପ୍ରହ୍ଲାଦ ସ୍ତମ୍ଭ ଆଡ଼କୁ ଦୃଷ୍ଟି ଫେରାଇ ଭଗବାନଙ୍କ ସତ୍ତା ଅନୁଭବ କରି ପ୍ରଣାମ କଲେ ଏବଂ କହିଲେ—'ମୋର ସର୍ବମୟ ହରି ନିଶ୍ଚୟ ଏ ସ୍ତମ୍ଭ ମଧ୍ୟରେ ବିରାଜିତ ।' ଦୈତ୍ୟପତି, ପ୍ରହ୍ଲାଦ ପ୍ରତି ରୋଷକ-ଷାୟିତ ଦୃଷ୍ଟିରେ ଅନାଇ ଗର୍ଜିଉଠିଲେ ଏବଂ ସେହିକ୍ଷଣି ସ୍ତମ୍ଭ ଉପରେ ଏକ ଦୃଢ଼ ମୁଷ୍ଟ୍ୟାଘାତ କଲେ । ଦେଖୁ ଦେଖୁ ଭୟଙ୍କର ନୃସିଂହ ମୂର୍ତ୍ତି ସ୍ତମ୍ଭ ଭିତରୁ ବାହାରି ପଡ଼ିଲେ । ନୃସିଂହଙ୍କ ପ୍ରତି ମହାକ୍ରୋଧ ପ୍ରକାଶ କରି ସେ ଏକ ବିଶାଳ ଗଦା ଧରି ତାଙ୍କ ଆଡ଼କୁ ଧାବମାନ ହେଲେ । ଭଗବାନ ନୃସିଂହରୂପଧାରୀ ହରି

ରାକ୍ଷସକୁ ଅବଲୀଳା କ୍ରମେ ଧରିନେଇ ନିଜ ଊରୁ ଉପରେ ପକାଇ ତାକୁ ତୀକ୍ଷ୍ଣ ନଖରେ ବିଦାରଣ କରିଦେଲେ । ଅନନ୍ତର ବ୍ରହ୍ମାଦି ଦେବତାମାନେ, ଗନ୍ଧର୍ବଗଣ ଓ ଦେବର୍ଷିବୃନ୍ଦ ସେହି ସ୍ଥଳରେ ଉପସ୍ଥିତ ହୋଇ ନୃସିଂହଙ୍କୁ ସ୍ତୁତିକଲେ । ବ୍ରହ୍ମାଙ୍କ ନିର୍ଦ୍ଦେଶ ଅନୁସାରେ ପ୍ରହ୍ଲାଦ ମଧ୍ୟ ଆହ୍ଲାଦରେ ନୃସିଂହଙ୍କୁ ସ୍ତୁତି କରିବାକୁ ଲାଗିଲେ । ଭକ୍ତ ପ୍ରହ୍ଲାଦ ସ୍ତବରେ ନୃସିଂହ ତୃପ୍ତ ହୋଇ କହିଲେ—'ଭକ୍ତ ପ୍ରହ୍ଲାଦ, ମୁଁ ତୁମ ସ୍ତୁତିରେ, ପରମ ପରିତୋଷ ହୋଇଛି । ତୁମେ ଏବେ ଅଭିଲଷିତ ବର ମାଗିନିଅ'। ପ୍ରହ୍ଲାଦ କହିଲେ—'ମୁଁ ସ୍ୱଭାବତଃ କାମାସକ୍ତ । ପୁଣି ଏ ସକଳ ବରଯୋଗେ କାମ ପ୍ରତି ମୁଁ ଯେପରି ଆସକ୍ତ ନ ହୁଏ, ତାହା ମୋତେ ଦିଅନ୍ତୁ । ମୁଁ ସେହି କାମକୁ ଭୟ କରି ମୁକ୍ତିବାସନାରେ ଆପଣଙ୍କ ଶରଣ ମାଗୁଛି । ଆପଣ ଯଦି ମୋତେ ଅଭିଲଷିତ ବର ଦେବାକୁ ଚାହାନ୍ତି ତେବେ ଯେପରି ମୋ ହୃଦୟରେ କାମାଙ୍କୁର ଉତ୍ପନ୍ନ ନ ହୁଏ ତାହା ଦିଅନ୍ତୁ ।' ଆଚ୍ଛା ହେଉ—ତୁମେ ଆଉ ଗୋଟିଏ ବର ମାଗିନିଅ ବୋଲି ନୃସିଂହ ଉତ୍ତର ଦେଲେ । ଦ୍ୱିତୀୟତଃ ପ୍ରହ୍ଲାଦ ପ୍ରାର୍ଥନା କଲେ—'ମୋ ପିତା ଆପଣଙ୍କ ଐଶ୍ୱରିକ ତେଜ ନ ଜାଣି ଯେ ନିନ୍ଦା କରିଛନ୍ତି, ପୁଣି ଆପଣଙ୍କୁ ତାଙ୍କର ଭ୍ରାତୃହନ୍ତା ବୋଲି ଯେ ନାନା ନିନ୍ଦା ଓ କୁକଥା କହିଛନ୍ତି ଏଥିରେ ତାଙ୍କର ଦୁସ୍ତର ପାପ ହୋଇଛି । ଆପଣ ଦୟାମୟ, ତାହା ସବୁ ଏବେ କ୍ଷମା କରନ୍ତୁ ।' ନୃସିଂହ ଉତ୍ତର ଦେଲେ—'ବତ୍ସ ପ୍ରହ୍ଲାଦ, ତୁମର ପିତା କେବଳ ପବିତ୍ର ହୋଇନାହାନ୍ତି ତାଙ୍କର ପୂର୍ବତନ ଏକୋଇଶପୁରୁଷ ସୁଦ୍ଧା ପବିତ୍ର ହୋଇଛନ୍ତି କେବଳ ତୁମରି ଜନ୍ମଯୋଗୁଁ ।' (ଶ୍ରୀମଦ୍‌ଭାଗବତ)

ହିରଣ୍ୟକଶିପୁ ବ୍ରହ୍ମାଙ୍କ ବରରେ ସୃଷ୍ଟ ପଦାର୍ଥ ଦ୍ୱାରା ଅବଧ୍ୟ ହୋଇଥିଲା । ହିରଣ୍ୟକଶିପୁ ବ୍ରହ୍ମାଙ୍କୁ କହିଥିଲେ—'ମୁଁ ଜଳ, ସ୍ଥଳ, ପାତାଳରେ କି ସକାଳେ, ସନ୍ଧ୍ୟାବେଳେ କୌଣସି କାଳରେ ସୃଷ୍ଟ ଜୀବଜନ୍ତୁ ବା ଦେବତାମାନଙ୍କ ଦ୍ୱାରା ମରିବ ନାହିଁ ।' ସେଥିଲାଗି ସୃଷ୍ଟିରକ୍ଷା ନିମିତ୍ତ ବିଷ୍ଣୁ ନୃସିଂହଅବତାର ଧାରଣ କରି ଦୈତ୍ୟକୁ ନିପାତ କଲେ । (ଶ୍ରୀମଦ୍‌ଭାଗବତ)

ପ୍ରହ୍ଲାଦଙ୍କ ପୁତ୍ରର ନାମ ବିରୋଚନ ବା ବୈରୋଚନ । ମହାଦାନୀ ବଳି ଏହାଙ୍କର ନାତି ।

**ପ୍ରାଗ୍ ଜ୍ୟୋତିଷ**—ଆସାମ ଅନ୍ତର୍ଗତ ପ୍ରାଚୀନ କାମରୂପ ବା କାମାଖ୍ୟା ଦେଶ । ଏ ଦେଶର ରାଜା ଭଗଦତ୍ତ ଚୀନ ଓ କିରାତ ସେନାସହ ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ । ଏହା ପୂର୍ବେ ନାରକାସୁରର ରାଜଧାନୀ ଥିଲା । ଏହା

ଦେବୀଙ୍କ ଯୋଗନିଦ୍ରାର ପ୍ରଧାନ ସ୍ଥାନ ବୋଲି କଥିତ । ଏହା ସର୍ବତୋଭଦ୍ର ନାମ୍ନୀ ଲକ୍ଷ୍ମୀଙ୍କର ନିବାସରୂପେ କଳ୍ପିତ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ପ୍ରାଗ୍ ଜ୍ୟୋତିଷପୁର**—କୁଶଙ୍କ ପୁତ୍ର ଅମୂର୍ତ୍ତରଜାଙ୍କ ଦ୍ୱାରା ଏ ରାଜଧାନୀ ସ୍ଥାପିତ ହୋଇଥିଲା । (ହିନ୍ଦୀ ଶବ୍ଦସାଗର)

ଏହା ଆସାମର ପ୍ରାଗ୍‌ଜ୍ୟୋତିଷ ରାଜ୍ୟର ରାଜଧାନୀ । ଗୌହାଟି ଏହାର ଆଧୁନିକ ନାମ ।

**ପ୍ରାଚୀ**—ପୁରୀ ଜିଲ୍ଲାର ନଦୀ ବିଶେଷ । ଏହି ନଦୀ ପୁରୀ ଜିଲ୍ଲା ବାଲିଅନ୍ତା ନିକଟସ୍ଥ ଖଡ଼ନପଡ଼ା ଗ୍ରାମର ଦୁଇମାଇଲ ଦୂରରେ କୁଆଖାଇ ନଦୀର ଉତ୍ତର-ପୂର୍ବରୁ ବାହାରି ଦକ୍ଷିଣ-ପୂର୍ବଦିଗକୁ ପ୍ରବାହିତ ହୋଇ ପୁରୀଜିଲ୍ଲା କାକଟପୁର ଥାନାର କେଉଟକଂଗା ନିକଟରେ ବଙ୍ଗୋପସାଗରରେ ମିଶିଅଛି । ଏହାର ଦୈର୍ଘ୍ୟ ୩୦ ମାଇଲ ଓ ପ୍ରସ୍ଥ ୪୦, ୫୦ ହାତ । ଏହା ତୀରରେ ପୁରାଣ-ପ୍ରସିଦ୍ଧ ତୀର୍ଥସ୍ଥାନ ଓ ଦେବମନ୍ଦିରମାନ ବିଦ୍ୟମାନ ରହିଅଛି । ରାମାୟଣ ବର୍ଣ୍ଣିତ ଦଣ୍ଡକାରଣ୍ୟ ଏହା କୂଳରୁ ଆରମ୍ଭ ହୋଇଥିବାର କଥିତ । ଏହା ତୀରସ୍ଥ ନିଆଳି ଗ୍ରାମ ନିକଟସ୍ଥ ପାଣ୍ଡବ ତୀର୍ଥରେ ମକର ଶୁକ୍ଳ ଏକାଦଶୀ ଦିନ ଗୋଟିଏ ମେଳା ହୁଏ । ଏହା ତୀରସ୍ଥ ତୁଳସୀପୁର ଗ୍ରାମ ପାଖେ ଚଉରାସୀ ବୋଲି ଗୋଟିଏ ଗ୍ରାମରେ ପ୍ରାଚୀନ ରାଜଧାନୀର ଭଗ୍ନାବଶେଷ ଦେଖାଯାଏ ଏବଂ ଏହା ପ୍ରାଚୀନ ଉତ୍କଳର ରାଜଧାନୀ ତୋଷାଳୀ ବୋଲି ଅନୁମାନ କରାଯାଏ । ପୂର୍ବେ ଏ ନଦୀ ସ୍ରୋତସ୍ୱତୀ ଥିଲା ଏବଂ ଏଥିରେ ନୌକା ଦ୍ୱାରା କୋଣାର୍କ ମନ୍ଦିର ପଥରମାନ ସୁଦୂର ଖୋର୍ଦ୍ଧା ଓ ନୀଳଗିରିରୁ ଅଣାଯାଇଥିଲା । କୋଣାର୍କ ମନ୍ଦିରରେ କାମ କରୁଥିବା ୧୨୦୦ ବଢ଼େଇ ଏହି ନଦୀ ତୀରସ୍ଥ ଉର୍ଦ୍ଧଚଗରଡ଼ା ଗ୍ରାମରେ ରହି କାର୍ଯ୍ୟ କରୁଥିଲେ । ଅକ୍ଷୟତୃତୀୟା ଦିନ ଏହିଠାରେ ବଢ଼େଇ-ମାନଙ୍କର ବାର୍ଷିକ ମେଳା ହୁଏ । ପ୍ରାଚୀ ତୀରସ୍ଥ ମନ୍ଦିର ଓ ତୀର୍ଥମାନଙ୍କର ମାହାତ୍ମ୍ୟ, 'ପ୍ରାଚୀମାହାତ୍ମ୍ୟ'ନାମକ ସଂସ୍କୃତ ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି ।

(ଡ଼ା. ରାଧାଚରଣ ପଣ୍ଡା, ଭାଷାକୋଷ)

**ପ୍ରାଚୀନ ବର୍ହିଃ**—ପ୍ରାଚୀନ ରାଜା ବିଶେଷ । ପ୍ରଚେତାମାନଙ୍କ ପିତା । ପ୍ରାଚୀନ ବର୍ହିଙ୍କ ସ୍ତ୍ରୀଙ୍କ ନାମ ଶତଦ୍ରୁତି ।

ଭାଗବତ ଚତୁର୍ଥ ସ୍କନ୍ଧରେ ଜଗନ୍ନାଥ ଦାସ କହିଛନ୍ତି—

ସେ ଯେ ପ୍ରାଚୀନ ମହୀପତି । ବିବାହି ସମୁଦ୍ର ଦୁହିତା ।
ସେ ଶତଦ୍ରୁତି କନ୍ୟାସାର । ତ୍ରୈଲୋକ୍ୟେ ନାହିଁ ପଟାନ୍ତର ।

ତାର ଚରିତ ପୂର୍ବକଥା । ହୋଇଲା ଯେବଣ ବ୍ୟବସ୍ଥା ।
ବ୍ରହ୍ମା ତାହାର ପୁରେ ଆସି । କନ୍ୟାକୁ ବରିଲେ ବର୍ହିଷୀ ।
ବ୍ରହ୍ମା ବଚନେ ସିନ୍ଧୁପତ । ରାଜାରେ ବରିଲେ ଦୁହିତା ।
ସେ ଯେ ପ୍ରାଚୀନ ମହୀପତ । ତା ବିଭାକାଳେ ଶତଦ୍ରୁତି ।
ଅଗ୍ନି ପ୍ରଦକ୍ଷିଣ କରନ୍ତେ । ଯେସନ୍ତେ ଚଣ୍ଡାଂଶୁ ଭୂମି ଗତେ ।
ସେ କନ୍ୟାରୂପେ ହୁତାଶନ । ଅନଳେ ହୋଇଲା ଅଧୀନ ।
(ଭାଗବତ ୪ର୍ଥସ୍କନ୍ଧ ୨୪ଶ ଅଧ୍ୟାୟ)

ଶତଦ୍ରୁତି ପରମ ରୂପବତୀ ଥିଲେ । ତାଙ୍କ ଅରୂପଲାବଣ୍ୟରେ ପଶୁପକ୍ଷୀ, ଦେବତା, ଗନ୍ଧର୍ବ, ଯକ୍ଷ, ଋଷି ସମସ୍ତେ ବିମୁଗ୍ଧ ହେଉଥିଲେ । ରାଜା ପ୍ରାଚୀନ ବର୍ହି ଏହି ସ୍ତ୍ରୀଙ୍କ ହସ୍ତକ୍ରୀଡ଼ା ପୁତ୍ତଳିକା ପରି ରହୁଥିଲେ । ଏହି ପତ୍ନୀଙ୍କ ଗର୍ଭରେ ପ୍ରାଚୀନ ବର୍ହିଙ୍କର ଦଶଗୋଟି ପୁତ୍ର ଜନ୍ମି ଥିଲେ, ଏମାନଙ୍କୁ ପ୍ରଚେତସ କହନ୍ତି । ଏମାନେ ସମ ଆକୃତି ରୂପବେଶ, ଏକଇ ନାମ ପ୍ରଚେତସ । ପ୍ରଚେତାମାନେ ଶିବଙ୍କଠାରୁ ବର ପାଇଥିଲେ ।

**ପ୍ରିୟବ୍ରତ**—ସ୍ୱାୟମ୍ଭୁବ ମନୁଙ୍କ ପୁତ୍ର । ଏହାଙ୍କ ଭ୍ରାତା ଉତ୍ତାନପାଦ । ଉତ୍ତାନପାଦ ଧ୍ରୁବଙ୍କ ପିତା ।

ପୁରାଣ ମତରେ ଏହାଙ୍କ ରଥ ଚାଳନାରେ ଭୂମିରେ ଯେଉଁ ଗାତ ହୋଇଥିଲା ତାହା ପରେ ସମୁଦ୍ର ପାଲଟି ଗଲା । (ହିନ୍ଦୀ ଶବ୍ଦସାଗର)

**ପ୍ରିୟମ୍ବଦା** — କଣ୍ୱଙ୍କ ପାଳିତା କନ୍ୟା ଶକୁନ୍ତଳାଙ୍କ ସହଚରୀ ।

**ପ୍ରୀତି**—କାମଦେବଙ୍କ ପତ୍ନୀ ବିଶେଷ । ଏ ଜନ୍ମାନ୍ତରରେ ଅନଙ୍ଗବତୀ ନାମ୍ନୀ ବେଶ୍ୟା ଥିଲେ ଏବଂ ବିଭୂତି ଦ୍ୱାଦଶୀ ବ୍ରତ କରି ପରଜନ୍ମରେ କାମଦେବଙ୍କ ପତ୍ନୀ ହେଲେ । (ହିନ୍ଦୀ ଶବ୍ଦସାଗର)

**ପ୍ରେତ** —ହିନ୍ଦୁ ପୁରାଣ ମତରେ ମନୁଷ୍ୟ ମଲା ପରେ ତା' ଶବର ସତ୍କାର ହେବା ପରେ ତାର ଆତ୍ମା ଅତିବାହକ ବା ଲିଙ୍ଗଶରୀର ଧାରଣ କରେ । ତତ୍ପରେ ତାର ଔର୍ଦ୍ଧ୍ୱ ଦୈହିକ କ୍ରିୟା (ପିଣ୍ଡଦାନ ଓ ଶ୍ରାଦ୍ଧାଦି) ସମ୍ପାଦିତ ହେବା ବେଳେ ସେ ପ୍ରେତଶରୀର ବା ଭୋଗଶରୀର ଧାରଣ କରେ । ସପିଣ୍ଡୀକରଣ ପର୍ଯ୍ୟନ୍ତ ତାର ଏହି ଶରୀର ରହେ । ସପିଣ୍ଡୀକରଣ କର୍ମ ସମ୍ପାଦିତ ହେଲେ ମନୁଷ୍ୟ ପ୍ରେତତ୍ୱରୁ ମୁକ୍ତ ହୋଇ ନିଜର କର୍ମାନୁସାରେ ସ୍ୱର୍ଗ ବା ନରକକୁ ଯାଏ ।

ଯେଉଁ ବ୍ୟକ୍ତିର ଶ୍ରାଦ୍ଧ ହୋଇନଥାଏ ସେ ପ୍ରେତ ହୋଇରହେ । ପୁରାଣ ଅନୁସାରେ ପାପୀ, ଅଦାତା, ପରସ୍ତ୍ରୀଗାମୀ, ମିଥ୍ୟାବାଦୀ, ନିଷ୍ଠୁର, ମାଦକସେବୀ ଓ କୁକର୍ମକାରୀ ବ୍ୟକ୍ତିମାନେ ମୃତ୍ୟୁ ପରେ ପ୍ରେତ ହୋଇରହନ୍ତି । ପ୍ରେତମାନଙ୍କ ନିବାସ ମଳମୂତ୍ରାଦିପୂର୍ଣ୍ଣ ଅପରିଷ୍କୃତ ସ୍ଥାନ ଓ ସେମାନଙ୍କ ଖାଦ୍ୟ ଅପବିତ୍ର ବସ୍ତୁ ବୋଲି କଥିତ ଅଛି । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

•

# ଫ

**ଫଲ୍‌ଗୁ**—ଗୟାରେ ଥିବା ଅନ୍ତଃସଲିଳା ନଦୀ ବିଶେଷ । ଏହି ଅଗଭୀର ନଦୀ-ଶଯ୍ୟାରେ ପିତୃଲୋକଙ୍କୁ ପିଣ୍ଡ ଦିଆଯାଏ । ବନବାସ କାଳରେ ରାମଚନ୍ଦ୍ର ଏଠାରେ ପିତୃପିଣ୍ଡ ଦାନ କରିବା କଥା ସୀତା ଶୁଣି ପାରି ବାଲି ପିଣ୍ଡଦାନ କରିଥିଲେ । ରାମଚନ୍ଦ୍ର ପିଣ୍ଡ ଦେବାକୁ ଉଦ୍ୟତ ହେବାରୁ ଶୂନ୍ୟବାଣୀ ହେଲା ଯେ, ସୀତା ପିଣ୍ଡ ଦାନ କରିଛନ୍ତି ଆଉ ପିଣ୍ଡ ଦାନ ଦେବା ଆବଶ୍ୟକ ନାହିଁ ।
(ରାମାୟଣ, ଆରଣ୍ୟକ କାଣ୍ଡ)

**ଫାଲ୍‌ଗୁନ**—ଅର୍ଜୁନଙ୍କର ଗୋଟିଏ ନାମ । ମହାଭାରତ ବିରାଟପର୍ବରେ ଅର୍ଜୁନ ବିରାଟ ରାଜକୁମାରଙ୍କ ଆଗରେ ତାଙ୍କର ଦଶ ନାମ ବିଶ୍ଳେଷଣ କରିଥିଲେ । ସେଥିରେ ସେ ନିଜକୁ କାହିଁକି ଫାଲ୍‌ଗୁନ ବୋଲି ପରିଚୟ ଦିଅନ୍ତି, ତାହା ପ୍ରମାଣ ଦେଇ ସେ କହିଲେ—

ଉତ୍ତରା ଫାଲଗୁନ ମୋ ଜନ୍ମ ନକ୍ଷତ୍ର
ତେଣୁ ଫାଲଗୁନ ନାମଟି ବିଦିତ । (କୃଷ୍ଣସିଂହ)

•



**ବଉଳାଗାଈ**—ପୁରାଣପ୍ରସିଦ୍ଧ କାମଧେନୁ ବିଶେଷ । ଉତ୍କଳର ଯୋଗୀ ସମ୍ପ୍ରଦାୟ 'ବଉଳାଗାଈ' ଗୀତ ବୋଲି କେନ୍ଦରା ବଜାଇ ଦ୍ୱାରେ ଦ୍ୱାରେ ଭିକ ମାଗିବା ଦେଖାଯାଏ । ସ୍ୱୀୟ ଗାଈ ହୋଇ ବଉଳା କପଟ ସତ୍ୟ ରକ୍ଷା କରି ତାର ଶ୍ରେଷ୍ଠ ବାଛୁରିଟିକୁ ପରେ ସ୍ୱାର୍ଥୀ ବାଘ ମୁହଁକୁ ଗଲା ଏଥିରେ ତାହା ସରଳ ଓ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଇଛି ।

**ବଂଶୀ**—ଏହାର ନାମ ବଂଶୀ, ମୁରଲୀ ଓ ବେଣୁ । ଶ୍ରୀକୃଷ୍ଣାବତାରରେ ଏହା ଏକ ପ୍ରଧାନ ଆୟୁଧ ଭଳି ବ୍ୟବହୃତ ହେଉଥିଲା । ଶ୍ରୀକୃଷ୍ଣଲୀଳାରେ କବି ଗୌରଚରଣ ଏହାର ଏକ ସୁନ୍ଦର ସ୍ୱାଦର ନିର୍ଣ୍ଣୟ ଦେଇଛନ୍ତି ।
ଯଥା—(୧୨୭ ଛାନ୍ଦ ଶ୍ରୀକୃଷ୍ଣଲୀଳାରେ)

ଏବଇ ମୁରଲୀ ପଞ୍ଚ ନାମ ତାହାର ।
ସେ ମହିମା ବର୍ଣ୍ଣିବାକୁ ଶକ୍ତି କାହାର ।
ମୁରଲୀ ମୁରଲୀ ବଂଶୀ ଏ ତିନି ନାମ ।
ଅଲାବେଣୀ ଝୁରଲୀ ମିଶିଣ ପଞ୍ଚମ ।
ମହାଶୂଦ୍ର ବୋଲେ ତାର ପ୍ରମାଣ କହ ।
କେତେବେଳେ କେ ବାଜଇ ଛୁଟୁ ସନ୍ଦେହ ।
କେତେ ରନ୍ଧ୍ର କେତେ ଯନ୍ତ୍ର କେ କେତେ ଲମ୍ବ ।
ଏହା ଶୁଣି ଲୀଳାଧର କରେ ଆରମ୍ଭ ।
ବତିଶ ଆଙ୍ଗୁଳି ଷଡ଼ ରନ୍ଧ୍ର ଯହିଁରେ ।
ଜମ୍ବୁନଦ ରତ୍ନ ଯନ୍ତ୍ର ବନ୍ଧ ତହିଁରେ ।
ଏ ମୁରଲୀ ସ୍ୱପେ ବଜାଇବେ ଗୋବିନ୍ଦ ।
ମହ୍ଲାଇବେ ଷୋଳ ସହସ୍ର ଯୁବତୀବୃନ୍ଦ ।
ମୁରଲୀ ବୋଲିଣ ନିଜ ନାମ ଯାହାର ।
ବତିଶ ଆଙ୍ଗୁଳି ପଞ୍ଚ ରନ୍ଧ୍ର ତାହାର ।
ଦୁଇ ରନ୍ଧ୍ର ଯନ୍ତ୍ର ବନ୍ଧ ଅତି ସୁନ୍ଦର ।
ଜଳଘାଟେ ବଜାଇକରନ୍ତି ସୁନ୍ଦର ।

ବଂଶୀଟି ଷୋଳ ଅଙ୍ଗୁଳ ସପତ ରନ୍ଧ୍ର ।
ତିନ ରନ୍ଧ୍ରରେ କନକ ନଳ ପ୍ରବନ୍ଧ
ତିନ ସ୍ୱରେ ଏକାବେଳେ କଲେ ବାଦନ ।
ତ୍ରିଭୁବନ କମ୍ପେ ଅଙ୍ଗେ ଭେଦେ ମଦନ ।
ବଶ କରିବାରୁ ବଂଶୀ ନାମ ତାହାର ।
ଏବେ ଶୁଣ ଅଲାବେଣୀ ଲୀଳା ବିହାର ।
ଷୋଳ ଅଙ୍ଗୁଳ ସେ ନୀଳ ରତନ ଆଭା ।
ପଞ୍ଚ ରନ୍ଧ୍ର ବେନି ପାର୍ଶ୍ୱ ଅତ୍ୟନ୍ତ ଶୋଭା ।
ବେନି ରନ୍ଧ୍ରେ ନାଟ କଉତୁକେ ବଜାନ୍ତି ।
ସର୍ବ ଗୋପାଳ ବାଳକ ମନ ମଞ୍ଜାନ୍ତି ।
ମୁରଳୀ ଅଷ୍ଟ ଅଙ୍ଗୁଳ ପ୍ରମାଣ ତାର ।
ମଧ୍ୟେ ଦଶଗୋଟି ରନ୍ଧ୍ର ମଣ୍ଡଳାକାର ।
ଯେତେବେଳେ ଧେନୁ ଘେନି ବନକୁ ଯାନ୍ତି ।
ସେହି କାଳରେ ମୁରଳୀ ବାଦ୍ୟ ବଜାନ୍ତି ।
ଶୁଣି ମହାଖୁଡ଼ି ପଞ୍ଚ ମୁରଳୀ ଭେଦ ।
ଆନନ୍ଦରେ ବୋଲ କଣ୍ଠ ହୋଇ ଗଦ୍‌ଗଦ ।

ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ଶ୍ରୀକୃଷ୍ଣଙ୍କ ବଂଶୀନାଦ ଶୁଣିଲେ କ୍ରମାନୁସାରେ ଉଚ୍ଚାଟନ, ସ୍ତମ୍ଭନ, ବଶୀକରଣ ଓ ମୋହନ ଏହି ଚାରି ଅବସ୍ଥା ଜାତ ହୁଏ । ଏହି ଅବସ୍ଥା ଅନୁସାରେ ଗୋପ କନ୍ୟାମାନଙ୍କର ବିଭିନ୍ନ ଶ୍ରେଣୀ ବିଭାଗ କରାଯାଇଅଛି । ଯଥା—କବି ଭୂପତିଙ୍କ କୃତ 'ପ୍ରେମ ପଞ୍ଚାମୃତ'ର ବର୍ଣ୍ଣନା—

ପ୍ରଥମ ବଂଶୀ ଉଚ୍ଚାଟନ ।
ପ୍ରକାଶେ ବେଦ କନ୍ୟାଗଣ ।
ସ୍ତମ୍ଭନ ନାଦେ ବଂଶୀ ଶୁଣି ।
ଉଦିତ ଦେବତା ନନ୍ଦିନୀ ।
ବଶୀକରଣ ନାଦ ବଂଶୀ ।
ତହିଁ ସମ୍ଭୂତ ମୁନି ଅଂଶୀ ।
ମୋହନ ନାଦେ ଯେ ମୁରଳୀ ।
ତହିଁ ଉଦିତ ବ୍ରଜବାଳୀ ।

ଭକ୍ତିରସାମୃତ ସିନ୍ଧୁ ନାମକ ପ୍ରସିଦ୍ଧ ବୈଷ୍ଣବଗ୍ରନ୍ଥର ଦକ୍ଷିଣ ଭାଗ ପ୍ରଥମ ଲହରୀରେ ବଂଶୀ ବିଷୟରେ ଯେଉଁସବୁ ନିର୍ଣ୍ଣୟ ଦିଆଯାଇଛି ତାହା ଉଦ୍ଧାର କରାଗଲା—

ଏଷା ତ୍ରିଧା ଭବେଦ୍‌ବେଣୁ—ମୁରଳୀ-ବଂଶୀକେତ୍ୟପି ଅର୍ଥାତ୍ ବଂଶୀ ତ୍ରିବିଧ—ବେଣୁ, ମୁରଳୀ ଓ ବଂଶିକା । ତତ୍ର ବେଣୁଃ—

ପାରିକାଶ୍ୟୋ ଭବେଦ୍‌ବେଣୁ ର୍ଦ୍ୱାଦଶାଙ୍ଗୁଳ ଦୈର୍ଘ୍ୟଭାକ୍
ସ୍ଥୌଲ୍ୟେ ଙ୍ଗୁଷ୍ଠମିତଃ ଷଡ୍‌ଭିରେଷ ରନ୍ଧ୍ରୈଃ ସମନ୍ୱିତଃ

ଅର୍ଥାତ୍ ଯାହା ଦ୍ୱାଦଶ ଅଙ୍ଗୁଳ ଦୀର୍ଘ ଓ ଅଙ୍ଗୁଷ୍ଠ ପରିମିତ ମୋଟ ଛଅଟି ଛିଦ୍ରଯୁକ୍ତ ତାହାକୁ ପରିକାଶ୍ୟ ବେଣୁ କହନ୍ତି ।

ମୁରଳୀ—ହସ୍ତଦ୍ୱୟ ମିତାୟାମା ମୁଖରନ୍ଧ୍ର ସମନ୍ୱିତା
ଚତୁଃ ସ୍ୱର ଛିଦ୍ରଯୁକ୍ତ ମୁରଳୀ ଚାରୁନାଦିନୀ ।

ଅର୍ଥାତ୍ ଯାହା ଦ୍ୱିହସ୍ତ ପରିମିତ, ମୁଖ ମଧ୍ୟରେ ରନ୍ଧ୍ର ଏବଂ ଚାରିଗୋଟି ସ୍ୱରରେ ଛିଦ୍ର ସମନ୍ୱିତ, ତାଦୃଶ ମନୋହର ଶବ୍ଦକାରିଣୀର ନାମ ମୁରଳୀ ।

ବଂଶୀ—ଅର୍ଦ୍ଧାଙ୍ଗୁଳାନ୍ତରେ ନ୍ୟୂନଂ ତାରାଦି ବିବରାଷ୍ଟକମ୍
ତତଃ ସାର୍ଦ୍ଧାଙ୍ଗୁଳାଦ୍ୟସ୍ମିନ୍ ମୁଖରନ୍ଧ୍ରଂ ତଥାଙ୍ଗୁଳଂ ।
ଶିରୋ ବେଦାଙ୍ଗୁଳଂ ପୁଚ୍ଛଂ ତ୍ର୍ୟଙ୍ଗୁଳଂ ସାତୁ ବଂଶିକା
ନବ ରନ୍ଧ୍ରା ସ୍ମୃତା ସପ୍ତଦଶାଙ୍ଗୁଳମିତା ବୁଧୈଃ ।

ଅର୍ଥାତ୍—ଏକ ଏକ ଅଙ୍ଗୁଳି ବ୍ୟବଧାନରେ ଆଠଗୋଟି ଛିଦ୍ର, ଅର୍ଦ୍ଧ ଅଙ୍ଗୁଳି ଅନ୍ତରରେ ମୁଖଛିଦ୍ର ଉପରି ଭାଗରେ ଚାରି ଆଙ୍ଗୁଳ ଓ ପଛ ଭାଗରେ ତିନି ଅଙ୍ଗୁଳ ଏବଂ ଗଣ୍ଠିର ପର ଭାଗରେ ଅର୍ଦ୍ଧ ଅଙ୍ଗୁଳ, ସବୁଗୁଡ଼ିକ ନଅ ଛିଦ୍ରଯୁକ୍ତ ସପ୍ତଦଶ ଅଙ୍ଗୁଳ ପରିମିତ ବଂଶୀକୁ ବଂଶୀ କହନ୍ତି ।

ଦ୍ୱାଦଶାଙ୍ଗୁଳାନ୍ତରା ସ୍ୟାଚ୍ଚେତ୍ ସା ତାରମୁଖରନ୍ଧ୍ରୟୋଃ
ମହାନନ୍ଦେତି ବିଖ୍ୟାତା ତଥା ସମ୍ମୋହିନୀତି ଚ ।
ଭବେତ୍ ସୂର୍ଯ୍ୟାନ୍ତରା ସା ଚେତ୍ତଦା ଆକର୍ଷିଣୀମତା
ଆନନ୍ଦିନୀ ତଦା ବଂଶୀ ଭବେଦିନ୍ଦ୍ରାନ୍ତରା ଯଦି
ଗୋପାନାଂ ବଲ୍ଲଭା ସେୟଂ ବଂଶୁଲୀତି ଚ ବିଶ୍ରୁତା
କ୍ରମାତ୍ ମଣିମୟୀ ହୈମୀ ବୈଣବୀତି ତ୍ରିଧା ଚ ସା ।

ଅର୍ଥାତ୍ - ଯଦି ସେହି ବଂଶୀର ମୁଖଛିଦ୍ର ଓ ସ୍ୱରଛିଦ୍ର ଦଶ ଅଙ୍ଗୁଳି ବ୍ୟବଧାନରେ କରାଯାଏ । ତାହାହେଲେ ତାହାର ନାମ ମହାନନ୍ଦା ଓ ସମ୍ମୋହିନୀ । ଦ୍ୱାଦଶାଙ୍ଗୁଳ ଅନ୍ତର ହେଲେ ଆକର୍ଷିଣୀ । ଚତୁର୍ଦ୍ଦଶ ଅଙ୍ଗୁଳ ଅନ୍ତର ହେଲେ ଆନନ୍ଦିନୀ ନାମରେ କଥିତ । ଏହି ଆନନ୍ଦିନୀ ଗୋପମାନଙ୍କର ପ୍ରିୟ ଏବଂ ବଂଶୁଳୀ ନାମରେ କଥିତ । ବଂଶୀ କ୍ରମେ ମଣିମୟୀ, ହୈମୀ ଓ ବୈଣବୀ ଏହି ତିନି ପ୍ରକାରରେ ତିଆରି ହୁଏ । ମଣିମୟର ନାମ ସମ୍ମୋହିନୀ ସ୍ୱର୍ଣ୍ଣ ନିର୍ମିତର ନାମ ଆକର୍ଷିଣୀ ଏବଂ ବଂଶ ନିର୍ମିତ ନାମ ଆନନ୍ଦିନୀ ।

**ବଂଶୀବଟ**—ବୃନ୍ଦାବନର ଯମୁନା ନଦୀ ନିକଟସ୍ଥ ପ୍ରସିଦ୍ଧ ବଟବୃକ୍ଷ, ଯେଉଁ ବଟ ମୂଳରେ ଶ୍ରୀକୃଷ୍ଣ ବଂଶୀ ବଜାଉଥିଲେ । ବୃନ୍ଦାବନରେ ବର୍ତ୍ତମାନ ପର୍ଯ୍ୟନ୍ତ ଗୋଟିଏ ବରଗଛକୁ ଲୋକେ ବଂଶୀବଟ ବୋଲି ନିର୍ଦ୍ଦେଶ କରନ୍ତି ।

**ବକ, ବକାସୁର**—ଅସୁର ବିଶେଷ । ଶ୍ରୀକୃଷ୍ଣ ଏହାକୁ ବଧ କରିଥିଲେ । ଗୋଚାରଣରେ ଗୋପବାଳକମାନଙ୍କ ସହିତ ଶ୍ରୀକୃଷ୍ଣ ବନରେ ଥିବାବେଳେ ପିପାସାର୍ତ୍ତ ଧେନୁମାନଙ୍କୁ ଜଳପାନ କରାଇବା ନିମିତ୍ତ ଗୋଟିଏ ପୁଷ୍କରିଣୀ ତଟରେ ଉପସ୍ଥିତ ହେଲେ । ଏହି ସମୟରେ ବକରୂପୀ ଅସୁର ଶ୍ରୀକୃଷ୍ଣଙ୍କୁ ଗ୍ରାସ କରିବା ପାଇଁ ଉଦ୍ୟତ ହେଲା, ସେ କୃଷ୍ଣଙ୍କୁ ଗିଳିଦେବା ମାତ୍ରେ ତାଙ୍କ ତେଜ ସହି ନପାରି ବାନ୍ତି କରିପକାଇଲା । ଶେଷରେ ଶ୍ରୀକୃଷ୍ଣ ତା ପେଟରୁ ବାହାରି ତାର ଦୁଇ ଅଣ୍ଟ ଧରି ଚିରିଦେଲେ । ସେହି ଦିନଠାରୁ ଶ୍ରୀକୃଷ୍ଣ ବକାରି ଆଖ୍ୟା ପ୍ରାପ୍ତ ହେଲେ । (ଶ୍ରୀମଦ୍‌ଭାଗବତ, ୧୦ମ ସ୍କନ୍ଧ)

(୨) ଏକଚକ୍ର ନଗରୀ ନିକଟରେ ବାସ କରୁଥିବା ରାକ୍ଷସ ବିଶେଷ । ଏ ରାକ୍ଷସର ଦୌରାତ୍ମ୍ୟରୁ ରକ୍ଷା ପାଇବା ନିମନ୍ତେ ଏକଚକ୍ର ଗ୍ରାମବାସୀମାନେ ତାହା ନିକଟକୁ ପ୍ରତିଦିନ ତାହାର ଭୋଜନାର୍ଥେ ପ୍ରଚୁର ଖାଦ୍ୟ ଦ୍ରବ୍ୟ ଓ ଜଣେ ମନୁଷ୍ୟକୁ ପଠାଇବା ପାଇଁ ତା ସଙ୍ଗେ ବନ୍ଦୋବସ୍ତ କରି ସେହି ଅନୁସାରେ ପ୍ରତିଦିନ ପାଳିକରି ଗୋଟିଏ ଲୋକକୁ ପଠାଉଥିଲେ ଓ ଅସୁର ଉକ୍ତ ପ୍ରେରିତ ଖାଦ୍ୟ ଦ୍ରବ୍ୟକୁ ଓ ମନୁଷ୍ୟଟିକୁ ଖାଉଥିଲା । ପାଣ୍ଡବମାନେ ଜତୁଗୃହଦାହ ପରେ ବାରଣାବତ ନଗରରୁ ପଳାଇଯାଇ ଏକଚକ୍ର ନଗରୀର କୌଣସି ବ୍ରାହ୍ମଣ ଗୃହରେ ଅବସ୍ଥାନ କରୁଥିବା ସମୟରେ ସେହି ପରିବାରର ଗୋଟିଏ ଲୋକର ବକାସୁର ନିକଟକୁ ଯିବାର ପାଳି ପଡ଼ିଲା. ତେଣୁ ପରିବାରରେ କ୍ରନ୍ଦନରୋଳ ଉଠିଲା । ପାଣ୍ଡବମାନଙ୍କ ମାତା କୁନ୍ତୀ ଏଥିର କାରଣ ଅବଗତ ହୋଇ ଆପଣାର ମଧ୍ୟମ ପୁତ୍ର ଭୀମଙ୍କର ପରାକ୍ରମ ବିଷୟ ଉତ୍ତମରୂପେ ଜାଣି

ସେଦିନ ପ୍ରେରିତ ଖାଦ୍ୟଦ୍ରବ୍ୟ ସଙ୍ଗେ ସେହି ପରିବାରର ମନୁଷ୍ୟକୁ ନ ପଠାଇ ତା ପରିବର୍ତ୍ତେ ଭୀମଙ୍କୁ ଅସୁର ନିକଟକୁ ଯିବାକୁ ଆଦେଶ ଦେଲେ ଓ ତଦନୁସାରେ ଭୀମ ଅସୁର ନିକଟକୁ ଯାଇ ତା ସଙ୍ଗେ ଯୁଦ୍ଧ କରି, ତାହାର ପ୍ରାଣ ନାଶ କରି ଏକଚକ୍ର ନଗରୀକୁ ନିଷ୍କଣ୍ଟକ କଲେ ।

(ମହାଭାରତ ବନପର୍ବ, ବିଶ୍ୱକୋଷ ୫ମ ଖଣ୍ଡ)

**ବଙ୍ଗ**—ବଳିରାଜାଙ୍କର କ୍ଷେତ୍ରଜ ପୁତ୍ର । ଏହାଙ୍କ ନାମାନୁସାରେ ଅଧିକୃତ ରାଜ୍ୟର ନାମ ବଙ୍ଗ ବୋଲି ଅଭିହିତ ହୋଇଥିଲା, ବର୍ତ୍ତମାନ ସ୍ୱାଧୀନତା ପ୍ରାପ୍ତି ପରେ ଏହି ଦେଶ ଅର୍ଦ୍ଧେ ଭାରତ ଓ ଅର୍ଦ୍ଧେ ପାକିସ୍ଥାନରେ ରହିଅଛି । ପୂର୍ବକାଳରେ ଏହାର କେତେବେଳେ ଆୟତନ ବୃଦ୍ଧି ହୋଇଥିଲା, କେବେ କେବେ ମଧ୍ୟ ଏହା ନାନାପ୍ରକାର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇ ଗୋଟିଏ କ୍ଷୁଦ୍ର ରାଜ୍ୟ ବୋଲି ଗଣା ହେଉଥିଲା ।

**ବଜ୍ର**—ଶ୍ରୀକୃଷ୍ଣଙ୍କ ପ୍ରପୌତ୍ର ! ଅନିରୁଦ୍ଧଙ୍କ ପୁତ୍ର ! ରୁକ୍ମୀ ଶ୍ରୀକୃଷ୍ଣଙ୍କ ଶାଳକ । କୃଷ୍ଣ ପୁତ୍ର ପ୍ରଦ୍ୟୁମ୍ନ ରୁକ୍ମୀଙ୍କ କନ୍ୟାକୁ ବିବାହ କରିଥିଲେ । ଏହି ବିବାହ ଫଳରେ ଅନିରୁଦ୍ଧ ଜନ୍ମ ହେଲେ । ଅନିରୁଦ୍ଧ ରୁକ୍ମୀଙ୍କ ଦୌହିତ୍ର । ଏହି ଅନିରୁଦ୍ଧ ପୁଣି ରୁକ୍ମୀଙ୍କ ପୌତ୍ରୀ ସୁଭଦ୍ରାର ପାଣିଗ୍ରହଣ କରିଥିଲେ । ଅନିରୁଦ୍ଧଙ୍କ ଔରସରେ ସୁଭଦ୍ରାଙ୍କ ଗର୍ଭରୁ ବଜ୍ର ନାମକ ପୁତ୍ର ଜନ୍ମଗ୍ରହଣ କରିଥିଲେ ।

(ଶ୍ରୀମଦ୍‌ଭାଗବତ ୧୦ମ ସ୍କନ୍ଧ)

(୨) ଋଗ୍‌ବେଦରେ ଉଲ୍ଲେଖ ହୋଇଅଛି ଯେ ଦଧିଚି ଋଷିଙ୍କ ହାଡରେ ଇନ୍ଦ୍ର ରାକ୍ଷସମାନଙ୍କର ଧ୍ୱଂସ ସାଧନ କଲେ । ଐତରେୟ ବ୍ରାହ୍ମଣରେ ଲେଖାଅଛି ଯେ ଦଧିଚି ଋଷି ବଞ୍ଚିଥିବାଯାଏ ଅସୁରମାନେ ତାଙ୍କୁ ଦେଖି ପଳାଇ ଯାଉ-ଥିଲେ ସେ ମରିଯିବା ପରେ ଅସୁରମାନେ ଉତ୍ପାତ ଆରମ୍ଭ କଲେ । ଇନ୍ଦ୍ର ତାଙ୍କ ଅସ୍ଥି ଖୋଜି ଖୋଜି ପୁଷ୍କର କ୍ଷେତ୍ରରେ ତାଙ୍କର ମୁଣ୍ଡର ଅସ୍ଥି ପାଇଲେ । ତହିଁରେ ଇନ୍ଦ୍ର ବଜ୍ର ତିଆରି କରି ଅସୁରମାନଙ୍କୁ ସଂହାର କଲେ । ଭାଗବତରେ ଲେଖାଅଛି ଯେ ବୃତ୍ରାସୁରକୁ ବଧ କରିବା ପାଇଁ ଇନ୍ଦ୍ର ଦଧିଚିଙ୍କ ଅସ୍ଥି ଦ୍ୱାରା ବଜ୍ର ତିଆରି କରାଇଥିଲେ । ମତ୍ସ୍ୟପୁରାଣରେ ଲେଖାଅଛି ଯେ, ଯେତେବେଳେ ବିଶ୍ୱକର୍ମା ଭ୍ରମଯନ୍ତ୍ର (ଶାଣଚକ୍ର)ରେ ସୂର୍ଯ୍ୟଙ୍କୁ ଚଢ଼ାଇ ତାଙ୍କ ତେଜ କମାଇଲେ । ସେତିକିବେଳେ ସୂର୍ଯ୍ୟଙ୍କ ଦେହରୁ ତେଜ ଛିଟିକିଯାଇ ସେଥିରୁ ବିଷ୍ଣୁଙ୍କ ଚକ୍ର, ଶିବଙ୍କ ତ୍ରିଶୂଳ ଓ ଇନ୍ଦ୍ରଙ୍କ ବଜ୍ର ହେଲା । ଏହିପରି ଭିନ୍ନ ଭିନ୍ନ ପୁରାଣମାନଙ୍କରେ ବଜ୍ରର ଉତ୍ପତ୍ତି ସମ୍ବନ୍ଧେ ଭିନ୍ନ ଭିନ୍ନ ଆଖ୍ୟାୟିକା ଅଛି । ବୈଦିକ ନିଘଣ୍ଟୁରେ

ବଜ୍ରର ଅନ୍ୟ ନାମ ବଜ୍ରାସ୍ତ୍ର, ନେମି, ହ୍ରୋଡ, ନମ, ସୃକ୍, ବୃକ, ବଧ, ଅର୍କ, କୁତ୍ସ । (ହିନ୍ଦୀ ଶବ୍ଦସାଗର) ଆଧୁନିକ ଲେଖାର କୌଣସି ଅଂଶପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଦିଆଯିବା f ଚିହ୍ନକୁ ବଜ୍ର ଚିହ୍ନ ବୋଲିଯାଏ ।

ଦଣ୍ଡୀପର୍ବ ନାମକ ଏକ କ୍ଷୁଦ୍ର ପୁରାଣରେ ଉର୍ବଶୀଙ୍କ ଶାପ ମୋଚନ ପାଇଁ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କ ମଧ୍ୟରେ କୁରୁକ୍ଷେତ୍ରଠାରେ ଯେଉଁ ଯୁଦ୍ଧ ହୋଇଥିଲା, ସେଠାରେ ଅଷ୍ଟବଜ୍ରର ମିଳନ କଥା ଲେଖାଅଛି । ଏହି ଅଷ୍ଟବଜ୍ର ମିଳନ ଯୋଗେ ଉର୍ବଶୀ ତୁରଙ୍ଗୀ ଦେହ ଧାରଣ କରିବା ଅଭିଶାପରୁ ମୁକ୍ତ ହୋଇ ଅମରାବତୀକୁ ଗମନ କରିଥିଲେ ।

୧୩୨୦ ଆଶ୍ୱିନ ବଙ୍ଗଳା ପ୍ରବାସୀ ପତ୍ରିକାରୁ ଜ୍ଞାନେନ୍ଦ୍ରମୋହନ ଦାସଙ୍କ ବଙ୍ଗଳା ଭାଷାର ଅଭିଧାନର ଉଦ୍ଧୃତାଂଶରୁ ଜଣାଯାଏ—ଭିନ୍ନ ଭିନ୍ନ ଦେବତା ଭିନ୍ନ ଭିନ୍ନ ପ୍ରକାର ଅସ୍ତ୍ର ବ୍ୟବହାର କରନ୍ତି । ଯଥା—ବିଷ୍ଣୁଙ୍କର ଚକ୍ର, ଶିବଙ୍କର ତ୍ରିଶୂଳ, ବରୁଣଙ୍କର ପାଶ, ବ୍ରହ୍ମାଙ୍କର ଅକ୍ଷ, ଯମଙ୍କର ଦଣ୍ଡ, ଇନ୍ଦ୍ରଙ୍କର କୁଳିଶ ବା ବଜ୍ର, କାର୍ତ୍ତିକେୟଙ୍କର ଶକ୍ତି ଓ କାଳୀଙ୍କର ଖଡ୍‌ଗ । ଭାରତ ଆକ୍ରମଣକାରୀ ଗ୍ରୀକ୍ ବୀର ସିକନ୍ଦରଙ୍କ ସମସାମୟିକ ଗ୍ରୀକ୍ ଐତିହାସିକ ଫିଲଷ୍ଟ୍ରେଟସ୍ ଲେଖି ଯାଇଅଛନ୍ତି ଯେ ଭାରତୀୟ ସୈନ୍ୟମାନେ ବିପକ୍ଷମାନଙ୍କୁ ଦୂରରୁ ବଜ୍ର ବିଦ୍ୟୁତ୍ ଓ ଅଗ୍ନିମୟ ବୃଷ୍ଟିବାଣ ଦ୍ୱାରା ଆକ୍ରମଣ କରି ଯୁଦ୍ଧ କରୁଥିଲେ । (ଭାଷାକୋଷ ୫ମ ଖଣ୍ଡ)

(୩) ବିଷ୍ଣୁଙ୍କ ଚରଣତଳେ ଥିବା ଚିହ୍ନକୁ ମଧ୍ୟ ବଜ୍ର କହନ୍ତି । ପ୍ରମାଣ ଯଥା—ପଦକି ଯାହାର ଧ୍ୱଜ ବଜ୍ର ସୁଲକ୍ଷିତ । ପ୍ରମୋଦ ନବବର୍ଦ୍ଧନ କରି ଅବାରିତ । (ପ୍ରେମପୂର୍ଣ୍ଣଚନ୍ଦ୍ର କାବ୍ୟ)

**ବଜ୍ରକୀଟ**—ଏକପ୍ରକାର କୀଟ । ଏ କୀଟ ପଥର କାଟି ପାରେ । ଏହି କୀଟର ଗଣ୍ଡକ ନଦୀ ଗର୍ଭରେ କାଟିଥିବା ପଥର ଶାଳଗ୍ରାମ ଶିଳା ହୁଏ । ଅସୁରରାଜ ଜଳନ୍ଧରଙ୍କ ସ୍ତ୍ରୀ ବୃନ୍ଦାବତୀଙ୍କ ସତୀତ୍ୱ ନାଶ କରିବା ପାପରେ ବିଷ୍ଣୁ କହୁଛନ୍ତି—

ଏ ଦେହେ ଅଛି ଯେହି ରୂପ ।
ସତୀ ନଷ୍ଟାରେ ଯେଉଁ ପାପ
ସେ ପାପ ବଜ୍ରକୀଟରୂପେ ।
ମୋ ଦେହ କାଟୁଥିବ କୋପେ ।
ସହସ୍ର ସମ୍ବତ୍ସରେ ଶିଳା ।
ଗଣ୍ଡୁକୀ ଜଳେ ହେବ ମେଳା ।

ଯେ ବସ୍ତୁ ଶିଳା ମୋର ମୂର୍ତ୍ତି ।
ପୂଜା କରିବେ ବିପ୍ରପତି ।
(କାର୍ତ୍ତିକମାହାତ୍ମ୍ୟ, ୧୫ ଅଧ୍ୟାୟ)

**ବଜ୍ରଜ୍ୱାଳା**—ବିରୋଚନ ଦୈତ୍ୟର ପୌତ୍ରୀ । କୁମ୍ଭକର୍ଣ୍ଣର ସ୍ତ୍ରୀ (ହିନ୍ଦୀ ଶବ୍ଦସାଗର)

**ବଜ୍ରଦଂଷ୍ଟ୍ର**—ରାବଣର ସେନାପତି, ରାକ୍ଷସ ବିଶେଷ ।

**ବଜ୍ରବାରକ**—ଛଅ ଜଣ ମହାତପା ଋଷି, ଯେଉଁମାନଙ୍କ ନାମ ସ୍ମରଣ କଲେ ମନୁଷ୍ୟ ଉପରେ ବଜ୍ର ପଡ଼ିବା ଭୟ ନ ଥାଏ । ଜୈମିନି, ସୁମନ୍ତ, ବୈଶମ୍ପାୟନ, ପୁଲସ୍ତ୍ୟ, ପୁଲହ, ଓ ବସିଷ୍ଠ ଏହିମାନେ ବଜ୍ରବାରକ ।

**ବଜ୍ରନାଭ**—ସୁମେରୁ ପର୍ବତର ଶିଖର ଦେଶବାସୀ ଏକ ଅସୁର । ପିତାମହ ବ୍ରହ୍ମାଙ୍କ ବର ଲାଭ କରି ଏହି ଅସୁର ସମସ୍ତ ଦେବତାଙ୍କ ଦ୍ୱାରା ଅବଧ ହୋଇଥିଲା । ଏହାର ନଗରୀ ନାମ ବଜ୍ରପୁରୀ । ସୁମେରୁ ତ୍ୟାଗ କରି ବଜ୍ରନାଭ ଏହି ବଜ୍ରପୁରୀରେ ବାସ କରିଥିଲା । କିଛିକାଳ ପରେ ବ୍ରହ୍ମାଙ୍କ ବରଦୃପ୍ତ ରାକ୍ଷସ ଚତୁର୍ଦ୍ଦିଗରେ ଉତ୍ପୀଡ଼ନ ଓ ଅତ୍ୟାଚାର ଆରମ୍ଭ କଲା । ପରିଶେଷରେ ଇନ୍ଦ୍ରଙ୍କୁ ସ୍ୱର୍ଗରୁ ବାହାରିଯିବା ପାଇଁ ସେ ଅନୁରୋଧ କଲା । ଇନ୍ଦ୍ର ଦେବଗୁରୁ ବୃହସ୍ପତିଙ୍କ ସହିତ ପରାମର୍ଶ କରି ବଜ୍ରନାଭ ସହିତ ଦେବାସୁରଙ୍କ ପିତା କଶ୍ୟପଙ୍କ ନିକଟକୁ ଗମନ କଲେ । ଇନ୍ଦ୍ର, କଶ୍ୟପଙ୍କ ଆଗରେ ବଜ୍ରନାଭର ଅଭିପ୍ରାୟ ବ୍ୟକ୍ତ କରି ଏ ବିଷୟରେ ସେ କଣ ଆଦେଶ ଦେବେ ତାହାର ଅପେକ୍ଷାରେ ରହିଲେ । କଶ୍ୟପ ଦେବରାଜଙ୍କ କଥା ଶୁଣି ବଜ୍ରନାଭକୁ କହିଲେ – 'ବତ୍ସ, ମୁଁ ଗୋଟିଏ ଯଜ୍ଞ ଅନୁଷ୍ଠାନ ଆରମ୍ଭ କରିଛି, ଏହି ଆରବ୍ଧ ଯଜ୍ଞ ପରିସମାପ୍ତି ହେବାଯାଏଁ ତୁମେ ଅପେକ୍ଷା କର । ତା ପରେ ତୁମର କର୍ତ୍ତବ୍ୟ ବିଷୟରେ ମୁଁ ତୁମକୁ ଉପଦେଶ ଦେବି । ବର୍ତ୍ତମାନ ତୁମେ ଶାନ୍ତିଭାବରେ ବଜ୍ରପୁରରେ ରହ ।'

ଏହା ପରେ ଇନ୍ଦ୍ର ଦ୍ୱାରକା ଗଲେ ଶ୍ରୀକୃଷ୍ଣଙ୍କ ସହିତ ପରାମର୍ଶ କରିବା ପାଇଁ । ସେ ଶ୍ରୀକୃଷ୍ଣଙ୍କ ଆଗରେ ବଜ୍ରନାଭର ଦୁରଭିସନ୍ଧି ଜଣାଇଲେ । ଶ୍ରୀକୃଷ୍ଣ କହିଲେ –'ପିତା ବସୁଦେବ ବର୍ତ୍ତମାନ ଗୋଟିଏ ଅଶ୍ୱମେଧଯଜ୍ଞ ଆରମ୍ଭ କରୁଛନ୍ତି । ଏହି ଯଜ୍ଞ ସମାପ୍ତ ହେଲେ ସେ ବଜ୍ରନାଭକୁ ସଂହାର କରିବେ । ଏହି ଦାନବପୁରୀ ଅତି ସୁନ୍ଦର ଭାବରେ ରକ୍ଷିତ । ତାର ଇଚ୍ଛା ନ ହେଲେ ପବନ ମଧ୍ୟ ଏ ନଗରୀରେ ବହି ପାରେ ନାହିଁ । କପରି ସେଠାକୁ ଯିବାକୁ ହେବ ସେ

ବହସ୍ଥରେ ଶ୍ରୀକୃଷ୍ଣ ଚିନ୍ତା କଲେ। ଏଣେ ଇନ୍ଦ୍ର ସ୍ୱର୍ଗକୁ ପ୍ରସ୍ଥାନ କରି ସ୍ୱର୍ଗୀୟ ହଂସମାନଙ୍କୁ ବଜ୍ରପୁରକୁ ଗମନ କରି ରାକ୍ଷସ ଅନ୍ତଃପୁରସ୍ଥ ପୁଷ୍କରିଣୀରେ ବିଚରଣ କରିବା ପାଇଁ ଆଦେଶ ଦେଲେ ଏବଂ ଦାନବକନ୍ୟା ପ୍ରଭାବତୀ ସହିତ ଗୋପନରେ ଆଳାପ କରି ଯେପରି ସେ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କ ପ୍ରତି ଆକୃଷ୍ଟ ହେବ ତାହାର ଉପାୟ କରିବା ପାଇଁ କହିଲେ। ହଂସମାନେ ଇନ୍ଦ୍ରଙ୍କର ପରାମର୍ଶ ଅନୁସାରେ କାର୍ଯ୍ୟ କଲେ। ପ୍ରଦ୍ୟୁମ୍ନଙ୍କ ପ୍ରତି ପ୍ରଭାବତୀଙ୍କ ଚିତ୍ତ ଆକୃଷ୍ଟ ହେଲା। ପ୍ରଦ୍ୟୁମ୍ନ ହଂସ ମୁଖରୁ ଏ ସମ୍ବାଦ ପାଇ ବଜ୍ରପୁରରେ ପ୍ରବେଶ କରିବା ପାଇଁ ଚେଷ୍ଟା କଲେ। ଭଦ୍ର ନାମକ ଏକ ନଟ ବଜ୍ରପୁରରେ ପ୍ରବେଶ ଲାଭ କରିବା ପାଇଁ ଅନୁମତି ପାଇଥିଲା। ପ୍ରଦ୍ୟୁମ୍ନ ପ୍ରମୁଖ ଯାଦବମାନେ ତା ସହିତ ନଟବେଶ ଧାରଣ କରି ବଜ୍ରପୁରରେ ପଦାର୍ପଣ କଲେ। ଏହିଠାରେ ପ୍ରଭାବତୀଙ୍କ ସହିତ ପ୍ରଦ୍ୟୁମ୍ନଙ୍କ ମିଳନ ହେଲା। ଉଭୟେ ଗାନ୍ଧର୍ବ ବିଧାନରେ ବିବାହ କଲେ। ପ୍ରଦ୍ୟୁମ୍ନଙ୍କ ଭ୍ରାତା ଗଦଙ୍କ ସହିତ ଚନ୍ଦ୍ରାବତୀ ଓ ଅପର ଭ୍ରାତା ଶାମ୍ବଙ୍କ ସହିତ ଗୁଣବତୀଙ୍କ ବିବାହ ହେଲା। ଏ ଉଭୟେ ପ୍ରଭାବତୀଙ୍କ କନିଷ୍ଠ ସହୋଦରା। ବଜ୍ରନାଭ ଏ ଖବର ପାଇ ଯାଦବ ରାଜ୍ୟ ଆକ୍ରମଣ କଲେ। ଘୋର ଯୁଦ୍ଧ ହେଲା। ପ୍ରଦ୍ୟୁମ୍ନଙ୍କ ସହିତ ଯୁଦ୍ଧ କରି ବଜ୍ରନାଭ ନିହତ ହେଲା। ବଜ୍ରପୁର ଯାଦବ ରାଜ୍ୟର ଅନ୍ତର୍ଭୁକ୍ତ ହେଲା। (ହରିବଂଶ)

**ବଡବାଗ୍ନି**—ଏ ଅଗ୍ନି ବଡ଼ବା ନାମ୍ନୀ ଦେବୀଙ୍କ ମୁଖରୁ ବହିର୍ଗତ ହେବା ପୁରାଣ ପ୍ରସିଦ୍ଧ। କିନ୍ତୁ ଏହା ସମୁଦ୍ର ଗର୍ଭସ୍ଥ ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତ ବୋଲି ଅନୁମିତ ହୁଏ। (ଭାଷାକୋଷ)

**ବତ୍ସାସୁର**—କଂସ ଅନୁଚର ଅସୁର ବିଶେଷ। ଏହି ଅସୁର କଂସ କର୍ତ୍ତୃକ ଶ୍ରୀକୃଷ୍ଣ ବଧାର୍ଥେ ଗୋପକୁ ପ୍ରେରିତ ହୋଇଥିଲା। କୃଷ୍ଣଙ୍କୁ ବିନାଶ କରିବା ପାଇଁ ଏ ଅସୁର ବତ୍ସରୂପେ ବିଚରଣ କରୁଥିଲା। ଶ୍ରୀକୃଷ୍ଣ ଏହା ଜାଣି ତାକୁ ବଧକଲେ।"

(ଶ୍ରୀମଦ୍ ଭାଗବତ ୧୦ ସ୍କନ୍ଧ)

**ବଦରିକା, ବଦରିକାଶ୍ରମ**—ପ୍ରସିଦ୍ଧ ହିନ୍ଦୁତୀର୍ଥ ବିଶେଷ। ଏହା ହିମାଳୟ କ୍ରୋଡ଼ରେ ଗଡ଼ବାଲ୍ ପ୍ରଦେଶସ୍ଥ ଅଲକାନନ୍ଦା ନଦୀର ପଶ୍ଚିମତୀରରେ ଅବସ୍ଥିତ। ଏହା ପୂର୍ବେ ଗୋଟିଏ ତପସ୍ୟାକ୍ଷେତ୍ର ଥିଲା। ଏହିଠାରେ ଋଷିମାନେ ପୁରାଣ-ମାନ ପ୍ରବର୍ତ୍ତନ କରୁଥିଲେ। ଏହା ବ୍ୟାସଦେବଙ୍କ ଆଶ୍ରମସ୍ଥଳ ବୋଲି ବିଖ୍ୟାତ। ଏହାହିଁ ଉତ୍ତରର ପ୍ରଧାନ ତୀର୍ଥ ବଦ୍ରିକା ଓ ଏହା ଭାରତ ପ୍ରସିଦ୍ଧ ଚାରିଗୋଟି ହିନ୍ଦୁଧାମ ମଧ୍ୟରୁ ଗୋଟିଏ। ଏଠାର ଦେବତା ବଦ୍ରିନାଥ। ଏହା

ବର୍ଷ ମଧ୍ୟରେ ଛଅମାସ ବରଫରେ ଆବୃତ୍ତ ଓ ଅଗମ୍ୟ ହୋଇଥାଏ । କଥିତ ଅଛି ଯେ ଏତନ୍ନିକଟସ୍ଥ ହିମାଳୟର ଭୃଗୁତୁଙ୍ଗ ନାମକ ଶୃଙ୍ଗ ଉପରେ ଥିବା ଗୋଟିଏ ବଦରୀ (ବରକୋଳି) ଗଛରୁ ଏ କ୍ଷେତ୍ରର ନାମକରଣ ହୋଇଅଛି । ମହାଭାରତରେ ଲେଖାଅଛି ଯେ ଏହିଠାରେ ଗଙ୍ଗାନଦୀର ଉଷ୍ଣ ଓ ଶୀତଳ ଦୁଇଟି ଧାର ଥିଲା ଓ ଏହାର ବାଲି ସୁନା ଥିଲା । ଦେବତା-ମାନେ ଏହିଠାରେ ତପସ୍ୟା କରି ବିଷ୍ଣୁଙ୍କୁ ପାଇଥିଲେ । ଗନ୍ଧମାଦନ, ବଦରୀ, ନରନାରାୟଣ ଓ କୁବେରଶୃଙ୍ଗମାନ ଏହି ତୀର୍ଥର ଅନ୍ତର୍ଗତ । ନରନାରାୟଣ ଅର୍ଜୁନ ଏହିଠାରେ ତପସ୍ୟା କରିଥିଲେ । ପାଣ୍ଡବମାନେ ମହାପ୍ରସ୍ଥାନ କାଳରେ ଏହିଠାକୁ ଯାଇଥିଲେ । ବୈଷ୍ଣବମାନଙ୍କର ସବୁ ତୀର୍ଥ ମଧ୍ୟରେ ଏହା ଶ୍ରେଷ୍ଠ ଥିବାର ବିଷ୍ଣୁ ପୁରାଣରେ ଲେଖାଅଛି । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ବଭ୍ରୁ**—ଏ ଜଣେ ଯାଦବ । ଯଦୁବଂଶ ଧ୍ୱଂସ ପରେ ବଭ୍ରୁ ଶ୍ରୀକୃଷ୍ଣଙ୍କ ଆଦେଶରେ ଯାଦବ ରମଣୀମାନଙ୍କୁ ରକ୍ଷା କରିବା ପାଇଁ ଯାଇଥିଲେ, ମାତ୍ର ବାଟରେ ଦସ୍ୟୁମାନଙ୍କ ଦ୍ୱାରା ନିହତ ହେଲେ । (ମହାଭାରତ, ମୂଷଳପର୍ବ)

**ବଭ୍ରୁବାହନ**—ଅର୍ଜୁନଙ୍କ ପୁତ୍ର । ମଣିପୁର ରାଜକନ୍ୟା ଚିତ୍ରାଙ୍ଗଦା ଏହାଙ୍କର ଜନନୀ । ମାତାମହଙ୍କ ମୃତ୍ୟୁ ପରେ ବଭ୍ରୁବାହନ ମଣିପୁର ସିଂହାସନ ଅଧିକାର କରିଥିଲେ । ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞ ସମୟରେ ଯଜ୍ଞାଶ୍ୱରକ୍ଷକରୂପେ ଅର୍ଜୁନ ମଣିପୁରରେ ପଦାର୍ପଣ କଲେ । ଅର୍ଜୁନଙ୍କ ଭର୍ତ୍ସନା ଓ ବିମାତା ନାଗକନ୍ୟା ଉଲୁପୀଙ୍କ ଉତ୍ତେଜନାରେ ବଭ୍ରୁବାହନ ଯଜ୍ଞାଶ୍ୱ ଅଟକାଇ ଅର୍ଜୁନଙ୍କ ସହିତ ଯୁଦ୍ଧ କଲେ । ଏ ଯୁଦ୍ଧରେ ଅର୍ଜୁନ ନିହତ ହେଲେ । ଚିତ୍ରାଙ୍ଗଦା ରଣକ୍ଷେତ୍ରରେ ଉପସ୍ଥିତ ହୋଇ ପୁତ୍ରକୁ ଓ ସପତ୍ନୀ ଉଲୁପୀଙ୍କୁ ତିରସ୍କାର କରି ପତିଙ୍କ ସହମୃତା ହେବେ ବୋଲି ପ୍ରସ୍ତୁତ ହେଲେ । ବଭ୍ରୁବାହନ ମଧ୍ୟ ପ୍ରାଣ ବିସର୍ଜନ କରିବା ପାଇଁ ଦୃଢ ପ୍ରତିଜ୍ଞ ହେଲେ । ଉଲୁପୀ ଏହା ଦେଖି ନାଗଲୋକସ୍ଥିତ ସଞ୍ଜୀବନୀମଣି ସ୍ମରଣ କରିବାରୁ ଉକ୍ତ ମଣି ତାଙ୍କ ନିକଟରେ ଉପସ୍ଥିତ ହେଲା । ଉଲୁପୀଙ୍କ ଉପଦେଶ ଅନୁସାରେ ବଭ୍ରୁବାହନ ସେହି ମଣିକୁ ଅର୍ଜୁନଙ୍କ ବକ୍ଷସ୍ଥଳରେ ସ୍ଥାପନ କଲେ । ମଣି ସ୍ପର୍ଶରେ ଅର୍ଜୁନ ପୁଣି ଜୀଇ ଉଠିଲେ । ବଭ୍ରୁବାହନ ନିଜର ମାତା ଓ ବିମାତାଙ୍କ ସହିତ ଯୁଧିଷ୍ଠିରଙ୍କ ଯଜ୍ଞରେ ଉପସ୍ଥିତ ହେଲେ ।

ଭାରତ ଯୁଦ୍ଧରେ ଅର୍ଜୁନ ଅନ୍ୟାୟରୂପେ ଭୀଷ୍ମଙ୍କୁ ବଧ କରିଥିଲେ । ଏଥିଲାଗି ଗଙ୍ଗାଙ୍କ ଅନୁମତି ନେଇ ବସୁମାନେ ତାହାଙ୍କୁ ଅଭିଶାପ ଦେଲେ ।

ଉଲୁପୀ ଏହି ଅଭିଶାପ ବୃତ୍ତାନ୍ତ ଜାଣି ନିଜ ପିତାଙ୍କୁ କହିଥିଲେ । ନାଗରାଜ ବସୁମାନଙ୍କ ନିକଟରେ ଉପସ୍ଥିତ ହୋଇ ଶାପ ପ୍ରତ୍ୟାହାର କରିନେବାକୁ ପ୍ରାର୍ଥନା କଲେ । ବସୁମାନେ ନାଗରାଜାଙ୍କ ପ୍ରତି ଦୟା ପ୍ରକାଶ କରି କହିଲେ—'ଭୀଷ୍ମଙ୍କ ବଧରେ ଅର୍ଜୁନଙ୍କର ପାପ ସଞ୍ଚିତ ହୋଇ ରହିଛି । ନିଜ ପୁତ୍ର ବଭ୍ରୁବାହନ ଦ୍ୱାରା ସେ ନିହତ ହେଲେ ଏ ପାପ କ୍ଷୟ ହେବ ।' ଏଥିଲାଗି ଅର୍ଜୁନଙ୍କ ମଙ୍ଗଳ କାମନା ଉଦ୍ଦେଶ୍ୟରେ ଉଲୁପୀ ବଭ୍ରୁବାହନଙ୍କୁ ଅର୍ଜୁନଙ୍କ ବିରୁଦ୍ଧରେ ଉତ୍ତେଜିତ କରିଥିଲେ ।

**ବରାହ**—ଭଗବାନ ବିଷ୍ଣୁଙ୍କ ତୃତୀୟ ଅବତାର । ଏହାର ଉତ୍ପତ୍ତି ଓ କାର୍ଯ୍ୟ ସମ୍ବନ୍ଧେ ଶ୍ରୀମଦ୍‌ଭାଗବତ ଓ କାଳିକା ପୁରାଣର ମତ ଦିଆଯାଉଛି ।

ମହାପ୍ରଳୟ ସମୟରେ ପୃଥିବୀ ଜଳମଗ୍ନ ହେବାରୁ ସ୍ୱାୟମ୍ଭୁବ ମନୁ ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ହୋଇ ତାଙ୍କର ନିକଟରେ ରହିବା ପାଇଁ ପ୍ରାର୍ଥନା କଲେ । ବ୍ରହ୍ମା ଏ କଥା ଶୁଣି ଚିନ୍ତା କରିବାକୁ ଲାଗିଲେ—'ମୁଁ ପୂର୍ବେ ଏ ସବୁ ଜଳ ପିଇ ଦେଇଥିଲି ପୁଣି ଅକସ୍ମାତ୍ ଏ ଜଳ ଉତ୍ପନ୍ନ ହେଲା କିପରି ? ଏ ଜଳ ଭିତରେ ନିମଗ୍ନ ପୃଥିବୀକୁ କିଏ ଉଦ୍ଧାର କରିବ ? ଅଥବା ମୋର ଏ ଚିନ୍ତାରେ କି ଫଳ ଅଛି ? ମୁଁ ଯେ ଭଗବାନଙ୍କ ହୃଦୟରୁ ଜାତ ହୋଇଛି, ଏ ବିଷୟରେ ମୋର ଯାହା ଅନୁଷ୍ଠାନ କରିବା କଥା ତାହା ନିର୍ଣ୍ଣୟ କରିବା ଉଚିତ ।' ବ୍ରହ୍ମା ଏହିପରି ଚିନ୍ତା କରୁଛନ୍ତି ଏହି ସମୟରେ ତାଙ୍କ ନାସାରନ୍ଧ୍ରରୁ ସହସା ଅଙ୍ଗୁଷ୍ଠ ପ୍ରମାଣ ଗୋଟିଏ ବରାହ ବାହାରି ପଡ଼ିଲା । ଦେଖୁ ଦେଖୁ ଏହି ବରାହ ବ୍ରହ୍ମାଙ୍କ ସମକ୍ଷରେ ଆକାଶକୁ ଯାଇ କ୍ଷଣ ମଧ୍ୟରେ ଗୋଟିଏ ବୃହଦାକାର ହସ୍ତୀ ପରି ହୋଇଗଲା । ସେହି ବରାହର ଗର୍ଜନରେ ଦଶ ଦିଗ ଧ୍ୱନିତ ହେବାକୁ ଲାଗିଲା । ସତ୍ୟଲୋକ, ଜନଲୋକ ଓ ତପଲୋକବାସୀ ମୁନିଋଷିମାନେ ବେଦମନ୍ତ୍ର ଦ୍ୱାରା ଏହି ବରାହକୁ ବିଷ୍ଣୁଙ୍କ ଅବତାର ବୋଲି ଜାଣି ସ୍ତୁତି କରିବାକୁ ଲାଗିଲେ । ଏହି ବରାହ ଜଳ ମଧ୍ୟରେ ପ୍ରବେଶ କଲେ । ସେହି ଜଳ ମଧ୍ୟରେ ଆଦି ଦୈତ୍ୟ ହିରଣ୍ୟାକ୍ଷକୁ ବିନାଶ କରି ଦନ୍ତାଗ୍ର ଦ୍ୱାରା ନିମଗ୍ନ ପୃଥିବୀକୁ ଧାରଣପୂର୍ବକ ଉପରକୁ ଉଠି ଆସିଲେ । ଦେବଗଣ, ଋଷିଗଣ ଏହି ବରାହରୂପୀ ବିଷ୍ଣୁଙ୍କୁ ସ୍ତୁତି କରିବାକୁ ଲାଗିଲେ । (ଶ୍ରୀମଦ୍ ଭାଗବତ, ୩ୟ ସ୍କନ୍ଧ)

କାଳିକାପୁରାଣରେ ଲେଖାଅଛି—ବରାହରୂପୀ ବିଷ୍ଣୁ ପୃଥିବୀକୁ ଉଦ୍ଧାର କରି ତାହା ଉପରେ ବିଚରଣ କଲେ, ମାତ୍ର ପୃଥିବୀ ଏହି ବରାହଙ୍କ ଭାର ସହି ପାରିଲା ନାହିଁ, ସେ ମହାଦେବଙ୍କ ଶରଣାପନ୍ନ ହେଲା । ମହାଦେବ

ବିଷ୍ଣୁଙ୍କୁ ସ୍ୱୀୟ ବରାହ ଶରୀର ତ୍ୟାଗ କରିବା ପାଇଁ ଅନୁରୋଧ କଲେ । ବରାହ ମହାଦେବଙ୍କ ବାକ୍ୟରେ ତୃପ୍ତ ହୋଇ ସେହି ରୂପ ତ୍ୟାଗ କରିବା ପାଇଁ ପ୍ରତିଶ୍ରୁତ ହେଲେ ଏବଂ କହିଲେ ପୁଣି ଲୋକହିତ ପାଇଁ ତାଙ୍କୁ ପୁନର୍ବାର ଏହି ରୂପ ଧାରଣ କରିବାକୁ ପଡିବ । ଏହା କହି ବରାହ ଅନ୍ତର୍ହିତ ହେଲେ ଏବଂ ଲୋକାଲୋକ ପର୍ବତକୁ ଯାଇ ବରାହରୂପୀ ଧରଣୀ ସହିତ ରମଣ କରିବାକୁ ଲାଗିଲେ । ଏହି ସଙ୍ଗମ ଫଳରେ ଧରଣୀ ଗର୍ଭରୁ ସୁବୃତ୍ତ, କନକ ଓ ଘୋର ନାମକ ତିନିଗୋଟି ବଳଶାଳୀ ପୁତ୍ର ଜନ୍ମ ହେଲେ । ବର୍ତ୍ତିମାନ ପୁତ୍ର ପରିବୃତ ବରାହଙ୍କ ଭାରରେ ପୃଥିବୀ କମ୍ପିତ ହେବାକୁ ଲାଗିଲା । ଦେବତାମାନେ ବରାହଙ୍କ ନିକଟରେ ତାଙ୍କର ଏ ଭୟଙ୍କର ରୂପ ପରିତ୍ୟାଗ କରିବା ପାଇଁ ଅନୁରୋଧ କଲେ । ସେତେବେଳେ ବରାହରୂପୀ ବିଷ୍ଣୁ ବ୍ରହ୍ମାଙ୍କୁ କହିଲେ—'ଧରଣୀର ଦୁଃଖର କାରଣ ତାହାର ବଂଶ । ଏହି ବରାହ ଦେହ ମୁଁ ଅବଶ୍ୟ ତ୍ୟାଗ କରିବ କିନ୍ତୁ ସୁଖାସକ୍ତ ଏହି ଭୋଗବର୍ଦ୍ଧିତ ଦେହ ଇଚ୍ଛାପୂର୍ବକ ତ୍ୟାଗ କରିବା ପାଇଁ ମୋର ସାମର୍ଥ୍ୟ ନାହିଁ ।' ଏହା କହି ସେ ମହାଦେବଙ୍କୁ ବ୍ରହ୍ମତେଜ ବର୍ଦ୍ଧନ କରିବା ନିମିତ୍ତ ବ୍ରହ୍ମାଙ୍କୁ କହିଲେ । ମହାଦେବ ଶରଭରୂପ ଧାରଣ କଲେ । ବରାହରୂପୀ ବିଷ୍ଣୁଙ୍କ ସହିତ ଶରଭରୂପୀ ଶିବଙ୍କର ତୁମୁଳ ସଂଗ୍ରାମ ହେଲା । ଏ ଯୁଦ୍ଧରେ ବରାହ ନିହତ ହେଲେ । ବରାହର ପୁତ୍ର ପୌତ୍ରମାନେ ଶରଭର ଦନ୍ତାଘାତରେ ମରିଗଲେ । ବିଷ୍ଣୁ ସୁଦର୍ଶନ ଚକ୍ରଦ୍ୱାରା ସେହି ବରାହର ଶରୀରକୁ ଖଣ୍ଡ ଖଣ୍ଡ କରିଦେଲେ । ବରାହ ଦେହର ଏକ ଏକ ଖଣ୍ଡରୁ ଗୋଟିଏ ଗୋଟିଏ ଯଜ୍ଞର ଉତ୍ପତ୍ତି ହେଲା । ଭ୍ରୂଦ୍ୱୟ ଓ ନାସିକା ଦେଶର ସନ୍ଧି ଭାଗରୁ ଜ୍ୟୋତିଷ୍ଟୋମ ଯଜ୍ଞ, ଚରଣ ସନ୍ଧିରୁ ଅଶ୍ୱମେଧ, ନରମେଧ ପ୍ରଭୃତି ପ୍ରାଣୀ ହିଂସା ବାଧାଯୁକ୍ତ ଯଜ୍ଞସବୁ, ପୃଷ୍ଠ ସନ୍ଧିରୁ ରାଜସୂୟ, ବାଜପେୟ ପ୍ରଭୃତି ଯଜ୍ଞର ଉଦ୍ଭବ ହୋଇଥିଲା । ଏହିପରି ବରାହ ଦେହରୁ ଆଠ ହଜାରରୁ ଅଧିକ ଯଜ୍ଞ ଜାତ ହୋଇଥିଲା । ବରାହ ଶୋଣିତରୁ ସ୍ରୁକ୍, ନାସିକାରୁ ସ୍ରୁବ, ଦନ୍ତରୁ ଯୂପ ପ୍ରଭୃତି ଯଜ୍ଞୀୟ ଦ୍ରବ୍ୟ ଉତ୍ପନ୍ନ ହେଲା । ବରାହପୁତ୍ର ସୁବୃତ୍ତଙ୍କ ଦେହରୁ ଦକ୍ଷିଣାଗ୍ନି, କନକ ଦେହରୁ ଗାର୍ହପତ୍ୟାଗ୍ନି ଏବଂ ଘୋରଙ୍କ ଦେହରୁ ଆହବନୀୟ ଅଗ୍ନି ଉଦ୍ଭବ ହୋଇଥିଲା ।

କବି ନାରାୟଣ ରାଜଗୁରୁଙ୍କ ପ୍ରଣୀତ ଶ୍ରୀକୃଷ୍ଣ କେଶରୀ ପୁରାଣରେ 'ବରାହ ଅବତାର ଉପାଖ୍ୟାନ' ଏକ ମନୋମୁଗ୍ଧକର ଉପାଖ୍ୟାନ ।

(କୃଷ୍ଣକେଶରୀ ପ୍ରଥମ ସର୍ଗ)

ହରଭକ୍ତ ବିଳାସ ଗ୍ରନ୍ଥରେ ବରାହମୂର୍ତ୍ତି ନିର୍ମାଣ ବିଷୟରେ ନିମ୍ନଲିଖିତ ମାପ ପ୍ରଣାଳୀର ପ୍ରମାଣ ରହିଛି—ମୁଖର ବିସ୍ତାର ଅଷ୍ଟକଳା, କର୍ଣ୍ଣ ଦ୍ୱିଗୋଳକ,

ହନୁ ସପ୍ତାଙ୍ଗୁଳ, ସୃକ୍‌କଣୀ ଦ୍ୱ୍ୟାଙ୍ଗୁଳ, ବଦନ ସପ୍ତାଙ୍ଗୁଳ, ଦଶନଦ୍ୱୟ ଦେଢ଼କଳା, ନାସିକା ବିବର ତିନି ଯବ, ନେତ୍ରଦ୍ୱୟ ସବର୍ତ୍ତନ, ମୁଖ ଈଷତ୍ ହାସ୍ୟଯୁକ୍ତ, କର୍ଣ୍ଣଯୁଗଳ ରନ୍ଧ୍ରଦ୍ୱୟ ବିଶିଷ୍ଟ ସମ ଓ ଅସ୍ପୃତ, କର୍ଣ୍ଣର ମଧ୍ୟଭାଗ ଗୃଣ କଳା ଓ ଉଚ୍ଚ ଦୁଇ କଳା ଗ୍ରୀବାଦେଶ ଅଷ୍ଟାଙ୍ଗୁଳ, ଅବଶିଷ୍ଟ ଅଙ୍ଗ ସବୁ ନୃସିଂହଦେବଙ୍କ ତୁଲ୍ୟ ।

**ବରୁଣ**—ପଶ୍ଚିମ ଦିକ୍‌ପାଳ ଓ ଜଳାଧିପତି । ଅଦିତିଙ୍କ ଗର୍ଭରୁ କଶ୍ୟପ ଋଷିଙ୍କ ଔରସରେ ଏ ଜନ୍ମିଥିଲେ । ଶ୍ରୀମଦ୍‌ଭାଗବତ ମତେ ଭୃଗୁ ଓ ବାଲ୍ମୀକି ଏହାଙ୍କର ପୁତ୍ର । ଚର୍ଷଣୀ ନାମ୍ନୀ ପତ୍ନୀର ଗର୍ଭରୁ ଏ ଦୁଇ ପୁତ୍ର ଜନ୍ମିଥିଲେ । ଅତି ପ୍ରାଚୀନକାଳରୁ ଭାରତରେ ବରୁଣଙ୍କ ପୂଜା ଚାଲିଆସିଛି । ଋଗ୍‌ବେଦରେ ଏହି ଦେବତା ପ୍ରବଳ ପ୍ରତାପଶାଳୀ ରାଜା ବୋଲି କୀର୍ତ୍ତିତ ହୋଇଛନ୍ତି । ଦେବରାଜ ଇନ୍ଦ୍ରଙ୍କ ବଜ୍ର ଯେପରି ପ୍ରଧାନ ଅସ୍ତ୍ର । ସେହିପରି ପାଶ ବରୁଣଙ୍କ ପ୍ରଧାନ ଆୟୁଧ । ତେଣୁ ବରୁଣଙ୍କୁ ପାଶୀ ବୋଲି ମଧ୍ୟ କହନ୍ତି ।

**ବଳ**—ଅସୁର ବିଶେଷ । ଏ ଅସୁର ଦେବତାମାନଙ୍କ ଗୋରୁଗାଈଙ୍କୁ ଚୋରାଇ ନେଇ ଏକ ପର୍ବତ ଗୁହାରେ ଲୁଚିଥିଲା । ଇନ୍ଦ୍ର ସେ ଗୁହାରୁ ଗୋରୁଗାଈଙ୍କୁ ଛଡ଼ାଇ ଆଣିଲେ । ପୁଣି ଏ ବଳଦ ରୂପ ଧାରଣ କଲା । ଶେଷରେ ବୃହସ୍ପତି ତାକୁ ନିହତ କଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ବଳଦେବ, ବଳରାମ**—ବସୁଦେବଙ୍କ ପୁତ୍ର । ରୋହିଣୀଙ୍କ ଗର୍ଭରୁ ଏ ଜନ୍ମିଥିଲେ । ଦେବକୀଙ୍କ ସପ୍ତମ ଗର୍ଭ ସମୟରେ କଂସ ରକ୍ଷକ ନିଯୁକ୍ତ କରିଥିଲା । କିନ୍ତୁ ମାୟା ସେହି ଗର୍ଭ ଆକର୍ଷଣପୂର୍ବକ ରୋହିଣୀ ଗର୍ଭରେ ସ୍ଥାପନ କରିଥିଲେ । ଋଷିଗଣ ଏ ବ୍ୟାପାର ଜାଣି ନପାରି ଗର୍ଭସ୍ରାବ ଯୋଗେ ସନ୍ତାନ ନଷ୍ଟ ହୋଇଯାଇଛି ବୋଲି ପ୍ରଚାର କଲେ । ଗର୍ଭ ଆକର୍ଷଣ କରି ଅନ୍ୟ ଗର୍ଭରେ ସ୍ଥାପନ କରିବା ଯୋଗୁଁ ରୋହିଣୀନନ୍ଦନଙ୍କୁ ସଙ୍କର୍ଷଣ ନାମ ଦିଆଯାଇଥିଲା (ବ୍ରହ୍ମବୈବର୍ତ୍ତ, ଶ୍ରୀକୃଷ୍ଣଖଣ୍ଡ) । ଏହାଙ୍କ ପତ୍ନୀଙ୍କ ନାମ ରେବତୀ । ବଳରାମ ଗଦା ଯୁଦ୍ଧରେ ମଗଧାଧିପତି ଜରାସନ୍ଧଙ୍କୁ ପରାସ୍ତ କରିଥିଲେ, କିନ୍ତୁ ବଧ କରିପାରିଲେ ନାହିଁ । ଦୁର୍ଯ୍ୟୋଧନର କନ୍ୟା ଲକ୍ଷଣା ସ୍ୱୟମ୍ବରରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ କୌରବମାନଙ୍କ ଦ୍ୱାରା ଧୃତ ଓ ବନ୍ଦୀ ହେଲେ । ବଳରାମ ଏହା ଜାଣିପାରି କୌରବମାନଙ୍କ ନିକଟକୁ ଗମନ କଲେ, ମାତ୍ର ଦୁର୍ଯ୍ୟୋଧନ ଶାମ୍ବକୁ ମୁକ୍ତ ଦେଲେନାହିଁ । ସେତେବେଳେ ବଳରାମ କ୍ରୋଧ ହୋଇ କୌରବପୁରୀକୁ ଗଙ୍ଗାରେ ନିକ୍ଷେପ କରିଦେବା ନିମିତ୍ତ ଲଙ୍ଗଳାଗ୍ରରେ

ଉକ୍ତ ନଗରୀକୁ ଉପାଡ଼ି ଫିଙ୍ଗି ଦେବେ ବୋଲି ପ୍ରାକାର ଭିତ୍ତିରେ ଲଙ୍ଗଳାଗ୍ର ସଂଯୋଗ କଲେ । ହସ୍ତିନା ନଗର ଘୂର୍ଣ୍ଣିତ ହୋଇଉଠିଲା । ଦୁର୍ଯ୍ୟୋଧନ ଏହା ଦେଖି ଅବିଳମ୍ବେ ଲକ୍ଷଣା ସହିତ ଶାମ୍ବଙ୍କୁ ବଳରାମଙ୍କ ହସ୍ତରେ ସମର୍ପଣ କଲେ ଏବଂ ତାଙ୍କଠାରୁ ଗଦା ଯୁଦ୍ଧ ଶିକ୍ଷା କରିବା ପାଇଁ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ମହାବୀର ବଳରାମ ଭଣ୍ଡୀର ବନରେ ଏକ ମୁଷ୍ଟି ପ୍ରହାର ଦ୍ୱାରା ପ୍ରଲମ୍ବାସୁରକୁ ନିହତ କରିଥିଲେ । ସେ ଗର୍ଦ୍ଦଭରୂପୀ ଧେନୁକାସୁରକୁ ପର୍ବତ ଶୀର୍ଷରୁ ନିକ୍ଷେପ କରି ବଧ କରିଥିଲେ । ଏହି ହଳଧାରୀ ବଳରାମ ସ୍ୱୀୟ ହଳାଗ୍ରଦ୍ୱାରା ପଦବୀ ଧାରଣ କରି ସମୁଦ୍ରଗାମିନୀ ଯମୁନା ନଦୀକୁ ସ୍ୱନଗର ଅଭିମୁଖରେ ଦ୍ରୁତ ବେଗରେ ପ୍ରଧାବିତ କରାଇଥିଲେ । ଏହାଙ୍କ ରଥର ନାମ ତାଳଧ୍ୱଜା, ହଳ ଓ ମୂଷଳ ଏହାଙ୍କର ପ୍ରଧାନ ଅସ୍ତ୍ର । ଏ ଗୌରବର୍ଣ୍ଣ ବିଶିଷ୍ଟ ।

ହିନ୍ଦୀ ଶବ୍ଦସାଗରରେ ବଳଦେବଙ୍କୁ ଏକ ଉଦଣ୍ଡ ଓ ମଦ୍ୟପାୟୀ ଦେବତା ବୋଲି ବର୍ଣ୍ଣନା କରାଯାଇଛି । ଯେତେଦୂର ଜଣାଯାଏ ସେ ଉଦଣ୍ଡ ବା ମଦ୍ୟପାୟୀ ନଥିଲେ । ଅନ୍ୟାୟ ତାଙ୍କ ଦେହରେ ଯାଉନଥିଲା । ଏଥିଲାଗି ବେଳେ ବେଳେ ସେ ଶ୍ରୀକୃଷ୍ଣଙ୍କୁ ନାନା କଥା କହୁଥିଲେ । ଏହା କେବଳ ବଡ଼ ଭାଇ ହିସାବରେ ତାଙ୍କର ଅଭିମାନ ପରି ମନେହୁଏ । କିନ୍ତୁ ବଳରାମ ମଦ୍ୟପାନ କରିବା କଥା କେଉଁଠି ହେଲେ ପ୍ରମାଣ ନାହିଁ । ସେ କାଦମ୍ବରୀ ପାନ କରିବା ପୁରାଣ ପ୍ରସିଦ୍ଧ । 'କାଦମ୍ବରୀ ପାନେ ରଙ୍ଗ ନୟନ'—ଏହି ବର୍ଣ୍ଣନା ଅଛି । ଭାଷାକୋଷକାର ମଧ୍ୟ ହିନ୍ଦୀ ଶବ୍ଦସାଗରକୁ ସମର୍ଥନ କରିଛନ୍ତି ମାତ୍ର ତାହା କଦାପି ଠିକ୍ ହେବନାହିଁ; ବୋଲି ଆମ୍ଭମାନଙ୍କର ବିନୀତ ମତ ।

**ବଳାରାତି**—ଇନ୍ଦ୍ରଙ୍କର ନାମାନ୍ତର । ବଳ ନାମକ ଅସୁରର ଏ ଶତ୍ରୁ ଥିଲେ ।

**ବଳାହକ**—ଦୈତ୍ୟ ବିଶେଷ । ଶ୍ରୀକୃଷ୍ଣଙ୍କ ରଥର ଏକ ଘୋଡାର ନାମ (ହି. ଶ) । ପୌରାଣିକ ପର୍ବତ ବିଶେଷ । ଲିଙ୍ଗପୁରାଣ ମତରେ ଏହା ଶାଳ୍ମଳୀ ଦ୍ୱୀପରେ ଓ ମତ୍ସ୍ୟପୁରାଣ ମତରେ ଏହା କୁଶଦ୍ୱୀପରେ ଅବସ୍ଥିତ । (ହି. ଶ.) ଜୟଦ୍ରଥଙ୍କ ଏକ ଭାଇର ନାମ ବଳାହକ (ହି. ଶ.) ।

**ବଳି**—ଦାନବପତି, ବୈରୋଚନ ବା ବିରୋଚନ ଏହାଙ୍କର ପିତା । ଭକ୍ତଚୂଡ଼ାମଣି ପ୍ରହ୍ଲାଦଙ୍କ ପିତାମହ । ବଳିଙ୍କର ପୁତ୍ର ସଂଖ୍ୟା ଏକଶତ, ଏମାନଙ୍କ ମଧ୍ୟରେ ବାଣ ସର୍ବଶ୍ରେଷ୍ଠ । ପ୍ରବଳ ପରାକ୍ରାନ୍ତ ଦାନବପତି ବଳିଙ୍କୁ ଦମନ କରିବା ପାଇଁ ବିଷ୍ଣୁ ବାମନରୂପେ ଅବତୀର୍ଣ୍ଣ ହୋଇଥିଲେ ।

ବଳି ଏକ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଲେ । ଯଜ୍ଞାନ୍ତେ ଅବଭୃଥ ସ୍ନାନ ପରେ ଯେତେବେଳେ ସେ ଦାନ କର୍ମରେ ପ୍ରବୃତ୍ତ ହେଲେ ସେତେ-ବେଳେ ବିଷ୍ଣୁ, ବାମନ ରୂପ ଧାରଣ କରି ସେଠାରେ ଉପସ୍ଥିତ ହେଲେ । ବାମନରୂପୀ ବିଷ୍ଣୁ ବଳିଙ୍କୁ ନାନାପ୍ରକାର ପ୍ରଶଂସା କରି ତ୍ରିପାଦ ପରିମାଣ ଭୂମି ଦାନ ମାଗିଲେ । ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ବାମନଙ୍କୁ ଚିହ୍ନି ପାରିଲେ । ତେଣୁ ବଳିଙ୍କୁ ବାମନର ପ୍ରାର୍ଥନା ପୂର୍ଣ୍ଣ କରିବାକୁ ନିଷେଧ କଲେ । ସେ ସ୍ପଷ୍ଟ କହିଦେଲେ ଯେ ବିଷ୍ଣୁ ବାମନ ରୂପରେ ତାଙ୍କୁ ଛଳନା କରିବା ପାଇଁ ଆସିଛନ୍ତି । ମାତ୍ର ବଳି ଗୁରୁଙ୍କ ଉପଦେଶ ମାନିଲେ ନାହିଁ । ସେ ପ୍ରତିଜ୍ଞାଭ୍ରଷ୍ଟ ହେବା ପାଇଁ ରାଜି ହେଲେନାହିଁ । ସେ ଯଥାବିଧି ବାମନଙ୍କୁ ଅର୍ଚ୍ଚନା କରି ଜଳସ୍ପର୍ଶ ପୂର୍ବକ ଭୂମି ଦାନ ଦେବାପାଇଁ ପ୍ରସ୍ତୁତ ହେଲେ । ଦାନ କରିବା ମାତ୍ରେ ବାମନଙ୍କ ରୂପ ଅତି ଆଶ୍ଚର୍ଯ୍ୟ ଭାବରେ ବଢ଼ି ଉଠିଲା । ସେ ଏକ ପାଦରେ ବଳିଙ୍କର ସମସ୍ତ ଭୂମି ନେଇଗଲେ, ଦ୍ୱିତୀୟ ପାଦରେ ସ୍ୱର୍ଗ ପର୍ଯ୍ୟନ୍ତ ନେଲେ, ତୃତୀୟ ପାଦ ସ୍ଥାପନ କରିବା ପାଇଁ ଆଉ ସ୍ଥାନ ରହିଲା ନାହିଁ । ବଳିଙ୍କ ଅନୁଚରମାନେ ବାମନଙ୍କୁ ଏକ ମାୟାବୀ ଜୀବ ବୋଲି ମନେକରି ଅସ୍ତ୍ରଶସ୍ତ୍ର ଗ୍ରହଣ ପୂର୍ବକ ଯୁଦ୍ଧାର୍ଥେ ଅଗ୍ରସର ହେଲେ । କିନ୍ତୁ ଏମାନେ ଅବିଳମ୍ବେ ବିଷ୍ଣୁଙ୍କ ଅନୁଚରମାନଙ୍କ ଦ୍ୱାରା ନିହତ ହେଲେ । ବଳି ଅନୁଚରମାନଙ୍କୁ ଯୁଦ୍ଧ ନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ବିଷ୍ଣୁଙ୍କ ଆଦେଶରେ ଗରୁଡ଼ ପାଶ ଦ୍ୱାରା ବଳିଙ୍କୁ ବନ୍ଧନ କରିଦେଲେ । ବିଷ୍ଣୁ ଅପର ପାଦଟି ରଖିବା ପାଇଁ ସ୍ଥାନ ମାଗିଲେ । ବଳି ତୃତୀୟ ପାଦଟିକୁ ନିଜ ମସ୍ତକରେ ରଖିବା ପାଇଁ ବାମନଙ୍କୁ ପ୍ରାର୍ଥନା କଲେ । ବାମନ ତୃତୀୟ ପାଦଟି ବଳିଙ୍କ ମସ୍ତକରେ ରଖିବା ମାତ୍ରେ ବଳି ବିଷ୍ଣୁଙ୍କୁ ସ୍ତବ କରିବାକୁ ଲାଗିଲେ । ଏହି ସମୟରେ ବିଷ୍ଣୁଭକ୍ତ ପ୍ରହ୍ଲାଦ ମଧ୍ୟ ସେଠାରେ ଉପସ୍ଥିତ ହେଲେ । ତାଙ୍କ ପ୍ରାର୍ଥନାରେ ଭଗବାନ ବିଷ୍ଣୁ ବଳିଙ୍କୁ ବନ୍ଧନରୁ ମୋଚନ କରିଦେଲେ । ବିଷ୍ଣୁ ପ୍ରହ୍ଲାଦଙ୍କୁ କହିଲେ— 'ଦେଖ ବଳିରାଜ ବହୁ ତ୍ୟାଗ ସ୍ୱୀକାର କରି ନିଜର ସତ୍ୟରକ୍ଷା କରିଛନ୍ତି । ଏଥିଲାଗି ମୁଁ ତାଙ୍କୁ ଦେବଦୁର୍ଲ୍ଲଭ ଏକ ସ୍ଥାନ ଦେଉଛି । ବଳି ସାବର୍ଣ୍ଣି ମନ୍ୱନ୍ତରରେ ଇନ୍ଦ୍ର ପଦବୀ ଲାଭ କରିବେ । ଯେତେଦିନ ଯାଏ ଏ ମନ୍ୱନ୍ତର ନ ଆସିଛି, ସେତେଦିନ ପର୍ଯ୍ୟନ୍ତ, ସୁତଳ ଏହାଙ୍କର ବାସସ୍ଥାନ ହୋଇରହିବ । ମୁଁ କୌମୋଦକୀ ଗଦା ଧରି ସେଠାରେ ରହି ଏହାଙ୍କୁ ରକ୍ଷା କରୁଥିବ ।' ବିଷ୍ଣୁଙ୍କ ଏହି ଆଦେଶାନୁଯାୟୀ ବଳି ପାତାଳରେ ଯାଇ ବାସ କଲେ ।

(ଶ୍ରୀମଦ୍ ଭାଗବତ ଓ ବାମନପୁରାଣ)

**ବଳିମୁଖ**—ରାମାୟଣ ବର୍ଣ୍ଣିତ ଏକ କପି ସେନାପତି । ଶିବଙ୍କ ଅନୁଚର ବିଶେଷ ।

**ବଶିଷ୍ଠ**—ବ୍ରହ୍ମାଙ୍କ ମାନସପୁତ୍ର । ଏହି ମହର୍ଷି ସପ୍ତର୍ଷିମାନଙ୍କ ମଧ୍ୟରେ ଅନ୍ୟତମ । କର୍ଦ୍ଦମ କନ୍ୟା ଅରୁନ୍ଧତୀ ଏହାଙ୍କର ପତ୍ନୀ । ଏହାଙ୍କର ଶତପୁତ୍ର ରାକ୍ଷସ-ଭାବାପନ୍ନ ଅଯୋଧ୍ୟାଧିପତି କଲ୍ମାଷପାଦଙ୍କ ଦ୍ୱାରା ଭକ୍ଷିତ ହୋଇଥିଲେ । ପୁତ୍ରଶୋକାକୁଳ ମହର୍ଷି ବଶିଷ୍ଠ ନଦୀରେ ଆତ୍ମହତ୍ୟା କରିବା ପାଇଁ ଚେଷ୍ଟା କଲେ । ସେ ପ୍ରଥମେ ନିଜକୁ ଗୋଟିଏ ପାଶ ଦ୍ୱାରା ଦୃଢ଼ରୂପେ ଆବଦ୍ଧ କରି ଆଶ୍ରମ ନିକଟସ୍ଥ ଏକ ନଦୀରେ ଝମ୍ପ ପ୍ରଦାନ କଲେ । କିନ୍ତୁ ନଦୀ ମହର୍ଷିଙ୍କ ପାଶ ଛେଦନ କରି ତାଙ୍କୁ କୂଳକୁ ନେଇ ଆସିଲା । ମହର୍ଷି ପାଶ ବିମୁକ୍ତରେ ସ୍ଥଳଭୂମିରେ ପଦାର୍ପଣ କରି ଏହି ନଦୀର ନାମ ଦେଲେ ବିପାଶା । ଅନନ୍ତର ସେ ହୈମବତୀ ନାମକ ଅନ୍ୟ ଏକ ନଦୀରେ ଝାମ୍ପ ପ୍ରଦାନ କଲେ, ମାତ୍ର ଏଥିରେ ମଧ୍ୟ ତାଙ୍କର ମୃତ୍ୟୁ ଘଟିଲା ନାହିଁ । ସରିଦ୍‌ବର ବ୍ରାହ୍ମଣଙ୍କୁ ଅଗ୍ନିତୁଲ୍ୟ ତେଜସ୍ୱୀ ଦେଖି ଶତଧା ବିଦ୍ରୁତ ହୋଇଗଲା । ସେହି ଦିନଠାରୁ ଏହି ନଦୀର ନାମ ହେଲା ଶତଦ୍ରୁ । ମହର୍ଷି ଆତ୍ମହତ୍ୟା ସାଧନରେ ବିଫଳମନୋରଥ ହୋଇ ଆଶ୍ରମକୁ ଫେରି ଆସିଲେ । ପଥ ମଧ୍ୟରେ ତାଙ୍କ ପୁତ୍ରବଧୂ ଅଦୃଶ୍ୟନ୍ତୀ ତାଙ୍କର ଅନୁସରଣ କରି ଆସୁଥିଲେ । ପଛରେ ବେଦାଧ୍ୟୟନ ଶବ୍ଦ ଶୁଣି ମହର୍ଷି ପଶ୍ଚାଦ୍‌ବର୍ତ୍ତିନୀ ରମଣୀର ପରିଚୟ ଜିଜ୍ଞାସା କଲେ । ସ୍ତ୍ରୀ ଉତ୍ତର ଦେଲା—'ମୁଁ ଆପଣଙ୍କର ପୁତ୍ରବଧୂ ଅଦୃଶ୍ୟନ୍ତୀ । ମୋ ଗର୍ଭରେ ଆପଣଙ୍କ ଜ୍ୟେଷ୍ଠ ପୁତ୍ର ଶକ୍ତିଙ୍କ ଔରସରେ ଏକ ପୁତ୍ର ଉତ୍ପନ୍ନ ହେବ । ଏହି ପୁତ୍ର ବାର ବର୍ଷ ହେଲା ମୋ ଗର୍ଭରେ ରହି ଷଡ଼ଙ୍ଗ ବେଦ ଅଧ୍ୟୟନ କରୁଅଛି । ଆପଣ ଏହାର ଉଚ୍ଚାରିତ ବେଦମନ୍ତ୍ର ଶୁଣିବାକୁ ପାଉଛନ୍ତି ।' ପୁତ୍ରବଧୂଙ୍କର ଏ କଥା ଶୁଣି ବଶିଷ୍ଠ ମରଣ ଇଚ୍ଛା ପରିତ୍ୟାଗ କଲେ । ତାଙ୍କର ବଂଶରକ୍ଷା ହେବା ସମ୍ଭାବନା ଅଛି ମନେ କରି ସେ ଆହ୍ଲାଦିତ ହୋଇଉଠିଲେ । ଏହି ସନ୍ତାନ ଜନ୍ମିବା ମାତ୍ରେ ବଶିଷ୍ଠ ଏହାର ନାମ ରଖିଲେ ପରାଶର । (ମହାଭାରତ, ଆଦିପର୍ବ)

**ବସୁ** - (୧) ଗଣଦେବତା ବିଶେଷ । ବସୁ ନାମରେ ଆଠଜଣ ଗଣଦେବତା ପ୍ରସିଦ୍ଧ । ଯଥା—ଧର, ଧ୍ରୁବ, ସୋମ, ବିଷ୍ଣୁ, ଅନିଳ, ଅନଳ, ପ୍ରତ୍ୟୁଷ ଓ ପ୍ରଭାସ । ଏହି ଆଠଜଣ ଗଣଦେବତା ଅଷ୍ଟବସୁ ନାମରେ ଖ୍ୟାତ, ମହାଭାରତର ଏକ ବିଷୟରେ ବିଷ୍ଣୁ ସ୍ଥାନରେ ସାବିତ୍ର ବୋଲି ଉଲ୍ଲେଖ ଦେଖାଯାଏ । ଅଗ୍ନିପୁରାଣରେ ଧର ସ୍ଥାନରେ ଆପ ନାମକ ବସୁର ଉଲ୍ଲେଖ ଦୃଷ୍ଟ ହୁଏ । ମହର୍ଷି ବଶିଷ୍ଠଙ୍କ ଶାପରେ ବସୁମାନେ ପୃଥିବୀରେ ମନୁଷ୍ୟ ଜନ୍ମ ଲାଭ କରିଥିଲେ । ଏହାଙ୍କ ଅନୁରୋଧରେ ସରିଦ୍‌ବରା ଗଙ୍ଗା ମହାରାଜ ଶାନ୍ତନୁଙ୍କର ଭାର୍ଯ୍ୟା ହେଲେ ଏବଂ ତାଙ୍କରି ଗର୍ଭରୁ ବସୁମାନେ ଜନ୍ମିଥିଲେ ।

ସନ୍ତାନ ଜନ୍ମିବା ମାତ୍ରେ ଗଙ୍ଗାଦେବୀ ତାହାକୁ ଗଙ୍ଗାଜଳରେ ବିସର୍ଜନ କରିଦେଉଥିଲେ । ଶାନ୍ତନୁ ପୁନଃ ଶୋକରେ ଅଧୀର ହୋଇ ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ପତିଙ୍କ ଦ୍ୱାରା ତିରସ୍କୃତା ହୋଇ ଗଙ୍ଗା ପ୍ରକୃତ କଥା ପ୍ରକାଶ କଲେ । ସାତଟି ବସୁ ଏହିପରି ଶାପମୁକ୍ତ ହେଲେ କେବଳ ଅଷ୍ଟମ ବସୁ ଭୀଷ୍ମ ନାମରେ ଅଭିହିତ ହୋଇଥିଲେ । ବଶିଷ୍ଠ ଅଭିଶାପ ଦେବା ପରେ ବସୁମାନେ ପ୍ରତିକାର କଅଣ ହେବ ପ୍ରାର୍ଥନା କଲାରୁ ବଶିଷ୍ଠ କହିଲେ— 'ତୁମ୍ଭମାନଙ୍କ ମଧ୍ୟରେ ଯେ ନନ୍ଦିନୀକୁ ହରଣ କରି ନେଇଥିଲା ସେ କେବଳ ପୃଥିବୀରେ ଦୀର୍ଘକାଳ ଅବସ୍ଥାନ କରି ରହିବ । ବାକି ସାତଜଣ ପ୍ରତିବର୍ଷ ଶାପମୁକ୍ତ ହୋଇ ସ୍ୱର୍ଗ ଗମନ କରିବେ ।' (ମହାଭାରତ, ଆଦିପର୍ବ)

(୨) ଚେଦି ଦେଶର ରାଜା । ଏ ପୁରୁବଂଶରେ ଜନ୍ମଗ୍ରହଣ କରିଥିଲେ । ଇନ୍ଦ୍ରଙ୍କ ଅନୁଗ୍ରହରୁ ବସୁ ଚେଦି ରାଜ୍ୟ ଅଧିକାର କରି ସେଠାରେ ରାଜତ୍ୱ କରିଥିଲେ । କିୟତ୍କାଳ ପରେ ବସୁରାଜ ଅସ୍ତ୍ରଶସ୍ତ୍ର ପରିତ୍ୟାଗ କରି କଠୋର ତପସ୍ୟାରେ ପ୍ରବୃତ୍ତ ହେଲେ । ଏହାଙ୍କ ତପସ୍ୟାରେ ଭୀତ ହୋଇ ଇନ୍ଦ୍ର ତାଙ୍କ ନିକଟରେ ଉପସ୍ଥିତ ହୋଇ ନାନାପ୍ରକାର ମିଷ୍ଟବଚନ କହି ତପସ୍ୟାରୁ ନିବୃତ୍ତ ହେବାକୁ କହିଲେ । ରାଜ ଅର୍ଥଙ୍କୁ ତପସ୍ୟା ଅନ୍ତରାୟ ବାଧିବ, ତେଣୁ ରାଜ୍ୟଶାସନରେ ମନୋଯୋଗୀ ହେବା ଅତି ଭଲ । ବସୁ ଇନ୍ଦ୍ରଙ୍କ ପ୍ରସ୍ତାବରେ ସମ୍ମତ ହୋଇ ତପସ୍ୟା ପରିତ୍ୟାଗ କଲେ ଏବଂ ରାଜ୍ୟ-ଶାସନରେ ମନଦେଲେ । ଇନ୍ଦ୍ର ତାଙ୍କ ସହିତ ମିତ୍ରତା ସ୍ଥାପନ କଲେ । ପୃଥିବୀରେ ଥାଇ ମଧ୍ୟ ସେ ଇନ୍ଦ୍ରଙ୍କର ପ୍ରିୟସଖା ମଧ୍ୟରେ ଗଣ୍ୟ ହେଉଥିଲେ । ଦେବରାଜ ଏହାଙ୍କୁ ଗୋଟିଏ ଆକାଶଗାମୀ ବିମାନ ଦାନ କରିଥିଲେ । ଏହି ବିମାନ ଯୋଗେ ବସୁ ଆକାଶରେ ଗମନାଗମନ କରି ପାରୁଥିଲେ । ତେଣୁ ସେ 'ଉପରିଚର' ନାମରେ ପ୍ରସିଦ୍ଧି ଲାଭ କରିଥିଲେ ।

(ମହାଭାରତ ଆଦିପର୍ବ)

ହିନ୍ଦୀ ଶବ୍ଦସାଗରରେ ଉଲ୍ଲେଖ ଅଛି—ମହାଭାରତ ମତରେ ବସୁ-ମାନଙ୍କର ନାମ—ଧର ବା ଭବ, ଧ୍ରୁବ, ସୋମ, ବିଷ୍ଣୁ, ଅନିଳ, ଅନଳ, ପ୍ରତ୍ୟୁଷ ଓ ପ୍ରଭବ ବା ପ୍ରଭାସ । ଭାଗବତ ମତରେ ଦ୍ରୋଣ, ପ୍ରାଣ, ଧ୍ରୁବ, ଅର୍କ, ଅଗ୍ନି, ଦୋଷ, ବସ୍ତୁ ଓ ବିଭାବସୁ । ଏମାନେ ବସୁଦେବତା ଓ ଏମାନେ ଦକ୍ଷ ପ୍ରଜାପତିଙ୍କ କନ୍ୟା 'ବସୁ'ଙ୍କ ଗର୍ଭରୁ ତାଙ୍କ ସ୍ୱାମୀ ଧର୍ମଙ୍କ ଔରସରେ ଜନ୍ମିଥିଲେ । ଥରେ ବସୁମାନେ ବଶିଷ୍ଠ ନନ୍ଦିନୀ ଗାଈକୁ ହରାଇ ନେବାରୁ

ବଶିଷ୍ଠ ଶାପ ଦେଲେ ଓ ତନ୍ଥିର ଫଳରେ ସେମାନେ ଶାନ୍ତନୁଙ୍କ ପତ୍ନୀ ଗଙ୍ଗାଙ୍କ ଗର୍ଭରୁ ଜନ୍ମଗ୍ରହଣ କଲେ, ଓ ଜନ୍ମ ହେବା କ୍ଷଣି ମାତା ସେମାନଙ୍କ ମଧ୍ୟରୁ ୭ ଜଣଙ୍କୁ ଗଙ୍ଗା ନଦୀର ଗର୍ଭକୁ ଫିଙ୍ଗି ଦେଇଥିଲେ । କେବଳ ସପ୍ତମ ଶିଶୁ ଭୀଷ୍ମ ଶାନ୍ତନୁଙ୍କ ଯୋଗୁଁ ବଞ୍ଚିଗଲେ ।

ବେଦରେ ବସୁ ଶବ୍ଦର ପ୍ରୟୋଗ ଅଗ୍ନି, ମରୁତ୍, ଇନ୍ଦ୍ର, ଉଷା, ଅଶ୍ୱୀ, ରୁଦ୍ର, ବାୟୁ ଓ ଆଦିତ୍ୟଙ୍କ ପ୍ରତି ହୋଇଅଛି । ବୃହଦାରଣ୍ୟକରେ ପୃଥିବୀ, ବାୟୁ, ଅନ୍ତରୀକ୍ଷ, ଆଦିତ୍ୟ, ଦ୍ୟୌ, ଅଗ୍ନି, ଚନ୍ଦ୍ରମା ଓ ନକ୍ଷତ୍ରଙ୍କ ପ୍ରତି ପ୍ରୟୋଗ କରାଯାଇଛି । (ଭାଷାକୋଷ)

**ବସୁଦା**—ନର୍ମଦା ନାମ୍ନୀ ଗନ୍ଧର୍ବୀର କନ୍ୟା ଓ ମାଲୀ ରାକ୍ଷସର ପତ୍ନୀ । ଏହାଙ୍କ ଗୃହ ପୁତ୍ର ଅନଳ, ଅନିଳ, ହର ଓ ସମ୍ପାତି ବିଭୀଷଣଙ୍କର ମାତୁଳ ଥିଲେ ।

(ହିନ୍ଦୀ ଶବ୍ଦସାଗର)

**ବସୁଦେବ** - ଶ୍ରୀକୃଷ୍ଣଙ୍କ ପିତା । ଯୁଧିଷ୍ଠିରାଦିଙ୍କ ଜନନୀ କୁନ୍ତୀଦେବୀ ଏହାଙ୍କର ଭଗିନୀ । ଏହାଙ୍କ ପିତାଙ୍କ ନାମ ଶୂର ଓ ମାତାଙ୍କ ନାମ ମାରିଷା । ଏହାଙ୍କର ୧୪ଟି ପତ୍ନୀ ଥିଲେ । ସର୍ବଜ୍ୟେଷ୍ଠା ପତ୍ନୀ ରୋହିଣୀ ବାହ୍ଲୀକଙ୍କ କନ୍ୟା ଓ ବଳରାମଙ୍କ ଜନନୀ । ସର୍ବ କନିଷ୍ଠା ପତ୍ନୀ ଦେବକୀ, ଦେବକଙ୍କ କନ୍ୟା ଓ ଶ୍ରୀକୃଷ୍ଣଙ୍କର ମାତା । (କଂସ ଦେଖ)

ହିନ୍ଦୀ ଶବ୍ଦସାଗର ମତରେ—ବସୁଦେବ ଯଦୁବଂଶର ଶୂର କୁଳର ରାଜା ଦେବମୀଢ ଓ ତାଙ୍କ ପତ୍ନୀ ମାରିଷାଙ୍କଠାରୁ ଜନ୍ମିଥିଲେ । ଏ ଜନ୍ମିବା ସମୟରେ ସ୍ୱର୍ଗରୁ ଦୁନ୍ଦୁଭି ଶବ୍ଦ ଶୁଣାଯାଇଥିଲା । ଏଥିଯୋଗୁଁ ଏହାଙ୍କର ଏକ ନାମ ଆନକଦୁନ୍ଦୁଭି । ଏ ପିତାଙ୍କ ଜ୍ୟେଷ୍ଠ ପୁତ୍ର ଥିଲେ । ଏହାଙ୍କର ପୌରବୀ, ରୋହିଣୀ, ମଦିରା, ଧରା, ବୈଶାଖୀ, ଭଦ୍ରା, ସୁନାମ୍ନୀ, ସହଦେବା, ଶାନ୍ତିଦେବା, ସୁଦେବା, ଦେବରକ୍ଷିତା ଓ ଦେବକୀ ନାମରେ ବାର ଗୋଟି ଭାର୍ଯ୍ୟା ଥିଲେ । ଏହାଙ୍କ ଛଡ଼ା ସୁତନୁ ଓ ବଡ଼ବା ନାମରେ ଦୁଇ ଦାସୀ ଥିଲେ । ରୋହିଣୀଙ୍କ ଗର୍ଭରୁ ବଳରାମ ଓ ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ଜାତ ହୋଇଥିଲେ । ପାଣ୍ଡବମାତା କୁନ୍ତୀ ଏହାଙ୍କର ଭଉଣୀ ଥିଲେ । (ଭାଷାକୋଷ)

**ବସୁନ୍ଧରା**—କୁବେରଙ୍କ ସହଚର ବସୁନ୍ଧରଙ୍କ ପତ୍ନୀ । (୨) ଶ୍ୱଫଲକଙ୍କ କନ୍ୟା ଓ କୃଷ୍ଣତନୟ ଶାମ୍ବଙ୍କ ଭାର୍ଯ୍ୟା । (ହିନ୍ଦୀ ଶବ୍ଦସାଗର)

**ବସୁମାସ**—ରାଜା ହର୍ଯ୍ୟଶ୍ୱଙ୍କ ପୁତ୍ର ଓ ମହାରାଜ ଯଯାତିଙ୍କ ଦୌହିତ୍ର ।

**ବାଗ୍ମତୀ**—ନେପାଳର ନଦୀ ବିଶେଷ । ବରାହପୁରାଣରେ ଏ ନଦୀ ଗଙ୍ଗାଙ୍କଠାରୁ ଅଧିକ ପବିତ୍ର ବୋଲି ବୋଲଯାଇଛି । ଏଥିରେ ସ୍ନାନ କଲେ ଓ ଏହା କୂଳରେ ମଲେ ବିଷ୍ଣୁଲୋକ ପ୍ରାପ୍ତି ହୁଏ । (ହିନ୍ଦୀ ଶବ୍ଦସାଗର)

**ବାଣ**—ଦୈତ୍ୟପତି । ଦୈତ୍ୟରାଜ ବଳିଙ୍କର ଏ ଜ୍ୟେଷ୍ଠ ପୁତ୍ର । ଏହାଙ୍କ ରାଜଧାନୀର ନାମ ଶୋଣିତପୁର । ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ ଏହାଙ୍କ କନ୍ୟା ଉଷାଙ୍କୁ ବିବାହ କରିଥିଲେ । (ଅନିରୁଦ୍ଧ ଦେଖ) । ବାଣାସୁର ଏକାନ୍ତ ଶିବଭକ୍ତ ଥିଲେ ।

ହିନ୍ଦୀ ଶବ୍ଦସାଗର ମତରେ—ବାଣାସୁର ଶିବଙ୍କ ବରରେ ୧୦୦୦ହାତ ଉଚ୍ଚ ଓ ସହସ୍ର ବାହୁ ହୋଇଥିଲେ । ପାତାଳର ଶୋଣିତପୁର ଏହାଙ୍କର ରାଜଧାନୀ ଥିଲା । ଏ ହଜାରେ ବର୍ଷ ତପସ୍ୟା କରି ଶିବଙ୍କଠାରୁ ବର ପାଇଥିଲେ ଯେ ଶିବ ଏହାଙ୍କୁ ଯୁଦ୍ଧରେ ସ୍ୱୟଂ ସାହାଯ୍ୟ କରିବେ । ଏହାଙ୍କ କନ୍ୟା ଉଷା ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ ସଙ୍ଗେ ପ୍ରଣୟାସକ୍ତା ହୋଇ ସ୍ୱସଖୀ ଚିତ୍ରଲେଖାଙ୍କୁ ପଠାଇ ଆକାଶ ମାର୍ଗରେ ଅନିରୁଦ୍ଧଙ୍କୁ ଆଣି ଅନ୍ତଃପୁରରେ ରଖିଥିବା ସମୟରେ ବାଣାସୁର ଅନିରୁଦ୍ଧଙ୍କୁ କାରାବଦ୍ଧ କଲେ । ଶ୍ରୀକୃଷ୍ଣ ଏହା ଶୁଣି ବାଣାସୁରଙ୍କୁ ଆକ୍ରମଣ କଲେ । ମହାଦେବଙ୍କ କହିବା ଅନୁସାରେ ଶ୍ରୀକୃଷ୍ଣ ବାଣାସୁରଙ୍କ ଚାରିଗୋଟି ହାତ ଛାଡ଼ିଦେଲେ, ବାକି ହାତଯାକ କାଟି ପକାଇଲେ । ପରେ ବାଣ ପରାଜିତ ଓ ବାଧ୍ୟ ହୋଇ ଉଷାଙ୍କୁ ଅନିରୁଦ୍ଧଙ୍କ ହସ୍ତରେ ସମର୍ପଣ କଲେ । (ଭାଷାକୋଷ)

**ବାତାପି**—ପ୍ରହ୍ଲାଦ ବଂଶୀୟ ଧନାଢ୍ୟ ଦାନବ । ହିନ୍ଦୀ ଶବ୍ଦସାଗର ମତରେ—ଆତାପି ବାତାପି ନାମରେ ଦୁଇ ଭାଇ ଅସୁର ଥିଲେ ଓ ଏମାନେ ଋଷିମାନଙ୍କ ଉପରେ ନାନା ଅତ୍ୟାଚାର କରୁଥିଲେ । ବାତାପି ମେଣ୍ଢାରୂପ ଧରୁଥିଲା ଓ ଆତାପି ଉକ୍ତ ମେଣ୍ଢାକୁ ମାରି ଉକ୍ତ ମାଂସ ଋଷିମାନଙ୍କୁ ଖାଇବାକୁ ଦେଉଥିଲା । ଋଷିମାନେ ଉକ୍ତ ମାଂସ ଖାଇ ସାରିବା ପରେ ଆତାପି ଋଷିମାନଙ୍କ ଆଗକୁ ଆସି ଆପଣା ଭାଇର ନାମ ଧରି ଡାକ ପକାଉଥିଲା । ଡାକ ପକାଇବାରୁ ବାତାପି ଉକ୍ତ ମୁନିମାନଙ୍କ ପେଟ ଚିରି ପେଟରୁ ବାହାରୁଥିଲା—ଏହିପରି ଏ ଦୁଇ ଭାଇ ଅନେକ ମୁନିଙ୍କ ପ୍ରାଣ ନେଲେ । ଦିନେ ଅଗସ୍ତ୍ୟଋଷି ଆତାପି ଘରେ ଯାଇଁ ପହଞ୍ଚିବାରୁ ଆତାପି, ବାତାପିର ମାଂସକୁ ଅଗସ୍ତ୍ୟଙ୍କୁ ଖୁଆଇଲା । ଅଗସ୍ତ୍ୟ

ସମୁଦ୍ର ପାଣି ପିଇ ତାକୁ ଜୀର୍ଣ୍ଣ କରିଦେଲେ ଓ ଆତାପି ଖାଇବୁ ଯେତେ ଡାକିଲା ବାତାପି ଆଉ ଅଗସ୍ତ୍ୟଙ୍କ ପେଟରୁ ବାହାରିଲା ନାହିଁ ।

କୃପାସିନ୍ଧୁ ଅର୍ଥାତ୍ ବଳରାମ ଦାସଙ୍କ କୃତ ଦାଣ୍ଡି ରାମାୟଣ ଆଦିକାଣ୍ଡରେ ଏହି ଉପାଖ୍ୟାନଟି ଠିକ୍ ଉପରୋକ୍ତଭାବେ ବର୍ଣ୍ଣିତ ହୋଇଅଛି । ମାତ୍ର ସମ୍ଭବତଃ ଅତାପି ପରିବର୍ତ୍ତେ ଇଲ୍ୱଳ ବୋଲି ଲେଖାଥିବା ଦେଖାଯାଏ ।

**ବାମନ**—ବିଷ୍ଣୁଙ୍କର ଅବତାର ବିଶେଷ । (ବଳି ଦେଖ) (୨) ହନୁମାନଙ୍କର ଏକ ପୁତ୍ରର ନାମ (ହିନ୍ଦୀ ଶବ୍ଦସାଗର) (୩) ଗୋଟିଏ ନାଗର ନାମ (୪) ଗରୁଡ଼ବଂଶୀ ଗୋଟିଏ ଚଢ଼େଇର ନାମ (୫) କ୍ରୌଞ୍ଚଦ୍ୱୀପର ଏକ ପର୍ବତର ନାମ ବିଶେଷ । (୬) ଅଠର ଗୋଟି ପୁରାଣ ମଧ୍ୟରୁ ଅନ୍ୟତମ ।

(ହିନ୍ଦୀ ଶବ୍ଦସାଗର)

**ବାୟବ୍ୟାସ୍ତ୍ର**—ପ୍ରାଚୀନ କାଳର ବାୟୁ ଚାଳିତ ଅସ୍ତ୍ର ବିଶେଷ ।

**ବାରାହୀ**—ବରାହରୂପିଣୀ ଶକ୍ତି ବା ଦେବୀ । ମାତୃକା ବିଶେଷ । ସପ୍ତ ମାତୃକା ଯଥା:—

ବ୍ରାହ୍ମୀ ମାହେଶ୍ୱରୀ ଚୈବ କୌମାରୀ ବୈଷ୍ଣବୀ ତଥା
ବାରାହୀ ଚ ତଥେନ୍ଦ୍ରାଣୀ ଚାମୁଣ୍ଡା ସପ୍ତ ମାତୃକା ।

ଯାଜପୁରରେ ଏହି ସପ୍ତ ମାତୃକା ମୂର୍ତ୍ତି ଅଛି । ଚଣ୍ଡୀ ପୁରାଣ ଅଷ୍ଟମ ଅଧ୍ୟାୟରେ ଏ ସପ୍ତ ମାତୃକାଙ୍କ ଆବିର୍ଭାବ ବିଷୟ ବର୍ଣ୍ଣିତ ହୋଇଅଛି । ଏହି ମାତୃକା ବିଷ୍ଣୁଙ୍କ ଅଂଶ ସମ୍ଭୂତ । (ଭାଷାକୋଷ)

**ବାରୁଣୀ**—ବରୁଣଙ୍କ କନ୍ୟା । ସମୁଦ୍ର ମନ୍ଥନ ସମୟରେ କ୍ଷୀରୋଦ ସାଗରରୁ ଚନ୍ଦ୍ର, ସୁଧା, ସ୍ୱଧା, ଧନ୍ୱନ୍ତରୀ, ଅପ୍‌ସରା, ଉଚ୍ଚୈଃଶ୍ରବା, କୌସ୍ତୁଭ ଓ ଲକ୍ଷ୍ମୀଙ୍କ ସହିତ ବରୁଣ କନ୍ୟା ବାରୁଣୀ ମଧ୍ୟ ଉଠିଥିଲେ । ଏହି ବରୁଣ କନ୍ୟା ସୁରାର ଅଧିଷ୍ଠାତ୍ରୀ ଦେବୀ । (ଭାଷାକୋଷ)

**ବାଲଖିଲ୍ୟ**—ଅଙ୍ଗୁଷ୍ଠ ପ୍ରମାଣ ୬୦ ହଜାର ଋଷି । ଏମାନଙ୍କ ତପଃ ପ୍ରଭାବରୁ ଗରୁଡ଼ଙ୍କର ଉତ୍ପତ୍ତି ହୋଇଥିଲା । ଏକଦା ପ୍ରଜାପତି କଶ୍ୟପ ପୁତ୍ର କାମନାରେ

ଏକ ଯଜ୍ଞ କଲେ । ମହର୍ଷି କଶ୍ୟପ ଦେବରାଜ ଇନ୍ଦ୍ରଙ୍କୁ ଓ ବାଲଖିଲ୍ୟ ମୁନି-ମାନଙ୍କୁ ଯଜ୍ଞ ସମିଧ ଆହରଣ କରିବା ପାଇଁ ନିଯୁକ୍ତ କରିଥିଲେ । ବାଲଖିଲ୍ୟ-ମାନେ ସମସ୍ତେ ମିଶି ଅତି କଷ୍ଟରେ ଗୋଟିଏ ପତ୍ର ବୋହି ଆଣି ଦେଲେ । ସେମାନେ ଅତି ଖର୍ବାକୃତି ଓ ଦୁର୍ବଳ । ସେମାନେ ଜଳପୂର୍ଣ୍ଣ ଏକ ଗୋଷ୍ପଦରେ ପଡ଼ି ଅତି କଷ୍ଟ ପାଉଥିଲେ । ବଳଦୃପ୍ତ ଇନ୍ଦ୍ର ଏହା ଦେଖି ସେମାନଙ୍କୁ ଉପହାସ କଲେ । ସେମାନଙ୍କୁ ଡେଇଁ ସେ ବାଟେ ଚାଲିଗଲେ । ବାଲଖିଲ୍ୟ-ମାନେ ଏପରି ଅପମାନିତ ହୋଇ କ୍ରୋଧ କଲେ । ସେମାନେ ଏହି ଇନ୍ଦ୍ରଙ୍କ ପରି ଅଧିକ ବଳଶାଳୀ, କାମଗାମୀ, କାମବୀର୍ଯ୍ୟ ଅପର ଏକ ଇନ୍ଦ୍ର ପ୍ରାର୍ଥନା କରି ଏକ ମହାଯଜ୍ଞ ଆରମ୍ଭ କଲେ । ଦେବରାଜ ଏହାଜାଣି କଶ୍ୟପଙ୍କ ଶରଣାପନ୍ନ ହେଲେ । କଶ୍ୟପ ବାଲଖିଲ୍ୟମାନଙ୍କୁ କହିଲେ—ଦେଖ, ବ୍ରହ୍ମାଙ୍କ ଯୋଗୁଁ ଏ ଦେବରାଜ ଇନ୍ଦ୍ର ହୋଇଛନ୍ତି । ତୁମ୍ଭେମାନେ ପୁଣି ଆଉ ଗୋଟିଏ ଇନ୍ଦ୍ର ପ୍ରାର୍ଥନା କରୁଛ । ଏହା କଲେ ବ୍ରହ୍ମାଙ୍କ ନିୟମର ଅନ୍ୟଥା ହେବ । ମାତ୍ର ତୁମ୍ଭମାନଙ୍କ ସଙ୍କଳ୍ପ ଅନ୍ୟଥା କରିବା ମୋର ଅଭିପ୍ରାୟ ନୁହେଁ । ଅତଏବ ତୁମ୍ଭେମାନେ ଯେ ଇନ୍ଦ୍ର ବୋଲି ପ୍ରାର୍ଥନା କରୁଛ ସେ ପତଗେନ୍ଦ୍ର ବା ପକ୍ଷୀନ୍ଦ୍ର ହେଉ । ବାଲଖିଲ୍ୟମାନେ ଏ ପ୍ରସ୍ତାବରେ ରାଜି ହୋଇଗଲେ । ଏହି ସମୟରେ କଶ୍ୟପପତ୍ନୀ ବିନତା ଋତୁ ସ୍ନାନ କରି ସ୍ୱାମୀଙ୍କ ସମୀପକୁ ଆସିଲେ । ମହର୍ଷି କଶ୍ୟପ କହିଲେ—ଦେବୀ, ଆଜି ତୁମର ମନୋରଥ ପୂର୍ଣ୍ଣ ହେବ । ବାଲଖିଲ୍ୟ ଋଷିମାନଙ୍କ ତପଃ ପ୍ରଭାବରୁ ଏବଂ ମୋର ସଙ୍କଳ୍ପ ଯୋଗୁଁ ତୁମ ଗର୍ଭରେ ତ୍ରିଭୁବନବିଜୟୀ ନାମରେ ଦୁଇଟି ପୁତ୍ର ଜନ୍ମିବେ । ଏ ଦୁଇଟି କାମରୂପୀ ପୁତ୍ର ସମସ୍ତ ବିହଙ୍ଗଜାତିର ଉପରେ ଇନ୍ଦ୍ରତ୍ୱ ଲାଭ କରିବେ । ଏହା ଫଳରେ ବିନତାଙ୍କ ଗର୍ଭରୁ ଅରୁଣ ଓ ଗରୁଡ଼ ଜନ୍ମ ହୋଇଥିଲେ ।

(ମହାଭାରତ ଆଦିପର୍ବ, ଗରୁଡ଼ ଓ ଅରୁଣ ଦେଖ)

**ବାଳଗ୍ରହ**—ଶିଶୁମାନଙ୍କ ପ୍ରାଣନାଶକ ନଅଗୋଟି ଉପଦେବତା । ଏମାନଙ୍କ ନାମ ସ୍କନ୍ଦ,ସ୍କନ୍ଦାପସ୍ମାର, ଶକୁନୀ, ରେବତୀ, ପୂତନା, ଗନ୍ଧପୂତନା, ଶୀତ ପୂତନା, ମୁଖମଣ୍ଡିକା ଓ ନୈଗମେୟ; କଥିତ ଅଛି ଯେ ଯେଉଁ ପରିବାରରେ ଦେବପୂଜା, ଅତିଥିପୂଜା, ସଦାଚାର ପାଳିତ ନ ହୁଏ ସେ ପରିବାର ପିଲାଙ୍କୁ ଏ ଗ୍ରହମାନେ ଆକ୍ରମଣ କରନ୍ତି । ଏ ଗ୍ରହଜନିତ ରୋଗରେ ଆକ୍ରାନ୍ତ ଶିଶୁ ବାରମ୍ବାର କାନ୍ଦେ, ନଖରେ ଆପଣାର ଦେହ ବା ପରର ଦେହକୁ ରାମ୍ପୁଡ଼େ, ଦାନ୍ତ ରଗଡ଼େ, ଓଠ ଚପେ, ଖାଏ ନାହିଁ, ହାତ ଗୋଡ଼ ମୁଠା ମୁଠା କରେ ଓ ମୂର୍ଚ୍ଛିତ ହୁଏ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ବାଳ (ଳୀ)**—କପିପତି, ଏହାଙ୍କର ରାଜଧାନୀର ନାମ କିଷ୍କିନ୍ଧ୍ୟା । ଏକଦା ମେରୁ ପର୍ବତରେ ଯୋଗାସନାରେ ଅବସ୍ଥିତ ବ୍ରହ୍ମାଙ୍କ ଚକ୍ଷୁରୁ ହଠାତ୍ ଅଶ୍ରୁବିନ୍ଦୁ ପତିତ ହେଲା । ଏହି ଅଶ୍ରୁବିନ୍ଦୁରୁ ଏକ ବାନର ଜନ୍ମିଲା । ଏହି ବାନର ହଠାତ୍ ନାରୀରୂପ ଧାରଣ କଲା । ଦେବରାଜ ଇନ୍ଦ୍ର ଓ ସୂର୍ଯ୍ୟ ଏହି ରମଣୀଙ୍କୁ ଦେଖି କାମାର୍ତ୍ତ ହୋଇଉଠିଲେ । ଇନ୍ଦ୍ର ଏହାଙ୍କୁ ଲାଭ କରି ନପାରି ତାହାର ମସ୍ତକରେ ରେତଃ ସ୍ଖଳନ ପୂର୍ବକ ନିବୃତ୍ତ ହେଲେ । ସୂର୍ଯ୍ୟ ଏହି ରମଣୀର ଗ୍ରୀବାଦେଶରେ ବୀର୍ଯ୍ୟ ନିକ୍ଷେପ କଲେ । ମସ୍ତକରୁ ବାସବଙ୍କ ରେତଃରେ ବାଳି ଓ ଗ୍ରୀବାଦେଶରୁ ସୂର୍ଯ୍ୟଙ୍କ ଶୁକ୍ରରୁ ସୁଗ୍ରୀବ ଜନ୍ମ ହେଲେ । କିଯତ୍‌କାଳ ପରେ ଏହି ରମଣୀ ବାନର ରୂପ ଧାରଣ କରି ଏ ଦୁଇ ପୁତ୍ରଙ୍କ ସହିତ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହେଲେ । ବ୍ରହ୍ମା ବାଳିଙ୍କୁ ବା ନରେନ୍ଦ୍ର-ରୂପେ ସ୍ୱୀକାର କରି କିଷ୍କିନ୍ଧ୍ୟାରେ ରାଜତ୍ୱ କରିବାକୁ ଆଦେଶ ଦେଲେ । ବାଳିଙ୍କର ମହିଷୀ ତାରା ଏବଂ ସୁଗ୍ରୀବ ପତ୍ନୀଙ୍କ ନାମ ରୁମା ।

ଏକଦା ଏକ ମାୟାବୀ ଦୈତ୍ୟକୁ ବଧ କରିବା ପାଇଁ ବାଳି ପାତାଳକୁ ଗମନ କଲେ । ସୁଗ୍ରୀବ ଭ୍ରାତାଙ୍କର ପ୍ରତ୍ୟାଗମନରେ ବିଲମ୍ବ ହେବା ଦେଖି ତାହାଙ୍କର ନିଶ୍ଚୟ ମୃତ୍ୟୁ ଘଟିଛି ଭାବି ପାତାଳ ଦ୍ୱାରରେ ପଥର ମଡାଇଦେଇ ରାଜ୍ୟକୁ ଫେରିଲେ ଏବଂ ବାଳି ନିହତ ହୋଇଛନ୍ତି ବୋଲି ଘୋଷଣା କଲେ । ମନ୍ତ୍ରୀମାନେ ସୁଗ୍ରୀବଙ୍କୁ ରାଜା କରିବା ପାଇଁ ସ୍ଥିର କଲେ । ସୁଗ୍ରୀବ ସିଂହାସନରେ ବସି ଆନନ୍ଦରେ ରାଜ୍ୟ ପାଳନ କଲେ ଏବଂ ତାରାଙ୍କୁ ପାଟରାଣୀ ରୂପେ ସ୍ୱୀକାର କଲେ । କିଯତ୍‌କାଳ ପରେ ବାଳି ରାଜ୍ୟକୁ ଫେରି ସୁଗ୍ରୀବଙ୍କୁ କ୍ରୋଧରେ ରାଜ୍ୟରୁ ବାହାର କରିଦେଲେ ଏବଂ ତାଙ୍କ ପତ୍ନୀ ରୁମାଙ୍କୁ ନିଜର ରାଣୀ କରିଥିଲେ । ରାମଙ୍କ ଦ୍ୱାରା ବାଳି ବଧ ହେବା ପରେ ସୁଗ୍ରୀବ କିଷ୍କିନ୍ଧ୍ୟାରେ ରାଜା ହେଲେ । ସ୍ୱୀୟ ପତ୍ନୀ ରୁମାଙ୍କ ସହିତ ତାରାଙ୍କୁ ମଧ ଭୋଗ କଲେ । (ରାମାୟଣ—କିଷ୍କିନ୍ଧ୍ୟାକାଣ୍ଡ ଓ ଉତ୍ତରାକାଣ୍ଡ)

**ବାଲ୍ମୀକ**—ବିଖ୍ୟାତ ରାମାୟଣ ରଚୟିତା ମହାମୁନି । ଏହି ମହର୍ଷି ଅଯୋଧ୍ୟାଧିପତି ରାମଚନ୍ଦ୍ରଙ୍କର ସମସାମୟିକ ଲୋକ, ମାତ୍ର ରାମଚନ୍ଦ୍ରଙ୍କଠାରୁ ବହୁ ବୟସାଧିକ । ରାମଚନ୍ଦ୍ରଙ୍କ ପିତା ଦଶରଥ ଏହାଙ୍କର ସମବୟସ୍କ ଥିଲେ । ଅଯୋଧ୍ୟାର ଦକ୍ଷିଣରେ ଗଙ୍ଗା ପ୍ରବାହିତ । ଗଙ୍ଗାର ଦକ୍ଷିଣ ତୀରଠାରୁ ଅନାର୍ଯ୍ୟଗଣଙ୍କ ଅଧିକୃତ ବନବିସ୍ତାର । ଏହି ବନ ଭିତରେ ତମସା ନଦୀ ପ୍ରବାହିତ । ଏହି ତମସା ତୀରରେ ବାଲ୍ମୀକଙ୍କ ତପୋବନ ଅବସ୍ଥିତ । ଏହି ତମସାତୀର ଆଶ୍ରମରେ ବସି ମହର୍ଷି ବାଲ୍ମୀକ ତାଙ୍କର ଅତୁଳନୀୟ କାବ୍ୟ ରଚନା

କରିଥିଲେ । ମହର୍ଷି ସ୍ୱୀୟ ରାମାୟଣର ପ୍ରାରମ୍ଭରେ ଯାହା ଲେଖିଛନ୍ତି ତାହା ପାଠ କଲେ ସେଥିରୁ ସ୍ପଷ୍ଟ ଜଣାଯାଏ ଯେ ରାମଚନ୍ଦ୍ରଙ୍କ ରାଜ୍ୟ ପ୍ରାପ୍ତି ପରେ ଏହି ବୃହତ୍ ଗ୍ରନ୍ଥ ରଚିତ ହୋଇଥିଲା । କେହି କେହି ମତ ଦେଇଛନ୍ତି ଯେ ବାଲ୍ମୀକି ଆଶ୍ରମ ଅଯୋଧ୍ୟାଠାରୁ ମଥୁରା ମଧ୍ୟରେ କୌଣସି ସ୍ଥାନରେ ଅବସ୍ଥିତ ଥିଲା । ରଘୁବଂଶରେ ଉଲ୍ଲେଖ ଅଛି ଯେ ଶତ୍ରୁଘ୍ନ ଲବଣକୁ ବିନାଶ କରି ଯିବା ସମୟରେ ପଥରେ ବାଲ୍ମୀକି ଆଶ୍ରମରେ ଅତିଥି ହୋଇଥିଲେ । ବାଲ୍ମୀକି ଭାରତର ଆଦି କବି ଏବଂ ରାମାୟଣ ଆଦି କାବ୍ୟ ତାଙ୍କର ସୃଷ୍ଟି । 'ଆଦିକାବ୍ୟମିଦଞ୍ଚାର୍ଷଂ ପୁରା ବାଲ୍ମୀକିନା କୃତମ୍' ? (ରାମାୟଣ)

ବାଲ୍ମୀକି ସଶିଷ୍ୟ ତମସାତୀରକୁ ଗମନ କରି ଦେଖିଲେ ବାଣବିଦ୍ଧ କ୍ରୌଞ୍ଚମିଥୁନ ଏବଂ କରୁଣାର୍ଦ୍ର ଚିତ୍ତ ହୋଇ ବ୍ୟାଧକୁ ଅଭିଶାପ ଦେଲେ ।

"ମାନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ ।
ଯତ୍ କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତମ୍ ।,'
(ରାମାୟଣ-ଆଦିକାଣ୍ଡ ୨ୟ ସର୍ଗ)

ଅର୍ଥାତ୍-ରେ ନିଷାଦ, ତୁ କାମାର୍ତ୍ତ କ୍ରୌଞ୍ଚମିଥୁନ ମଧ୍ୟରୁ ଗୋଟିକୁ ବଧ କଲୁ ଏଥିଲାଗି ତୁ ଅଧିକ ପ୍ରତିଷ୍ଠା ଲାଭ କରିବୁ ନାହିଁ । ଏହିପରି ବ୍ୟାଧକୁ ଅଭିଶାପ ଦେଇ ଶିଷ୍ୟ ଭରଦ୍ୱାଜଙ୍କ ସହିତ ଆଶ୍ରମକୁ ଫେରିଲେ । ଏହି ସମୟରେ ବ୍ରହ୍ମା ତାଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଯେଉଁ ଶ୍ଳୋକ ଦ୍ୱାରା ମହର୍ଷି ନିଷାଦକୁ ଅଭିଶାପ ଦେଇଥିଲେ ତାହା ଅନୁଷ୍ଟୁପ୍ ଛନ୍ଦରେ ରଚିତ । ବ୍ରହ୍ମାଙ୍କ ଅନୁରୋଧରେ ବାଲ୍ମୀକି ସେହି ଛନ୍ଦରେ ରାମାୟଣ ରଚନା କଲେ । ବାଲ୍ମୀକି ଯେ ରତ୍ନାକର ଦସ୍ୟୁ ଥିଲେ । ଏହା ରାମାୟଣରେ ନାହିଁ । ମାତ୍ର ବ୍ୟାସକୃତ ଅଧ୍ୟାତ୍ମ ରାମାୟଣରେ ରାମଚନ୍ଦ୍ର ବନଗମନ କଲାବେଳେ ବାଲ୍ମୀକି ଆଶ୍ରମକୁ ଯିବାକଥା ସ୍ପଷ୍ଟରୂପେ ଜଣାଯାଏ । ଅଯୋଧ୍ୟାକାଣ୍ଡ ଷଷ୍ଠ ଅଧ୍ୟାୟର ,'ପ୍ରୟଯୌ ଚିତ୍ରକୂଟାଦ୍ରିଂ ବାଲ୍ମୀକେର୍ଯତ୍ର ଆଶ୍ରମଃ । ଗତ୍ୱା ରାମୋଽଥ ବାଲ୍ମୀକେରାଶ୍ରମଂ ଋଷିସଙ୍କୁଳମ୍" । ବୋଲି ଲେଖାଅଛି । ସେହି ଅଧ୍ୟାୟରେ ବାଲ୍ମୀକି ରାମନାମର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ନିଜର କଥା କହିଛନ୍ତି । ଯଥା—

ରାମ ତ୍ୱନ୍ନାମ ମହିମା ବର୍ଣ୍ଣ୍ୟତେ କେନ ବା କଥଂ ।
ଯତ୍ ପ୍ରଭାବାଦହଂ ରାମ ବ୍ରହ୍ମର୍ଷିତ୍ୱମବାପ୍ତବାନ୍ ।

ଅହଂ ପୁରା କିରାତେଷୁ କିରାତୈଃ ସହ ବର୍ଦ୍ଧିତଃ
ଜନ୍ମମାତ୍ର ଦ୍ୱିଜତ୍ୱଂ ମେ ଶୂଦ୍ରାଚାରରତଃ ସଦା ।
ଶୂଦ୍ରାୟାଂ ବହବଃ ପୁତ୍ରା ଉତ୍ପନ୍ନାମେ ଜିତାତ୍ମନଃ
ତତଃ ଚୌରୈଶ୍ଚ ସଙ୍ଗମ୍ୟ ଚୌରୋହମଭବଂ ପୁରା ।

ତା ପରେ ମୁନିସଙ୍ଗ ପ୍ରଭାବରୁ ସେ ରାମନାମ ଜପ କଲେ । କରୁ କରୁ ତାଙ୍କ ଦେହରେ ଉଇହୁଙ୍କା ହୋଇଗଲା । ତହୁଁ ମୁନିମାନେ ଆସି କହିଲେ—

ବଲ୍ମୀକାତ୍ ନିର୍ଗତ ସ୍ତ୍ୱାହଂ ମାହାତ୍ମ୍ୟାଦବ ଭାସ୍କରଃ
ନାମଯ୍ୟାତ୍ତ୍ୱମ୍ନି ଗଣ୍ୟା ବାଲ୍ମୀକି ସ୍ତ୍ୱଂ ମୁନୀଶ୍ୱର ।

**ବାସୁକି**—ସର୍ପରାଜ । କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭରୁ ଏହାଙ୍କର ଜନ୍ମ । ଏହାଙ୍କ ଭଗ୍ନୀଙ୍କ ନାମ ଜରତ୍କାରୁ । ସର୍ପକୁଳ ଧ୍ୱଂସ ନିବାରଣ ନିମିତ୍ତ ବାସୁକି ମହର୍ଷି ଜରତ୍କାରୁଙ୍କ ସହିତ ନିଜ ଭଗିନୀଙ୍କୁ ବିବାହ ଦେଇଥିଲେ । ଆସ୍ତିକ ମହର୍ଷି ଏହି ଦମ୍ପତିର ସନ୍ତାନ । ଆସ୍ତିକ, ମହାରାଜ ଜନ୍ମେଜୟଙ୍କ ସର୍ପ ଯଜ୍ଞରେ ଉପସ୍ଥିତ ହୋଇ ସର୍ପଧ୍ୱଂସ ନିବାରଣ କରିଥିଲେ । (ଆସ୍ତିକ ଦେଖ) । ଦେବାସୁର କୃତ ସମୁଦ୍ର ମନ୍ଥନ ସମୟରେ ବାସୁକି ମନ୍ଥନ ରଜ୍ଜୁର କର୍ମ ସମ୍ପାଦନ କରିଥିଲେ । ଅଷ୍ଟନାଗ ମଧ୍ୟରେ ବାସୁକି ଦ୍ୱିତୀୟ । ଏହାଙ୍କର ସହସ୍ର ଫଣା ଅଛି । ଏହି ଫଣା ଦ୍ୱାରା ସେ ପୃଥିବୀକୁ ଟେକି ଧରିଅଛନ୍ତି ।

**ବାସୁଦେବ**—ଶ୍ରୀକୃଷ୍ଣଙ୍କ ନାମାନ୍ତର ।

"କଲ୍ୟାଣ" ନାମକ ମାସିକ ହିନ୍ଦୀ ପତ୍ରିକା ୧୯୫୩ ଅପ୍ରେଲ ସଂଖ୍ୟାରେ 'ଶ୍ରୀ ଶ୍ରୀ ନାମାମୃତ ଲହରୀ' ନାମକ ପ୍ରବନ୍ଧର ମହାତ୍ମା ସୀତାରାମ ଦାସ ଓଁକାରନାଥ ବାସୁଦେବ ନାମମତେ ବ୍ୟାଖ୍ୟା କରିଛନ୍ତି ।

ବାସୁ ସର୍ବ ନିବାସସ୍ୟ ବିଶ୍ୱାନି ଯସ୍ୟ ଲୋମସୁ ।
ସ ଚ ଦେବ ପରଂବ୍ରହ୍ମ ବାସୁଦେବ ଇତି ସ୍ମୃତଃ
(ବ୍ରହ୍ମବୈବର୍ତ୍ତ)

ଅର୍ଥାତ୍ ଯେ ସମସ୍ତଙ୍କର ନିବାସ ସ୍ଥାନ ଏବଂ ବିଶ୍ୱ ସମୂହ ଯାହାଙ୍କର ଲୋମରେ ସ୍ଥିତ, ସେହି ଜ୍ୟୋତିର୍ମୟ ପରମବ୍ରହ୍ମ, ବାସୁଦେବ ନାମରେ ଖ୍ୟାତ ।

ବସନ୍ତି ତ୍ୱୟି ଭୂତାନି ବ୍ରହ୍ମାଦୀନି ପ୍ରଳୟକ୍ଷୟେ
ତ୍ୱଂ ବା ବସସି ଭୂତେଷୁ ବାସୁଦେବ ସ୍ତଦୋଚ୍ୟସେ ।
(ମତ୍ସ୍ୟପୁରାଣ)

ଅର୍ଥାତ୍ ପ୍ରଳୟ ସମୟରେ ବ୍ରହ୍ମାଦି ଦେବତା ତୁମ ହୃଦ ମଧ୍ୟରେ ନିବାସ କରନ୍ତି । ପୁଣି ତୁମେ ସମସ୍ତ ପ୍ରାଣୀମାନଙ୍କଠାରେ ନିବାସ କରୁଛ, ଏଣୁ ତୁମକୁ ବାସୁଦେବ କହନ୍ତି ।

ସର୍ବ ତ୍ରାସୌ ସମସ୍ତଂ ଚ ବସତ୍ୟତ୍ରେତି ବୈ ଯତଃ
ତତଃ ସ ବାସୁଦେବେତି ବିଦ୍ୱଦ୍‌ଭିଃ ପରିପଠ୍ୟତେ ।
(ବିଷ୍ଣୁପୁରାଣ)

ଅର୍ଥାତ୍ ସେ ସବୁଠାରେ ପୁଣି ସମସ୍ତେ ତାଙ୍କଠାରେ ନିବାସ କରନ୍ତି । ଏଣୁ ତାଙ୍କୁ ବାସୁଦେବ କହନ୍ତି । ବ୍ରହ୍ମ ବିନ୍ଦୁ ଉପନିଷଦ୍‌ରେ ମଧ୍ୟ ଏହିପରି ବ୍ୟାଖ୍ୟା ଓ ପ୍ରମାଣ ଦିଆଯାଇଛି ।

**ବାହୁ**—ଅଯୋଧ୍ୟାଧିପତି, ବିଖ୍ୟାତ ରାଜା ସଗରଙ୍କ ପିତା । (ରାମାୟଣ)

**ବାହୁଦା**—ନଦୀ ବିଶେଷ, ରାଜା ପରୀକ୍ଷିତଙ୍କ ମହିଷୀର ନାମ (ହିନ୍ଦୀ ଶବ୍ଦସାଗର)

**ବିକର୍ଣ୍ଣ**—ଦୁର୍ଯ୍ୟୋଧନଙ୍କର ଏକ ଭାଇ । ରାଜା କର୍ଣ୍ଣଙ୍କର ଏକ ପୁତ୍ର । (ହି. ଶ.)

**ବିକୁକ୍ଷି**—ସୂର୍ଯ୍ୟବଂଶୀୟ ବିଖ୍ୟାତ ରାଜା ଇକ୍ଷ୍ୱାକୁଙ୍କ ପୁତ୍ର । (ରାମାୟଣ)

**ବିକ୍ରାନ୍ତ**—ହିରଣ୍ୟାକ୍ଷ ଅସୁରର ଏକ ପୁତ୍ର । ମଦାଳସା ଗର୍ଭଜାତ କୁବଳୟାଶ୍ୱଙ୍କ ପୁତ୍ର । (ହିନ୍ଦୀ ଶବ୍ଦସାଗର)

**ବିଚିତ୍ରବୀର୍ଯ୍ୟ**—ମହାରାଜ ଶାନ୍ତନୁଙ୍କ ପୁତ୍ର । କାଶୀ ରାଜକନ୍ୟା ଅମ୍ବାଳିକା ଓ ଅମ୍ବିକା ଏ ଉଭୟେ ଏହାଙ୍କର ପାଣିଗ୍ରହଣ କରିଥିଲେ । ଅମ୍ବାଳିକାଙ୍କ ଗର୍ଭରୁ ପାଣ୍ଡୁ ଓ ଅମ୍ବିକାଙ୍କ ଗର୍ଭରୁ ଧୃତରାଷ୍ଟ୍ର ଜନ୍ମିଥିଲେ ।

**ବିଜୟ**—ଅର୍ଜୁନଙ୍କର ଏକ ନାମ । ବିଷ୍ଣୁପୁର ବା ବୈକୁଣ୍ଠର ଦ୍ୱାରରକ୍ଷକ ।

**ବିଜିତଅଶ୍ୱ**—ଭାଗବତ ୪ର୍ଥ ସ୍କନ୍ଧରେ ଅଛି, ଏ ମହାରାଜ ପୃଥୁଙ୍କର ଜ୍ୟେଷ୍ଠ ପୁତ୍ର । ଏହାଙ୍କର ଅନ୍ୟ ନାମ ଅନ୍ତର୍ଦ୍ଧାନ । ମହାରାଜ ପୃଥୁ ଅଶ୍ୱମେଧ ଯଜ୍ଞ କରିବା ସମୟରେ ଇନ୍ଦ୍ର ତାଙ୍କର ଯଜ୍ଞାଶ୍ୱ ହରଣ କରି ନେଇଥିଲେ । ବିଜିତ ତାହା

ଜାଣି ଇନ୍ଦ୍ରଙ୍କୁ କୌଣସି ପ୍ରକାର ଦଣ୍ଡ ନ ଦେଇ ଅଶ୍ୱ ଘେନ ଆସିଲେ । ଇନ୍ଦ୍ର ତାଙ୍କ ଉପରେ ତୃପ୍ତ ହୋଇ ତାଙ୍କୁ ବର ମାଗିଲେ । ବଜ୍ରଜିତଅଶ୍ୱ କହିଲେ—

ଏ ତୋର ଅନ୍ତର୍ଦ୍ଧାନ ଗତି । ପ୍ରସନ୍ନେ ଦିଅ ଶଚୀପତି ।
ଶୁଣି ସନ୍ତୋଷ ମଘବାନ । ତାହାଙ୍କୁ ଦେଲେ ଅନ୍ତର୍ଦ୍ଧାନ ।

ବଜ୍ରଜିତଅଶ୍ୱଙ୍କ ସ୍ତ୍ରୀର ନାମ ଶିଖଣ୍ଡୀ । ପାବକ, ଶୁଚି, ପବମାନ ଏହାଙ୍କର ତିନି ପୁଅ । ଅନ୍ୟ ସ୍ତ୍ରୀ ନଭସ୍ୱତୀଙ୍କଠାରୁ ହବିର୍ଦ୍ଧନ ଜନ୍ମିଥିଲେ । ପିତାଙ୍କ ଅନ୍ତେ ହବିର୍ଦ୍ଧନ ରାଜା ହେଲେ । ମାତ୍ର ରାଜସମ୍ପଦ ତାଙ୍କ ପକ୍ଷେ ବିଷତୁଲ୍ୟ ବୋଧ ହେଉଥିଲା । ହବିର୍ଦ୍ଧାନୀ ଥିଲେ ତାଙ୍କର ରାଣୀ । ଏହାଙ୍କ ଗର୍ଭରୁ ଛଅ ପୁଅ ଜନ୍ମିଥିଲେ । ଗୟ, ବର୍ହିଷଦ, କୃଷ୍ଣ, ସତ୍ୟ, ଜିତବ୍ରତ, ଶୁକ୍ଳ ଇତ୍ୟାଦି । ଏମାନେ ମହତ୍ତ୍ୱ ଗୁଣବିଶିଷ୍ଟ ଓ ଅତି ବଳଶାଳୀ ଥିଲେ ।

**ବଜିଘୋଷ**—ଜମ୍ବୁଡକ୍‌କାର ନାମାନ୍ତର । ଏହା ଏକ ପ୍ରାଚୀନ ବାଦ୍ୟ ବିଶେଷ ।

**ବଦର୍ତ୍ତ**—ଆଧୁନିକ ବେରାରର ପ୍ରାଚୀନ ନାମ । ପୁରାଣରେ ଅଛି ଯେ ଏହି ଦେଶରେ କୁଶର ଆଘାତରେ ଗୋଟିଏ ଋଷିକୁମାରଙ୍କର ମୃତ୍ୟୁ ହେବାରୁ ଏ ଦେଶରେ କୁଶ ଜନ୍ମିବ ନାହିଁ ବୋଲି ଉକ୍ତ ଋଷିକୁମାରଙ୍କ ପିତା ଉକ୍ତ ଦେଶକୁ ଅଭିଶାପ ଦେଇଥିଲେ । ସେ ଅଭିଶାପ ଫଳରେ ଏ ଦେଶରେ କୁଶ ଜନ୍ମିଲା ନାହିଁ । (ଭାଷାକୋଷ)

**ବିଦୁର**—କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କ ଔରସରେ ଓ ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀ ଅମ୍ବିକାଙ୍କ ପରିଚାରିକା ଗର୍ଭରେ ବିଦୁର ଜନ୍ମଗ୍ରହଣ କରିଥିଲେ । ଏ ଧୃତରାଷ୍ଟ୍ରଙ୍କର ମନ୍ତ୍ରୀ ଥିଲେ ମଧ୍ୟ ସର୍ବଦା ପାଣ୍ଡବମାନଙ୍କୁ ଭଲପାଉଥିଲେ । ବିଦୁର ନ୍ୟାୟ ପରାୟଣ ଓ ସତ୍ୟବାଦୀ ବୋଲି ପ୍ରସିଦ୍ଧି ଲାଭ କରିଥିଲେ । ଯେତେବେଳେ ଦୁର୍ଯ୍ୟୋଧନାଦି କୌରବମାନେ, ପାଣ୍ଡବମାନଙ୍କୁ ବାରଣାବତ ନଗରକୁ ପ୍ରେରଣ କରି ସେଠାରେ ସେମାନଙ୍କୁ ଜତୁଗୃହ ମଧ୍ୟରେ ରଖି ଦଗ୍ଧ କରିଦେବା ପାଇଁ ଷଡ଼ଯନ୍ତ୍ର କରିଥିଲେ, ବିଦୁର ତାହା ଆଗରୁ ଜାଣି ପାଣ୍ଡବମାନଙ୍କୁ ଜଣାଇ ଦେବାରୁ ସେମାନଙ୍କ ପ୍ରାଣରକ୍ଷା ହୋଇଥିଲା । ପାଣ୍ଡବମାନଙ୍କ ବିବାହ ପରେ ବିଦୁର ଧୃତରାଷ୍ଟ୍ରଙ୍କ ଆଦେଶରେ ପଞ୍ଚାଳକୁ ଯାଇ ଯୁଧିଷ୍ଠିରାଦିଙ୍କୁ ହସ୍ତିନାପୁରକୁ ଘେନି ଆସିଲେ । ଭାରତ ଯୁଦ୍ଧ ଅବସାନ ପରେ ଯୁଧିଷ୍ଠିରଙ୍କ ରାଜ୍ୟପ୍ରାପ୍ତି ପରେ ବିଦୁର ୧୫ ବର୍ଷ ଯାଏଁ ପାଣ୍ଡବମାନଙ୍କ ସହିତ ହସ୍ତିନାରେ ବାସ କରିଥିଲେ । ତା ପରେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ସହିତ ବନ ଗମନ କରି ସେହିଠାରେ

ଯୋଗ ବଳରେ ଦେହତ୍ୟାଗ କଲେ । ପୂର୍ବ ଜନ୍ମରେ ଏ ଯମ ଥିଲେ । ଅଣୀମାଣ୍ଡବ୍ୟଙ୍କ ଅଭିଶାପରେ ସେ ଶୂଦ୍ର ଯୋନି ପ୍ରାପ୍ତ ହୋଇଥିଲେ । ( ଅଣୀ-ମାଣ୍ଡବ୍ୟ ଓ କୃଷ୍ଣଦ୍ୱୈପାୟନ ଦେଖ) । 'ବଦୁର ପ୍ରଜାଗର' ନାମକ ଏକ ନୀତଶାସ୍ତ୍ର ଏହାଙ୍କ ଦ୍ୱାରା ରଚିତ ହୋଇଥିଲା ।

**ବଦୁଲା**—ସୌବୀର ରାଜମହିଷୀ । ଏ ଜଣେ ଙ୍କର ମହିଳା ଓ ଗାମ୍ଭୀର୍ଯ୍ୟ ରମଣୀ ଥିଲେ । ଏହାଙ୍କ ସ୍ୱାମୀଙ୍କ ଦେହାବସାନ ପରେ ସିନ୍ଧୁରାଜା, ବଦୁଲାଙ୍କ ରାଜ୍ୟ ଆକ୍ରମଣ କଲେ । ପ୍ରବଳ ଶତ୍ରୁର ଆକ୍ରମଣରେ ଏହାଙ୍କ ପୁତ୍ର ସନ୍ତ୍ରସ୍ତ ଭୀତତ୍ରସ୍ତ ହୋଇପଡ଼ିଲେ, ମାତ୍ର ପରେ ମାତାଙ୍କ ଉତ୍ସାହବାଣୀ ଶୁଣି ଉଦ୍ରେକିତ ହୋଇ ଆକ୍ରମଣକାରୀ ସିନ୍ଧୁରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ପୈତୃକ ରାଜ୍ୟ ରକ୍ଷା କଲେ । (ମହାଭାରତ)

**ବଦେହ**—ଆଧୁନିକ ବହାର; ପ୍ରାଚୀନ ମିଥିଳା ରାଜା ନମିଙ୍କ ଅଭିଶାପ ଯୋଗୁଁ ସେ ଦେହହୀନ ହୋଇଥିବାରୁ ତାଙ୍କର ନାମାନୁସାରେ ଏ ରାଜ୍ୟର ନାମ ହୋଇଥିଲା ବଦେହ । ନମି ଜନକଙ୍କ ବଂଶର ଆଦିପୁରୁଷ । ରାଜା ଜନକଙ୍କୁ ମଧ୍ୟ ବଦେହ ବୋଲି କୁହାଯାଏ ।

**ବଦ୍ୟାଧର**—ଦେବଯୋନି ବଶେଷ । ସ୍ୱର୍ଗର ଗାୟକ ।

**ବଦ୍ୟୁଜ୍ଜିହ୍ୱ**—ରାମାୟଣୋକ୍ତ ଏକ ମାୟାବୀ ରାକ୍ଷସ । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ବୈଦେହୀଶ ବଳାସରେ ଲେଖିଛନ୍ତି—'ବଦ୍ୟୁଜ୍ଜିହ୍ୱ ତ୍ରିବେଣୀକ, ଯାଇ ଏକ ସୁବେଣୀକ, ଭୁଆଇ ମାୟା ଜାନକୀ, କରୁ ସତ୍ୱର ।' ହିନ୍ଦୀ ଶବ୍ଦସାଗରରେ ଉଲ୍ଲେଖ ଅଛି—ଇନ୍ଦ୍ରଜିତ ଏହାକୁ ମାୟା ସୀତା କରାଇଥିଲେ । ଏ ସୂର୍ପଣଖାର ସ୍ୱାମୀ ଥିଲା ।

**ବଦ୍ୟୁତ୍‌କେଶ**—ରାମାୟଣୋକ୍ତ ରାକ୍ଷସ ବଶେଷ । ହିନ୍ଦୀ ଶବ୍ଦସାଗରରେ ଉଲ୍ଲେଖ ଅଛି—ଏ ହେତି ନାମକ ରାକ୍ଷସର ଔରସରେ କାଳ ରାକ୍ଷସର କନ୍ୟା ଭୟା ଗର୍ଭରୁ ଜନ୍ମି ଥିଲା । ଏହା ଔରସରେ ପୌଲୋମୀ ଗର୍ଭରୁ ରାକ୍ଷସ ବଂଶର ବୃଦ୍ଧି ହୋଇଥିଲା । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଏହି ବଷୟରେ ଏକ ପ୍ରଶସ୍ତି ଦେଇଛନ୍ତି ।

ଯଥା—ବଦ୍ୟୁତକେଶ ବଂଶରେ ଜାତ ସୁମାଳୀ ମାଳୀଯେ
ମାଲ୍ୟବନ୍ତସ୍ୱର୍ଗ ଲୁଣ୍ଠନେ ଅଦ୍ଭୁତ ଧ୍ୟାନ କରି ଯେ । (ବୈଦେହୀଶ ବଳାସ)

**ବଦ୍ୟୁନ୍ମାଳୀ**—ପୌରାଣିକ ଅସୁର ବଶେଷ । ଏ ଶିବଙ୍କୁ ଉପାସନା କରି ତାଙ୍କ ବରରେ ଗୋଟିଏ ଜ୍ୟୋତର୍ମୟ ବମାନ ପାଇଥିଲା । ସେ ବମାନ ଦବାନଶି ସୂର୍ଯ୍ୟଙ୍କ କରରେ ରହୁଥାଏ ଏବଂ ସୂର୍ଯ୍ୟଙ୍କ କରଣରେ ଉଦ୍ଭାସିତ ହେଉଥାଏ ।

ସୂର୍ଯ୍ୟ ଉଦ୍ଧାର ବିରକ୍ତ ହୋଇ ନିଜ ତେଜରେ ସେ ବିମାନକୁ ଉରଲାଇ ଦେବାରୁ ବିମାନ ଭୂମିରେ ଖସିପଡ଼ିଲା । ରାମାୟଣ ଯୁଦ୍ଧରେ ଧର୍ମପୁତ୍ର ସୁଷେଣଙ୍କ ସଙ୍ଗେ ଏହାର ଯୁଦ୍ଧ ହୋଇଥିଲା । ରାମାୟଣରେ ଓ ମହାଭାରତରେ ଏହି ନାମଧାରୀ ଦୁଇଟି ଅସୁରଙ୍କ ଉଲ୍ଲେଖ ଅଛି ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ବିନତା**—ପ୍ରଜାପତି କଶ୍ୟପଙ୍କ ପତ୍ନୀ । ପକ୍ଷୀକୁଳର ମାତା ଅରୁଣ ଓ ଗରୁଡ଼ ଏହାଙ୍କର ପ୍ରବଳ ପରାକ୍ରାନ୍ତ ଦୁଇ ପୁତ୍ର । ସପତ୍ନୀ କଦ୍ରୁଙ୍କ ସହିତ ପ୍ରତିଜ୍ଞାରେ ହାରି ଏ ଅନେକ ଦିନଯାଏଁ ତାଙ୍କର ଦାସୀହୋଇ ରହିଥିଲେ । ଗରୁଡ଼ଙ୍କ ଜନ୍ମ ପରେ ବିନତା ଦାସୀତ୍ୱରୁ ମୁକ୍ତିଲାଭ କଲେ । (ଗରୁଡ଼ ଦେଖ) । ଅଶୋକ ବନରେ ସୀତାଙ୍କ ନିକଟରେ ରାବଣ କର୍ତ୍ତୃକ ରକ୍ଷିତା ଜଣେ ରାକ୍ଷସୀ । (ହି.ଶ.)

**ବିନାୟକ**—ଗଣେଶଙ୍କ ନାମାନ୍ତର । ପକ୍ଷୀରାଜ ଗରୁଡ଼ ।

**ବିନ୍ଦୁସର, ବିନ୍ଦୁହ୍ରଦ**—ଏହା ମୈନାକ ପର୍ବତ ସମୀପରେ ଥିବା ମହାଭାରତରେ ଉଲ୍ଲିଖିତ ଅଛି । ଯଥା—ମଇନାକ ପର୍ବତେ ହୋଇଲେ ପ୍ରବେଶ × × × ତାହା ସମୀପରେ ଯେଉଁ ବିନ୍ଦୁସର ଅଛି (କୃଷ୍ଣସିଂହ ମହାଭାରତ) । ଭଗୀରଥ ଗଙ୍ଗାଙ୍କୁ ପୃଥିବୀରେ ଅବତରଣ କରାଇବା ପାଇଁ ଏହିଠାରେ ତପସ୍ୟା କରିଥିଲେ । (ଭାଷାକୋଷ)

**ବିନ୍ଧ୍ୟ, ବିନ୍ଧ୍ୟାଚଳ**— ଭାରତର ମଧ୍ୟଦେଶରେ ଅବସ୍ଥିତ ଗିରିମାଳା । ଏହା ଦାକ୍ଷିଣାତ୍ୟକୁ ଆର୍ଯ୍ୟାବର୍ତ୍ତରୁ ପୃଥକ କରିଅଛି । ଆର୍ଯ୍ୟମାନେ ବିନ୍ଧ୍ୟାଚଳର ଉତ୍ତରରେ ରହୁଥିଲେ ଏବଂ ଅନାର୍ଯ୍ୟମାନେ ଦକ୍ଷିଣରେ ରହୁଥିଲେ । ଏହା ପୌରାଣିକ ସପ୍ତକୁଳାଚଳ ମଧ୍ୟରୁ ଏକତମ । ପୁରାଣରେ କଥିତ ଅଛି ଯେ, ବିନ୍ଧ୍ୟଗିରି, ମେରୁ ପର୍ବତ ପ୍ରତି ଈର୍ଷାନ୍ୱିତ ହୋଇ ସୂର୍ଯ୍ୟ ପ୍ରତିଦିନ ମେରୁକୁ ପ୍ରଦକ୍ଷିଣ କରିବା ପରି ଏ ପର୍ବତକୁ ପ୍ରତିଦିନ ପ୍ରଦକ୍ଷିଣ କରିବେ ବୋଲି ସୂର୍ଯ୍ୟଙ୍କୁ ଅନୁରୋଧ କଲେ; କିନ୍ତୁ ସୂର୍ଯ୍ୟ ସେଥିରେ ସ୍ୱୀକୃତ ନ ହେବାରୁ ସୂର୍ଯ୍ୟଙ୍କ ପଥରୋଧ କରିବା ସକାଶେ ବିନ୍ଧ୍ୟଗିରି ଆକାଶକୁ ବଢ଼ିବାକୁ ଲାଗିଲେ । ଏଥିରେ ଦେବତାମାନେ ଭୀତ ହୋଇ ଅଗସ୍ତ୍ୟଋଷିଙ୍କ ସାହାଯ୍ୟ ପ୍ରାର୍ଥନା କଲେ । ଅଗସ୍ତ୍ୟ ବିନ୍ଧ୍ୟପର୍ବତଙ୍କ ଗୁରୁ ଥିବାରୁ ସେ ବିନ୍ଧ୍ୟ ନିକଟରେ ଉପସ୍ଥିତ ହେବାରୁ ବିନ୍ଧ୍ୟ ତାଙ୍କୁ ଦେଖି ମସ୍ତକ ନୁଆଇଁଲେ । ଅଗସ୍ତ୍ୟ ବିନ୍ଧ୍ୟଙ୍କୁ କହିଲେ ଆମ୍ଭେ ଦକ୍ଷିଣଦିଗକୁ ତୀର୍ଥଯାତ୍ରା କରୁଅଛୁଁ । ତେଣୁ ଆମ୍ଭେ ଫେରିଆସିବା ପର୍ଯ୍ୟନ୍ତ

ତୁମ୍ଭେ ଏହିପରି ନତମସ୍ତକ ହୋଇ ରହିଥାଅ । ଗୁରୁଆଦେଶ ପାଳନ କରି ବିନ୍ଧ୍ୟାଗିରି ମସ୍ତକ ଅବନତ କଲେ । ଅଗସ୍ତ୍ୟ ଆଉ ଦକ୍ଷିଣରୁ ଫେରିଆସିଲେ ନାହିଁ ଓ ବିନ୍ଧ୍ୟ ସେହିଦିନଠାରୁ ନତମସ୍ତକ ହୋଇ ରହିଲେ, ଆଉ ବଢିଲେ ନାହିଁ । (ଭାଷାକୋଷ)

**ବିନ୍ଧ୍ୟବାସିନୀ**—ବିନ୍ଧ୍ୟାଚଳରେ ପ୍ରତିଷ୍ଠିତା ଦୁର୍ଗାଦେବୀ ।

**ବିନ୍ଧ୍ୟବାସୀ**—ମୁନି ବିଶେଷ, ବ୍ୟାଡ଼ି ମୁନି । ଏ ପ୍ରସିଦ୍ଧ ସଂସ୍କୃତ ବୈୟାକରଣିକ ଥିଲେ । (ଭାଷାକୋଷ)

**ବିନ୍ଧ୍ୟାବଳୀ**—ଅସୁର ବାଣରାଜାଙ୍କ ମାତା ।

**ବିପ୍ରଚିତ୍ତି**—ଅସୁର ବିଶେଷ । ଏହାର ପତ୍ନୀ ସିଂହିକା ଗର୍ଭରୁ ରାହୁ ଜନ୍ମିଥିଲେ ।
(ହିନ୍ଦୀ ଶବ୍ଦସାଗର)

**ବିବିଧ**—ରାମାୟଣୋକ୍ତ କପି ବିଶେଷ ।

**ବିଭୀଷଣ**—ଲଙ୍କେଶ୍ୱର ରାବଣଙ୍କ କନିଷ୍ଠ ଭ୍ରାତା । ରାବଣ କର୍ତ୍ତୃକ ଅପମାନିତ ହୋଇ ବିଭୀଷଣ ରାମଚନ୍ଦ୍ରଙ୍କ ଶରଣ ନେଇଥିଲେ । ଏହାର କୂଟନୀତି ଓ ପରାମର୍ଶ ଯୋଗେ ରାବଣ ବଧର ପଥ ସୁଗମ ହୋଇଥିଲା । ଏ ଘଟଣାକୁ ଲକ୍ଷ୍ୟ କରି ଉତ୍କଳ କବି ଯଦୁମଣି ମହାପାତ୍ର ତାଙ୍କ କୃତ ରାଘବବିଳାସ କାବ୍ୟରେ ଲେଖିଛନ୍ତି ଦଶମସ୍ତକ ଅଶ୍ୱପାଠ ପୁସ୍ତକ ଗୋଟିଏ ନ୍ୟସ୍ତ ହେଲା ହସ୍ତରେ । ରାବଣ ବଧ ପରେ ରାମଚନ୍ଦ୍ର ଏହାଙ୍କୁ ଲଙ୍କା ସିଂହାସନ ପ୍ରଦାନ କରିଥିଲେ । (ରାମାୟଣ)

**ବିମଳତୀର୍ଥ**—ହିନ୍ଦୁମାନଙ୍କର ତୀର୍ଥ ବିଶେଷ । ମହାଭାରତ ବନପର୍ବରେ କୃଷ୍ଣସିଂହ ଏହାର ପ୍ରଶସ୍ତି ବର୍ଣ୍ଣନାଛଳରେ କହିଛନ୍ତି—ବିମଳତୀର୍ଥେ ରୂପା ସୁନା ବର୍ଣ୍ଣ ମାଛ । ଅଛୁ ଦେଖିଲେ ତାହା ଦୁଃଖ ହୁଏ ପଛ ।

**ବିମଳା**—ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କ ମନ୍ଦିରର ବେଢ଼ାରେ ପ୍ରତିଷ୍ଠିତା ଦୁର୍ଗାଦେବୀ ।

**ବିରଜମଣ୍ଡଳ**—ଏଠାରେ ଦୁର୍ଗାଙ୍କର ମହାଜନ୍ୟା ନାମକ ମୂର୍ତ୍ତି ଅଛି । ପ୍ରଭାସଖଣ୍ଡ, (ହି. ଶବ୍ଦସାଗର) । ଓଡ଼ିଶାର ଯାଜପୁରକୁ ବିରଜମଣ୍ଡଳ କହିଲେ ଭୁଲ ହେବ । ଏହା ବିରଜାମଣ୍ଡଳ ବା ବିରଜାପୀଠ ନାମରେ ଅଭିହିତ ।

**ବିରଜା**—ଯଯାତିରାଜାଙ୍କ ମାତା ଓ ନହୁଷଙ୍କ ସ୍ତ୍ରୀ । (୨) ରାଧିକାଙ୍କ ସଖି ବିଶେଷ । (୩) ଉତ୍କଳର ଶ୍ରୀକ୍ଷେତ୍ରରେ ସ୍ଥାପିତ ବିମଳା ଠାକୁରାଣୀ ଓ ଯାଜପୁରର ବିରଜା ଠାକୁରାଣୀ ।

**ବିରଞ୍ଚିନାରାୟଣ**—ବ୍ରହ୍ମା ଓ ବିଷ୍ଣୁ । ବାଲେଶ୍ୱର ଜିଲ୍ଲା ପାଳିଆ ଗ୍ରାମରେ ଅଧିଷ୍ଠିତ ଦେବତା । ରାଧାନାଥ, ଉଷା କାବ୍ୟରେ ଏ ମନ୍ଦିର ବିଷୟରେ କହନ୍ତି—'ମାଗଧ ଅନୁପେ ସୀମାସ୍ତମ୍ଭ ରୂପେ ଟେକିଛି ଶିର । ଯେ ଦେଶେ ବିରଞ୍ଚିନାରାୟଣଙ୍କର ତୁଙ୍ଗ ମନ୍ଦିର ।' ଗଣ୍ଡ୍ରାମରେ ବିଷ୍ଣୁରୂପୀ ସୂର୍ଯ୍ୟମୂର୍ତ୍ତି । ବୁଗୁଡ଼ା ଗ୍ରାମରେ ଏକ ମଠରେ ଏ ଦେବତାଙ୍କ ମୂର୍ତ୍ତି ପୂଜିତ ହୁଏ । ଲୋକମାନେ ଚଇଣ୍ଡିରୋଗ ଭଲହୋଇଯିବା ପାଇଁ ଏହିଠାରେ ଭୋଗ ମନାସି କରନ୍ତି । ଶମ୍ବରଦଶମୀ ଏହାଙ୍କର ପ୍ରଧାନ ପର୍ବ ଓ ମେଳା ହୁଏ । (ଭାଷାକୋଷ)

**ବିରାଟ**— (୧) ବଙ୍ଗଦେଶର ଉତ୍ତରାଂଶରେ ଅବସ୍ଥିତ । ଆଧୁନିକ ବଗୁଡ଼ା ଜିଲ୍ଲାର ସନ୍ନିହିତ ପ୍ରାଚୀନ ରାଜ୍ୟ ଓ ନଗର, ମତାନ୍ତରେ ଆର୍ଯ୍ୟାବର୍ତ୍ତର ଜୟପୁର ରାଜ୍ୟ । ଏହି ଦେଶର ରାଜାଙ୍କ ନିକଟରେ ପାଣ୍ଡବମାନେ ଅଜ୍ଞାତ ବନବାସର ତ୍ରୟୋଦଶ ବର୍ଷରେ ପ୍ରଚ୍ଛନ୍ନଭାବରେ କିଛିଦିନ ଅବସ୍ଥାନ କରିଥିଲେ । ଏହି ରାଜାଙ୍କ ଶାଳକ ଓ ସେନାପତି କୀଚକ ଦ୍ୱାରା ଦ୍ରୌପଦୀ ଅପମାନିତା ହୋଇ-ଥିବାରୁ କୀଚକ ଭୀମଙ୍କ ଦ୍ୱାରା ହତ ହୋଇଥିଲା । ଏ ରାଜାଙ୍କ କନ୍ୟା ଉତ୍ତରାଙ୍କ ସଙ୍ଗେ ଅର୍ଜୁନ ପୁତ୍ର ଅଭିମନ୍ୟୁଙ୍କର ବିବାହ ହୋଇଥିଲା । (୨) ବିରାଟ ଦେଶର ରାଜା । (୩) ମହାଭାରତୋକ୍ତ ପଞ୍ଚପାଣ୍ଡବଙ୍କର ଆଶ୍ରୟଦାତା ବିରାଟର ବା ମତ୍ସ୍ୟଦେଶର ରାଜା । (୪) ଦର୍ଶନଶାସ୍ତ୍ର ମତେ ସମସ୍ତ ବ୍ରହ୍ମାଣ୍ଡରେ ସମଷ୍ଟି-ଭାବରେ ବିରାଜିତ ଚୈତନ୍ୟ ବା ସର୍ବବ୍ୟାପୀ ଭଗବାନଙ୍କ ସତ୍ତା । (୫) ସ୍ୱାୟମ୍ଭୁବମନୁଙ୍କର ନାମାନ୍ତର । (୬) ଏକପ୍ରକାର ନାଗସାପ ।

(ଭାଷାକୋଷ)

**ବିରାଟ ତନୟ**—ମହାଭାରତୋକ୍ତ ବିରାଟ ରାଜକୁମାର ଉତ୍ତର ।

**ବିରାଟ ତନୟା**—ମହାଭାରତୋକ୍ତ ବିରାଟ ରାଜକୁମାରୀ ଉତ୍ତରା । ବୃହନ୍ନଳା ନାମ ଗ୍ରହଣ କରିଥିବା ନପୁଂସକ ବେଶଧାରୀ ଅର୍ଜୁନ ଏହାଙ୍କୁ ସଙ୍ଗୀତ ଓ ନୃତ୍ୟବିଦ୍ୟା ଶିକ୍ଷା ଦେଇଥିଲେ ଏବଂ ଶେଷରେ ଏ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁଙ୍କୁ ବିବାହ କରିଥିଲେ । ଏହାଙ୍କଠାରୁ ଯୁଧିଷ୍ଠିରଙ୍କ ଉତ୍ତରାଧିକାରୀ ପରୀକ୍ଷିତ ଜନ୍ମଗ୍ରହଣ କରିଥିଲେ । (ଭାଷାକୋଷ)

**ବିରାଟ ନଗର**—ପ୍ରାଚୀନ ବିରାଟ ଦେଶର ରାଜଧାନୀ । ନେପାଳ ରାଜ୍ୟର ଦକ୍ଷିଣସୀମା ଓ ପୂର୍ଣ୍ଣିଆ ଜିଲ୍ଲାର ସୀମାନ୍ତ ପ୍ରଦେଶରେ ନେପାଳର ଯୋଗବାଣୀ ସହର ନିକଟରେ ବିରାଟ ନଗର ବୋଲି ଗୋଟିଏ ସହର ଅଛି । ଏହା ଗୋଟିଏ ବାଣିଜ୍ୟସ୍ଥଳୀ । ସ୍ଥାନୀୟ ଜନଶ୍ରୁତି ଓ କେତେକ ଭଗ୍ନାବଶେଷରୁ ଲୋକେ ଏହାକୁ ପ୍ରାଚୀନ ବିରାଟ ରାଜଧାନୀ ବୋଲି କହନ୍ତି । (ବିଶ୍ୱକୋଷ)

**ବିରାଧ**—ଦଣ୍ଡକାରଣ୍ୟବାସୀ ଅସୁର ବିଶେଷ । ଏହାର ପୂର୍ବଜନ୍ମ ଗନ୍ଧର୍ବ ଜାତିରେ । ସେତେବେଳେ ଏ ତୁମ୍ବୁରୁ ନାମରେ କଥିତ ହେଉଥିଲେ । କୁବେରଙ୍କ ଅଭିଶାପ ଯୋଗେ ଏ ରାକ୍ଷସ ଯୋନିରେ ଜନ୍ମହେଲେ । ଏହାଙ୍କ ପିତା ସୁପର୍ଣ୍ଣନା, ମାତା ଶତହ୍ରଦ । ଦଣ୍ଡକାରଣ୍ୟରେ ସୀତାଙ୍କୁ ନେଇଯିବା ବେଳେ ରାମ ଲକ୍ଷ୍ମଣ ଏହା ସଙ୍ଗେ ଯୁଦ୍ଧ କଲେ ଏବଂ ସେହି ସମୟରେ ସେ ରାମ ଲକ୍ଷ୍ମଣଙ୍କୁ କାନ୍ଧରେ ବସାଇନେଇ ଯାଉଥିଲା । ରାମ ଲକ୍ଷ୍ମଣ ଶେଷକୁ ତାର ଦୁଇବାହୁ କାଟି ଗୋଟିଏ ଗାତଖୋଳି ସେ ଗାତରେ ବିରାଧକୁ ପୋତିବାରୁ ଶାପମୁକ୍ତ ହୋଇ ପୂର୍ବଜନ୍ମର ରୂପ ଧାରଣକରି ଅସୁର ଦେହତ୍ୟାଗ କଲା । ଅଧ୍ୟାତ୍ମ ରାମାୟଣରେ କିନ୍ତୁ ଏହି ବିରାଧ ଉପାଖ୍ୟାନ ଭିନ୍ନପ୍ରକାର । ଶାପମୁକ୍ତ ହେବା ପରେ ବିରାଧ ଅପୂର୍ବ ତେଜଧାରୀ ହୋଇ ଶ୍ରୀରାମଙ୍କୁ ସ୍ତୁତି କରିଥିଲା । ଯଥା—

ବିରାଧକାୟାଦତିସୁନ୍ଦରାକୃତିଃ-
ର୍ବିଭ୍ରାଜମାନୋ ବିମଲାମ୍ବରାବୃତଃ ।
ପ୍ରତପ୍ତ ଚାମୀକର ଚାରୁ ଭୂଷଣୋ ।
ବ୍ୟଦୃଶ୍ୟତାଗ୍ରେ ଗଗନେ ରବିର୍ଯଥା ।
ପ୍ରଣମ୍ୟ ରାମଂ ପ୍ରଣତାର୍ତ୍ତିହାରଣଂ ।
ଭବ ପ୍ରବାହେ ପରମଂ କଲ୍ୟାକରଂ
ପ୍ରଣମ୍ୟଭୂୟଃ ପ୍ରଣନାମ ଦଣ୍ଡବତ୍ ।
ପ୍ରସନ୍ନ ସର୍ବାର୍ତ୍ତିହରଂ ପ୍ରସନ୍ନଧୀଃ ।

ଅର୍ଥାତ୍ ଆକାଶମଣ୍ଡଳରେ ଦୀପ୍ତିମନ୍ତ ସୂର୍ଯ୍ୟତୁଲ୍ୟ ବିରାଜମାନ ନିର୍ମଳ ବସନ ଓ ତପ୍ତ ସୁବର୍ଣ୍ଣନିର୍ମିତ ମନୋହର ଅଳଂକାର ସଜ୍ଜିତ ବିରାଧ ଶରୀରୁ ନିସୃତ ଅତି ସୁନ୍ଦରାକୃତି ଏକ ପୁରୁଷ ସେମାନଙ୍କ ସମ୍ମୁଖରେ ପ୍ରତିଭାତ ହେଲା । ସେହି ପୁରୁଷ ପ୍ରସନ୍ନ ଚିତ୍ତରେ ପ୍ରଣତଜନର ବ୍ୟଥାମୋଚନ, ସଂସାର ପ୍ରବାହର ଶାନ୍ତିଦାତା ଦୟାଳୁ ରାମଙ୍କୁ ପ୍ରଣାମ କରି ସ୍ତୁତି କଲା ।

ଏହି ସ୍ତୁତିରେ ବିରାଧ ନିଜେ ତାର ପୂର୍ବଜନ୍ମ ବିଷୟରେ କହିଛି—

ଶ୍ରୀରାମ ରାଜୀବ ଦଳାୟତାକ୍ଷ ।
ବିଦ୍ୟାଧରୋହଂ ବିମଳ ପ୍ରକାଶଃ
ଦୁର୍ବାସସାକାରଣ କୋପ ମୂର୍ତ୍ତିନା ।
ଶପ୍ତଃ ପୁରା ସୋଦ୍ୟ ବିମୋଚିତ ସ୍ତ୍ୱୟା ।

ଅର୍ଥାତ୍ ହେ କମଳଦଳ ବିଶାଳନେତ୍ର ଶ୍ରୀରାମ ! ମୁଁ ପୂର୍ବଜନ୍ମରେ ଏକ ବିମଳପ୍ରକାଶ ବିଦ୍ୟାଧର ଥିଲି । ମୁଁ ସେହି ସମୟରେ ମୂର୍ତ୍ତିମାନ ଅକାରଣ-କ୍ରୋଧ ଦୁର୍ବାସାଙ୍କ ଅଭିସମ୍ପାତ ଯୋଗେ ଏ ରାକ୍ଷସରୂପ ପାଇଲି । ଆପଣ ଆଜି ମୋତେ ସେହି ଶାପରୁ ମୁକ୍ତ କଲେ । (ଅରଣ୍ୟକାଣ୍ଡ)

**ବିରୂପାକ୍ଷ** –(୧) ଶିବଙ୍କ ନାମାନ୍ତର । ଏହାଙ୍କର ତିନଗୋଟି ଆଖି ଥିବାରୁ ଏପରି ନାମ । ବ୍ରହ୍ମାଙ୍କ ମସ୍ତକରୁ ଜାତ ରୁଦ୍ର ବିଶେଷ । (ସ୍ୱପ୍ନକୋଷ)

(୨) ଏକ ରାକ୍ଷସ ବିଶେଷ ।

**ବିରୋଚନ**—ବଳିରାଜାଙ୍କ ପିତା । ପ୍ରହ୍ଲାଦଙ୍କ ପୁତ୍ର । ଏହାଙ୍କର ଅନ୍ୟ ନାମ ବୈରୋଚନ ।

**ବିଶ୍ରବା (ବିଶର୍ବା)**—କୁବେର ଓ ରାବଣଙ୍କ ପିତା । ଏହି ମହର୍ଷି ପୁଲସ୍ତ୍ୟଙ୍କ ପୁତ୍ର ।

**ବିଶଲ୍ୟକରଣୀ**—ବିଦ୍ଧ ବାଣର ବହିଷ୍କାରକ ଓ ମୃତସଞ୍ଜୀବନୀ ଲତା ବିଶେଷ । ରାବଣ ଲକ୍ଷ୍ମଣଙ୍କୁ ଏକଘ୍ନୀଘାତ କଲାପରେ ସୁଷେଣଙ୍କ ପ୍ରରୋଚନାରେ ହନୁମାନ ଏ ଔଷଧ ଆଣିଥିଲେ । ଏ ଔଷଧ ବିଷୟରେ ବାଲ୍ମୀକି ରାମାୟଣ ଲଙ୍କା-କାଣ୍ଡରେ ନିର୍ଣ୍ଣୟ ଦିଆଯାଇଛି । ଯଥା :—

ବ୍ରହ୍ମଶକ୍ତି କି ଔଷଧ ଗୁଣ ରଘୁସାଇଁ ।
ଗନ୍ଧମାଦନ ନାମରେ ଅଛି ଗିରିବର
ଲକ୍ଷ୍ମୀୟାଗୀ ସହସ୍ର ଯୁଣ ଏଠାରୁ ସେ ଦୂର ।
ସବୁ ଔଷଧିଙ୍କ ମଧ୍ୟେ ସେ ଅଟେ ପ୍ରଧାନ
ବ୍ରହ୍ମା ତାହାକୁ ରଖିଛି ଅଗମ୍ୟେ ନେଇଣ ।
ତାର ନାମ ଗୋଟି ଅଟେ ବିଶଲ୍ୟକରଣୀ
ତାହାର ଗନ୍ଧରେ ଜୀଇଉଠେ ମଲା ପ୍ରାଣୀ ।

ଏହି ଔଷଧି କର୍ଣ୍ଣିସ୍ତ୍ର କରି ସୁଷେଣ କହିଛନ୍ତି—

ନବକୋଟି ଶୃଙ୍ଗ ଅଛି ସେହି ପର୍ବତର
ପ୍ରଥମ ଶୃଙ୍ଗରେ ବାସ କରନ୍ତି ଶଙ୍କର ॥
ଦ୍ୱିତୀୟ ଶୃଙ୍ଗରେ ଚନ୍ଦ୍ର ଉଦୟ ହୁଅନ୍ତି
ତୃତୀୟ ଶୃଙ୍ଗର କଥା ଶୁଣ ରଘୁପତି ।
ତିନିକୋଟି ଗନ୍ଧର୍ବଙ୍କ ଘର ସେହି ସ୍ଥାନେ
ଚତୁର୍ଥ ଶୃଙ୍ଗଟି ଶୋଭାପାଏ ଶାଳବନେ ॥
ପଞ୍ଚଶୃଙ୍ଗେ ସିଂହ ବ୍ୟାଘ୍ର ଅଛନ୍ତି ବହୁତ
ଷଷ୍ଠଶୃଙ୍ଗୁ ନିରନ୍ତର ବହେ ନୀରସ୍ରୋତ ।
ସପ୍ତମ ଶୃଙ୍ଗ ଦିଶଇ କାଞ୍ଚନ ସଦୃଶ
ଅଷ୍ଟମ ଶୃଙ୍ଗଟି ରୌପ୍ୟପ୍ରାୟେ ହୁଏ ଦୃଶ୍ୟ ।
ନବମ ଶୃଙ୍ଗଟି ଅତି ପରିମଳ ସ୍ଥାନ
ସବୁବେଳେ ବହୁଅଛି ବସନ୍ତ ପବନ ।
ଏକ ନଦୀ ଷଷ୍ଠ ଶୃଙ୍ଗ ବହି ଆସେ ତଳେ
ବିଶଲ୍ୟକରଣୀ ଅଛି ତା ଦୁଇ କୂଳରେ ।

ଏଇ ବିଶଲ୍ୟକରଣୀ ପ୍ରୟୋଗରେ ଲକ୍ଷ୍ମଣ ପୁଣି ଜୀବନ ଲାଭ କରି ଦ୍ୱିଗୁଣ ଉତ୍ସାହରେ ଯୁଦ୍ଧ କରିଥିଲେ ।

**ବିଶାଖା**—ରାଧିକାଙ୍କର ଅଷ୍ଟ ସଖୀମାନଙ୍କ ମଧ୍ୟରୁ ଜଣେ ।

**ବିଶାଳା**—ଉଜ୍ଜୟିନୀର ନାମାନ୍ତର । ହିନ୍ଦୁ ତୀର୍ଥ ବିଶେଷ । ଦକ୍ଷକନ୍ୟା ସତୀଙ୍କର ନାମ । ସରସ୍ୱତୀ ନଦୀର ନାମ । ଗଙ୍ଗା ଓ ଗଣ୍ଡକୀ ନଦୀର ସଙ୍ଗମ ସ୍ଥାନରେ ଅବସ୍ଥିତ ନଗରୀ ବିଶେଷ ।

**ବୃଷିକେସନ, ବିଶ୍ୱକ୍‌ସେନ**—ଦାତାକର୍ଣ୍ଣଙ୍କର ପୁତ୍ର । ବୃଷସେନ ବୋଲି ମଧ୍ୟ ଏହାଙ୍କୁ କହନ୍ତି । ଦାତାକର୍ଣ୍ଣଙ୍କର ସତ୍ୟ ପାଳନ ପରୀକ୍ଷା କରିବା ନିମନ୍ତେ ଭଗବାନ ମାୟାରେ କ୍ଷୁଧାର୍ତ୍ତ ବ୍ରାହ୍ମଣ ବେଶ ଧରି ଏହାଙ୍କୁ ସତ୍ୟ କରାଇ ରାଜା ଆପଣା ହାତରେ ପୁତ୍ର ବୃଷିକେସନର ଗଳାକୁ କାଟି ଉକ୍ତ ମାଂସ ଖାଇବାକୁ ଦେବାପାଇଁ ପ୍ରାର୍ଥନା କଲେ । ରାଜା କର୍ଣ୍ଣ ସତ୍ୟ ପାଳନ କରି ସ୍ୱହସ୍ତରେ ପୁତ୍ରର ଶିର ଛେଦନ କଲେ । ତାହାଙ୍କ ସ୍ତ୍ରୀ ପଦ୍ମାବତୀ ପୁତ୍ରର ମାଂସକୁ ରନ୍ଧନ କରି କ୍ଷୁଧାର୍ତ୍ତ ବ୍ରାହ୍ମଣଙ୍କ ପାଇଁ ପତ୍ରରେ ବାଢି ସତ୍ୟରକ୍ଷା କରିଥିଲେ । ପରେ ବୃଷିକେସନ ବଞ୍ଚି ଉଠିଲେ ।

**ବିଶ୍ୱ**—ଗଣଦେବତା ବିଶେଷ । ଏମାନେ ସଂଖ୍ୟାରେ ୧୦ । ବସୁ, ସତ୍ୟ, କ୍ରତୁ, ଦକ୍ଷ, କାଳ, କାମ, ଧୃତି, କୁରୁ, ପୁରୁରବାଃ, ମାଦ୍ରବ । ବେଦାନ୍ତ ମତରେ ବ୍ରହ୍ମାଣ୍ଡର ଜଡ଼ ଶରୀରରେ ବିଶ୍ୱଜିତ ଚୈତନ୍ୟ । (ଭାଷାକୋଷ)

**ବିଶ୍ୱକ୍‌ସେନ**—ବିଷ୍ଣୁ । ତ୍ରୟୋଦଶ ମନୁ । ମନୁଙ୍କର ତ୍ରୟୋଦଶ ପୁରୁଷର ନିମ୍ନ ବଂଶଧର । ବିଷ୍ଣୁଙ୍କ ନିର୍ମାଲ୍ୟ ବଳିଗ୍ରାହୀ ଦେବତା । (ଭାଷାକୋଷ)

**ବିଶ୍ୱକର୍ମା**—ଦେବଶିଳ୍ପୀ । ବ୍ରହ୍ମାଙ୍କର ପୁତ୍ର । ସୂର୍ଯ୍ୟଦେବଙ୍କ ନାମାନ୍ତର । ମୁନି ବିଶେଷ । ସର୍ବଦ୍ରଷ୍ଟା ପରମେଶ୍ୱର । ପୁରାଣ ମତରେ ଅଷ୍ଟମ ବସୁଦେବତା ପ୍ରଭାସଙ୍କ ଔରସରେ ଯୋଗସିଦ୍ଧାଙ୍କ ଗର୍ଭରେ ବିଶ୍ୱକର୍ମା ଜନ୍ମଗ୍ରହଣ କରିଥିଲେ । ବେଦରେ ବିଶ୍ୱକର୍ମା 'ତ୍ୱଷ୍ଟା' (ତ୍ୱଷ୍ଟୃ) ନାମରେ ପ୍ରସିଦ୍ଧ । ବିଶ୍ୱକର୍ମା ସ୍ଥାପତ୍ୟ ବିଜ୍ଞାନର ପ୍ରଥମ ପ୍ରକାଶୟିତା । (ଭାଷାକୋଷ)

ଦେବଶିଳ୍ପୀ । ଏ ପବନ ଦେବତାଙ୍କ ପୁତ୍ର । ଏହାଙ୍କର କନ୍ୟା ସଂଜ୍ଞାଙ୍କୁ ସୂର୍ଯ୍ୟ ବିବାହ କରିଥିଲେ । ସଂଜ୍ଞାଙ୍କ ଗର୍ଭରୁ ପୁତ୍ର ଯମ ଓ କନ୍ୟା ଯମୁନା ଜନ୍ମିଥିଲେ । (ଉପେନ୍ଦ୍ର, ଚରିତାଭିଧାନ)

**ବିଶ୍ୱକର୍ମା ସୁତ**—ରାମାୟଣର ବିଶିଷ୍ଟ ବାନର ସେନାପତି । ବାନର ହୋଇ ଏ ଜଣେ ବିଶିଷ୍ଟ ଇଞ୍ଜିନିୟର ଥିଲେ । ଏହାଙ୍କ ଦ୍ୱାରା ସେତୁବନ୍ଧ ନିର୍ମିତ ହୋଇଥିଲା । ବାନର ସେନା ସହ ରାମଚନ୍ଦ୍ର ଏହି ବନ୍ଧ ଯୋଗେ ସମୁଦ୍ର ପାରହୋଇ ଲଙ୍କା ଅଭିଯାନ କରିଥିଲେ । (ରାମାୟଣ, ସୁନ୍ଦରାକାଣ୍ଡ)

**ବିଶ୍ୱକେତୁ**—ଶ୍ରୀକୃଷ୍ଣଙ୍କର ନାତି ଅନିରୁଦ୍ଧ । ମଦନଙ୍କର ନାମାନ୍ତର ।

**ବିଶ୍ୱଜିତ୍**—ଯଜ୍ଞ ବିଶେଷ । ଏହି ଯଜ୍ଞରେ ସର୍ବସ୍ୱ ଦକ୍ଷିଣା ଦିଆଯାଏ । ମହାରାଜ ରଘୁ ଏହି ଯଜ୍ଞ କରିଥିଲେ ବୋଲି ପ୍ରମାଣ ଅଛି । ବରୁଣଦେବଙ୍କର ପାଶ ନାମକ ଅସ୍ତ୍ରର ନାମ ମଧ୍ୟ ବିଶ୍ୱଜିତ୍ । (ଭାଷାକୋଷ)

**ବିଶ୍ୱରୂପ**—ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କୁରୁକ୍ଷେତ୍ର ଯୁଦ୍ଧ ପଡ଼ିଆରେ ଗୀତା ବୁଝାଉଥିବା-ବେଳେ ଅର୍ଜୁନଙ୍କୁ ସ୍ୱଶରୀରରେ ବିଶ୍ୱ ବ୍ରହ୍ମାଣ୍ଡ ବ୍ୟାପୀ ଯେଉଁ ବିରାଟରୂପ ଦେଖାଇଥିଲେ । (ମହାଭାରତ)

**ବିଶ୍ୱାମିତ୍ର**—ବିଖ୍ୟାତ ମହର୍ଷି ବିଶ୍ୱାମିତ୍ର ରାଜବଂଶସମ୍ଭୂତ । ତାଙ୍କର ପିତାଙ୍କ ନାମ ଗାଧି । ରାଜବଂଶରେ ଜନ୍ମ ଗ୍ରହଣ କରି ମଧ୍ୟ ସେ ନିଜର କଠୋର ତପସ୍ୟା

ବଳରେ ବ୍ରହ୍ମର୍ଷି ହୋଇଥିଲେ । କୃଷ୍ଣସିଂହ ମହାଭାରତ ଅନୁଶାସନ ପର୍ବରେ ଲେଖିଛନ୍ତି—ବିଶ୍ୱାମିତ୍ର କହିଲେ, 'ଅମିତ୍ର ମୋ ଦେବେ ହେବାରୁ ବିଶ୍ୱାମିତ୍ର ବୋଲନ୍ତି ସର୍ବେ ।'

ବିଶ୍ୱାମିତ୍ର କାନ୍ୟକୁବ୍ଜର ରାଜା ଗାଧିଙ୍କ ପୁତ୍ର । ସେ ଦିନେ ମୃଗୟାର୍ଥେ ବନକୁ ଯାଇ ମହର୍ଷି ବଶିଷ୍ଠଙ୍କ ଆଶ୍ରମର ଅତିଥି ହେଲେ । ସେଠାରେ ବଶିଷ୍ଠଙ୍କ କାମଧେନୁକୁ ଦେଖି ଲୋଭୀପଲ୍ଲ ହୋଇ ତାକୁ କିଣି ନେବାପାଇଁ ବଶିଷ୍ଠଙ୍କୁ ପ୍ରଚୁର ଧନ ଯାଚିଲେ । ବଶିଷ୍ଠ ସେଥିରେ ଅସ୍ୱୀକୃତ ହେଲେ । ତେଣୁ ବିଶ୍ୱାମିତ୍ର ବଳପୂର୍ବକ ସେହି ଧେନୁଟିକୁ ନେବାପାଇଁ ବସିଲେ । କିନ୍ତୁ ବଶିଷ୍ଠଙ୍କ ତପଃ ପ୍ରଭାବରୁ ପରାଜିତ ହେଲେ । ଏଣୁ ବିଶ୍ୱାମିତ୍ର ବ୍ରହ୍ମତେଜର ମହିମା ଅବଗତ ହୋଇ କଠୋର ତପସ୍ୟା କରି ବ୍ରହ୍ମର୍ଷି ହୋଇଥିଲେ । ଶେଷରେ ବଶିଷ୍ଠ ମଧ୍ୟ ତାଙ୍କୁ ବ୍ରହ୍ମର୍ଷି ବୋଲି ସ୍ୱୀକାର କଲେ । ବଶିଷ୍ଠଙ୍କ ଶତ ପୁତ୍ରଙ୍କୁ ହତ୍ୟାକଲେ ମଧ୍ୟ ବଶିଷ୍ଠ ବିଶ୍ୱାମିତ୍ରଙ୍କ ପ୍ରତି କ୍ରୋଧ ପ୍ରକାଶ କରି ନଥିଲେ । ତ୍ରିଶଙ୍କୁ ନାମକ ଜଣେ ରାଜାଙ୍କୁ ଦେବତାମାନେ ପାତାଳକୁ ଖସାଇ ପକାଉଥିଲେ । ବିଶ୍ୱାମିତ୍ର ନିଜର ତପଃ ପ୍ରଭାବରେ ତାଙ୍କୁ ପତନରୁ ରକ୍ଷାକରି ଆକାଶର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରଖାଇଲେ । ବିଶ୍ୱାମିତ୍ର କିଛୁକାଳ ଯାଏ ରାମଚନ୍ଦ୍ରଙ୍କ ପରାମର୍ଶଦାତା ଓ ଗୁରୁରୂପେ ତାଙ୍କୁ ବହୁ ଉପଦେଶ ଦେଇଥିଲେ । ଅଧ୍ୟାତ୍ମ-ରାମାୟଣର ଆଦିକାଣ୍ଡ ପଞ୍ଚମ ଅଧ୍ୟାୟରେ ବିଶ୍ୱାମିତ୍ର ରାମଲକ୍ଷ୍ମଣଙ୍କୁ ଶିକ୍ଷା ଦେବା କଥା ଉଲ୍ଲେଖ ଅଛି । ଯଥା—

> ଦଦୌ ବଳାଞ୍ଚାତିବଳାଂ ବିଦ୍ୟେ ଦ୍ୱେ ଦେବନିର୍ମିତେ ।
> ଯୟୋର୍ଗ୍ରହଣମାତ୍ରେଣ କ୍ଷୁତ୍ପିପାସା ନ ଜାୟତେ ।

ଅର୍ଥାତ୍ ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ଆହ୍ୱାନ କରି ବଳା ଓ ଅତିବଳା ନାମ୍ନୀ ଦୁଇଟି ଦୈବ ବିଦ୍ୟା ପ୍ରଦାନ କରିଥିଲେ । ଏହି ଦୁଇଟି ବିଦ୍ୟା ଗ୍ରହଣ କଲେ ଲୋକକୁ କ୍ଷୁଧା, ପିପାସା ଓ ଦୁର୍ବଳତା ବାଧା ଦିଏନାହିଁ । ବାଲ୍ମୀକି ରାମାୟଣ ବାଳକାଣ୍ଡରେ ସପ୍ତବିଂଶ ଓ ଅଷ୍ଟାବିଂଶ ସର୍ଗରେ ଅସ୍ତ୍ର ଗ୍ରାମ ପ୍ରଦାନ ଓ ଅସ୍ତ୍ର ସଂହାର ଗ୍ରହଣ ଏ ଦୁଇଟି ବିଷୟ ବର୍ଣ୍ଣନାରୁ ବିଶ୍ୱାମିତ୍ରଙ୍କ ଶିକ୍ଷା ଦାନର ଯଥେଷ୍ଟ ପରିଚୟ ମିଳେ ।

ବିଶ୍ୱାମିତ୍ର କ୍ଷତ୍ରିୟ ହେଲେ ମଧ୍ୟ ତପସ୍ୟା ବଳରେ ବ୍ରହ୍ମାଙ୍କ ସୃଷ୍ଟିର ବ୍ୟତିକ୍ରମ ଘଟାଇ ନିଜେ ବ୍ରହ୍ମର୍ଷି ହୋଇଥିଲେ । ଏହି ହେତୁରୁ ବିଧାତାଙ୍କ

ବହିର୍ଭୂତ ବିଷୟକୁ ବିଶ୍ୱାମିତ୍ରୀ ସର୍ଜନା ବୋଲି ଲୋକେ କହିଥାନ୍ତି । ଦାଳୁଅ ଧାନ ଓ ରବିଫସଲ ବିଶ୍ୱାମିତ୍ରୀ ସର୍ଜନା ବୋଲି ଲୋକରେ ପ୍ରସିଦ୍ଧ ହୁଏ ।

(ଅ : ରାମାୟଣ, ବା : ରାମାୟଣ, ଭାଷାକୋଷ)

ଭାଷାକୋଷ ବିଶ୍ୱାମିତ୍ରୀ ସର୍ଜନାର ଯେଉଁସବୁ ଅଶ୍ଳୀଳ ଓ ହାସ୍ୟାସ୍ପଦ ଉଦାହରଣମାନ ଦେଇଛନ୍ତି, ସେଥିରେ ଆମ୍ଭେମାନେ କଦାପି ଏକମତ ହୋଇନପାରୁ । ଏପରି ଲେଖି ସଂଗ୍ରାହକ ମହର୍ଷିଙ୍କ ନାମର ଅପଳାପ କରିଛନ୍ତି ବୋଲି ଆମ୍ଭମାନଙ୍କର ବିନୀତ ମତ ।

**ବିଶ୍ୱାବସୁ**—ଗନ୍ଧର୍ବ ରାଜା ।

**ବିଷ୍ଣୁ**—ବିଷ୍ ଧାତୁ (ବ୍ୟାପିବା) + କର୍ତ୍ତୃ ବାଚ୍ୟରେ ନୁକ୍ (ଣୁ), ଯେ ବିଶ୍ୱକୁ ବ୍ୟାପୀ ଅଛନ୍ତି । ଅଥବା ବିଶ୍ ଧାତୁ ପ୍ରବେଶ କରିବା + ନୁକ୍ (ଣୁ) ଯେ ଚରାଚର ଜଗତର ସମସ୍ତ ପଦାର୍ଥ ମଧ୍ୟରେ ପ୍ରବେଶ କରିଅଛନ୍ତି ଅଥବା ଯାହାଙ୍କଠାରେ ଭୂତ ସକଳ ପ୍ରବେଶ କରନ୍ତି, ବା ବିଷ୍‌ଧାତୁ ସେଚନ କରିବା + ନୁକ୍ (ଣ) ; ଯେ ଚରାଚର ବିଶ୍ୱରେ ଚୈତନ୍ୟ ସେଚନ କରିଅଛନ୍ତି ବା ଚରାଚର ବିଶ୍ୱକୁ ଆପାପ୍ୟିତ କରନ୍ତି ।

ହିନ୍ଦୁମାନଙ୍କର ତ୍ରିମୂର୍ତ୍ତି ମଧ୍ୟରୁ ଏ ଏକା-ଜଗତ୍‌ସ୍ରଷ୍ଟା ବ୍ରହ୍ମା, ଜଗତ୍-ପାଳକ ବିଷ୍ଣୁ, ଜଗତ୍ ସଂହାରକ ଶିବ, ହିନ୍ଦୁ ପୁରାଣରେ ଏହି ତ୍ରିଦେବ ଯୁଗେ ଯୁଗେ ଦୁଷ୍ଟ ଦଳନାର୍ଥେ ଶିଷ୍ଟପାଳନାର୍ଥେ, ଧର୍ମରକ୍ଷାର୍ଥେ ଜଗତରେ ଅବତୀର୍ଣ୍ଣ ହୁଅନ୍ତି ।

ବସୁଦେବତା ବିଶେଷଙ୍କ ନାମ ବିଷ୍ଣୁ । ଧର୍ମ ଶାସ୍ତ୍ରକର୍ତ୍ତା ମୁନି ବିଶେଷଙ୍କ ନାମ ମଧ୍ୟ ବିଷ୍ଣୁ । ଏହାଙ୍କ ସଂକଳିତ ସ୍ମୃତିର ନାମ ବିଷ୍ଣୁସ୍ମୃତି । ପୂର୍ବାଷାଢ଼ାର ଅଧିପତି ଅଗ୍ନି ଦେବତାଙ୍କ ନାମ ମଧ୍ୟ ବିଷ୍ଣୁ ।

ପୁରାଣରେ ଲେଖାଅଛି, ପୃଥିବୀର ସୃଷ୍ଟି ପୂର୍ବରୁ ବ୍ରହ୍ମାଣ୍ଡ ଜଳରେ ବୁଡ଼ି ମହାପ୍ରଳୟ ଘୋଟିଥିଲା । ସେହି ସମୟରେ କଳ୍ପବଟ ନାମକ ଗୋଟିଏ ବିଶାଳ ବୃକ୍ଷର ଅଗରେ ଥିବା ଗୋଟିଏ ପତ୍ରରେ ଏକମାତ୍ର ବିଷ୍ଣୁ ଭାସୁଥିଲେ । ତାହାଙ୍କ ନାଭିରୁ ଗୋଟିଏ ପଦ୍ମ ବାହାରିଲା ଓ ସେହି ପଦ୍ମରେ ବ୍ରହ୍ମା ଜାତ ହୋଇ ବିଷ୍ଣୁଙ୍କ ଆଜ୍ଞା ଅନୁସାରେ ଆପଣା ଦେହରୁ ଏ ଜଗତକୁ ସୃଷ୍ଟି କଲେ । ବ୍ରହ୍ମାଙ୍କର ସୃଷ୍ଟ ଜଗତକୁ ବିଷ୍ଣୁ ପାଳନ କଲେ ଓ ଶେଷରେ

ମହାଦେବ ସଂହାର କରିବେ । ଏହିପରି ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟି, ବିଷ୍ଣୁଙ୍କ ଦ୍ୱାରା ସ୍ଥିତି ଓ ମହାଦେବଙ୍କ ଦ୍ୱାରା ପ୍ରଳୟ କ୍ରିୟା ବରାବର ଚାଲିଛି । ଶିବ ଏ ସୃଷ୍ଟିକୁ ବିନାଶ କଲେ ପୁଣି ପ୍ରଳୟ ହୁଏ । ପୁଣି ବିଷ୍ଣୁ କଳ୍ପାନ୍ତର ପରରେ ଆସି ବ୍ରହ୍ମାଙ୍କୁ ଜାତ କରନ୍ତି ଓ ପୁଣି ଶିବ ସୃଷ୍ଟିକୁ ସଂହାର କରନ୍ତି । ଫଳରେ ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟକର୍ତ୍ତା ଏହି ତିନି ଜଣ ଦେବତା ଏକମାତ୍ର ପରମ ପୁରୁଷଙ୍କଠାରୁ ସମ୍ଭୂତ ।

ପୁରାଣରେ ଅଛି ଯେ କଳ୍ପାଦିରେ ବିଷ୍ଣୁଙ୍କଠାରୁ ସୃଷ୍ଟି ଜାତ ହେଲା ଓ କଳ୍ପାନ୍ତ ପ୍ରଳୟରେ ପୁଣି ସେହି ବିଷ୍ଣୁଙ୍କଠାରେ ବିଲୀନ ହେବ, ହୋଇଅଛି ଓ ହେଉଅଛି । ବିଷ୍ଣୁହିଁ ଏହି ବ୍ରହ୍ମାଣ୍ଡର ଆଦିପୁରୁଷ ଓ ସନାତନ । ଏହାଙ୍କର ଆଦି କେଉଁଠାରେ ଅଛି ତାହା କାହାରିକୁ ଜଣାନାହିଁ । ପୃଥିବୀର ସମସ୍ତ ଧର୍ମର (କେବଳ ନାସ୍ତିକତା ମତ ବ୍ୟତୀତ) ମତ ଅନୁସାରେ ଏହି ବିଷ୍ଣୁ ନାନା ନାମରେ ଜଗତର ସ୍ରଷ୍ଟା ଓ ଆଦିପୁରୁଷ ବୋଲି ସ୍ୱୀକୃତ ହେଉଅଛନ୍ତି । ସୃଷ୍ଟି କରିବା, ପାଳନ କରିବା ଓ ସଂହାର କରିବା ଏହି ତିନୋଟି କେବଳ ବିଷ୍ଣୁଙ୍କର ୩ଟି ପ୍ରକୃତି ବା କର୍ମ ମାତ୍ର ।

ହିନ୍ଦୁମାନେ ଏହାଙ୍କୁ ବିଷ୍ଣୁ, ମୁସଲମାନମାନେ ଆଲ୍ଲା, ଇହୁଦୀମାନେ Jehova (ଜିହୋଭା) ଖ୍ରୀଷ୍ଟିୟାନ୍‌ମାନେ God (ଗଡ୍) କହନ୍ତି । ବିଷ୍ଣୁ ରଜୋଗୁଣ ଅବଲମ୍ବନ କରି ସୃଷ୍ଟି କରନ୍ତି । ସତ୍ତ୍ୱଗୁଣ ଅବଲମ୍ବନ କରି ପାଳନ କରନ୍ତି ଓ ତମୋଗୁଣ ଅବଲମ୍ବନ କରି ବିନାଶ ବା ପ୍ରଳୟ କରନ୍ତି । ହିନ୍ଦୁ ମତରେ ବିଷ୍ଣୁଙ୍କ ନିବାସ କ୍ଷୀର ସମୁଦ୍ର ମଧ୍ୟସ୍ଥ ବୈକୁଣ୍ଠ । ଏହାଙ୍କର ଦୁଇଟି ସ୍ତ୍ରୀ—ଲକ୍ଷ୍ମୀ ଓ ସରସ୍ୱତୀ । ଲକ୍ଷ୍ମୀ ଚଞ୍ଚଳା, ତଥାପି ବିଷ୍ଣୁ ତାଙ୍କୁ ଟିକିଏ ବେଶୀ ଦେଖି ପାରନ୍ତି । ବିଷ୍ଣୁଙ୍କ ବାହନ ଗରୁଡ଼ । ବିଷ୍ଣୁଙ୍କ ରଥରେ ଚାରୋଟି ଅଶ୍ୱ ଯୋଗ ହୁଅନ୍ତି । ସେମାନଙ୍କର ନାମ—ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ, ବଳାହକ । ପ୍ରମାଣ ଯଥା ଭକ୍ତ କବି ଜଗନ୍ନାଥ ଦାସଙ୍କ ଭାଗବତରେ—
'ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ, ଯୋଚଲ ବଳାହକ ଅଶ୍ୱ ।'

ଏହି ପୃଥିବୀରେ କ୍ରମଶଃ ପୁଣ୍ୟ କମିଯାଇ ପାପଭାର ବୃଦ୍ଧି ହେଲେ ବିଷ୍ଣୁ ପୃଥିବୀରେ ରୂପଧାରଣ କରି ଅବତୀର୍ଣ୍ଣ ହୋଇ ଭିନ୍ନ ଭିନ୍ନ ଅବତାରରେ ଦୁଷ୍ଟ ସଂହାର କରି ଧର୍ମ ସଂସ୍ଥାପନପୂର୍ବକ ପୃଥିବୀର ପାପଭାର କମାନ୍ତି । 'ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।' ଏହି ଅବତାର ଅସଂଖ୍ୟ କିନ୍ତୁ ଏହା ମଧ୍ୟରେ ଦଶଗୋଟି ପ୍ରଧାନ । ଯଥା—ମତ୍ସ୍ୟ, କଚ୍ଛପ, ବରାହ, ବାମନ, ନୃସିଂହ, ରାମ, ପରଶୁରାମ, କୃଷ୍ଣ, ବୁଦ୍ଧ ଓ କଲ୍କୀ; (ଜୟଦେବଙ୍କ ବର୍ଣ୍ଣିତ

ଦଶାବତାର ସ୍ତୋତ୍ରରେ କୃଷ୍ଣଙ୍କୁ ଅବତାର ବୋଲି ଗ୍ରହଣ କରାଯାଇନାହିଁ । ସେ ବଳରାମଙ୍କୁ ଦଶାବତାର ମଧ୍ୟରେ ଭୁକ୍ତ କରିଛନ୍ତି । ଶ୍ରୀକୃଷ୍ଣ ଅଂଶାବତାର ନୁହନ୍ତି । ଭାଗବତର ମତ 'କୃଷ୍ଣସ୍ତୁ ଭଗବାନ ସ୍ୱୟଂ ।' ତାଙ୍କ ଆବିର୍ଭାବରେ ବୈକୁଣ୍ଠ ଶୂନ୍ୟ ହୋଇଥିଲା ବୋଲି ପୌରାଣିକ ମତ ଅଛି) । ଏହି କଳିଯୁଗରେ ବିଷ୍ଣୁ କଲ୍‌କି ଅବତାରରେ ଅବତୀର୍ଣ୍ଣ ହେବେ । ସେ ବର୍ତ୍ତମାନ ବୌଦ୍ଧାବତାର ଧରି ଜଗନ୍ନାଥ ରୂପରେ ପୁରୀରେ ବିରାଜମାନ ।

ବିଷ୍ଣୁଙ୍କର ବାରମାସରେ ପୂଜନୀୟ ରୂପ ଓ ନାମ, ଯଥା—ମାର୍ଗଶୀରରେ କେଶବ, ପୌଷରେ ନାରାୟଣ, ମାଘରେ ମାଧବ, ଫାଲ୍‌ଗୁନରେ ଗୋବିନ୍ଦ, (କାର୍ତ୍ତିକ ଦାସଙ୍କ ମତରେ ଦୋଳ ଗୋବିନ୍ଦ—ଫଗୁଣେ ଦୋଳ ଗୋବିନ୍ଦ, ଫଗୁ ଖେଳୁଥାନ୍ତି ପରମାନନ୍ଦ । ବାରମାସୀ କୋଇଲି) । ଚୈତ୍ରରେ ବିଷ୍ଣୁ, ବୈଶାଖରେ ମଧୁସୂଦନ, ଜ୍ୟେଷ୍ଠରେ ତ୍ରିବିକ୍ରମ, ଆଷାଢ଼ରେ ବାମନ, ଶ୍ରାବଣରେ ଶ୍ରୀଧର, ଭାଦ୍ରବରେ ହୃଷୀକେଶ, ଆଶ୍ୱିନରେ ପଦ୍ମନାଭ, କାର୍ତ୍ତିକରେ ଦାମୋଦର । (ଭିକ୍ଷାକୋଷ)

ଚଣ୍ଡୀଭିଧାନର ମତ—ହିନ୍ଦୁ ଜାତିର ତ୍ରିଦେବଙ୍କ ମଧ୍ୟରେ ବିଷ୍ଣୁ ଅନ୍ୟତମ, ଏହାଙ୍କ ଉପରେ ସୃଷ୍ଟ ଜଗତର ପାଳନଭାର ଅର୍ପିତ ହୋଇଅଛି । ଏ କଶ୍ୟପଙ୍କ ଔରସରେ ଅଦିତିଙ୍କ ଗର୍ଭରୁ ଜନ୍ମିଥିଲେ । ଏହାଙ୍କର ଲକ୍ଷ୍ମୀ ଓ ସରସ୍ୱତୀ ନାମରେ ଦୁଇଟି ପତ୍ନୀ । ଏ ସୃଷ୍ଟିର କଲ୍ୟାଣାର୍ଥ ଯୁଗେ ଯୁଗେ ଅବତାର ଗ୍ରହଣ କରିଥାନ୍ତି । ପୁରାଣରେ ଏହାଙ୍କର ଦଶଅବତାର ବିଷୟ ବର୍ଣ୍ଣିତ ହୋଇଅଛି । ଦଶଅବତାର ଯଥା—ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ରାମ, ପରଶୁରାମ, କୃଷ୍ଣ, ବୁଦ୍ଧ ଓ କଲ୍‌କି ।

ବେଦରେ ସୂର୍ଯ୍ୟଦେବଙ୍କର ଅପର ନାମ ବିଷ୍ଣୁ ।

**ବିଷ୍ଣୁକାଞ୍ଚୀ**—ଦାକ୍ଷିଣାତ୍ୟର ଏକ ବିଶିଷ୍ଟ ତୀର୍ଥ । ଏହା କାଞ୍ଚୀ ନଗରର ଗୋଟିଏ ଅଂଶ । ଏଠାରେ ବରଦାସ୍ୱାମୀ ନାମକ ବିଷ୍ଣୁ ପ୍ରତିମା ଓ ମନ୍ଦିର ପ୍ରତିଷ୍ଠିତ । ନଗରୀର ଅପରଅଂଶରେ ପ୍ରତିଷ୍ଠିତ ଶିବକାଞ୍ଚୀଠାରୁ ଏହା ପ୍ରାୟ ତିନି ମାଇଲ ଦୂରରେ ଅବସ୍ଥିତ । ମନ୍ଦିର ବେଢ଼ାର ୫ ଗୋଟି ଗୋପୁରମ୍ (ଦ୍ୱାର) ମଧ୍ୟରୁ ପୂର୍ବଦିଗର ଗୋପୁରମ୍ ୧୩୦ ଫୁଟ ଉଚ୍ଚ । ପ୍ରଥମ ଅଗଣା ମଧ୍ୟରେ ଶତସ୍ତମ୍ଭ ବିଶିଷ୍ଟ ମଣ୍ଡପ ମଧ୍ୟରେ ଅଶ୍ୱାରୋହୀମାନଙ୍କର କାରୁକାର୍ଯ୍ୟମଣ୍ଡିତ ବିଗ୍ରହ ଅଛି । ମଣ୍ଡପ ନିକଟରେ କୋଟିତୀର୍ଥ ନାମକ ଗୋଟିଏ ପୁଷ୍କରିଣୀ ଅଛି । ଦ୍ୱିତୀୟ ଅଗଣାରେ ଥିବା ମନ୍ଦିରରେ ବିଷ୍ଣୁଙ୍କର ପ୍ରସ୍ତରଖୋଦିତ ଦଶାବତାରମୂର୍ତ୍ତି,

ବରଦାସ୍ୱାମୀଙ୍କ ବିଗ୍ରହ, କୃଷ୍ଣ ପ୍ରସ୍ତରନିର୍ମିତ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ଅବସ୍ଥିତ। ତାହାର ପୂର୍ବତନ ଶାସନକର୍ତ୍ତା ଗଙ୍ଗା ଗୋପାଳସ୍ୱାମୀ ଏ ମନ୍ଦିର ନିର୍ମାଣ କରାଇଥିଲେ । ମହାତ୍ମା ରାମାନୁଜ ଏହିଠାରେ ବିଦ୍ୟାଶିକ୍ଷା କରିଥିଲେ ଓ ସ୍ୱମତ ପ୍ରଚାରର ଆରମ୍ଭ କରିଥିଲେ। ବୈଶାଖ କୃଷ୍ଣଚତୁର୍ଦ୍ଦଶୀ ଦିନ ଦେବଙ୍କ ବିଜେ ପ୍ରତିମା ରଥଚଢ଼ି ନଗର ବୁଲନ୍ତି। ଏଠାରେ ଲକ୍ଷ୍ମୀ ନୃସିଂହଙ୍କ ମୂର୍ତ୍ତି ମଧ୍ୟ ଅଛନ୍ତି। (ମଦନମୋହନ, ତୀର୍ଥଦର୍ଶନ)

**ବିଷ୍ଣୁପଦ**—ଆକାଶର ନାମାନ୍ତର। ବିଷ୍ଣୁ ବାମନାବତାରରେ ଗୋଟିଏ ପଦ ଆକାଶରେ ସ୍ଥାପନ କରିଥିବାରୁ ଆକାଶକୁ ବିଷ୍ଣୁପଦ ବୋଲିଯାଏ। (୨) ଗୟାରେ ଥିବା ପ୍ରସ୍ତରରେ ଅଙ୍କିତ ବିଷ୍ଣୁଙ୍କର ପାଦଚିହ୍ନ ଓ ପାଦଚିହ୍ନ ଥିବା ମନ୍ଦିର । ଏହିଠାରେ ହିନ୍ଦୁ ଯାତ୍ରୀମାନେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଅର୍ପଣ କରନ୍ତି । (ଭାଷାକୋଷ)

**ବିଷ୍ଣୁପ୍ରୟାଗ**—ତୀର୍ଥ ବିଶେଷ । ହିମାଳୟର ବଦରିନାଥ ନିକଟରେ ଥିବା ଯୋଶିମଠ ଠାରୁ ଏହା ଦୁଇ ମାଇଲ ଦୂରବର୍ତ୍ତୀ । ଏହା ମାନସରୋବର ନିକଟରୁ ପ୍ରବାହିତ ବିଷ୍ଣୁଗଙ୍ଗା ବା ଧବଳୀଗଙ୍ଗା ସହିତ ଅଳକନନ୍ଦାର ସଙ୍ଗମସ୍ଥଳ। ଏହା ଗୋଟିଏ ହିନ୍ଦୁ ତୀର୍ଥସ୍ଥାନ ଏଠାରେ ସ୍ନାନ ତର୍ପଣ କରି ଯାତ୍ରୀମାନେ କୃତାର୍ଥ ହୁଅନ୍ତି। (ମଦନମୋହନ, ତୀର୍ଥଦର୍ଶନ)

**ବିଷ୍ଣୁଯଶା**—ବ୍ରହ୍ମଯଶାଙ୍କ ପୁତ୍ର ଓ କଳ୍କୀ ଅବତାରୀ ବିଷ୍ଣୁଙ୍କ ପିତା । (ଭାଷାକୋଷ)

**ବିଷ୍ଣୁଯାମଳ**—ତାନ୍ତ୍ରିକ ଧର୍ମଗ୍ରନ୍ଥ ବିଶେଷ ।

**ବିଷ୍ଣୁରତ**—ଚନ୍ଦ୍ରବଂଶୀୟ ରାଜା ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତଙ୍କ ନାମ। କଥିତ ଅଛି ଯେ ମାତୃଗର୍ଭରେ ଥିବାବେଳେ ଅଶ୍ୱତ୍ଥାମା ଐଷିକ ଶର ପ୍ରେରଣ କରି ଏହାଙ୍କୁ ମାରି ପକାଇଥିଲେ, କିନ୍ତୁ ବିଷ୍ଣୁ ଏହାଙ୍କୁ ବଞ୍ଚାଇଦେଲେ। ଏଥିପାଇଁ ପରୀକ୍ଷିତଙ୍କର ଏପରି ନାମ ହୋଇଥିଲା । ଭକ୍ତକବି ୬ ଜଗନ୍ନାଥ ଦାସ ଭାଗବତରେ ଏ ପ୍ରମାଣ ସମର୍ଥନ କରି କହନ୍ତି—ଯେ ବିଷ୍ଣୁରତ ପରୀକ୍ଷିତ। ତାଙ୍କୁ ସଂହାରୁ କଲି ମୁକ୍ତ। (ଭାଷାକୋଷ)

**ବିଷ୍ଣୁଶିଳା**—ଗଣ୍ଡକନଦୀ ଗର୍ଭରୁ ପ୍ରାପ୍ତ ବିଷ୍ଣୁରୂପେ ପୂଜିତ ଶାଳଗ୍ରାମ।

**ବିଷ୍ଣୁସଂହିତା**—ବିଷ୍ଣୁ ଋଷିଙ୍କ ସଂକଳିତ ସ୍ମୃତିଶାସ୍ତ୍ର। ଏହାର ଅନ୍ୟନାମ ବିଷ୍ଣୁସ୍ମୃତି।

**ବିଷ୍ଣୁସହସ୍ରନାମ**—ମହାଭାରତ ଅନୁଶାସନିକ ପର୍ବରେ ଥିବା ଭୀଷ୍ମ ଯୁଧିଷ୍ଠିର ସମ୍ବାଦରେ ବିଷ୍ଣୁଙ୍କର ଏକ ସହସ୍ର ନାମ ଉଲ୍ଲେଖ ହୋଇଥିବା ସ୍ତୋତ୍ର । ଏହି ସ୍ତୋତ୍ର ପାଠ କଲେ ସର୍ବପ୍ରକାର ଅମଙ୍ଗଳ ଦୂର ହୁଏ । ଏହା ୧୪୫ ଶ୍ଳୋକରେ ପୂର୍ଣ୍ଣ । ଉକ୍ତ ସହସ୍ର ନାମରେ ଲେଖାଅଛି ଯେ—ଯେଉଁ ଭକ୍ତ ସମ୍ପ୍ରଦାୟ ସ୍ତୋତ୍ରଟି ପାଠ କରିବାକୁ ଅକ୍ଷମ ହେବେ ସେ ଗୋଟିଏ ମାତ୍ର ଶ୍ଳୋକ ବୋଲିଦେଲେ ସହସ୍ରନାମ ସ୍ତୋତ୍ର ପାଠର ଫଳ ପାଇବେ । ସେ ଶ୍ଳୋକଟି ହେଲା—

ନମୋ ବ୍ରହ୍ମଣ୍ୟଦେବାୟ ଗୋ ବ୍ରାହ୍ମଣ ହିତାୟ ଚ ।
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋନମଃ ।

(ଭାଷାକୋଷ)

**ବୀଣା**—ସପ୍ତତନ୍ତ୍ରୀ ବିଶିଷ୍ଟ ବାଦ୍ୟଯନ୍ତ୍ର ବିଶେଷ । ଏହା ଅତି ପ୍ରାଚୀନକାଳରୁ ହିନ୍ଦୁମାନଙ୍କର ଯନ୍ତ୍ରରୂପେ ବ୍ୟବହୃତ ହେଉଥିଲା । ସରସ୍ୱତୀଙ୍କର ଏହା ଅତି ପ୍ରିୟ । ସେଥିପାଇଁ ସରସ୍ୱତୀଙ୍କ ଧ୍ୟାନରେ 'ଯା ବୀଣା ବରଦଣ୍ଡ ମଣ୍ଡିତ କରା ଯା ଶୁକ୍ଳବସ୍ତ୍ରାନ୍ୱିତା' ବୋଲି ଉଲ୍ଲେଖ ଅଛି । ନାରଦ ମଧ୍ୟ ବୀଣା ବ୍ୟବହାର କରୁଥିଲେ । ଏଥିରେ ୩ ଠାରୁ ୭ ପର୍ଯ୍ୟନ୍ତ ତାର ଥାଏ । ଏହା ନାନାପ୍ରକାର ଯଥା – ତ୍ରିତନ୍ତ୍ରୀ, କଚ୍ଛପୀ, ବିପଞ୍ଚୀ, ରଞ୍ଜନୀ, ରୁଦ୍ର, ନାଦେଶ୍ୱର, ଶାରଦୀୟା ଓ କଣ୍ଡୋଲ ବା କଣ୍ଡୋଲ ବୀଣ ବା କାଷ୍ଠ ଦଣ୍ଡର ଉଭୟ ପାର୍ଶ୍ୱରେ ଦୁଇଟି ଲାଉ ସଂଯୋଜିତ ହୋଇଥାଏ ଓ ଏଥିରେ ଖୁଣ୍ଟିମାନଙ୍କ ଦ୍ୱାରା ସଂଯତ ଲୁହାର ଓ ପିତଳର ତାରମାନ ଲାଗିଥାଏ । ସୀତାର, ରବାବ, ସୁରବାହାର, ସରୋଦ, ବେହେଲା, ବେହେଲା ଆଦି ଏହି ବୀଣାର ବଂଶଧର ।

ପୁରାଣମାନଙ୍କରେ ଭିନ୍ନ ଭିନ୍ନ ବୀଣାଧାରୀମାନଙ୍କର ବୀଣାର ଭିନ୍ନ ଭିନ୍ନ ନାମ ଅଛି । ଯଥା—ମହାଦେବଙ୍କ ବୀଣାର ନାମ ଲମ୍ବୀ, ସରସ୍ୱତୀଙ୍କ ବୀଣାର ନାମ କଚ୍ଛପୀ, ନାରଦଙ୍କ ବୀଣାର ମହତୀ ନାମ ଓ ତୁମ୍ବୁରୁଙ୍କ ବୀଣାର ନାମ କଳାବତୀ । (ଭାଷାକୋଷ)

**ବୀତହବ୍ୟ**—ହୈହୟ ରାଜ୍ୟର ଅଧିପତି । ଏ ବାରାଣସୀର ରାଜା ଦିବୋଦାସଙ୍କୁ ପରାଜିତ କରି କାଶୀ ଅଧିକାର କରିଥିଲେ । ପରେ ଦିବୋଦାସଙ୍କ ପୁତ୍ର ପ୍ରତର୍ଦ୍ଦନ ଏହାଙ୍କୁ ପରାସ୍ତ କରିଥିଲେ । ବୀତହବ୍ୟ ପ୍ରାଣ ଭୟରେ ପଳାୟନ କରି ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ଆଶ୍ରୟ ଗ୍ରହଣ କଲେ ।

(ଚରିତାଭିଧାନ, ଉପେନ୍ଦ୍ରଚନ୍ଦ୍ର)

**ବୀତହୋତ୍ର**—ଆହୁତ ଓ ଯଜ୍ଞ ଦ୍ୱାରା ଯେଉଁଠାକୁ ଦେବତାମାନେ ହବ୍ୟ ଆଦି ଭୋଜନ କରିବାପାଇଁ ଆହୂତ ହୁଅନ୍ତି । ଅଗ୍ନି ଓ ସୂର୍ଯ୍ୟଦେବଙ୍କ ନାମ । ରାଜା ପ୍ରିୟବ୍ରତଙ୍କ ପୁତ୍ର । ହୈହୟବଂଶୀୟ ଏକ ରାଜା । (ଭାଷାକୋଷ)

**ବୀରବାହୁ**—ରାବଣର ରାମଭକ୍ତ ପୁତ୍ର ବିଶେଷ । ରାମ ରାବଣ ଯୁଦ୍ଧ ସମୟରେ ସେ ଯୁଦ୍ଧରେ ଯୋଗଦେଇ ରାମଙ୍କ ଦ୍ୱାରା ନିହତ ହୋଇଥିଲେ । (ରାମାୟଣ)

**ବୀରଭଦ୍ର**—ମହାଦେବଙ୍କ ପ୍ରିୟ ଅନୁଚର । ଦକ୍ଷ ଯଜ୍ଞ ଧ୍ୱଂସକାରୀ । ପତି ନିନ୍ଦା ପରେ ସତୀ ଯଜ୍ଞାନଳରେ ଝାସଦେବା ସମ୍ବାଦ ପାଇଁ ମହାଦେବ କ୍ରୋଧାନ୍ଧ ହୋଇଉଠିଲେ । ରାଗରେ ନିଜର ଜଟା ଛିଣ୍ଡାଇ ଶିବ ଭୂତଳରେ ନିକ୍ଷେପ କଲେ । ନିକ୍ଷିପ୍ତ ଜଟାରୁ ବୀରଭଦ୍ର ଜନ୍ମିଥିଲେ । ଭାଗବତ କହେ—ରୁଦ୍ରଙ୍କ ସେ ଜଟାର ମଧ୍ୟ, ପୁରୁଷେ ଜାତ ବୀରଭଦ୍ର ।

**ବୀରସେନ**—ପୁଣ୍ୟଶ୍ଳୋକ ମହାରାଜ ନଳଙ୍କ ପିତା ।

**ବୁଧ**—ଚନ୍ଦ୍ରଙ୍କ ପୁତ୍ର (ତାରା, ଇଳା ଓ ପୁରୁରବା ଦ୍ରଷ୍ଟବ୍ୟ) । ହିନ୍ଦୀ ଶବ୍ଦସାଗର ମତରେ—ଆଧୁନିକ ଜ୍ୟୋତିଷଗଣନା ଅନୁସାରେ ସୌରଜଗତର ସମସ୍ତ ଗ୍ରହଙ୍କଠାରୁ ବୁଧ ସୂର୍ଯ୍ୟଙ୍କର ବେଶୀ ନିକଟବର୍ତ୍ତୀ । ଏ ସୂର୍ଯ୍ୟଙ୍କଠାରୁ ୩ କୋଟି ୬୦ ଲକ୍ଷ ମାଇଲ ଦୂରରେ ରହି ୮୮ ଦିନରେ ଥରେ ସୂର୍ଯ୍ୟଙ୍କୁ ପରିକ୍ରମଣ କରନ୍ତି । ଏହି ଗ୍ରହର ବ୍ୟାସ ୩୧୦୦ ମାଇଲ ଓ ଏ ୨୪ ଘଣ୍ଟା ୫ ମିନିଟ୍‌ରେ ନିଜର ଅକ୍ଷରେ ଥରେ ଘୂରେ । ବୁଧର କକ୍ଷର ବ୍ୟାସ ୭ କୋଟି ୨୦ ଲକ୍ଷ ମାଇଲ ଏବଂ ବୁଧ ପ୍ରତି ଘଣ୍ଟାରେ ପ୍ରାୟ ୧ ଲକ୍ଷ ମାଇଲ ଗତି କରେ । ଏହା ସୂର୍ଯ୍ୟର ବହୁତ ସମୀପରେ ଥିବାରୁ ଓ ସୂର୍ଯ୍ୟ ଯେଉଁ ରାଶିରେ ଥାଆନ୍ତି ଏ ପ୍ରାୟ ସେହି ରାଶିରେ ଥିବାରୁ ଖାଲି ଆଖିକୁ ଦେଖାପଡ଼େ ନାହିଁ । ଏହାର ନିଜର ଆଲୋକ ନାହିଁ । ଏ ସୂର୍ଯ୍ୟଙ୍କ ଆଲୋକରେ ଉଜ୍ଜ୍ୱଳ ଦେଖାଯାଏ । ଆକାରରେ ଏହା ପୃଥିବୀର ୧/୧୮ ଅଂଶ । ହିନ୍ଦୁ ଜ୍ୟୋତିଷଶାସ୍ତ୍ର ମତରେ ନବଗ୍ରହ ମଧ୍ୟରୁ ବୁଧ ୪ର୍ଥ ଗ୍ରହ ଓ ଏ ଦେବଗୁରୁ ବୃହସ୍ପତିଙ୍କ ଧର୍ମ ପତ୍ନୀ ତାରାଙ୍କଠାରୁ ଚନ୍ଦ୍ରଙ୍କ ଔରସରେ ଉତ୍ପନ୍ନ । ଏ ନପୁଂସକ, ଶୂଦ୍ର, ଅଥର୍ବ ବେଦଜ୍ଞ, ରଜୋଗୁଣୀ, ମଗଧ-ଦେଶର ଅଧିପତି, ବାଲସ୍ୱଭାବ, ଦୂର୍ବାଶ୍ୟାମ ଓ ଧନୁର ଆକାରବିଶିଷ୍ଟ ଗ୍ରହ । ରବି ଓ ଶୁକ୍ର ଏହାଙ୍କର ମିତ୍ର ଓ ଚନ୍ଦ୍ର ଏହାଙ୍କର ଶତ୍ରୁ ଗ୍ରହ । କୌଣସି ପୁରାଣ ମତରେ ବୁଧ ବୈବସ୍ୱତ ମନୁଙ୍କ କନ୍ୟା ଇଳାଙ୍କୁ ବିବାହ କରିଥିଲେ ଓ ତାଙ୍କଠାରୁ ଚନ୍ଦ୍ରବଂଶର ଆଦିପୁରୁଷ ପୁରୁରବା ରାଜା ଜନ୍ମିଥିଲେ ।

(ଭାଷାକୋଷ)

**ବୃକାସୁର**—ବୃକ ନାମକ ରାକ୍ଷସ । ଭସ୍ମାସୁରର ନାମାନ୍ତର । ଏହି ଅସୁର କଠୋର ତପସ୍ୟାରେ ଶିବଙ୍କୁ ମନାଇ ତାଙ୍କଠାରୁ ବର ପାଇଥିଲା ଯେ ସେ ତାହାର ହାତ ଯାହା ମୁଣ୍ଡରେ ଦେବ ସେ ଭସ୍ମ ହୋଇଯିବ । ଏ ବର ପ୍ରକୃତରେ ଠିକ୍ କି ଭୁଲ ଏହା ପରୀକ୍ଷା କରିବା ପାଇଁ ସେ ମହାଦେବଙ୍କ ମୁଣ୍ଡରେ ହାତଦେବ ବୋଲି ଗୋଡ଼ାଇଲା । ମହାଦେବ ଭୟରେ ପଳାଇଗଲେ । ଶେଷରେ ବିଷ୍ଣୁଙ୍କ ନିକଟରେ ପହଞ୍ଚିଲାରୁ ବିଷ୍ଣୁ ଛଳନା କରି ଉକ୍ତ ରାକ୍ଷସକୁ କହିଲେ, 'ସେ ବରର କୌଣସି ଫଳ ହେବ ନାହିଁ; ବର ଠିକ୍ କି ଅଠିକ୍ ତାହା ତୁ ନିଜ ମୁଣ୍ଡରେ ହାତଦେଇ ପରୀକ୍ଷା କରି ଦେଖ୍ ।' ତାହା ଶୁଣି ଏହି ରାକ୍ଷସ ନିଜ ମୁଣ୍ଡରେ ହାତ ବୁଲାଇଦେବାରୁ ହଠାତ୍ ଭସ୍ମରେ ପରିଣତ ହେଲା । (ଭାଷାକୋଷ)

**ବୃତ୍ର**—ପ୍ରବଳ ପରାକ୍ରାନ୍ତ ଅସୁର । ଏ ଇନ୍ଦ୍ରାଦି ଦେବତାମାନଙ୍କୁ ସ୍ୱର୍ଗରୁ ବିତାଡ଼ିତ କରି ସ୍ୱର୍ଗ ରାଜ୍ୟର ଅଧିପତି ହୋଇଥିଲା । ମହର୍ଷି ଦଧୀଚିଙ୍କ ଅସ୍ଥି ନିର୍ମିତ ବଜ୍ର ଦ୍ୱାରା ଇନ୍ଦ୍ର ଏହାକୁ ବିନାଶ କରିଥିଲେ । (ଚଳନ୍ତାଭିଧାନ, ଉପେନ୍ଦ୍ର)

ହିନ୍ଦୀ ଶବ୍ଦସାଗରରେ ଉଲ୍ଲେଖ ଅଛି—ଏ ତ୍ୱଷ୍ଟାଙ୍କ ପୁତ୍ର, ଏକ ଦାନବ । କଥିତ ଅଛି ଯେ ଇନ୍ଦ୍ର ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପ ପୁରୋହିତଙ୍କୁ ମାରିପକାଇଲେ । ଏହାର ପ୍ରତିଶୋଧ ନେବା ପାଇଁ ତ୍ୱଷ୍ଟା ବୃତ୍ରଙ୍କୁ ଜନ୍ମ କଲେ । ବୃତ୍ର ଇନ୍ଦ୍ରଙ୍କୁ ଆକ୍ରମଣ କରିବାରୁ ଇନ୍ଦ୍ର ଦେବତାମାନଙ୍କ ସହ ଇନ୍ଦ୍ରପୁରୀରେ ଲୁଚିଲେ ଓ ବିଷ୍ଣୁଙ୍କ ପରାମର୍ଶରେ ଦଧୀଚି ଋଷିଙ୍କ ହାଡ଼ରେ ବଜ୍ର ତିଆରି କରି ବୃତ୍ର ସଙ୍ଗେ ଯୁଦ୍ଧ କଲେ । ଇନ୍ଦ୍ର ବୃତ୍ରର ଦୁଇଟି ଯାକ ହାତ କାଟି ଦେଲେ ଓ ବୃତ୍ର ଐରାବତ ସହିତ ଇନ୍ଦ୍ରଙ୍କୁ ଗିଳି ଦେଲା । ଇନ୍ଦ୍ର ତାର ପେଟକୁ ଫାଡ଼ି କରି ବାହାରିଲେ ଓ ତା ମସ୍ତକ ଛେଦନ କଲେ । ଦେବୀ ଭାଗବତରେ ବୃତ୍ରାସୁରର ବିସ୍ତାରିତ ବିବରଣ ଲେଖା ଅଛି ।

କବି ନାରାୟଣ ରାଜଗୁରୁଙ୍କ କୃତ ଶ୍ରୀକୃଷ୍ଣ କେଶରୀ ପୁରାଣରେ ବର୍ଣ୍ଣିତ ବୃତ୍ରାସୁର ଉପାଖ୍ୟାନ ଉପରୋକ୍ତ ବର୍ଣ୍ଣନାର ଠିକ୍ ଅନୁରୂପ । (କୃ. କେ)

ବେଦରେ ମଧ୍ୟ ବୃତ୍ରାସୁରର ଉଲ୍ଲେଖ ଅଛି । କିନ୍ତୁ ତହିଁରୁ ସୂଚିତ ହୁଏ ଯେ 'ମେଘ' ଓ 'ଅନ୍ଧକାର' ସମ୍ବନ୍ଧରେ ବୃତ୍ର ଶବ୍ଦର ବ୍ୟବହାର ହୋଇଅଛି ।

ପାର୍ସୀମାନଙ୍କ ଧର୍ମଗ୍ରନ୍ଥ ଜେନ୍ଦା ବେସ୍ତାରେ ଆସୁରୀୟ (Assyrian) ଜାତିର ଦଳପତି ବେରେଥ ଆର୍ଯ୍ୟଭୂମି (Ariana)କୁ ଜନଶୂନ୍ୟ କରିବା

ଲାଗି ବବ୍ରୁ (Babylon) ନଗରରେ ଯାଗ କରି ଅଗ୍ନିଶ୍ୱରୀ ନାମ୍ନୀ ଦେବୀଙ୍କୁ ଆରାଧନା କରୁଥିଲା । କିନ୍ତୁ ତାହାର ଚେଷ୍ଟା ବିଫଳ ହେଲା ଓ ସେ ସବଂଶ ଇନ୍ଦ୍ରଙ୍କ ଦ୍ୱାରା ନିହତ ହୋଇ ବର୍ଣ୍ଣିତ ହୋଇଅଛି । (ଭାଷାକୋଷ)

**ବୃଦ୍ଧଗଙ୍ଗା**—ଗଙ୍ଗାର ଶାଖାନଦୀ ବିଶେଷ । ଏହା କଲିକତା ନିକଟରେ । ଏହାର ତଟରେ କାଳୀ ଠାକୁରାଣୀଙ୍କ ମନ୍ଦିର ଅବସ୍ଥିତ ।

**ବୃଦ୍ଧଗଣ୍ଡୁକୀ**—ଲଙ୍କାରେ ପ୍ରବାହିତ ନଦୀ ବିଶେଷ । ବନବାସ ସମୟରେ ସୀତା ଏହି ନଦୀରେ ସ୍ନାନ କରୁଥିବା କଥା ରାମାୟଣରେ ଦ୍ରଷ୍ଟବ୍ୟ । କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସରେ ବର୍ଣ୍ଣନା କରାଯାଇଛି । ଯଥା— 'ବୃଦ୍ଧ ଗଣ୍ଡୁକୀ ନଦୀ ସ୍ନାନରେ, ବଳାଇଲେ ଚନ୍ଦ୍ର ତନୁପରେ ।'

**ବୃଦ୍ଧ ପରାଶର**—ହିନ୍ଦୁ ସ୍ମୃତିକାର ବିଶେଷ । ଏହିପରି ବୃଦ୍ଧ ବୃହସ୍ପତି, ବୃଦ୍ଧ ବୌଧାୟନ, ବୃଦ୍ଧ ମନୁ, ବୃଦ୍ଧ ଯାଜ୍ଞବଲ୍କ୍ୟ, ବୃଦ୍ଧ ବଶିଷ୍ଠ, ବୃଦ୍ଧ ବିଷ୍ଣୁ, ବୃଦ୍ଧ ହାରୀତ ନାମକ ବିଭିନ୍ନ ସ୍ମୃତିକାରମାନଙ୍କ ନାମୋଲ୍ଲେଖ ସ୍ମୃତି ଶାସ୍ତ୍ରମାନଙ୍କରେ ଦେଖାଯାଏ । (ଭାଷାକୋଷ)

**ବୃନ୍ଦା**—ପୁରାଣ ପ୍ରସିଦ୍ଧ ଜଳନ୍ଧର ଅସୁରର ପତ୍ନୀ । ଦୈତ୍ୟ କାଳନେମି ଏହାଙ୍କର ପିତା । ଭଗବାନ ମାୟା ବିସ୍ତାର କରି ସତୀତ୍ୱାପହରଣ କରିବା ଯୋଗୁଁ ରାକ୍ଷସରାଜ ଜଳନ୍ଧର ଶିବଙ୍କ ଦ୍ୱାରା ନିହତ ହୋଇଥିଲେ । ସତୀତ୍ୱାପହରଣ ଯୋଗେ ବୃନ୍ଦା ଅଗ୍ନିଜାଳି ଦେହତ୍ୟାଗ କଲେ । ଭଗବାନଙ୍କଠାରୁ ବର ପାଇ ପର ଜନ୍ମରେ ସେ ତୁଳସୀବୃକ୍ଷ ହୋଇଛନ୍ତି (ଜଳନ୍ଧର ଦେଖ) । (୨) ଶ୍ରୀରାଧାଙ୍କ ସଖୀ ବିଶେଷଙ୍କ ନାମ ବୃନ୍ଦା ।

**ବୃନ୍ଦାବନ**—ରାଧିକାଙ୍କ କ୍ରୀଡ଼ାବନ । ଯମୁନା ନଦୀ କୂଳରେ ଓ ମଥୁରାଠାରୁ ଅଳ୍ପ ଦୂରବର୍ତ୍ତୀ କ୍ଷୁଦ୍ର ନଗର । ବୃନ୍ଦା ଦେବୀ ଏଠାରେ ଶ୍ରୀକୃଷ୍ଣଙ୍କୁ ପାଇବା ଆଶାରେ ତପସ୍ୟା କରୁଥିଲେ ବୋଲି ଏହାର ନାମ ବୃନ୍ଦାବନ ହୋଇଅଛି । ଅଥବା ବୃନ୍ଦା (ରାଧା) ଏଠାରେ ଶ୍ରୀକୃଷ୍ଣଙ୍କ ସଙ୍ଗେ କ୍ରୀଡ଼ା କରୁଥିଲେ । ବର୍ତ୍ତମାନ ଉତ୍ତର ପ୍ରଦେଶର ମଥୁରା ଜିଲାର ଏହା ଗୋଟିଏ ନଗର । ଏହି ସ୍ଥାନର କୁଞ୍ଜମାନଙ୍କରେ ଓ ଯମୁନା କୂଳରେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ନାନା କ୍ରୀଡ଼ା କରୁଥିଲେ । ବର୍ତ୍ତମାନ ଏଠାରେ ଅନେକ ବୈଷ୍ଣବ ଓ ବୈଷ୍ଣବୀ ତୀର୍ଥବାସ କରନ୍ତି । ଏଠାରେ ଅନେକ ବିଷ୍ଣୁ ମନ୍ଦିର ଅଛି । ପୁରାଣମାନଙ୍କରେ ବୃନ୍ଦାବନର ନାମ ଉଲ୍ଲେଖ ଅଛି । ମହମ୍ମଦ୍ ଗଜନୀ ଏ

ସ୍ଥାନକୁ ଆକ୍ରମଣ କରି ଏ ସ୍ଥାନକୁ ନଷ୍ଟଭ୍ରଷ୍ଟ କରି ଦେଇଥିଲେ ଓ ଏହାର ପ୍ରାଚୀନ କୀର୍ତ୍ତିଗୁଡ଼ିକର ଏବଂ ଶ୍ରୀକୃଷ୍ଣଙ୍କ ବିହାର ସ୍ଥଳମାନଙ୍କର ଚିହ୍ନ ମଧ୍ୟ ଲୁପ୍ତ ହୋଇଥିଲା । ଶ୍ରୀ ଚୈତନ୍ୟଦେବ ଏ ସ୍ଥଳକୁ ଆସି ପ୍ରାଚୀନ ବୃନ୍ଦାବନର ସ୍ଥାନ ନିରୂପଣ କରି ଏ ତୀର୍ଥ ମାହାତ୍ମ୍ୟକୁ ପୁନଃପ୍ରତିଷ୍ଠିତ କରି ଏହାର ପୂର୍ବ ଗୌରବକୁ ଉଦ୍ଧାର କରିଥିଲେ । ଏଠାର ପ୍ରଧାନ ଦେବ ବିଗ୍ରହ ଗୋବିନ୍ଦ-ଜୀଉଙ୍କ ମନ୍ଦିର ପୂର୍ବେ ତ୍ରିତଳବିଶିଷ୍ଟ ଥିଲା କିନ୍ତୁ ମୋଗଲ ବାଦଶାହମାନଙ୍କ ଅମଳରେ ଏହାର ଉପର ମହଲ ଭଙ୍ଗା ହୋଇ ବର୍ତ୍ତମାନ ଦ୍ୱିତଳ ମନ୍ଦିର ରହିଅଛି । ଗୋବିନ୍ଦଜୀ ଏଠାର ଜମିଦାର । ଏଠାରେ ଶ୍ରୀରଙ୍ଗ ମନ୍ଦିର ଓ ସାହାଜୀ ମନ୍ଦିର ପ୍ରସିଦ୍ଧ । ଶ୍ରୀରଙ୍ଗ ମନ୍ଦିରର ଉଦ୍ୟାନ ଓ ଅନେକ କୁଞ୍ଜ ଦର୍ଶନୀୟ । ବୃନ୍ଦାବନରେ ଗୋପୀମାନଙ୍କ ପୂଜିତ ଗୋପେଶ୍ୱର ଓ କାତ୍ୟାୟନୀଙ୍କ ମନ୍ଦିର ଅଛି । ଭାରତର ଅନେକ ଧନୀ ଏଠାରେ ମନ୍ଦିର, ଧର୍ମଶାଳା ଓ ସଦାବ୍ରତମାନ ସ୍ଥାପନ କରିଅଛନ୍ତି । ଯମୁନାନଦୀ ବୃନ୍ଦାବନ ନଗରରୁ କ୍ରମଶଃ ଦୂରକୁ ଘୁଞ୍ଚି ଯାଉଅଛି । କେଶୀ ଘାଟଠାରେ ପ୍ରତିଦିନ ଯମୁନା ନଦୀର ଆରତି କରାଯାଏ । ଶ୍ରୀକୃଷ୍ଣଙ୍କ କ୍ରୀଡ଼ୋଦ୍ୟାନମାନଙ୍କ ସ୍ଥାନ ଯାତ୍ରୀମାନଙ୍କୁ ପଣ୍ଡାମାନେ ଦେଖାନ୍ତି । ଦୋଳ ଓ ଝୁଲଣଯାତ୍ରା ଏଠାରେ ମହାସମାରୋହରେ ସମ୍ପାଦିତ ହୁଏ । ଏଠାରେ ଅନେକ ମୟୂର ଦେଖାଯାନ୍ତି ।

**ବୃଷକେତୁ**—ଅଙ୍ଗରାଜ ଦାତାକର୍ଣ୍ଣଙ୍କ ପୁତ୍ର । (କର୍ଣ୍ଣ ଦେଖ)

**ବୃଷପର୍ବ, ବୃଷପର୍ବା**—ଦୈତ୍ୟ ବିଶେଷ । ଏହାଙ୍କ କନ୍ୟାଙ୍କ ନାମ ଶର୍ମିଷ୍ଠା । ଶୁକ୍ର ଏହାଙ୍କ ଗୁରୁ ଥିଲେ । ଗୁରୁଙ୍କ ପରାମର୍ଶରେ ବୃଷପର୍ବା ବହୁକାଳଯାଏ ଦେବତାମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ।

**ବୃଷଭ** ଶ୍ରୀକୃଷ୍ଣଙ୍କ ସଖା ବିଶେଷ (ଭାଷାକୋଷ) । ରାମ ରାବଣ ଯୁଦ୍ଧରେ ଜଣେ ବାନର ସେନାପତିଙ୍କ ନାମ । (ହିନ୍ଦୀ ଶବ୍ଦସାଗର)

**ବୃଷଭାନୁ**—ଶ୍ରୀରାଧିକାଙ୍କ ପିତା । ଏ ପୁରାଣାନୁସାରେ ନାରାୟଣଙ୍କ ଅଂଶରେ ଉତ୍ପନ୍ନ ହୋଇଥିଲେ । ଏହାଙ୍କ ପିତାଙ୍କ ନାମ ସୁରଭାନୁ, ମାତାଙ୍କ ନାମ ପଦ୍ମାବତୀ । ଏ ଗୋକୁଳର ଜଣେ ବଡ଼ ସରଦାର ଥିଲେ । ପ୍ରଥମେ ରାବଲ ବା ଯାବଟ ଗ୍ରାମରେ ରହୁଥିବା ଅବସ୍ଥାରେ ସେଠାରେ ରାଧିକାଙ୍କର ଜନ୍ମ ହୋଇଥିଲା । ଏ କଂସର ଉପଦ୍ରବରୁ ସେଠାରୁ ଆସି ଗୋକୁଳରେ ବାସ କଲେ । (ଭାଷାକୋଷ)

**ବୃହଦ୍ରଥ**—ମଗଧାଧିପତି ସୁବିଖ୍ୟାତ ଜରାସନ୍ଧଙ୍କ ପିତା । ବୈଦିକ ମନ୍ତ୍ର ବିଶେଷ ଓ ସାମବେଦର ଅଂଶ ।

**ବୃହନ୍ନଳା, ବୃହନ୍ନାରୀ**—ପାଣ୍ଡବମାନେ ଅଜ୍ଞାତବାସ ବେଳେ ବିରାଟ ରାଜାଙ୍କ ଗୃହରେ ଥିବାବେଳେ ବିରାଟ ରାଜକୁମାରୀ ଉତ୍ତରାଙ୍କୁ ନୃତ୍ୟଗୀତାଦି ଶିକ୍ଷାଦେବା ନିମନ୍ତେ ନିଯୁକ୍ତ କ୍ଲୀବରୂପଧାରୀ ଅର୍ଜୁନଙ୍କ ନାମ । କୃଷ୍ଣ ସିଂହଙ୍କ ନିର୍ଣ୍ଣୟ ଯଥା—'ଏ ବାହାରେ ମୋହର ନାମ ବୃହନ୍ନଳା । ମୋ ପଣ ନାହିଁ ଜାଣିବାକୁ ନୃତ୍ୟକଳା ।'

**ବୃହଦ୍‌ବଳ**—ସୂର୍ଯ୍ୟବଂଶୀୟ ଜଣେ ରାଜା । ମହାଭାରତ ଯୁଦ୍ଧରେ ଅଭିମନ୍ୟୁ ଏହାଙ୍କୁ ବଧ କରିଥିଲେ ।

**ବୃହସ୍ପତି**—ଦେବଗୁରୁ । ମହର୍ଷି ଅଙ୍ଗିରା ଏହାଙ୍କର ପିତା ।

(ଅଙ୍ଗିରା ଓ ତାରା ଦେଖ)

**ବେଣ**—ଅଙ୍ଗରାଜଙ୍କ ପୁତ୍ର । ସୁନୀଥା ଏହାଙ୍କର ଜନନୀ । ବେଣ ନିଜ ରାଜ୍ୟରେ ବଳି ଓ ଦେବାର୍ଚ୍ଚନା ନିଷେଧ କରି ଦେଇଥିଲେ । ବ୍ରାହ୍ମଣମାନେ ଏଥିରେ କ୍ଷୁବ୍ଧ ହୋଇ ଏହି ଆଦେଶ ପ୍ରତ୍ୟାହାର କରି ନେବାକୁ ରାଜାଙ୍କୁ ଅନୁରୋଧ କଲେ । ମାତ୍ର ବେଣ ଏଥିପ୍ରତି କର୍ଣ୍ଣପାତ କଲେନାହିଁ । ବ୍ରାହ୍ମଣମାନେ କ୍ଷୁବ୍ଧ ହୋଇ ମନ୍ତ୍ରପୂତ କୁଶ ଦ୍ୱାରା ବେଣଙ୍କୁ ବିନାଶ କଲେ । ତା'ପରେ ବ୍ରାହ୍ମଣମାନେ ମୃତଦେହର ଦକ୍ଷିଣ ବାହୁରେ କୁଶାଗ୍ର ଘର୍ଷଣ କରିବାକୁ ଲାଗିଲେ । ଏହି ଘର୍ଷଣ ଯୋଗେ ଦକ୍ଷିଣ ବାହୁରୁ ପୃଥୁରାଜ ଜନ୍ମିଲେ । ବ୍ରାହ୍ମଣମାନେ ପୃଥୁଙ୍କୁ ବେଣଙ୍କ ସିଂହାସନରେ ଅଭିଷେକ କଲେ । (ବିଷ୍ଣୁପୁରାଣ)

**ବେଣୀମାଧବ**—ପ୍ରୟାଗପୀଠ ବା ଏଲାହାବାଦର ପ୍ରତିଷ୍ଠିତ ପାଷାଣମୟ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ବା ଭୈରବମୂର୍ତ୍ତି । ଏ ଦେବତା ପ୍ରୟାଗ ତୀର୍ଥର ପ୍ରତିଷ୍ଠାତା ଦେବ । (ଭାଷାକୋଷ)

**ବେତାଳ**—ଶିବଙ୍କ ଅନୁଚର ଦେବଯୋନି ବିଶେଷ । ପିଶାଚ, ଶବରେ ଆବିଷ୍ଟ ହେବା ଭୂତ । ବେତାଳମାନଙ୍କର ଅସାଧାରଣ ଶକ୍ତି ଅଛି । ଯେଉଁମାନେ ତାନ୍ତ୍ରିକ ମତରେ ବେତାଳ ସାଧନ କରନ୍ତି, ବେତାଳମାନେ ସେମାନଙ୍କର ଆଜ୍ଞାବହ ଭୃତ୍ୟ ହୋଇରହନ୍ତି । ସାଧକମାନେ ସେମାନଙ୍କ ଦ୍ୱାରା ଅସାଧ୍

ସାଧନ କରନ୍ତି । ମହାଦେବଙ୍କ ଦୁଇଜଣ ଦ୍ୱାରରକ୍ଷକ ମଧ୍ୟରୁ ଜଣଙ୍କର ନାମ ବେତାଳ, ଅନ୍ୟ ଜଣଙ୍କର ନାମ ତାଳ । (ଭାଷାକୋଷ)

**ବେଦ**—ଯାହାର ଆଲୋଚନା ଦ୍ୱାରା ବିଶେଷ ଜ୍ଞାନ ବା ଧର୍ମାଧର୍ମ ଜ୍ଞାନ ଜନ୍ମେ । ବ୍ରହ୍ମାଙ୍କ ମୁଖ ନିଃସୃତ ହିନ୍ଦୁମାନଙ୍କ ଧର୍ମଶାସ୍ତ୍ର । ଏହା ସଂଖ୍ୟାରେ ୪ । ଯଥା— ଋକ୍, ଯଜୁଃ, ସାମ ଓ ଅଥର୍ବ । ଏମାନଙ୍କ ମଧ୍ୟରୁ ପ୍ରଥମ ତିନୋଟି ପ୍ରାଚୀନ । ଅଥର୍ବ ପରବର୍ତ୍ତୀ ସମୟର ବୋଲି ଅନୁମାନ କରାଯାଏ । ବ୍ରହ୍ମାଙ୍କ ମୁଖରୁ ଉଚ୍ଚାରିତ ହୋଇ ଋଷି ପରମ୍ପରା କ୍ରମେ ସୃଷ୍ଟି ଆଦ୍ୟରୁ ଚାଲି ଆସୁଅଛି ବୋଲି ହିନ୍ଦୁମାନଙ୍କର ବିଶ୍ୱାସ ।

ହିନ୍ଦୁମାନଙ୍କର ବେଦ ପରି ଭିନ୍ନ ଭିନ୍ନ ଧର୍ମାବଲମ୍ବୀମାନଙ୍କର ଭିନ୍ନ ଭିନ୍ନ ଧର୍ମଶାସ୍ତ୍ର ଅଛି । ମୁସଲମାନ – କୋରାଣ, ଖ୍ରୀଷ୍ଟିୟାନ—ବାଇବଲ, ବୌଦ୍ଧ—ତ୍ରିପିଟକ, ପାରସୀ—ଜେନ୍ଦାଭେସ୍ତା ।

ବେଦ ଲୌକିକ ଓ ପାରମାର୍ଥିକ କର୍ତ୍ତବ୍ୟାକର୍ତ୍ତବ୍ୟ କର୍ମର ଶାସନରୂପ ଶାସ୍ତ୍ର । ହିନ୍ଦୁର ଆସ୍ତିକମୂଳକ ସର୍ବପ୍ରଧାନ ପ୍ରାମାଣିକ ଧର୍ମଶାସ୍ତ୍ର । (ଭାଷାକୋଷ)

**ବେଦବତୀ**—ରାଜା କୁଶଧ୍ୱଜଙ୍କ କନ୍ୟା । ଏହି ପରମାସୁନ୍ଦରୀ କନ୍ୟାଙ୍କୁ ରାଜା କୁଶଧ୍ୱଜ ବିଷ୍ଣୁଙ୍କୁ ସମର୍ପଣ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ଦୈତ୍ୟପତି ଶୁମ୍ଭଙ୍କ ଦ୍ୱାରା ଏହାଙ୍କର ଅକାଳ ବିୟୋଗ ହୋଇଥିଲା । ରାଜାଙ୍କ ସହିତ ରାଣୀ ସହମୃତା ହେଲେ । ବେଦମତୀ ପିତୃ ମାତୃହୀନା ହୋଇ ସୁଦ୍ଧା ଯେପରି ତାଙ୍କ ସ୍ୱର୍ଗତ ପିତାଙ୍କର ଆକାଂକ୍ଷା ପୂର୍ଣ୍ଣ ହେବ ଓ ସେ ବିଷ୍ଣୁଙ୍କ ସହଧର୍ମିଣୀ ହୋଇପାରିବେ ଏହି ଅଭିପ୍ରାୟରେ କଠୋର ତପସ୍ୟା ଆରମ୍ଭ କଲେ । ଏହି ତପସ୍ୟାରେ ତାଙ୍କର ବହୁକାଳ ଅତୀତ ହୋଇଗଲା । ଦିନେ ଲଙ୍କେଶ୍ୱର ରାବଣ ତାଙ୍କ ତପସ୍ୟା ସ୍ଥଳକୁ ଆସି ବେଦମତୀଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ନିଜର ରାଣୀ କରିବାକୁ ଅଭିପ୍ରାୟ ଜଣାଇଲେ । ମାତ୍ର ବେଦମତୀ ସରଳ ଭାବରେ ନିଜର ଅଭିପ୍ରାୟ ଜଣାଇ ରାବଣର ପ୍ରସ୍ତାବରେ ଅସମ୍ମତି ଜ୍ଞାପନ କଲେ । ମାତ୍ର ମଦଗର୍ବିତ ଅସୁର ରାବଣ ବଳପୂର୍ବକ ତାଙ୍କର ସତୀତ୍ୱ ଅପହରଣ କଲେ । ଅଗତ୍ୟା ବେଦମତୀ ଅଗ୍ନିରେ ଝାସ ଦେଇ ପ୍ରାଣ ବିସର୍ଜନ କଲେ । ପ୍ରାଣତ୍ୟାଗ ପୂର୍ବରୁ ସେ ରାବଣକୁ ଅଭିଶାପ ଦେଲେ ଯେ ତାଙ୍କରି ଲାଗି ରାକ୍ଷସବଂଶର ମୂଳୋତ୍ପାଟନ ଘଟିବ । ପର ଜନ୍ମରେ ଏହି ବେଦମତୀ ସୀତା ନାମରେ ମିଥିଳା ରାଜା ଜନକଙ୍କ କନ୍ୟାରୂପେ ଅବତୀର୍ଣ୍ଣ ହୋଇଥିଲେ । ସୀତା ହରଣ କରିବା ଯୋଗେ ଲଙ୍କାରାଜ ରାବଣଙ୍କର ସର୍ବନାଶ ଘଟିଥିଲା । (ରାମାୟଣ, ଉତ୍ତରାକାଣ୍ଡ)

ମହୀଶୂର ରାଜ୍ୟର ଏକ ନଦୀର ନାମ ବେଦମତୀ । ଏହା ଗୋଟିଏ ବନ୍ଧ ବା ଆନିକଟ୍ ଦ୍ୱାରା ବନ୍ଧା ହୋଇଅଛି । ବନ୍ଧା ହେବା ସ୍ଥାନରେ ଏ ନଦୀର ଓସାର ୧୨୦୦ ଫୁଟ । ୧୬୭ ଫୁଟ ଉଚ୍ଚ ପଥରବନ୍ଧ ପଛ ୩୨୩୫ କୋଟି ଘନଫୁଟ ଜଳ ଅଟକାଇ ରଖିଅଛି । କେନାଲ୍ ଦ୍ୱାରା କ୍ଷେତ୍ରମାନଙ୍କରେ ଜଳସେଚନ ସୁବିଧା କରାଯାଇଛି । (ଭାଷାକୋଷ)

**ବେଦବ୍ୟାସ**—ପରାଶର ଓ ସତ୍ୟବତୀଙ୍କ ପୁତ୍ର ମହର୍ଷି ଦ୍ୱୈପାୟନ । କେତେକ ପଣ୍ଡିତଙ୍କ ମତରେ ବେଦବ୍ୟାସ ବୋଲି କୌଣସି ନିର୍ଦ୍ଦିଷ୍ଟ ଋଷି ନ ଥିଲେ । ପ୍ରତ୍ୟେକ ଯୁଗରେ ଯେଉଁ ପଣ୍ଡିତମାନେ ବେଦ ବିଷୟ ଲୋକରେ ପ୍ରଚାର କରି ସେ ବିଷୟରେ ଗ୍ରନ୍ଥ ପ୍ରଭୃତି ରଚନା କରୁଥିଲେ, ସେହି ପଣ୍ଡିତମାନଙ୍କୁ ବେଦବ୍ୟାସ ବୋଲାଯାଉଥିଲା । ଭାଗବତରେ ଜଗନ୍ନାଥ ଦାସ ଏକ ସୁନ୍ଦର ନିର୍ଣ୍ଣୟ ଦେଇଛନ୍ତି । ଯଥା—ଯେ ଯୁଗେ ଯେଉଁ ଋଷିଗଣ । ବେଦ ବିସ୍ତାର କଲେ ପୁଣ । ସେହି ବେଦବ୍ୟାସ ବୋଲନ୍ତି । ତା'ହେଲେ ବିଷ୍ଣୁ ପ୍ରବେଶନ୍ତି । ବେଦବ୍ୟାସ ଶବ୍ଦର ଆକ୍ଷରିକ ଅର୍ଥ ହେଉଛି (ବେଦ + ବି - ଆ + ଅସ୍ ଧାତୁ (କ୍ଷେପଣାର୍ଥ) ଅର୍ଥାତ୍ ଯେ ବେଦକୁ ବିସ୍ତାରପୂର୍ବକ କୃଶଖଣ୍ଡରେ ବିଭକ୍ତ କରିଥିଲେ । (ଭାଷାକୋଷ)

**ବେଦମତୀ**—ବେଦବତୀ ଦେଖ ।

**ବେଦାଙ୍ଗ**—ବେଦର ଅଂଶ ବା ଅବୟବ, ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ । ଏହି ଛଅଗୋଟି ବେଦର ଅଂଶ । (୧) ସ୍ୱରବିଜ୍ଞାନ—ଯାହାଦ୍ୱାରା ବୈଦିକ ସୂକ୍ତମାନ ଉଚ୍ଚାରଣ କରି ସ୍ୱର ସଂଯୋଗ କରି ଗାନ କରିବାରେ ଶିକ୍ଷାଲାଭ ହୁଏ । (୨) କଳ୍ପ—ସୂତ୍ରଗ୍ରନ୍ଥ; ବେଦର ବ୍ରାହ୍ମଣ ଭାଗର ସାରତତ୍ତ୍ୱମାନ ଏଥିରେ ସୂତ୍ରାକାରରେ ପ୍ରଥିତ ହୋଇଅଛି । (୩) ବ୍ୟାକରଣ—ଶବ୍ଦ ଓ ବାକ୍ୟାଦିର ଆକାର ପ୍ରକାର ଓ ପ୍ରକୃତି ପ୍ରତ୍ୟୟାଦିର ଜ୍ଞାନ ଯହିଁରୁ ହୁଏ । (୪) ନିରୁକ୍ତ—ବୈଦିକ ଶବ୍ଦ ଓ ବାକ୍ୟର ଅର୍ଥ ପ୍ରତିପାଦକ ଗ୍ରନ୍ଥ । (୫) ଛନ୍ଦ—ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁଭ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁପ୍, ଜଗତୀ । ଏହି ସାତଗୋଟି ବୈଦିକ ଛନ୍ଦ ସମ୍ବନ୍ଧେ ଜ୍ଞାନ, । (୬) ଜ୍ୟୋତିଷ—ଯଦ୍ଦ୍ୱାରା ସୂର୍ଯ୍ୟାଦି ଗ୍ରହଙ୍କର ଗତି, ସ୍ଥିତି ଫଳ ଆଦିର ଜ୍ଞାନ ଲାଭହୁଏ । (ଭାଷାକୋଷ)

**ବେଦାନ୍ତ**—ବ୍ୟାସଦେବ ପ୍ରଣୀତ ଦର୍ଶନ ଶାସ୍ତ୍ର । ବ୍ରହ୍ମର ସ୍ୱରୂପାଦି ନିରୂପକ ଶାସ୍ତ୍ର ।

**ବେଦଜା**—ଦ୍ରୌପଦୀଙ୍କ ନାମାନ୍ତର । କାରଣ ଯଜ୍ଞ ବେଦୀରୁ ସେ ଜନ୍ମିଥିଲେ ।

**ବୈତରଣୀ** ଯମ ପୁରୀକୁ ବେଷ୍ଟନ କରିଥିବା ପୌରାଣିକ ନଦୀ । ଏହାର ଜଳ ରୁଧିରମୟ, ତପ୍ତ, ଦୁର୍ଗନ୍ଧ ଓ ଅସ୍ଥିକଙ୍କାଳ ସମନ୍ବିତ । ମୃତ୍ୟୁ ପୂର୍ବରୁ ଗୋଦାନ ଦେଲେ ସେହି ଗୋରୁର ଲାଙ୍ଗୁଡ଼ ଧରି ଏ ମୃତବ୍ୟକ୍ତିର ପ୍ରେତ ନଦୀକୁ ପାରହୁଏ ବୋଲି ପୁରାଣରେ ଲେଖାଅଛି ।

ଉତ୍କଳର ନଦୀ ବିଶେଷ । ଯାଜପୁର ଏହି ନଦୀ କୂଳରେ ଅବସ୍ଥିତ । ଏହା କେନ୍ଦୁଝରର ଗୋନାସିକା ପର୍ବତରୁ ବାହାରି ବଙ୍ଗୋପ ସାଗରରେ ପଡ଼ିଅଛି । (ଭାଷାକୋଷ)

**ବୈଦର୍ଭୀ**—ଦମୟନ୍ତୀଙ୍କ ନାମାନ୍ତର । ମହର୍ଷି ଅଗସ୍ତିଙ୍କ ପତ୍ନୀ । ରୁକ୍ମିଣୀଙ୍କ ଅନ୍ୟ ନାମ ।

**ବୈଦେହୀ**–ବିଦେହ ବା ମିଥିଳା ରାଜା ଜନକଙ୍କ ଝିଅ । ସୀତାଙ୍କ ନାମାନ୍ତର । ସୀତାଙ୍କର ଛଅଗୋଟି ନାମ । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ପ୍ରଣୀତ ବୈଦେହୀଶ-ବିଳାସରେ ପ୍ରମାଣ ଯଥା—ବଦେହ ଷଡ଼ ନାମ ସେ ଯେ । ବୁଝିବ ପୁଣି ସହଜେ ବୈଦେହୀ, ମୈଥିଳୀ, ପାର୍ଥିବୀ, ଜାନକୀ, ଯୋଜନଗନ୍ଧା, ସୀତା ଯେ ।

**ବୈଦେହୀଶବିଳାସ**—ଉତ୍କଳର କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ ମହାକାବ୍ୟ ବିଶେଷ । ଏଥିରେ ବୈଦେହୀଶ ଅର୍ଥାତ୍ ରାମଚନ୍ଦ୍ରଙ୍କ ଚରିତ ବିବିଧ ଛନ୍ଦରେ ରଚିତ । ଏହା ଆଦ୍ୟରେ ଆ ଅନୁପ୍ରାସ ବିଶିଷ୍ଟ, ବାଆନ ଛାନ୍ଦ ବା ସର୍ଗଯୁକ୍ତ । ଏପରି ରଚନା ବୈଚିତ୍ର୍ୟ ଓ ଶବ୍ଦ ପାଣ୍ଡିତ୍ୟ ଅନ୍ୟାନ୍ୟ କେଉଁଣସି ଭାଷାରେ ଦେଖାଯାଏ ନାହିଁ ।

**ବୈଦ୍ୟନାଥ**—(୧) ବାବା ବୈଦ୍ୟନାଥ; ଛୋଟ ନାଗପୁର ଅନ୍ତର୍ଗତ ସାନ୍ତାଳ ପ୍ରଗଣା ଜିଲ୍ଲାର ଦେଓଘର ସବ୍‌ଡିଭିଜନସ୍ଥ ପ୍ରସିଦ୍ଧ ଶିବଲିଙ୍ଗ । ହିନ୍ଦୁମାନଙ୍କର ଏହା ଗୋଟିଏ ପୀଠ ଓ ପ୍ରଧାନ ତୀର୍ଥ । ଏଠାର ୨୨ ଗୋଟି ଶିବ ମନ୍ଦିର ଶିବଙ୍କ ନାମରେ ଉତ୍ସୃଷ୍ଟ । ଏଠାରେ ଶିବଲିଙ୍ଗ ଭାରତ ପ୍ରସିଦ୍ଧ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରୁ ଏକତମ । (୨) ଉତ୍ତରପୂର୍ବ ଭାରତର ଗୋଟିଏ ପ୍ରଧାନ ହିନ୍ଦୁତୀର୍ଥ । ବୈଦ୍ୟନାଥ ଲିଙ୍ଗଙ୍କ ଅଧିଷ୍ଠିତ ନଗର । ଏ ସ୍ଥାନର ଜଳବାୟୁ ସ୍ୱାସ୍ଥ୍ୟକର ଥିବାରୁ ଭାରତର ନାନା ସ୍ଥାନରୁ ସହସ୍ର ସହସ୍ର ବ୍ୟକ୍ତି ଆସନ୍ତି ଓ ଏଠାରେ ଅନେକ ବଡଲୋକ ସ୍ୱାସ୍ଥ୍ୟନିବାସାର୍ଥେ ପ୍ରାସାଦମାନ ତୋଳିଅଛନ୍ତି ।

ଏ ଦେବତାଙ୍କ ନିକଟରେ ବହୁଶତ ଭକ୍ତ ନରନାରୀ ମନୋବାଞ୍ଛା ସିଦ୍ଧ୍ୟାର୍ଥ ଓ ଆରୋଗ୍ୟ ଲାଭାର୍ଥ 'ଧାରଣା' ପଡ଼ନ୍ତି । ଏ ଦେବତାଙ୍କୁ ସ୍ନେହରେ ହିନ୍ଦୁମାନେ 'ବାବା ବୈଦ୍ୟନାଥ, ବୋଲି ଡାକନ୍ତି । ଏ ସ୍ଥାନର କୂପଜଳ ଅତି ସୁସ୍ୱାଦୁ । ଫଳତଃ ଏହି ସ୍ଥାନର ଜଳବାୟୁ ଗୁଣରେ ଓ ଦେବତାଙ୍କ ଅନୁଗ୍ରହରେ ବହୁ ସହସ୍ର ରୋଗୀ ଧାରଣା ପଡି ଅସାଧ୍ୟ ରୋଗମାନଙ୍କରୁ ମୁକ୍ତିଲାଭ କରିବା ଦେଖାଯାଏ । ଏଠାରେ ଅଧିକାଂଶ ସ୍ୱାସ୍ଥ୍ୟନିବାସ ବଙ୍ଗୀୟ ବଡ଼ଲୋକମାନଙ୍କର । ଏ ସ୍ଥାନ ପାହାଡ଼ିଆ । ଏଠାରେ ଭଲ ସନ୍ଦେଶ ଓ ରସାଦହି ମିଳେ ଏବଂ ଲୁହାର ଉତ୍କୃଷ୍ଟ ଜିନିଷମାନ ଏଠାରେ ତିଆରି ହୁଏ । (କ୍ରିୟାକୋଷ)

**ବୈବସ୍ୱତ**—ସୂର୍ଯ୍ୟ ପୁତ୍ର । ମାନବ ଧର୍ମଶାସ୍ତ୍ର ପ୍ରଣେତା ମନୁ । ରୁଦ୍ରଦେବତାଃ ବିଶେଷ ।

**ବୈଭ୍ରାଜ**—ପର୍ବତସ୍ଥ କୁବେରଙ୍କ ଉଦ୍ୟାନର ନାମ ।

**ବୈୟାଘ୍ର**—ପ୍ରାଚୀନ କାଳରେ ବ୍ୟବହୃତ ଏକପ୍ରକାର ରଥ, ଯାହା ଉପରେ ବାଘଚମଡ଼ା ମଡ଼ା ହୋଇଥିଲା । (ହିନ୍ଦୀ ଶବ୍ଦସାଗର)

**ବୈୟାଘ୍ରପଦ୍ୟ, ବୈୟାଘ୍ରପାଦୀ**—ବ୍ୟାଘ୍ରପାଦ ମୁନିଙ୍କ ଗୋତ୍ର । ଗୋତ୍ର ପ୍ରବର୍ତ୍ତକ ମୁନି ବିଶେଷଙ୍କ ଗୋତ୍ର । ଏହି ଗୋତ୍ରରୁ ଭୀଷ୍ମଦେବଙ୍କ ଜନ୍ମ ହୋଇଥିଲା । ପ୍ରମାଣ ଯଥା—ବୈୟାଘ୍ରପଦ୍ୟ ଗୋତ୍ରାୟ ସାଙ୍କୃତି ପ୍ରବରାୟଚ । ଅପୁତ୍ରାୟ ଦଦାମ୍ୟେତତ୍ ସଲିଳଂ ଭୀଷ୍ମବର୍ମଣେ, ଯଜ୍ଞୋପବୀତ୍ୟ ତର୍ପଣ ।

**ବୈଶାଳ**—ବ୍ରତ ଓ ବିବାହ ବେଦୀ ନିକଟରେ ଯେଉଁ ବଂଶଦଣ୍ଡ ପୋତାଯାଏ ।

**ବୈଶାଳୀ**—ବୁଦ୍ଧଦେବଙ୍କ ଜୀବିତ କାଳରେ ପ୍ରାଚୀନ ଭାରତର ପ୍ରସିଦ୍ଧ ନଗର । ଆଧୁନିକ ମୁଜାଫରପୁର ଜିଲ୍ଲାର ବସାଢ଼ ନାମକ ଗ୍ରାମ । ପ୍ରାଚୀନ ବୈଶାଳୀ ନଗରୀର ଅବଶେଷ ଥିବାର ପଣ୍ଡିତମାନେ କହନ୍ତି । ଏ ନଗରକୁ ରାଜା ତୃଣବିନ୍ଦୁଙ୍କ ପୁତ୍ର ବିଶାଳ ବସାଇଥିବାରୁ ଏହାର ଅନ୍ୟ ନାମ ବିଶାଳପୁରୀ ବା ବିଶାଳ ନଗରୀ । ବୁଦ୍ଧଦେବ କେତେଥର ଏ ଗ୍ରାମକୁ ଯାଇଥିଲେ । ଜୈନଧର୍ମର ପ୍ରବର୍ତ୍ତକ ମହାବୀରଙ୍କର ଏହି ନଗରୀରେ ଜନ୍ମ ହୋଇଥିଲା ଓ ଏହା ଜୈନମାନଙ୍କର ଗୋଟିଏ ତୀର୍ଥ । ବୁଦ୍ଧଦେବଙ୍କ ସମୟରେ ଏହି ନଗର ପ୍ରସିଦ୍ଧ ଥିଲା । ଏଠାରେ ଅନେକ ବୌଦ୍ଧ ବାସ କରୁଥିଲେ । (ହିନ୍ଦୀ ଶବ୍ଦସାଗର)

**ବୈଶମ୍ପାୟନ**—କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କ ପ୍ରିୟ ଶିଷ୍ୟ । ଜନ୍ମେଜୟଙ୍କ ସର୍ପଯଜ୍ଞ ସମୟରେ ଯଜ୍ଞ ସଭାରେ ଏ ମହାଭାରତ ପାଠ କରିଥିଲେ । ମହର୍ଷି ଯାଜ୍ଞବଲ୍କ୍ୟ ଏହାଙ୍କର ଶିଷ୍ୟ । (ମହାଭାରତ)

**ବ୍ୟାସ, ବ୍ୟାସଦେବ**—ବେଦ ବିଭାଗକର୍ତ୍ତା ଋଷି । (କୃଷ୍ଣଦ୍ୱୈପାୟନ ଦେଖ)

ବେଦ ବିଭାଗକାରୀ ଓ ମହାଭାରତାଦି ପୁରାଣ ରଚୟିତା ମୁନି ବିଶେଷ । କୃଷ୍ଣଦ୍ୱୈପାୟନ । ନଦୀ ମଧ୍ୟସ୍ଥ ଦ୍ୱୀପରେ ଏହାଙ୍କର ଜନ୍ମ ହୋଇଥିବାରୁ ଏହାଙ୍କ ନାମ ଦ୍ୱୈପାୟନ । ଏହାଙ୍କ ଦେହର ବର୍ଣ୍ଣ କଳା ଥିବାରୁ ଏହାଙ୍କର ଅନ୍ୟନାମ କୃଷ୍ଣଦ୍ୱୈପାୟନ । ଏ ବାଲ୍ୟକାଳରୁ ତପସ୍ୟା କଲେ । ପରେ ଏହାଙ୍କ ମାତା ସତ୍ୟବତୀଙ୍କ ସଙ୍ଗେ ଶାନ୍ତନୁଙ୍କର ବିବାହ ହେଲା । ଶାନ୍ତନୁ ଓ ସତ୍ୟବତୀଙ୍କ ପୁତ୍ର ବିଚିତ୍ରବୀର୍ଯ୍ୟ ନିଃସନ୍ତାନ ହୋଇ ମୃତ ହେବାରୁ ସତ୍ୟବତୀଙ୍କ ଆଦେଶ ଅନୁସାରେ ଏ ବିଚିତ୍ରବୀର୍ଯ୍ୟଙ୍କ ଦୁଇ ବିଧବା ପତ୍ନୀ ଅମ୍ବିକା ଓ ଅମ୍ବାଲିକାଙ୍କ ସଙ୍ଗେ ନିୟୋଗ ବିଧି ଅନୁସାରେ ସହବାସ କଲେ ଓ ସେମାନଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମହେଲେ । ଏହାଙ୍କ ଔରସରେ ବିଚିତ୍ରବୀର୍ଯ୍ୟଙ୍କ ଦାସୀ ଗର୍ଭରେ ବିଦୁର ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ଅନ୍ୟ ନାମ ପାରାଶର୍ଯ୍ୟ, କାନୀନ, ବାଦରାୟଣ, ସତ୍ୟଭାରତ, ସତ୍ୟବ୍ରତ ଓ ଧୃତବ୍ରତ ।

ବେଦମାନଙ୍କର ସଂଗ୍ରହ ଓ ବିଭାଗକାରୀ ୨୮ ଜଣ ଋଷି ପୁରାଣାନୁସାରେ ଭିନ୍ନ ଭିନ୍ନ କଳ୍ପରେ ଜନ୍ମଗ୍ରହଣ କରିଥିଲେ । ଏମାନେ ବ୍ରହ୍ମାଙ୍କର ବା ବିଷ୍ଣୁଙ୍କର ଅବତାର ବୋଲି କଥିତ । ଏମାନଙ୍କ ନାମ ସ୍ୱୟଂଭୂବ, ପ୍ରଜାପତି ବା ମନୁ, ଉଶନା, ବୃହସ୍ପତି, ସବିତା, ମୃତ୍ୟୁ ବା ଯମ, ଇନ୍ଦ୍ର, ବଶିଷ୍ଠ, ସାରସ୍ୱତ, ତ୍ରିଧାମ, ଋଷଭ, ବା ତ୍ରିବୃଷ, ସୁତେଜା ବା ଭରଦ୍ୱାଜ, ଅନ୍ତରୀକ୍ଷ ବା ଧର୍ମ, ବପ୍ରବନ୍ ବା ସୁଚକ୍ଷୁ, ତ୍ରୟ୍ୟାରୁଣି, ଧନଞ୍ଜୟ, ଋତଞ୍ଜୟ, କୃତଞ୍ଜୟ, ଭରଦ୍ୱାଜ, ଗୌତମ, ଉତ୍ତମ ବା ହର୍ଯ୍ୟାତ୍ମା, ବାଜଶ୍ରବା ବା ନାରାୟଣ ବା ବେଣ, ସୋମମୁଖ୍ୟାୟନ ବା ତୃଣବିନ୍ଦୁ, ଋକ୍ଷ ବା ବାଲ୍ମୀକି, ଶକ୍ତି, ପରାଶର, ଜାତୁକର୍ଣ୍ଣ ଓ କୃଷ୍ଣଦ୍ୱୈପାୟନ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ବ୍ୟୂହ**—ପୂର୍ବକାଳରେ ଯୁଦ୍ଧ କ୍ଷେତ୍ରରେ ଚତୁରଙ୍ଗ ସେନାଙ୍କୁ ନାନା କୌଶଳରେ ଯୁଦ୍ଧ ପାଇଁ ସଜ୍ଜିତ କରି ରଖାଯାଉଥିଲା । ଆକାର ଆଦି ଅନୁସାରେ ବ୍ୟୂହର ଭିନ୍ନ ଭିନ୍ନ ନାମ ଥିଲା । ଯଥା—ଦଣ୍ଡ, ଶକଟ, ବରାହ, ଗରୁଡ଼, ଶ୍ୟେନ, ମଣ୍ଡଳ, ଧନୁ, ସର୍ବତୋଭଦ୍ର । ରାଜା ବା ପ୍ରଧାନ ସେନାପତି ବ୍ୟୂହର କେନ୍ଦ୍ରରେ ଶତ୍ରୁର ପ୍ରତ୍ୟକ୍ଷ ଆକ୍ରମଣରୁ ଦୂରରେ ରହୁଥିଲେ ଓ ଆଦେଶାଦି ଦ୍ୱାରା ବ୍ୟୂହ

ତୁଳନା କରୁଥିଲେ । (ଭାଷାକୋଷ) ମହାଭାରତ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟଙ୍କ ରଚିତ ଚକ୍ରବ୍ୟୂହରେ ଅଭିମନ୍ୟୁ ନିହତ ହେବାକଥା ଜଣାଯାଏ ।

**ବ୍ରଜ**—ପୌରାଣିକ ଶୂରସେନ ଦେଶର ଏକ ଅଂଶ । ଆଧୁନିକ ମଥୁରାର ଅନ୍ତର୍ଗତ ଗୋକୁଳଗ୍ରାମ । ବୃନ୍ଦାବନ—ଏହି ଦେଶ ବୃନ୍ଦାବନ, ଗୋକୁଳ, ମଥୁରା, ଆଗ୍ରା ଆଦି ସହିତ ପରିଧିରେ ୧୬୮ ମାଇଲ । (ହିନ୍ଦୀ ଶବ୍ଦସାଗର)

**ବ୍ରହ୍ମଦତ୍ତ**—ଚନ୍ଦ୍ରବଂଶୀୟ ଜନୈକ ରାଜା । ଏ ଅଣୁହଙ୍କ ପୁତ୍ର ଓ ଯୋଗତନ୍ତ୍ର-ପ୍ରଣେତା । ଇକ୍ଷ୍ୱାକୁବଂଶୀୟ ଜଣେ ରାଜା । କଳିଙ୍ଗ ବା ପ୍ରାଚୀନ ଉତ୍କଳର ଜଣେ ରାଜା ଏ ବୁଦ୍ଧଦେବଙ୍କ ମୃତ୍ୟୁ ପରେ ତାଙ୍କ ଦାନ୍ତ ଆଣି ଦନ୍ତପୁର (ପୁରୀ) ରେ ରଖିଥିଲେ । (ଭାଷାକୋଷ)

**ବ୍ରହ୍ମପୁତ୍ର**—ବଙ୍ଗ ଦେଶର ପୂର୍ବାଞ୍ଚଳବାହୀ ନଦୀ ବିଶେଷ । ଏ ନଦର ଉତ୍ପତ୍ତି ସମ୍ବନ୍ଧେ କାଳିକାପୁରାଣରେ ଲେଖାଅଛି ଯେ, ଦିନେ ବ୍ରହ୍ମା ଶାନ୍ତନୁ ମୁନିଙ୍କ ଅନୁପସ୍ଥିତିରେ ତାଙ୍କ ଆଶ୍ରମରେ ଉପସ୍ଥିତ ହୋଇ ଶାନ୍ତନୁଙ୍କ ସ୍ତ୍ରୀ ଅମୋଘାଙ୍କ-ରୂପରେ ମୁଗ୍ଧ ହୋଇ ତାଙ୍କୁ ଅନୁସରଣ କରିବାରୁ ଅମୋଘା ପଳାଇ ଯାଇ ପର୍ଣ୍ଣକୁଟୀରର ଦ୍ୱାର ରୁଦ୍ଧ କରିଦେଲେ । ବ୍ରହ୍ମା କାମ ଜର୍ଜରିତ ହୋଇଥିବାରୁ ସେହିଠାରେ ତାଙ୍କ ରେତଃ ସ୍ଖଳିତ ହେଲା । ବ୍ରହ୍ମା ଲଜ୍ଜିତ ହୋଇ ସେ ସ୍ଥାନ ପରିତ୍ୟାଗ କଲା ପରେ ଶାନ୍ତନୁ ଆସି ପହଞ୍ଚି ସେ ଅଲୌକିକ ବ୍ରହ୍ମବୀର୍ଯ୍ୟ ଦର୍ଶନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଧ୍ୟାନ ଦ୍ୱାରା ତହିଁର କାରଣ ଅବଧାରଣ କଲେ । ଋଷି ତାହା ନିଜେ ପାନ କରି ଭାର୍ଯ୍ୟା ଅମୋଘାଙ୍କ ଗର୍ଭରେ ତାହା ନିକ୍ଷେପ କଲେ ଓ ତହିଁର ଫଳରେ ଅମୋଘାଙ୍କଠାରୁ ଏହି ବ୍ରହ୍ମପୁତ୍ର ନଦର ଉତ୍ପତ୍ତି ହେଲା । ଏ ନଦ ମାନସରୋବରରୁ ବାହାରି ପୂର୍ବାଭିମୁଖରେ ହିମାଳୟର ପୂର୍ବପ୍ରାନ୍ତ ବାଟେ ବୁଲି ପଶ୍ଚିମାଭିମୁଖ ହୋଇ ଆସାମ ଦେଶ ଓ ଦକ୍ଷିଣାଭିମୁଖ ହୋଇ ପୂର୍ବବଙ୍ଗ ଦେଇ ଗୋଆଲନ୍ଦଠାରେ ଗଙ୍ଗା ସଙ୍ଗେ ମିଳିତ ହୋଇ ପଦ୍ମା ବା ମେଘନା ନାମ ଧାରଣ କରି ବଙ୍ଗୋପସାଗରରେ ପଡ଼ିଅଛି । ଏ ନଦର ପୌରାଣିକ ନାମ ଅମୋଘାନନ୍ଦନ ଓ ଲୌହିତ୍ୟ । (ହିନ୍ଦୀ ଶବ୍ଦସାଗର)

**ବ୍ରହ୍ମପୁରୀ**—କୈଳାସ ପର୍ବତ ଉପରେ ବିରାଜିତ ବ୍ରହ୍ମାଙ୍କର ଧାମ । (ଭାଷାକୋଷ)

**ବ୍ରହ୍ମବାଲୁକ**—ହିନ୍ଦୁମାନଙ୍କର ପ୍ରଧାନ ତୀର୍ଥ ବିଶେଷ । ମହାଭାରତ ବନପର୍ବରେ ରାଜକବି କୃଷ୍ଣସିଂହ ନିର୍ଣ୍ଣୟ କରିଛନ୍ତି—

ଯଜନ, ଯାଜନ କରି ବ୍ରହ୍ମବାଲୁକାରେ,
ସ୍ନାନ କଲେ ଲୋକ ନ ପଡ଼େ ଯେ ଶୋକରେ ।

**ବ୍ରହ୍ମବଦେଶ**—କୁରୁକ୍ଷେତ୍ର, ପଞ୍ଚାଳ, ମତ୍ସ୍ୟ ଓ ଶୂରସେନ ନାମକ ଦେଶ ଚତୁଷ୍ଟୟ । (ଭାଷାକୋଷ)

**ବ୍ରହ୍ମଯୋନ**--ବ୍ରହ୍ମଗିରି । ଗୟାର ପର୍ବତ ବିଶେଷ । ଏହା ହିନ୍ଦୁମାନଙ୍କର ଏକ ତୀର୍ଥ ।

**ବ୍ରହ୍ମଯୋନୀ**—କୁରୁକ୍ଷେତ୍ରସ୍ଥ ତୀର୍ଥ ବିଶେଷ । ସରସ୍ୱତୀ ନଦୀର ତୀରରେ ପୃଥୂଦକ ନିକଟସ୍ଥ ତୀର୍ଥ । ଏଠାରେ ବ୍ରହ୍ମା ବ୍ରାହ୍ମଣାଦି ୪ ବର୍ଣ୍ଣର ସୃଷ୍ଟି କରିଥିଲେ । (ଭାଷାକୋଷ)

**ବ୍ରହ୍ମରାକ୍ଷସ, ବ୍ରହ୍ମଦୈତ୍ୟ, ବ୍ରହ୍ମପିଶାଚ**—ମନୁଙ୍କ ମତରେ ଯେଉଁ ବ୍ରାହ୍ମଣ ପତିତ ବ୍ୟକ୍ତିର ସହବାସ, ପରସ୍ତ୍ରୀଗମନ, ବ୍ରହ୍ମସ୍ୱହରଣ କରିଥାଏ, ମୃତ୍ୟୁ ପରେ ସେ ବ୍ରହ୍ମରାକ୍ଷସତ୍ୱ ପ୍ରାପ୍ତ ହୁଏ । ଲୋକ ବିଶ୍ୱାସ ଏହି କି ବ୍ରାହ୍ମଣ ବିବାହ ନ କରି ମଲେ ବ୍ରହ୍ମରାକ୍ଷସ ହୁଏ ।

ଲୋକଙ୍କର ବିଶ୍ୱାସ ଯେ ନିମ୍ବ, ବେଲ, ବଟ, ଓସ୍ତ ଏହି ଚାରି ଗଛରେ ବ୍ରହ୍ମଦୈତ୍ୟ ବାସ କରେ ଏଥିପାଇଁ ରାତ୍ରି ଓ ଦ୍ୱିପ୍ରହରବେଳେ ଖରାବେଳେ ପିଲାଙ୍କୁ ଓ ସ୍ତ୍ରୀମାନଙ୍କୁ ଏ ଗଛମାନଙ୍କ ନିକଟକୁ ଯିବାକୁ ଲୋକେ ମନା କରନ୍ତି । ଏ ବ୍ରହ୍ମରାକ୍ଷସମାନେ ଗ୍ରାମର ଯୁବକ ଓ ଯୁବତୀମାନଙ୍କଠାରେ ଆବିଷ୍ଟ ହେବା ଦେଖାଯାଇଅଛି । (ଭାଷାକୋଷ)

**ବ୍ରହ୍ମରାତ**—ଶୁକଦେବଙ୍କ ନାମ । (ହିନ୍ଦୀ ଶବ୍ଦସାଗର) । ଯାଜ୍ଞବଲ୍‌କ୍ୟ ମୁନି । (ହିନ୍ଦୀ ଶବ୍ଦସାଗର)

**ବ୍ରହ୍ମରାତ୍ରି**—(୧) ଯେ ଜନକ ମହାରାଜଙ୍କୁ ବ୍ରହ୍ମଜ୍ଞାନ ଦେଇଥିଲେ । (୨) ଯାଜ୍ଞବଲ୍‌କ୍ୟ ମୁନି, (୩) ଦେବତାଙ୍କର ୨୪ ହଜାର ବର୍ଷ ପରିମିତ ବ୍ରହ୍ମାଙ୍କର ଏକରାତ । ବ୍ରହ୍ମା ସୃଷ୍ଟି କରିବା ପରେ ମନୁଷ୍ୟ ଗଣନାରେ ୧୦ ବୃନ୍ଦ ୯୧ କୋଟି ୬ ଲକ୍ଷ ବର୍ଷ ସୃଷ୍ଟି ଚଳେ । ଏହା ବ୍ରହ୍ମାଙ୍କର ଏକ ଦିନ । ତା'ପରେ କଳ୍ପ ସ୍ଥାୟୀ ପ୍ରଳୟ ହୁଏ ଓ ବ୍ରହ୍ମା ପୁଣି ସେତିକି କାଳ ଶୋଇପଡ଼ନ୍ତି । ଏହା ବ୍ରହ୍ମାଙ୍କର ରାତ୍ରି । ତା,ପରେ ବ୍ରହ୍ମା ପୁଣି ନିଦରୁ ଉଠି ସୃଷ୍ଟି କରନ୍ତି । (ଭାଷାକୋଷ)

**ବ୍ରହ୍ମର୍ଷି**—ବଶିଷ୍ଠାଦି ମୁନିଗଣ । ବ୍ରାହ୍ମଣ ଋଷିଙ୍କୁ ମଧ୍ୟ ବ୍ରହ୍ମର୍ଷି କହନ୍ତି । ବଶିଷ୍ଠ, କଶ୍ୟପ, ଅଙ୍ଗିରା, ଅତ୍ରି ଓ ଭୃଗୁ ଏହି ପଞ୍ଚ ପ୍ରଜାପତିଙ୍କ ବଂଶଧର ମୁନିଗଣ । ବ୍ରହ୍ମର୍ଷି ବଶିଷ୍ଠାଦି ଓ ସେମାନଙ୍କ ବଂଶଧରମାନେ ।

ଦେବର୍ଷି—ଧର୍ମଙ୍କ ପୁତ୍ର ନର, ନାରାୟଣ ଓ କ୍ରତୁଙ୍କ ପୁତ୍ର ବାଲଖିଲ୍ୟ। ପୁଲହଙ୍କ ପୁତ୍ର କର୍ଦ୍ଦମ, ପୁଲସ୍ତ୍ୟଙ୍କ ପୁତ୍ର କୁବେର, ପ୍ରତ୍ୟୁଷଙ୍କ ପୁତ୍ର ଅଚଳ, କାଶ୍ୟପଙ୍କ ପୁତ୍ର ନାରଦ ଓ ପର୍ବତ । ରାଜର୍ଷି—ଇକ୍ଷ୍ୱାକୁ, ନଳ, ଜନକ, ବିଶ୍ୱାମିତ୍ର । ଦେହତ୍ୟାଗ ପରେ ବ୍ରହ୍ମର୍ଷିମାନେ ବ୍ରହ୍ମଲୋକରେ, ଦେବର୍ଷିମାନେ ଦେବଲୋକରେ ଓ ରାଜର୍ଷିମାନେ ଇନ୍ଦ୍ରଲୋକରେ ବାସ କରନ୍ତି । (ଭାଷାକୋଷ)

**ବ୍ରହ୍ମଲୋକ**—ଏହା ବ୍ରହ୍ମାଙ୍କ ବାସସ୍ଥାନ । ବ୍ରହ୍ମଲୋକର ରାଜଧାନୀର ନାମ ଯଶୋବନ୍ତପୁର । ଦାକ୍ଷିଣାତ୍ୟ ରାମାୟଣରେ ପ୍ରମାଣ ଯଥା—'ଯଶୋବନ୍ତୀପୁରେ ବିଜସ୍ୱପଦ୍ମ ଯୋନି । ଷାଠିଏ ସହସ୍ର ବ୍ରହ୍ମର୍ଷି ସଙ୍ଗେ ସେନି ।' ପ୍ରକୃତରେ ଏହି ବ୍ରହ୍ମଲୋକ ବ୍ରହ୍ମର୍ଷି ଓ ବ୍ରହ୍ମଜ୍ଞ ବ୍ୟକ୍ତିମାନଙ୍କର ପାରଲୌକିକ ବାସସ୍ଥାନ ।

**ବ୍ରହ୍ମଶିରଃ, ବ୍ରହ୍ମଶର, ବ୍ରହ୍ମବାଣ**—ମହାପ୍ରଭାବମୟ ଯୁଦ୍ଧାସ୍ତ୍ର ବିଶେଷ । ରାମାୟଣ ଓ ମହାଭାରତରେ ଏହା ଉଲ୍ଲେଖ ଅଛି । ଦ୍ରୋଣାଚାର୍ଯ୍ୟ ଅଗସ୍ତ୍ୟଙ୍କଠାରୁ ଏହାର ଚାଳନା ଶିକ୍ଷାକରି ଅର୍ଜୁନ ଓ ଅଶ୍ୱତ୍ଥାମାଙ୍କୁ ଶିଖାଇଥିଲେ । (ହିନ୍ଦୀ ଶବ୍ଦସାଗର) ବନବାସ ବେଳେ ରାମଚନ୍ଦ୍ର ରାବଣ ବଧ କରିବା ପାଇଁ ଅଗସ୍ତ୍ୟଙ୍କଠାରୁ ବ୍ରହ୍ମଶର ଲାଭ କରିଥିଲେ । (ରାମାୟଣ ଅରଣ୍ୟକାଣ୍ଡ)

**ବ୍ରହ୍ମସରଃ**—ତିବ୍ବତଦେଶୀୟ ମାନସରୋବର ନାମକ ପାର୍ବତ୍ୟ ହ୍ରଦ; ହିନ୍ଦୁ ତୀର୍ଥ ବିଶେଷ । (ଭାଷାକୋଷ)

**ବ୍ରହ୍ମା**—ସୃଷ୍ଟିକର୍ତ୍ତା ମନୁ ସ୍ମୃତି ଅନୁସାରେ ସ୍ୱୟଂମ୍ଭୂ ଭଗବାନ ପ୍ରଥମେ ଜଳକୁ ସୃଷ୍ଟି କରି ତହିଁରେ ବୀଜ ବୁଣିଲେ । ସେଥିରୁ ଗୋଟିଏ ଜ୍ୟୋତିର୍ମୟ ଅଣ୍ଡ ବାହାରିଲା । ସେହି ଅଣ୍ଡ ମଧ୍ୟରୁ ବ୍ରହ୍ମା ବାହାରିଲେ । ଭାଗବତ ଆଦି ପୁରାଣରେ ଅଛି ଯେ ଭଗବାନ ବିଷ୍ଣୁ ପ୍ରଥମେ ମହତ୍ତତ୍ତ୍ୱ, ଅହଂକାର ଓ ପଞ୍ଚ ତନ୍ମାତ୍ରା ଦ୍ୱାରା ଏକାଦଶ ଇନ୍ଦ୍ରିୟ ଓ ପଞ୍ଚ ମହାଭୂତ ଏହି ୧୬ କଳାରୁ ସଙ୍ଗୃହୀତ ବିରାଟ ରୂପ ଧାରଣ କଲେ । ବିଷ୍ଣୁ ଯେତେବେଳେ ଯୋଗନିଦ୍ରାରେ ଶୋଇଥିଲେ ତାଙ୍କ ନାଭିରୁ ଗୋଟିଏ ନାଡ଼ିଲଗା ପଦ୍ମ ଫୁଟିଲା ଓ ସେହି ପଦ୍ମ ମଧ୍ୟରୁ ବ୍ରହ୍ମା ଜନ୍ମିଲେ । ବିଧାତାଙ୍କର ଅନ୍ୟ ନାମ ଧାତା, ବିଧାତା, ପ୍ରଜାପତି, ବେଧାଃ, ପିତାମହ, ପରମେଷ୍ଠୀ, ପଦ୍ମଯୋନି, ବିଧି, ବିଶ୍ୱସୃକ୍ । ବ୍ରହ୍ମାଙ୍କର ଦଶଜଣ ମାନସପୁତ୍ର—ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ପ୍ରଚେତା, ବଶିଷ୍ଠ, ଭୃଗୁ ଓ ନାରଦ । ପୁରାଣମାନଙ୍କରେ ବ୍ରହ୍ମାଙ୍କୁ ବେଦ-

ମାନଙ୍କର ପ୍ରକଟସ୍ଥିତା ବୋଲଯାଇଛି । ବ୍ରହ୍ମା ମନୁଷ୍ୟର ଜନ୍ମ ପୂର୍ବରୁ ପ୍ରତ୍ୟେକ ବ୍ୟକ୍ତିର ଭାଗ୍ୟ ନିର୍ଣ୍ଣୟ କରନ୍ତି । (ହିନ୍ଦୀ ଶବ୍ଦସାଗର)

**ବ୍ରହ୍ମକୁଣ୍ଡ**—ଯାଜପୁରରେ ଥିବା ଯଜ୍ଞକୁଣ୍ଡ । ଯାଜପୁରରେ ବ୍ରହ୍ମା ଯେଉଁଠାରେ ଯଜ୍ଞ କରିବା ପାଇଁ କୁଣ୍ଡ ଖୋଲାଇଥିଲେ ସେଥିରୁ ବିରଜାଦେବୀ ବାହାରି-ଥିଲେ । (ବିରଜାମୃତ-ନୀଳମଣି, ଭାଷାକୋଷ)

**ବ୍ରହ୍ମାଣ୍ଡ**—ବ୍ରହ୍ମାଙ୍କ ସୃଷ୍ଟି ବିଶ୍ୱ ଗୋଲକ । ମନୁରେ ଲେଖାଅଛି ଯେ ସ୍ୱୟଂ ଭଗବାନ ପ୍ରଜାସୃଷ୍ଟି କରିବା ପାଇଁ ଇଚ୍ଛା ପ୍ରକାଶ କରି ପ୍ରଥମେ ଜଳର ସୃଷ୍ଟି କଲେ ଓ ତହିଁରେ ବୀଜ ବୁଣିବାରୁ ସୂର୍ଯ୍ୟଙ୍କ ପରି ତେଜୋମୟ ଗୋଟିଏ ସ୍ୱର୍ଣ୍ଣାଭ ଅଣ୍ଡ ଉତ୍ପନ୍ନ ହେଲା । ସେହି ଅଣ୍ଡ ବା ଗୋଲକରୁ ବ୍ରହ୍ମା ଜନ୍ମିଲେ । ବ୍ରହ୍ମା ଉକ୍ତ ଅଣ୍ଡ ମଧ୍ୟରେ ଏକ ବର୍ଷ ବାସ କରି ତାକୁ ଦୁଇଫାଳ କଲେ । ଊର୍ଦ୍ଧ୍ୱ ଖଣ୍ଡରେ ସ୍ୱର୍ଗାଦିଲୋକ ଓ ଅଧୋଖଣ୍ଡରେ ପୃଥିବୀ ଆଦିକୁ ରଚନା କଲେ । ଏଥିପାଇଁ ବିଶ୍ୱ ଗୋଲକକୁ ବ୍ରହ୍ମାଣ୍ଡ ବୋଲଯାଏ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ବ୍ରହ୍ମାବର୍ତ୍ତ**—କୁରୁକ୍ଷେତ୍ର ନିକଟସ୍ଥ ଦୃଷଦ୍‌ବତୀ ଓ ସରସ୍ୱତୀ ନଦୀ ମଧ୍ୟବର୍ତ୍ତୀ ପ୍ରାଚୀନ ଦେଶ । ମନୁରେ ଏହି ଅଞ୍ଚଳ ପରମ୍ପରାଗତ ଆଚାରକୁ ସବୁଠାରୁ ଶ୍ରେଷ୍ଠ ସଦାଚାର ବୋଲି ବୋଲଯାଏ । (ଭାଷାକୋଷ)

**ବ୍ରାହ୍ମଣ**—ବ୍ରାହ୍ମଣଜାତିର ଉତ୍ପତ୍ତି ବୈଦିକ ଯୁଗରୁ ହୋଇଛି । ବେଦରୁ ପ୍ରମାଣ ମିଳେ ଯେ ସେ ଯୁଗରେ ଗୁଣ କର୍ମ ବିଭାଗ ଅନୁସାରେ ବ୍ରାହ୍ମଣାଦି ଜାତିର ଉତ୍ପତ୍ତି ହୋଇଥିଲା । କାଳକ୍ରମେ ସେହି ଜାତିବିଭାଗ ବଂଶାନୁକ୍ରମରେ ଚାଲିଲା । ଅର୍ଥାତ୍ ବ୍ରାହ୍ମଣର ପୁତ୍ର ବ୍ରହ୍ମଜ୍ଞ ନ ହେଲେହେଁ ବ୍ରାହ୍ମଣ ବୋଲି ପରିଚିତ ହେଉଅଛି । ଶାସ୍ତ୍ରାନୁସାରେ ବ୍ରାହ୍ମଣର ଭିନ୍ନ ନାମର ଉତ୍ପତ୍ତି ଏହିପରି । ଯଥା—ଜନ୍ମନାଜାୟତେ ଶୂଦ୍ରଃ, ସଂସ୍କାରେ ଦ୍ୱିଜମୁଚ୍ୟତେ, ବେଦାଭ୍ୟାସୀ ଭବେଦ୍ ବିପ୍ରଃ, ବ୍ରହ୍ମ ଜାନାତି ବ୍ରାହ୍ମଣଃ । ଅର୍ଥାତ୍ ପ୍ରଥମେ ଲୋକ ଶୂଦ୍ରରୂପେ ଜନ୍ମଗ୍ରହଣ କରେ, ଉପନୟନ ସଂସ୍କାର ପରେ ସେ ଦ୍ୱିଜ ବୋଲାଏ; ବେଦ ପାଠ କଲେ ତାହାର ନାମ ବିପ୍ର ହୁଏ । ବିପ୍ର ବ୍ରହ୍ମକୁ ଚିହ୍ନିଲେ ଅର୍ଥାତ୍ ବିପ୍ରର ବ୍ରହ୍ମଜ୍ଞାନ ଜନ୍ମିଲେ ସେ ବ୍ରାହ୍ମଣ ହୁଏ ।

ବ୍ରାହ୍ମଣର ଦଶବିଧ ସଂସ୍କାର—(୧) ଗର୍ଭାଧାନ—ବିବାହ ପରେ ପରିଣୀତା ପତ୍ନୀଙ୍କ ସହବାସ କରି ଗର୍ଭସଞ୍ଚାର କରାଇବା ନିମନ୍ତେ ବେଦବିହିତ

ଅନୁଷ୍ଠାନ । (୨) ପୁଂସବନ—ଗର୍ଭର ତୃତୀୟ ମାସରେ ଗର୍ଭସ୍ପନ୍ଦନ ସମୟରେ ଅନୁଷ୍ଠେୟ ଆଚାର । (୩) ସୀମନ୍ତୋନ୍ନୟନ—ଗର୍ଭର ଚତୁର୍ଥ, ଷଷ୍ଠ ବା ଅଷ୍ଟମ ମାସରେ ଅନୁଷ୍ଠେୟ ଆଚାର । (୪) ଜାତକର୍ମ—ସନ୍ତାନ ଭୂମିଷ୍ଠ ହେଲେ ଜନକଙ୍କ ଅନୁଷ୍ଠେୟ ଆଚାର । (୫) ନାମକରଣ—ଜନ୍ମର ଛଅମାସ ପରେ ସନ୍ତାନର ନାମ ଦେବା ଆଚାର । (୬) ଅନ୍ନପ୍ରାଶନ ପ୍ରଥମ ବର୍ଷ ହେବା ପରେ ସନ୍ତାନକୁ ପ୍ରଥମେ ଅନ୍ନ ଖୁଆଇବା ଆଚାର । (୭) ଚୂଡ଼ାକରଣ – ତୃତୀୟ ବର୍ଷ ପରେ ସନ୍ତାନର ମସ୍ତକ ମୁଣ୍ଡନ କରି ସ୍ଥଳ ବିଶେଷରେ କେଶଗୁଚ୍ଛ ରକ୍ଷାକରି ତଦ୍ଦ୍ୱାରା ଶିଖାବନ୍ଧନ କରିବା ଆଚାର । ଏହି ଉପଲକ୍ଷରେ କର୍ଣ୍ଣବେଧ ଓ ବିଦ୍ୟାରମ୍ଭ କରାଯାଏ । (୮) ଉପନୟନ—ଯାଗାଦିକର୍ମ ପୂର୍ବକ ସନ୍ତାନକୁ ଯଜ୍ଞୋପବୀତ ପିନ୍ଧାଇବା ରୂପ ସଂସ୍କାର । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ଏହି ସଂସ୍କାରକୁ ପୁନର୍ଜନ୍ମ ବୋଲଯାଏ । ଉପନୟନ ହେବାରୁ ଏମାନଙ୍କର ଅନ୍ୟ ନାମ ଦ୍ୱିଜ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ଉପନୟନ ନିମନ୍ତେ ଭିନ୍ନ ଭିନ୍ନ ବୟସ ନିର୍ଦ୍ଦିଷ୍ଟ ଅଛି । ଉପନୟନ ନ ହେବା ପର୍ଯ୍ୟନ୍ତ ଦ୍ୱିଜ ସନ୍ତାନ ଶୂଦ୍ର ବୋଲି ବିବେଚିତ ହୁଏ ଓ ସଂସ୍କାର ହେଲେ ତାକୁ ଦ୍ୱିଜ ବୋଲଯାଏ । ଏହି ସଂସ୍କାରହିଁ ଦ୍ୱିଜର ପ୍ରଧାନ ସଂସ୍କାର । ଉପନୟନ କର୍ମ ପରେ ବ୍ରାହ୍ମଣ ସନ୍ତାନ ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ ଗୁରୁ ଗୃହରେ ବାସକରି ବେଦାଧ୍ୟୟନ କରିବ, ଏପରି ବିଧି ଅଛି । (୯) ସମାବର୍ତ୍ତନ—ଗୁରୁ ଗୃହରେ ବେଦାଧ୍ୟୟନ ସମାପନ କରି ଗୁରୁଙ୍କ ଆଦେଶରେ ବିବାହ ନିମନ୍ତେ ଗୃହକୁ ଫେରି ଆସିବା ସମୟରେ ଅନୁଷ୍ଠେୟ ଆଚାର । ଏହିଠାରୁ ବ୍ରହ୍ମଚର୍ଯ୍ୟାଶ୍ରମ ସମାପ୍ତ ହୁଏ । ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଆଜିକାଲି କଲେଜମାନଙ୍କର ଯେଉଁ କନ୍‌ଭୋକେସନ୍ ହୁଏ ତାହା ପ୍ରକୃତ ସମାବର୍ତ୍ତନ ଉତ୍ସବ ନୁହେଁ । (୧୦) ବିବାହ – ବେଦ-ବିହିତ ମନ୍ତ୍ରାଦି ଅନୁଷ୍ଠାନ ପୂର୍ବକ ଧର୍ମପତ୍ନୀ ଗ୍ରହଣରୂପ ଆଚାର ଓ ଗୃହସ୍ଥା-ଶ୍ରମରେ ପ୍ରବେଶ । ବର୍ତ୍ତମାନ ଏହିସବୁ ସଂସ୍କାର ବା ଦଶକର୍ମ ନାମ ମାତ୍ର ଅନୁଷ୍ଠିତ ହେଉଅଛି ଓ ଉପନୟନବେଳେ ଏକାବେଳେକେ ଏହି ଦଶକର୍ମର ଅଭିନୟ ମାତ୍ର କରାଯାଉଅଛି । ଲୋକେ କହନ୍ତି ଯେ 'ଦଶକର୍ମରେ ବ୍ରତ ହେଲା' କିନ୍ତୁ ଫଳତଃ ନବମକର୍ମ ସମାବର୍ତ୍ତନର ଓ ଦଶମକର୍ମ ବା ବିବାହର ସେ ପର୍ଯ୍ୟନ୍ତ ସମୟ ହୋଇ ନ ଥାଏ । ଦ୍ୱିଜମାନଙ୍କର ଚାରିଗୋଟି ଆଶ୍ରମ ନିର୍ଦ୍ଦିଷ୍ଟ ଅଛି । ଯଥା—(୧) ବ୍ରହ୍ମଚର୍ଯ୍ୟ—ଉପନୟନ ପରେ ବିବାହହେବା ପର୍ଯ୍ୟନ୍ତ ଗୁରୁଗୃହରେ ବାସକରି ସଂଯମ ଓ ବ୍ରହ୍ମଚର୍ଯ୍ୟ ରକ୍ଷାପୂର୍ବକ ବେଦା-ଭ୍ୟାସ ଓ ଗୁରୁସେବା । (୨) ଗାର୍ହସ୍ଥ୍ୟ—ବିବାହପୂର୍ବକ ଗୃହସ୍ଥର ଆଚାର ଓ କର୍ତ୍ତବ୍ୟ ବ୍ରତପାଳନ । (୩) ବାନପ୍ରସ୍ଥ—ସନ୍ତାନ ଆଦି ଲାଭକରିବା ପରେ

ଗୃହତ୍ୟାଗ କରି ତପଃ ସାଧନାର୍ଥ ଅରଣ୍ୟକୁ ଯିବା ଓ ସେଠାରେ ଫଳମୂଳ ଖାଇ ରହିବା । (୪) ସନ୍ନ୍ୟାସ ବା ଭିକ୍ଷୁ ବ୍ରତ—କେତେକ କାଳ ବାନପ୍ରସ୍ଥ ଅବଲମ୍ବନ କରି ଅତି ବୃଦ୍ଧ ହେଲେ ଜନପଦମାନଙ୍କରେ ଗୃହସ୍ଥମାନଙ୍କ ନିକଟରେ ଭିକ୍ଷା କରି ଜୀବନଧାରଣ ।

ଏହି ଆଶ୍ରମମାନ ଅବଲମ୍ବନ କରିବାର ନିର୍ଦ୍ଦିଷ୍ଟ ବୟସମାନ ଅଛି । ବର୍ତ୍ତମାନ ବ୍ରାହ୍ମଣର ଏ ଆଶ୍ରମମାନ କାର୍ଯ୍ୟତଃ ପାଳନ ହେଉନାହିଁ । ଉପନୟନର ପରଦିନ (କହିଲେ ଚଳେ) ବିବାହ କରି ଗୃହସ୍ଥ ହୋଇ ଶେଷଜୀବନ ପର୍ଯ୍ୟନ୍ତ ସେହି ଗୃହସ୍ଥାଶ୍ରମରେ ଘାଣ୍ଟି ହୋଇ ବ୍ରାହ୍ମଣମାନେ ଜୀବନ ଅତିବାହିତ କରୁଅଛନ୍ତି । ବ୍ରାହ୍ମଣର ଶାସ୍ତ୍ର ନିରୂପିତ କର୍ତ୍ତବ୍ୟ ତିନିଗୋଟି । ଯଥା—ଅଧ୍ୟୟନ, ଯଜନ ଓ ଦାନ । ବ୍ରାହ୍ମଣର ଶାସ୍ତ୍ର ନିରୂପିତ ଜୀବିକା ତିନିଗୋଟି, ଯଥା—ଅଧ୍ୟାପନ, ଯାଜନ ଓ ପ୍ରତିଗ୍ରହ । ବ୍ରାହ୍ମଣର ନିତ୍ୟକର୍ତ୍ତବ୍ୟ ସ୍ୱଧର୍ମ, ଯଥା—ତ୍ରିସନ୍ଧ୍ୟାରେ ଧ୍ୟାନ, ଆରାଧନା ଓ ହରିଙ୍କୁ ଅର୍ପିତ ନୈବେଦ୍ୟ ଗ୍ରହଣ । ବ୍ରାହ୍ମଣର ଲକ୍ଷଣ ଯଥା—ଯୋଗ, ତପସ୍ୟା, ଦାନ, ବ୍ରତ, ଦମ ବା ଇନ୍ଦ୍ରିୟସଂଯମ, ଶୌଚ, କ୍ଷମା, ସରଳତା, ଅହିଂସା, ଦୟା, ବିଦ୍ୟା, ବିଜ୍ଞାନ, ଆସ୍ତିକତା, ସତ୍ୟବାଦିତା । ବ୍ରାହ୍ମଣର ପ୍ରଧାନ ମନ୍ତ୍ର—ଓଁକାର ଓ ଗାୟତ୍ରୀ ।

ପୁରାଣମାନଙ୍କରେ (ଯଥା—ଅଗ୍ନି, ପଦ୍ମ, ବ୍ରହ୍ମବୈବର୍ତ୍ତ ଆଦିରେ) ବ୍ରାହ୍ମଣମାନଙ୍କର କର୍ତ୍ତବ୍ୟ, ନିତ୍ୟକ୍ରିୟା, ଆଚରଣ, ଲକ୍ଷଣ ଆଦି ବିଶେଷରୂପେ ବର୍ଣ୍ଣିତ ହୋଇଅଛି । ତନ୍ମଧ୍ୟରେ ପ୍ରଧାନ କଥା ବେଦାଧ୍ୟୟନ, ତ୍ରିସନ୍ଧ୍ୟାରେ ବ୍ରହ୍ମ ଉପାସନା ଓ ଯଜ୍ଞ ସାଧନ । ପାଶ୍ଚାତ୍ୟ ସଭ୍ୟତା ପ୍ରଭାବରେ ଦେଶର ପ୍ରାଚୀନ ରୀତିନୀତିର ପରିବର୍ତ୍ତନ ସଙ୍ଗେ ବ୍ରାହ୍ମଣଙ୍କ କ୍ରିୟାକଳାପର ଏକପ୍ରକାର ଲୋପ ଘଟିଅଛି ଓ ବ୍ରାହ୍ମଣମାନେ ଅନ୍ୟଜାତିମାନଙ୍କର ଏପରିକି ଶୂଦ୍ରର କ୍ରିୟା କରିବାକୁ ମଧ୍ୟ ବାଧ୍ୟ ହେଉଅଛନ୍ତି । ପୁରାଣକାରମାନେ ସଦ୍‌ଲକ୍ଷଣସମ୍ପନ୍ନ ଓ ସଦାଚାରରତ ବ୍ରାହ୍ମଣଙ୍କୁ ବିଷ୍ଣୁଙ୍କ ସଙ୍ଗେ ତୁଳନା କରିଅଛନ୍ତି ଓ ନିନ୍ଦିତ କର୍ମକାରୀ ଆଚାରରହିତ ବିପ୍ରଙ୍କୁ ବିଷହୀନ ସର୍ପ ଓ ଶୂଦ୍ର ସଙ୍ଗେ ତୁଳନା କରିଅଛନ୍ତି । କେଉଁ ବ୍ରାହ୍ମଣମାନେ ଶୂଦ୍ର ବୋଲି ବିବେଚିତ ହେବେ ତାହା ବ୍ରହ୍ମବୈବର୍ତ୍ତ ପୁରାଣରେ ଉକ୍ତଅଛି ଓ ତାହା ଦେଖିଲେ ଆଜିକାଲି ସମାଜରେ ବ୍ରାହ୍ମଣରୂପେ ପଇତା ପକାଇଥିବା ବ୍ରାହ୍ମଣମାନେ ପ୍ରକୃତରେ ବ୍ରାହ୍ମଣ ପଦବାଚ୍ୟ ନୁହନ୍ତି ବୋଲି ଜଣାପଡ଼ିବ । ପୁରାଣମତରେ ବ୍ରାହ୍ମଣର ବାହ୍ୟଚିହ୍ନ

ଯଥା—ଗଳଦେଶରେ ଯଜ୍ଞସୂତ୍ର ଧାରଣ, ସର୍ବଦା ନିର୍ମଳ ଉତ୍ତରୀୟ ଓ ଧୌତ ଅଧୋବସ୍ତ୍ର ପରିଧାନ, ଲଲାଟରେ ତିଳକ, ହସ୍ତରେ କୁଶାଙ୍ଗୁଳୀୟ, କଟୀଦେଶରେ କୁଶମୟୀ ମେଖଳା ଓ ମସ୍ତକରେ ଗ୍ରନ୍ଥିବଦ୍ଧ ଶିଖାଧାରଣ ।

ପୁରାଣମତରେ ନିମ୍ନୋକ୍ତ ବ୍ରାହ୍ମଣମାନେ ନିନ୍ଦିତ ବ୍ରାହ୍ମଣ ଯଥା— ବିଷ୍ଣୁମନ୍ତ୍ରବର୍ଜିତ, ତ୍ରିସନ୍ଧ୍ୟାରହିତ, ଏକାଦଶୀବର୍ଜିତ, ବୃଷବାହକ (ଶଗଡ଼ିଆ ବା ହଳିଆ) ଧାବକ (ପତ୍ରବାହକ ବା ପିଆଦା) ଶୂଦ୍ରାନ୍ନଭୋଜୀ (ଶୂଦ୍ରଙ୍କ ଭୃତ୍ୟ ଓ ଶୂଦ୍ରଠାରୁ ଦାନଗ୍ରାହୀ) ଶୂଦ୍ରମାନଙ୍କ ସୂପକାର (ପାଚକ), ଶୂଦ୍ରମାନଙ୍କର ଯାଜକ (ପୁରୋହିତ), ଶୂଦ୍ରପତି, ଅସିଜୀବୀ (ପଲ୍ଟଣ ବା ପୁଲିସ ସିପାହୀ), ମସୀଜୀବୀ (କିରାଣି) କନ୍ୟା ବିକ୍ରୟୀ, ହରିନାମ ବିକ୍ରୟୀ, ବିଦ୍ୟା ବିକ୍ରୟୀ, ସକାଳଠାରୁ ସନ୍ଧ୍ୟା ମଧ୍ୟରେ ଦୁଇଥର ଭୋଜନକାରୀ, ମତ୍ସ୍ୟମାଂସ-ଭୋଜୀ, ଦେବପୂଜା ରହିତ ।

ପୁରାଣମାନଙ୍କରେ ଏହା ମଧ୍ୟ ଦେଖାଯାଏ ଯେ କେହି ଜନ୍ମତଃ ଶୂଦ୍ର ତପସ୍ୟା ଦ୍ୱାରା ବ୍ରାହ୍ମଣ ହୋଇଅଛନ୍ତି ଓ ବ୍ରାହ୍ମଣ ଭ୍ରଷ୍ଟାଚାରୀ ହୋଇ ଶୂଦ୍ରତ୍ୱ ଲାଭ କରିଅଛନ୍ତି । ବ୍ରାହ୍ମଣମାନଙ୍କର ଦେଶବିଶେଷରେ ଭିନ୍ନ ଭିନ୍ନ ଶ୍ରେଣୀ ଅଛି । ଯଥା—ଓଡ଼ିଶାବାସୀ—(୧) ଶୋତ୍ରିୟ, (୨) ମଠିଆପଣ୍ଡା, ଦେଉଳିଆ, (୩) ମାସ୍ତାନ ବା ବଳଭଦ୍ରଗୋତ୍ରୀ, (ହାଲୁଆ, ଆଠଗଡ଼ିଆ । ଗଞ୍ଜାମବାସୀ—(୧) ଶାସନୀ ବା ଦାନୁଆ, (୨) ପଣ୍ଡା (୩) ହଳୁଆ (୪) ପନିଅରି, ହାଲୁଆ (୫) ଭଦ୍ରୀ । ସମ୍ବଲପୁରବାସୀ—(୧) ଓଡ଼ିଆ, (୨) ଝାଡ଼ୁଆ, (୩) ରଘୁନାଥିଆ । (ଭାଷାକୋଷ)

**ବ୍ରାହ୍ମଦିବସ**—ବ୍ରହ୍ମାଙ୍କର ଏକ ଦିନ ଓ ଏକ ରାତ୍ରହୁଏ । ମନୁଷ୍ୟଙ୍କ ଗଣନାରେ ୧୦୯୧୦୬୦୦୦୦୦ ବର୍ଷ (୧୦ ବୃନ୍ଦ, ୧୧ କୋଟି, ଛଅଲକ୍ଷ ବର୍ଷ) ବ୍ୟାପୀ ଦିବସ ଓ ଏତିକି ବର୍ଷ ବ୍ୟାପୀ ରାତ୍ରି । ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ବ୍ରହ୍ମାଦିନଯାକ ସୃଷ୍ଟି କାର୍ଯ୍ୟରେ ଲାଗନ୍ତି ଓ ରାତିରେ ଶୁଅନ୍ତି । ସେ ଶୋଇଲେ କଳ୍ପାନ୍ତ ପ୍ରଳୟ ଘଟେ ଓ ସେ ସକାଳୁ ଉଠି ପୁଣି ନୂତନ ସୃଷ୍ଟି ଆରମ୍ଭ କରନ୍ତି; ତାଙ୍କର ଗଣନା କାଳ ଓ ମନୁଷ୍ୟମାନଙ୍କ କାଳଗଣନା ସମାନ ନୁହେ । ମନୁଷ୍ୟମାନଙ୍କ କାଳଗଣନା କ୍ରମେ—ସତ୍ୟଯୁଗ—୧୭୨୮,୦୦୦ ବର୍ଷ; ତ୍ରେତାଯୁଗ—୧୨୯୬,୦୦୦ ବର୍ଷ, ଦ୍ୱାପରଯୁଗ—୮୬୪,୦୦୦ ବର୍ଷ କଳିଯୁଗ—୪୩୨,୦୦୦ ବର୍ଷ । ଏହିପରି ମନୁଷ୍ୟର ୪ଟି ଯୁଗରେ

ଦେବତାଙ୍କର ଏକଦିନ ହୁଏ । ଏହି ଗଣନା ଅନୁସାରେ ଦେବତାଙ୍କର ୧୦୦୦ ଯୁଗ = ୨୪୦୦୦ ବର୍ଷ ହେଲେ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ, ଓ ୨୪୦୦୦ ବର୍ଷ ହେଲେ ବ୍ରହ୍ମାଙ୍କର ଗୋଟିଏ ରାତି ହୁଏ । (ଭାଷାକୋଷ)





**ଭଗଦତ୍ତ**—ପ୍ରାଗ୍ ଜ୍ୟୋତିଷପୁରର ରାଜା । ନରକରାଜାଙ୍କର ଜ୍ୟେଷ୍ଠ ପୁତ୍ର । ଶ୍ରୀକୃଷ୍ଣ ନରକଙ୍କୁ ନିହତ କରି ତାଙ୍କ ପୁତ୍ର ଭଗଦତ୍ତଙ୍କୁ ରାଜସିଂହାସନ ପ୍ରଦାନ କରିଥିଲେ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସମୟରେ ଭଗଦତ୍ତ ୮ ଦିନ ଯୁଦ୍ଧ କରିବା ପରେ ଅର୍ଜୁନଙ୍କ ଦ୍ୱାରା ପରାଜିତ ହୋଇ ଧର୍ମରାଜଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ଭାରତ ଯୁଦ୍ଧରେ ଭଗଦତ୍ତ କୌରବ ପକ୍ଷ ଅବଲମ୍ବନ କରି ଘୋର ଯୁଦ୍ଧ କରିଥିଲେ । କୌରବ ପକ୍ଷୀୟ ବୀରମାନଙ୍କ ମଧ୍ୟରେ ଏ ଅତି ଖ୍ୟାତିସଂପନ୍ନ ଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଯୁଧିଷ୍ଠିର, ଭୀମ, ଅର୍ଜୁନ, ଘଟୋତ୍କଚ, ଅଭିମନ୍ୟୁ, ବିରାଟ ଓ ସାତ୍ୟକି ପ୍ରଭୃତିଙ୍କ ସହିତ ଏହାଙ୍କର ଅସାଧାରଣ ଯୁଦ୍ଧ ହୋଇଥିଲା । ଦ୍ରୋଣଙ୍କ ସେନାପତିତ୍ୱ ସମୟରେ ଭଗଦତ୍ତ ଅର୍ଜୁନଙ୍କ ସଙ୍ଗେ ସଂଗ୍ରାମ କରି ନିହତ ହେଲେ । ଭଗଦତ୍ତ ଅର୍ଜୁନଙ୍କୁ ବଧ କରିବା ପାଇଁ ବୈଷ୍ଣବାସ୍ତ୍ର ନିକ୍ଷେପ କରନ୍ତେ ଶ୍ରୀକୃଷ୍ଣ ଏହି ଅସ୍ତ୍ରକୁ ନିଜ ବକ୍ଷ-ସ୍ଥଳରେ ଧାରଣ କରି ନେଇଥିଲେ । (ମହାଭାରତ ସଭା ଓ ଦ୍ରୋଣପର୍ବ)

**ଭଗବଦ୍‌ଗୀତା**—କୁରୁକ୍ଷେତ୍ର ଯୁଦ୍ଧ କ୍ଷେତ୍ରରେ ଯୁଦ୍ଧାର୍ଥି ଉପସ୍ଥିତ ଅର୍ଜୁନ ଓ ତାଙ୍କ ସାରଥୀ ଶ୍ରୀକୃଷ୍ଣଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ଛଳରେ ଜ୍ଞାନଯୋଗ, ଭକ୍ତିଯୋଗ ଓ କର୍ମଯୋଗ ସମ୍ବନ୍ଧୀୟ ପାରମାର୍ଥିକ ତତ୍ତ୍ୱ ଉପଦେଶ । ଏହା ମହାଭାରତର ଭୀଷ୍ମ ପର୍ବର ଅନ୍ତର୍ଗତ । ଏହା ଉପନିଷଦ୍ ବା ବେଦାନ୍ତର ସାରାଂଶ । ଅର୍ଜୁନ ସମରପ୍ରାଙ୍ଗଣରେ ଅପର ପକ୍ଷରେ ଯୁଦ୍ଧାର୍ଥି ସଜ୍ଜିତ ଆପଣାର ଭାଇ ବନ୍ଧୁ କୁଟୁମ୍ବଙ୍କୁ ଦେଖି ରାଜ୍ୟଲାଭାର୍ଥ ଏହିମାନଙ୍କୁ ହତ୍ୟା କରିବାକୁ ଉଦ୍ୟତ

ହୋଇଅଛନ୍ତି ଏହା ଭାବ ଯୁଦ୍ଧ କରିବେ ନାହିଁ ବୋଲି ଅସ୍ତ୍ର ତ୍ୟାଗକରି ବସିଲେ। ଅର୍ଜୁନଙ୍କର ସାରଥି ଶ୍ରୀକୃଷ୍ଣ ସେହିଠାରେ ଅର୍ଜୁନଙ୍କୁ ଉପଦେଶ ପ୍ରଦାନପୂର୍ବକ ଅର୍ଜୁନଙ୍କ ମୋହ ଦୂର କରି କର୍ତ୍ତବ୍ୟ ସାଧନାର୍ଥ ନିର୍ଲିପ୍ତ ଭାବରେ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଇ ଥିଲେ । ଏଥିର ଶେଷ ସିଦ୍ଧାନ୍ତ ଏହି କି ମନୁଷ୍ୟ ନିଜର କର୍ତ୍ତବ୍ୟ ସାଧନ ନିମନ୍ତେ ନିର୍ଲିପ୍ତ ଭାବରେ ସଂସାରର କର୍ମକ୍ଷେତ୍ରରେ କର୍ମ ସାଧନ କରି ନିଜ ଜୀବନକୁ ଚରିତାର୍ଥ କରିବ, ଓ ସମସ୍ତ କର୍ମର ଫଳ ଈଶ୍ୱରଙ୍କଠାରେ ଅର୍ପଣ କରିବ । ଏହି ଗ୍ରନ୍ଥ ଅଠର ଅଧ୍ୟାୟରେ ବିଭକ୍ତ ଓ ପ୍ରତ୍ୟେକ ଅଧ୍ୟାୟ ଗୋଟିଏ ଲେଖାଏଁ ଯୋଗ ବୋଲି ଅଭିହିତ ହୋଇଅଛି । ହିନ୍ଦୁ ଧର୍ମର ସମସ୍ତ ଜ୍ଞାତବ୍ୟ ବିଷୟ ଏହି ୧୮ ଅଧ୍ୟାୟରେ ସଂକ୍ଷିପ୍ତ ଓ ପ୍ରାଞ୍ଜଳ ଭାବରେ ସନ୍ନିବେଶିତ ହୋଇଅଛି ଓ ଏହା ବ୍ରହ୍ମବିଦ୍ୟା ବା ଯୋଗଶାସ୍ତ୍ର ।

୧ମ ଅଧ୍ୟାୟ ଅର୍ଜୁନ ବିଷାଦଯୋଗ, ୨ୟ ସାଂଖ୍ୟଯୋଗ, ୩ୟ କର୍ମ-ଯୋଗ, ୪ର୍ଥ କର୍ମ ବ୍ରହ୍ମାର୍ପଣଯୋଗ, ୫ମ କର୍ମ ସନ୍ୟାସଯୋଗ, ୬ଷ୍ଠ ଆତ୍ମସଂଯମଯୋଗ, ୭ମ ଜ୍ଞାନବିଜ୍ଞାନଯୋଗ, ୮ମ ଅକ୍ଷରବ୍ରହ୍ମଯୋଗ, ୯ମ ରାଜବିଦ୍ୟା ରାଜଗୁହ୍ୟଯୋଗ, ୧୦ମ ବିଭୂତିଯୋଗ, ୧୧ଶ ବିଶ୍ୱରୂପ ଦର୍ଶନଯୋଗ, ୧୨ଶ ଭକ୍ତିଯୋଗ, ୧୩ଶ କ୍ଷେତ୍ର କ୍ଷେତ୍ରଜ୍ଞଯୋଗ, ୧୪ଶ ଗୁଣତ୍ରୟ ବିଭାଗଯୋଗ, ୧୫ଶ ପୁରୁଷୋତ୍ତମଯୋଗ, ୧୬ଶ ଦୈବାସୁର ସମ୍ପଦ୍ ବିଭାଗ ଯୋଗ, ୧୭ଶ ଶ୍ରଦ୍ଧାତ୍ରୟ ବିଭାଗଯୋଗ, ୧୮ଶ ସନ୍ୟାସ ବା ମୋକ୍ଷଯୋଗ ।

ହିନ୍ଦୁଧର୍ମ ଗ୍ରନ୍ଥମାନଙ୍କ ମଧ୍ୟରୁ ଆଧୁନିକ ଶିକ୍ଷିତମାନଙ୍କ ମଧ୍ୟରେ ଏ ଗ୍ରନ୍ଥ ପରି ଅନ୍ୟ କୌଣସି ଗ୍ରନ୍ଥ ଏତେ ଆଦୃତ ନୁହେଁ । ଏ ଗ୍ରନ୍ଥକୁ ମୁସଲମାନ ଓ ଖ୍ରୀଷ୍ଟିୟାନମାନେ ମଧ୍ୟ ଆଦର କରନ୍ତି ଏବଂ ୟୁରୋପ ଆମେରିକା ଆଦି ଦେଶରେ ମଧ୍ୟ ଏହି ଗ୍ରନ୍ଥର ସହସ୍ର ସହସ୍ର ଭକ୍ତ ଅଛନ୍ତି । ଯେଉଁମାନେ ହିନ୍ଦୁ ନୁହନ୍ତି ସେମାନେ ମଧ୍ୟ ଏଥିର କେତେଗୁଡ଼ିଏ ସାର ଉପଦେଶକୁ ନିଜ ଜୀବନର ଅଙ୍ଗୀଭୂତ କରିଅଛନ୍ତି । (ଭାଷାକୋଷ)

**ଭଗୀରଥ**—ଦିଲୀପଙ୍କ ପୁତ୍ର ମହାରାଜା ଅଂଶୁମାନଙ୍କ ନାତି (ଅଂଶୁମାନ ଦେଖ) । ମହାରାଜ ଦିଲୀପ ଭଗୀରଥଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ତପସ୍ୟା ନିମିତ୍ତ ହିମାଳୟ ଶିଖରକୁ ଗମନ କଲେ । ରାଜ୍ୟଲାଭ ପରେ ଭଗୀରଥ ଭ୍ରମଣ କରୁ କରୁ ନିଜର ପ୍ରପିତାମହମାନେ କପିଳ କୋପାନଳରେ ଭସ୍ମୀଭୂତ ହୋଇଥିବା ଦେଖିଲେ । ସେହିଦିନଠାରୁ କପରି ସ୍ୱର୍ଗରୁ ଗଙ୍ଗା ଆସିଲେ ତାଙ୍କ

ପିତୃମାନେ ପରିତ୍ରାଣ ଲାଭ କରିବେ ଏହା ତାଙ୍କର ଏକ ଚିନ୍ତା ହୋଇଥିଲା । ଭଗୀରଥ ପ୍ରଜାରଞ୍ଜନ ପରାୟଣ ଓ ଧର୍ମାତ୍ମାଥିଲେ କିନ୍ତୁ ଦୁର୍ଭାଗ୍ୟବଶତଃ ତାଙ୍କର ପୁତ୍ର ସନ୍ତାନଟିଏ ହେଲାନାହିଁ । ସେ ମନ୍ତ୍ରୀମାନଙ୍କ ଉପରେ ରାଜ୍ୟ ସମର୍ପଣ କରି ଗଙ୍ଗା ଆନୟନ ଉଦ୍ଦେଶ୍ୟରେ ବାହାରିଲେ । ସେ ହିମାଳୟ ଅନ୍ତର୍ଗତ ଗୋକର୍ଣ୍ଣ ତୀର୍ଥକୁ ଯାଇ ଊର୍ଦ୍ଧ୍ବବାହୁ ହୋଇ କଠୋର ତପସ୍ୟାଚରଣ କଲେ । କମଳାସନ ବ୍ରହ୍ମା ଭଗୀରଥଙ୍କ ଏକ ସହସ୍ର ବର୍ଷ ବ୍ୟାପୀ ତପସ୍ୟାରେ ପ୍ରୀତ ହୋଇ ତାଙ୍କୁ ବର ଯାଚିଲେ । ଭଗୀରଥ ନିମ୍ନୋକ୍ତ ଦୁଇଟି ବର ପ୍ରାର୍ଥନା କଲେ—(୧) କପିଳ କୋପାନଳରେ ଭସ୍ମୀଭୂତ ମୋର ଷଷ୍ଠି ସହସ୍ର ପ୍ରପିତାମହ ଗଙ୍ଗାଜଳରେ ସିକ୍ତ ହୋଇ ସ୍ୱର୍ଗ ଗମନ କରନ୍ତୁ । (୨) ସନ୍ତାନ ଅଭାବରେ ଯେପରି ମୋର ବଂଶ ଲୋପ ନହୁଏ । ବ୍ରହ୍ମା ପ୍ରଥମ ବର ପ୍ରାର୍ଥନାରେ ଉତ୍ତର ଦେଲେ—'ତୁମ୍ଭର ମନସ୍କାମନା ପୂର୍ଣ୍ଣ ହେବ, କିନ୍ତୁ ଗଙ୍ଗାଙ୍କ ପତନବେଗ ପୃଥିବୀ ସହ୍ୟ କରିପାରିବ ନାହିଁ । ମହାଦେବଙ୍କ ବ୍ୟତୀତ ଅନ୍ୟକେହି ଏ କାର୍ଯ୍ୟକରିବାକୁ ସକ୍ଷମ ନୁହନ୍ତି । ତେଣୁ ଯେପରି ଶିବ ଗଙ୍ଗାଧାରଣ କରିବା ପାଇଁ ସମ୍ମତ ହେବେ, ସେଥିଲାଗି ତୁମ୍ଭେ ତପସ୍ୟା କର ।' ଦ୍ୱିତୀୟ ବର ପ୍ରାର୍ଥନାରେ ବ୍ରହ୍ମାଙ୍କର ଉତ୍ତର ମିଳିଲା—'ତୁମ୍ଭର ବଂଶରକ୍ଷା ନିଶ୍ଚୟ ହେବ ।' ତେଣୁ ବ୍ରହ୍ମାଙ୍କ କଥା ଅନୁସାରେ ଭଗୀରଥ କଠୋର ତପସ୍ୟାରେ ନିମଗ୍ନ ହେଲେ । ବର୍ଷେ ପରେ ଦେବଦେବ ମହାଦେବ ତାଙ୍କ ପାଖକୁ ଆସିଲେ ଏବଂ ଅଭିପ୍ରାୟ ଅନୁଯାୟୀ ଗଙ୍ଗାଙ୍କୁ ଧାରଣ କରିବା ନିମିତ୍ତ ସମ୍ମତ ହେଲେ । ଗଙ୍ଗା ମହାବେଗରେ ପ୍ରବାହିତ ହୋଇ ମହାଦେବଙ୍କ ମସ୍ତକରେ ପଡ଼ିଲେ । ଗଙ୍ଗାଙ୍କର ଇଚ୍ଛା ହେଲା ସେ ସେ ତୀବ୍ର ବେଗରେ ପ୍ରବାହିତ ହୋଇ ମହାଦେବଙ୍କ ସହିତ ପାତାଳଗାମିନୀ ହେବେ । ମାତ୍ର ମହାଦେବ ଗଙ୍ଗାଙ୍କର ଏ ଗର୍ବ ଜାଣି ନିଜର ଜଟାମଣ୍ଡଳ ଭିତରେ ଗଙ୍ଗାଙ୍କୁ ହଜାର ବର୍ଷଯାଏ ଧରି ରଖିଲେ । ଗଙ୍ଗା ବହିର୍ଗତ ନ ହେବାରୁ ଭଗୀରଥ ଶିବଙ୍କୁ ପ୍ରାର୍ଥନା କଲେ । ଶିବ ସ୍ତବରେ ତୃପ୍ତ ହୋଇ ଜଟାମଣ୍ଡଳ ମଧ୍ୟରୁ ଗଙ୍ଗାଙ୍କୁ ଛାଡ଼ିଦେଲେ । ଗଙ୍ଗା ଶିବଙ୍କ ମସ୍ତକରୁ ସପ୍ତସ୍ରୋତା ହୋଇ ଭୂତଳରେ ଅବତୀର୍ଣ୍ଣ ହେଲେ । ହ୍ଲାଦିନୀ, ପାବନୀ ଓ ନଳିନୀ ନାମ୍ନୀ ତିନିଗୋଟି ପ୍ରବାହ ପୂର୍ବଦିଗରୁ ପ୍ରସୃତ ହେଲା । ବକ୍ଷୁ, ସୀତା ଓ ସିନ୍ଧୁ ନାମକ ତ୍ରିସ୍ରୋତ ପଶ୍ଚିମଦିଗକୁ ପ୍ରବାହିତ ହେଲା ଏବଂ ଅନ୍ୟ ପ୍ରବାହଟି ଭଗୀରଥଙ୍କ ପ୍ରଦର୍ଶିତ ପଥରେ ଗତିକଲା । ଭଗୀରଥ ପଦବ୍ରଜରେ ଗଙ୍ଗାଙ୍କୁ ଅନୁସରଣ କରିବା ପାଇଁ ଅସମର୍ଥ ହେଲେ । ସେଥିପାଇଁ ସେ ଗୋଟିଏ ରଥରେ ବସି ଆଗେ ଆଗେ ଚାଲିଲେ । ଭଗୀରଥଙ୍କ ଅଭୀଷ୍ଟ ସିଦ୍ଧି ହେଲା । ଭଗୀରଥ ପ୍ରଦର୍ଶିତ ପଥରେ ଆଗତ ଗଙ୍ଗା ସ୍ରୋତଟିର ନାମ

ଭାଗୀରଥୀ ନାମରେ ଖ୍ୟାତ ହେଲ (ଗ୍ରମାୟଣ) । ମହାତ୍ମା ଭଗୀରଥ ଅତ୍ୟନ୍ତ ଦାନଶୀଳ ଥିଲେ । ସେ ପ୍ରତଦନ ବ୍ରାହ୍ମଣଙ୍କୁ ପ୍ରଭୂତ ଅର୍ଥ ଦାନ କରୁଥିଲେ । ମହାରାଜ ଭଗୀରଥଙ୍କ ଭୂଣ ଭୂଣ ଦକ୍ଷିଣା ଦାନ ସମୟରେ ଗଙ୍ଗାଜଳୌଘ ଆକ୍ରମଣରେ ବ୍ୟଥିତହୋଇ ଭଗୀରଥଙ୍କ କୋଳରେ ଉପବେଶନ କରିଥିଲେ । ସେହିଦନଠାରୁ ଗଙ୍ଗା ଭଗୀରଥଙ୍କ ଦୁହିତା ହେବାରୁ ତାଙ୍କର ଅନ୍ୟ ନାମ ଭାଗୀରଥୀ ହୋଇଥିଲା । ସେ ପୂର୍ବରୁ ଭଗୀରଥଙ୍କ ପୂର୍ବପୁରୁଷମାନଙ୍କୁ ଉଦ୍ଧାର କରିଥିଲେ । ଗଙ୍ଗା ଯେଉଁଠାରେ ଭଗୀରଥଙ୍କ ଊରୁଦେଶରେ ଅବସ୍ଥାନ କରିଥିଲେ ସେହିସ୍ଥାନର ନାମ ଉର୍ବଶୀ ତୀର୍ଥ (ମହାଭାରତ ଦ୍ରୋଣପର୍ବ) । ଉତ୍କଳ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ ବୈଦେହୀଶବିଳାସ ନାମକ କାବ୍ୟରେ ଲେଖାଅଛି—'ବନ୍ଧୁ ନଖକୋଣେ ଏ ଥିଲା । ବାମନାବତାରେ ଭଗୀରଥ ଆଣିଲା ।'

**ଭଗ୍ନାତ୍ମା**—ଚନ୍ଦ୍ରଙ୍କ ନାମାନ୍ତର । ଗୁରୁପତ୍ନୀ ହରଣ କରିଥିବାରୁ ଶିବ ଏହାଙ୍କୁ ତ୍ରିଶୂଳ ଦ୍ୱାରା ଦ୍ୱିଖଣ୍ଡିତ କରିଥିଲେ । (ଭାଷାକୋଷ)

**ଭଦ୍ରତୁଙ୍ଗ**—ମହାଭାରତୋକ୍ତ ହିନ୍ଦୁ ତୀର୍ଥ ବିଶେଷ । ମହାଭାରତର ବନପର୍ବରେ ରାଜକବି କୃଷ୍ଣସିଂହ ଏହାର ପ୍ରଶସ୍ତି ବିଷୟରେ କହନ୍ତି—'ଭଦ୍ରତୁଙ୍ଗ ତୀର୍ଥକୁ ଗଲେ ବ୍ରହ୍ମଲୋକ, ହୁଅଇ ଆହେ ଭାଗୀରଥୀଙ୍କ ନାୟକ ।'

**ଭଦ୍ରତୁରଗ**—ଜମ୍ବୁ ଦ୍ୱୀପର ନଅଗୋଟି ବର୍ଷ ବା ଦେଶ ମଧ୍ୟରୁ ଗୋଟିଏ । (ଭାଷାକୋଷ)

**ଭଦ୍ରମୁଖ**—ଶ୍ରୀରାମଚନ୍ଦ୍ରଙ୍କର ଜନୈକ ଗୁପ୍ତଚର । ଲଙ୍କାରୁ ଫେରି ଅଭିଷେକାନ୍ତେ ରାମଚନ୍ଦ୍ର ଏହାର ମୁଖରୁ ରାଜ୍ୟଲୋକେ ସୀତାଙ୍କ ଚରିତ୍ର ଉପରେ ଦୋଷାରୋପ କରୁଛନ୍ତି ଶୁଣି, ଅନ୍ତଃସତ୍ତ୍ୱା ଅବସ୍ଥାରେ ମଧ୍ୟ ସୀତାଙ୍କୁ ବିସର୍ଜନ କରିଥିଲେ ।

**ଭଦ୍ରା**—(୧) ଅଭିମନ୍ୟୁଙ୍କ ମାତା ସୁଭଦ୍ରାଙ୍କ ନାମାନ୍ତର । ଶ୍ରୀକୃଷ୍ଣଙ୍କ ଭଉଣୀ (୨) ଶ୍ରୀକୃଷ୍ଣଙ୍କ ପତ୍ନୀ ବିଶେଷ । (୩) ଚନ୍ଦ୍ରାବଳୀଙ୍କ ସଖୀ ବିଶେଷ ।

**ଭଦ୍ରାଶ୍ୱ**—ମେରୁର ପୂର୍ବରେ ଅବସ୍ଥିତ ପୃଥିବୀର ନବବର୍ଷ ମଧ୍ୟରୁ ଗୋଟିଏ ବର୍ଷ ବା ଦେଶ । (ଭାଷାକୋଷ)

**ଭରତ**—(୧) ରାଜା ଦଶରଥଙ୍କ ଦ୍ୱିତୀୟ ପୁତ୍ର । (୨) ରାଜର୍ଷି ବିଶେଷ । ରାଜା ଋଷଭଙ୍କ ଜ୍ୟେଷ୍ଠ ପୁତ୍ର । ଭାଗବତ ପଞ୍ଚମସ୍କନ୍ଧ ସପ୍ତମ ଅଧ୍ୟାୟରେ ନିର୍ଦ୍ଦେଶ ଅଛି

ଋଷଭଙ୍କ ପୁତ୍ର ଭରତ ବିଶ୍ୱରୂପାଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ଏହାଙ୍କର ପାଞ୍ଚ ପୁଅ—ଧୂମକେତୁ, ସୁଦର୍ଶନ, ସୁମତି, ରାଷ୍ଟ୍ରଭୃତ, ଆବରଣ । ଏହି ଭରତଙ୍କ ନାମାନୁସାରେ ଭାରତବର୍ଷ ହୋଇଛି ବୋଲି ଭାଗବତ ନିର୍ଦ୍ଦେଶ ଦିଏ । ଜଗନ୍ନାଥ ଦାସ କହନ୍ତି—ଏ ଦେଶ ଅଜନାଭ ଥିଲା । ଭରତୁଁ ଭାରତ ହୋଇଲା (ପଞ୍ଚମ ସ୍କନ୍ଧ) (୩) ଦୁଷ୍ମନ୍ତଙ୍କ ଔରସରେ ଶକୁନ୍ତଳାଙ୍କ ଗର୍ଭଜାତ ସନ୍ତାନ ସର୍ବଦମନଙ୍କ ନାମ ଭରତ । ଇତଦ୍ୱାସ କହେ ଏହି ଭରତଙ୍କ ନାମାନୁସାରେ ଦେଶର ନାମ ଭାରତବର୍ଷ ହୋଇଛି । (୪) ବ୍ରାହ୍ମଣକୁମାର ବିଶେଷ ଜଡ଼ ଭରତ । (୫) ସଙ୍ଗୀତ ଓ ନାଟ୍ୟଶାସ୍ତ୍ରର ପ୍ରଥମ ପ୍ରବର୍ତ୍ତକ ମୁନି । ଏହାଙ୍କ ନାଟ୍ୟଶାସ୍ତ୍ର ଗ୍ରନ୍ଥ ତୃତୀୟ ଶତାବ୍ଦୀରେ ଲିଖିତ ହୋଇଥିଲା । ଏଥିରେ ଉକ୍ତ ବିଭାଷାର ଉଲ୍ଲେଖ ଅଛି । (ଭାଷାକୋଷ)

**ଭରଦ୍ୱାଜ**—ବିଖ୍ୟାତ ପ୍ରାଚୀନ ଆର୍ଯ୍ୟଋଷି । ଉତଥ୍ୟଙ୍କ ପତ୍ନୀ ମମତାଙ୍କ କ୍ଷେତ୍ରରେ ତାଙ୍କର କନିଷ୍ଠ ସହୋଦର ଦେବଗୁରୁ ବୃହସ୍ପତିଙ୍କ ଔରସରେ ଏହାଙ୍କର ଜନ୍ମ । ମମତାଙ୍କ ଅନ୍ତଃସତ୍ତ୍ୱାବସ୍ଥାରେ ବୃହସ୍ପତି ଗୋପନରେ ଏହାଙ୍କ ସହିତ ସଙ୍ଗମ ହୋଇଥିଲେ । ଗର୍ଭସ୍ଥ ଶିଶୁ (ଦୀର୍ଘତମା) ଏହି ଅବୈଧ ସଙ୍ଗମରେ ଆପତ୍ତି କଲେ ମଧ୍ୟ ବୃହସ୍ପତି ନିରସ୍ତ ହେଲେନାହିଁ । ଶିଶୁ କ୍ରୁଦ୍ଧହୋଇ ପଦ ଦ୍ୱାରା ଶୁକ୍ରର ପ୍ରବେଶ ପଥ ରୁଦ୍ଧ କଲେ । ଶୁକ୍ର ଭୂମିତଳେ ପତିତ ହେଲା । ବୃହସ୍ପତିଙ୍କ ଅଭିଶାପରୁ ଗର୍ଭସ୍ଥ ଶିଶୁ ଅନ୍ଧ ଭାବାପନ୍ନ ହୋଇ ଜନ୍ମିଲା । ଭୂପତିତ ଶୁକ୍ରରୁ ଗୋଟିଏ ପୁତ୍ରସନ୍ତାନ ଜାତ ହୋଇଥିଲା । ମମତା ଏହି ପୁତ୍ରଟିକୁ ପରିତ୍ୟାଗ କରିବା ପାଇଁ ଇଚ୍ଛା କଲେ । ମାତ୍ର ବୃହସ୍ପତି ଏପରି କୁକର୍ମ ନ କରିବାକୁ ମମତାଙ୍କୁ ଉପଦେଶ ଦେଇ କହିଲେ—ଏହି ସନ୍ତାନଟିକୁ ଭର ଅର୍ଥାତ୍ ପାଳନ କର । ମାତ୍ର ଏଥିଲାଗି ମମତା ଓ ବୃହସ୍ପତିଙ୍କ ମଧ୍ୟରେ ବାଦ-ବିବାଦ ହେଲା । ଶେଷକୁ ମମତା ସନ୍ତାନଟିକୁ ପରିତ୍ୟାଗ କରି ଗ୍ଲେଲେ । ଏହାପରେ ମରୁଦ୍‌ଗଣ ଏହି ସନ୍ତାନକୁ ପାଳନ କଲେ । ମରୁଦ୍‌ଗଣଙ୍କ ଦ୍ୱାରା ଭୃତ ବା ପାଳିତ ହୋଇଥିବାରୁ ଏହାଙ୍କର ନାମ ହେଲା ଭରଦ୍ୱାଜ । ଏହାଙ୍କର ଅପର ନାମ ହେଲା ବିତଥ । (ମହାଭାରତ – ଆଦି, ଭାଗବତ, ବିଷ୍ଣୁପୁରାଣ) । ଏକଦା ଗଙ୍ଗାସ୍ନାନ ସମୟରେ ଘୃତାଚୀ ଅପ୍‌ସରାକୁ ଦେଖି ଭରଦ୍ୱାଜଙ୍କର ରେତଃ ସ୍ଖଳିତ ହେଲା । ଋଷି ଏହି ରେତଃକୁ ଦ୍ରୋଣ ମଧ୍ୟରେ ରଖିଥିବାରୁ ସେଥିରୁ ଯେଉଁ ପୁତ୍ର ଜନ୍ମିଲା ତାଙ୍କର ନାମ ହେଲା ଦ୍ରୋଣାଚାର୍ଯ୍ୟ । ଏ କୌରବ ପାଣ୍ଡବମାନଙ୍କର ଗୁରୁ ଥିଲେ । ଦ୍ରୋଣ ପ୍ରାୟ ଭୀଷ୍ମଙ୍କ ସମସାମୟିକ ।

ବ୍ୟାଧିଗ୍ରସ୍ତ ପ୍ରାଣୀମାନଙ୍କର ଦୁଃଖ ଦୂରୀକରଣ ପାଇଁ ଭରଦ୍ୱାଜ ଇନ୍ଦ୍ରାଳୟକୁ ଗମନ କରି ଦେବରାଜଙ୍କଠାରୁ ଆୟୁର୍ବେଦଶାସ୍ତ୍ର ଅଧ୍ୟୟନ କରିଥିଲେ । ସେ ଇନ୍ଦ୍ରଙ୍କଠାରୁ ଲିଙ୍ଗୌଷଧ, ରୋଗ ନିଦାନ, ରୋଗର ଲକ୍ଷଣ, ଏବଂ ଔଷଧଜ୍ଞାନ ସକଳପ୍ରକାର ଆୟୁର୍ବେଦ ଅଧ୍ୟୟନ କରି ମର୍ତ୍ତ୍ୟଲୋକକୁ ଆସିଲେ ଏବଂ ମୁନିମାନଙ୍କୁ ତାହା ଶିକ୍ଷା ଦେଇଥିଲେ । ଏହି ଋଷିମାନେ ଜଗତରେ ଆୟୁର୍ବେଦ ପ୍ରକାଶ ଓ ପ୍ରଚାର କରିଥିଲେ । (ଭାବପ୍ରକାଶ)

ଓଡ଼ିଶାରେ ବିଖ୍ୟାତ ଦୈନିକ ସମ୍ବାଦପତ୍ରରେ ଭରଦ୍ୱାଜ ଜଣେ ବିଖ୍ୟାତ ବୈଜ୍ଞାନିକ ଥିଲେ ବୋଲି ପ୍ରକାଶ ହୋଇଥିଲା । ଆକାଶଯାନର ସକଳପ୍ରକାର ନିର୍ମାଣ ପ୍ରଣାଳୀ ଏହାଙ୍କ କୃତ ଏକ ଗ୍ରନ୍ଥରେ ଦେଖିବାକୁ ମିଳେ ବୋଲି ଜଣାପଡ଼ିଲା । ଦାକ୍ଷିଣାତ୍ୟରେ କୌଣସି ସ୍ଥାନରେ ଏ ଗ୍ରନ୍ଥ ମିଳିଅଛି । ପ୍ରୟାଗରେ ଭରଦ୍ୱାଜଙ୍କ ଆଶ୍ରମଥିବା କଥା ରାମାୟଣ ଅଯୋଧ୍ୟାକାଣ୍ଡରେ ଦୃଷ୍ଟ ହୁଏ । ବନବାସ ବେଳେ ରାମଚନ୍ଦ୍ର ସୀତା ଓ ଲକ୍ଷ୍ମଣଙ୍କ ସହିତ ଏଠାରେ ଦୁଇଦିନ ବିଶ୍ରାମ କରି ବାଲ୍ମୀକି ମୁନିଙ୍କ ଆଶ୍ରମକୁ ଯାଇଥିଲେ ।

**ଭସ୍ମାସୁର**—ଦୈତ୍ୟ ବିଶେଷ । ଏ ତପସ୍ୟା କରି ମହାଦେବଙ୍କଠାରୁ ବର ପାଇଲା ଯେ ଏ ଯାହା ମୁଣ୍ଡରେ ହାତଦେବ ସେ ଜଳି ପାଉଁଶ ହୋଇଯିବ । ଏହାର ସତ୍ୟତା ପରୀକ୍ଷା କରିବା ପାଇଁ ଏ ପ୍ରଥମେ ମହାଦେବଙ୍କ ମୁଣ୍ଡରେ ହାତଦେବା ପାଇଁ ତାଙ୍କ ପଛରେ ଗୋଡ଼ାଇଲା ଓ ମହାଦେବ ପଳାଇଲେ । ମହାଦେବଙ୍କ ଦୁଃଖ ଦେଖି ବିଷ୍ଣୁ ନୃତ୍ୟ କରି ନିଜ ମୁଣ୍ଡରେ ହାତଦେବାକୁ ଏହାକୁ ପ୍ରବର୍ତ୍ତାଇଲେ । ଏ ତାହା କରିବାରୁ ଭସ୍ମ ହୋଇଗଲା । (ଭାଷାକୋଷ)

**ଭାନୁମତୀ**—(୧) ଦୁର୍ଯୋଧନଙ୍କ ମହିଷୀ । ଏହାଙ୍କ ଗର୍ଭରୁ ଲକ୍ଷ୍ମଣ ନାମକ ପୁତ୍ର ଓ ଲକ୍ଷଣା ନାମ୍ନୀ କନ୍ୟା ଜାତ ହୋଇଥିଲେ । (୨) ମହାରାଜ ବିକ୍ରମାଦିତ୍ୟଙ୍କ ପାଟରାଣୀଙ୍କ ନାମ ଭାନୁମତୀ । (୩) ଭାନୁ ନାମକ ଯାଦବଙ୍କ କନ୍ୟା । ସହଦେବ ଏହାଙ୍କୁ ବିବାହ ହୋଇଥିଲେ । ନିକୁମ୍ଭ ଦୈତ୍ୟ ଏହି କନ୍ୟାକୁ ଅପହରଣ କରି ନେଇଥିଲା । ପରେ ଶ୍ରୀକୃଷ୍ଣ ଅସୁରକୁ ବଧ କରି ଭାନୁମତୀଙ୍କୁ ପଞ୍ଚମ ପାଣ୍ଡବଙ୍କ ସହିତ ବିବାହ କରାଇଥିଲେ । (୪) କୁହୁକବିଦ୍ୟା ପଣ୍ଡିତା ଭୋଜରାଜଙ୍କ କନ୍ୟା । (ଭାଷାକୋଷ)

**ଭାନୁମାନ୍**—କଳିଙ୍ଗ ରାଜାଙ୍କ ପୁତ୍ର । ଏ ମହାଭାରତ ଯୁଦ୍ଧରେ ଭୀମଙ୍କ ବିରୁଦ୍ଧରେ ଭୀଷଣ ଯୁଦ୍ଧ କରିଥିଲେ । (କୃପାସିନ୍ଧୁ, ଇତିହାସ)

**ଭବମିଶ୍ର** – ଭବପ୍ରକାଶ ବୈଦ୍ୟକ ଗ୍ରନ୍ଥର ପ୍ରଣେତା । ୩୦୦ ବର୍ଷ ପୂର୍ବେ ମଦ୍ର (ପ୍ରାଚୀନ ପଞ୍ଜାବରେ) ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ଲଟକନ ମିଶ୍ର । (ପୂର୍ଣ୍ଣଚନ୍ଦ୍ର ଅଭିଧାନ)

**ଭରଦ୍ୱାଜ**—ଦ୍ରୋଣାଚାର୍ଯ୍ୟଙ୍କ ନାମାନ୍ତର । ଅଗସ୍ତି ମୁନି ।

**ଭରୁଣ୍ଡ**—ରାମାୟଣୋକ୍ତ ପ୍ରାଚୀନ ବନ ବିଶେଷ । ଏହା ପଞ୍ଜାବର ସରସ୍ୱତୀ ନଦୀତଟରେ ଅବସ୍ଥିତ ଥିଲା । (ହିନ୍ଦୀ ଶବ୍ଦସାଗର)

**ଭର୍ଗଣ**—ପାଣ୍ଡବପକ୍ଷୀୟ ଯୋଦ୍ଧା ବିଶେଷ । ରାଜକବି କୃଷ୍ଣସିଂହ କହନ୍ତି – ସୂର୍ଯ୍ୟ ଅଗ୍ନି ପ୍ରାୟେ ଶରଷ୍ଟା ଏ ଦ୍ରୋଣ । ସନ୍ଧିଲେ ସନ୍ଧିପାରେ ପଡ଼ିଲେ ଭର୍ଗଣ ।

**ଭାର୍ଗବ**—ଭୃଗୁ ମୁନିଙ୍କ ବଂଶଧର । ଶୁକ୍ରାଚାର୍ଯ୍ୟ । ଦକ୍ଷ ପ୍ରଜାପତିଙ୍କ ପୁରୋହିତ ବିଶେଷ । ପରଶୁରାମଙ୍କ ନାମାନ୍ତର । ମାର୍କଣ୍ଡେୟ ଋଷି ।

**ଭାର୍ଗବୀ**—ପାର୍ବତୀ, ଲକ୍ଷ୍ମୀ । ଓଡ଼ିଶାର ପୁରୀ ଜିଲ୍ଲାରେ ପ୍ରବାହିତ ନଦୀ ବିଶେଷ । ଏହା ପୁରୀ ଜିଲ୍ଲାର ବାଲକାଟିଠାରୁ କୁଆଖାଇ ନଦୀରୁ ବାହାରି ଚିଲିକାରେ ପଡ଼ିଅଛି ।

**ଭାଲୁକ**—ଋଷି ବିଶେଷ । ରାଜକବି କୃଷ୍ଣସିଂହଙ୍କ ବର୍ଣ୍ଣିତ – ନାରଦ, ଜାମଦଗ୍ନ୍ୟ, ଭାଲୁକ, ଦ୍ୱୈପାୟନ । (ଭାରତ, ବନପର୍ବ)

**ଭାସକର୍ଣ୍ଣ**—ରାକ୍ଷସ ବିଶେଷ । ହନୁମାନ ଅଶୋକବନ ଭଙ୍ଗାଉଥିବାବେଳେ ଏହି ରାକ୍ଷସ ବାଧାଦେଇ ହନୁମାନଙ୍କ ଦ୍ୱାରା ନିହତ ହୋଇଥିଲା ।

(ହିନ୍ଦୀ ଶବ୍ଦସାଗର)

**ଭୀମ** – କୃତଯୁଗ ପାଣ୍ଡବ । ଭୀମ ପାଣ୍ଡୁଙ୍କ କ୍ଷେତ୍ରଜ ପୁତ୍ର । କୁନ୍ତୀଙ୍କ ଗର୍ଭରୁ ପବନ-ଦେବଙ୍କ ଔରସରେ ଏହାଙ୍କର ଜନ୍ମ । ଭୀମ ଧାର୍ତ୍ତରାଷ୍ଟ୍ର ଦୁର୍ଯ୍ୟୋଧନଙ୍କ ସମବୟସ୍କ । ଏ ଉଭୟେ ଏକାଦିନେ ଜନ୍ମିଥିଲେ । ଭୀମ ମହା ବଳଶାଳୀ ଥିଲେ । ଦୁର୍ଯ୍ୟୋଧନାଦି ଶତଭ୍ରାତା କେହି ହେଲେ ଗଦା ଯୁଦ୍ଧରେ ଏହାଙ୍କୁ ପାରୁ ନଥିଲେ । ଏଥିଲାଗି ଦୁର୍ଯ୍ୟୋଧନ ଈର୍ଷାନ୍ୱିତ ହୋଇ ଏହାଙ୍କୁ ବଧ କରିବାପାଇଁ ଚେଷ୍ଟା କରୁଥିଲେ । ଥରେ ସେମାନେ ଭୀମଙ୍କୁ ବିଷ ଖୁଆଇ ଜଳରେ ଭସାଇ ଦେଲେ । ଭୀମ ଜଳସ୍ରୋତରେ ଭାସି ଭାସି ନାଗଲୋକରେ ଲାଗିଲେ । ସେଠାରେ ସେ ପୁନର୍ଜୀବିତ ହୋଇ ହସ୍ତିନାକୁ ଆସି ଜ୍ୟେଷ୍ଠ ଭ୍ରାତା

ଯୁଧିଷ୍ଠିରଙ୍କୁ ସକଳ କଥା କହିଲେ । ଦୁର୍ଯ୍ୟୋଧନ ଅପର ପାଣ୍ଡବମାନଙ୍କ ସହିତ ଭୀମଙ୍କୁ ବାରୁଣାବତ ନଗରକୁ ପଠାଇଦେଲେ । ଭୀମ ଦୁର୍ଯ୍ୟୋଧନଙ୍କ ଅଭିସନ୍ଧି ବୁଝିପାରି ଜତୁ ଗୃହରେ ଅଗ୍ନି ସଂଯୋଗ କରି ମାତା କୁନ୍ତୀ ଓ ଅନ୍ୟ ଭ୍ରାତାମାନଙ୍କ ସହ ସେଠାରୁ ପଳାଇଗଲେ । ପାଞ୍ଚାଳ ଗମନ କରି ସେ ନଗରପଦରେ ରହିଲେ । ଇତ ପୂର୍ବରୁ ହିଡ଼ମ୍ବ ନାମକ ରାକ୍ଷସକୁ ବଧ କରି ଭୀମ ତଦୀୟ ଭଗିନୀ ହିଡ଼ମ୍ବାର ପାଣିଗ୍ରହଣ କଲେ । ଘଟୋତ୍କଚ ଏହି ଦମ୍ପତିର ସନ୍ତାନ । ପାଞ୍ଚାଳରେ ଦ୍ରୌପଦୀ ଲାଭ ପରେ ଅନ୍ୟାନ୍ୟ ଭ୍ରାତାଙ୍କ ସହିତ ସେ ଇନ୍ଦ୍ରପ୍ରସ୍ଥକୁ ଗଲେ । ଯୁଧିଷ୍ଠିର ଏଠାରେ ମହାସମାରୋହରେ ରାଜସୂୟ ଯଜ୍ଞ ଅନୁଷ୍ଠାନ କଲେ । ଭୀମ, ଅର୍ଜ୍ଜୁନ ଓ କୃଷ୍ଣଙ୍କ ସହିତ ମଗଧରାଜ୍ୟକୁ ଯାଇ ସେଠାରେ ମଗଧରାଜ ଜରାସନ୍ଧଙ୍କୁ ବଧ କରିଥିଲେ । ଏହାପରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ବିଭବ ଓ ଗୌରବ ସହି ନପାରି କପଟ ଦ୍ୟୂତକ୍ରୀଡ଼ାରେ ଯୁଧିଷ୍ଠିରଙ୍କୁ ପରାସ୍ତ କରି ପାଣ୍ଡବ ପାଟରାଣୀ କୃଷ୍ଣାଙ୍କୁ ବିବସ୍ତ୍ରା କରିବା ନିମିତ୍ତ ରାଜସଭାକୁ ଅଣାଇଲେ । ଦ୍ରୌପଦୀଙ୍କ ଅବମାନନା ଦେଖି ଭୀମ କ୍ରୋଧରେ ଅଧୀର ହୋଇ ପ୍ରତିଜ୍ଞା କଲେ ଯେ ସେ ଦୁର୍ଯ୍ୟୋଧନଙ୍କ ଭ୍ରାତୃମଣ୍ଡଳୀର ପ୍ରାଣ ସଂହାର କରିବେ । ଦୁଃଶାସନର ବକ୍ଷ ବିଦାରଣ କରି ସେହି ରକ୍ତ ପାନକରିବେ ଓ କୃଷ୍ଣାଙ୍କର ବେଣୀ ବନ୍ଧନ କରିବେ ଏବଂ ଗଦାଘାତରେ ଦୁର୍ଯ୍ୟୋଧନଙ୍କ ଉରୁ ଭଙ୍ଗ କରିବେ । ମହାଭାରତ ଯୁଦ୍ଧରେ ଭୀମ ତାଙ୍କର ଏହି ପ୍ରତିଜ୍ଞା ରକ୍ଷା କରିଥିଲେ । ପାଣ୍ଡବମାନଙ୍କ ମହାପ୍ରସ୍ଥାନ ସମୟରେ ଦ୍ରୌପଦୀ, ସହଦେବ, ନକୁଳ ଓ ଅର୍ଜ୍ଜୁନଙ୍କ ପତନ ପରେ ଭୀମ ଭୂପତିତ ହୋଇ ପ୍ରାଣତ୍ୟାଗ କରିଥିଲେ । ଯୁଧିଷ୍ଠିର କହିଲେ—'ତୁ ଅନ୍ୟ କାହାକୁ ଆହାର ନ ଦେଇ ନିଜେ ଅପରିମିତ ଆହାର କରି ଆପଣାକୁ ଅଦ୍ୱିତୀୟ ବଳଶାଳୀ ବୋଲି ଗର୍ବ କରୁଥିଲୁ ।' ଏହି ପାପରୁ ଭୀମ ଭୂପତିତ ହେଲେ । (ମହାଭାରତ) (୨) ବିଦର୍ଭ-ରାଜ ଦମୟନ୍ତୀଙ୍କ ପିତା ଭୀମସେନ । ଏହାଙ୍କର ତିନି ପୁଅ—ଦମ, ଦାମ ଓ ଦମନ ଏବଂ ଦମୟନ୍ତୀ ବୋଲି ଏକ କନ୍ୟା । (୩) ଦାନବ ଓ ଗନ୍ଧର୍ବ ବିଶେଷଙ୍କ ନାମାନ୍ତର । (୪) ମହର୍ଷି ବିଶ୍ୱାମିତ୍ରଙ୍କ ପୂର୍ବପୁରୁଷ ଓ ପୁରୁରବାଙ୍କ ପୌତ୍ର । (୫) କୁମ୍ଭକର୍ଣ୍ଣର ପୁତ୍ର । ରାବଣ ସେନାପତି । (ଭାଷାକୋଷ)

**ଭୀମାଦେବୀ**—ଦେବୀ ବିଶେଷ । କୃଷ୍ଣସିଂହଙ୍କ ନିର୍ଣ୍ଣୟ—ଭୀମାଦେବୀଙ୍କ ସ୍ଥାନ ଯୋନିତୀର୍ଥେ ଯାଇ । ସ୍ନାନକଲେ ଯେ ଦେବୀପୁତ୍ର ସେ ହୋଇଲା । (ମହାଭାରତ, ବନପର୍ବ) ଚଣ୍ଡୀପୁରାଣରେ ଦୁର୍ଗାଙ୍କର ଏକ ଅବତାର ବିଶେଷ । ଏକାଦଶ ଅଧ୍ୟାୟ ୫୧।୫୨ ଶ୍ଳୋକରେ ଦୁର୍ଗା ନିଜେ କହୁଛନ୍ତି—'ହିମାଚଳରେ

ମୁଁ ଭୀମରୂପ ଧାରଣ କରି ରାକ୍ଷସମାନଙ୍କୁ ଭକ୍ଷଣ କରି ମୁନିମାନଙ୍କୁ ରକ୍ଷାକରିବି, ତେଣୁ ମୁନିମାନେ ମୋତେ ଭୀମାଦେବୀ ନାମରେ ସ୍ତବ କରିବେ ।'

(ସ୍ୱପ୍ନାକୋଷ)

**ଭୀଷ୍ମ** —ମହାରାଜ ଶାନ୍ତନୁଙ୍କ ଜ୍ୟେଷ୍ଠପୁତ୍ର । ଗଙ୍ଗା ଏହାଙ୍କର ଜନନୀ । କୁରୁଦେଶର ରାଜା ଶାନ୍ତନୁ ଗଙ୍ଗାଦେବୀଙ୍କୁ ଏହି ସର୍ତ୍ତରେ ବିବାହ କରିଥିଲେ ଯେ ଗଙ୍ଗା ନିଜର ଇଚ୍ଛା ଅନୁସାରେ କାର୍ଯ୍ୟ କରିବେ ଓ ଶାନ୍ତନୁ ତାଙ୍କୁ ନିଷେଧ କରି ପାରିବେନାହିଁ । ନିଷେଧ କଲେ ଗଙ୍ଗା ତାଙ୍କୁ ତ୍ୟାଗ କରି ଚାଲିଯିବେ । ଶାନ୍ତନୁଙ୍କ ଔରସରେ ଗଙ୍ଗାଙ୍କର ସାତଗୋଟି ପୁତ୍ର ଜନ୍ମିଲେ ଓ ଜନ୍ମ ହେବାକ୍ଷଣି ଗଙ୍ଗା ଉକ୍ତ ଶିଶୁମାନଙ୍କୁ ନେଇ ପାଣିରେ ଫିଙ୍ଗି ଦେଉଥିଲେ । ଅଷ୍ଟମପୁତ୍ର ଦେବବ୍ରତଙ୍କୁ ଗଙ୍ଗା ପାଣିକି ନେଇ ଫିଙ୍ଗିଦେବାକୁ ଗଲାବେଳେ ଶାନ୍ତନୁ ତାଙ୍କୁ ନିଷେଧ କରି ଉକ୍ତ ପୁତ୍ରର ଜୀବନରକ୍ଷା କଲେ । ଏଥିରେ ଗଙ୍ଗାଦେବୀ ବିବାହକାଳୀନ ସର୍ତ୍ତ ଅନୁସାରେ ଶାନ୍ତନୁଙ୍କୁ ତ୍ୟାଗ କରି ଚାଲିଗଲେ ଓ ଶାନ୍ତନୁ ଏହି ଶିଶୁକୁ ପାଳିଲେ । ପରେ ନିମ୍ନଲିଖିତ ଭୀଷ୍ମ ପ୍ରତିଜ୍ଞା ଯୋଗୁଁ ଦେବବ୍ରତଙ୍କ ନାମ ଭୀଷ୍ମ ହେଲା । ଗଙ୍ଗା ଶାନ୍ତନୁଙ୍କୁ ପରିତ୍ୟାଗ କରି ଯିବାପରେ ଶାନ୍ତନୁ ଧୀବର ରାଜକନ୍ୟା ସତ୍ୟବତୀ ବା ଯୋଜନଗନ୍ଧାଙ୍କ ରୂପ ଲାବଣ୍ୟରେ ମୁଗ୍ଧ ହୋଇ ତାଙ୍କର ପାଣିଗ୍ରହଣ କରିଥିଲେ । କିନ୍ତୁ ରାଜାଙ୍କର ବିବାହିତା ପତ୍ନୀ ଗଙ୍ଗାଙ୍କ ଗର୍ଭଜାତ ପୁତ୍ର ଦେବବ୍ରତ ତାଙ୍କ ପରେ ରାଜା ହେବେ ଓ ଧୀବର ରାଜକନ୍ୟା ଗର୍ଭଜାତ ପୁତ୍ର ରାଜା ହେବେନାହିଁ, ଏହି ଆଶଙ୍କାରେ ଧୀବରରାଜ ଶାନ୍ତନୁଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିବାକୁ ବସିଲେ । ଭୀଷ୍ମ ଏହା ଶୁଣିପାରି ଧୀବର ରାଜାଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ ଯେ ଆପଣଙ୍କ କନ୍ୟା ଗର୍ଭଜାତ ସନ୍ତାନ ରାଜା ହେବେ, ମୁଁ ରାଜା ହେବିନାହିଁ ବୋଲି ପ୍ରତିଜ୍ଞା କରୁଅଛି । ଧୀବରରାଜ କହିଲେ ତୁମେ ସିନା ରାଜା ହେବନାହିଁ, କିନ୍ତୁ ତୁମର ପୁଅ ନାତିମାନେ ରାଜଗାଦି ଦାବୀ କରିବେ, ଏହାଶୁଣି ଦେବବ୍ରତ ପ୍ରତିଜ୍ଞା କଲେ—ମୁଁ ବିବାହ କରିବି ନାହିଁ । ଚିରକୁମାରବ୍ରତ ଅବଲମ୍ବନ କରି ରହିବି ଏହିପରି କହି ଦେବବ୍ରତ ଧୀବରରାଜ କନ୍ୟାକୁ ଜନନୀ ବୋଲି ସମ୍ବୋଧନ କରି ପିତାଙ୍କୁ ସେହି କନ୍ୟା ସମର୍ପଣ କଲେ । ତାଙ୍କର ଏତାଦୃଶ ପ୍ରତିଜ୍ଞା ପାଳନଯୋଗେ ସେହିଦିନୁଁ ଦେବବ୍ରତ 'ଭୀଷ୍ମ' ଆଖ୍ୟା ପ୍ରାପ୍ତହେଲେ । ଭୀଷ୍ମ ଅପୁତ୍ରିକ ଥିଲେ । ତାଙ୍କୁ କିଏ ପିଣ୍ଡଦେବ ବୋଲି ପଚରା ଯିବାରେ ସେ କହିଲେ—ସଂସାରରେ ସବୁଲୋକ ମୋର ପୁଅ । ସମସ୍ତେ ମୋତେ ପିଣ୍ଡଦେବେ । ଏଥିଲାଗି ମାଘ ଶୁକ୍ଳ ଅଷ୍ଟମୀ ଦିନ ପ୍ରତ୍ୟେକ ହିନ୍ଦୁଗୃହସ୍ଥ ଭୀଷ୍ମଙ୍କ ପାଇଁ ଶ୍ରାଦ୍ଧ କରନ୍ତି । ଶାନ୍ତନୁଙ୍କ ଦ୍ୱିତୀୟ ପତ୍ନୀ ସତ୍ୟବତୀଙ୍କ ଗର୍ଭରୁ

ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇ ପୁତ୍ର ହେଲେ । ଚିତ୍ରାଙ୍ଗଦ ଏକ ଗନ୍ଧର୍ବ ଦ୍ୱାରା କୁମାର ଅବସ୍ଥାରେ ହତ ହେଲେ ଓ ବିଚିତ୍ରବୀର୍ଯ୍ୟ କାଶୀ ରାଜାଙ୍କର ତିନି କନ୍ୟାଙ୍କୁ ବିବାହ କଲେ; କିନ୍ତୁ ନିଃସନ୍ତାନ ହୋଇ ମରିଯିବାରୁ ସତ୍ୟବତୀଙ୍କ ଆଦେଶକ୍ରମେ ପରାଶରଙ୍କ ଔରସରେ ସତ୍ୟବତୀଙ୍କ କାନୀନ ପୁତ୍ର ବେଦବ୍ୟାସଙ୍କ ଦ୍ୱାରା ବିଚିତ୍ରବୀର୍ଯ୍ୟଙ୍କ ଦୁଇ ବିଧବାପତ୍ନୀଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମଗ୍ରହଣ କଲେ ।

ଭୀଷ୍ମ ଜଣେ ମହାବୀର ଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଏ କୌରବ ପକ୍ଷରେ ଯୁଦ୍ଧ କରିଥିଲେ । ଦଶ ଦିନ ଯୁଦ୍ଧ ପରେ ପାଣ୍ଡବମାନେ ଗୋଟିଏ କୌଶଳ କରି ଏହାଙ୍କ ହସ୍ତରୁ ଶର ଖସାଇ ପକାଇଲେ ଏବଂ ଅର୍ଜ୍ଜୁନଙ୍କ ଶର ଦ୍ୱାରା ଏ ଯୋଦ୍ଧ ହୋଇଗଲା ପରି ଦେଖାଗଲେ । ଉକ୍ତ ଶରମାନ ଭୀଷ୍ମଙ୍କ ଦେହରେ ଲାଗିଥିବାବେଳେ ସେ ସେହି ଅବସ୍ଥାରେ ଶରଶଯ୍ୟା କରି ରହିଲେ । କିନ୍ତୁ ସେ ସମୟରେ ମରିବାର ପୁଣ୍ୟକାଳ ଉପସ୍ଥିତ ହୋଇ ନଥିବାରୁ ସେ ଦେହତ୍ୟାଗ କଲେନାହିଁ । ଶରଶଯ୍ୟାରେ ଶୋଇଥିବା ଅବସ୍ଥାରେ ଭୀଷ୍ମ ଯୁଧିଷ୍ଠିରଙ୍କୁ ବହୁ ମୂଲ୍ୟବାନ ଉପଦେଶ ଦେଇଥିଲେ । ଯୁଦ୍ଧ ଶେଷରେ ମାଘ ଶୁକ୍ଳ ଅଷ୍ଟମୀ ଦିନ ସେ ଆପଣା ଇଚ୍ଛାରେ ଦେହତ୍ୟାଗ କଲେ । ମହାଭାରତର ଗୋଟିଏ ପର୍ବର ନାମ ଭୀଷ୍ମପର୍ବ, ଆଜି ତାଙ୍କର ଦିବ୍ୟସ୍ମୃତି ରକ୍ଷା ଲାଗି ବ୍ରାହ୍ମଣ ମୁଖରୁ ଶୁଣାଯାଏ—

ବୈୟାଘ୍ର ପଦ୍ୟ ଗୋତ୍ରାୟ ସାଙ୍କୃତ ପ୍ରବରାୟଚ
ଅପୁତ୍ରାୟ ଦଦାମ୍ୟେତତ୍ ସଲିଲଂ ଭୀଷ୍ମ ବର୍ମଣେ

(ମହାଭାରତ, ଭାଷାକୋଷ)

**ଭୀଷ୍ମକ**—ବିଦର୍ଭରାଜ । ରୁକ୍ମିଣୀଙ୍କ ପିତା ।

**ଭୁବନେଶ୍ୱର**—ପୁରୀ ଜିଲ୍ଲାର ତୀର୍ଥ ବିଶେଷ । ଭୁବନେଶ୍ୱରସ୍ଥ ଶିବଲିଙ୍ଗ "ସ୍ୱର୍ଣ୍ଣାଦ୍ରି ମହୋଦୟ" ନାମକ ଗ୍ରନ୍ଥରେ ଭୁବନେଶ୍ୱରର ସକଳ ବିଷୟ ବର୍ଣ୍ଣିତ ହୋଇଅଛି ।

**ଭୁବନେଶ୍ୱରୀ**—ଦଶ ମହାବିଦ୍ୟା ମଧ୍ୟରେ ଦେବୀ ତ୍ରିପୁରସୁନ୍ଦରୀ, ଏ ଚତୁର୍ଭୁଜା, ପାଶାଙ୍କୁଶବରାଭୟହସ୍ତା, ତ୍ରିନୟନା, ଅର୍ଦ୍ଧେନ୍ଦୁଶେଖରା, ରକ୍ତବର୍ଣ୍ଣା, ସୁଭୂଷଣା ଓ ପଦ୍ମାସନୀରୂପରେ କଳ୍ପିତା । (ଭାଷାକୋଷ)

**ଭୁଶୁଣ୍ଡୀକାକ**—ଯୋଗବାଶିଷ୍ଠ ରାମାୟଣ ବର୍ଣ୍ଣିତ ତ୍ରିକାଳଜ୍ଞ, ତ୍ରିଯୁଗଦର୍ଶୀ କାକ । ଏ କାକ ବିଷ୍ଣୁ କୁଣ୍ଡରେ ସ୍ନାନ କରି ଚତୁର୍ଭୁଜ ହେଲା ଓ

ଚିରଞ୍ଜୀବୀ ହେଲେ । ପୁରୀ ବଡ଼ଦେଉଳର ଗୋଟିଏ କୁଣ୍ଡରେ ଭୁଶୁଣ୍ଡୀକାକର ମୂର୍ତ୍ତି ଅଛି । (ଭାଷାକୋଷ)

**ଭୁଷୁଣ୍ଡୀ, ଭୁଶଣ୍ଡୀ**—ପ୍ରାଚୀନ ଭାରତର ଆଗ୍ନେୟାସ୍ତ୍ର ବିଶେଷ । ଏହା ବାହୁଠାରୁ ପରିମିତ ଲମ୍ବ, ଗ୍ରନ୍ଥିଯୁକ୍ତ ଓ ସ୍ଥୂଳକାୟ । ଏହାର ବର୍ଣ୍ଣ କୃଷ୍ଣ । ଏହା ସର୍ପ ପରି ଉଗ୍ରଦର୍ଶନ ।

**ଭୂତ**—ବାୟୁଚର ଦେବଯୋନି ବିଶେଷ । ସବୁ ଦେଶରେ ସବୁ କାଳରେ, ସବୁ ଜାତିରେ ଭୂତମାନଙ୍କ ସମ୍ବନ୍ଧରେ ନାନା କଳ୍ପନା ଓ ବିଶ୍ୱାସ ଅଛି । ଯେଉଁ ଜୀବମାନଙ୍କ ଆତ୍ମାମାନ ମୋକ୍ଷଗତି ନ ପାଇ ସ୍ୱର୍ଗକୁ ଯାଇନଥାଏ ସେହି ସେହି ଆତ୍ମାଭୂତ ବା ପ୍ରେତରୂପେ ନାନା ସ୍ଥୂଳ ଓ ସୂକ୍ଷ୍ମରୂପ ଧାରଣ କରି ପୃଥିବୀରେ ବିଚରଣ କରେ । ଏମାନେ ରାତିରେ ବାହାରନ୍ତି ଓ ଶ୍ମଶାନ, ନିର୍ଜନ ସ୍ଥାନ ଏବଂ ମହାରଣ୍ୟରେ ରହି ଇଚ୍ଛାନୁସାରେ ବିଭିନ୍ନ ରୂପ ଧରି ପାରନ୍ତି । ଏମାନେ ସମୟେ ସମୟେ ଲୋକଙ୍କ ଉପରେ ଅତ୍ୟାଚାର କରିଥାନ୍ତି । ବାଳକ, ବାଳିକା, ଯୁବକ, ଯୁବତୀ ଓ ସ୍ତ୍ରୀମାନଙ୍କ ଦେହରେ ପ୍ରବେଶ କରନ୍ତି । ଏମାନେ କୌଣସି କୌଣସି ଗୃହକୁ ଅଧିକାର କରି ସେଠାରେ ନାନା ଅଲୌକିକ ଘଟଣା ଘଟାନ୍ତି । ମୃତ ବ୍ୟକ୍ତିଙ୍କ ଆତ୍ମା ଭୂତହେବା କଥା ବର୍ତ୍ତମାନ ପାଶ୍ଚାତ୍ୟ-ପଣ୍ଡିତମାନେ ସ୍ୱୀକାର କରୁଅଛନ୍ତି ଓ ଭୂତମାନଙ୍କୁ ନିମନ୍ତ୍ରଣ କରି ଲୋକମାନଙ୍କ କ୍ରିୟାକଳାପ ଦେଖାଉଅଛନ୍ତି ।

ଶିବଙ୍କ ଅନୁଚର ବା ଗଣସମୂହକୁ ମଧ୍ୟ ଭୂତ ବୋଲଯାଏ । (ଭାଷାକୋଷ)

**ଭୂତବିଦ୍ୟା**—ଦେବ, ଅସୁର, ଗନ୍ଧର୍ବ, ଯକ୍ଷ, ପିଶାଚ, ନାଗ, ଗ୍ରହ, ଉପଗ୍ରହ ଆଦିଙ୍କ ପ୍ରଭାବରୁ ଉତ୍ପନ୍ନ ମାନସିକ ରୋଗମାନଙ୍କ ନିଦାନ ଓ ଉପାୟ ଆଲୋଚକ ଆୟୁର୍ବେଦର ଶାଖା । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଭୂତଯଜ୍ଞ**—ଜୀବମାନଙ୍କୁ ଅନ୍ନଦାନ ବା ବୈଶ୍ୱଦେବରୂପେ ଗୃହସ୍ଥର ନିତ୍ୟ ଅନୁଷ୍ଠେୟ ବଳିଦାନ ।

**ଭୂରିଶ୍ରବା**—ଚନ୍ଦ୍ରବଂଶୀୟ ରାଜା ସୋମଦତ୍ତଙ୍କ ପୁତ୍ର । ଏ ମହାଭାରତ ଯୁଦ୍ଧରେ କୌରବ ପକ୍ଷରେ ଯୁଦ୍ଧ କରି ଅର୍ଜ୍ଜୁନଙ୍କ ଦ୍ୱାରା ଛିନ୍ନବାହୁ ହୋଇଥିବାବେଳେ ସାତ୍ୟକିଙ୍କ ଖଡ୍ଗାଘାତରେ ପ୍ରାଣତ୍ୟାଗ କଲେ । (ମହାଭାରତ, ଦ୍ରୋଣପର୍ବ)

**ଭୃଗୁ**—ଶୁକ୍ରାଚାର୍ଯ୍ୟଙ୍କ ପିତା, ବ୍ରହ୍ମାଙ୍କର ଏକ ମାନସ ପୁତ୍ର ଓ ପ୍ରଜାପତି ବିଶେଷ; ମୁନି ବିଶେଷ । ସୁବଳଚନ୍ଦ୍ର ମିତ୍ରଙ୍କ ବଙ୍ଗଳା ଅଭିଧାନ ନିର୍ଦ୍ଦେଶ ଦେଉଛି— ମହାଭାରତରେ ଲେଖାଅଛି ଯେ ଥରେ ରୁଦ୍ର ଏକ ଯଜ୍ଞ କରୁଥିଲେ । ତାହା ଦେଖିବାକୁ ବହୁ ଦେବ, ଦେବୀ, ଦେବକନ୍ୟା ଓ ଋଷିମାନେ ଉପସ୍ଥିତ ହୋଇଥିଲେ । ବ୍ରହ୍ମା ଉକ୍ତ ଯଜ୍ଞରେ ଆହୁତି ଦେବା ସମୟରେ ଦେବକନ୍ୟା-ମାନଙ୍କ ରୂପରେ ମୋହିତ ହେଲେ ଓ ତାଙ୍କର ରେତଃପାତ ହେଲା । ସୂର୍ଯ୍ୟ ଉକ୍ତ ରେତକୁ ଅପଣା କିରଣ ଦ୍ୱାରା ଆକର୍ଷଣ କରି ନେଇ ଅଗ୍ନିରେ ପକାଇ ଦେଲେ ଓ ଉକ୍ତ ବୀର୍ଯ୍ୟରୁ ଯଜ୍ଞାଗ୍ନି ଶିଖା ମଧ୍ୟରୁ ଭୃଗୁଙ୍କର ଜନ୍ମ ହେଲା । କେହି କେହି କହନ୍ତି ଏ ଶିବଙ୍କ ପୁତ୍ର । ଏହାଙ୍କର ପୁତ୍ର ଶୁକ୍ରାଚାର୍ଯ୍ୟ । ପରଶୁରାମ ଏହାଙ୍କ ବଂଶରେ ଜନ୍ମିଥିଲେ । କେହି କେହି କହନ୍ତି ଏ ବ୍ରହ୍ମାଙ୍କ ମାନସ ପୁତ୍ର । ବ୍ରହ୍ମା ଏହାଙ୍କୁ ଅନ୍ୟତମ ପ୍ରଜାପତିରୂପେ ନିଯୁକ୍ତ କରିଥିଲେ । ଦକ୍ଷସୁତା ଖ୍ୟାତିଙ୍କ ସହିତ ଏହାଙ୍କର ବିବାହ ହେଲା । ବିଷ୍ଣୁପତ୍ନୀ ଲକ୍ଷ୍ମୀ ଏହାଙ୍କ କନ୍ୟା ଓ ଏହାଙ୍କର ଦୁଇ ପୁତ୍ର ଧାତା ଓ ବିଧାତା । ଏ ଧନୁର୍ବିଦ୍ୟାର ପ୍ରବର୍ତ୍ତକ ଓ ଭୃଗୁବଂଶର ଆଦି ପୁରୁଷ । କ୍ଷତ୍ରିୟ ରାଜା ବୀତହବ୍ୟ ଶତ୍ରୁ ଭୟରେ ଏହାଙ୍କ ଶରଣ ପଶିବାରୁ ଏ ତାଙ୍କୁ ବ୍ରାହ୍ମଣତ୍ୱ ପ୍ରଦାନ କରି ଶତ୍ରୁ ଭୟରୁ ମୁକ୍ତ କରିଥିଲେ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ଏହା ପରୀକ୍ଷା କରିବା ପାଇଁ ମୁନି ଋଷିମାନେ ଏହାଙ୍କୁ ନିଯୁକ୍ତ କରିଥିଲେ । ଏ ପ୍ରଥମେ ବ୍ରହ୍ମାଙ୍କ ପାଖେ ପହଞ୍ଚି ପରୀକ୍ଷା କରିବାକୁ ତାଙ୍କୁ ପ୍ରଣାମ ନ କରିବାରୁ ବ୍ରହ୍ମା କୁପିତ ହୋଇ ତିରସ୍କାର କଲେ । ପରେ ଭୃଗୁ ସ୍ତବ କରି ବ୍ରହ୍ମାଙ୍କୁ ପରିତୁଷ୍ଟ କଲେ । ସେଠାରୁ ଯାଇ ମହାଦେବଙ୍କ ପାଖେ ପହଞ୍ଚି ତାଙ୍କୁ ନମସ୍କାର ନ କରିବାରୁ ସେ କୁପିତ ହୋଇ ଭୃଗୁଙ୍କୁ ଭସ୍ମୀଭୂତ କରିବାକୁ ଉଦ୍ୟତ ହେଲେ । ଭୃଗୁ କିନ୍ତୁ ସ୍ତୁତି ଦ୍ୱାରା ଶିବଙ୍କର ସନ୍ତୋଷ ବିଧାନ କରିଥିଲେ । ତା ପରେ ଭୃଗୁ ଗଲେ ବିଷ୍ଣୁଙ୍କ ନିକଟକୁ । ସେତେବେଳେ ବିଷ୍ଣୁ ଶୋଇଥିଲେ । ତାଙ୍କୁ ପରୀକ୍ଷା କରିବା ପାଇଁ ଭୃଗୁ ବିଷ୍ଣୁଙ୍କ ବକ୍ଷ ସ୍ଥଳରେ ପଦାଘାତ କଲେ । ବିଷ୍ଣୁଙ୍କ ନିଦ୍ରା ଭଙ୍ଗ ହେଲା ଓ ପଦାଘାତ ଯୋଗେ ସେ ଭୃଗୁଙ୍କ ଉପରେ କୁପିତ ହେବା ତେଣେଥାଉ, ବିଷ୍ଣୁଙ୍କ ହୃଦୟର କଠୋରତା ଯୋଗୁଁ ତାଙ୍କ ପଦର ବ୍ୟଥା ହୋଇଅଛି କି ନାହିଁ ବିଷ୍ଣୁ ତାହା ପଚାରି ଭୃଗୁଙ୍କ ପଦସେବା କଲେ । ବିଷ୍ଣୁ ନିଜର ବକ୍ଷରେ ସେହିଦିନୁ ଭୃଗୁ ପଦାଘାତର ଚିହ୍ନ ଧାରଣ କରିଥିବା କଥିତ ହୁଏ । ଏହା ଦେଖି ଭୃଗୁ ସ୍ଥିର କଲେ ବିଷ୍ଣୁହିଁ ସର୍ବଶ୍ରେଷ୍ଠ ଦେବତା ।

(ଭାଷାକୋଷ)

ମହାଭାରତ ଅନୁଶାସନ ପର୍ବରେ ଏ ଉପାଖ୍ୟାନଟି ଭିନ୍ନ ରକମର । ଟୀଣଡାଭିଧାନରୁ ସେହି କଣ୍ଡିସ୍ଥିଟି ଉଦ୍ଧାର କରାଗଲା—ଭୃଗୁ ଜଣେ ବିଖ୍ୟାତ ମୁନି ଥିଲେ । ପ୍ରାଚୀନ କାଳରେ ରୁଦ୍ର ବାରୁଣୀ ମୂର୍ତ୍ତି ଧାରଣ କରି ଏକ ଯଜ୍ଞ ଅନୁଷ୍ଠାନ କଲେ । ଏହି ଯଜ୍ଞରେ ଦେବପତ୍ନୀ ଓ ଦେବ କନ୍ୟାମାନେ ସମବେତ ହୋଇଥିଲେ । ବ୍ରହ୍ମା ଯଜ୍ଞରେ ଦୀକ୍ଷିତ ହୋଇ ଆହୁତି ଦାନ କରୁଥିଲେ । ଦେବକନ୍ୟାମାନଙ୍କୁ ଦେଖି ବ୍ରହ୍ମା କାମାତୁର ହୋଇଥିଲେ ଏବଂ ତାଙ୍କର ରେତଃ ସ୍ଖଳିତ ହେଲା । ସୂର୍ଯ୍ୟ ଏହି ରେତଃକୁ କରଣ ଦ୍ୱାରା ଗ୍ରହଣ କରି ଅଗ୍ନିରେ ପକାଇଦେଲେ । ଏ ରେତଃ ଅଗ୍ନିରେ ପଡ଼ିବା ମାତ୍ରେ ଅଗ୍ନି ଶିଖାରୁ ଭୃଗୁ, ସଧୂମ ଅଙ୍ଗାରରୁ ଅଙ୍ଗିରା, ଓ ନିର୍ଧୂମ ଅଙ୍ଗାରରୁ କବିଙ୍କର ଉତ୍ପତ୍ତି ହେଲା । ସେତେବେଳେ ରୁଦ୍ର, ବାରୁଣୀ ମୂର୍ତ୍ତିଧାରୀ ହୋଇ କହିଲେ ଯେ ମୁଁ ଏ ଯଜ୍ଞର ଅନୁଷ୍ଠାତା ଥିବାରୁ ଏ ପୁତ୍ରଗୁଡ଼ିକ ମୋହର ବୋଲି ଜାଣ । ଅଗ୍ନି ପ୍ରତିବାଦ କରି କହିଲେ—ଯେତେବେଳେ ଏମାନେ ମୋତେ ଆଶ୍ରୟ କରି ମୋଠାରୁ ଉତ୍ପନ୍ନ ହୋଇଛନ୍ତି, ସେତେବେଳେ ଏଗୁଡ଼ିକ ମୋର ପୁତ୍ର । ବ୍ରହ୍ମା କହିଲେ ମୋ ରେତଃରୁ ଏମାନେ ଜନ୍ମିଥିବାରୁ ଏମାନେ ମୋର ପୁତ୍ର ହେବା ଉଚିତ । ଏହିପରି ତିନି ଦେବତା କଳହ କରନ୍ତେ ଦେବତାମାନଙ୍କ ମଧ୍ୟସ୍ଥରେ ତିନି ଜଣଙ୍କୁ ତିନିଗୋଟି ପୁତ୍ରଙ୍କୁ ବଣ୍ଟନ କରି ଦିଆଗଲା । ଭୃଗୁ ମହାଦେବଙ୍କର, ଅଙ୍ଗିରା ଅଗ୍ନିଙ୍କର, କବି ବ୍ରହ୍ମାଙ୍କର ପୁତ୍ର ହେଲେ ।

**ଭୈରବ**—ମହାଦେବଙ୍କ ଭୟାନକ ଅଷ୍ଟମୂର୍ତ୍ତି, ଯଥା—ଅସିତାଙ୍ଗ, ରୁରୁ, ଚଣ୍ଡ, କ୍ରୋଧ, ଉନ୍ମତ୍ତ, କୁପିତ, ଭୀଷଣ, ସଂହାର । ଯେଉଁ ସମୟରେ ଅନ୍ଧକ ରାକ୍ଷସ ସଙ୍ଗେ ମହାଦେବଙ୍କର ଯୁଦ୍ଧ ହେଲା ସେହି ସମୟରେ ଅନ୍ଧକର ଗଦା ବାଜି ମହାଦେବଙ୍କ ମୁଣ୍ଡ ଫାଟି ଚାରୁଡ଼ା ହୋଇଗଲା । ସେଥିରୁ ରକ୍ତ ଧାର ବହିଲା । ସେହି ରକ୍ତ ଧାରରୁ ପାଞ୍ଚଗୋଟି ଭୈରବ ଜନ୍ମିଲେ । କୌଣସି କୌଣସି ପୁରାଣ ମତରେ ଭୈରବ ସଂଖ୍ୟା ଆଠ । ଯଥା—ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ, ରୁରୁଭୈରବ, କାଳ ଭୈରବ, କ୍ରୋଧ ଭୈରବ, ତାମ୍ର-ଚୂଡ଼ ଭୈରବ, ଚନ୍ଦ୍ରଚୂଡ଼ ଭୈରବ । ତନ୍ତ୍ରରେ ଏମାନଙ୍କ ନାମ ଅସିତାଙ୍ଗ, ରୁରୁ, ଚଣ୍ଡ, କ୍ରୋଧ, ଉନ୍ମତ୍ତ, କପାଳ, ଭୀଷଣ ଓ ସଂହାର । ତାନ୍ତ୍ରିକମାନେ ଭୈରବମାନଙ୍କୁ ବଶିଷ୍ଟରୂପେ ଉପାସନା କରନ୍ତି । ଭୈରବମାନଙ୍କ ଉତ୍ପତ୍ତି ସମ୍ବନ୍ଧେ ପୀଠ ଦେଖ । (ହିନ୍ଦୀ ଶବ୍ଦସାଗର)

**ଭୈରବୀ**—ଭୈରବାନୁଚରୀ ଦେବୀ ବିଶେଷ । ଭୈରବୀଙ୍କର କେତେକ ମୂର୍ତ୍ତି

କଳ୍ପିତ ହୋଇଅଛୁ । ଯଥା—ତ୍ରିପୁର ଭୈରବୀ, କୌଳେଶ ଭୈରବୀ, ରୁଦ୍ର ଭୈରବୀ, ନିତ୍ୟା ଭୈରବୀ, ଚୈତନ୍ୟ ଭୈରବୀ । (ହିନ୍ଦୀ ଶବ୍ଦସାଗର)

**ଭୋଗବତୀ**—ପାତାଳ ଗଙ୍ଗାଙ୍କ ନାମାନ୍ତର । ଗଙ୍ଗାନଦୀ, କାର୍ତ୍ତିକେୟଙ୍କ ଏକ ମାତା । (ହିନ୍ଦୀ ଶବ୍ଦସାଗର)

**ଭୋଜ**—ବିଦର୍ଭ ଦେଶର ରାଜା । ଏହାଙ୍କ ଭଗିନୀ ଇନ୍ଦୁମତୀଙ୍କୁ ରଘୁବଂଶୀୟ ରାଜା ଅଜ ବିବାହ ହୋଇଥିଲେ । ରାଜା ଦଶରଥ ଏହି ଦମ୍ପତିର ସନ୍ତାନ (୨) ଶାନ୍ତିଦେବୀଙ୍କ ଗର୍ଭଜାତ ବସୁଦେବଙ୍କ ସନ୍ତାନ (ହିନ୍ଦୀ ଶବ୍ଦସାଗର) । (୩) ମାଳବ ଦେଶର ପ୍ରାଚୀନ ରାଜଧାନୀ, ଧାରା ନଗରୀ, ଭୋଜପୁରୀ, ଏହା ଖ୍ରୀଷ୍ଟୀୟ ଦଶମ ଓ ଏକାଦଶ ଶତାବ୍ଦୀରେ ସମୃଦ୍ଧିଶାଳୀ ଥିଲା । (୪) ଭୋଜ-ନଗରୀର ପ୍ରସିଦ୍ଧ ରାଜାଙ୍କ ନାମ ଭୋଜରାଜ । ଏ ଐନ୍ଦ୍ରଜାଲିକ ବିଦ୍ୟାରେ ବିଶେଷ ପାରଙ୍ଗମ ଥିଲେ ଓ ଏହାଙ୍କ କନ୍ୟା ଭାନୁମତୀ ଜଣେ ପ୍ରସିଦ୍ଧା କୁହୁକିନୀ ଥିଲେ । ଏହାଙ୍କ ସ୍ତ୍ରୀଙ୍କ ନାମ ଲୀଳାବତୀ । ସେ ମଧ୍ୟ ବିଦୁଷୀ ରମଣୀ ଥିଲେ । କାଳିଦାସ କବି ଏହାଙ୍କ ରାଜସଭାର ନବରତ୍ନ ବୋଲି ପ୍ରସିଦ୍ଧି ଲାଭ କରିଥିଲେ । ଏ ରାଜା ବେତାଳ ସାଧନ କରିଥିଲେ । ଏ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ଶେଷାଂଶ ବା ଏକାଦଶ ଶତାବ୍ଦୀର ପ୍ରଥମାଂଶରେ ରାଜତ୍ୱ କରୁଥିବାର ଅନୁମିତ ହୁଏ । ଏ ସଂସ୍କୃତ ବିଦ୍ୟାରେ ପଣ୍ଡିତ ଓ ଅନୁରାଗୀ ଥିଲେ । ଶୃଙ୍ଗାର ମଞ୍ଜରୀ, ଚମ୍ପୂରାମାୟଣ, ଚାରୁଚର୍ଯ୍ୟା, ସରସ୍ୱତୀ କଣ୍ଠାଭରଣ, ତତ୍ତ୍ୱପ୍ରକାଶ, ବ୍ୟବହାର ସମୁଚ୍ଚୟଆଦି ଗ୍ରନ୍ଥ ରଚନା କରିଥିଲେ ।

(ହିନ୍ଦୀ ଶବ୍ଦସାଗର)

**ଭ୍ରାମରୀ**—ଦୁର୍ଗାଙ୍କ ନାମାନ୍ତର । ଚଣ୍ଡୀପୁରାଣର ଏକାଦଶ ଅଧ୍ୟାୟ ୫୩-୫୪ ଶ୍ଳୋକରେ ଦେବୀ ସ୍ତବକାରୀ ଦେବତାମାନଙ୍କୁ କହୁଅଛନ୍ତି—ଯେଉଁ ସମୟରେ ଅରୁଣ ନାମକ ରାକ୍ଷସ ତ୍ରୈଲୋକ୍ୟରେ ମହା ବାଧା ସୃଷ୍ଟି କରିବ, ସେ ସମୟରେ ମୁଁ ଷଟ୍‌ପଦ ଭ୍ରମର ରୂପ ଧାରଣ କରି ତ୍ରୈଲୋକ୍ୟର ହିତ ନିମନ୍ତେ ଉକ୍ତ ମହାସୁରକୁ ବଧ କରିବି । ଲୋକେ ସର୍ବତଃ ମୋତେ ସେ ସମୟରେ ଭ୍ରାମରୀ ନାମରେ ସ୍ତବ କରିବେ । (ଭାଷାକୋଷ)



# ମ

**ମକର**—ପୁରାଣବର୍ଣ୍ଣିତ ଜଳଜନ୍ତୁ ବିଶେଷ । ଏ ଗଙ୍ଗାଙ୍କ ବାହନ ଓ କାମଦେବଙ୍କ ଧ୍ୱଜ । ପୁରାଣ ବର୍ଣ୍ଣନା ଅନୁସାରେ ଏହାର ଗୋଟିଏ ଶୁଣ୍ଢ ଅଛି । ଏହାର ମସ୍ତକ ଓ ଆଗ ଗୋଡ଼ଦ୍ୱୟ କୃଷ୍ଣସାର ମୃଗ ପରି ଓ ପୁଚ୍ଛ ମତ୍ସ୍ୟ ପରି । କେହି କେହି ଏହାକୁ କୁମ୍ଭୀର ବା ହାଙ୍ଗର କହନ୍ତି । ପ୍ରାଚୀନ କାଳର ଅଙ୍କିତ ଚିତ୍ରରେ ଓ ପ୍ରସ୍ତର ଖୋଦିତ ମୂର୍ତ୍ତିମାନଙ୍କରେ ଏହାର ଦେହ କୁମ୍ଭୀର ପରି ଓ ହାତୀ ପରି ଗୋଟିଏ ଶୁଣ୍ଢ ଏ ଉପରକୁ ଟେକିଥିବାର ଚିତ୍ରିତ ହୋଇଥାଏ । ଏ ଶବ୍ଦର ଅପଭ୍ରଂଶ ମଗର । (ଭାଷାକୋଷ)

**ମକରଧ୍ୱଜ**—(୧) କନ୍ଦର୍ପଙ୍କର ନାମାନ୍ତର । (୨) ହନୁମାନଙ୍କ ପୁତ୍ର ବିଶେଷ । (୩) ଆୟୁର୍ବେଦୀୟ ଔଷଧ ବିଶେଷ । ଏହା ବୈଦ୍ୟଶାସ୍ତ୍ର ଅନୁସାରେ ବୃଦ୍ଧ ଓ ରୁଗ୍ଣ ବ୍ୟକ୍ତିଙ୍କୁ ଯୁବକର ଶକ୍ତି ଓ ବଳଧାନ କରେ । ପ୍ରକ୍ରିୟାର ଭିନ୍ନତା ଓ ପୁଟର ସଂଖ୍ୟା ଅନୁସାରେ ଏହି ଔଷଧକୁ ରସସିନ୍ଦୁର, ସିଦ୍ଧ ମକରଧ୍ୱଜ, ଷଡ଼୍‌ଗୁଣ ବଳଜାରିତ ସିଦ୍ଧ ମକରଧ୍ୱଜ, ଚନ୍ଦ୍ରୋଦୟ ମକରଧ୍ୱଜ, ବୃହତ୍ ଚନ୍ଦ୍ରୋଦୟ ମକରଧ୍ୱଜ କୁହାଏ । ଅନୁମାନ ଅନୁସାରେ ଏହା ପ୍ରାୟ ଯାବତୀୟ ରୋଗରେ ପ୍ରୟୋଗ କରାଯାଏ । ବାଜୀକରଣ ଓ ଧ୍ୱଜଭଙ୍ଗ ରୋଗରେ ଏହା କବିରାଜମାନଙ୍କର ଗୋଟିଏ ପ୍ରଧାନ ପ୍ରୟୋଗ । ଶୋଧିତ ପାରଦ ଓ ଗନ୍ଧକ ସଙ୍ଗେ କଜ୍ଜଳୀସୁନା ମିଶାଇ ବୋତଲରେ ବନ୍ଦକରି ବୋତଲକୁ ବାଲିହାଣ୍ଡିରେ ପୋତି, ତଳଦେଇ ପର୍ଯ୍ୟନ୍ତ ଉକ୍ତ ହାଣ୍ଡିତଳେ ନିଆଁ ଜାଳି ଏହା ପ୍ରସ୍ତୁତ କରାଯାଏ । ଉତ୍ତାପ ଦ୍ୱାରା ପାରାର ଓ ଗନ୍ଧକର କେତେକ ଅଂଶ ବାଷ୍ପରୂପେ ଉଡ଼ିଯାଏ ଓ ବାକି ପାରା ଓ ଗନ୍ଧକ ମିଶିଯାଇ ବୋତଲର ବେକ ପାଖରେ ଲାଗିରହେ. କନ୍ତୁ ସୁନାଟିକ ପେନ୍ଦପରି ରହିଥାଏ । ସ୍ୱର୍ଣ୍ଣର ରାସାୟନିକ ସାହାଯ୍ୟ ବା ଉପସ୍ଥିତି ଦ୍ୱାରା ପାରା ଓ ଗନ୍ଧକ ଏହି ରୂପ ଧାରଣ କରେ । ଅଧିକାଂଶ ଗନ୍ଧକ ବାଷ୍ପରୂପେ ଉଡ଼ିଯାଏ । ଏହାର ଅନ୍ୟ ନାମ ଚନ୍ଦ୍ରୋଦୟ ମକରଧ୍ୱଜ । (ଭାଷାକୋଷ)

**ମଘ**—ପୌରାଣିକ ଭୂଗୋଳ ଅନୁସାରେ ମ୍ଳେଚ୍ଛାଧିଷ୍ଠିତ ଦ୍ୱୀପ ବିଶେଷ ଓ ତଦ୍ଦେଶବାସୀ । (ଭାଷାକୋଷ)

**ମଙ୍ଗନକ**—ମହାଭାରତୋକ୍ତ କୁରୁକ୍ଷେତ୍ରର ଦ୍ୱାରପାଳ ଯକ୍ଷ ବିଶେଷ । ଭକ୍ତକବି କୃଷ୍ଣସିଂହ ବର୍ଣ୍ଣନା ଦେଇଅଛନ୍ତି—

କୁରୁକ୍ଷେତ୍ରରେ ମଙ୍ଗନକ ଦ୍ୱାରପାଳ
ଅଛନ୍ତି ନମଇଁ ସେ ତାଙ୍କ ପାଦତଳ ।

(ମହାଭାରତ, ବନପର୍ବ)

**ମଙ୍ଗଳଚଣ୍ଡିକା**—ଅଭୀଷ୍ଟ ସିଦ୍ଧି ପାଇଁ ମଙ୍ଗଳବାର ଦିନ ସ୍ତ୍ରୀମାନେ ଯେଉଁ ଚଣ୍ଡୀ ବା ଭଗବତୀଙ୍କ ପୂଜା କରନ୍ତି, ଏ ଦ୍ୱିଭୁଜା, ରକ୍ତ ପଦ୍ମାସନୀ, ଗୌରବର୍ଣ୍ଣା ଦେବୀ । ଧନୀ ସୌଦାଗରଙ୍କ ସ୍ତ୍ରୀ, ପ୍ରଥମେ ସ୍ତ୍ରୀମାନଙ୍କ ମଧ୍ୟରେ ଏ ପୂଜା ଚଳାଇଥିବା ବିଷୟ ବ୍ରତ କଥାରେ ଅଛି ।

**ମଙ୍ଗଳା**—ଭଗବତୀ ପାର୍ବତୀ ଓ ଦୁର୍ଗାଙ୍କ ନାମାନ୍ତର । ପୁରୀଜିଲ୍ଲା କାକଟପୁରସ୍ଥ ଦୁର୍ଗା ଠାକୁରାଣୀ । ଶୂଦ୍ରମୁନି ଶାରଳା ତାଙ୍କ କୃତ ଚଣ୍ଡୀପୁରାଣରେ ମଙ୍ଗଳାଙ୍କ ଉତ୍ପତ୍ତି ବିଷୟରେ ଗୋଟିଏ ସୁନ୍ଦର ଉପାଖ୍ୟାନ ଲେଖିଅଛନ୍ତି । ମହିଷାସୁର ସହିତ ଦୁର୍ଗା ଯୁଦ୍ଧ କରି କରି ହାଲିଆ ହୋଇଗଲେ । ଦୁର୍ଦ୍ଦାନ୍ତ ରାକ୍ଷସ ତାଙ୍କୁ ସମୁଦ୍ର ଭିତରକୁ ନେଇ ବୁଡ଼ାଇ ମାରଦେବ ବୋଲି ବିଚାରିଲା । ମଝି ସମୁଦ୍ରରେ ଦୁର୍ଗା ଉବେଇଟୁବେଇ ହୋଇ ଏକ ଦୀର୍ଘନିଶ୍ୱାସ ଛାଡ଼ିଲେ । ସେହି ନିଶ୍ୱାସରୁ ଜନ୍ମିଲେ ମଙ୍ଗଳା । ସେ ଏକ ପାଖ ଧରି ଦୁର୍ଗାଙ୍କ ସହିତ ମହିଷାସୁରକୁ ଉପରକୁ ଟାଣି ଆଣିଲେ । ଦୁର୍ଗା ଆଶ୍ୱସ୍ତ ହୋଇ କହିଲେ—ତୁମେ ମୋର ଏ ଘୋର ବିପତ୍ତିବେଳେ ମଙ୍ଗଳ ସାଧନ କରିଛ । ତେଣୁ ତୁମ୍ଭର ନାମ ଆଜିଠାରୁ ମଙ୍ଗଳା ହେଉ । ତୁମେ ଗ୍ରାମେ ଗ୍ରାମେ ରହି ପୂଜା ପାଉଥାଅ ।

**ମଣିକର୍ଣ୍ଣିକା**—କାଶୀସ୍ଥ ତୀର୍ଥସ୍ଥାନ ଓ ଗଙ୍ଗାନଦୀର ଗୋଟିଏ ଘାଟ । ଏହି ସ୍ଥାନରେ ଶିବଙ୍କ ମଣିମୟ କର୍ଣ୍ଣଭୂଷଣ ଖସିପଡ଼ିଥିବାରୁ ଏହି ନାମକରଣ ହୋଇଅଛି । କାଶୀଖଣ୍ଡରେ ବର୍ଣ୍ଣିତ ହୋଇଅଛି ଯେ ଚନ୍ତାମଣି ମହାଦେବ ଏହି ସ୍ଥାନରେ ମୁମୂର୍ଷୁ ସାଧୁପୁରୁଷଙ୍କ କର୍ଣ୍ଣରେ ତାରକବ୍ରହ୍ମ ନାମ ଦେଇ ସେମାନଙ୍କୁ ଉଦ୍ଧାର କରନ୍ତି ବୋଲି ଏହିପରି ନାମକରଣ ହୋଇଅଛି । ଏହି ତୀର୍ଥ ବିଷ୍ଣୁଙ୍କ ସୁଦର୍ଶନ ଦ୍ୱାରା ନିଖାତ ହୋଇଥିବାରୁ ଚକ୍ର ପୁଷ୍କରଣୀ ନାମରେ ଖ୍ୟାତ । ଏଠାରେ ମଣିକର୍ଣ୍ଣିକେଶ୍ୱର ଶିବ ମନ୍ଦିର ଓ ବିଷ୍ଣୁଙ୍କ ପାଦୁକା ଅଛି । ଏହି ମଣିକର୍ଣ୍ଣିକା ଘାଟ ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ । ଏଠାରେ ଥିବା ଶ୍ମଶାନରେ ଅଗ୍ନି ପ୍ରାୟ ଲିଭେନାହିଁ । ଏହି ଶ୍ମଶାନରେ ଦାହହେବା

ନମିତ୍ତ ୪୦।୫୦ କୋଶ ଦୂରରୁ ଲୋକେ ଶବମାନ ଏଠାକୁ ବହି ଆଣନ୍ତି । ଦିବାରାତ୍ରି ଶବଦାହୀ ଲୋକଙ୍କର ସ୍ରୋତ ଏଠାରେ ଲାଗିଥାଏ । କାଶୀରେ ମୃତ ହୋଇ ଏହି ଘାଟରେ ମୃତବ୍ୟକ୍ତିର ଶବଦାହ ହେଲେ ମୁକ୍ତି ଲାଭ ହୁଏ । ଏହି ବିଶ୍ୱାସରେ ବହୁଶତ ହିନ୍ଦୁ ମୃତ୍ୟୁ ପ୍ରତୀକ୍ଷାରେ ଏହି ତୀର୍ଥ ନିକଟରେ କାଶୀବାସ କରନ୍ତି । ମୃତ୍ୟୁ ପୂର୍ବରୁ ମଧ୍ୟ ଅନେକ ମୁମୂର୍ଷୁ ବ୍ୟକ୍ତିଙ୍କୁ ଏଠାକୁ ଅଣାଯାଇଥାଏ । ଏହି ଘାଟକୁ ଯେଉଁ ରାସ୍ତାଦେଇ ଯିବାକୁ ହୁଏ ସେହି ରାସ୍ତା ପ୍ରାୟ ଦିବାରାତ୍ରି ଶବଦାହୀମାନଙ୍କର 'ରାମନାମ ସତ୍ୟ ହେ' ଧ୍ୱନିରେ ମୁଖରିତ ହେଉଥାଏ । ଏହି ଶ୍ମଶାନ ଉପର୍ଯ୍ୟୁପରି ତଳ (ମହଲା) ଯୁକ୍ତହୋଇ ଏପରି ନିର୍ମିତ ହୋଇଅଛି ଯେ ଗଙ୍ଗାନଦୀର ଜଳ ବଢ଼ିଲେ ମଧ୍ୟ ଜଳ୍ପ ତଳ ଭାଗକୁ ପ୍ଲାବିତ କଲେ ସୁଦ୍ଧା ସେହି ଜଳକୁ ଲାଗିଥିବା ମହଲାରେ ଶବଦାହ କରାଯାଏ । ଶବଦାହ ପରେ ଚିତା ଭସ୍ମକୁ ଗଙ୍ଗାଜଳ ଦ୍ୱାରା ଧୌତକରି ସେ ସ୍ଥାନ ପରିଷ୍କୃତ କରାଯାଇ ସେହି ସ୍ଥାନରେ ଅନ୍ୟ ଶବଦାହ କରାଯାଏ । ଏହି ଘାଟରେ ସ୍ନାନ କରି ପିତୃଲୋକଙ୍କୁ ପିଣ୍ଡଦେବା ନିମନ୍ତେ ପ୍ରତ୍ୟହ ଲକ୍ଷ ଲକ୍ଷ ଯାତ୍ରୀ ଏଠାରେ ଭୁଣ୍ଡ ହୁଅନ୍ତି । (ଭାଷାକୋଷ)

**ମଣିକୂଟ**—ଏକ ପର୍ବତର ନାମ, ପର୍ବତ ବିଶେଷ । ପୁରାଣ ମତରେ ଆସାମର କାମରୂପ ନିକଟରେ ଏହା ଅବସ୍ଥିତ । (ହିନ୍ଦୀ ଶବ୍ଦସାଗର)

**ମଣିଗ୍ରୀବ**—ଧନପତି କୁବେରଙ୍କ ପୁତ୍ର ।

**ମଣିଚୂଡ**—ସର୍ପ ରୂପରେ ଜନ୍ମ ହୋଇଥିବା ଅଭିଶପ୍ତ ଇନ୍ଦ୍ରପୁତ୍ର ସୁଦର୍ଶନ । ସେ ନନ୍ଦଙ୍କୁ ଗିଳିବାରୁ ଶ୍ରୀକୃଷ୍ଣ ତା ମସ୍ତକରେ ପାଦ ପ୍ରହାର କରି ନନ୍ଦଙ୍କୁ ଉଦ୍ଧାର କରିଥିଲେ ଓ ମଣିଚୂଡକୁ ମୋକ୍ଷ ପ୍ରଦାନ କଲେ । (ଭାଗବତ, ଭାଷାକୋଷ)

**ମଣିଦ୍ୱୀପ**—କ୍ଷୀର ସମୁଦ୍ର ମଧ୍ୟସ୍ଥ ପୌରାଣିକ ଦ୍ୱୀପ ବିଶେଷ । ଏହା ତ୍ରିପୁରସୁନ୍ଦରୀ ଦେବୀଙ୍କ ନିବାସସ୍ଥାନ ଥିବାର ପୁରାଣରେ ବର୍ଣ୍ଣିତ ହୋଇଅଛି ।

(ହିନ୍ଦୀ ଶବ୍ଦସାଗର)

**ମଣିନାଗ**—ସ୍ୱର୍ଗ ଜିଲ୍ଲା ରଣପୁର ଗଡ଼ଜାତର ସ୍ୱନାମଧେୟ ପର୍ବତ ଓ ସେହି ଶିଖରରେ ଅଧିଷ୍ଠିତ ଦେବୀଙ୍କ ନାମ ।

**ମଣିମାନ୍**—କୁବେରଙ୍କ କର୍ମସଚିବ । ମୋହ ବଶତଃ ମହର୍ଷି ଅଗସ୍ତିଙ୍କ ମସ୍ତକରେ ଛେପ ପକାଇବାରୁ ମୁନି ଏହାଙ୍କୁ ମନୁଷ୍ୟ ଦ୍ୱାରା ନିହତ ହେବା ଲାଗି ଅଭିଶାପ

ଦେଇଥିଲେ । ଗନ୍ଧମାଦନ ପର୍ବତରେ ଥିବାବେଳେ ତୃତୀୟ ପାଣ୍ଡବ ଭୀମ ଏହାଙ୍କୁ ବଧ କଲେ । (ମହାଭାରତ)

**ମତ୍ସ୍ୟ**—ବିଷ୍ଣୁଙ୍କ ପ୍ରଥମ ଅବତାର । ଭାଗବତରେ ଲେଖା ଅଛି ଯେ ପ୍ରଳୟ କାଳରେ ଭୂ ପ୍ରଭୃତି ସମସ୍ତ ଲୋକ ଜଳରେ ନିମଗ୍ନ ହୋଇଥିଲା । ମହା ସମୁଦ୍ରରେ ଶୟାନ ବିଧାତାଙ୍କ ମୁଖରୁ ବେଦସକଳ ନିର୍ଗତ ହେଉଥିଲା । ହୟଗ୍ରୀବ ସେହି ସକଳ ବେଦ ହରଣ କରିଥିଲେ । ଭଗବାନ ବିଷ୍ଣୁ ଏହା ଅବଗତ ହୋଇ ବେଦର ଉଦ୍ଧାର ନିମିତ୍ତ ମତ୍ସ୍ୟରୂପ ଧାରଣ କରିଥିଲେ । ଏକଦା ବିବସ୍ୱାନଙ୍କ ପୁତ୍ର ସତ୍ୟବ୍ରତ ନାମକ ରାଜର୍ଷି ନଦୀରେ ତର୍ପଣ କରୁଥିବା ବେଳେ ଏ ସମୟରେ ଏକ କ୍ଷୁଦ୍ର ଶଫରୀ ତାହାଙ୍କ ଅଞ୍ଜଳିକୁ ଉଠି ଆସିଲା । ସତ୍ୟବ୍ରତ ତାହାକୁ ଜଳରେ ନିକ୍ଷେପ କଲେ । ଶଫରୀ ମନୁଷ୍ୟ ପରି ତାଙ୍କୁ କହିଲା—'ମକର ନକ୍ରାଦି ଦୁଷ୍ଟ ଜଳଚରମାନଙ୍କ ଭୟ ଯୋଗେ ମୁଁ ଆପଣଙ୍କ ଅଞ୍ଜଳି ଆଶ୍ରୟରେ ରହିଛି । ମାତ୍ର ଆପଣ ପୁନରାୟ ମୋତେ ସେହିମାନଙ୍କ କବଳରେ ପକାଇ ଦେବାକୁ ଇଚ୍ଛା କରୁଛନ୍ତି । ତେଣୁ ମୋର ବିନୀତ ଅନୁରୋଧ ଆପଣ ମୋତେ ଏକ ନିରାପଦ ସ୍ଥାନରେ ନେଇ ରଖନ୍ତୁ ।' ଭଗବାନ ଯେ ମତ୍ସ୍ୟରୂପ ଧାରଣ କରିଛନ୍ତି ଏ କଥା ସତ୍ୟବ୍ରତ ଜାଣି ନ ପାରିଲେ ମଧ୍ୟ ମତ୍ସ୍ୟଟିକୁ ଗୋଟିଏ କଳସୀ ମଧ୍ୟରେ ରଖିଲେ । କିଛିକ୍ଷଣ ପରେ ସେହି ମତ୍ସ୍ୟ ବୃହଦାକାର ହୋଇ କଳସୀର ସମୁଦାୟ ଅଂଶ ଅଧିକାର କଲା । ତା'ପରେ ସତ୍ୟବ୍ରତ ମତ୍ସ୍ୟର ଅନୁରୋଧରେ ତାକୁ ଏକ ସରୋବରକୁ ନେଇଗଲେ । ମତ୍ସ୍ୟଟି କ୍ରମେ ବୃଦ୍ଧିପାଇ ସେହି ସରୋବରଟିକୁ ଅଧିକାର କରିନେଲା । ତା'ପରେ ସତ୍ୟବ୍ରତ ନିକଟବର୍ତ୍ତୀ ଏକ ହ୍ରଦକୁ ମତ୍ସ୍ୟଟିକୁ ନେଇ ଗଲେ । କିଛି ସମୟ ପରେ ମତ୍ସ୍ୟଟି ହ୍ରଦ ଆକାର ଧରିଲା । ତା'ପରେ ସତ୍ୟବ୍ରତ ତାକୁ ନିକଟସ୍ଥ ସମୁଦ୍ରରେ ନେଇ ନିକ୍ଷେପ କଲେ । ସେହିଠାରେ ମତ୍ସ୍ୟରୂପୀ ବିଷ୍ଣୁ ସତ୍ୟବ୍ରତଙ୍କୁ ନିଜର ପରିଚୟ ଦେଲେ ଓ କହିଲେ ଆଜିଠାରୁ ସାତଦିନ ମଧ୍ୟରେ ତ୍ରିଭୁବନ ପ୍ରଳୟ ପୟୋଧି ଜଳରେ ନିମଗ୍ନ ହେବ । ମୁଁ ସେତେବେଳେ ଗୋଟିଏ ନୌକା ତୁମ ନିକଟକୁ ପଠାଇବି । ତୁମ୍ଭେ ସେହି ନୌକାରେ ଯାବତୀୟ ଔଷଧି, କ୍ଷୁଦ୍ର ବୃହତ୍ ବୀଜ ଏବଂ ସମୁଦାୟ ପ୍ରାଣୀଙ୍କୁ ନେଇ ସପ୍ତର୍ଷିଗଣଙ୍କ ସହିତ ସେହି ନୌକାରେ ଆଶ୍ରୟ ନେବ । ଯେବେ ପ୍ରଚଣ୍ଡ ପବନ ନୌକାଟିକୁ ଆନ୍ଦୋଳିତ କରିବ ସେତେବେଳେ ମୁଁ ତୁମ ନିକଟରେ ପହଞ୍ଚିବି । ତୁମେ ମହାସର୍ପରୂପୀ ରଜ୍ଜୁ ଦ୍ୱାରା ଏହି ନୌକାଟିକୁ ମୋ ସହିତ ବନ୍ଧନ କରିବ । ଯେଉଁ ପର୍ଯ୍ୟନ୍ତ ବ୍ରହ୍ମାଙ୍କର ନିଶାବସାନ ନ ହୋଇଥିବ, ସେତେବେଳଯାଏ ମୁଁ ନୌକାଟିକୁ

ଆକର୍ଷଣ କରି ତୁମ ସହିତ ସମୁଦ୍ରରେ ବିଚରଣ କରୁଥିବି । ବିଷ୍ଣୁ ଏହି କଥା କହି ଅନ୍ତର୍ହିତ ହେଲେ । ଅନନ୍ତର ସାତଦିନ ପରେ ମତ୍ସ୍ୟରୂପୀ ବିଷ୍ଣୁଙ୍କ କଥା ଅନୁସାରେ ପ୍ରଳୟାଦି ବ୍ୟାପାର ଘଟିଲା । ସତ୍ୟବ୍ରତ ଦେଖିଲେ ଏକ ସୁବୃହତ୍ ନୌକା ତାଙ୍କ ନିକଟରେ ଉପସ୍ଥିତ ହେଲା । ସେ ଯାବତୀୟ ଔଷଧ, ବୀଜ ଓ ସପ୍ତର୍ଷିଙ୍କୁ ଧରି ନୌକାରୋହଣ କଲେ । ଅନନ୍ତର ମହାସାଗର ଗର୍ଭରେ ଅଯୁତ ଯୋଜନ ବିସ୍ତୃତ ଏକ ସ୍ୱର୍ଣ୍ଣମୟ ମତ୍ସ୍ୟ ଆବିର୍ଭୂତ ହେଲା । ରାଜର୍ଷି ସତ୍ୟବ୍ରତ ଏକ ସର୍ପରଜ୍ଜୁ ଦ୍ୱାରା ମତ୍ସ୍ୟ ଶୃଙ୍ଗରେ ନୌକାଟିକୁ ବନ୍ଧନ କରିଦେଲେ । ଏତିକିବେଳେ ମତ୍ସ୍ୟରୂପୀ ବିଷ୍ଣୁ ସତ୍ୟବ୍ରତଙ୍କୁ ତତ୍ତ୍ୱଜ୍ଞାନ ଉପଦେଶ ଦେଲେ । ରାଜା ସତ୍ୟବ୍ରତ ନୌକାରେ ବସି ସପ୍ତର୍ଷିଙ୍କ ସହିତ ଭଗବାନଙ୍କ ମୁଖରୁ ତତ୍ତ୍ୱଜ୍ଞାନ ଓ ସନାତନ ବେଦ ଶ୍ରବଣ କଲେ । ଅନନ୍ତର ପ୍ରଳୟ ଅବସାନ ପରେ ମତ୍ସ୍ୟରୂପୀ ବିଷ୍ଣୁ ହୟଗ୍ରୀବକୁ ସଂହାର କରି ବ୍ରହ୍ମାଙ୍କୁ ବେଦ ପ୍ରତ୍ୟର୍ପଣ କଲେ । ରାଜର୍ଷି ସତ୍ୟବ୍ରତ ବିଷ୍ଣୁଙ୍କ ଅନୁଗ୍ରହରୁ ବୈବସ୍ୱତ ମନୁ ନାମରେ ପ୍ରସିଦ୍ଧ ହେଲେ ।

ମହାଭାରତରେ ମତ୍ସ୍ୟାବତାର ସମ୍ବନ୍ଧୀୟ କିମ୍ବଦନ୍ତି ପ୍ରାପ୍ତ ଏହିପରି । ଏଥିରେ ଲକ୍ଷିତ ହୋଇଅଛି ବୈବସ୍ୱତ ମନୁ ମତ୍ସ୍ୟଟିକୁ କ୍ରମେ କ୍ରମେ କ୍ଷୁଦ୍ର କ୍ଷୁଦ୍ର ଜଳାଶୟରୁ ଗଙ୍ଗାରେ ନେଇ ନିକ୍ଷେପ କଲେ ଏବଂ ସେହିଠାରୁ ସମୁଦ୍ରକୁ ନେଇଗଲେ । ଏହି ପ୍ରକାଣ୍ଡ ମତ୍ସ୍ୟ ବୋହିନେବା ପାଇଁ ତାଙ୍କୁ ଆଦୌ କଷ୍ଟ ହୋଇନଥିଲା । ଏଥିରେ ଲେଖା ଅଛି ଯେ ମନୁ ମତ୍ସ୍ୟରୂପୀ ବିଷ୍ଣୁଙ୍କ ଆଦେଶ-କ୍ରମେ ମହାପ୍ରଳୟ ପୂର୍ବରୁ ଏକ ନୌକା ନିର୍ମାଣ କରି ରଖିଥିଲେ । ଏହି ନୌକା ପ୍ରଳୟ ଜଳରେ ଭାସମାନ ହେବା ପରେ ବିଷ୍ଣୁ ଏକ ଶୃଙ୍ଗଧାରୀ ମତ୍ସ୍ୟରୂପେ ନୌକା ନିକଟକୁ ଆସିଲେ । ମନୁ ଏକ ରଜ୍ଜୁ ଦ୍ୱାରା ଏହି ନୌକାଟିକୁ ମତ୍ସ୍ୟରୂପୀ ବିଷ୍ଣୁଙ୍କ ଶୃଙ୍ଗରେ ବନ୍ଧନ କଲେ । ମନୁ କେବଳ ସପ୍ତର୍ଷିମାନଙ୍କ ସହିତ ନାନାପ୍ରକାର ଉଦ୍ଭିଦବୀଜ ଧରି ନୌକାରୋହଣ କରିଥିଲେ । ଅନ୍ୟ କୌଣସି ପ୍ରାଣୀ ତାଙ୍କ ସଙ୍ଗରେ ନ ଥିଲେ । ବହୁବର୍ଷ ଗତ ହେବା ପରେ ମନୁ ମତ୍ସ୍ୟର ଆଦେଶରେ ହିମାଳୟ ଶୃଙ୍ଗରେ ଏହି ନୌକା ବନ୍ଧନ କଲେ । ଅଦ୍ୟାପି ଏହି ଶୃଙ୍ଗ 'ନୌକାବନ୍ଧନ ଶୃଙ୍ଗ' ନାମରେ ବିଖ୍ୟାତ । (ମହାଭାରତ, ବନପର୍ବ) ମତ୍ସ୍ୟାବତାର ସତ୍ୟଯୁଗର ଘଟଣା । ଏହି ଅବତାରରେ ନାଭିର ଅଧୋଦେଶ ରୋହିତ ମତ୍ସ୍ୟ ତୁଲ୍ୟ ଏବଂ ଆକଣ୍ଠ ମନୁଷ୍ୟାକାର, ବର୍ଣ୍ଣ ଶ୍ୟାମ, ବାହୁ ଚାରିଗୋଟି, ଚାରିବାହୁ ଶଙ୍ଖ,

ଚକ୍ର, ଗଦା, ପଦ୍ମ ସୁଶୋଭିତ, ମସ୍ତକ ଶୃଙ୍ଗଧାରୀ ମତ୍ସ୍ୟ ତୁଳ୍ୟ, ବକ୍ଷ ତଳରେ ଲକ୍ଷ୍ମୀ ବିରାଜିତ, ସର୍ବାଙ୍ଗରେ ପଦ୍ମ ଚିହ୍ନ ।

**ମତ୍ସ୍ୟଗନ୍ଧା**—ରାଜା ଉପରିଚରଙ୍କ କନ୍ୟା । ଏହି ରାଜାଙ୍କର ଅପର ନାମ ବସୁ । ଏହି ରାଜା କଠୋର ତପସ୍ୟା କରିଥିଲେ । ଦେବରାଜ ଇନ୍ଦ୍ର ଏହାଙ୍କ ଉଗ୍ର ତପସ୍ୟାରେ ଭୀତ ହୋଇଥିଲେ । ଇନ୍ଦ୍ରଙ୍କ ଅନୁରୋଧକ୍ରମେ ସେ ତପସ୍ୟାରୁ ପ୍ରତିନିବୃତ୍ତ ହେଲେ । ଦେବରାଜ ତାହାଙ୍କୁ ସ୍ଫଟିକମୟ ଆକାଶଗାମୀ ରଥ ଓ ବୈଜୟନ୍ତୀ ମାଳା ଦେଇଥିଲେ । ବସୁଙ୍କ ପତ୍ନୀଙ୍କ ନାମ ଗିରିକା । ମୃଗୟା କାଳରେ କାମପୀଡ଼ିତ ବସୁଙ୍କର ରେତଃ ସ୍ଖଳିତ ହେଲା । ବସୁରାଜ ଏକ ଶ୍ୟେନ ପକ୍ଷୀ ଦ୍ୱାରା ଏହି ରେତଃ ରାଣୀଙ୍କ ନିକଟକୁ ପ୍ରେରଣ କଲେ ମାତ୍ର ପଥ ମଧ୍ୟରେ ଶ୍ୟେନ ଅନ୍ୟ ଶ୍ୟେନ ଦ୍ୱାରା ଆକ୍ରମିତ ହୋଇ ରେତଃକୁ ଯମୁନା ନଦୀରେ ପକାଇଦେଲା । ଆଦ୍ରିକା ଅପ୍‌ସରା ଶାପଯୋଗେ ମତ୍ସ୍ୟ ହୋଇ ଯମୁନାରେ ଥିଲା । ସେହି ମତ୍ସ୍ୟ ଏହି ରେତଃକୁ ପାନ କଲା । ମତ୍ସ୍ୟ ଗର୍ଭବତୀ ହେଲା । କେଉଟମାନେ ଏ ମାଛଟିକୁ ଧରି ନେଇ ରାଜା ବସୁଙ୍କୁ ଅର୍ପଣ କଲେ । ଏହି ମତ୍ସ୍ୟ ଗର୍ଭରୁ ଗୋଟିଏ ପୁଅ ଓ ଗୋଟିଏ ଝିଅ ଜନ୍ମିଲେ । ପୁତ୍ରଟି, ପରେ ମତ୍ସ୍ୟ ନାମ ଧାରଣ କରି ରାଜତ୍ୱ କରିଥିଲା । ବସୁ କନ୍ୟାଟିକୁ ଧୀବରମାନଙ୍କ ହସ୍ତରେ ଅର୍ପଣ କଲେ । ଏ କନ୍ୟାର ଦେହ ମାଛ ପରି ଗନ୍ଧାଉ ଥିବାରୁ ଏହାକୁ ମତ୍ସ୍ୟଗନ୍ଧା ବୋଲାଯାଉଥିଲା । (ପରାଶର ଦେଖ)

**ମତ୍ସ୍ୟଦେଶ**—ପ୍ରାଚୀନ ବିରାଟ ଦେଶର ଅନ୍ୟ ଏକ ନାମ । ଆଧୁନିକ ରାଜପୁତାନାର ଜୟପୁର । କେତେକ ଲେଖକଙ୍କ ମତ ବର୍ତ୍ତମାନ ଦିନାଜପୁର ଓ ରଙ୍ଗପୁରଦ୍ୱୟ ପ୍ରାଚୀନକାଳର ମତ୍ସ୍ୟଦେଶ । କେତେକ ଲୋକ ଏହାକୁ ପ୍ରାଚୀନ ପାଞ୍ଚାଳଦେଶର ଅନ୍ତର୍ଗତ ବୋଲି କହନ୍ତି (ହି. ଶ) । କେହି କେହି ପ୍ରାଚୀନ ବିରାଟ ବା ମତ୍ସ୍ୟଦେଶକୁ ଉତ୍ତରବଙ୍ଗରେ ବଗୁଡ଼ାର ନିକଟରେ ଅବସ୍ଥିତ ଥିବାର କହନ୍ତି । (ସୁବଳଚନ୍ଦ୍ର ଓ ଜ୍ଞାନେନ୍ଦ୍ରଚନ୍ଦ୍ର) ମନୁସ୍ମୃତିରେ କୁରୁକ୍ଷେତ୍ର ଓ ପାଞ୍ଚାଳଦେଶ ସଙ୍ଗେ ମତ୍ସ୍ୟଦେଶର ଉଲ୍ଲେଖ ଅଛି । ଏଥିରୁ ଅନୁମିତ ହେଉଥିଲା ଯେ ଏହା ଥାନେଶ୍ୱର ନିକଟବର୍ତ୍ତୀ ଥିଲା । କିନ୍ତୁ ବର୍ତ୍ତମାନ ନିଶ୍ଚିତ ହୋଇଅଛି ଯେ ଅଲବର ଓ ଜୟପୁର ରାଜ୍ୟର ମଧ୍ୟବର୍ତ୍ତୀ ପ୍ରଦେଶ ମହାଭାରତ ସମୟରେ ମତ୍ସ୍ୟଦେଶ ବୋଲାଯାଉଥିଲା । ଉକ୍ତ ଅଞ୍ଚଳର ଅନ୍ତର୍ଗତ ବୈରାଟ ଓ ମାଚଡ଼ୀ ସ୍ଥାନଦ୍ୱୟ ଆଜି ପର୍ଯ୍ୟନ୍ତ ପ୍ରାଚୀନ ବିରାଟ ଓ ମତ୍ସ୍ୟଦେଶର ସ୍ମୃତି ଜାଗ୍ରତ କରୁଅଛନ୍ତି । (ହିନ୍ଦୀ ଶବ୍ଦସାଗର) ମରହଟ୍ଟୀ ପଣ୍ଡିତମାନଙ୍କଠାରୁ

ଓଡ଼ିଶା ମଧ୍ୟଦେଶ ଥିବା ଜଣାଯାଏ । କେହି କେହି ବିଶାଖାପାଟଣାକୁ ମଧ୍ୟଦେଶ ବୋଲି କହନ୍ତି । କିନ୍ତୁ ଏଥିରେ ଶାସ୍ତ୍ରୀୟ ପ୍ରମାଣର ଅଭାବ ଦେଖି ଏହା ଫାଙ୍କାକଥା ବୋଲି ଉଡ଼ାଇ ଦିଆଯାଉଛି । ମାତ୍ର ମୟୂରଭଞ୍ଜର ଖିଚକେଶ୍ୱରୀ ମନ୍ଦିରର ଇତିହାସ ଅନୁଧ୍ୟାନ କଲେ ବାଲେଶ୍ୱର ଓ ମୟୂର-ଭଞ୍ଜର କିୟଦଂଶ ବିରାଟ ରାଜ୍ୟ ଥିଲା ବୋଲି ଆମ୍ଭେମାନେ ଅନୁମାନ କରୁ ।

**ମତଙ୍ଗ**— ଋଷ୍ୟମୂକ ପର୍ବତସ୍ଥ ମୁନି ବିଶେଷ । କପିପତି ବାଳିଙ୍କ ଦ୍ୱାରା ଦୁନ୍ଦୁଭି ଅସୁର ନିହତ ହୋଇ ଦୂରକୁ ନିକ୍ଷିପ୍ତ ହୁଅନ୍ତେ ତାର ମୃତ ଦେହସ୍ଥ ରକ୍ତବିନ୍ଦୁ ଏହି ମୁନିଙ୍କ ଶରୀରରେ ପତିତ ହେଲା । ଏଥିରେ ମୁନି କ୍ରୁଦ୍ଧ ହୋଇ ଏଠାକୁ ବାଳି ଆସିଲେ ତାର ମୃତ୍ୟୁ ଘଟିବ ବୋଲି ଅଭିଶାପ ଦେଲେ । ସେହିଦିନଠାରୁ ବାଳି ଋଷ୍ୟମୂକ ପର୍ବତକୁ ଯାଉ ନ ଥିଲେ । ଏଥିଲାଗି ତଦୀୟ ଭ୍ରାତା ସୁଗ୍ରୀବ କିଷ୍କିନ୍ଧ୍ୟାରୁ ତାଡ଼ିତ ହୋଇ ବାଳି ଭୟରେ ସେହି ଋଷ୍ୟମୂକରେ ଆଶ୍ରୟ ନେଇଥିଲେ । (ରାମାୟଣ) ହିନ୍ଦୀ ଶବ୍ଦସାଗର ନିର୍ଣ୍ଣୟ ଦିଅନ୍ତି ଯେ ମତଙ୍ଗ ମହର୍ଷି ଶବରୀର ଗୁରୁ ଥିଲେ । ମହାଭାରତରେ ଅଛି ଯେ ଏକ ନାପିତର ବୀର୍ଯ୍ୟରୁ ଏ ବ୍ରାହ୍ମଣୀ ଗର୍ଭରେ ଜନ୍ମିଥିଲେ । ମତଙ୍ଗ ବୋଲି ଜଣେ ଦାନବ ମଧ୍ୟ ଥିଲେ । ପ୍ରାଚୀନ ହିନ୍ଦୁ ତୀର୍ଥର ନାମ ମଧ୍ୟ ମତଙ୍ଗ । କାମରୂପ ଦେଶର ଅଗ୍ନି କୋଣସ୍ଥ ପ୍ରାଚୀନ ଦେଶ ବିଶେଷକୁ ମଧ୍ୟ ମତଙ୍ଗ କହନ୍ତି ।

(ହିନ୍ଦୀ ଶବ୍ଦସାଗର)

**ମଥୁରା**— ଏହି ସ୍ଥାନରେ ଶତ୍ରୁଘ୍ନ ବାଣାସୁରର ପିତା ମଧୁ ନାମକ ଦୈତ୍ୟକୁ ବଧ କରିଥିବାରୁ ଏ ନଗରର ନାମ ହେଲା ମଥୁରା । ମଧୁଦୈତ୍ୟ ନିର୍ମିତ ଯମୁନା-ତଟସ୍ଥ ବୃନ୍ଦାବନ ନିକଟସ୍ଥ ନଗର । ମଧୁପୁର, କଂସ ରାଜଧାନୀ । ଏଠାରେ କଂସର ବନ୍ଦୀଶାଳାରେ ଦେବକୀଙ୍କ ଗର୍ଭରୁ କୃଷ୍ଣଙ୍କର ଜନ୍ମ ହୋଇଥିଲା । ପରେ ଏଠାରେ ସେ କଂସକୁ ବଧ କରିଥିଲେ ।

ଆର୍ଯ୍ୟ ଶୂରସେନ ଜାତି ଏଠାରେ ପ୍ରଥମେ ଉପନିବେଶ ସ୍ଥାପନ କରିଥିବାରୁ ଏହାର ନାମ ପ୍ରଥମେ ଶୂରସେନ ଥିଲା । ପରେ ଏହା ମଥୁରା ନାମରେ ଖ୍ୟାତ ହେଲା । ପାଲି ଗ୍ରନ୍ଥମାନଙ୍କରେ ଏହା ମଥୁରା ନାମରେ ପରିଚିତ । ଅଶୋକଙ୍କ ରାଜତ୍ୱକାଳରେ ତାଙ୍କର ଆଚାର୍ଯ୍ୟ ଉପଗୁପ୍ତ ଏ ନଗରକୁ ବୌଦ୍ଧଧର୍ମର ଏକ କେନ୍ଦ୍ର କରିଥିଲେ । ଏହା ମଧ୍ୟ ଜୈନମାନଙ୍କର ଏକ ତୀର୍ଥ । ହିନ୍ଦୁ ପୁରାଣ ମତରେ ଏହା ଏକ ମୋକ୍ଷଦାୟକ ତୀର୍ଥ । ମୌର୍ଯ୍ୟ

ସାମ୍ରାଜ୍ୟର ପତନ ପରେ ଗ୍ରୀକ୍, ପାରସୀ ଓ ଶକମାନେ ଏ ନଗରର ଅଧିକାର କରିଥିଲେ । ଖ୍ରୀଷ୍ଟାବ୍ଦ ୧୦୧୭ରେ ଗଜନୀର ସୁଲତାନ୍ ମହମ୍ମଦ (ମାମୁଦ୍) ଏ ନଗରକୁ ଆକ୍ରମଣ କରି ଏହାର ଧ୍ୱଂସ କରିଥିଲେ । ବର୍ତ୍ତମାନ ଉତ୍ତର ପ୍ରଦେଶର ଏହା ଗୋଟିଏ ଜିଲା ଏବଂ ନଗର । ଏହା ବୃନ୍ଦାବନଠାରୁ ୮ ମାଇଲ ଦୂରବର୍ତ୍ତୀ । ଯମୁନାନଦୀର ତଟ ଉପରେ ଏ ନଗରଟି ଅତ୍ୟନ୍ତ ଶୋଭାମୟ ଦେଖାଯାଏ । ଏଠାରେ ଅନେକ ବୈଷ୍ଣବ ଦେବମନ୍ଦିର ଅଛି । ଏଠାରେ ଏକ ସେନାନିବାସ ଏବଂ ବଡ଼ ରେଲ ଜଙ୍କସନ୍ ଅଛି । ଯମୁନା ଉପରେ ଏ ସ୍ଥାନରେ ଏକ ବଡ ପୋଲ ନିର୍ମିତ ହୋଇଅଛି । ଏହି ଅଞ୍ଚଳରେ ଯମୁନା ନଦୀରେ ବହୁ ସଂଖ୍ୟକ ବଡ଼ ବଡ଼ କଚ୍ଛପ ଦେଖାଯାନ୍ତି । ନଦୀତଟସ୍ଥ କୋଠାରେ ବସି ଯମୁନା ନଦୀର ଜଳକୁ ହାତ ବଢ଼ାଯାଇ ପାରେ ।

ଏଠାରେ ଚୌବେ ବ୍ରାହ୍ମଣମାନଙ୍କର ଭୋଜନଶକ୍ତି ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ଜଣେ ଜଣେ ଚୌବେ ୧୦।୧୨ ସେର ରୁଟି, ଡାଲି, ମିଷ୍ଟାନ୍ନାଦି ଭୋଜନ କରି ପାରନ୍ତି । (ଭାଷାକୋଷ)

**ମଦ୍ର**—ପଞ୍ଜାବ ଅନ୍ତର୍ଗତ ପ୍ରାଚୀନ ଦେଶ ବିଶେଷ । ଏହା ଇରାବତୀ ଓ ଚନ୍ଦ୍ରଭାଗା ନଦୀଦ୍ୱୟର ମଧ୍ୟରେ ଅବସ୍ଥିତ ଥିଲା । ଅଶ୍ୱପତି ଏ ଦେଶର ରାଜା । ସାବିତ୍ରୀ ଏହାଙ୍କ କନ୍ୟା । ମହାଭାରତ ଯୁଗରେ ଏ ରାଜ୍ୟ ଶଲ୍ୟଙ୍କ ଦ୍ୱାରା ଶାସିତ ହେଉଥିଲା ।

**ମଧୁ**—ବିଷ୍ଣୁଙ୍କ କର୍ଣ୍ଣ-ମୂଳରୁ ଜାତ ଦୈତ୍ୟ ବିଶେଷ । ଏ ପ୍ରଳୟ ପୟୋଧି ଶାୟୀ ବିଷ୍ଣୁଙ୍କ ନାଭିରୁ ବାହାରିଥିବା ପଦ୍ମ ମଧ୍ୟସ୍ଥ ବ୍ରହ୍ମାଙ୍କୁ ବଧ କରିବା ପାଇଁ ଉଦ୍ୟତ ହେବାରୁ ଏହାଙ୍କୁ ଓ ଏହାର ଭାଇ କୈଟଭକୁ ବିଷ୍ଣୁ ସଂହାର କରିଥିଲେ । ଏଥିପାଇଁ ବିଷ୍ଣୁଙ୍କର ଅନ୍ୟ ନାମ ମଧୁସୂଦନ । ଏହାର ମେଦରୁ ମେଦିନୀ ବା ପୃଥିବୀ ଜାତ ହେଲା । ଚଣ୍ଡୀ ବା ଦେବୀ ମହାତ୍ମ୍ୟର ପ୍ରଥମ ଅଧ୍ୟାୟରେ ମଧୁ କୈଟଭ ବଧ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି ।

(ଭାଷାକୋଷ ଓ ଚଣ୍ଡୀପୁରାଣ ବା ସପ୍ତଶତୀଚଣ୍ଡୀ)

(୨) ଯଦୁବଂଶୀୟ ଜଣେ ରାଜା । ଏହାଙ୍କ ନାମାନୁସାରେ ଏହାଙ୍କର ବଂଶଧରମାନେ ମାଧବ ନାମରେ ଖ୍ୟାତ ହୋଇଥିଲେ । (୩) ଜନୈକ ରାକ୍ଷସ ରାଜାଙ୍କ ନାମ ମଧ୍ୟ ମଧୁ ଥିଲା । ଏ ମଧୁର ନଗରୀକୁ ସ୍ଥାପନ କରିଥିବାରୁ ମଥୁରାର ଅନ୍ୟ ଏକ ନାମ ମଧୁପୁରୀ । ଏ ରାବଣର ମାଉସୀ-ଝିଅ ଭଉଣୀ କୁମ୍ଭୀନସୀକୁ

ହରଣ କରିବାରୁ ରାବଣ ମଧୁପୁରକୁ ଆକ୍ରମଣ କରିଥିଲେ । କିନ୍ତୁ କୁମ୍ଭୀନସୀର ଅନୁରୋଧକ୍ରମେ ମଧୁ ଓ ରାବଣ ମଧ୍ୟରେ ସନ୍ଧି ହେଲା । ଏ ରାକ୍ଷସ କଠୋର ତପସ୍ୟା ଦ୍ୱାରା ମହାଦେବଙ୍କଠାରୁ ଗୋଟିଏ ଅମୋଘଶୂଳ ପ୍ରାପ୍ତହୋଇ ଜଗଦ୍ଧ୍ୱଂସ କରିଥିଲେ । ଏହାର ପୁତ୍ରର ନାମ ଲବଣ ଓ କନ୍ୟାର ନାମ ମଧୁମତୀ । ସୂର୍ଯ୍ୟବଂଶୀୟ ରାଜା ହର୍ଯ୍ୟଶ୍ୱଙ୍କ ସଙ୍ଗେ ମଧୁମତୀର ବିବାହ ହୋଇଥିଲା । ଏ ରାକ୍ଷସ ସ୍ୱୀୟ ତପସ୍ୟା ଓ ପୁଣ୍ୟବଳରେ ବରୁଣଲୋକ ପ୍ରାପ୍ତ ହୋଇଥିବାର ପୁରାଣରେ ଲେଖା ହୋଇଅଛି । (ହିନ୍ଦୀ ଶବ୍ଦସାଗର, ସର୍ବସାରକୋଷ)

**ମଧୁମଙ୍ଗଳ**—ସାନ୍ଦୀପନି ମୁନିଙ୍କ ପୁତ୍ର । ଶ୍ରୀକୃଷ୍ଣଙ୍କ ସଖା ।

**ମନସା**—କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭଜାତ କନ୍ୟା । ଏ ଅନନ୍ତ ବା ବାସୁକି ନାଗଙ୍କ ଭଉଣୀ । ଏହାଙ୍କର ଅନ୍ୟ ନାମ ଜରତ୍କାରୁ । ଜରତ୍କାରୁ ଋଷି ଏହାଙ୍କୁ ବିବାହ ହୋଇଥିଲେ । ଆସ୍ତୀକ ଋଷି ଏହି ଦମ୍ପତିର ସନ୍ତାନ । ଏ ସର୍ପମାନଙ୍କଠାରୁ ମନୁଷ୍ୟଙ୍କୁ ରକ୍ଷା କରିବା ଦେବୀରୂପେ ପୂଜିତା ହୁଅନ୍ତି । ଏହାଙ୍କର ପ୍ରିୟ ବୃକ୍ଷ କଣ୍ଟାସିଜୁ । ବଙ୍ଗ ଦେଶରେ ଏହାଙ୍କର ପୂଜା ବିଶେଷରୂପେ ପ୍ରଚଳିତ । (ସର୍ବସାରକୋଷ)

**ମନୁ**—(୧) ବ୍ରହ୍ମାଙ୍କ ପୁତ୍ର । ଅନେକଙ୍କ ମତରେ ମନୁ ମନୁଷ୍ୟ ଜାତିର ଆଦି ପୁରୁଷ । ପ୍ରତି କଳ୍ପରେ ଚତୁର୍ଦ୍ଦଶ ମନୁଙ୍କ ଆବିର୍ଭାବ ହୁଏ । ଏମାନଙ୍କର ନାମ—ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ, ସାବର୍ଣ୍ଣି, ଦକ୍ଷସାବର୍ଣ୍ଣି, ବ୍ରହ୍ମସାବର୍ଣ୍ଣି, ଧର୍ମସାବର୍ଣ୍ଣି, ରୁଦ୍ରସାବର୍ଣ୍ଣି ଓ ଇନ୍ଦ୍ରସାବର୍ଣ୍ଣି । ବର୍ତ୍ତମାନ ସପ୍ତମ ମନୁ ବୈବସ୍ୱତଙ୍କ ଅଧିକାର ଚାଲୁଛି । ସପ୍ତମଠାରୁ ଚତୁର୍ଦ୍ଦଶ ମନୁଙ୍କ ଅଧିକାର ପରେ ଆସିବ । (ଶ୍ରୀମଦ୍‌ଭାଗବତ) ମତ୍ସ୍ୟପୁରାଣରେ ମନୁ-ଗୁଡ଼ିକର ନାମ ସ୍ୱତନ୍ତ୍ର । ପ୍ରଥମ ମନୁ ସ୍ୱାୟମ୍ଭୁବ, ଏ ବ୍ରହ୍ମା ଓ ଗାୟତ୍ରୀଙ୍କଠାରୁ ସମ୍ଭୂତ । ଦ୍ୱିତୀୟ ସ୍ୱାରୋଚିଷ, ତୃତୀୟ ଔତ୍ତମି, ଚତୁର୍ଥ ତାମସ, ପଞ୍ଚମ ରୈବତ, ଷଷ୍ଠ ଚାକ୍ଷୁଷ, ସପ୍ତମ ବୈବସ୍ୱତମନୁ, ଅଷ୍ଟମ ସାବର୍ଣ୍ଣିମନୁ, ନବମ ରୌଚ୍ୟ, ରୁଚି ଓ ପ୍ରଜାପତି ଏହାଙ୍କ ପିତା; ଦଶମ ଭୌତ୍ୟ; ଭୂତି ନାମକ ପ୍ରଜାପତିଙ୍କର ଏ ପୁତ୍ର । ଏକାଦଶ ମନୁ ମେରୁସାବର୍ଣ୍ଣି, (ବ୍ରହ୍ମାଙ୍କ ପୁତ୍ର), ଦ୍ୱାଦଶ ମନୁ ଋଭୁ, ତ୍ରୟୋଦଶ ମନୁ ଋତୁ ଧାମା, ଚତୁର୍ଦ୍ଦଶ ମନୁ ବିସ୍ୱକସେନ ।

(୨) କଶ୍ୟପଙ୍କ ପତ୍ନୀ । ରାମାୟଣ ମତରେ ମାନବଗଣଙ୍କର ଏ ଆଦିମାତା । ମାର୍କଣ୍ଡେୟପୁରାଣ ଓ ହରିବଂଶରେ ଏହି ପ୍ରଜାପତି ଋଷିଙ୍କର ତେରଗୋଟି ପତ୍ନୀ ଥିବା ଉଲ୍ଲେଖ ରହିଛି । ଏମାନଙ୍କ ମଧ୍ୟରେ ମନୁ

ଅନ୍ୟତମା । ବାଲ୍ମୀକିଙ୍କ ମତରେ କଶ୍ୟପ ପତ୍ନୀ ମନୁ ମାନବମାନଙ୍କର ଆଦିମାତା । କଶ୍ୟପ ପତ୍ନୀ ଦନୁଙ୍କଠାରୁ ଯେପରି ଦାନବ, ଦିତିଙ୍କଠାରୁ ଯେପରି ଦୈତ୍ୟ, ଅଦିତିଙ୍କଠାରୁ ଆଦିତ୍ୟ ବା ଦେବତା, ସେହିପରି ମନୁଙ୍କଠାରୁ ମାନବମାନେ ଉତ୍ପତ୍ତି ହୋଇଥିଲେ ।

ମନୁର୍ମନୁଷ୍ୟାନ୍ ଜନୟତ୍ କଶ୍ୟପସ୍ୟ ମହାତ୍ମନଃ
ବ୍ରାହ୍ମଣାନ୍ କ୍ଷତ୍ରିୟାନ୍ ବୈଶ୍ୟାନ୍ ଶୂଦ୍ରାଂଶ୍ଚ ମନୁଜର୍ଷଭ ।

(ରାମାୟଣ, ଅରଣ୍ୟ)

ଉପରୋକ୍ତ ଶ୍ଳୋକମାନଙ୍କରୁ ସ୍ପଷ୍ଟ ବୁଝାଯାଉଅଛି ଯେ କଶ୍ୟପ ପତ୍ନୀ ମନୁଙ୍କଠାରୁ ମାନବଗଣ ଜନ୍ମିଥିଲେ । ଆଉ ମଧ୍ୟ ଦେଖାଯାଉଅଛି ଯେ ଦାନବ, ମାନବ, ଆଦିତ୍ୟ (ଦେବତା) ପ୍ରଭୃତି ସମସ୍ତେ ଏକ ପିତାର ସନ୍ତାନ କିନ୍ତୁ ବିଭିନ୍ନ ମାତୃଗର୍ଭରୁ ପ୍ରସୂତ । ଏମାନେ ପରସ୍ପର ବୈମାତ୍ରେୟ ଭ୍ରାତା ।

(୩) ମାନବ ଧର୍ମଶାସ୍ତ୍ର ବା ମନୁସଂହିତାର ରଚୟିତା ମୁନିଙ୍କ ନାମ ମଧ୍ୟ ମନୁ । କେହି କେହି ଏହାଙ୍କୁ ବୈବସ୍ୱତ ମନୁ ବୋଲି କହନ୍ତି ।

(ଭାଷାକୋଷ)

**ମନୁସଂହିତା**—ମନୁ ପ୍ରଣୀତ ସ୍ମୃତିଶାସ୍ତ୍ର, ମାନବ ଧର୍ମଶାସ୍ତ୍ର । ଏ ଗ୍ରନ୍ଥ, ୧୪ ମନୁଙ୍କ ମଧ୍ୟରୁ ପ୍ରଥମ ସ୍ୱାୟମ୍ଭୁବ ମନୁଙ୍କ ଦ୍ୱାରା ସଙ୍କଳିତ ବୋଲି ଅନୁମିତ ହୋଇଥିଲେ ମଧ୍ୟ ପଣ୍ଡିତମାନଙ୍କ ମତରେ ଏହା ଭୃଗୁଙ୍କ ରଚିତ । ମନୁ ଓ ପରାଶରଙ୍କ ମଧ୍ୟରେ ମନୁ ପ୍ରାଚୀନ ଓ ପରାଶର ପରବର୍ତ୍ତୀ । ମନୁସଂହିତାରେ ସତ୍ୟଯୁଗର ଧର୍ମ ଏବଂ ପରାଶରରେ କଳିଯୁଗର ଧର୍ମ ବ୍ୟକ୍ତ ହୋଇଅଛି । ମନୁସଂହିତାରେ ବାରଗୋଟି ଅଧ୍ୟାୟରେ ଅଢ଼େଇ ହଜାରରୁ କିଛି ଅଧିକ ଶ୍ଳୋକ ଅଛି । (ଭାଷାକୋଷ)

**ମନୋରମା**—ହୈହୟପତି ମହାବୀର କାର୍ତ୍ତବୀର୍ଯ୍ୟଙ୍କ ମହିଷୀ । ପରଶୁରାମଙ୍କ ସହିତ କାର୍ତ୍ତବୀର୍ଯ୍ୟ ଯୁଦ୍ଧ କରିବା ବେଳେ ମନୋରମା ସ୍ୱାମୀଙ୍କ ପରାଜୟ ଅବଶ୍ୟମ୍ଭାବୀ ମନେକରି ଯୋଗାବଲମ୍ବନପୂର୍ବକ ଦେହତ୍ୟାଗ କରିଥିଲେ ।

(ବ୍ରହ୍ମବୈବର୍ତ୍ତ)

**ମନ୍ଥରା**—କୈକେୟୀଙ୍କ କୁବ୍‌ଜା ଦାସୀ । ଏହାକୁ କାରଣବୈରିଣୀ ବୋଲି ବର୍ଣ୍ଣନା କରାଯାଇଛି । ଏହାର ମନ୍ତ୍ରଣା ଦ୍ୱାରା ଚାଳିତା ହୋଇ ରାମଚନ୍ଦ୍ରଙ୍କ

ଯୌବରାଜ୍ୟାଭିଷେକର ପ୍ରାକ୍‌କାଳରେ କୈକେୟୀ ଦଶରଥଙ୍କ ପୂର୍ବ ପ୍ରତିଶ୍ରୁତ ବରଦ୍ୱୟର ପୂରଣାର୍ଥ ରାମଚନ୍ଦ୍ରଙ୍କର ବନବାସ ଓ ସ୍ୱୀୟପୁତ୍ର ଭରତଙ୍କର ରାଜ୍ୟାଭିଷେକ ପ୍ରାର୍ଥନା କରିଥିଲେ । (ଭାଷାକୋଷ)

ଜଗବନ୍ଧୁ ସିଂହଙ୍କ ପ୍ରାଚୀନ ଉତ୍କଳର ନଈସ୍ଥ ପ୍ରାଚୀନ ଜଳସ୍ଥାନ ବିଶେଷକୁ ମନ୍ଥରା କହନ୍ତି ।

**ମନ୍ଦକର୍ଣ୍ଣି**—ଋଷି ବିଶେଷ । ଏ ଋଷି ବନରେ ତପସ୍ୟାଚରଣ କରିବା ସମୟରେ ତାଙ୍କର ତପସ୍ୟା ସିଦ୍ଧି ହେଲେ ସେ ଇନ୍ଦ୍ରତ୍ୱ ଲାଭ କରିବେ ବୋଲି ଆଶଙ୍କା କରି ଇନ୍ଦ୍ରଦେବ ପାଞ୍ଚଗୋଟି ସ୍ୱର୍ଗ ବେଶ୍ୟାଙ୍କୁ ଉକ୍ତ ଋଷିଙ୍କ ତପୋଭଙ୍ଗ କରିବା ପାଇଁ ପଠାଇଲେ । ଏମାନେ ଆସିବାରୁ ଋଷି କାମମୋହିତ ହେଲେ । ଇତି ମଧ୍ୟରେ ବ୍ରହ୍ମା ସ୍ୱର୍ଗଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା ପମ୍ପାସର ବା ପଞ୍ଚାପ୍ସର ନାମକ ପୁଷ୍କରିଣୀର ଜଳ ଭିତରେ ଗୋଟିଏ ମନୋହର ପୁର ନିର୍ମାଣ କରାଇଥିଲେ । ଉକ୍ତ ପୁରରେ ସେ ବେଶ୍ୟାମାନଙ୍କର ନୃତ୍ୟଗୀତାଦିରେ ମନ୍ଦକର୍ଣ୍ଣିଙ୍କୁ ସର୍ବଦା ବଶୀଭୂତ ରଖିବାର ରାମାୟଣରେ ବର୍ଣ୍ଣିତ ଅଛି ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ମନ୍ଦର**—(୧) ପୌରାଣିକ ପର୍ବତ ବିଶେଷ । ଦେବତା ଓ ଅସୁରମାନେ ସମୁଦ୍ର ମନ୍ଥନ କରିବା ସମୟରେ ଏହି ପର୍ବତ ମନ୍ଥନ ଦଣ୍ଡରୂପେ ବ୍ୟବହୃତ ହୋଇଥିଲା । ସମୁଦ୍ର ମନ୍ଥନ ହେବା ଫଳରେ ଅମୃତ, ହଳାହଳ, ଚନ୍ଦ୍ର, ଲକ୍ଷ୍ମୀ, ଉଚ୍ଚୈଃଶ୍ରବା ଅଶ୍ୱ ଆଦି ବାହାରିଥିଲେ । (୨) ବୃହତ୍‌ସଂହିତା ଅନୁସାରେ କୋଡ଼ିଏ ପ୍ରକାର ପ୍ରାସାଦ ବର୍ଣ୍ଣିତ ମଧ୍ୟରେ ମନ୍ଦର ଏକତମ । ଏ ପ୍ରାସାଦ ଷଡ଼୍‌କୋଣ ଏଥିର ବିସ୍ତାର ୩୦ ହାତ ଓ ଏଥିରେ ଦଶ ଭୂମିକା ଥାଏ । (ହିନ୍ଦୀ ଶବ୍ଦସାଗର) (୩) ଗୋବର୍ଦ୍ଧନ ପର୍ବତର ଆଉ ଗୋଟିଏ ନାମ । ସେଥିଲାଗି ମନ୍ଦରଧର ବୋଲି ଶ୍ରୀକୃଷ୍ଣଙ୍କର ଏକ ନାମ ରହିଛି । (୪) ମୁଙ୍ଗେର ନିକଟରେ ଥିବା ଏକ ପାହାଡ଼ର ନାମ ମଧ୍ୟ ମନ୍ଦର । ଏ ପର୍ବତରେ ଅନେକ ହିନ୍ଦୁ, ଜୈନ ଓ ବୌଦ୍ଧ ମନ୍ଦିର ଅଛି । ସୀତାକୁଣ୍ଡ ନାମକ ଏକ ଉଷ୍ଣ ପ୍ରସ୍ରବଣ ଏଠାରେ ରହିଛି । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ମନ୍ଦପାଳ** —ଧାର୍ମିକ, ତପଃ ପରାୟଣ ବେଦପାରଗ ମହର୍ଷି । ବହୁ ଦିବସ ତପସ୍ୟା ପରାକାଷ୍ଠାରେ ଉତ୍ତୀର୍ଣ୍ଣ ହୋଇ ପିତୃଲୋକକୁ ଗମନ କରିଥିଲେ । ନିଃସନ୍ତାନ ହୋଇଥିବାରୁ ଇପ୍‌ସିତ ଲୋକ ପାଇପାରିଲେ ନାହିଁ । ତପସ୍ୟା ଫଳ ଭୋଗରୁ ବଞ୍ଚିତ ହୋଇରହିଲେ । ଏଥିଲାଗି ସେ ଅଳ୍ପକାଳ ମଧ୍ୟରେ ବହୁ ଅପତ୍ୟ

ଉତ୍ପାଦନ କରିବା ପାଇଁ ବିହଙ୍ଗମ ମଣ୍ଡଳକୁ ଗମନ କରି ଶାର୍ଙ୍ଗକମୂର୍ତ୍ତି ଧାରଣ-ପୂର୍ବକ ଜରିତା ନାମ୍ନୀ ଏକ ଶାର୍ଙ୍ଗିକାର ଗର୍ଭରେ ଚାରିଗୋଟି ବ୍ରହ୍ମବାଦୀ ପୁତ୍ର ଉତ୍ପାଦନ କରିଥିଲେ । ଖାଣ୍ଡବ ଦହନ ବେଳେ ଏଗୁଡ଼ିକ ଅଗ୍ନିରେ ଦଗ୍ଧ ହୋଇଯିବା ସମ୍ଭାବନା ଦେଖି ମନ୍ଦପାଳ ଅଗ୍ନିଙ୍କ ସ୍ତବ କଲେ । ଅଗ୍ନି ସେଥିରେ ସନ୍ତୁଷ୍ଟ ହୋଇ ମନ୍ଦପାଳଙ୍କ ଚାରିଗୋଟି ପୁତ୍ରଙ୍କୁ ରକ୍ଷା କରିଥିଲେ ।
(ମହାଭାରତ ଆଦିପର୍ବ, ଜରିତାଭିଧାନ)

**ମନ୍ଦୋଦରୀ**—ଲଙ୍କେଶ୍ୱର ରାବଣଙ୍କ ପାଟରାଣୀ । ମୟଦାନବ ଔରସରେ ହେମାନାମ୍ନୀ ଅପ୍ସରା ଗର୍ଭରୁ ଏ ଜନ୍ମିଥିଲେ । ରାବଣର ବିଖ୍ୟାତ ବୀରପୁତ୍ର ମେଘନାଦ ଏହାଙ୍କର ପୁତ୍ର । ରାବଣଙ୍କ ମୃତ୍ୟୁ ପରେ ରାମଚନ୍ଦ୍ରଙ୍କ ଅନୁରୋଧ କ୍ରମେ ମନ୍ଦୋଦରୀ ବିଭୀଷଣଙ୍କୁ ବିବାହ କଲେ ଏବଂ ମହାସତୀରୂପେ ଖ୍ୟାତ ହୋଇଥିଲେ ।

'ଅହଲ୍ୟା ଦ୍ରୌପଦୀ ତାରା ସତୀ ମନ୍ଦୋଦରୀ ତଥା ।'

କାହାରି କାହାରି ମତରେ କୁନ୍ତୀ ମନ୍ଦୋଦରୀ । ପଞ୍ଚକନ୍ୟାଂ ସ୍ମରେନ୍ନିତ୍ୟଂ ମହାପାତକନାଶନଂ । (ରାମାୟଣ, ଭାଷାକୋଷ)

**ମନ୍ୱନ୍ତର**—୩୦ କୋଟି, ୬୭ ଲକ୍ଷ, ୨୦ ହଜାର ବର୍ଷବ୍ୟାପୀ କାଳ; ଦେବତା-ମାନଙ୍କର ୭୧ ଗୋଟି ଯୁଗ । ପ୍ରଜାପତିଙ୍କର ୧୪ ଗୋଟି ମାନସ ପୁତ୍ର ବା ମନୁଙ୍କ ମଧ୍ୟରୁ ପ୍ରତ୍ୟେକେ, ଦେବତାମାନଙ୍କର ୭୧ ଚତୁର୍ଯୁଗବ୍ୟାପୀ କାଳ ରାଜତ୍ୱ କରନ୍ତି । ଏହା ବ୍ରହ୍ମାଙ୍କର ଏକ ଦିବସର ୧୪ ଭାଗରୁ ଏକ ଭାଗ ($\frac{1}{14}$) (ହିନ୍ଦୀ ଶବ୍ଦସାଗର) । ମତାନ୍ତରେ ଏହା ୪୩ ଲକ୍ଷ ୨୦ ହଜାର ମାନୁଷବର୍ଷର କାଳ । (**Apte**) ୧୪ଟି ମନ୍ୱନ୍ତର ହେଲେ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ । ଏକ ମନୁଙ୍କ ରାଜତ୍ୱ ଶେଷ ହେଲେ ପ୍ରଳୟ ଉପସ୍ଥିତ ହୁଏ । ବର୍ତ୍ତମାନ ସପ୍ତମ ମନୁ ବା ବୈବସ୍ୱତ ମନୁଙ୍କ ରାଜତ୍ୱକାଳର ଅଷ୍ଟାବିଂଶ ଯୁଗର ୧୦ମ ଭାଗ ଭୋଗ ହେଉଛି । (ଭାଷାକୋଷ)

**ମୟ, ମୟଦାନବ**—ରାବଣ ମହିଷୀ ମନ୍ଦୋଦରୀଙ୍କ ପିତା । ଖାଣ୍ଡବ ବନ ଦାହ ବେଳେ ଅର୍ଜୁନ ଏହାଙ୍କୁ ରକ୍ଷା କରିଥିବା ଯୋଗୁଁ ସେ ଧର୍ମରାଜ ଯୁଧିଷ୍ଠିରଙ୍କ ପାଇଁ ଏକ ସଭା ଗୃହ ନିର୍ମାଣ କରି ଦେଇଥିଲେ । ସେଥିପାଇଁ ମୟଦାନବ ଶିଳ୍ପୀରୂପେ ପରିଚିତ । ଦେବଶିଳ୍ପୀ ବିଶ୍ୱକର୍ମାଙ୍କୁ ଏ ପରାସ୍ତ କରିଥିଲେ । ଏ ଅସୁରମାନଙ୍କ ତ୍ରିପୁର ନିର୍ମାଣ କରିଥିଲେ । ଏହାଙ୍କର ଦୁଇ ପୁତ୍ର ମାୟାବୀ ଓ

ଦୁନ୍ଦୁଭି, କନ୍ୟା ମନ୍ଦୋଦରୀ । ଦୁନ୍ଦୁଭି କପିରାଜ ବାଳୀଙ୍କ ହସ୍ତରେ ନିହତ ହୋଇଥିଲା ।

**ମରୀଚ** — ବ୍ରହ୍ମାଙ୍କ ମାନସ ପୁତ୍ର । ସପ୍ତର୍ଷିମାନଙ୍କ ମଧ୍ୟରେ ଏକତମ । ଏ କର୍ଦ୍ଦମ ଋଷିଙ୍କ କନ୍ୟା କଳା, ମତାନ୍ତରେ ସମ୍ଭୂତିଙ୍କୁ ବିବାହ କରିଥିଲେ । ଏହାଙ୍କ ଔରସରେ କଶ୍ୟପ ମୁନି ଜନ୍ମିଥିଲେ । ଭୃଗୁ ମୁନିଙ୍କ ଏକ ପୁତ୍ରର ନାମ ମଧ୍ୟ ମରୀଚ ଥିଲା ।

**ମରୁ** — ନରକାସୁରର ସହଚର ବିଶେଷ । ସୂର୍ଯ୍ୟବଂଶୀୟ ଜଣେ ରାଜା ବିଶେଷ ।

**ମରୁତ୍ (ତ)** — ବାୟୁ ବା ପବନ ଦେବତା । କଶ୍ୟପଙ୍କ ସ୍ତ୍ରୀ ଦିତିଙ୍କ ପୁତ୍ରମାନେ ଦେବତାମାନଙ୍କ ଦ୍ୱାରା ନିହତ ହେବାରୁ ସେ ପତିଙ୍କ ନିକଟରେ ଏକ ଅଜେୟ ପୁତ୍ର ପ୍ରାର୍ଥନା କରିଥିଲେ । ସେହି ଫଳରେ ଦିତି ବାୟୁଙ୍କୁ ଗର୍ଭରେ ଧାରଣ କରିଥିବା ଅବସ୍ଥାରେ ଦିତିଙ୍କ ସପତ୍ନୀ ପୁତ୍ର ଇନ୍ଦ୍ର ଗର୍ଭସ୍ଥ ଭ୍ରୂଣକୁ ବଜ୍ର ଦ୍ୱାରା ୪୯ ଖଣ୍ଡ କରି କାଟି ପକାଇଲେ । କିନ୍ତୁ କଶ୍ୟପଙ୍କ ବର ପ୍ରଭାବରୁ ୪୯ ଖଣ୍ଡ, ୪୯ ପବନ ରୂପେ ଖ୍ୟାତ ହେଲେ । (ବିଷ୍ଣୁପୁରାଣ)

**ମରୁତ୍ତ** — ଯଜ୍ଞଶୀଳ ଚନ୍ଦ୍ରବଂଶୀୟ କେନୈକ ରାଜା । ଏ ବହୁବାର ଯଜ୍ଞ କରିଥିଲେ ଓ ଯଜ୍ଞରେ ସ୍ୱର୍ଣ୍ଣପାତ୍ରମାନ ବ୍ୟବହାର କରିଥିଲେ । ଏହାଙ୍କର ସାତ ରାଣୀ ଓ ୧୮ ଗୋଟି ପୁତ୍ର ଥିଲେ । ଏ କରନ୍ଧର ମତାନ୍ତରେ ଅବୀକ୍ଷିତଙ୍କ ପୁତ୍ର ଥିଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ମଳୟ** — ମହୀଶୂର ରାଜ୍ୟର ଦକ୍ଷିଣ ଓ ତ୍ରିବାଙ୍କୁର ରାଜ୍ୟର ପୂର୍ବ ସୀମାରେ ଅବସ୍ଥିତ ପଶ୍ଚିମଘାଟ ପର୍ବତର ଅଂଶ । ଚନ୍ଦନାଦ୍ରି ।

**ମହରମ** — ଆରବୀ ଭାଷାରେ ଏହାକୁ ମହରମ୍, ମୁହର୍ରମ ବୋଲି କହନ୍ତି । ଏହା ମୁସଲମାନମାନଙ୍କର ଖେଦ ପ୍ରକାଶକ ଏକ ପ୍ରଧାନ ଯାତ୍ରା । ମୁସଲମାନ ମାନଙ୍କର ହିଜିରି ବର୍ଷର ପ୍ରଥମ ମାସ ।

ଏହି ମାସରେ ମୁସଲମାନମାନେ ସପ୍ତମ ଦିବସଠାରୁ ନବମ ଦିବସ ପର୍ଯ୍ୟନ୍ତ ତିନିଦିନ ପାଳିବା ଯାତ୍ରାର ନାମ ମହରମ୍ । ଏହା କୋରାନ୍‌ରେ ନାହିଁ । ମହମ୍ମଦଙ୍କ ମୃତ୍ୟୁର ୩୪ ବର୍ଷ ପରେ ତାଙ୍କ କନ୍ୟା ଫାତିମା ଜୋହୋରାଙ୍କ ବଡ଼ ପୁଅ ଇମାମ୍‌ହସନ୍ ଖଲିଫା ବା ଧର୍ମଗୁରୁ ବସିବାର

ଛଅମାସ ପରେ ଦାମିସ୍କର ଶାସନକର୍ତ୍ତା ମାଭିଆ ଖଲିଫା ହେବାକୁ ଚାହିଁବାରୁ ବୃଥା ରକ୍ତପାତର ଆଶଙ୍କା ଦୂର କରିବା ପାଇଁ ହସନ୍ ତାଙ୍କୁ ଉକ୍ତ ଅଧିକାର ବା 'ଖିଲଫତ୍' ଛାଡ଼ିଦେଲେ । ତଥାପି ମାଭିଆଙ୍କ ପୁଅ ଏଜିଦ୍, ହସନ୍ଙ୍କୁ ବିଷ ଖୁଆଇ ମାରିଦେଲା । ଏଥିରେ ମଧ୍ୟ ସନ୍ତୁଷ୍ଟ ନ ହୋଇ ମାଭିଆର ସାନ ପୁଅ ହସନ୍ଙ୍କ ଭାଇ ହୋସେନ୍ଙ୍କୁ ଓ ତାଙ୍କର ୭୨ ଜଣ ସଙ୍ଗୀଙ୍କୁ ବିଶ୍ୱାସରେ 'କୁଫା' ନାମକ ସ୍ଥାନକୁ ଡକାଇ ନେଇ ସେଠାରେ ତାଙ୍କୁ ଜଗିଦ୍ୱାର ରଖାଇ ନିଷ୍ଠୁର ଭାବରେ କତଲ୍ (ହତ୍ୟା) କଲା । ଏହି ଦୁର୍ଘଟଣା ମହରମ୍ ମାସରେ ହୋଇଥିବାରୁ ମୁସଲମାନମାନେ ଏହାର ସ୍ମରଣାର୍ଥେ ମହରମ୍ ପାଳନ୍ତି । ଏ ସମୟରେ ପ୍ରତ୍ୟେକ ମୁସଲମାନ ଶୋକ, ଦାନ ଓ ଶୋଷୀ ଲୋକଙ୍କୁ ପାନ-ଭୋଜନ ଦେବା ବିଧାନ ପାଳିଥାନ୍ତି । ମୁସଲମାନମାନେ ବାହାର କରିବା ତାଜିଆ ଓ ତନ୍ତ୍ର ସହାନ୍ତ ଖେଳ ତାମସା ଧର୍ମ ବିରୁଦ୍ଧ । କିନ୍ତୁ କାଳକ୍ରମେ ଏ ଖେଦପ୍ରକାଶକ ଯାତ୍ରା ଉତ୍ସବ ଓ ପର୍ବରେ ପରିଣତ ହୋଇଅଛି । କଥିତ-ଅଛି ଯେ ତୈମୁରଲଙ୍ଗ୍ ଭାରତବର୍ଷରେ ତାଙ୍କ ସୈନ୍ୟଙ୍କ ପାଇଁକି ତ (ଖ୍ରୀ : ଅ : ୧୩୯୮) ମହରମ୍ ଉପଲକ୍ଷେ ତାଜିଆ ନିର୍ମାଣ କରି ତାଜିଆ ସହିତ ଶୋଭାଯାତ୍ରା କରିବା ପ୍ରଥମ ଆରମ୍ଭ କରିଥିଲେ । ସେହି ସମୟରୁ ଏହା ସମଗ୍ର ଭାରତର ମୁସଲମାନମାନଙ୍କ ମଧ୍ୟରେ ଚଳି ଆସୁଅଛି, ଯେଉଁ ଯୁଦ୍ଧର ସ୍ମରଣାର୍ଥେ ମହରମ୍ ପାଳିତ ହୁଏ ତାହା ମୁସଲମାନୀ ମହରମ୍ ମାସର ୭ମ ଦିନ ଆରମ୍ଭ ହୋଇ ନବମ ଦିନ ଶେଷ ହେଲା ଓ ହୋସେନ୍ ନବମ ଦିନ ଆରବର କରବଲା ନାମକ ରଣକ୍ଷେତ୍ରରେ ନିହତ ହେଲେ । ମହରମ୍‌ରେ ଶୋକ ପ୍ରକାଶର ଚିହ୍ନରୂପେ ମୁସଲମାନମାନେ ସବୁଜରଙ୍ଗର ପୋଷାକ ପିନ୍ଧନ୍ତି । ଶୋଭାଯାତ୍ରାସହ ସେମାନେ ଯେଉଁ ତାଜିଆ ବାହାର କରନ୍ତି ତାହା ହୋସେନଙ୍କ କଫନ୍ ବା ଶବରଥର ପ୍ରତିକୃତି ।

ମୁସଲମାନମାନେ ଏହି ରଣଯାତ୍ରାର ସ୍ମରଣ ଚିହ୍ନ ସ୍ୱରୂପ ହୋସେନଙ୍କ ପାପୁଲିର ପ୍ରତିରୂପ ପିତଳର 'ପାଞ୍ଜା' ବା କରତଳର ଗୋଟିଏ ରୂପକୁ କାଗଜ ଓ କଣାରେ ନିର୍ମିତ ବିମାନରେ ରଖି ତହିଁ ସଙ୍ଗେ ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ଯୁଦ୍ଧଯାତ୍ରା କରନ୍ତି ।

ମହରମ୍ ମାସର ୬ଷ୍ଠ ଦିନ—ଆଉଲିଆ ମାହାତମ୍—ପାଞ୍ଜାକୁ ତାଜିଆରେ ସ୍ଥାପନ କରି ଫାତିଆ (ପୂଜା) କରନ୍ତି ।

୭ମ ଦିନ—ଦୋହପଦ୍‌ହରିଆ ମାହାତମ୍—ଫାତିମାଙ୍କ ପୁତ୍ର ଶୋକ ସମାଗ୍ରର ସ୍ମାରକ ସ୍ୱରୂପ ଦିନ ଦ୍ୱିପ୍ରହର ବେଳେ ଫାତିଆ କରନ୍ତି ।

୮ମ ଦଳ—ଗୁମ୍‌ସୁମ୍ ବା ବିଶ୍ରାମ—ଏ ଦଳ ଶତ୍ରୁ ଭୟରେ ଜଙ୍ଗଲ ଭିତରେ ଗୋଟିଏ କୁଅ ଭିତରେ ହୋସେନ୍ ପଶି ରହିଥିବାରୁ ସେଦିନ କିଛି ଯାତ୍ରା କରାଯାଏ ନାହିଁ ।

୯ମ ଦଳ—କଉଲ—ଏ ଦଳ ମୁସଲମାନମାନଙ୍କ ବିଭିନ୍ନ ଦଳମାନ ସହରକୁ ତାଜିଆ ବାହାର କରି ନିଜ ନିଜ ଆଖଡ଼ାରେ ଅସ୍ତ୍ରଶସ୍ତ୍ର ସଞ୍ଚାଳନ କରନ୍ତି । ଏହିଦିନ ଯୁଦ୍ଧରେ ହୋସେନ୍ ଓ ତାଙ୍କ ପକ୍ଷମାନେ ନିହତ ହୋଇଥିଲେ ।

୧୦ମ ଦଳ—ଅଲ୍‌ବିଦା—ଏ ଦଳ ସକାଳେ ତାଜିଆକୁ ନେଇ ନଗର-ଯାତ୍ରା କରି ଫେରି ବିଶ୍ରାମ କରନ୍ତି ଓ ପୁଣି ସହରକୁ ତାଜିଆକୁ ନେଇ ନଦୀ ଆଡ଼ରେ (କରବଲା ନାମକ ମୃତକ୍ଷେତ୍ର କଳ୍ପନା କରି ତହିଁରେ) ତାଜିଆକୁ ବିସର୍ଜନ କରନ୍ତି । (ଭାଷାକୋଷ)

**ମହାକାଳ**—ଉଜ୍ଜୟିନୀସ୍ଥ ପ୍ରସିଦ୍ଧ ଶିବଲିଙ୍ଗ, ମହାକବି କାଳିଦାସକୃତ ମେଘଦୂତ କାବ୍ୟରେ ୩୦-୩୮ ଶ୍ଳୋକରେ ଏହି ଶିବଙ୍କର ପ୍ରଶସ୍ତି ଉତ୍ତମରୂପେ ବର୍ଣ୍ଣିତ ହୋଇଛି । (୨) ଭୈରବ ବିଶେଷଙ୍କ ନାମ । (୩) ପ୍ରଥମ ଗଣବିଶେଷ । (୪) ଶିବଙ୍କର ଏକ ପୁତ୍ର । କାଳିକା ପୁରାଣରେ ଲେଖାଅଛି ଯେ ଏକଦା ଦେବତାମାନେ ଶିବଙ୍କ ବୀର୍ଯ୍ୟ ଧାରଣ କରିବାକୁ ଅଗ୍ନିକୁ କହିବାରୁ ଅଗ୍ନି ତାହା ଧାରଣ କରିବା ସମୟରେ ସେଥିରୁ ଦୁଇଟୋପା ଛିଡ଼ିକି ପଡ଼ିଲା । ତହିଁରୁ ମହାକାଳ ଓ ଭୃଙ୍ଗୀନାମକ ଦୁଇ ପୁତ୍ର ଜନ୍ମିଲେ । ଥରେ ଶିବଙ୍କ ସଙ୍ଗେ ବିହାର କରି ପାର୍ବତୀ ବିହାର ସ୍ଥଳରୁ ବାହାରି ଆସୁଥିବା ସମୟରେ ଏ ଦୁଇ ପୁତ୍ର ତାଙ୍କୁ ଦେଖିଲେ । ଏଥିରେ ପାର୍ବତୀ କ୍ରୁଦ୍ଧ ହୋଇ ସେ ଦୁହିଁଙ୍କୁ ଅଭିଶାପ ଦେଲେ । ତା'ଫଳରେ ମହାକାଳ ବେତାଳ ଓ ଭୃଙ୍ଗୀ ଭୈରବ ରୂପ ଧାରଣ କଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

ହନୁମାନଙ୍କର ତୀର୍ଥ ବିଶେଷର ନାମ ମହାକାଳ ।

(କୃଷ୍ଣସିଂହ ଭାରତ ବନପର୍ବ)

**ମହାକାଳୀ**—ରୁଦ୍ରାଣୀ, ଶିବପତ୍ନୀ, ଏହାଙ୍କର ପଞ୍ଚମୁଖ ଓ ଅଷ୍ଟଭୁଜ ଥିବାର ପୁରାଣରେ ବର୍ଣ୍ଣିତ ହୋଇଛି । (ହିନ୍ଦୀ ଶବ୍ଦସାଗର)

**ମହାକୁଡ, ମହାକୁଣ୍ଡ, ମହାକୁଣ୍ଡ୍**—ଚଢ଼େଇଙ୍କର ବିଶେଷ । କୃଷ୍ଣ ଲୀଳାରେ କବି ଗୌରଚରଣ କହନ୍ତି—ହିହିବେ ଗରୁଡ଼, କହି ମହାକୁଡ

ଅଟଇ ପିସ୍ତର ଚୋର । ଗାଈମାନଙ୍କ ସଂଖ୍ୟା ବିଶେଷକୁ ମଧ୍ୟ ମହାକୁଡ଼ ବୋଲଯାଏ । ନିର୍ଣ୍ଣୟ ଯଥା—୧୦୦୦ ଗାଈ = ୧ ଗୋଗୋଷ୍ଠ, ୧୦୦୦ ଗୋଷ୍ଠ = ୧ ଫଲ, ୧୦୦ ଫଲ = ୧ ଲଉଣ୍ଡ, ୧୦୦ ଲଉଣ୍ଡ = ୧ ମହାକୁଡ଼, ୧୦୦ ମହାକୁଡ଼ = ୧ ମହାଖେଇ, ୧୬ ମହାଖେଇ = ୧ ଗୋଧନ ।

(ସାରଳା ମହାଭାରତ, ଭାଷାକୋଷ)

**ମହାଗୌରୀ**—ବିନ୍ଧ୍ୟାଚଳରୁ ବାହାରିଥିବା ପୁରାଣୋକ୍ତ ନଦୀ ବିଶେଷ ।

(ଭାଷାକୋଷ)

**ମହାଚଣ୍ଡ**—ଯମଦୂତ ଓ ଶିବାନୁଚର ବିଶେଷ । (ଭାଷାକୋଷ)

**ମହାଦୀପ**—ଶିବରାତ୍ରି ଦିନ ରାତ୍ରିରେ ମହାଦେବଙ୍କ ମନ୍ଦିରର ଚୂଡ଼ାକୁ ନିଆଯାଇ ସେଠାରେ ରଖାଯିବା ପ୍ରଦୀପ ।

**ମହାଦେବ**—ହିନ୍ଦୁମାନଙ୍କ ଶ୍ରେଷ୍ଠ ଦେବତାତ୍ରୟଙ୍କ ମଧ୍ୟରୁ ଅନ୍ୟତମ ଓ ପରମେଶ୍ୱରଙ୍କ ସଂହାର ଶକ୍ତି । ପୁରାଣରେ ବର୍ଣ୍ଣିତ ଅଛି ଯେ ପ୍ରଥମେ ଏ ମହାପୁରୁଷଙ୍କ (ପରମେଶ୍ୱରଙ୍କ) ଦ୍ୱାରା ସୃଷ୍ଟ ହୋଇ ତପସ୍ୟାରେ ପ୍ରବୃତ୍ତ ହେଲେ ଏବଂ ଯୋଗୀବେଶ ଧାରଣ କଲେ । ଏହାଙ୍କର ପରିଧାନ ବ୍ୟାଘ୍ରଚର୍ମ । ସର୍ପ ଏହାଙ୍କର କଟିବନ୍ଧ ଓ ଉତ୍ତରୀୟ; ଦେହ ଭସ୍ମବୋଳା; ମୁଣ୍ଡରେ ଜଟା ଓ ଜଟାରେ ଗଙ୍ଗା ପ୍ରବାହମାନା । ଏହାଙ୍କର ତିନିଗୋଟି ଆଖି; ସେଥିପାଇଁ ତାଙ୍କର ଅନ୍ୟ ନାମ ତ୍ରିଲୋଚନ । କପାଳରେ ଅର୍ଦ୍ଧେନ୍ଦୁ ତିଳକରୂପେ ବିଦ୍ୟମାନ । ପାଞ୍ଚ ଗୋଟି ମୁଖ, ସେଥିପାଇଁ ତାଙ୍କର ଅନ୍ୟ ନାମ ପଞ୍ଚାନନ; ନନ୍ଦୀ ଏହାଙ୍କର ପ୍ରଧାନ ପାର୍ଶ୍ୱଚର । ଶ୍ମଶାନ ଏହାଙ୍କର ବିଚରଣ ସ୍ଥଳ । ପ୍ରମଥଗଣ ବା ଭୂତ ପ୍ରେତ ଏହାଙ୍କର ସହଚର । ବୃଷଭ ଏହାଙ୍କର ବାହନ । ଏ ଅତ୍ରିମୁନିଙ୍କ ଶିଷ୍ୟ । ସବୁପ୍ରକାର ଅସ୍ତ୍ରଶସ୍ତ୍ରରେ ଏ ସୁପଣ୍ଡିତ । ତ୍ରିଶୂଳ ଏହାଙ୍କର ପ୍ରଧାନ ଆୟୁଧ । ଏହାଙ୍କର ଧନୁର ନାମ ପିନାକ । ଯୁଦ୍ଧ ସମୟରେ ଏହା ଧନୁ ରୂପେ ଓ ଅନ୍ୟ ସମୟରେ ଏହା ବାଦ୍ୟ ରୂପେ ବ୍ୟବହୃତ ହୁଏ । ଡମରୁ ଏହାଙ୍କର ବାଦ୍ୟ । ଏହାଙ୍କର ତାଣ୍ଡବ ନୃତ୍ୟ ଅତି ଭୟଙ୍କର । ଏ ତ୍ରିପୁରାସୁରକୁ ବଧ କରିଥିବାରୁ ଏହାଙ୍କର ଅନ୍ୟ ନାମ ତ୍ରିପୁରାରି । ବିଷ୍ଣୁଙ୍କ ସାହାଯ୍ୟରେ ଜଳନ୍ଧର ଏହାଙ୍କ ଦ୍ୱାରା ନିପାତ ହୋଇଥିଲା ଏ ଯୁଦ୍ଧରେ ଅଜେୟ । ଅରେ କିନ୍ତୁ ବିଷ୍ଣୁଙ୍କ ସହିତ ସଂଗ୍ରାମରେ ପରାଜିତ ହୋଇଥିଲେ । ଏହାଙ୍କ ବାସସ୍ଥାନ କୈଳାସ ଶିଖର ।

ଅସୁର ଓ ଦେବତାମାନଙ୍କ ଦ୍ୱାରା ସମୁଦ୍ର ମନ୍ଥନ ସମୟରେ ସର୍ବଶେଷରେ ଏ ଉପସ୍ଥିତ ହୋଇ ପୁନର୍ବାର ସମୁଦ୍ର ମନ୍ଥିବା ପାଇଁ ଆଦେଶ କରିବାରୁ ଦ୍ୱିତୀୟବାର ସମୁଦ୍ର ମନ୍ଥନରୁ ହଳାହଳ (ବିଷ) ବାହାରିଲା ତାହାକୁ ସେ ପାନ କରି ବିଷଜ୍ୱାଳାରେ ଅସ୍ଥିର ହେଲେ ଏବଂ ତାଙ୍କର କଣ୍ଠ ନୀଳବର୍ଣ୍ଣ ଧାରଣ କଲା । ଏଥିପାଇଁ ଏହାଙ୍କର ଅନ୍ୟ ନାମ ନୀଳକଣ୍ଠ । ଏ ତପସ୍ୟା ଦ୍ୱାରା ଅତି ଶୀଘ୍ର ତୋଷ ହୁଅନ୍ତି ବୋଲି ଏହାଙ୍କର ନାମ ଆଶୁତୋଷ । ପରଶୁରାମ ଏହାଙ୍କଠାରୁ ଅସ୍ତ୍ର ବିଦ୍ୟା ଶିକ୍ଷା କରିଥିଲେ ବିଶ୍ୱାମିତ୍ର ଏହାଙ୍କଠାରୁ ଅନେକ ଅସ୍ତ୍ର ଲାଭ କରିଥିଲେ । ଅର୍ଜ୍ଜୁନଙ୍କ ତପସ୍ୟାରେ ତୁଷ୍ଟ ହୋଇ ଏ କିରାତ ବେଶରେ ତାଙ୍କୁ ଦର୍ଶନ ଦେଇଥିଲେ ଓ ତାଙ୍କ ସହିତ ଯୁଦ୍ଧ କରି ଶେଷରେ ପ୍ରସନ୍ନ ହୋଇ ତାହାଙ୍କୁ ପାଶୁପତ ଅସ୍ତ୍ର ପ୍ରଦାନ କରିଥିଲେ ।

ମହାଦେବ ପ୍ରଥମେ ଦକ୍ଷ କନ୍ୟା ସତୀଙ୍କୁ ବିବାହ କରିଥିଲେ । ପରେ ଭୃଗୁ ମୁନିଙ୍କ ଯଜ୍ଞରେ ଏ ଶ୍ୱଶୁରଙ୍କୁ ଯଥୋଚିତ ଅଭିବାଦନ ନ କରିବାରୁ ଦକ୍ଷ କୁପିତ ହୋଇ ତାଙ୍କୁ ଓ ନିଜ କନ୍ୟା ସତୀଙ୍କୁ ଯଜ୍ଞକୁ ନିମନ୍ତ୍ରଣ କଲେନାହିଁ । ନିମନ୍ତ୍ରିତ ନ ହୋଇ ମଧ୍ୟ ସତୀ ଉକ୍ତ ଯଜ୍ଞ ସମୟରେ ପିତୃ ଗୃହକୁ ଗଲେ । ସେଠାରେ ଦକ୍ଷ ସ୍ୱୀୟ କନ୍ୟା ସତୀଙ୍କ ଆଗରେ ମହାଦେବଙ୍କ ନିନ୍ଦା କରିବାରୁ ସେ ପତିନିନ୍ଦା ସହି ନପାରି ଯଜ୍ଞ କୁଣ୍ଡରେ ଝାସ ଦେଲେ । ମହାଦେବ ଏ ସମ୍ବାଦ ପାଇଁ ଯଜ୍ଞ ସ୍ଥଳରେ ଉପସ୍ଥିତ ହେଲେ । ତାଙ୍କ ଜଟାରୁ ବୀରଭଦ୍ର ନାମକ ବୀର ପୁରୁଷ ଜାତ ହୋଇ ଦକ୍ଷ ଯଜ୍ଞ ନାଶ କଲେ ଓ ଦକ୍ଷଙ୍କ ମୁଣ୍ଡ ଛେଦନ କଲେ । ପରେ ମହାଦେବ ଦକ୍ଷଙ୍କୁ ଜୀବନ ଦେଲେ । ତତ୍ପରେ ସତୀଙ୍କ ମୃତ ଦେହକୁ କାନ୍ଧରେ ପକାଇ ଶିବ, ପତ୍ନୀ ଶୋକରେ ଉନ୍ମତ୍ତ ହୋଇ ବ୍ରହ୍ମାଣ୍ଡ ଭ୍ରମଣ କଲେ । ଏହା ଦେଖି ବିଷ୍ଣୁ ସ୍ୱୀୟ ଚକ୍ର ଦ୍ୱାରା ମହାଦେବଙ୍କ ସ୍କନ୍ଧସ୍ଥିତ ସତୀ ଶବକୁ ଖଣ୍ଡ ଖଣ୍ଡ କରି ପକାଇଲେ । ସତୀଙ୍କ ଦେହର ଅଂଶ ପୃଥିବୀର ନାନା ସ୍ଥାନରେ ଛିନ୍ନ ଭିନ୍ନ ହୋଇ ପଡ଼ିଲା । ସେ ସ୍ଥାନମାନ ପୀଠ ଓ ଉପପୀଠ ହେଲା । (ପୀଠ ଦେଖ) ତତ୍ପରେ ମହାଦେବ କୈଳାସରେ ଯୋଗମଗ୍ନ ହେଲେ । ଏଣେ ସତୀ ହିମାଳୟଙ୍କ କନ୍ୟାରୂପେ ପାର୍ବତୀ ନାମରେ ଜନ୍ମ ଗ୍ରହଣ କଲେ । ମହାଦେବଙ୍କୁ ପତିରୂପେ ପାଇବା ଲାଗି ଦୃଢସଙ୍କଳ୍ପ କରି କଠୋର ତପସ୍ୟାଚରଣପୂର୍ବକ ଯୋଗ ନିରତ ମହାଦେବଙ୍କ ସେବାରେ ନିଜକୁ ନିଯୁକ୍ତ କଲେ । ସେତେବେଳେ ତାରକ ନାମଧାରୀ ଏକ ଅସୁର ଦଳପତି ସ୍ୱର୍ଗରାଜ୍ୟ ପ୍ରତି ବାରମ୍ବାର ଅଭିଯାନ ଚଳାଇ ଦେବତାମାନଙ୍କ ଉପରେ ନାନା ଅନ୍ୟାୟ ଅତ୍ୟାଚାର କରୁଥିଲା । ତାକୁ ବଧ

କରି ଅସୁରମାନଙ୍କୁ ପରାଜିତ କରିବାପାଇଁ ଦେବସେନାଙ୍କ ଅଗ୍ରଣୀରୂପେ ଯେଉଁଭଳି ଯୋଦ୍ଧା ଆବଶ୍ୟକ, ତାହାଙ୍କୁ ପାଇବା ଲାଗି ଦେବତାମାନେ ଚିନ୍ତିତ ହେଲେ ଏବଂ ଶେଷରେ ସ୍ଥିର କଲେ ଯେ ମହାଦେବଙ୍କ ଔରସରେ ପାର୍ବତୀଙ୍କ ଗର୍ଭରୁ ଯେଉଁ ପୁତ୍ର ଜାତ ହେବ ସେହି କେବଳ ଦେବସେନାନୀ-ରୂପେ ଏ କାର୍ଯ୍ୟରେ ସମର୍ଥ ହେବ । ସେଥିପାଇଁ ସେମାନେ ମହାଦେବଙ୍କ ତପସ୍ୟା ଭଙ୍ଗାଇ ତାଙ୍କୁ ପାର୍ବତୀଙ୍କଠାରେ ଆସକ୍ତ କରାଇବା ପାଇଁ ମଦନ ବା କାମଦେବଙ୍କୁ ନିଯୁକ୍ତ କଲେ । ମଦନ ମହାଦେବଙ୍କ ପ୍ରତି ତାଙ୍କର ପଞ୍ଚବାଣ ପ୍ରୟୋଗ କଲାମାତ୍ରେ ପାର୍ବତୀଙ୍କୁ ଦେଖି ମହାଦେବ କ୍ଷଣକ ପାଇଁ ବିଚଳିତ ହୋଇଉଠିଲେ ସତ୍ୟ, କିନ୍ତୁ ପର ମୁହୂର୍ତ୍ତରେ ନିଜକୁ ସଂଯତ କରିଦେଲେ ଓ ମନରେ ଜନ୍ମିଥିବା ଏ ଚାଞ୍ଚଲ୍ୟ ପାଇଁ ମଦନ ଦାୟୀ ବୋଲି କୋପାନ୍ୱିତ ହୋଇ ତାଙ୍କ ପ୍ରତି କୋପଦୃଷ୍ଟି ନିକ୍ଷେପ କଲେ । ସେତେବେଳେ ତାଙ୍କ ତୃତୀୟ ନେତ୍ରରୁ ଅଗ୍ନି ନିର୍ଗତ ହୋଇ ମୁହୂର୍ତ୍ତକ ମଧ୍ୟରେ ମଦନଙ୍କୁ ଭସ୍ମ କରିଦେଲା । ଏଥିପାଇଁ ମହାଦେବଙ୍କର ଅନ୍ୟ ନାମ ସ୍ମରହର । ପାର୍ବତୀ ଏହିରୂପେ ବିଫଳ-ମନୋରଥା ହୋଇ ଅତି କଷ୍ଟସାଧ୍ୟ କଠୋର ତପଶ୍ଚରଣରେ ପ୍ରବୃତ୍ତ ହେଲେ । ଶେଷରେ ମହାଦେବ ତାଙ୍କ ତପସ୍ୟାରେ ପରିତୁଷ୍ଟ ହୋଇ ତାଙ୍କୁ ବିବାହ କଲେ ଏବଂ ନିଜର ଅର୍ଦ୍ଧାଙ୍ଗିନୀରୂପେ ସର୍ବଦା ତାଙ୍କୁ ଦେହରେ ଧାରଣ କଲେ । ଏହି ବିବାହରେ ପାର୍ବତୀଙ୍କ ଗର୍ଭରୁ ଗଣେଶ ଓ କାର୍ତ୍ତିକେୟ ଜନ୍ମଗ୍ରହଣ କଲେ । ହିମାଳୟଙ୍କ ଜ୍ୟେଷ୍ଠା କନ୍ୟା ଗଙ୍ଗା ମଧ୍ୟ ମହାଦେବଙ୍କୁ ପତିରୂପେ ବରଣ କଲେ । ମହାଦେବଙ୍କର ଆଠଗୋଟି ମୂର୍ତ୍ତି ଯଥା—ସର୍ବ ବା କ୍ଷିତିମୂର୍ତ୍ତି, ଭବ ବା ଜଳମୂର୍ତ୍ତି, ଉଗ୍ର ବା ବାୟୁମୂର୍ତ୍ତି, ଭୀମ ବା ଆକାଶମୂର୍ତ୍ତି, ଈଶାନ ବା ସୂର୍ଯ୍ୟମୂର୍ତ୍ତି, ମହାଦେବ ବା ଚନ୍ଦ୍ରମୂର୍ତ୍ତି, ପଶୁପତି ବା ଯଜମାନମୂର୍ତ୍ତି । ସାଧାରଣ ଲୋକଙ୍କ ବିଶ୍ୱାସ ଯେ ମହାଦେବ ସର୍ବଦା ଗଞ୍ଜେଇ ନିଶାରେ ଭୋଳ ଥାଆନ୍ତି, ଏଥିପାଇଁ ତାଙ୍କର ଦେଶଜ ନାମ ଭୋଳାନାଥ ।

ମହାଦେବଙ୍କୁ ନିର୍ଦ୍ଦିଷ୍ଟ ଲିଙ୍ଗମୂର୍ତ୍ତିରେ ପୂଜା କରାଯାଏ । ଗୋଟିଏ ସ୍ତ୍ରୀଯୋନି ଆକାରର ପ୍ରସ୍ତରର କେନ୍ଦ୍ରସ୍ଥିତ ବିବରରେ ପୁରୁଷ ଲିଙ୍ଗ ଆକାରର ପ୍ରସ୍ତର ବା ମଣିମୟ ବା ଧାତୁମୟ ବା ମୃତ୍ତିକାମୟ ବିଗ୍ରହ ସଂଯୁକ୍ତ ହୋଇ ତାହା ଶିବରୂପେ ପୂଜିତ ହୁଅନ୍ତି । ନାନାପ୍ରକାର ଶିବଲିଙ୍ଗ ଦେଖାଯାନ୍ତି । ଯଥା—ସ୍ୱୟଂଭୁ, ଜ୍ୟୋତିର୍ଲିଙ୍ଗ, ପାର୍ଥିବଲିଙ୍ଗ, ବାଣଲିଙ୍ଗ, ଇତ୍ୟାଦି । ପାର୍ବତୀଙ୍କୁ ଦୁର୍ଗା, କାଳୀ, ଚଣ୍ଡୀ, ଶ୍ୟାମା, ଜଗଦ୍ଧାତ୍ରୀ, ଅନ୍ନପୂର୍ଣ୍ଣା, ଦଶ

ମହାବିଦ୍ୟା ଆଦି ନାନା ରୂପରେ ପୂଜା କରାଯାଏ । କେତେକ ଶିବଲିଙ୍ଗ ଶକ୍ତି ଗହ୍ୱରରେ ଅନ୍ତର୍ନିହିତ ଥାଆନ୍ତି ।

ଯେଉଁମାନେ ମହାଦେବଙ୍କ ଭକ୍ତ ସେମାନଙ୍କୁ ଶୈବ ବୋଲାଯାଏ । ମହାଦେବଙ୍କ ମୁଖରୁ ତନ୍ତ୍ରଶାସ୍ତ୍ର ବାହାରିଅଛି । ତନ୍ତ୍ରଶାସ୍ତ୍ରରେ ଶକ୍ତି ପୂଜାହିଁ ପ୍ରଧାନ ଅଙ୍ଗ । ଯେଉଁମାନେ ତାନ୍ତ୍ରିକ ମତରେ ଶକ୍ତି ଉପାସନା କରନ୍ତି, ସେମାନଙ୍କୁ ଶାକ୍ତ ବୋଲାଯାଏ । (ଭାଷାକୋଷ)

**ମହାଦ୍ୱୀପ**—ପ୍ରାଚୀନ ହିନ୍ଦୁମାନଙ୍କ ମତରେ ପୃଥିବୀ ସାତଗୋଟି ମହାସାଗର ବେଷ୍ଟିତ ସାତଗୋଟି ମହାଦ୍ୱୀପରେ ବିଭକ୍ତ ଥିଲା । ଯଥା—ଜମ୍ବୁ (ଭାରତବର୍ଷ) ପ୍ଲକ୍ଷ, ଶାଳ୍ମଳି, କୁଶ, କ୍ରୌଞ୍ଚ, ଶାକ, ପୁଷ୍କର ।

ଆଧୁନିକ ପଣ୍ଡିତମାନଙ୍କ ମତରେ ପୃଥିବୀ ଦୁଇଟି ମହାଦ୍ୱୀପରେ ବିଭକ୍ତ । ଯଥା—ଆସିଆ, ୟୁରୋପ, ଆଫ୍ରିକା ମିଶି ପ୍ରାଚୀନ ମହାଦ୍ୱୀପ, ଆମେରିକା ଓ ଅଷ୍ଟ୍ରେଲିଆ ନୂତନ ମହାଦ୍ୱୀପ । (ଭାଷାକୋଷ)

**ମହାପଦ୍ମ**—କୁବେରଙ୍କ ନିଧି ବିଶେଷ । ନାଗ ବିଶେଷ ।

**ମହାପାତକ**—ମହାପାପ । ଶାସ୍ତ୍ର ମତରେ ପାଞ୍ଚଗୋଟି କର୍ମ ମହାପାତକର ଅନ୍ତର୍ଗତ । ମନୁଙ୍କ ନିର୍ଦ୍ଦିଷ୍ଟ—ବ୍ରହ୍ମହତ୍ୟା, ସୁରାପାନ, ଗୁରୁପତ୍ନୀ ହରଣ, ସୁବର୍ଣ୍ଣ ସ୍ତେୟ ଏବଂ ଏହି ଚାରିକର୍ମ ଯେ କରନ୍ତି ତାଙ୍କ ସଙ୍ଗେ ସଂସର୍ଗ । (ମନୁ)

**ମହାଭାଗବତ**—ବିଷ୍ଣୁଙ୍କର ଶ୍ରେଷ୍ଠ ଭକ୍ତ । କେତେଜଣ ପ୍ରସିଦ୍ଧ ମହାଭକ୍ତ । ଯଥା—ମନୁ, ସନକାଦି ସପ୍ତର୍ଷି ନାରଦ, ଜନକ, କପିଳ, ବ୍ରହ୍ମା, ବଳି, ଭୀଷ୍ମ, ପ୍ରହ୍ଲାଦ, ଶୁକଦେବ, ଧର୍ମରାଜ ଓ ଶିବ । (ହିନ୍ଦୀ ଶବ୍ଦସାଗର)

**ମହାଭାରତ**—ମହର୍ଷି ବ୍ୟାସଦେବକୃତ ଅଷ୍ଟାଦଶ ପର୍ବାତ୍ମକ ବିରାଟ ସଂସ୍କୃତ ପଦ୍ୟଗ୍ରନ୍ଥ ବା ମହାକାବ୍ୟ । ଏଥିରେ ଅଠରଟି ପର୍ବ ଅଛି । ଯଥା—ଆଦି, ସଭା, ବନ, ବିରାଟ, ଉଦ୍‌ଯୋଗ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ସୌପ୍ତିକ ନାରୀ, ଶାନ୍ତି, ଅନୁଶାସନ, ଅଶ୍ୱମେଧ, ଆଶ୍ରମବାସ, ମୂଷଳ, ମହାପ୍ରସ୍ଥାନ, ସ୍ୱର୍ଗାରୋହଣ । ଏପରି ବିସ୍ତୃତ ଗ୍ରନ୍ଥ ପୃଥିବୀରେ ନାହିଁ । ଏଥିରେ ପ୍ରାୟ ଏକ ଲକ୍ଷ ଶ୍ଳୋକ ଓ ପ୍ରତି ଶ୍ଳୋକରେ ଚାରି ଚରଣ ବା ଦୁଇ ଧାଡ଼ି ଅଛି । ସୁତରାଂ ଏହାର ଧାଡ଼ି ସଂଖ୍ୟା ୨ ଲକ୍ଷ ହେବ । ମହାଭାରତର ମୂଳଘଟଣା କୁରୁ ପାଣ୍ଡବଙ୍କର ଯୁଦ୍ଧାଦି ବର୍ଣ୍ଣନା । ପାଣ୍ଡବମାନଙ୍କ ସ୍ୱର୍ଗାରୋହଣ ବର୍ଣ୍ଣନା ଏହାର

ଶେଷ ପର୍ବ; କିନ୍ତୁ ଏଥିରେ ପ୍ରସଙ୍ଗକ୍ରମେ ବେଦର ନିଗୂଢ଼ ତତ୍ତ୍ୱ, ଉପନିଷଦର ବ୍ୟାଖ୍ୟା, ଇତିହାସ, ପୁରାଣ, ବର୍ତ୍ତମାନ, ଭୂତ ଓ ଭବିଷ୍ୟତ କାଳତତ୍ତ୍ୱ ନିରୂପଣ, ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି, ଆଦିର ବିବରଣ, ବିବିଧ ଧର୍ମ, ବର୍ଣ୍ଣ ଓ ଆଶ୍ରମର ଲକ୍ଷଣ, ବର୍ଣ୍ଣମାନଙ୍କର ଅଧିକାରବିଧି, ତପସ୍ୟା, ବ୍ରହ୍ମଚର୍ଯ୍ୟ, ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ଯୁଗ ଚତୁଷ୍ଟୟ, ଆତ୍ମତତ୍ତ୍ୱ ନିରୂପଣ, ନ୍ୟାୟ, ଦର୍ଶନ, ଶିକ୍ଷା, ଚିକିତ୍ସା, ତୀର୍ଥ, ଦେଶ, ନଦୀ, ପର୍ବତ, ବନ, ସମୁଦ୍ର, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ରାଜନୀତି, ଧର୍ମନୀତି, ସମାଜନୀତି, ଶିଳ୍ପ, କୃଷି, ବାଣିଜ୍ୟ, ଲୋକ ବ୍ୟବହାର, ଦୁର୍ଗ, ସେନାଚାଳନା, ବ୍ୟୂହରଚନା ଆଦି ଲୋକଯାତ୍ରାବିଧାନମାନ ବର୍ଣ୍ଣିତ ହୋଇଅଛି । ପରଂବ୍ରହ୍ମତତ୍ତ୍ୱ ପ୍ରତିପାଦନ ଏହାର ଅନ୍ୟତମ ବର୍ଣ୍ଣନୀୟ ବିଷୟ । ପଣ୍ଡିତମାନେ କହନ୍ତି—

ଭାରତଃ ପଞ୍ଚମୋ ବେଦଃ, ବାଳକଃ ସପ୍ତମୋ ରସଃ
ଦାତା ଚ ନବମଂ ରତ୍ନଂ, ଜାମାତା ଦଶମୋ ଗ୍ରହଃ ।

ରଣକ୍ଷେତ୍ରରେ ଅର୍ଜ୍ଜୁନଙ୍କ ସାରଥି ରୂପରେ ଶ୍ରୀକୃଷ୍ଣ ଉପସ୍ଥିତ ହୋଇ ଉପଦେଶ ଛଳରେ ଆଧ୍ୟାତ୍ମିକ ନିଗୂଢ଼ ତତ୍ତ୍ୱର ବା ଯୋଗର, ଯେଉଁ ଉପଦେଶଚୟ ଦେଇଅଛନ୍ତି, ତାହା 'ଭଗବଦ୍‌ଗୀତା' ନାମରେ ପୃଥିବୀ ପ୍ରସିଦ୍ଧ । ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ମହାଭାରତରେ ପ୍ରତିପାଦିତ ହୋଇଅଛି । ଏଥିପାଇଁ ଲୋକେ କହନ୍ତି—"ଯାହା ନାହିଁ ଭାରତେ (ମହାଭାରତରେ) ତାହା ନାହିଁ ଭାରତେ (ଭାରତ ବର୍ଷରେ) । ଏହି ବିରାଟ ଗ୍ରନ୍ଥ ଏବେ ବିଭିନ୍ନ ଭାଷାରେ ଭାଷାନ୍ତରିତ ହେଉଛି । ବିଶେଷତଃ ବୈଦେଶିକ ଧୀମନ୍ତମାନେ ଏଥିରେ ସମଧିକ ଅଗ୍ରସର ହେଉଛନ୍ତି ।

ଭାରତବର୍ଷର ଚନ୍ଦ୍ରବଂଶୀୟ ରାଜା ହସ୍ତିନାପୁରରେ ରାଜତ୍ୱ କରୁଥିଲେ । ଶାନ୍ତନୁ ନାମକ ଏହି ବଂଶର ପରମ ଧାର୍ମିକ ରାଜା ପ୍ରଥମେ ଗଙ୍ଗାଙ୍କୁ ବିବାହ କରିଥିଲେ ଓ ଗଙ୍ଗାଙ୍କ ଗର୍ଭରୁ ଭୀଷ୍ମ ନାମକ କୁମାର ଜନ୍ମ ହେଲେ । ପରେ ଶାନ୍ତନୁ ଧୀବର ରାଜକନ୍ୟା ସତ୍ୟବତୀଙ୍କୁ ବିବାହ କରିବାକୁ ଇଚ୍ଛା କଲେ; କିନ୍ତୁ ଶାନ୍ତନୁଙ୍କ ପୁତ୍ର ଭୀଷ୍ମ ଶାନ୍ତନୁଙ୍କ ଅନ୍ତେ ରାଜା ହେବେ ଓ ସତ୍ୟବତୀଙ୍କର ପୁତ୍ର ରାଜା ହୋଇପାରିବେ ନାହିଁ, ଏହି ଆଶଙ୍କାରେ ଧୀବରରାଜ ସ୍ୱୀୟ କନ୍ୟାକୁ ଶାନ୍ତନୁଙ୍କୁ ଦେବାକୁ ଅସ୍ୱୀକାର କଲେ । ଭୀଷ୍ମ ଏହା ଜାଣିପାରି ନିଜେ ଭାବୀ ରାଜପଦରୁ ଦାବୀ ତ୍ୟାଗ କଲେ ଓ ରାଜପଦ ପାଇଁ ଭବିଷ୍ୟତରେ ଦାବିଦାର ହେବାକୁ ତାଙ୍କର କେହି ବଂଶଧର ଜନ୍ମିବେ ନାହିଁ ବୋଲି ସେ

ନିଜେ ଚିରକୁମାରବ୍ରତ ଅବଲମ୍ବନ କରିବାକୁ ଦୃଢ଼ ପ୍ରତିଜ୍ଞା କଲେ । ଏହି ଅଟଳ ପ୍ରତିଜ୍ଞା ସେ ପାଳନ କଲେ । ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇ କୁମାର ଜାତ ହେଲେ । ଚିତ୍ରାଙ୍ଗଦ ଅଳ୍ପ ବୟସରେ ମଲେ । ବିଚିତ୍ରବୀର୍ଯ୍ୟ ପିତାଙ୍କର ସିଂହାସନରେ ବସିଲେ । ସେ ଦୁଇ ସ୍ତ୍ରୀ ବିବାହ କରିଥିଲେ । କିନ୍ତୁ ନିଃସନ୍ତାନ ଅବସ୍ଥାରେ ମୃତ ହେବାରୁ ଏହାଙ୍କ ଅନ୍ତେ ଏହାଙ୍କ ସ୍ତ୍ରୀଙ୍କ ଶାସ୍ତ୍ରବିଧି (ନିୟୋଗ) ଅନୁସାରେ ବ୍ୟାସଦେବଙ୍କ ଔରସରେ ଧୃତରାଷ୍ଟ୍ର ଓ ପାଣ୍ଡୁ ନାମକ କ୍ଷେତ୍ରଜ ପୁତ୍ରଦ୍ୱୟ ଜନ୍ମ ହେଲେ । ଧୃତରାଷ୍ଟ୍ର ଜ୍ୟେଷ୍ଠ କିନ୍ତୁ ଜନ୍ମାନ୍ଧ ଥିବାରୁ କନିଷ୍ଠ ଭାଇ ପାଣ୍ଡୁ ରାଜା ହେଲେ । ପାଣ୍ଡୁଙ୍କର ଦୁଇ ସ୍ତ୍ରୀ କୁନ୍ତୀ ଓ ମାଦ୍ରୀ । କୁନ୍ତୀଙ୍କ ଗର୍ଭରୁ ଯୁଧିଷ୍ଠିର, ଭୀମ ଓ ଅର୍ଜ୍ଜୁନ ଏବଂ ମାଦ୍ରୀଙ୍କ ଗର୍ଭରୁ ନକୁଳ ଓ ସହଦେବ ଜନ୍ମ ହେଲେ । ଏହି ମାନେହିଁ ପଞ୍ଚ-ପାଣ୍ଡବ । ଏତଦ୍ ବ୍ୟତୀତ ଅବିବାହିତ ଅବସ୍ଥାରେ କୁନ୍ତୀଙ୍କଠାରୁ ସୂର୍ଯ୍ୟଙ୍କ ଔରସରେ କାନୀନ କୁମାର କର୍ଣ୍ଣ ଜନ୍ମି ଥିଲେ । ଧୃତରାଷ୍ଟ୍ର ଗାନ୍ଧାରୀଙ୍କୁ ବିବାହ କରିଥିଲେ ଓ ଗାନ୍ଧାରୀଙ୍କ ଗର୍ଭରୁ ଦୁର୍ଯ୍ୟୋଧନ, ଦୁଃଶାସନ ଆଦି ଶତପୁତ୍ର ଜନ୍ମି ଥିଲେ । ଏହିମାନେହିଁ କୌରବ । ବାଲ୍ୟକାଳରେ ପାଣ୍ଡବମାନେ ପିତୃଶୂନ୍ୟ ହୋଇଥିଲେ । ସେମାନଙ୍କୁ ଧୃତରାଷ୍ଟ୍ର ପୁତ୍ରନିର୍ବିଶେଷରେ ଲାଳନ-ପାଳନ କରିଥିଲେ । ପାଣ୍ଡବମାନଙ୍କ ମଧ୍ୟରେ ଯୁଧିଷ୍ଠିର ଧାର୍ମିକ, ଭୀମ ଶାରୀରିକ ବଳଶାଳୀ ଓ ଅର୍ଜୁନ ରଣବିଦ୍ୟା ବିଶାରଦ ଥିଲେ । ଦୁର୍ଯ୍ୟୋଧନ ହିଂସା ପରାୟଣ ଥିଲେ । ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ରାଜପଦରେ ଅଭିଷିକ୍ତ କରିବାକୁ ଇଚ୍ଛା କରିଥିଲେ, କିନ୍ତୁ ଏ ପ୍ରସ୍ତାବରେ ଦୁର୍ଯ୍ୟୋଧନ ଅସମ୍ମତ ହୋଇ ଆପଣାର ମାମୁଁ ଶକୁନି ଓ ମନ୍ତ୍ରୀ କର୍ଣ୍ଣଙ୍କ ପରାମର୍ଶରେ ପାଣ୍ଡବମାନଙ୍କ ବିନାଶ ସାଧନାର୍ଥେ ନାନା ଉପାୟ ଅବଲମ୍ବନ କରି ଅକୃତକାର୍ଯ୍ୟ ହେଲେ । ଦୁର୍ଯ୍ୟୋଧନ କୌଶଳ-କ୍ରମେ ପାଣ୍ଡବମାନଙ୍କୁ ବାରଣାବତ ନଗରକୁ ପ୍ରେରଣ କରିଥିଲେ । ସେଠାରେ ପାଣ୍ଡବମାନଙ୍କୁ ପୋଡ଼ି ମାରି ପକାଇବା ପାଇଁ ଗୋଟିଏ ଜତୁଗୃହ ତାଙ୍କ ଆଦେଶରେ ପୂର୍ବରୁ ନିର୍ମିତ ହୋଇଥିଲା । ପାଣ୍ଡବମାନେ ପୂର୍ବରୁ ବିଶ୍ୱସ୍ତସୂତ୍ରରେ ତାହା ଜାଣିପାରି ଜତୁଗୃହଦାହ ପୂର୍ବରୁ ପଳାଇଗଲେ । ସେମାନେ ଛଦ୍ମବେଶରେ ନାନା ଦେଶ ପର୍ଯ୍ୟଟନ କରି ପଞ୍ଚାଳ ରାଜ୍ୟରେ ଉପସ୍ଥିତ ହେଲେ । ସେଠାରେ ଦ୍ରୁପଦ ରାଜକନ୍ୟା ଦ୍ରୌପଦୀଙ୍କର ସ୍ୱୟମ୍ବର ସଭାରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟକୁ ଉପସ୍ଥିତ ହୋଇ କୌଣସି ରାଜା ଭେଦ କରିପାରିଲେ ନାହିଁ । ଦୁର୍ଯ୍ୟୋଧନ ମଧ୍ୟ ଲକ୍ଷ୍ୟଭେଦରେ ଅକୃତକାର୍ଯ୍ୟ ହେଲେ । ଶେଷରେ ଛଦ୍ମବେଶଧାରୀ ଅର୍ଜ୍ଜୁନ ସେହି ଲକ୍ଷ୍ୟ ଭେଦ କରି ଦ୍ରୌପଦୀଙ୍କୁ ପ୍ରାପ୍ତ ହେଲେ ଓ ମାତାଙ୍କ ଆଦେଶ ଅନୁସାରେ ପାଞ୍ଚ ଭାଇଯାକ ଦ୍ରୌପଦୀଙ୍କୁ ବିବାହ କଲେ । ତତ୍ପରେ ଧୃତରାଷ୍ଟ୍ର

ରାଜ୍ୟକୁ ଦୁଇଭାଗ କରି ଦୁର୍ଯ୍ୟୋଧନଙ୍କୁ ହସ୍ତିନାରେ ଓ ଯୁଧିଷ୍ଠିରଙ୍କୁ ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ ପ୍ରଦାନ କଲେ ।

ଅନନ୍ତର ଦୁର୍ଯ୍ୟୋଧନ ଶକୁନିଙ୍କ ପରାମର୍ଶରେ ଏକ କପଟ ପାଶକ୍ରୀଡ଼ା (ପଶାଖେଳ)କୁ ଯୁଧିଷ୍ଠିରଙ୍କୁ ଆହ୍ୱାନ କଲେ । ଏ କପଟ ପାଶ କ୍ରୀଡ଼ାରେ ଯୁଧିଷ୍ଠିର ଧନ, ରାଜ୍ୟ ଭ୍ରାତୃଗଣ ଓ ଶେଷରେ ପତ୍ନୀଙ୍କ ପର୍ଯ୍ୟନ୍ତ ତାହା ସମସ୍ତ ହରାଇବସିଲେ । ପଣରେ ଦ୍ରୌପଦୀଙ୍କୁ ଲଭିକରି ଦୁର୍ଯ୍ୟୋଧନ ଅନ୍ତଃପୁରକୁ ଟାଣିଆଣି ସଭା ମଧ୍ୟରେ ବିବସ୍ତ୍ରା କଲେ, କିନ୍ତୁ ଶ୍ରୀକୃଷ୍ଣଙ୍କ ଦୟାରୁ ଦ୍ରୌପଦୀଙ୍କ ମାନରକ୍ଷା ହେଲା । ଶେଷରେ ଉକ୍ତ କ୍ରୀଡ଼ାର ପଣ ଅନୁସାରେ ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ୧୨ ବର୍ଷ ବନବାସ ଓ ବର୍ଷେ ଅଜ୍ଞାତ ବାସ କଲେ । ଏହି ତେର ବର୍ଷ ଶେଷରେ ପାଣ୍ଡବମାନେ ଯେତେବେଳେ ଆପଣା ରାଜ୍ୟକୁ ଆସି ଦୁର୍ଯ୍ୟୋଧନଙ୍କୁ ନିଜ ରାଜ୍ୟ ଫେରାଇ ଦେବାକୁ କହିଲେ, ସେତେବେଳେ ଦୁର୍ଯ୍ୟୋଧନ କହିଲେ ଯେ ବିନା ଯୁଦ୍ଧରେ ସେମାନଙ୍କୁ ସୂଚ୍ୟଗ୍ର ପରିମିତ ସ୍ଥାନ ଦେବେନାହିଁ । ଶେଷରେ ପାଣ୍ଡବମାନେ ବାଧ୍ୟ ହୋଇ ଯୁଦ୍ଧ ଘୋଷଣା କଲେ । ଏହି ଯୁଦ୍ଧରେ ଭାରତର ବିଭିନ୍ନ ପ୍ରଦେଶର ରାଜାମାନେ ଏ ପକ୍ଷ ଅଥବା ସେ ପକ୍ଷ ଅବଲମ୍ବନ କଲେ । ଏହି ଯୁଦ୍ଧ କୁରୁକ୍ଷେତ୍ର ନାମକ ରଣଭୂମିରେ ୧୮ ଦିନ ବ୍ୟାପୀ ଲାଗିଥିଲା । ଉଭୟ ପକ୍ଷର ମୋଟ ସୈନ୍ୟସଂଖ୍ୟା ଅଷ୍ଟାଦଶ ଅକ୍ଷୌହିଣୀ ଥିଲା । ୧୦୯୩୫୦ ପଦାତି ୬୫୬୧୦ ଅଶ୍ୱ, ୨୧୮୭୦ ଗଜ ଓ ୨୧୮୭୦ ରଥବିଶିଷ୍ଟ ସେନା ଦଳର ନାମ ଅକ୍ଷୌହିଣୀ । ଏହି ସଂଖ୍ୟାରୁ ମହାଭାରତ ଯୁଦ୍ଧର ସର୍ବମୋଟ ସୈନ୍ୟସଂଖ୍ୟା କେତେ ବିଶାଳ ଓ ଅପରିମିତ ଥିଲା ତାହା ସହଜେ କଳନା କରି ହେବ । ଏହି ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷର ସେନାପତି ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଶଲ୍ୟ ପ୍ରଭୃତି ମହାରଥୀମାନେ ପରାଜିତ ଓ ନିହତ ହେଲେ । ଶ୍ରୀକୃଷ୍ଣ ଭ୍ରାତୃବିବାଦମୂଳକ ଏହି ଯୁଦ୍ଧରେ ଅସ୍ତ୍ରଧାରଣ କରିବେ ନାହିଁ ବୋଲି ସତ୍ୟ କରିଥିଲେ, କିନ୍ତୁ ଅର୍ଜୁନଙ୍କ ସାରଥିରୂପେ ଏବଂ ପରାମର୍ଶଦାତାରୂପେ ପାଣ୍ଡବମାନଙ୍କର ସହାୟତା କରିଥିଲେ । ଅବଶେଷରେ ଭୀମ ଗଦା ଦ୍ୱାରା ଦୁର୍ଯ୍ୟୋଧନଙ୍କୁ ନିହତ କଲେ । ଏହି ଯୁଦ୍ଧର ଅବସାନରେ ଯୁଦ୍ଧ କ୍ଷେତ୍ରରେ ସମବେତ ସମସ୍ତ ବୀର ନିହତ ହେଲେ ଓ କେବଳ ପାଣ୍ଡବ ପକ୍ଷରୁ ୭ ଜଣ ଓ କୌରବ ପକ୍ଷରୁ ୩ ଜଣ ମାତ୍ର ବୀର ଜୀବିତ ରହିଲେ । କିନ୍ତୁ କୌରବ ପକ୍ଷୀୟ ଜୀବିତ ବୀରମାନଙ୍କ ମଧ୍ୟରୁ କେହି ସିଂହାସନ ଅଧିକାର କରିବାର ଯୋଗ୍ୟ ନ ଥିବାରୁ ପାଣ୍ଡବମାନେ ରାଜ୍ୟ ପାଇଲେ । ତତ୍ପରେ ଧୃତରାଷ୍ଟ୍ର ତାଙ୍କ ସ୍ତ୍ରୀ ଗାନ୍ଧାରୀ

ଓ ଭ୍ରାତୃବଧୂ କୁନ୍ତୀଙ୍କ ସହିତ ତପସ୍ୟାର୍ଥେ ବନକୁ ଗମନ କଲେ । କିଛିକାଳ ପରେ ଦାବାନଳରେ ପୋଡ଼ି ହୋଇ ମଲେ । ଯୁଧିଷ୍ଠିର ଜ୍ଞାତିବଧ ପାପରୁ ନିସ୍ତାର ପାଇବା ପାଇଁ ଅଶ୍ୱମେଧ ଯଜ୍ଞ କଲେ ତତ୍ପରେ ଅର୍ଜୁନଙ୍କ ପୌତ୍ର ପରୀକ୍ଷିତଙ୍କୁ ରାଜ୍ୟଭାର ଦେଇ ଆପଣାର ଚାରିଭାଇ ଓ ଦ୍ରୌପଦୀଙ୍କ ସହିତ ସଶରୀରରେ ସ୍ୱର୍ଗକୁ ଯିବାପାଇଁ ହିମାଳୟ ଅଭିମୁଖେ ମହାପ୍ରସ୍ଥାନ କଲେ । ତାଙ୍କ ସଙ୍ଗେ ସଙ୍ଗେ ଗୋଟିଏ କୁକୁର ଅନୁସରଣ କରିଥିଲା । ବାଟରେ କ୍ରମଶଃ ତାଙ୍କର ଭାଇମାନେ ଓ ଦ୍ରୌପଦୀ ଜଣକ ପରେ ଜଣେ ଦେହତ୍ୟାଗ କଲେ । ଶେଷକୁ ଯୁଧିଷ୍ଠିର ଓ କୁକୁରଟି ରହିଗଲେ । ସେ କୁକୁର ସ୍ୱୟଂ ଧର୍ମଦେବତା । ଅନନ୍ତର ଇନ୍ଦ୍ରଙ୍କ ପ୍ରେରିତ ରଥରେ ସେମାନେ ସ୍ୱର୍ଗକୁ ଗମନ କଲେ । ଏହି ବିଷୟମାନ ମହାଭାରତରେ ଏକ ଚତୁର୍ଥାଂଶରେ ବର୍ଣ୍ଣିତ ହୋଇଅଛି । ବାକି ୩ ଅଂଶରେ ଧର୍ମ, ସମାଜ, ରାଜନୀତି ଆଦି ନାନା ବିଷୟ ବର୍ଣ୍ଣିତ ହୋଇଅଛି । ମହାଭାରତରେ ଗାନ୍ଧାର, ସିନ୍ଧୁ, ହସ୍ତିନା, ପାଞ୍ଚାଳ, ବାରାଣସୀ, ମଗଧ, ଅଙ୍ଗ ମତ୍ସ୍ୟ, ଚେଦି, ଦ୍ୱାରକା, ବିଦର୍ଭ, ପ୍ରାଗ୍‌ଜ୍ୟୋତିଷ ଓ କଳିଙ୍ଗ ଆଦିର ପରାକ୍ରାନ୍ତ ରାଜାମାନଙ୍କ ଯୋଗ ଦେଇଥିବା ବର୍ଣ୍ଣିତ ଅଛି । ସେ ସମୟରେ ଅନାର୍ଯ୍ୟ ଜାତିମାନେ ସମ୍ପୂର୍ଣ୍ଣ ବଞ୍ଚିତ ହୋଇ ନଥିଲେ ଓ ବକାସୁର, ମୟଦାନବାଦି ଅସୁରମାନେ ମଧ୍ୟ ସେ ସମୟରେ କ୍ଷମତାଶାଳୀ ଥିଲେ । ମହାଭାରତର ଘଟଣା ଆଜକୁ ଚାରି ହଜାର ବର୍ଷ ପୂର୍ବେ ଘଟିଥିବାର ଆଧୁନିକ ପଣ୍ଡିତମାନେ ଅନୁମାନ କରନ୍ତି । ସଂସ୍କୃତ ମହାଭାରତ ବେଦବ୍ୟାସଙ୍କ ଦ୍ୱାରା ରଚିତ ହୋଇଥିଲା । ଗଣେଶ ଏହାର ଲେଖିବା ଭାର ନେଇଥିଲେ । ସ୍ଥୂଳତଃ ମହର୍ଷି ବ୍ୟାସଙ୍କର ସେ ଷ୍ଟେନୋ ଥିଲେ ।

ଉତ୍କଳ ଭାଷାରେ ଦୁଇଟି ମହାଭାରତ ଦୃଷ୍ଟ ହୁଏ । ଗୋଟିଏ ଶୂଦ୍ର ମୁନି ଶାରଳାକୃତ ମହାଭାରତ । ଏହାକୁ ଲୋକେ ଶାରଳା ମହାଭାରତ ବୋଲି କହନ୍ତି । ଏହା ପଦ୍ୟରେ ଲେଖା, ମାତ୍ର ଏହାର ଯତିପାତ ବା ଅକ୍ଷର ନିୟମ ନାହିଁ । ଗୋଟିଏ ଚରଣ ଦଶ ବା ବାର ଅକ୍ଷର ହେଲେ ଅନ୍ୟ ଚରଣଟି ୧୫ ବା ୧୭ ଅକ୍ଷର । ଏ ପର୍ଯ୍ୟନ୍ତ ଏହାର ମୂଳ ଲେଖା ପ୍ରକାଶିତ ହୋଇନାହିଁ । ବଜାରରେ ଯେଉଁ ଶାରଳା ମହାଭାରତ ଦେଖାଯାଏ ତାହା ଚଉଦ ଅକ୍ଷର ନିୟମରେ ଲେଖା । ମାତ୍ର ତାହା ଶାରଳାଙ୍କ ମୂଳ ଗ୍ରନ୍ଥ ନୁହେଁ । ଏହି ମହାଭାରତର ସଂସ୍କୃତ ସହିତ ମୋଟେ ସମ୍ବନ୍ଧ ନାହିଁ । ପାଣ୍ଡବାସୁର ବଧ କଟକଦ୍ମା ଉପାଖ୍ୟାନ, ନାନାପ୍ରକରଣ, ହରଣ, ମରଣ ଓ ଶରଣ ଏଥିରେ ଏକ ଏକ ଅବାନ୍ତର ବିଷୟ । ଆଶ୍ଚର୍ଯ୍ୟ କଥା ଏ ମହାଭାରତରେ

ବିଶ୍ୱବିଖ୍ୟାତ ଭଗବଦ୍‌ଗୀତାର ସୂଚନା ନାହିଁ । ଶାରଳାଙ୍କୁ ଏ ଦେଶର ଆଦି କବି ବୋଲି ସ୍ୱୀକାର କରି ତାଙ୍କ କୃତ ଗାଇବା ଅବଶ୍ୟ ଏ ଜାତିର ଗୁଣ ହୋଇପାରେ । ମାତ୍ର ଶାରଳା ଯେ ସଂସ୍କୃତ ଭାଷାରେ ଏକାନ୍ତ ଅନଭିଜ୍ଞ ଥିଲେ ସେଥିଲାଗି ଆମ୍ଭମାନଙ୍କ ମୁଣ୍ଡ ସ୍ୱତଃ ନଇଁପଡ଼େ । ଭାଷାକୋଷ ସ୍ୱୀକାର କରନ୍ତି ଯେ ସେଥିରେ ମୂଳ ଗ୍ରନ୍ଥର ଅନେକ ବିଷୟ ଗ୍ରହଣ ଯାଇଅଛନ୍ତି । ଗଞ୍ଜାମ ଧରାକୋଟ ରାଜାଙ୍କର ପୂର୍ବପୁରୁଷ ରାଜା କୃଷ୍ଣସିଂହ ସମଗ୍ର ସଂସ୍କୃତ ମହାଭାରତକୁ ଓଡ଼ିଆ ପଦ୍ୟରେ ଅକ୍ଷରକୁ ଅକ୍ଷରରେ ଅନୁବାଦ କରି ଉତ୍କଳ ସାହିତ୍ୟରେ ଅକ୍ଷୟ କୀର୍ତ୍ତି ରଖିଯାଇ ଅଛନ୍ତି । ଏହାହିଁ ପ୍ରକୃତ ମହାଭାରତ ।

ମହାଭାରତ ପର୍ବ ସଂଗ୍ରହାଧ୍ୟାୟ (Index chapter)ରେ ସୂଚିତ ଅଧ୍ୟାୟ ଓ ଶ୍ଲୋକମାନଙ୍କ ସଂଖ୍ୟାକୁ ମୋଟ କଲେ ମହାଭାରତ ୧୯୨୩ଟି ଅଧ୍ୟାୟ ଓ ୧୦୪୮୩୬ ଶ୍ଲୋକଥିବାର ଜଣାଯାଏ କିନ୍ତୁ ବର୍ତ୍ତମାନ ମିଳୁଥିବା ମହାଭାରତର ଅଧ୍ୟାୟ ୨୧୯୭ଟି ଓ ୯୬୨୨୭ ଶ୍ଲୋକଥିବାର ଦେଖାଯାଏ ଓ ତହିଁ ମଧ୍ୟରୁ ଅନେକ ଶ୍ଲୋକ ପ୍ରକ୍ଷିପ୍ତ ଓ ସେମାନ ପରବର୍ତ୍ତୀ ଲେଖକମାନଙ୍କ ଦ୍ୱାରା ଯୋଡ଼ା ହୋଇଥିବା ପଣ୍ଡିତମାନେ ସିଦ୍ଧାନ୍ତ କରନ୍ତି । (ଭାଷାକୋଷ)

**ମହାରୌରବ**—ମହାପାପୀମାନଙ୍କ ଯନ୍ତ୍ରଣା ଭୋଗକରିବା ସ୍ଥାନ, ନରକ ବିଶେଷ । ମନୁ ସଂହିତା ୪।୮୮ରୁ ୯୦ରେ ଏକୋଇଶ ଗୋଟି ନରକର ବର୍ଣ୍ଣନା ଅଛି ଯଥା—ତାମିସ୍ର, ଅନ୍ଧତାମିସ୍ର, ମହାରୌରବ, ରୌରବ, କାଳସୂତ୍ର, ମହାନରକ, ସଞ୍ଜୀବନ, ମହାବୀଚ, ତପନ, ସମ୍ପ୍ରତାପନ, ସଂଘାତ ସକାକୋଳ, କୁଡ୍‌ମଳ, ପୂତିମୃତ୍ତିକ, ଲୋହଶଙ୍କୁ, ଋଜୀଷ, ପନ୍ଥାନ, ଶାଲ୍ମଳୀ ନଦୀ, ଅସିପତ୍ରବନ ଲୋହଦାରକ । ଯେଉଁ ଲୋଭୀ ଶାସ୍ତ୍ରମାର୍ଗ ପରିତ୍ୟାଗୀ ବ୍ରାହ୍ମଣ ରାଜାଠାରୁ ଦାନ ନିଏ ସେ କ୍ରମାନ୍ୱୟରେ ଏହି ୨୧ ନରକରେ ପତିତ ହୁଏ । (ଭାଷାକୋଷ)

**ମହାଶନ**—ରାମାୟଣୋକ୍ତ ଅସୁର ବିଶେଷ ।

**ମହାସେନ**—ଦେବ ସେନାପତି କାର୍ତ୍ତିକେୟଙ୍କ ନାମାନ୍ତର ।

**ମହିଷାସୁର**—ଅସୁର ବିଶେଷ । ଶିବଙ୍କର ବରପୁତ୍ର ରମ୍ଭାସୁର ନାମକ ଅସୁର ଶିବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ଏହି ପୁତ୍ର ଲାଭ କରିଥିଲା । ଏ ଅତ୍ୟନ୍ତ ଦୁର୍ଦ୍ଦାନ୍ତ ହୋଇ ଉଠିବାରୁ ଦେବତାମାନଙ୍କ ଅନୁରୋଧରେ ହରିହରଙ୍କ ତେଜଃ

ଚାମୁଣ୍ଡା ଭଗବତୀ ବା ଦୁର୍ଗା ଏହାଙ୍କୁ ବଧ କରିଥିଲେ । (ଚଣ୍ଡୀପୁରାଣ ୨ୟ ଓ ୩ୟ ଅଧ୍ୟାୟ) ଏହାର ଚିହ୍ନ ସ୍ୱରୂପ ବର୍ତ୍ତମାନ ପର୍ଯ୍ୟନ୍ତ ଦୁର୍ଗାଙ୍କ ନିକଟରେ ଦୁର୍ଗାପୂଜା ସମୟରେ ମହିଷ ବଳି ଦିଆଯାଏ ।

ମହାଭାରତ ବନପର୍ବରେ ସ୍କନ୍ଦଙ୍କ ଦ୍ୱାରା ନିହତ ଏକ ଅସୁରର ନାମ ମହିଷାସୁର ବୋଲି ଜଣାଯାଏ । କୃଷ୍ଣସିଂହ ବର୍ଣ୍ଣିପୁ ଦିଅନ୍ତି —

ତୁମ୍ଭ ବିନା ମହିଷକୁ ଆନ ଲୋକ ।
ଦେଖାଇ ନ ପାରଇ ଯମଙ୍କର ଲୋକ ।
(କୃଷ୍ଣସିଂହ ମହାଭାରତ ବନପର୍ବ, ଭାଷାକୋଷ)

ମହିଷାସୁର ବିଷୟରେ ଦେବୀଭାଗବତ ପଞ୍ଚମ ସ୍କନ୍ଧ ୨ୟ ଅଧ୍ୟାୟ ଦେଖନ୍ତୁ ।

**ମହୀରାବଣ**—ଅସୁର ବିଶେଷ । ମହୀରାବଣ ବଧ ବୋଲି ଯେଉଁ ଉପାଖ୍ୟାନ ଶୁଣାଯାଏ ତାହା ବାଲ୍ମୀକି ରାମାୟଣରେ ନାହିଁ । ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣରେ ମହୀରାବଣ ଇନ୍ଦ୍ରଜିତର ପୁତ୍ର ବୋଲି ବର୍ଣ୍ଣନା ଅଛି । ଯଥା—

ଇନ୍ଦ୍ରଜିତ ସୁତ ମହୀରାବଣ ବୀର ।
ପାତାଳ ଭୁବନେ ଅଟେ ସେ ଦଣ୍ଡଧର ।

ମାତ୍ର ମହୀରାବଣଙ୍କୁ ବିରୂପାକ୍ଷହତ ବୋଲି କେଶବ ରାମାୟଣରେ ବର୍ଣ୍ଣିତ ହୁଏ । ଭଞ୍ଜ ବୈଦେହୀଶବିଳାସରେ ମହୀରାବଣ, ରାବଣର ପୁତ୍ର ବୋଲି ବର୍ଣ୍ଣନା କରନ୍ତି । ଯଥା—

ବ୍ୟକ୍ତ ମହୀରାବଣ ନାମର ।
ବାଟେଷ୍ଟି ମହିମ ବିଷ୍ଣୁ ଉପର ।

ହିନ୍ଦୀ ଶବ୍ଦସାଗରରେ ଏହାଙ୍କୁ ରାବଣର ପୁତ୍ର ବୋଲି ବୋଲାଯାଇଅଛି ।

**ମାଣ୍ଡବୀ**—କୁଶଧ୍ୱଜ ଜନକଙ୍କ କନ୍ୟା ଓ ଭରତଙ୍କ ପତ୍ନୀ । ଏହାଙ୍କ ଗର୍ଭରୁ ତକ୍ଷ ଓ ପୁଷ୍କଳ (ର) ନାମକ ଦୁଇପୁତ୍ର ଜନ୍ମିଥିଲେ । ଭରତ ତକ୍ଷଙ୍କୁ ତକ୍ଷଶିଳାରେ ଏବଂ ପୁଷ୍କର ବା ପୁଷ୍କଳଙ୍କୁ ପୁଷ୍କଳାବତୀରେ ରାଜା କରିଥିଲେ ।
(ରାମାୟଣ ଓ ବାୟୁପୁରାଣ)

**ମାଣ୍ଡବ୍ୟ**—(ଅଣିମାଣ୍ଡବ୍ୟ ଦେଖ) । ଋଷି ବିଶେଷ ।

**ମାତଙ୍ଗ**—ଋଷି ବିଶେଷ । ଏ ଋଷ୍ୟମୂକ ପର୍ବତରେ ତପସ୍ୟା କରୁଥିଲେ । ବାଳି ଦୁନ୍ଦୁଭି ରାକ୍ଷସକୁ ମାରି ଫିଙ୍ଗିଦେଲା ବେଳେ ତା ଦେହର ରକ୍ତ ଋଷିଙ୍କ ଦେହରେ ପଡ଼ିବାରୁ ସେ କୁପିତ ହୋଇ ବାଳିକୁ ଅଭିଶାପ ଦେଲେ—'ତୁ ଏହି ପର୍ବତକୁ ଆସିଲେ ତୋ ମୁଣ୍ଡ ଫାଟିଯିବ ।' ବାଳି ତା ଭାଇ ସୁଗ୍ରୀବକୁ ମାଡ଼ମାରି ତଡ଼ିଦେବାରୁ ସୁଗ୍ରୀବ ଏହି ପର୍ବତକୁ ନିରାପଦ ମଣି ବାସ କରିଥିଲେ । ସେହିଠାରେ ସେ ରାମଚନ୍ଦ୍ରଙ୍କ ସହିତ ମିତ୍ରତା କରି ବାଳି ଅନ୍ତେ କିଷ୍କିନ୍ଧ୍ୟାର ରାଜା ହେଲେ । ମାତଙ୍ଗ ମହର୍ଷି ଶବରୀର ଗୁରୁ ଓ ମାତଙ୍ଗୀଦେବୀଙ୍କ ଉପାସକ ଓ ମୌନବ୍ରତୀ ଥିଲେ । ଏଥିପାଇଁ ଏହାଙ୍କ ଅଧ୍ୟୁଷିତ ପର୍ବତର ନାମ ଋଷ୍ୟମୂକ ହୋଇଥିଲା । (ହିନ୍ଦୀ ଶବ୍ଦସାଗର)

**ମାତଙ୍ଗୀ**—ନବମ ମହାବିଦ୍ୟା । ଏହାଙ୍କର ଚାରିଗୋଟି ହାତ ଓ ତିନୋଟି ଚକ୍ଷୁ, କପାଳରେ ଅର୍ଦ୍ଧଚନ୍ଦ୍ର, ପରିଧାନ ରକ୍ତବସ୍ତ୍ର । ଖଡ୍ଗ, ଚର୍ମ, ପାଶ ଓ ଅଙ୍କୁଶ ଏହି ଅସ୍ତ୍ରଗୁଡ଼ିକ ସେ ଚାରି ହାତରେ ଧରିଥାନ୍ତି । (ଚରିତାଭିଧାନ)

କଶ୍ୟପଙ୍କ ଏକ କନ୍ୟାର ନାମ ମାତଙ୍ଗୀ । ଏହାଙ୍କଠାରୁ ହସ୍ତୀମାନେ ଉତ୍ପନ୍ନ ହୋଇଥିଲେ । (ହିନ୍ଦୀ ଶବ୍ଦସାଗର)

**ମାତଳି**—ଦେବରାଜ ଇନ୍ଦ୍ରଙ୍କ ସାରଥି । ଏହାଙ୍କ କନ୍ୟା ଗୁଣକେଶୀ, ସୁମୁଖ ନାମକ ନାଗକୁ ବିବାହ କରିଥିଲେ । (ଚରିତାଭିଧାନ)

**ମାତୃକା**—ଯୋଗେଶ୍ୱରୀ, ମହେଶ୍ୱରୀ ପ୍ରଭୃତି ଅଷ୍ଟମାତୃକା । ଏମାନଙ୍କ ମଧ୍ୟରେ କାମ ଯୋଗେଶ୍ୱରୀ, କ୍ରୋଧ ମାହେଶ୍ୱରୀ, ଲୋଭ ବୈଷ୍ଣବୀ, ମଦ ବ୍ରାହ୍ମଣୀ, ମୋହ କୌମାରୀ, ମାତ୍ସର୍ଯ୍ୟ ଇନ୍ଦ୍ରାଣୀ, ପୈଶୁନ୍ୟ ଦଣ୍ଡଧାରିଣୀ ଏବଂ ଅସୂୟା-ବାରାହୀ ନାମରେ ଖ୍ୟାତ । (ଚରିତାଭିଧାନ)

**ମାତୃଗଣ**—ଦେବାଂଶରୂପଧାରିଣୀ ଦୁର୍ଗାଙ୍କର ଭିନ୍ନ ଭିନ୍ନ ଆଠଗୋଟି ରୂପ; ଅଷ୍ଟଶକ୍ତି । ହିନ୍ଦୁ ମତରେ ସୃଷ୍ଟିର ଜନ୍ମ, ପାଳନ ଓ ବିନାଶକାରିଣୀ ୮ ଗୋଟି ଦେବୀ । ଏହି ଅଷ୍ଟଶକ୍ତି ଯଥା—ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ, ବାରାହୀ, ବୈଷ୍ଣବୀ, କୌମାରୀ, ଚାମୁଣ୍ଡା ବା କୌବେରୀ, ଚର୍ଚ୍ଚିକା ; ମତାନ୍ତରେ ଚଣ୍ଡୀ ସ୍ଥଳରେ ଐନ୍ଦ୍ରୀ ।

ମାର୍କଣ୍ଡେୟ ପୁରାଣାନ୍ତର୍ଗତ ହରିହର ବ୍ରହ୍ମ ବିରଚିତ ଦେବୀ କବଚରେ ୧୯ଟି ମାତୃଗଣଙ୍କ ନାମ ଓ ବର୍ଣ୍ଣନା ଅଛି । ଯଥା—(୧) ପ୍ରେତସଂସ୍ଥା—ଚାମୁଣ୍ଡା; (୨) ମହିଷାସନା—ବାରାହୀ (୩) ଗଜସମାରୂଢା—ଐନ୍ଦ୍ରୀ,

(୪) ଗରୁଡ଼ାସନା—ବୈଷ୍ଣବୀ, (୫) ମହାବାରାହୀ—ନାରସିଂହୀ, (୬) ମହାବଳା—ଶିବଦୂତୀ, (୭) ଶବବାହନା—କୌମାରୀ, (୮) ବୃଷାରୂଢ଼ା—ମାହେଶ୍ୱରୀ, (୯) ପଦ୍ମାସନା—ଲକ୍ଷ୍ମୀ, (୧୦) ହଂସସମାରୂଢ଼ା—ବ୍ରାହ୍ମୀ, (୧୧) ବୃଷବାହନା—ଈଶ୍ୱରୀ । (ଭାଷାକୋଷ)

**ମାଦ୍ରୀ**—ମଦ୍ର ଦେଶ ରାଜକୁମାରୀ । ପାଣ୍ଡୁଙ୍କ ମହିଷୀ । ଏହାଙ୍କ ଗର୍ଭରୁ ଅଶ୍ୱିନୀକୁମାରଙ୍କ ଔରସରେ ନକୁଳ ଓ ସହଦେବ ଜନ୍ମିଥିଲେ । ପାଣ୍ଡୁଙ୍କ ମୃତ୍ୟୁ ପରେ ମାଦ୍ରୀ ସହଗମନ କଲେ । (ଚରିତାଭିଧାନ) ପାଣ୍ଡୁରାଜା ଏହାଙ୍କ ସହବାସ ସମୟରେ ଅଗ୍ନିକା ବା କମନ୍ଦଶ ଋଷିଙ୍କ ଅଭିଶାପରୁ ପାଣ୍ଡୁଙ୍କଠାରେ ଗୋଟିଏ ଅକାଳକାଣ୍ଡ ବାଜିବାରୁ ପାଣ୍ଡୁ ପ୍ରାଣତ୍ୟାଗ କଲେ । ପତିଙ୍କ ମୃତ୍ୟୁ ପରେ ମାଦ୍ରୀ ଦୁଇ ପୁତ୍ରଙ୍କୁ ସପତ୍ନୀ କୁନ୍ତୀଙ୍କ ହସ୍ତରେ ଅର୍ପଣ କରି ସ୍ୱାମୀଙ୍କ ଚିତାନଳରେ ଦେହତ୍ୟାଗ କଲେ ।

**ମାନ ସରୋବର, ମାନସ ସରୋବର**—ମାନସ ନାମକ ହିମାଳୟର ଉତ୍ତର ଦେଶସ୍ଥ ହ୍ରଦଯୁଗଳ । ଏହା ପ୍ରକୃତରେ ଦୁଇଟି ହ୍ରଦ, ଗୋଟିଏ ହ୍ରଦ ଅନ୍ୟ ହ୍ରଦର ପଶ୍ଚିମରେ ଅବସ୍ଥିତ । ପୂର୍ବ ପାର୍ଶ୍ୱସ୍ଥ ହ୍ରଦଟି ବଡ ଓ ପଶ୍ଚିମ ପାର୍ଶ୍ୱସ୍ଥ ହ୍ରଦଟି ସାନ । କେହି କେହି ପଶ୍ଚିମ ହ୍ରଦକୁ ରାବଣ ହ୍ରଦ ଓ ପୂର୍ବ ହ୍ରଦକୁ ମାନସରୋବର କହନ୍ତି । ଏ ଦୁଇ ହ୍ରଦ ଓ ଆଉ ଗୋଟିଏ ହ୍ରଦ ହିମାଳୟର ଉତ୍ତରରେ ତିବ୍ବତ ଦେଶରେ ଅବସ୍ଥିତ । ଏ ହ୍ରଦର ଉତ୍ତର ପଶ୍ଚିମରେ ଥିବା କୈଳାସ ଶୃଙ୍ଗର ଉଚ୍ଚତା ୨୧୯୦୦ ଫୁଟ । ଏଥିର ପୂର୍ବ ହ୍ରଦରୁ ପୂର୍ବ ଅଭିମୁଖରେ ବ୍ରହ୍ମପୁତ୍ର ଓ ପଶ୍ଚିମ ହ୍ରଦରୁ ପଶ୍ଚିମ ଅଭିମୁଖରେ ଶତଦ୍ରୁ ଓ ସିନ୍ଧୁ ନଦୀ ବାହାରିଅଛନ୍ତି ।

ହିନ୍ଦୁ ପୁରାଣ ମତରେ ଏହାକୁ କୈଳାସ ପର୍ବତରେ ବ୍ରହ୍ମା ଖୋଳିଥିଲେ । ଏହାର ଉତ୍ତରରେ କୈଳାସ ଓ ଦକ୍ଷିଣରେ ହିମାଳୟ ପର୍ବତ । ରାମାୟଣରେ ଲେଖାଅଛି ଯେ କୈଳାସ ଶିଖରରେ ବ୍ରହ୍ମାଙ୍କ ମନ ଅନୁସାରେ ଏ ହ୍ରଦ ନିର୍ମିତ ହୋଇଥିଲା । ଏଥିପାଇଁ ଏହାର ନାମ ମାନସ ସରୋବର ହୋଇଅଛି ।

ଏହିଠାରୁ ଶୀତ କାଳରେ ରାଜହଂସମାନେ ଭାରତକୁ ଉଡ଼ି ଯାଆନ୍ତି ବୋଲି କବି ପ୍ରସିଦ୍ଧି ଅଛି । ପୁଣି ଶୀତ କାଳ ଛାଡିଲେ ସେମାନେ ଏଠାକୁ ଫେରିଆସନ୍ତି ।

ଏହା ହିନ୍ଦୁମାନଙ୍କର ପୀଠ ବିଶେଷ । ସତୀଙ୍କ ଶବର ଦକ୍ଷିଣହସ୍ତ ଏଠାରେ ପଡ଼ିଥିଲା । ଏହି ପୀଠର ଭୈରବ ଅମର ଓ ଭୈରବୀ ଦାକ୍ଷାୟଣୀ । କୈଳାସ ପର୍ବତର ମୂଳ ଦେଶସ୍ଥ ଦାରୁଚନ୍ଦ ମଠଠାରୁ ମାନସସରୋବର ଦୁଇ ଦିନର ବାଟ । ମଝିରେ ରାବଣହ୍ରଦ (ଯାହା ମାନସସରୋବରର ପଶ୍ଚିମରେ ଅବସ୍ଥିତ), ତାକୁ ଅତିକ୍ରମ କରିବାକୁ ପଡ଼େ । ରାସ୍ତା ଭେଉଁ ପରି ଉଚ୍ଚ ନୀଚ । ଚାରିଆଡ଼େ ପର୍ବତମାଳା ବେଷ୍ଟିତ । ମଧ୍ୟରେ ନୀଳବର୍ଣ୍ଣ ଜଳରାଶି ପବନ ବେଗରେ ଆନ୍ଦୋଳିତ । ଏହି ଜଳ ମଧ୍ୟରେ ଅସଂଖ୍ୟ ଚକ୍ରବାକ, ଚକ୍ରବାକୀ ଓ ବହୁ ସଂଖ୍ୟକ ରାଜହଂସ କ୍ରୀଡ଼ା କରନ୍ତି । ଏମାନେ କର୍ପୂର ପରି ଶୁଭ୍ର । ମାନସସରୋବରର ଚାରିପାଖେ ୧୦ । ୧୨ ମାଇଲ ଛଡ଼ାରେ ୮ଗୋଟି ମଠ ଅଛି । ମାନସରୋବରର ପରିଧି ପ୍ରାୟ ୮୦ ମାଇଲ ହେବ । ଏହି ମଠମାନଙ୍କ ମଧ୍ୟରେ ଜୁଗୁମ୍ପା ମଠ ସର୍ବ ପ୍ରଧାନ । ଏହି ପ୍ରଧାନ ମଠରେ ହର ପାର୍ବତୀ ପ୍ରତିମୂର୍ତ୍ତି ପ୍ରତିଷ୍ଠିତ । ମଠର ଗୁପ୍ତ ଗୁମ୍ଫା ମଧ୍ୟରେ ରାଶି ରାଶି ହସ୍ତ ଲିଖିତ ପୋଥି ଗୋପନରେ ସୁରକ୍ଷିତ ହୋଇଅଛି । ଏହି ଗୁପ୍ତ ଗୁମ୍ଫାହିଁ ପୀଠସ୍ଥଳ । ମାନସରୋବରର ଜଳ ଅତ୍ୟନ୍ତ ସ୍ୱଚ୍ଛ ଓ ତଳର ପଥରମାନ ଉପରକୁ ସ୍ପଷ୍ଟ ଦେଖାଯାଏ । ଜୁଗୁମ୍ପା ମଠର ସକଳ ବାବାଜୀ ଜପଯୋଗୀ । କେବଳ ପ୍ରଧାନ ଲାମା ପ୍ରାଣାୟାମ ଯୋଗୀ, ଏମାନେ ମହା ଶଙ୍ଖମାଳା, କେହି କେହି ରୁଦ୍ରାକ୍ଷ ମାଳାରେ ଜପ କରନ୍ତି । (ବିଶ୍ୱକୋଷ)

**ମାନ୍ଧାତା**—ସୂର୍ଯ୍ୟବଂଶୀୟ ରାଜା ଯୁବନାଶ୍ୱଙ୍କ ପୁତ୍ର । ରାଜା ଯୁବନାଶ୍ୱ ଅପୁତ୍ରକ ଥିଲେ । ପୁତ୍ର କାମନାରେ ସେ ଏକ ପୁତ୍ରେଷ୍ଟି ଯାଗ କଲେ । ରାତ୍ରି ଅର୍ଦ୍ଧରେ ଯେତେବେଳେ ମୁନିମାନେ ଯଜ୍ଞରୁ କ୍ଳାନ୍ତ ହେଲେ ସେତେବେଳେ ସେମାନେ ଏକ ମନ୍ତ୍ରପୂତ ଜଳକଳସ ବେଦୀର ମଧ୍ୟଭାଗରେ ରଖି ନିଦ୍ରିତ ହେଲେ । ଯୁବନାଶ୍ୱ ଅଧିକ ତୃଷାତୁର ହୋଇ ସେହି କଳସସ୍ଥ ଜଳ ପାନ କଲେ । ସକାଳୁ ଉଠି ଋଷିମାନେ ଅନୁସନ୍ଧାନ କରି ଜାଣିଲେ ଯେ ରାଜା ସେହି ଜଳତକ ପିଇ ଦେଇଛନ୍ତି । ମନ୍ତ୍ରପୂତ ଜଳ ପ୍ରଭାବରେ ରାଜାଙ୍କର ଗର୍ଭ ସଞ୍ଚାର ହେଲା । କାଳକ୍ରମେ ରାଜାଙ୍କ ଗର୍ଭରୁ ଏ ପୁତ୍ର ସନ୍ତାନ ଜନ୍ମିଲା, କିନ୍ତୁ ଏଥିରେ ରାଜାଙ୍କର କିଛି କ୍ଷତି ହେଲା ନାହିଁ । ବର୍ତ୍ତମାନ ପ୍ରଶ୍ନ ହେଲା ଏ ପିଲାଟି ବଞ୍ଚିବ କିପରି, ଏହାକୁ ସ୍ତନ୍ୟଦାନ କରିବ କିଏ ? ଏହି ସମୟରେ ଦେବରାଜ ଇନ୍ଦ୍ର ସେଠାକୁ ଆସି କହିଲେ—'ଏହି ବାଳକ ମୋତେ ଧାରଣ କରିବ (ମାଂ ଧାସ୍ୟତି) । ସେହିଦିନଠାରୁ ଏହାର ନାମ ହେଲା ମାନ୍ଧାତା । ଅନନ୍ତର

ଇନ୍ଦ୍ର ସେହି ବାଳକର ମୁହଁରେ ଏକ ଅମୃତ ସ୍ରାବଣୀ ଅଙ୍ଗୁଳି ଦେଲେ । ବାଳକ ଏହି ଅଙ୍ଗୁଳିଟି ଚୁଚୁମି ଏକ ଦିନରେ ବୃଦ୍ଧିପ୍ରାପ୍ତ ହେଲା । ଏହି ମାନ୍ଧାତା ରାଜଚକ୍ରବର୍ତ୍ତୀ ହୋଇ ସପ୍ତଦ୍ୱୀପା ପୃଥିବୀ ଭୋଗ କରିଥିଲେ । (ବିଷ୍ଣୁ ପୁରାଣ) ଅଯୋଧ୍ୟା ଏହାଙ୍କ ରାଜଧାନୀ ଥିଲା । ଶଶବିନ୍ଦୁଙ୍କ କନ୍ୟା ବିନ୍ଦୁମତୀଙ୍କୁ ଏ ବିବାହ କରିଥିଲେ । ଏହାଙ୍କର ତିନି ପୁତ୍ର, ଯଥା—ମୁଚୁକୁନ୍ଦ, ପୁରୁକୁତ୍ସ ଓ ଅମ୍ବରୀଷ । ଏହାଙ୍କର ପଚାଶ କନ୍ୟା ହୋଇଥିଲା । ମାନ୍ଧାତା ଦିଗ୍‌ବିଜୟ ପୂର୍ବକ ସୁମେରୁ ପର୍ବତରେ ରାବଣଙ୍କୁ ଭେଟିଲେ । ଯୁଦ୍ଧରେ ଦୁହେଁ ସମବଳ ହେବାରୁ ଦୁହେଁ ସଖ୍ୟସୂତ୍ରରେ ଆବଦ୍ଧ ହେଲେ । ଏ ସସାଗରା ପୃଥିବୀକୁ ଜୟକରି ସ୍ୱର୍ଗଜୟ କାମନାରେ ଅମରାବତୀରେ ଉପସ୍ଥିତ ହେବାରୁ ଇନ୍ଦ୍ର ଏହାଙ୍କୁ ମଧୁତନୟ ଲବଣ ସଙ୍ଗେ ଯୁଦ୍ଧ କରିବାକୁ ପଠାଇଲେ । ଲବଣକ୍ଷିପ୍ତ ଶୂଳରେ ଏ ନିହତ ହେଲେ । (ଭାଷାକୋଷ)

**ମାୟାବତୀ**—ରତି ଦେବୀ ଜନ୍ମାନ୍ତର ଗ୍ରହଣ ପୂର୍ବକ ଅମ୍ବରାସୁର ଗୃହରେ ମାୟାବତୀରୂପେ ଆବିର୍ଭୂତ ହୋଇଥିଲେ । (ପ୍ରଦ୍ୟୁମ୍ନ ଦେଖ)

**ମାୟାବୀ**—ଅସୁର ବିଶେଷ । ଦୁନ୍ଦୁଭି ରାକ୍ଷସର ପୁତ୍ର । ଏହି ଅସୁର ନିଜର ପିତୃହନ୍ତା ବାନରରାଜ ବାଳିଙ୍କ ଦ୍ୱାରା ନିହତ ହୋଇଥିଲା ।

(ରାମାୟଣ କିଷ୍କିନ୍ଧା କାଣ୍ଡ)

**ମାରୀଚ**—ସୁନ୍ଦ ନାମକ ରାକ୍ଷସ ଔରସରେ ତାଡ଼କା ନାମ୍ନୀ ରାକ୍ଷସୀ ଗର୍ଭର ସନ୍ତାନ । ଏ ଦୁଇ ଭାଇ ସୁବାହୁ ଓ ମାରୀଚ । ବିଶ୍ୱାମିତ୍ର ଯଜ୍ଞ ରକ୍ଷାବେଳେ ରାମଚନ୍ଦ୍ର ସୁବାହୁଙ୍କୁ ଅଗ୍ନିବାଣରେ ଭସ୍ମ କରିଥିଲେ । ବାୟୁବାଣରେ ମାରୀଚଙ୍କୁ ଉଡ଼ାଇ ଦେଇ ଦକ୍ଷିଣ ସମୁଦ୍ର କୂଳରେ ପକାଇ ଦେଇଥିଲେ । ବନବାସ ବେଳେ ଏହି ମାରୀଚ କନକ ମୃଗରୂପେ ରାବଣଙ୍କୁ ସୀତା ହରଣ କାର୍ଯ୍ୟରେ ସହାୟ ହୋଇଥିଲେ ।

**ମାର୍କଣ୍ଡେୟ**—ମୃକଣ୍ଡୁ ମୁନିଙ୍କ ପୁତ୍ର । ଏହାଙ୍କ ପତ୍ନୀଙ୍କ ନାମ ଧୂମାବତୀ । ବେଦଶିରା ନାମକ ପୁତ୍ର ଧୂମାବତୀଙ୍କ ଗର୍ଭରୁ ଜନ୍ମିଥିଲେ । ମାର୍କଣ୍ଡେୟ ପୁରାଣ ଅନୁସାରେ ନିମ୍ନରେ ଏହାଙ୍କର ବଂଶଲତା ଦିଆଗଲା—




ମାର୍କଣ୍ଡେୟ ବିଷ୍ଣୁଙ୍କ ଆରାଧନା କରି ଚିରଜୀବୀ ହୋଇଥିଲେ । ନୃସିଂହ ପୁରାଣରେ ମାର୍କଣ୍ଡେୟଙ୍କ ଦୀର୍ଘଜୀବନ ଲାଭର ବୃତ୍ତାନ୍ତ ଏହିପରି । ଯଥା - ମାର୍କଣ୍ଡେୟ ଜନ୍ମ ହେବା ମାତ୍ରେ ମୃକଣ୍ଡୁ ଜାଣି ପାରିଲେ ଯେ ପୁଅଟି ମୋଟେ ବାର ବର୍ଷ ପରେ ମରିଯିବ । ଏଥିଲାଗି ପିତା ମାତା ଉଭୟେ ଅତି ଦୁଃଖିତ ହୋଇଥିଲେ । ମାର୍କଣ୍ଡେୟ ଏହା ଦେଖି ପିତାମାତାଙ୍କୁ ଏହାର କାରଣ ପଚାରିଲେ । ମୃକଣ୍ଡ ସରଳ ଭାବରେ ପୁତ୍ର ନିକଟରେ ସକଳ କଥା କହିଗଲେ । ମାର୍କଣ୍ଡେୟ କିନ୍ତୁ ପିତାମାତାଙ୍କୁ ଆଶ୍ୱାସନା ଦେଇ କହିଲେ – 'ମୁଁ ଯମକୁ ଜୟ କରି ଦୀର୍ଘ ଜୀବନ ଲାଭ କରିବି । ଏହା କହି ମାର୍କଣ୍ଡେୟ ବନକୁ ଯାଇ ବିଷ୍ଣୁମୂର୍ତ୍ତି ପ୍ରତିଷ୍ଠା କରି କଠୋର ତପସ୍ୟା କଲେ । ଏହି ତପସ୍ୟା ବଳରେ ସେ ମୃତ୍ୟୁକୁ ଜୟକରି ଚିରଜୀବୀ ହୋଇଥିଲେ ।

ପଦ୍ମପୁରାଣରେ ଏ ଉପାଖ୍ୟାନଟି ଅନ୍ୟରୂପ । ମାର୍କଣ୍ଡେୟଙ୍କ ଉପନୟନ ପରେ ଥରେ ସପ୍ତର୍ଷିମାନେ ତାଙ୍କ ଗୃହରେ ଉପନୀତ ହେଲେ । ମାର୍କଣ୍ଡେୟ ସେମାନଙ୍କୁ ଅଭିବାଦନ କରନ୍ତେ 'ଦୀର୍ଘାୟୁ ହୁଅ' ବୋଲି ସେମାନେ ଆଶୀର୍ବାଦ କଲେ । କିନ୍ତୁ ପରେ ଜାଣିଲେ ଯେ ମାର୍କଣ୍ଡେୟ ଅଳ୍ପାୟୁ । ସେମାନେ ମାର୍କଣ୍ଡେୟଙ୍କୁ ଧରି ବ୍ରହ୍ମାଙ୍କ ନିକଟକୁ ଗଲେ । ବ୍ରହ୍ମାଙ୍କ ବର ପ୍ରସାଦରୁ ମାର୍କଣ୍ଡେୟ ଦୀର୍ଘଜୀବୀ ହୋଇ ଗୃହକୁ ଫେରିଲେ ।

**ମାଳତୀ**—ପରମ ଭାଗବତ ପ୍ରହ୍ଲାଦଙ୍କ ପୁତ୍ରର ନାମ ବୈରୋଚନ ବା ବିରୋଚନ । ଏ ଅତି ଦୁର୍ଦ୍ଦାନ୍ତ ଥିଲେ । ଏହାଙ୍କୁ ମାରିବା ପାଇଁ ବିଷ୍ଣୁ ପରମା ସୁନ୍ଦରୀ ମାଲତୀ କନ୍ୟାରୂପେ ଅବତୀର୍ଣ୍ଣ ହୋଇ ଏହାର ରାଣୀ ହୋଇଥିଲେ । ଥରେ ବୈରୋଚନଙ୍କ ମୁଣ୍ଡ କୁଣ୍ଡାଇବାବେଳେ ସେ ତାର ମସ୍ତକସ୍ଥ ପିଙ୍ଗଳ ବାଳ ଓଟାରି ତାକୁ ବଧ କଲେ । (ବିଷ୍ଣୁ କେଶରୀ)

**ମାଳୀ**—ରାକ୍ଷସ ବିଶେଷ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନିର୍ମିତ ମହାକାବ୍ୟ ବୈଦେହୀଶ ବିଳାସରେ, ଯଥା—'ବିଦ୍ୟୁତ୍‌କେଶବଂଶରେ ଜାତ ମାଳୀ, ସୁମାଳୀ ସେ ମାଲ୍ୟବନ୍ତ ।' ଏହାର ପିତା ସୁକେଶ । ମାଲ୍ୟବନ୍ତ ଓ ସୁମାଳୀ ଏହାର ଭାଇ । ସୁମାଳୀ ଲଙ୍କେଶ୍ୱର ରାବଣର ଅଜା । ବିଷ୍ଣୁଙ୍କ ସହିତ ଯୁଦ୍ଧ କରି ମାଳୀ ନିହତ ହୋଇଥିଲା ।

**ମାଲ୍ୟବନ୍ତ, ମାଲ୍ୟବାନ୍**—(୧) ରାକ୍ଷସ ବିଶେଷ । ଏ ସୁକେଶ ରାକ୍ଷସର ପୁତ୍ର । ଗନ୍ଧର୍ବକନ୍ୟା ଦେବବତୀଙ୍କ ଗର୍ଭରୁ ଜାତ । (୨) ପୁରାଣ ମତରେ ମାଲ୍ୟବାନ୍, କେତୁମାଳ ଓ ଇଳାବୃତ୍ତବର୍ଷର ସୀମା ପର୍ବତ ଓ ଏହାର ବିସ୍ତାର ନୀଳପର୍ବତ-ଠାରୁ ନିଷଧପର୍ବତ ପର୍ଯ୍ୟନ୍ତ । (ହିନ୍ଦୀ ଶବ୍ଦସାଗର) ବନବାସ ସମୟରେ ରାମଚନ୍ଦ୍ର କିଛି କାଳ ଏହି ପର୍ବତ ଉପରେ ରହିଥିଲେ ।

**ମାହିଷ୍ମତୀ**—ରାଜା ଶିଶୁପାଳଙ୍କ ରାଜଧାନୀ । ନର୍ମଦା ନଦୀତୀରସ୍ଥ ନଗରୀ । ଏହାର ବର୍ତ୍ତମାନ ନାମ ଚୁଲି ମହେଶ୍ୱର । (ଭାଷାକୋଷ)

**ମିଥିଳା**—ପୂର୍ବକାଳରେ ନିମି ରାଜାଙ୍କ ପୁତ୍ର ମିଥି ସ୍ୱନାମାନୁସାରେ ଏହି ନଗର ବସାଇଥିଲେ । ମିଥି ଏ ନଗରର ଜନକକାରୀ ଥିବାରୁ ଏହାଙ୍କ ନାମ ଜନକ ହୋଇଥିଲା ଓ ତାଙ୍କ ବଂଶଧର ମିଥିଳାର ରାଜାମାନେ ଜନକ ଉପାଧିରେ ଭୂଷିତ ହେଉଥିଲେ । ହିନ୍ଦୁର କାଳରେ ମିଥିଳାଦେଶ ସଂସ୍କୃତ ବିଦ୍ୟାର ଆଲୋଚନା ପାଇଁ ପ୍ରସିଦ୍ଧି ଲାଭ କରିଥିଲା । (ସୁବଳଚନ୍ଦ୍ର ବଙ୍ଗଳା ଅଭିଧାନ)

**ମୁଚୁକୁନ୍ଦ**—(୧) ମହାରାଜ ମାନ୍ଧାତାଙ୍କ ପୁତ୍ର । ଏ ଜଣେ ଅସାମାନ୍ୟ ବୀର ଥିଲେ । ଦେବାସୁର ଯୁଦ୍ଧ ସମୟରେ ଦେବତାମାନେ ପ୍ରୀତ ହୋଇ ଏହାଙ୍କୁ ବର ଯାଚିଲେ । ଏ କହିଲେ—'ମୁଁ ଯୁଦ୍ଧରେ ଅତିଶୟ କ୍ଳାନ୍ତ ହୋଇଥିବାରୁ ସେହି କ୍ଳାନ୍ତି ନିବାରଣ ପାଇଁ ଶୋଇ ରହିବି । ଯେ ମୋର ନିଦ୍ରାଭଙ୍ଗ କରିବ, ସେ ଭସ୍ମୀଭୂତ ହୋଇଯିବ—ମୋତେ ଏହି ବର ମିଳୁ ।' ଦେବତାମାନେ ତାଙ୍କୁ ସେହି ବର ଦେଲେ । ସେହି ଦିନୁ ମୁଚୁକୁନ୍ଦ ଗୋଟିଏ ପର୍ବତ ଗୁହାରେ ଶୋଇ ରହିଲେ । ବହୁଯୁଗ ଅତୀତ ହୋଇ ଯିବା ପରେ ଶ୍ରୀକୃଷ୍ଣ କାଳ-ଯବନକୁ ବଧ କରିବା ଅଭିପ୍ରାୟରେ ସୁକୌଶଳ କରି ତାକୁ ମୁଚୁକୁନ୍ଦ ଶୋଇଥିବା ଗୁହାକୁ ନେଇ ଗଲେ । କାଳଯବନ ତାଙ୍କୁ ନିଜର ଶତ୍ରୁ ଜାଣି ନିଦ୍ରା ଭଙ୍ଗାଇବା ମାତ୍ରେ ତାଙ୍କ ନେତ୍ରାଗ୍ନିରେ ମଲେ । ମୁଚୁକୁନ୍ଦ ବର୍ତ୍ତିମାନ ଜାଣିଲେ ଯୁଗ ପରିବର୍ତ୍ତନ ହୋଇଯାଇଛି । ତାଙ୍କର ସେ ରାଜ୍ୟ ନାହିଁ କି

ପରିବାରବର୍ଗ ନାହାନ୍ତି । ଏହା ଦେଖି ସେ ଦୁଃଖରେ ତପସ୍ୟାର୍ଥେ ହିମାଳୟକୁ ଗମନ କଲେ । ସେଠାରେ ସେ ଯୋଗାବଲମ୍ବନ କରି ଦେହତ୍ୟାଗ କଲେ ।
(ଭାଷାକୋଷ)

(୨) ଦୈତ୍ୟ ଓ ମୁନି ବିଶେଷ ।

**ମୁଣ୍ଡ**—ଦୈତ୍ୟ ବିଶେଷ ।

**ମୁର**—ଦୈତ୍ୟ ବିଶେଷ । ସାଧାରଣତଃ ଆମ୍ଭେମାନେ ବିଷ୍ଣୁଙ୍କର ଯେଉଁ ଦଶ-ଅବତାର କଥା କହୁଥାଉଁ ସେଥିରେ ପଞ୍ଚମ ବା ନୃସିଂହ ଅବତାରରେ ହିରଣ୍ୟକଶିପୁ ବଧ କଥା ଜଣାଯାଏ । ମାତ୍ର ୰ଭକ୍ତକବି ପୀତାମ୍ବର ଦାସଙ୍କ କୃତ ନୃସିଂହ ପୁରାଣରେ ବିଷ୍ଣୁ ନୃସିଂହ ଅବତାର ଗ୍ରହଣ କରି କୃଷ୍ଣବଲ୍ଲଭ ନାମକ ବ୍ରାହ୍ମଣ ରାଜାଙ୍କ ପୁତ୍ରରୂପେ ଜନ୍ମି ବ୍ରହ୍ମାଙ୍କ ଔରସରୁ ଅପ୍‌ସରା ଗର୍ଭଜାତ ମୁର ନାମକ ଅସୁରକୁ ବଧ କରିବା ଲେଖାଅଛି । ବାମନ ପୁରାଣ ୫୩।୫୪ ଅଧ୍ୟାୟରେ ବିଷ୍ଣୁ ମୁର ନାମକ ଦୈତ୍ୟକୁ ବଧ କରିଥିବା ବିଷୟ ଲେଖାଅଛି । ବ୍ରହ୍ମବୈବର୍ତ୍ତ ପୁରାଣ କୃଷ୍ଣ ଜନ୍ମଖଣ୍ଡ ୧୧୮ ଅଧ୍ୟାୟରେ ଲେଖାଅଛି ଯେ, ମୁର ଶବ୍ଦର ଅର୍ଥ କ୍ଲେଶ, ସନ୍ତାପ କର୍ମ ଭୋଗଙ୍କ ·କର୍ମଭୋଗ ଓ ଦୈତ୍ୟ ବିଶେଷ । ଭଗବାନ ବିଷ୍ଣୁ ଏହି ସକଳର ବିନାଶ କର୍ତ୍ତା ଥିବାରୁ ତାଙ୍କର ନାମ ମୁରାରି (ବିଶ୍ୱକୋଷ) । ଏହି ଅବତାରରେ ଅନନ୍ତ ରୂପରେ ଜନ୍ମିଥିବା ବିଷ୍ଣୁଙ୍କ ଭାଇ, ମୁରର ଦାରୁଣ ନାମକ ଭାଇକୁ ବଧ କରିଥିଲେ । ୰ପୀତାମ୍ବର କିନ୍ତୁ ଏହାକୁ ଅନନ୍ତ ନ କହି ଶେଷଦେବ ଆଖ୍ୟା ଦେଇଛନ୍ତି । (ଭାଷାକୋଷ)

**ମୃଗୀ**—ପୁଲହ ଋଷିଙ୍କ ସ୍ତ୍ରୀଙ୍କ ନାମ । (ଭାଷାକୋଷ)

**ମେଘନାଦ**—ଲଙ୍କେଶ୍ୱର ରାବଣଙ୍କ ପୁଅ । ଏ ଜନ୍ମ ହେବା ବେଳେ ମେଘ ପରି ନାଦ କରିଥିଲେ । ମିଳା ରାମାୟଣ ଓ କେଶବ ରାମାୟଣରେ ଏହି ନିର୍ଣ୍ଣୟ ହୋଇଯାଇଛି :—

ଜନମୁଁ ତୋ ରଡ଼ି                ମେଘ ଘଡ଼ଘଡ଼ି
ଥାରୁ ବଳିଲାରେ ଧନ
ତହୁଁ ମୁଁ କୋଳରେ                ବସାଇ ଖେଳରେ
ଦେଲି ମେଘନାଦ ନାମ
ଇନ୍ଦ୍ର ଜିଣିଲୁ ଯେଣୁ
ଇନ୍ଦ୍ରଜିତ ପଦବୀ ତୋ ତେଣୁ ।

ରାମାୟଣ ଯୁଦ୍ଧରେ ମେଘନାଦ ଲକ୍ଷ୍ମଣଙ୍କ ଦ୍ୱାରା ବଧ ହୋଇଥିଲେ । ଏହାଙ୍କ ସ୍ତ୍ରୀ ନାମ ପ୍ରମିଳା ବା ପଦ୍ମମଳା । ପଦ୍ମମଳା ପରମ ସାଧ୍ୱୀ ଥିଲେ । ଚିକିଟି ରାଜକବି ରାଧାମୋହନ ଦେବଙ୍କ 'ପଦ୍ମମଳାସହ ଗମନ' ନାଟକ ଓ ସଙ୍ଗ୍ରାହକ ପ୍ରଣୀତ 'ପଦ୍ମମଳା' କାବ୍ୟରେ ଏହାର ବର୍ଣ୍ଣନା ଅନୁସନ୍ଧେୟ ।

**ମେଧାତିଥି**—ମନୁ ସଂହିତାର ଟୀକାକାର ଋଷି ବିଶେଷ । ଏହି ନାମରେ ଅନେକ ଲୋକ ଥିଲେ । କଣ୍ୱ ବଂଶରେ ଏକ ଋଷି ଋକ୍ ବେଦର ପ୍ରଥମ ମଣ୍ଡଳର ୧୮ଟି ସୂକ୍ତର ଦ୍ରଷ୍ଟା ଥିଲେ । ମହାଭାରତୋକ୍ତ କଣ୍ୱ ମୁନିଙ୍କ ପିତାଙ୍କର ଏହି ନାମ ଥିଲା । ମନୁସଂହିତାର ଟୀକାକାର ଓ ଭଟ୍ଟବୀର ସ୍ୱାମୀଙ୍କ ପୁତ୍ରଙ୍କ ନାମ ମେଧାତିଥି ଥିଲା । ଭାଗବତୋକ୍ତ ପ୍ରିୟବ୍ରତ ରାଜାଙ୍କ ପୁତ୍ର ଓ ଶାକଦ୍ୱୀପର ଅଧିପତିଙ୍କର ଏବଂ କର୍ଦ୍ଦମ ପ୍ରଜାପତିଙ୍କ ଏକ ପୁତ୍ରଙ୍କ ନାମ ମଧ୍ୟ ମେଧାତିଥି ଥିଲା । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ମେନକା**—(୧) ଅପ୍‌ସରା ବିଶେଷ । ମହର୍ଷି ବିଶ୍ୱାମିତ୍ରଙ୍କ ତପୋଭଙ୍ଗ ପାଇଁ ଇନ୍ଦ୍ର ଏହାଙ୍କୁ ପ୍ରେରଣ କରିଥିଲେ । ଏହାଙ୍କ ଗର୍ଭରୁ ବିଶ୍ୱାମିତ୍ରଙ୍କ ଔରସରେ ଶକୁନ୍ତଳା ଜନ୍ମିଥିଲେ ।

(୨) ପର୍ବତରାଜ ହିମାଳୟଙ୍କ ପତ୍ନୀ । ଏହାଙ୍କୁ ମେନା ମଧ୍ୟ କହନ୍ତି । ମୈନାକ ଏହାଙ୍କ ପୁତ୍ର । ଉମା ଓ ଗଙ୍ଗା ଏହାଙ୍କ କନ୍ୟା ।

**ମେରୁ**—ପୁରାଣୋକ୍ତ ସୁମେରୁ ପର୍ବତ । ହିନ୍ଦୁ ପୁରାଣ ମତରେ ସପ୍ତଦ୍ୱୀପା ପୃଥିବୀର ୭ଗୋଟି ଦ୍ୱୀପର କେନ୍ଦ୍ରସ୍ଥଳରେ ଏ ପର୍ବତ ଅବସ୍ଥିତ । ସାତଗୋଟି ଯାକ ଦ୍ୱୀପ ଏହାର ପାଖୁଡ଼ା ପରି । ଏହାର ଉଚ୍ଚତା ୮୪୦୦୦ ଯୋଜନ ଓ ତନ୍ମଧ୍ୟରୁ ୧୬୦୦୦ ଯୋଜନ ଭୂମି ମଧ୍ୟରେ ପୋତା ହୋଇଅଛି । ଏହାର ଆକାର ବିଷୟରେ ନାନା ପୁରାଣରେ ନାନାପ୍ରକାର ବର୍ଣ୍ଣନା ଦେଖାଯାଏ । ଗଙ୍ଗା ସ୍ୱର୍ଗରୁ ପ୍ରଥମେ ଏହାର ଶୃଙ୍ଗରେ ପଡ଼ି ୪ ଗୋଟି ଧାରରେ ପୃଥିବୀକୁ ବହି ଆସିଛନ୍ତି । ଏହାର ଶୃଙ୍ଗରେ ଋଷି ଓ ଦେବଗଣଙ୍କ ଦ୍ୱାରା ପରିବେଷ୍ଟିତ ବ୍ରହ୍ମା ବାସ କରନ୍ତି । ପୁରାଣ ମତରେ ଏହାର ଚାରି ପାଖରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ବାସ କରନ୍ତି । ଏହାର ଶୃଙ୍ଗ ସ୍ୱର୍ଣ୍ଣମୟ । ଏହି ପର୍ବତର ଉପରିଭାଗର ପୂର୍ବାଂଶରେ ଇନ୍ଦ୍ରଙ୍କ ଅମରାବତୀ ପୁରୀ, ଅଗ୍ନି-କୋଣରେ ଅଗ୍ନିଙ୍କର ତେଜସ୍ୱିନୀ ପୁରୀ, ଦକ୍ଷିଣରେ ଯମଙ୍କ ବୈବସ୍ୱତୀ ପୁରୀ, ଏହିପରି ଭିନ୍ନ ଭିନ୍ନ କୋଣରେ ଭିନ୍ନ ଭିନ୍ନ ପୁରୀ ଅଛି ।

ଆଧୁନିକ ଅନୁମାନ ଅନୁସାରେ ଏହା ହିମାଳୟର ଉତ୍ତରସ୍ଥ ପାମିର୍ ନାମକ ମାଳଭୂମି । ଏହା କେତେଦୂର ସତ୍ୟ ହୋଇ ପାରେ ତାହା ଗବେଷଣା କରିବା କଥା । (ଭାଷାକୋଷ)

**ମୈତ୍ରାବରୁଣ**—ଅଗସ୍ତି ଓ ବଶିଷ୍ଠ ଋଷିଙ୍କ ନାମ । କଥିତ ଅଛି ଯେ ଉର୍ବଶୀଙ୍କ ରୂପରେ ମୋହିତ ମିତ୍ର ଓ ବରୁଣ ଦେବଦ୍ୱୟଙ୍କ ବୀର୍ଯ୍ୟ ସ୍ଖଳିତ ହୋଇ ଏକ ସ୍ଥାନରେ ପଡ଼ିଲା ଓ ତହିଁରୁ ଅଗସ୍ତ୍ୟ ଓ ବଶିଷ୍ଠ ଋଷିଦ୍ୱୟ ଜାତ ହେଲେ ।
(ହିନ୍ଦୀ ଶବ୍ଦସାଗର)

**ମୈତ୍ରେୟ**—ଋଷି ବିଶେଷ । ବିଷ୍ଣୁ ପୁରାଣର ଶ୍ରୋତା । ଭାଗବତ ଅନୁସାରେ ଏ ପରାଶରଙ୍କ ଶିଷ୍ୟ ଥିଲେ । (ହିନ୍ଦୀ ଶବ୍ଦସାଗର) । କୋଣାର୍କସ୍ଥ ପବିତ୍ର ବନଭୂମିର ନାମ ମୈତ୍ରେୟ ବନ ।

**ମୈତ୍ରେୟୀ**—ଯାଜ୍ଞବଲ୍କ୍ୟ ଋଷିଙ୍କ ବ୍ରହ୍ମବାଦିନୀ ସ୍ତ୍ରୀ । (ଭାଷାକୋଷ) ଅହଲ୍ୟାଙ୍କ ନାମ । (ହିନ୍ଦୀ ଶବ୍ଦସାଗର) ।

**ମୈଥିଳୀ**—ସୀତାଙ୍କ ନାମାନ୍ତର ।

**ମୈନାକ**—ହିମାଳୟଙ୍କ ପୁତ୍ର । ମେନାଙ୍କ ଗର୍ଭରୁ ଏହାଙ୍କର ଜନ୍ମ । ଦେବରାଜଙ୍କ ବଜ୍ରାଘାତରେ ପର୍ବତମାନଙ୍କର ପକ୍ଷ କର୍ତ୍ତିତ ହୋଇଥିଲା । ମୈନାକ ସେତେବେଳେ ପବନଙ୍କ ସାହାଯ୍ୟରେ ସମୁଦ୍ରରେ ବୁଡ଼ିରହି ଇନ୍ଦ୍ରଙ୍କ ଆକ୍ରମଣରୁ ରକ୍ଷା ପାଇଥିଲେ । (ଚରିତାଭିଧାନ) ହନୁମାନ ଲଙ୍କାକୁ ଯିବାବେଳେ ମୈନାକ ମହୋଦଧିଙ୍କ ନିର୍ଦ୍ଦେଶକ୍ରମେ ତାଙ୍କ ଅତିଥି ସେବା କରିଥିଲେ ।

ଓଡ଼ିଶା ରଣପୁର ସ୍ୱନାମସିଦ୍ଧ ଏକ ପର୍ବତର ନାମ ମୈନାକ

●

# ଯ

**ଯକ୍ଷ**—ଦେବଯୋନି ବିଶେଷ । କୁବେରଙ୍କ ଧନ ଓ ଉଦ୍ୟାନର ରକ୍ଷକ । ଏମାନଙ୍କର ସାଧନା କଲେ ସାଧକ ବହୁ ଧନଶାଳୀ ହୁଏ । (ଭାଷାକୋଷ)

**ଯକ୍ଷରାଜ**—ସଂ, କୁବେରଙ୍କ ନାମାନ୍ତର ।

**ଯକ୍ଷରାଜ ପୁରୀ**—କୈଳାସ ପର୍ବତ ଉପରସ୍ଥ କୁବେରଙ୍କ ଅଳକାପୁରୀ ।
(ଭାଷାକୋଷ)

**ଯକ୍ଷିଣୀ**—କୁବେରଙ୍କ ପତ୍ନୀ ; ସାଧକ ପୁରୁଷଙ୍କ ସହବାସକାରିଣୀ ଦେବଯୋନି ବିଶେଷ । ଯେଉଁମାନେ ଯକ୍ଷିଣୀ ସାଧନା କରନ୍ତି ଓ ସେଥିରେ ସିଦ୍ଧି ଲାଭ କରନ୍ତି ସେ ଯକ୍ଷିଣୀକୁ ଆପଣାର ସ୍ତ୍ରୀରୂପେ ଭୋଗ କରିଥାନ୍ତି । (ଭାଷାକୋଷ)

**ଯଜୁର୍ବେଦ**—ଏହା ଦୁଇ ଭାଗରେ ବିଭକ୍ତ । (୧) ଶୁକ୍ଳ ବା ବାଜସନେୟ (୨) କୃଷ୍ଣ ବା ତୈତ୍ତିରୀୟ । ଏଥିରେ ଧର୍ମ ସମ୍ବନ୍ଧୀୟ କ୍ରିୟା କଳାପ ଓ ଉପାସନାଦି ଅଛି । ଧନୁର୍ବେଦ, ଯଜୁର୍ବେଦର ଉପବେଦ । ଯଜୁର୍ବେଦର ମନ୍ତ୍ରମାନ ଗଦ୍ୟରେ ରଚିତ । ଏହି ବେଦରେ ଦର୍ଶ, ପୂର୍ଣ୍ଣମାସ, ଅଶ୍ୱମେଧ ଓ ନରମେଧ ଯଜ୍ଞ ବର୍ଣ୍ଣିତ ହୋଇଅଛି । ଯଜୁର୍ବେଦର ଦୁଇଟି ଶାଖା । ଏହାର ଅଧିପତି ଶୁକ୍ର, ବକ୍ତା କୃଷ୍ଣ ଦ୍ୱୈପାୟନ ଓ ଶ୍ରୋତା ବୈଶମ୍ପାୟନ । ଉତ୍କଳ ବ୍ରାହ୍ମଣମାନେ ଅଧିକାଂଶ ଯଜୁର୍ବେଦୀ । ଯଜୁର୍ବେଦର ଶୁକ୍ଳ ବା ବାଜସନେୟ ଅଂଶ ଯାଜ୍ଞ-ବଲ୍‌କଙ୍କ ଦ୍ୱାରା କଥିତ । ଶୁକ୍ଳ ଯଜୁର ଅନ୍ୟନାମ ବାଜସନେୟ । (ବାଜସନ—ସୂର୍ଯ୍ୟ, ଅର୍ଥାତ୍ ସୂର୍ଯ୍ୟଙ୍କଠାରୁ ପ୍ରାପ୍ତ) । ସୂର୍ଯ୍ୟ ଅଶ୍ୱରୂପ ଧାରଣ କରି ଯାଜ୍ଞବଲ୍‌କଙ୍କୁ ଏହା କହିଥିଲେ । ଯାଜ୍ଞବଲ୍‌କ ଏହାକୁ ପୃଥିବୀରେ ଅବତାରଣା କଲେ । କୃଷ୍ଣ ବା ତୈତ୍ତିରୀୟ ଅଂଶ ତିତ୍ତିର ମୁନିଙ୍କ ଦ୍ୱାରା କଥିତ । (ଭାଷାକୋଷ)

**ଯଦୁ**—ମହାରାଜ ଯଯାତିଙ୍କ ପୁତ୍ର । ଏ ଦେବଯାନୀଙ୍କ ଗର୍ଭରୁ ଜନ୍ମିଥିଲେ । ଯଦୁ ଓ ତୁର୍ବସୁ ଏ ଦୁଇ ଭାଇ । ଯଦୁ ଯଯାତିଙ୍କର ସର୍ବ ଜ୍ୟେଷ୍ଠ ପୁତ୍ର । ଶୁକ୍ରାଚାର୍ଯ୍ୟଙ୍କ ଶାପରେ ଯଯାତି ଜରାଗ୍ରସ୍ତ ହୋଇଗଲେ । ଯଯାତିଙ୍କ ଅନୁନୟରେ ସନ୍ତୁଷ୍ଟ ହୋଇ ଶୁକ୍ର କହିଥିଲେ—'ତୁମେ ଅନ୍ୟର ଅଭିମତ ଅନୁଯାୟୀ ଏ ଜରାବସ୍ଥା ତାକୁ ଅର୍ପଣ କରି ଯୁବାବସ୍ଥାଟି ବଦଳ ଦେଲେ ତୁମେ ପୁଣି ଯୁବକ ହୋଇ ପାରିବ ।' ଯଯାତି ପ୍ରଥମେ ଯଦୁଙ୍କୁ ଜରାବସ୍ଥା ନେବାପାଇଁ ଅନୁରୋଧ କଲେ । ମାତ୍ର ଯଦୁ ପିତାଙ୍କର ଏ ଅନୁରୋଧ ରକ୍ଷା କଲେ ନାହିଁ । ଯଯାତି ଏଥିରେ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ—'ତୁମେ ମୋଠାରୁ ଜାତ ହୋଇ ମୋ କଥା ପ୍ରତ୍ୟାଖ୍ୟାନ କଲ, ଯେଣୁ ହେତୁରୁ ତୁମ ବଂଶରେ କେହି ରାଜା ହୋଇ ପାରିବେ ନାହିଁ ।' (ମହାଭାରତ)

ଯଦୁଙ୍କଠାରୁ ଯାଦବ ବଂଶର ଉତ୍ପତ୍ତି । ଏହି ବଂଶରେ ଭଗବାନ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ । ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପୂର୍ବରୁ ବ୍ରହ୍ମଶାପରେ ଯଦୁବଂଶ ଧ୍ୱଂସ ହୋଇଥିଲା । (ଭାଗବତ)

**ଯବନାଶ୍ୱ**—ମିଥିଳା ଦେଶର ଏକ ପ୍ରାଚୀନ ରାଜ୍ୟ । ବହୁଳାଶ୍ୱଙ୍କ ପିତା ।
(ଭାଷାକୋଷ)

**ଯମ**—ସୂର୍ଯ୍ୟ ପୁତ୍ର । ସଂଜ୍ଞା ଗର୍ଭରେ ଏ ଜନ୍ମ ହୋଇଥିଲେ । ଯମଲୋକ ମନୁଷ୍ୟ ଲୋକଠାରୁ ୮୬ ଯୋଜନ ଦୂରରେ ଅବସ୍ଥିତ । (ଗରୁଡ଼ ପୁରାଣ) । ଯମପୁରୀ ୪ ହଜାର ଯୋଜନ ଦୀର୍ଘ ୨ ହଜାର ଯୋଜନ ବିସ୍ତୃତ । ଉଚ୍ଚ ସ୍ୱର୍ଣ୍ଣମୟ ପ୍ରାଚୀର ଦ୍ୱାରା ଏହା ପରିବେଷ୍ଟିତ । ଏଠାର ସବୁ ନଦୀଗୁଡ଼ିକ ନିର୍ମଳ ଜଳ ବିଶିଷ୍ଟ । ସରୋବର ଓ ଦୀର୍ଘିକା ସବୁ ପଦ୍ମପୁଷ୍ପଯୁକ୍ତ । (ବରାହ ପୁରାଣ) ଯମ ପୁଣ୍ୟବାନ ଲୋକମାନଙ୍କୁ ଦେଖିଲେ ସ୍ୱୟଂ ନାରାୟଣରୂପେ ପ୍ରକାଶମାନ ହୋଇଥାନ୍ତି । ଏହି ସମୟରେ ଯମ ଚତୁର୍ଭୁଜ, ଶ୍ୟାମ କଳେବର, ଶଙ୍ଖ, ଚକ୍ର ଗଦା ଧାରୀ ଓ ଗରୁଡ଼ ବାହନ, କିନ୍ତୁ ପାପାତ୍ମାମାନଙ୍କ ନିକଟରେ ତାଙ୍କର ଭୟଙ୍କର ମୂର୍ତ୍ତି ପରିଦୃଷ୍ଟ ହୁଏ । ପାପୀମାନଙ୍କ ନିକଟରେ ଯମ ୩୦ ଯୋଜନ ଦୀର୍ଘ, ଚକ୍ଷୁଗୁଡ଼ିକ ବାପୀ ତୁଲ୍ୟ, ବର୍ଣ୍ଣ ଧୂସର ଏବଂ ତାଙ୍କ କଣ୍ଠସ୍ୱର ପ୍ରଳୟ-କାଳୀନ ମେଘତୁଲ୍ୟ ଗର୍ଜନ କଲା ପରି ବୋଧ ହୁଏ, (ପଦ୍ମ ପୁରାଣ, କ୍ରିୟା ଯୋଗ ସାର) ସ୍ମୃତିରେ ୧୪ ଗୋଟି ଯମଙ୍କ ନାମ ଦୃଷ୍ଟ ହୁଏ ଯଥା—ଯମ, ଧର୍ମରାଜ, ମୃତ୍ୟୁ, ଅନ୍ତକ, ବୈବସ୍ୱତ, କାଳ, ସର୍ବଭୂତକ୍ଷୟ, ଔଦୁମ୍ବର, ଦଧ୍ନ, ନୀଳ, ପରମେଷ୍ଠି, ବୃକୋଦର, ଚିତ୍ର ଓ ଚିତ୍ରଗୁପ୍ତ । ଏହି ଚତୁର୍ଦ୍ଦଶ ଯମଙ୍କୁ ତିଳଯୁକ୍ତ ତିନ ଅଞ୍ଜଳି ଜଳ ଦ୍ୱାରା ତର୍ପଣ କଲେ ମନୁଷ୍ୟର କାଳ ପାପ ବିନଷ୍ଟ ହୁଏ । କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ନଦୀରେ ଯମ ତର୍ପଣ ବିଶେଷ ପ୍ରଶସ୍ତ । ଯମୁନା ନଦୀରେ ଯମ ତର୍ପଣ କଲେ ସକଳ ପାପ କ୍ଷୟ ହୁଏ । (ତିଥିତତ୍ତ୍ୱାଭିଧାନ) । ଯମଙ୍କର ବାହନ ମହିଷ, ଆୟୁଧ ଦଣ୍ଡ । ଏହାଙ୍କର ଭଗିନୀଙ୍କ ନାମ ଯମୁନା । ରାଜ୍ୟର ନାମକ ନରକ । ରାଜଧାନୀର ନାମ ସଂଯମିନୀପୁର । ମନ୍ତ୍ରୀଙ୍କ ନାମ ଚିତ୍ରଗୁପ୍ତ । ପ୍ରଧାନ ବାର୍ତ୍ତାବହଙ୍କ ନାମ କାଳ ଓ ବିକାଳ ।

**ଯମଦଗ୍ନି**—ଋଷି ବିଶେଷ । ପରଶୁରାମଙ୍କ ପିତା ।

**ଯମଦଂଷ୍ଟ୍ରା**—ଆଶ୍ୱିନ ଓ କାର୍ତ୍ତିକ ମାସର ବିଶିଷ୍ଟ ସମୟ । ଯହିଁରେ ସଂସାରରେ ରୋଗ ଓ ମୃତ୍ୟୁର ବିଶେଷ ଭୟ ଥାଏ । କାହା କାହା ମତରେ ଆଶ୍ୱିନ

ମାସର ଶେଷ ଆଠ ଦିନ ଓ ପୂର୍ବ କାର୍ତ୍ତିକ ମାସ ଯମଦଂଷ୍ଟ୍ରା । କାହାର କାହାର ମତରେ କାର୍ତ୍ତିକର ଶେଷ ଆଠଦିନ ଓ ମାର୍ଗଶୀରର ପ୍ରାରମ୍ଭିକ ଆଠଦିନ ଯମଦଂଷ୍ଟ୍ରା । ଏ ସମୟରେ ଅଳ୍ପ ଭୋଜନ ଓ ସଂଯମ କରିବା ପାଇଁ ବୈଦ୍ୟ ଶାସ୍ତ୍ରରେ ଉପଦେଶ ଅଛି । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଯମଦଣ୍ଡ** – ଯମ ରାଜାଙ୍କ ଧୃତ କଳ୍ପିତ ଦଣ୍ଡ ବା ଯଷ୍ଟି । ପୁରାଣ ମତରେ ଯମଙ୍କର ଦୁଇପ୍ରକାର ଦଣ୍ଡ ଅଛି ଯଥା—ଯମଦଣ୍ଡ ଓ କାଳଦଣ୍ଡ ।

**ଯମଦାଢ଼** – -ଉଭୟ ପାର୍ଶ୍ୱରେ ତୀକ୍ଷ୍ଣ ଧାରବିଶିଷ୍ଟ ଖଡ୍‌ଗ । ପ୍ରାଚୀନ ଯୁଦ୍ଧାସ୍ତ୍ର ବିଶେଷ ।

**ଯମନକ**—ତୀର୍ଥ ବିଶେଷ । ଏହି ତୀର୍ଥରେ ଯମେଶ୍ୱର ଦେବତା ଅଛନ୍ତି । ରହସ୍ୟ ମଞ୍ଜରୀ କାବ୍ୟରେ କବି ଦେବ ଦୁର୍ଲଭ ନିର୍ଣ୍ଣୟ ଦିଅନ୍ତି :—ଯମନକ ନାମେ ତୀର୍ଥ ଆଦ୍ୟ । (ଭାଷାକୋଷ)

**ଯମପତ୍ନୀ** – ଯମରାଜାଙ୍କ ସ୍ତ୍ରୀ :—ଧୂମୋର୍ଣ୍ଣା, ବିଜୟା । (ଭାଷାକୋଷ)

**ଯମଳାର୍ଜ୍ଜୁନ**—ବୃନ୍ଦାବନସ୍ଥ ବୃକ୍ଷଦ୍ୱୟ । କୁବେର ପୁତ୍ର ନଳକୁବର ଓ ମଣିଗ୍ରୀବ ଦୁହେଁ ମଦ ପିଇ ଉନ୍ମତ୍ତାବସ୍ଥାରେ ଲଙ୍ଗଳା ହୋଇ ସ୍ତ୍ରୀମାନଙ୍କ ସଙ୍ଗେ ଜଳକ୍ରୀଡ଼ା କରୁଥିବା ଯୋଗୁଁ ନାରଦ ମୁନିଙ୍କ ଅଭିଶାପରୁ ଜାଆଁଳା ଅର୍ଜ୍ଜୁନ ଗଛ ରୂପେ ଜନ୍ମିଥିଲେ ଓ ଶ୍ରୀକୃଷ୍ଣ ବାଲ୍ୟକ୍ରୀଡ଼ା ଛଳରେ ଏ ବୃକ୍ଷ ଦ୍ୱୟକୁ ଭାଙ୍ଗିପକାଇ ଏ ଦୁହିଙ୍କୁ ଶାପରୁ ମୁକ୍ତ କଲେ । (ଭାଷାକୋଷ,ଅର୍ଜ୍ଜୁନ ଦେଖ )

**ଯମୁନା**—ଉତ୍ତର ଭାରତର ନଦୀ ବିଶେଷ । ହିମାଳୟର ଦକ୍ଷିଣାଂଶର ଯମୁନୋତ୍ତରୀ ନାମକ ସ୍ଥାନରୁ ଯମୁନାର ଉତ୍ପତ୍ତି । ପ୍ରୟାଗଠାରେ ଏହା ଗଙ୍ଗା ସହିତ ମିଶିଛି । ପୁରାଣମତେ ଯମୁନା ସୂର୍ଯ୍ୟଙ୍କ କନ୍ୟା ଓ ଯମଙ୍କର ଭଉଣୀ । ଯମୁନା ଗଙ୍ଗାନଦୀରେ ମିଶିଥିବା ସ୍ଥାନରେ ଅନ୍ୟ ଗୋଟିଏ ନଦୀ ସରସ୍ୱତୀ ମିଶିଥିଲା । ମାତ୍ର ସରସ୍ୱତୀ ବର୍ତ୍ତମାନ ଅଦୃଶ୍ୟ ହୋଇଅଛି । ଏହି ସଙ୍ଗମ ସ୍ଥାନର ନାମ ପ୍ରୟାଗ ବା ତ୍ରିବେଣୀ । ଏଠାରେ ବ୍ରହ୍ମା ଯାଗ କରିଥିବାରୁ ଏହାର ନାମ ପ୍ରୟାଗ । ଏହା ହିନ୍ଦୁମାନଙ୍କର ଏକ ପ୍ରଧାନ ତୀର୍ଥ । ଏଠାରେ ବାରବର୍ଷରେ ଥରେ ଲେଖାଏଁ କୁମ୍ଭମେଳା ହୁଏ । ଯମୁନା ନଦୀ କୂଳରେ ଦିଲ୍ଲୀ, ଆଗ୍ରା, ମଥୁରା ଓ ବୃନ୍ଦାବନ ଅବସ୍ଥିତ । ଯମୁନା ନଦୀ କ୍ରମଶଃ ବୃନ୍ଦାବନଠାରୁ ଦୂରକୁ ଘୁଞ୍ଚି ଯାଉଥିବା ଦେଖାଯାଏ । (ଭାଷାକୋଷ)

**ଯଯାତି**—ଚନ୍ଦ୍ରବଂଶୀୟ ରାଜା ନହୁଷଙ୍କ ପୁତ୍ର । ଦେବଯାନୀ ଓ ଶର୍ମିଷ୍ଠା ଏହାଙ୍କର ଦୁଇଟି ଭାର୍ଯ୍ୟା । ଦେବଯାନୀ ଦୈତ୍ୟ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଓ ଶର୍ମିଷ୍ଠା ଅସୁରରାଜ ବୃଷପର୍ବଙ୍କ ଝିଅ । ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ନାମକ ଦୁଇପୁତ୍ର, ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟ, ଅନୁ ଓ ପୁରୁ ନାମକ ତିନିଗୋଟି ପୁତ୍ର ଜନ୍ମିଥିଲେ । ଶୁକ୍ରାଚାର୍ଯ୍ୟଙ୍କ ଶାପଯୋଗେ ଯଯାତି ଜରାଗ୍ରସ୍ତ ହେଲେ ଏବଂ ଜରାବସ୍ଥା କୌଣସି ପୁତ୍ରକୁ ପ୍ରଦାନ କରିବାକୁ ଇଚ୍ଛା କରି ଗୋଟିକ ପରେ ଗୋଟିଏ ଲେଖାଏଁ ପୁତ୍ରଙ୍କୁ ପାଖକୁ ଡ଼ାକିଲେ । ମାତ୍ର ଦେବଯାନୀଙ୍କ ପୁତ୍ର ଦୁହେଁ ଓ ଶର୍ମିଷ୍ଠାଙ୍କ ଦ୍ରୁହ୍ୟ ଓ ଅନୁ ଜରାବସ୍ଥା ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କଲେ । ଅବଶେଷରେ ଶର୍ମିଷ୍ଠାଙ୍କ ଗର୍ଭଜାତ କନିଷ୍ଠପୁତ୍ର ପୁରୁ ପିତାଙ୍କ ଆଦେଶକ୍ରମେ ଜରାବସ୍ଥା ଗ୍ରହଣ କଲେ । ଯଯାତି ଅନ୍ୟ ଚାରି ପୁତ୍ରଙ୍କୁ ଅଭିଶାପ ଦେଇ ପୁରୁଙ୍କୁ ଜରାବସ୍ଥା ସମର୍ପଣ କଲେ ଓ ନିଜେ ଯୌବନ ଲାଭ କରି ହଜାରେ ବର୍ଷଯାଏ ଇନ୍ଦ୍ରିୟ ସୁଖ ଭୋଗ କରିବାକୁ ଲାଗିଲେ । ମାତ୍ର ଏଥିରେ ତାଙ୍କର ମନ ତୃପ୍ତ ନ ହେବାରୁ ପୁରୁଙ୍କୁ ଆହ୍ୱାନ କରି କହିଲେ—'ଦେଖ, ମୁଁ ହଜାରେ ବର୍ଷଯାଏଁ ବିଷୟ ଭୋଗକରି ତଥାପି ତୃପ୍ତି ଲାଭ କରି ପାରିଲି ନାହିଁ । ଅଗ୍ନିରେ ଘୃତାହୁତି ଦେଲେ, ତାହା ଯେପରି ଶିଖା ଟେକି ଜଳି ଉଠେ, ସେହିପରି କାମ୍ୟ ବସ୍ତୁର ଉପଭୋଗ ଦ୍ୱାରା ବିଷୟ ତୃଷ୍ଣା ନିବୃତ୍ତ ନ ହୋଇ ଉତ୍ତରୋତ୍ତର ବୃଦ୍ଧି ପାଏ । ତେଣୁ ମୁଁ ଆଉ ବିଷୟଭୋଗ କରିବି ନାହିଁ । ଏହା କହି ସେ ପୁରୁଙ୍କୁ ପୁନର୍ବାର ଯୌବନାବସ୍ଥା ଅର୍ପଣ କରି ନିଜେ ବାର୍ଦ୍ଧକ୍ୟ ବରଣ କଲେ । ତା'ପରେ ପୁରୁଙ୍କୁ ନିଜର ଉତ୍ତରାଧିକାରୀରୂପେ ରାଜ୍ୟ ସିଂହାସନ ଦାନ କରି ବାନପ୍ରସ୍ଥ ଆଶ୍ରମଜୀବନ ଯାପନ କଲେ । କଠୋର ତପସ୍ୟା ଯୋଗେ ସେ ସ୍ୱର୍ଗକୁ ଗଲେ । ମାତ୍ର କିଛି କାଳ ପରେ ଇନ୍ଦ୍ରଙ୍କ ଶାପଯୋଗୁଁ ଯଯାତି ସ୍ୱର୍ଗଭ୍ରଷ୍ଟ ହୋଇ ଆସନ୍ତେ ପଥ ମଧ୍ୟରେ ଦେଖିଲେ ତାଙ୍କ ଦୌହିତ୍ର ଅଷ୍ଟକ ଓ ଶିବ ପ୍ରଭୃତି ରହିଛନ୍ତି । ଦୌହିତ୍ରମାନେ ମାତାମହ ଯଯାତିଙ୍କ ପରିଚୟ ପାଇ ପୁନର୍ବାର ସେମାନଙ୍କ ପୁଣ୍ୟ ବଳରେ ତାଙ୍କୁ ପୁନରାୟ ସ୍ୱର୍ଗକୁ ପ୍ରେରଣ କଲେ । ଏହିରୂପେ ରାଜା ଯଯାତି ଦୌହିତ୍ର-ମାନଙ୍କ ଯୋଗେ ମୁକ୍ତିଲାଭ କରିଥିଲେ ।

(ଚରିତାଭିଧାନ, ମହାଭାରତ ଆଦିପର୍ବ)

**ଯଯାତିପତନ**—ମହାଭାରତୋକ୍ତ ହିନ୍ଦୁ ତୀର୍ଥ ବିଶେଷ । ରାଜକବି କୃଷ୍ଣସିଂହ ନିର୍ଣ୍ଣୟ ଦିଅନ୍ତି ଯେ—

ଯଯାତିପତନକୁ ଯାଏ ଯେଉଁ ନର ।
ଅଶ୍ୱମେଧ ଫଳଟି ହୁଅଇ ତାହାର । (ବନପର୍ବ)

**ଯଶୋଦା**—ଗୋପରାଜ ନନ୍ଦଘୋଷଙ୍କ ପତ୍ନୀ । ଏ ଗୋକୁଳରେ ଶ୍ରୀକୃଷ୍ଣଙ୍କୁ ଲାଳନପାଳନ କରିଥିଲେ । ବସୁଦେବ ଅର୍ଦ୍ଧ ରାତ୍ରିରେ ବ୍ରଜକୁ ଆସି ଯଶୋଦାଙ୍କ ଅଜ୍ଞାତସାରରେ ଶ୍ରୀକୃଷ୍ଣଙ୍କୁ ତାଙ୍କ ନିକଟରେ ରଖି ଯଶୋଦା ଗର୍ଭଜାତ ଯୋଗମାୟାଙ୍କୁ ନେଇ ମଥୁରା ଫେରିଗଲେ ।

ଯଥା, ପତି ନନ୍ଦା ଶୁଣି ଦେହତ୍ୟାଗ କରିବା ପରେ ଦକ୍ଷ ଓ ପ୍ରସୂତି ପୁନର୍ବାର ଭଗବତୀଙ୍କୁ ଲାଭ କରିବା ନିମିତ୍ତ ବହୁକାଳ ପର୍ଯ୍ୟନ୍ତ ହିମାଳୟରେ ତପସ୍ୟା କଲେ । ଦେବୀ ଉଭୟଙ୍କ ତପସ୍ୟାରେ ପ୍ରୀତ ହୋଇ କହିଲେ— ମୁଁ ଦ୍ୱାପର ଯୁଗର ଶେଷଭାଗରେ ପୃଥିବୀରେ ଆବିର୍ଭୂତା ହେବି କିନ୍ତୁ କନ୍ୟା-ରୂପେ ତୁମ କୋଳରେ ବା ତୁମ ଗୃହରେ ରହି ପାରିବି ନାହିଁ । ଏହି ବର ଦେଇ ଭଗବତୀ ଅନ୍ତର୍ହିତା ହେଲେ । ଦକ୍ଷ ନନ୍ଦରୂପେ ଓ ପ୍ରସୂତି ଯଶୋଦା-ରୂପେ ଗୋକୁଳରେ ଜନ୍ମଗ୍ରହଣ କରିଥିଲେ । (ମହାଭାଗବତପୁରାଣ)

ବସୁ ଶ୍ରେଷ୍ଠ ଦ୍ରୋଣ ଓ ତାଙ୍କ ପତ୍ନୀ ଧରା ଭଗବାନଙ୍କ ଦର୍ଶନଲାଭ ନିମିତ୍ତ ଗନ୍ଧମାଦନ ପର୍ବତରେ କଠୋର ତପସ୍ୟା କରିଥିଲେ । ସେମାନଙ୍କ ତପସ୍ୟାରେ ପ୍ରୀତହୋଇ ଭଗବାନ କହିଲେ ଯେ ଜନ୍ମାନ୍ତର ପରେ ତୁମେ ଉଭୟେ ଶ୍ରୀହରି ଦର୍ଶନଲାଭ କରିପାରିବ । ଅତଃପର ଦ୍ରୋଣ ନନ୍ଦରୂପେ ଓ ଧରା ଯଶୋଦାରୂପେ ଗୋକୁଳରେ ଜନ୍ମଗ୍ରହଣ କଲେ ।(ବ୍ରହ୍ମବୈବର୍ତ୍ତ, ଶ୍ରୀକୃଷ୍ଣ ଜନ୍ମଖଣ୍ଡ) । ଯଶୋବନ୍ତୀ, ଯଶୋମତୀ ବୋଲି ଯଶୋଦାଙ୍କର ଆଉ ଦୁଇଗୋଟି ନାମ ଅଛି ।

**ଯାଜ୍ଞବଲ୍କ (ଲ୍କ୍ୟ)**—ଶୁକ୍ଳ ଯଜୁର୍ବେଦ ବା ବାଜସନେୟୀ ସଂହିତାର ଆଗ୍ରୁର୍ଯ୍ୟ ଋଷି । ଏ ପ୍ରଥମେ ବୈଶମ୍ପାୟନଙ୍କ ଶିଷ୍ୟ ଥିଲେ । ଏକଦା କୌଣସି କାରଣରୁ ବୈଶମ୍ପାୟନ ଏହାଙ୍କଠାରେ ଅପ୍ରସନ୍ନ ହୋଇ ଏହାଙ୍କୁ କହିଲେ—ତୁମ୍ଭେ ଆମ୍ଭଠାରୁ ଯାହା ଶିକ୍ଷା କରିଛ ତାହା ଫେରାଇ ଦିଅ । ଏହା ଶୁଣି ଯାଜ୍ଞବଲ୍କ୍ୟ ଗୁରୁଙ୍କଠାରୁ ପଢ଼ିଥିବା ପାଠସବୁ ବାନ୍ତିକରି ପକାଇଲେ ଓ ବାନ୍ତ ବିଦ୍ୟା-ମାନଙ୍କୁ ବୈଶମ୍ପାୟନଙ୍କ ଅନ୍ୟ ଶିଷ୍ୟମାନେ ତିତିରି ପକ୍ଷୀ ହୋଇ ଖୁଣ୍ଟି ନେଲେ । ଏହି ଶିଷ୍ୟମାନଙ୍କ ପ୍ରବର୍ତ୍ତିତ ଶାଖା ଓ ସଂହିତା ତୈତ୍ତିରୀୟ ନାମରେ ଖ୍ୟାତ ହେଲା । ତତ୍ପରେ ଯାଜ୍ଞବଲ୍କ୍ୟ ସୂର୍ଯ୍ୟଙ୍କୁ ଉପାସନା ଦ୍ୱାରା ସନ୍ତୁଷ୍ଟ କରିବାରୁ ସୂର୍ଯ୍ୟ ଅଶ୍ୱରୂପ ଧାରଣ କରି ଏହାଙ୍କୁ ଶୁକ୍ଳ ଯଜୁର୍ବେଦ କହିଥିଲେ ଓ ଶୁକ୍ଳ ଯଜୁର୍ବେଦକୁ ପୃଥିବୀରେ ଅବତାରଣା କଲେ । (ଭାଷାକୋଷ)

**ଯୁଗ**—ହିନ୍ଦୁ ଶାସ୍ତ୍ରକାରମାନେ କାଳକୁ ଚାରି ଯୁଗରେ ବିଭକ୍ତ କରିଅଛନ୍ତି । (୧) ସତ୍ୟଯୁଗ ବା କୃତଯୁଗର ପରମାଣ ଦେବତାଙ୍କର ୪୮୦୦ ବର୍ଷ=ମନୁଷ୍ୟର

୪୮୦୦ × ୩୬୦ = ୧୭,୨୮୦୦୦୦ ବର୍ଷ । (୨) ତ୍ରେତାଯୁଗ – ଦେବତାଙ୍କର ୩୬୦୦ ବର୍ଷ = ମନୁଷ୍ୟର ୩୬୦୦ × ୩୬୦ = ୧୨୯୬୦୦୦ ବର୍ଷ । (୩) ଦ୍ୱାପର ଯୁଗ— ଦେବତାଙ୍କର ୨୪୦୦ ବର୍ଷ = ମନୁଷ୍ୟର ୨୪୦୦ × ୩୬୦ = ୮,୬୪୦୦୦ ବର୍ଷ । (୪) କଳି ଯୁଗ— ଦେବତାଙ୍କର ୧୨୦୦ ବର୍ଷ = ମନୁଷ୍ୟର ୧୨୦୦ × ୩୬୦ = ୪,୩୨୦୦୦ ବର୍ଷ । ଏହି ଯୁଗର ମୋଟ ପରିମାଣ = ୪୩, ୨୦୦୦୦ ବର୍ଷ ଅର୍ଥାତ୍ ୪୩ ଲକ୍ଷ କୋଡ଼ିଏ ହଜାର ବର୍ଷ । ଏହାକୁ ମହାଯୁଗ ବୋଲଯାଏ । ଏଥିରୁ ଦେଖାଯାଉଅଛି ଯେ ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗର ଅନୁପାତ ଯଥାକ୍ରମେ ୪, ୩, ୨, ୧ । ପ୍ରଥମେ ସତ୍ୟଯୁଗରେ ବ୍ରହ୍ମା ଭୂତ ସମସ୍ତର ସୃଷ୍ଟି କରନ୍ତି ଓ ଶେଷରେ ରୁଦ୍ର କଳିଯୁଗରେ ସମସ୍ତ ସୃଷ୍ଟିର ବିଲୟ କରନ୍ତି । ପ୍ରତ୍ୟେକ ଯୁଗର ପରିମାଣର $\frac{10}{12}$ = ଯୁଗକାଳ, $\frac{1}{12}$ ଯୁଗସନ୍ଧ୍ୟା ଓ $\frac{1}{12}$ ଯୁଗସନ୍ଧ୍ୟାଂଶ । ଯଥା

କଳିଯୁଗର ଯୁଗକାଳ ଦେବତାଙ୍କ ୧୦୦୦ ବର୍ଷ, ଯୁଗସନ୍ଧ୍ୟା ୧୦୦ ବର୍ଷ, ଯୁଗ ସନ୍ଧ୍ୟାଂଶ = ୧୦୦ ବର୍ଷ = ୧୨୦୦ ଦେବ ବତ୍ସର = ୪୩୨୦୦୦ ମନୁଷ୍ୟ ବତ୍ସର । ଏହି ଯୁଗ ଶେଷରେ ଖଣ୍ଡପ୍ରଳୟ ଘଟେ । ଏହି ଯୁଗକାଳକୁ ମହାଯୁଗ ବୋଲଯାଏ । ୭୧ଟି ମହାଯୁଗ ହେଲେ ଗୋଟିଏ ମନ୍ୱନ୍ତର ହୁଏ । ମନ୍ୱନ୍ତରର ଶେଷରେ ଗୋଟିଏ ମହାପ୍ରଳୟ ହୁଏ । ୧୦୦୦ଟି ମହାଯୁଗ ହେଲେ ଗୋଟିଏ କଳ୍ପ ହୁଏ । ଅର୍ଥାତ୍ ଆମ୍ଭମାନଙ୍କର ୪୩୨୦୦୦୦୦୦୦ ବା ୪୩୨ କୋଟି ବର୍ଷରେ ଗୋଟିଏ କଳ୍ପ ହେଲେ ବ୍ରହ୍ମାଙ୍କର ଦିନଟିଏ ଓ ରାତିଟିଏ ଭୋଗହୁଏ । ଅର୍ଥାତ୍ ୧୦୦୦ ମହାଯୁଗ ବା ୪୩୨ କୋଟି ବର୍ଷ ବ୍ରହ୍ମାଙ୍କର ଏକରାତ୍ରି । କଳ୍ପ ଶେଷରେ ବ୍ରହ୍ମା ସୃଷ୍ଟି ସଂହାର କରି ନିଦ୍ରାଯାଆନ୍ତି ଓ ସେ ସମୟରେ ସମସ୍ତ ଅନ୍ଧକାରମୟ ହୁଏ । ରାତ୍ରି ଶେଷ ହେଲେ ବ୍ରହ୍ମାଙ୍କର ନିଦ୍ରାଭଙ୍ଗ ହୁଏ ଓ ସେ ପୁଣି ସୃଷ୍ଟି ଆରମ୍ଭ କରନ୍ତି । ଏହିପରି କଳ୍ପ କଳ୍ପ ବ୍ୟାପୀ ସୃଷ୍ଟି ସ୍ଥିତି ପ୍ରଳୟ କ୍ରିୟା ଲାଗିଅଛି ।

ହିନ୍ଦୁ ଶାସ୍ତ୍ର ମତରେ—(୧) ସତ୍ୟ ଯୁଗର ଉତ୍ପତ୍ତି, ଧର୍ମ ଓ ବିବରଣ – ଉତ୍ପତ୍ତି ବୈଶାଖ ଶୁକ୍ଳ ତୃତୀୟା ବା ଅକ୍ଷୟତୃତୀୟା ରବିବାର ।

ପରିମାଣ – ୧୭ ଲକ୍ଷ ୨୮ ହଜାର ବର୍ଷ ।

ସତ୍ୟ ଯୁଗରେ ବିଷ୍ଣୁଙ୍କ ଅବତାର – ମତ୍ସ୍ୟ, କୂର୍ମ, ବରାହ, ନୃସିଂହ (ମତାନ୍ତରେ ବାମନ ସତ୍ୟ ଯୁଗର ଅବତାର) । ଏ ସମୟରେ ୬ ଜଣ ଚକ୍ରବର୍ତ୍ତୀ ରାଜତ୍ୱ କରିଥିଲେ, ଯଥା—ବଳି, ବେଣ, ମାନ୍ଧାତା, ପୁରୁରବା,

ଧୁନ୍ଧୁମାର (ମାଦଳା ପାଞ୍ଜିରେ ଜାନୁଘଣ୍ଟ) ଓ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ । ଏ ଯୁଗରେ ପୁଣ୍ୟ ଚତୁଷ୍ପାଦ, ପାପ ନାସ୍ତି; ମନୁଷ୍ୟଙ୍କ ପରମାୟୁ ୧ ଲକ୍ଷ ବର୍ଷ, ମାନବ ଦେହର ଉଚ୍ଚତା ୨୧ ହାତ; ମଜ୍ଜାଗତ ପ୍ରାଣ ଓ ଇଚ୍ଛା ମୃତ୍ୟୁ, ବ୍ୟବହାର ପାତ୍ର ସୁବର୍ଣ୍ଣ, ସାମ ବେଦର ଅଧିକାର, ତୀର୍ଥ ପୁଷ୍କର, ମନୁଷ୍ୟର କର୍ତ୍ତବ୍ୟ ଭକ୍ତି; ତାରକ ବ୍ରହ୍ମ ନାମ—ନାରାୟଣ ପରା ବେଦାଃ, ନାରାୟଣ ପରାକ୍ଷରାଃ

ନାରାୟଣ ପରା ମୁକ୍ତିଃ ନାରାୟଣ ପରାଗତିଃ ।

ଶାସ୍ତ୍ରୋକ୍ତ ସତ୍ୟଯୁଗର ଲକ୍ଷଣ—ସତ୍ୟ ଧର୍ମରତ, ତୀର୍ଥାଶ୍ରୟ ଓ ସତ୍ୟ ପରାୟଣତା ଯୋଗୁ ମନୁଷ୍ୟମାନେ ଦେବତାମାନଙ୍କୁ ପୂଜା ବନ୍ଦନା କରନ୍ତି ।

(୨) ତ୍ରେତା ଯୁଗ ଉତ୍ପତ୍ତି—କାର୍ତ୍ତିକ ଶୁକ୍ଳପକ୍ଷ ନବମୀ, ଅଁଳା ନବମୀ, ସୋମବାର ।

ପରିମାଣ—୧୨ ଲକ୍ଷ ୯୬ ହଜାର ବର୍ଷ ।

ଅବତାର—ବାମନ, ପରଶୁରାମ, ଶ୍ରୀରାମ, (ମତାନ୍ତରେ ବାମନ ତ୍ରେତାଯୁଗର ଅବତାର ନୁହଁନ୍ତି)

ଚକ୍ରବର୍ତ୍ତୀ—ସୂର୍ଯ୍ୟବଂଶୀୟ ରାଜାଗଣ । ପୁଣ୍ୟ ତ୍ରିପାଦ, ପାପ ଏକପାଦ । ମନୁଷ୍ୟଙ୍କ ପରମାୟୁ ୧୦ ହଜାର ବର୍ଷ । ମାନବ ଦେହର ଉଚ୍ଚତା ୧୪ ହାତ । ପ୍ରାଣ—ଅସ୍ଥିଗତ, ପାତ୍ର—ରୌପ୍ୟ, ବେଦ—ଋଗ୍‌ବେଦ, ତୀର୍ଥ—ନୈମିଷାରଣ୍ୟ, ମନୁଷ୍ୟର କର୍ତ୍ତବ୍ୟ, ଜ୍ଞାନ । ତାରକ ବ୍ରହ୍ମ ନାମ—

ରାମ ନାରାୟଣାନନ୍ତ ମୁକୁନ୍ଦ ମଧୁସୂଦନ,
କୃଷ୍ଣ କେଶବ କଂସାରେ ହରେ ବୈକୁଣ୍ଠ ବାମନ ।

ତ୍ରେତା ଯୁଗର ଶାସ୍ତ୍ରୋକ୍ତ ଲକ୍ଷଣ ଲୋକମାନେ ଦାନ, ଧର୍ମ, ତପସ୍ୟା ଓ ତୀର୍ଥ ଦର୍ଶନରତ ଏବଂ ରାଜାମାନେ ଯଜ୍ଞଶୀଳ ।

(୩) ଦ୍ୱାପର ଯୁଗ—ଉତ୍ପତ୍ତି—ଭାଦ୍ରକୃଷ୍ଣ ତ୍ରୟୋଦଶୀ, ଗୁରୁବାର ।
ପରିମାଣ—୮ ଲକ୍ଷ ୬୪ ହଜାର ବର୍ଷ ।

ଅବତାର—ଶ୍ରୀକୃଷ୍ଣ, ବୁଦ୍ଧ (ମତାନ୍ତରେ ବୁଦ୍ଧ ଦ୍ୱାପରଯୁଗର ଅବତାର ନୁହନ୍ତି) ପୁଣ୍ୟ ଦୁଇ ପାଦ, ପାପ ଦୁଇ ପାଦ ।

ଚକ୍ରବର୍ତ୍ତୀ—ଶାଲ୍ୱ, ବିରାଟାଦିଙ୍କଠାରୁ କଂସ ପର୍ଯ୍ୟନ୍ତ ୧୬ ଜଣ ।

ମନୁଷ୍ୟ ପରମାୟୁ—୧ ହଜାର ବର୍ଷ । ମାନବ ଦେହର ଉଚ୍ଚତା ୭ ହାତ । ପ୍ରାଣ—ରୁଧିରଗତ । ପାତ୍ର—ତାମ୍ର । ବେଦ—ଯଜୁର୍ବେଦ । ତୀର୍ଥ—କୁରୁକ୍ଷେତ୍ର । କର୍ତ୍ତବ୍ୟ—ଯଜ୍ଞ । ତାରକ ବ୍ରହ୍ମ ନାମ—

ହରେ ମୁରାରେ ମଧୁ କୈଟଭାରେ,
ଗୋବିନ୍ଦ ଗୋପାଳ ମୁକୁନ୍ଦ ଶୌରେ ।
ଯଜ୍ଞେଶ ନାରାୟଣ କୃଷ୍ଣ ବିଷ୍ଣୋ,
ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ ।

ଦ୍ୱାପର ଯୁଗରେ ଶାସ୍ତ୍ରୋକ୍ତ ଲକ୍ଷଣ—ଲୋକମାନେ ଧର୍ମାଧର୍ମିରତ, ପ୍ରଳାପୀ ଓ ଚପଳ । ରାଜାମାନେ ଜ୍ଞାନନଷ୍ଟ ଓ କପଟବାନ୍ ।

(୪) କଳିଯୁଗ—ଉତ୍ପତ୍ତି—ମାଘ ପୂର୍ଣ୍ଣିମା, ଶୁକ୍ରବାର । ପରିମାଣ—୪ ଲକ୍ଷ ୩୨ ହଜାର ବର୍ଷ । ପୁଣ୍ୟ—୧ପାଦ, ପାପ—ତ୍ରିପାଦ ।

ଅବତାର—କଳିଯୁଗର ଶେଷ ଅର୍ଥାତ୍ ପୁଣି ସତ୍ୟ ଯୁଗର ଆରମ୍ଭ ହେବା ସମୟରେ କଲ୍କି ଅବତାର ଆବିର୍ଭୂତ ହେବେ । (ମତାନ୍ତରେ ବୁଦ୍ଧ କଳିଯୁଗର ଅବତାର)।

ଚକ୍ରବର୍ତ୍ତୀ—ପ୍ରଥମେ ଯୁଧିଷ୍ଠିରାଦି ୧୨୦ ଜଣ ହିନ୍ଦୁରାଜା ୩୬୨୫ ବର୍ଷ ଓ ତତ୍ପରେ ସାହା, ସୁଲତାନାଦି ୨୧ ଜଣ ଯବନରାଜା ୧୨୪୪ ବର୍ଷ ରାଜତ୍ୱ କଲେ । ତତ୍ପରେ ଇଂଲଣ୍ଡ ଦେଶୀୟ ରାଜାମାନେ ରାଜତ୍ୱ କଲେ । ଏମାନଙ୍କ ଶାସନ କାଳରେ ଦେଶ ଲୋକେ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଅହିଂସା ଅସହଯୋଗନୀତି ପାଳନ କଲେ । ଫଳରେ ୧୯୪୭ ମସିହା ଅଗଷ୍ଟ ମାସ ପନ୍ଦର ତାରିଖରେ ଆମ୍ଭେମାନେ ସ୍ୱାଧୀନ ହେଲୁ । ବର୍ତ୍ତମାନ ଭାରତବର୍ଷ ଏକ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର ହୋଇଅଛି ।

ମନୁଷ୍ୟର ପରମାୟୁ—୧୨୦ ବର୍ଷ, ଉଚ୍ଚତା ୩½ ହାତ । ପ୍ରାଣ—ଅନ୍ନଗତ, ମନୁଷ୍ୟମାନେ ପାପାନୁରତ ଓ ସ୍ୱୈଣ ! ଏହି କଳିଯୁଗରେ ରାଷ୍ଟ୍ରର ଅବସ୍ଥା କଣ ହେବ ତାହାର ଏକ ସୁନ୍ଦର ନିର୍ଣ୍ଣୟ ଦେବର୍ଷି ନାରଦଙ୍କ ମୁଖରୁ ମହର୍ଷି ବ୍ୟାସ ଲେଖିଛନ୍ତି । ଅଧ୍ୟାତ୍ମରାମାୟଣ ଅନୁକ୍ରମଣିକାଧ୍ୟାୟ ଦେଖ । ଯଥା—

ପ୍ରାପ୍ତେ କଳି ଯୁଗେ ଘୋରେ ନରାଃ ପୁଣ୍ୟ ବିବର୍ଜିତାଃ
ଦୁରାଚାରରତାଃ ସର୍ବେ ସତ୍ୟବାର୍ତ୍ତା ପରାଙ୍ମୁଖାଃ ।

୧ରୁ ୧୫ ଶ୍ଳୋକ ସାଏ ଦେଖ

ପାତର ନଷ୍ଟ୍ରିପୁ ଏ ଯୁଗରେ ନାହିଁ । ତୀର୍ଥ—ଗଙ୍ଗା, କର୍ତ୍ତବ୍ୟ—ଦାନ ।
ତାରକ ବ୍ରହ୍ମ ନାମ—

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ

କଳିଯୁଗର ଶାସ୍ତ୍ରବର୍ଣ୍ଣିତ ଲକ୍ଷଣ—ସଦାର ଧର୍ମହୀନ, ତପୋବିରହିତ, ସତ୍ୟହୀନ, ଲୋକେ ପାପରତ, ବ୍ରାହ୍ମଣମାନେ ଲୋଭୀ ଓ ମୂର୍ଖ, ନୃପତି ଲୋଭୀ ଓ କପଟୀ, ମନୁଷ୍ୟମାନେ ସ୍ତ୍ରୀ ବଶ ଓ ପାପାନୁରକ୍ତ । ସ୍ତ୍ରୀମାନେ ଚପଳା (ଅଧ୍ୟାତ୍ମ ରାମାୟଣ କହେ — ସ୍ତ୍ରୀୟଶଃ ପ୍ରାୟଶଃ ଦୁଷ୍ଟା) । ପୃଥିବୀ କ୍ଷୀଣବୀର୍ଯ୍ୟା ଓ କଟୌଷଧିରସା ଓ ମନ୍ଦଫଳା । ଦୁର୍ଜନଙ୍କର ପ୍ରଭାବ ବୃଦ୍ଧି ଓ ସଜ୍ଜନଙ୍କର ଦୁରବସ୍ଥା (ଅରୁଣୋଦୟ ପ୍ରେସ୍ ପ୍ରକାଶିତ ଖଡ଼ିରତ୍ନ ପଞ୍ଜିକା ଦେଖନ୍ତୁ) ।

ଆଧୁନିକ ଗଣନା ଅନୁସାରେ କଳିଯୁଗର ଆରମ୍ଭକାଳ ଖ୍ରୀଷ୍ଟ ପୂର୍ବ ୩୧୦୧ ସାଲ ଅତଏବ ୧୯୩୬ ସାଲ ପର୍ଯ୍ୟନ୍ତ କଳିଯୁଗର ୫୦୩୭ ବର୍ଷ ଭୋଗ ହୋଇଅଛି ଓ ४ ଲକ୍ଷ ୨୬ ହଜାର ୯୬୩ ବର୍ଷ ବାକି ଅଛି ।

ଘୋର କଳି ଉପସ୍ଥିତ ହେଲେ ଅର୍ଥାତ୍ ଜଗତକୁ ପାପ ଗ୍ରାସିଲେ ଭଗବାନ, କଳ୍କି ଅବତାର ଗ୍ରହଣ କରି ପାପୀଙ୍କୁ ସଂହାର କରି ଜଗତରେ ସତ୍ୟର ପ୍ରତିଷ୍ଠା କରିବେ ବୋଲି ଶାସ୍ତ୍ରରେ ଅଛି । ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ—ଏହା ଭଗବତ୍ ଶ୍ରୀମୁଖ ବାକ୍ୟ । ଶାସ୍ତ୍ରରେ କଳିଯୁଗର ବିକଟ ଅବସ୍ଥା ଘଟିବାର ଯାହା ବର୍ଣ୍ଣିତ ହୋଇଅଛି, ତାହା କ୍ରମେ କ୍ରମେ ଘନୀଭୂତ ହେଉଥିବା ଦେଖାଯାଉଅଛି । (ଭାଷାକୋଷ)

**ଯୁଧିଷ୍ଠିର**—ଚନ୍ଦ୍ରବଂଶୀୟ ସୁବିଖ୍ୟାତ ରାଜା । ଏହାଙ୍କର ଏକ ରାଜଧାନୀ ଇନ୍ଦ୍ରପ୍ରସ୍ଥ ଓ ଅପର ରାଜଧାନୀ ହସ୍ତିନାପୁର । ପାଣ୍ଡବମାନଙ୍କ ମଧ୍ୟରେ ଯୁଧିଷ୍ଠିର ଜ୍ୟେଷ୍ଠ । ମହାରାଜ ପାଣ୍ଡୁଙ୍କ ଜ୍ୟେଷ୍ଠା ପତ୍ନୀ କୁନ୍ତୀଙ୍କ ଗର୍ଭରୁ ଯୁଧିଷ୍ଠିର, ଭୀମ ଓ ଅର୍ଜ୍ଜୁନ ନାମକ ତିନପୁତ୍ର ଓ ଅପର ମହିଷୀ ମାଦ୍ରୀଙ୍କ ଗର୍ଭରୁ ନକୁଳ ଓ ସହଦେବ ଜନ୍ମଗ୍ରହଣ କରିଥିଲେ । ଦୁର୍ବାସା ପ୍ରଦତ୍ତ ବର ପ୍ରସାଦରୁ କୁନ୍ତୀ ଧର୍ମଙ୍କ ସହଯୋଗରୁ ଯୁଧିଷ୍ଠିରଙ୍କୁ ଗର୍ଭଧାରଣ କରିଥିଲେ । (କୁନ୍ତୀ ଦେଖ)

ଯୁଧିଷ୍ଠିରଙ୍କ ଜନ୍ମ ସମୟରେ ଦୈବବାଣୀ ଶୁଣାଗଲା—ପାଣ୍ଡୁଙ୍କର ଏହି ପ୍ରଥମ ପୁତ୍ର ଧାର୍ମିକମାନଙ୍କ ମଧ୍ୟରେ ଶ୍ରେଷ୍ଠ, ବିକ୍ରାନ୍ତ, ସତ୍ୟବାଦୀ, ଭୂମଣ୍ଡଳର ଏକଚ୍ଛତ୍ରାଧିପତି । ତ୍ରିଲୋକ ବିଶ୍ରୁତ, ଯଶସ୍ୱୀ, ତେଜସ୍ୱୀ ବ୍ରତ ପରାୟଣ ଏବଂ ଯୁଧିଷ୍ଠିର ନାମରେ ବିଖ୍ୟାତ ହେବେ । ଏହା ପରେ ମୈଥୁନ ଧର୍ମର ଅନୁବର୍ତ୍ତୀ ହୋଇ ମୁନିଙ୍କ ଅଭିଶାପ ଫଳରୁ ମହାରାଜା ପାଣ୍ଡୁ ଦେହତ୍ୟାଗ କଲେ । (ପାଣ୍ଡୁ ଦେଖ) ଯୁଧିଷ୍ଠିରାଦି ପଞ୍ଚଭ୍ରାତା ପିତାଙ୍କ ମୃତ୍ୟୁ ପରେ ହସ୍ତିନାପୁରକୁ ଫେରିଆସି ପିତାମହ ଭୀଷ୍ମଙ୍କ ଅଭିଭାବକତାରେ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କ ସହିତ ଲାଳିତ ପାଳିତ ହେଲେ ଓ ଶିକ୍ଷା ମଧ୍ୟ ପାଇଲେ । ଅଳ୍ପକାଳ ମଧ୍ୟରେ ପାଣ୍ଡବ ଓ କୌରବମାନେ ଅସ୍ତ୍ର ବିଦ୍ୟାରେ ବିଶାରଦ ହୋଇଉଠିଲେ । ଯୁଧିଷ୍ଠିର ରଥିଶ୍ରେଷ୍ଠ ହେଲେ । ଶିକ୍ଷା ସମାପ୍ତ ପରେ ଧୃତରାଷ୍ଟ୍ରଙ୍କ ଦ୍ୱାରା ଯୁଧିଷ୍ଠିର ଯୌବରାଜ୍ୟରେ ଅଭିଷିକ୍ତ ହେଲେ । ପିତାଙ୍କ ବ୍ୟବହାରରେ ଈର୍ଷ୍ୟାନ୍ୱିତ ଦୁର୍ଯୋଧନ ଅସନ୍ତୁଷ୍ଟ ହୋଇ ପାଣ୍ଡବମାନଙ୍କ ସୌଭାଗ୍ୟ ଧ୍ୱଂସ କରିବା ନିମିତ୍ତ ଚେଷ୍ଟା କରିବାକୁ ଲାଗିଲେ । ସେ ଦୁଃଶାସନ, କର୍ଣ୍ଣ ଓ ଶକୁନିଙ୍କ ସହିତ ମନ୍ତ୍ରଣା କରି ବାରୁଣାବତ ନଗରୀକୁ କୁନ୍ତୀ ସହିତ ପାଣ୍ଡବମାନଙ୍କୁ ପ୍ରେରଣ କଲେ । ସେଠାରେ ଏକ ଜତୁଗୃହ ନିର୍ମାଣ କରି ସେଥିରେ ପାଣ୍ଡବମାନଙ୍କୁ ରହିବା ଲାଗି ନିର୍ଦ୍ଦେଶ ଦେଲେ । ମାତ୍ର ଏହି ଗୃହରେ ଅଗ୍ନି ଦେବା ପୂର୍ବରୁ ପାଣ୍ଡବମାନେ ତାହା ଜାଣିପାରି ସେ ଗୃହରୁ ପଳାୟନ କଲେ । ସେମାନେ ଏକ ନିବିଡ଼ ବନରେ କିଛିକାଳ ବାସ କରି ଦ୍ରୌପଦୀଙ୍କ ସ୍ୱୟମ୍ବର ବେଳକୁ ବ୍ରାହ୍ମଣ ବେଶରେ ପଞ୍ଚାଳ ରାଜ୍ୟରେ ପ୍ରବେଶ କଲେ । ନିବିଡ଼ ବନରେ ବାସ କରିଥିବା ବେଳେ ଭୀମ ହିଡ଼ମ୍ବ ନାମକ ରାକ୍ଷସକୁ ବଧ କରି ତାଙ୍କ ଭଗ୍ନୀ ହିଡମ୍ବାଙ୍କ ପାଣିଗ୍ରହଣ କଲେ । ହିଡମ୍ବା ଗର୍ଭରୁ ଭୀମଙ୍କ ଔରସରେ ଘଟୋତ୍କଚ ନାମକ ପ୍ରବଳ ପରାକ୍ରାନ୍ତଶାଳୀ ଏକ ପୁତ୍ର ଜାତ ହୋଇଥିଲା । (ଘଟୋତ୍କଚ ଦେଖ) ଦ୍ରୌପଦୀ ସ୍ୱୟମ୍ବର ସଭାରେ ଅର୍ଜ୍ଜୁନ ଲକ୍ଷ୍ୟଭେଦ କରି ଦ୍ରୁପଦ ରାଜକୁମାରୀ ଦ୍ରୌପଦୀଙ୍କୁ ଲାଭ କଲେ, ମାତ୍ର ମାତାଙ୍କ ଆଦେଶ ଅନୁଯାୟୀ ପାଞ୍ଚ ଭାଇଯାକ ଏହାଙ୍କୁ ବିବାହ କଲେ ।

ପରେ ଧୃତରାଷ୍ଟ୍ର ଓ କୌରବମାନେ ଶୁଣି ପାରିଲେ ଯେ ପାଣ୍ଡବମାନେ ଜୀବିତ ଅଛନ୍ତି ଏବଂ ଦ୍ରୌପଦୀଙ୍କୁ ବିବାହ କରିଛନ୍ତି । ମହାମତି ବିଦୁର ଅନ୍ଧରାଜ ଧୃତରାଷ୍ଟ୍ରଙ୍କୁ ପରାମର୍ଶ ଦେଲେ ଯେ ବର୍ତ୍ତମାନ ପାଣ୍ଡବମାନଙ୍କର ପରାମର୍ଶଦାତାରୂପେ ଦ୍ୱାରକାଧିପତି ଶ୍ରୀକୃଷ୍ଣ ରହିଛନ୍ତି । ପୁଣି ପ୍ରବଳ ପରାକ୍ରାନ୍ତ ପଞ୍ଚାଳରାଜ ଦ୍ରୁପଦ ସେମାନଙ୍କର ଶ୍ୱଶୁର ହୋଇଛନ୍ତି । ଏ ଅବସ୍ଥେ ବିରୋଧ କଲେ ଭବିଷ୍ୟତରେ ଘୋର ଯୁଦ୍ଧ ହୋଇ କୌରବମାନଙ୍କର

କ୍ଷତ ଘଟିବାର ଆଶଙ୍କା ରହିଛି । ଦ୍ରୋଣ ଓ ଭୀଷ୍ମ ମଧ୍ୟ ବିଦୁରଙ୍କ ପରାମର୍ଶ ଗ୍ରହଣ କଲେ । କର୍ଣ୍ଣ ଓ ଦୁର୍ଯୋଧନ ଏଥିରେ ଘୋର ଆପତ୍ତି ଉଠାଇଲେ, ମାତ୍ର ଭବିଷ୍ୟତଦର୍ଶୀ ଧୃତରାଷ୍ଟ୍ର, ଭୀଷ୍ମ, ଦ୍ରୋଣ ଓ ବିଦୁରଙ୍କ ପରାମର୍ଶ ଗ୍ରହଣ କଲେ । ବିଦୁର ଧୃତରାଷ୍ଟ୍ରଙ୍କ ଆଦେଶକ୍ରମେ ନାନାବିଧ ଉପଢୌକନ ଧରି ଦ୍ରୁପଦ ଓ ପାଣ୍ଡବମାନଙ୍କ ସନ୍ନିଧାନରେ ଉପସ୍ଥିତ ହେଲେ । ବିଦୁର ଦ୍ରୁପଦଙ୍କୁ କହିଲେ କୌରବମାନେ ଏ ବିବାହବାର୍ତ୍ତା ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇଛନ୍ତି ପୁଣି ଅନ୍ଧରାଜ ଧୃତରାଷ୍ଟ୍ର ନବଦମ୍ପତିଙ୍କୁ ଶୁଭାଶୀର୍ବାଦ ପ୍ରେରଣ କରିଛନ୍ତି । କୌରବମାନେ ପାଣ୍ଡବମାନଙ୍କୁ ଦେଖିବା ପାଇଁ ଉତ୍କଣ୍ଠା ପ୍ରକାଶ କରି ରହିଛନ୍ତି । ସେମାନେ ଯେପରି ହସ୍ତିନାକୁ ପୁନରାଗମନ କରନ୍ତି, ସେହି କଥା କହିଛନ୍ତି । ଦ୍ରୁପଦଙ୍କ ସମ୍ମତି ଓ ଶ୍ରୀକୃଷ୍ଣଙ୍କ ପରାମର୍ଶ ମତେ ପାଣ୍ଡବମାନେ କୁନ୍ତୀ ଓ ଦ୍ରୌପଦୀଙ୍କ ସହିତ ହସ୍ତିନାନଗରୀରେ ଉପସ୍ଥିତ ହେଲେ । ସେମାନେ ଭୀଷ୍ମ, ଦ୍ରୋଣ ଓ ଧୃତରାଷ୍ଟ୍ରଙ୍କ ପଦବନ୍ଦନା କରି ଆଶୀର୍ବାଦ ଭିକ୍ଷାକଲେ । ବର୍ତ୍ତମାନ ଧୃତରାଷ୍ଟ୍ର କହିଲେ—ତୁମର ଅର୍ଦ୍ଧେକ ରାଜ୍ୟ ଗ୍ରହଣ କରି ଖାଣ୍ଡବ-ପ୍ରସ୍ଥରେ ଯାଇ ବାସକର । ତାହାହେଲେ ଦୁର୍ଯୋଧନ ସହିତ ତୁମ୍ଭମାନଙ୍କର ପୁନରାୟ ବିବାଦ ହେବା ସମ୍ଭାବନା ନଥିବ । ପାଣ୍ଡବମାନେ ଜ୍ୟେଷ୍ଠ ତାତଙ୍କ ଏ ଆଦେଶ ଶିରୋଧାର୍ଯ୍ୟ କରି ଖାଣ୍ଡବପ୍ରସ୍ଥକୁ ଗମନ କଲେ । ସେମାନଙ୍କ ଆଗମନରେ ଖାଣ୍ଡବପ୍ରସ୍ଥ ଅଲଂକୃତ ହୋଇଉଠିଲା । ପାଣ୍ଡବମାନେ ସେଠାରେ ଇନ୍ଦ୍ରପ୍ରସ୍ଥ ନଗର ସ୍ଥାପନ କରି ରାଜତ୍ୱ କରିବାକୁ ଲାଗିଲେ । ଦିନକୁ ଦିନ ସେମାନଙ୍କ ପ୍ରସିଦ୍ଧି ବଢ଼ିବାକୁ ଲାଗିଲା । ଦିନେ ନାରଦ ଏହି ନଗରୀକୁ ଆଗମନ କରି ଦ୍ରୌପଦୀଙ୍କ ଲାଗି ଯେପରି ପାଣ୍ଡବମାନଙ୍କର ଅଯଥା ଭ୍ରାତୃବିବାଦ ନ ଘଟେ ତାହା ଚେତାଇ ସୁନ୍ଦ ଉପସୁନ୍ଦ ଉପାଖ୍ୟାନ ସେମାନଙ୍କ ଆଗରେ ଉପଦେଶ ଛଳରେ କହିଗଲେ ।

ନାରଦଙ୍କ ଉପଦେଶମତେ ପାଣ୍ଡବମାନେ ନିୟମ କଲେ ଯେ ସେମାନଙ୍କ ମଧ୍ୟରୁ କେହି ଜଣେ ଦ୍ରୌପଦୀଙ୍କ ପାଖରେ ଥିଲେ ଅନ୍ୟ ଜଣେ ସେଠାକୁ ଯିବ ନାହିଁ । ଏହି ନିୟମ ଯେ ଭଙ୍ଗ କରିବ ସେ ବ୍ରହ୍ମଚାରୀ ହୋଇ ବାର ବର୍ଷଯାଏ ବନରେ ବାସ କରିବ । ନାରଦଙ୍କ ସମକ୍ଷରେ ପାଣ୍ଡବମାନେ ଏହି ପ୍ରତିଜ୍ଞାରେ ଆବଦ୍ଧ ହୋଇ ପରମ ସୁଖରେ ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ କଲେ । ଯୁଧିଷ୍ଠିରଙ୍କ ରାଜତ୍ୱରେ ପ୍ରଜାମାନେ ପରମସୁଖରେ କାଳଯାପନ କରୁଥିଲେ । ପୃଥିବୀ ଧନ ଧାନ୍ୟରେ ପୂର୍ଣ୍ଣହେଲା । ଦିନେ ଗୋଟିଏ ଦୁର୍ଘଟଣା ଘଟିଲା । ଯୁଧିଷ୍ଠିରଙ୍କ ପ୍ରାସାଦରେ ଅସ୍ତ୍ରଶସ୍ତ୍ର ରକ୍ଷିତ ହୋଇଥାଏ । ଅର୍ଜୁନ ଦସ୍ୟୁଭୟ

ଦମନାର୍ଥେ ଅସ୍ତ୍ର ଆଣିବା ପାଇଁ ସେଠାକୁ ଗଲେ । ସେତେବେଳେ ଦ୍ରୌପଦୀ ଯୁଧିଷ୍ଠିରଙ୍କ ସହିତ ଆସୀନ ହୋଇଥିଲେ । ନିୟମ ଭଙ୍ଗ କରିବା ଯୋଗେ ଅର୍ଜ୍ଜୁନଙ୍କୁ ଦ୍ୱାଦଶ ବର୍ଷ ବନବାସ କରିବାକୁ ପଡ଼ିଲା । ଯୁଧିଷ୍ଠିର ପ୍ରିୟତମ ଭ୍ରାତା ଅର୍ଜ୍ଜୁନଙ୍କ ବନଗମନ ଲାଗି ପ୍ରତିବାଦ କଲେ । ସେ କହିଲେ—ପିତା ନ ଥିବା ଅବସ୍ଥାରେ ଅଗ୍ରଜ ତାଙ୍କର ତୁଲ୍ୟ ଭକ୍ତି ଭଜନ ଓ ନମସ୍ୟ । ଏରୂପ ଅବସ୍ଥାରେ ଅର୍ଜ୍ଜୁନଙ୍କର ଗୃହପ୍ରବେଶ କଦାପି ଅପରାଧରେ ଗଣ୍ୟ ହେବ ନାହିଁ । ମାତ୍ର ଅର୍ଜ୍ଜୁନ ବିନୀତ ଭାବରେ ଏହା ପ୍ରତ୍ୟାଖ୍ୟାନ କରି ଅରଣ୍ୟ ନିବାସକୁ ଶ୍ରେୟସ୍କର ମଣିଲେ । ଅର୍ଜ୍ଜୁନ ବନବାସରୁ ଫେରିବା ବେଳକୁ ଯୁଧିଷ୍ଠିର ରାଜସୂୟ ଯଜ୍ଞ ଅନୁଷ୍ଠାନ କରିବା ପାଇଁ ସକଳ ପ୍ରକାର ଆୟୋଜନ କରୁଥିଲେ । ଏହି ଯଜ୍ଞ ଅନୁଷ୍ଠାନ କରିବାକୁ ହେଲେ ଦିଗ୍‌ବିଜୟ କରିବା ନିତାନ୍ତ ପ୍ରୟୋଜନ । ଦିଗ୍‌ବିଜୟ ସମୟରେ ମଗଧରାଜ ଜରାସନ୍ଧ ପାଣ୍ଡବମାନଙ୍କ ଅଧୀନତା ସ୍ୱୀକାର କରିବା ପାଇଁ ଅସମ୍ମତ ହେବାରୁ କୃଷ୍ଣ କୌଶଳକ୍ରମେ ଭୀମଙ୍କ ଦ୍ୱାରା ତାହାଙ୍କୁ ବଧ କରିଥିଲେ । ରାଜସୂୟ ଯଜ୍ଞରେ ଯୁଧିଷ୍ଠିରଙ୍କ ଐଶ୍ୱର୍ଯ୍ୟ ଓ ସୌଭାଗ୍ୟ ଦେଖି ଦୁର୍ଯ୍ୟୋଧନ ଈର୍ଷାନ୍ୱିତ ହୋଇଉଠିଲା । ସେ କପରି ପାଣ୍ଡବମାନଙ୍କର ସର୍ବନାଶ କରିବେ ସେଥିପାଇଁ ଶକୁନି ଓ କର୍ଣ୍ଣଙ୍କ ସହିତ ଷଡ଼ଯନ୍ତ୍ର ଓ ପରାମର୍ଶ କରିବାକୁ ଲାଗିଲେ । ଅବଶେଷରେ ଅକ୍ଷକ୍ରୀଡାରେ ଯୁଧିଷ୍ଠିରଙ୍କୁ ପରାଜିତ କରିବା ସ୍ଥିର ହେଲା । ଦୁର୍ଯ୍ୟୋଧନ ଅକ୍ଷକ୍ରୀଡ଼ା କରିବା ପାଇଁ ଯୁଧିଷ୍ଠିରଙ୍କୁ ଆହ୍ୱାନ କଲେ । ବିଦୁର ଅକ୍ଷକ୍ରୀଡ଼ା କରିବା ପାଇଁ ଯୁଧିଷ୍ଠିରଙ୍କୁ ମନା କଲେ ମଧ୍ୟ କ୍ଷତ୍ରିୟ ଧର୍ମରକ୍ଷା ଉଦ୍ଦେଶ୍ୟରେ ଯୁଧିଷ୍ଠିର ତାହା ମାନିବାକୁ ସକ୍ଷମ ହେଲେ ନାହିଁ । ଯୁଧିଷ୍ଠିର ଶକୁନିଙ୍କ ସହିତ ପଶା ଖେଳିବା ପାଇଁ ସ୍ଥିର ହେଲା । ପଣ ରକ୍ଷା କରି କ୍ରୀଡ଼ାରମ୍ଭ ହେଲା । ପଣ ରକ୍ଷା ପାଇଁ ଶକୁନିଙ୍କର ଯାହା ଧନ ଦରକାର ହେବ ସେ ସବୁ ଦୁର୍ଯ୍ୟୋଧନ ଦେବେ ବୋଲି ନିର୍ଦ୍ଧାରିତ ହେଲା । ଅର୍ଥାତ୍ ଦୁର୍ଯ୍ୟୋଧନଙ୍କ ପ୍ରତିନିଧି ସ୍ୱରୂପ ଶକୁନି ପଶା ଖେଳିବା ପାଇଁ ଅଗ୍ରସର ହେଲେ । ଦୁର୍ଭାଗ୍ୟବଶତଃ ଧର୍ମରାଜ ଯୁଧିଷ୍ଠିର ଖେଳରେ ସର୍ବସ୍ୱ ହରାଇ ହୃତସର୍ବସ୍ୱ ହେଲେ । ପାଣ୍ଡବମାନେ ଶକୁନିର ଦାସ ହୋଇ ରହିଲେ । ଯୁଧିଷ୍ଠିର ଦ୍ରୌପଦୀଙ୍କୁ ପଣ ରଖି ଖେଳିଲେ ମଧ୍ୟ ତାଙ୍କୁ ହରାଇ ବସିଲେ । ଦୁଃଶାସନ କେଶାକର୍ଷଣପୂର୍ବକ ଅନ୍ତଃପୁରରୁ ଦ୍ରୌପଦୀଙ୍କୁ ସଭାସ୍ଥଳକୁ ଘେନି ଆସିଲେ । ଦ୍ରୌପଦୀଙ୍କୁ ବିବସ୍ତ୍ରା କରି ଅପମାନ ଦେବା କୌରବମାନଙ୍କର ଏକ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ମାତ୍ର ସତୀଙ୍କ ନିର୍ଯ୍ୟାତନାର ବିଷମୟ ଫଳ କୌରବ ଅନ୍ତଃପୁରରେ ପ୍ରତିକ୍ରିୟା ସୃଷ୍ଟି କରନ୍ତେ ଧୃତରାଷ୍ଟ୍ର ଏହା ଜାଣିପାରି ନୀରବ ରହିଲେ । ଏଣେ ଦୁର୍ଯ୍ୟୋଧନ କୃଷ୍ଣାଙ୍କୁ ଅପମାନ ଦେବାକୁ ନିଜ ଉରୁ ଦେଶରୁ

ବସ୍ତ୍ର ଅପହାରଣ କରି ଦ୍ରୌପଦୀଙ୍କୁ ନିଜର ରାଣୀ କରିବା ପାଇଁ ପ୍ରସ୍ତୁତ ଅଛନ୍ତି ବୋଲି ସଭା ସ୍ଥଳରେ ପ୍ରକାଶ କଲେ । ଭୀମ ଏଥିଲାଗି ଯଥେଷ୍ଟ ଉତ୍ତେଜିତ ହେଲେ ମଧ୍ୟ ଯୁଧିଷ୍ଠିରଙ୍କ ଇଙ୍ଗିତକ୍ରମେ ଶାନ୍ତଭାବ ଧରି ନୀରବ ହୋଇ ରହିଲେ ।

ଧୃତରାଷ୍ଟ୍ର ଦ୍ରୌପଦୀଙ୍କୁ ଡ଼କାଇ ନେଇ ନାନାପ୍ରକାର ସାନ୍ତ୍ୱନା ଦେଲେ ଓ ଅଭୟ ବର ଦେଇଥିଲେ । ଦ୍ରୌପଦୀ ଧୃତରାଷ୍ଟ୍ରଙ୍କ ବରରେ ସ୍ୱାମୀମାନଙ୍କୁ ତଥା ନିଜକୁ ମୁକ୍ତ କରି ଇନ୍ଦ୍ରପ୍ରସ୍ଥ ଗମନ କଲେ । ଅନ୍ଧରାଜ ମଧ୍ୟ ପାଣ୍ଡବମାନଙ୍କୁ ଡ଼କାଇ ନିଜ ପୁତ୍ରମାନଙ୍କ ଅବୈଧ କାର୍ଯ୍ୟ ସକାଶେ ଅନୁତପ୍ତ ହେଲେ ଏବଂ ଯୁଧିଷ୍ଠିରାଦିଙ୍କୁ ପୁତ୍ରମାନଙ୍କ ଦୋଷ କ୍ଷମା ଦେବା ପାଇଁ କହିଲେ । ବର୍ତ୍ତମାନ ଦୁର୍ଯୋଧନ ,ଧୃତରାଷ୍ଟ୍ରଙ୍କୁ ପାଣ୍ଡବମାନଙ୍କ ଶକ୍ତି, ଭାବୀ ଉନ୍ନତି ଓ କୌରବ ପକ୍ଷର ଭବିଷ୍ୟତ ବିପଦ କଥା କହି ଉତ୍ତେଜିତ କରିବାକୁ ଲାଗିଲେ । ପୁତ୍ର କଥାରେ ଧୃତରାଷ୍ଟ୍ର ଭବିଷ୍ୟତ ବିପଦ କଥା ଭାବି ପାଣ୍ଡବ-ମାନଙ୍କ ଶକ୍ତି ସାମର୍ଥ୍ୟ କିପରି କମିବ ସେଥିଲାଗି ପୁଣି ପଶା ଖେଳିବା ପାଇଁ ଯୁଧିଷ୍ଠିରଙ୍କୁ ଆହ୍ୱାନ କଲେ । ଏଥର ଯୁଧିଷ୍ଠିର ପଶାଖେଳି ସର୍ବସ୍ୱ ହରାଇ ବସିଲେ ଓ ଭାଇ ଭାର୍ଯ୍ୟାଙ୍କ ସହ ବାର ବର୍ଷ ବନବାସ ଓ ବର୍ଷେ ଅଜ୍ଞାତବାସ କଲେ । ବନରେ ଥିବାବେଳେ ଦ୍ରୌପଦୀଙ୍କୁ ଅପହରଣ କରିନେବା ପାଇଁ ଦୁର୍ଯୋଧନଙ୍କ ଭଗିନୀପତି ଜୟଦ୍ରଥ ଭୀମଙ୍କ ଦ୍ୱାରା ପରାଜିତ ହୋଇ ଯଥେଷ୍ଟ ଅପମାନ ପାଇଲେ । ଅଜ୍ଞାତବାସ ସମୟରେ ପାଣ୍ଡବମାନେ ଛଦ୍ମବେଶରେ ମତ୍ସ୍ୟଦେଶାଧିପତି ବିରାଟଙ୍କ ରାଜଭବନରେ ଥିଲେ । ଯୁଧିଷ୍ଠିର ଅକ୍ଷକ୍ରୀଡ଼ା-ନିପୁଣ ବ୍ରାହ୍ମଣ ବା କଙ୍କ ପଣ୍ଡା, ଭୀମ ସୂପକାର, ଅର୍ଜୁନ ବୃହନ୍ନଳା, ନକୁଳ ଅଶ୍ୱଚିକିତ୍ସକ, ସହଦେବ ଗୋପାଳକ ଓ ଦ୍ରୌପଦୀ ସୈରନ୍ଧ୍ରୀ ବେଶରେ ରହିଥିଲେ । ଏହି ସମୟରେ ବିରାଟ ରାଜାର ଶାଳକ ଓ ସେନାପତି କୀଚକ ସୈରନ୍ଧ୍ରୀଙ୍କୁ ଅପମାନ ଦେବାରୁ ଭୀମ ତାହାଙ୍କୁ ନାଟ୍ୟମନ୍ଦିରରେ ମଲ୍ଲଯୁଦ୍ଧରେ ବଧ କରିଥିଲେ । କୀଚକଙ୍କ ମୃତ୍ୟୁ ସମ୍ବାଦ ପ୍ରଚାରିତ ହେବା ମାତ୍ରେ ଦୁର୍ଯୋଧନ ବିରାଟଙ୍କ ଗୋଗୃହ ଆକ୍ରମଣ କରିବାକୁ ତ୍ରିଗର୍ତ୍ତରାଜ ସୁଶର୍ମାଙ୍କୁ ପ୍ରେରଣ କଲେ । ସୁଶର୍ମା ବିରାଟଙ୍କ ଦକ୍ଷିଣ ଗୋଗୃହ ଆକ୍ରମଣ କରି ବହୁ ଗୋଧନ ନେଇଗଲେ । ବିରାଟ ଏ ସମ୍ବାଦ ପାଇ ସୁଶର୍ମାଙ୍କୁ ଆକ୍ରମଣ କଲେ । ସୁଶର୍ମା ବିରାଟଙ୍କୁ ପରାସ୍ତ କରି ତାଙ୍କୁ ନିଜ ରଥରେ ବାନ୍ଧି ନିଜ ନଗର ଅଭିମୁଖରେ ଯାତ୍ରା କଲେ । ଯୁଧିଷ୍ଠିର ଏହା ଜାଣିପାରି ବିରାଟଙ୍କ ମୁକ୍ତି ସକାଶେ ଭୀମଙ୍କୁ ପଠାଇଲେ । ଭୀମ ସୁଶର୍ମାଙ୍କୁ ବନ୍ଦୀକରି ନାନାପ୍ରକାର ଅପମାନ ଦେଇଥିଲେ । ପରେ କିନ୍ତୁ ଯୁଧିଷ୍ଠିରଙ୍କ ଆଦେଶକ୍ରମେ ତାଙ୍କୁ ଛାଡ଼ିଦେଲେ । ବିରାଟରାଜ

ପ୍ରତ୍ୟୁପକାର ସ୍ୱରୂପ ଯୁଧିଷ୍ଠିର ଓ ଭୀମଙ୍କୁ ମତ୍ସ୍ୟରାଜ୍ୟ ପ୍ରଦାନ କରିବା ପାଇଁ ଇଚ୍ଛା କଲେ । ମାତ୍ର ଯୁଧିଷ୍ଠିର ସେଥିରେ ସମ୍ମତ ହେଲେ ନାହିଁ । ଅନ୍ୟ ଦିଗରୁ ଦୁର୍ଯ୍ୟୋଧନ କର୍ଣ୍ଣ, ଭୀଷ୍ମ ପ୍ରଭୃତି ବୀରମାନଙ୍କ ସହିତ ବିରାଟର ଉତ୍ତର ଗୋଗୃହ ଆକ୍ରମଣ କରି ୬୦ ହଜାର ଗୋରୁ ଅପହରଣ କରି ନେଲେ । ବିରାଟ ଏ ସମ୍ବାଦ ପାଇ ତାହାଙ୍କ ପୁତ୍ର ଉତ୍ତର କୁମାରଙ୍କୁ କୌରବ ସୈନ୍ୟ ବିରୁଦ୍ଧରେ ପ୍ରେରଣ କଲେ । ମାତ୍ର ସୁଶର୍ମାଙ୍କ ସହିତ ବିରାଟ ଯୁଦ୍ଧ କରି ତାଙ୍କ ସାରଥି ହରାଇ ଥିବାରୁ ଉତ୍ତରଙ୍କ ରଥରେ ଜଣେ ବିଚକ୍ଷଣ ସାରଥିର ଅଭାବ ଘଟିଲା । ସେ କପରି ଯୁଦ୍ଧ କରିବେ ସେହି କଥା ଭାବି ଇତସ୍ତତଃ ହେଲେ । ତେଣୁ ସୈରନ୍ଧ୍ରୀ ଓ ଉତ୍ତରା କୁମାରୀଙ୍କ ପରାମର୍ଶରେ ବୃହନ୍ନଳା ତାଙ୍କର ସାରଥି ହୋଇଗଲେ । କୁରୁବଳର ଅଗଣିତ ସୈନ୍ୟ ଦେଖି ଉତ୍ତର ରଥରୁ ଡେଇଁପଡ଼ି ପଳାଇବାକୁ ଉଦ୍ୟତ ହେଲେ । ମାତ୍ର ବୃହନ୍ନଳା ତାଙ୍କୁ ସାନ୍ତ୍ୱନା ଦେଇ ନିଜେ ରଥୀରୂପେ ପ୍ରବଳ କୁରୁସୈନ୍ୟଙ୍କୁ ପରାସ୍ତ କରି ବିରାଟଙ୍କ ଗୋଧନ ମୁକ୍ତ କଲେ । କୌରବମାନେ ଅର୍ଜ୍ଜୁନଙ୍କୁ ଚିହ୍ନି ପାରିଲେ ମଧ୍ୟ ସେହି ଦିନକୁ ପାଣ୍ଡବମାନଙ୍କ ପ୍ରତିଜ୍ଞା ପୂର୍ଣ୍ଣ ହୋଇ ଯାଇଛି ଜାଣି ନୀରବ ହେଲେ ।

ବର୍ତ୍ତମାନ ବିରାଟ ପାଣ୍ଡବମାନଙ୍କ ପରିଚୟ ପାଇ ପରମ ପରିତୋଷ ହେଲେ । ଅର୍ଜ୍ଜୁନଙ୍କ ପୁତ୍ର ଅଭିମନ୍ୟୁଙ୍କ ସହିତ ବିରାଟ ରାଜକୁମାରୀ ଉତ୍ତରାଙ୍କର ପରିଣୟ ସମ୍ପାଦିତ ହେଲା । ଏହା ପରେ ଶ୍ରୀକୃଷ୍ଣ ଓ ବ୍ୟାସଙ୍କ ପରାମର୍ଶରେ ଧର୍ମରାଜ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଦୂତରୂପେ ହସ୍ତିନା ପ୍ରେରଣ କଲେ । ମାତ୍ର ଗର୍ବିତ ଦୁର୍ଯ୍ୟୋଧନ ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମିତ ଭୂମି ଦେବେ ନାହିଁ ବୋଲି କହିବାରୁ ମହାଭାରତ ଯୁଦ୍ଧର ସୂତ୍ରପାତ ହେଲା । କୌରବ ପକ୍ଷରେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ଭୂରିଶ୍ରବା, ଜୟଦ୍ରଥ, ଭଗଦତ୍ତ, ଶଲ୍ୟ ପ୍ରଭୃତି ବୀରଗଣ ଓ ପାଣ୍ଡବ ପକ୍ଷରେ ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, କାଶୀରାଜ, ଚେକିତାନ ପ୍ରଭୃତି ବୀରଗଣ ଯୁଦ୍ଧାର୍ଥେ ପ୍ରସ୍ତୁତ ହୋଇଥିଲେ । କୁରୁକ୍ଷେତ୍ରନାମକ ରଣକ୍ଷେତ୍ରରେ ଉଭୟ ଦଳ ଯୁଦ୍ଧାର୍ଥେ ପରସ୍ପରର ସମ୍ମୁଖୀନ ହେଲେ । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ସାରଥି ରୂପେ ଯୁଦ୍ଧରେ ଉପସ୍ଥିତ ହେଲେ । ଅର୍ଜ୍ଜୁନଙ୍କର ଏହି ସମୟରେ ବିବେକତା ଉଦୟ ହେଲା । ସେ ଯୁଦ୍ଧରୁ ନିବୃତ୍ତ ହେବାକୁ ବସିଲେ । ଶ୍ରୀକୃଷ୍ଣ ତାଙ୍କୁ ନାନାପ୍ରକାର ତତ୍ତ୍ୱ ଉପଦେଶ ଦେଇ ଅର୍ଜ୍ଜୁନଙ୍କୁ ଯୁଦ୍ଧ କାର୍ଯ୍ୟରେ ପ୍ରବର୍ତ୍ତିନା ଦେଲେ । ଶ୍ରୀକୃଷ୍ଣଙ୍କର ଏହି ଉପଦେଶହିଁ ଜଗଦ୍‌ବିଖ୍ୟାତ ତତ୍ତ୍ୱ ଗ୍ରନ୍ଥ ଭଗବଦ୍ ଗୀତା ନାମରେ ବିଖ୍ୟାତ । ଏହି ଭାରତ ଯୁଦ୍ଧରେ ଯୁଧିଷ୍ଠିରଙ୍କର ଏକମାତ୍ର ବୀରତ୍ୱର ନିଦର୍ଶନ ତନ୍ତ୍ରକର୍ତ୍ତିକ ଶଲ୍ୟରାଜଙ୍କ

ଯଗ୍ରଜସ୍ୱ । ପାଣ୍ଡବ ପକ୍ଷରେ ଭୀମ, ଅର୍ଜୁନ ଓ ଅଭିମନ୍ୟୁ, ଏବଂ କୌରବ ପକ୍ଷରେ ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣ ହିଁ ପ୍ରତିପତ୍ତି ଲାଭ କରିଥିଲେ । ଦ୍ରୋଣବଧ ଉପାଖ୍ୟାନରେ ଧର୍ମରାଜ ଯୁଧିଷ୍ଠିରହିଁ ସତ୍ୟର ଅପଲାପ କରିଥିଲେ (ଅଶ୍ୱତ୍ଥାମା ଦେଖ) । ଏହି ପାପ ଲାଗି ତାଙ୍କୁ ଅଳ୍ପ ସମୟ ପାଇଁ ନରକ ଦର୍ଶନ କରିବାକୁ ହୋଇଥିଲା । ଯୁଦ୍ଧାନ୍ତେ ଯୁଧିଷ୍ଠିର ଜ୍ୟେଷ୍ଠତାତ ଧୃତରାଷ୍ଟ୍ର ଓ ରାଣୀ ଗାନ୍ଧାରୀଙ୍କୁ ପ୍ରବୋଧନା ଦେଲେ ଏବଂ ଧୃତରାଷ୍ଟ୍ରଙ୍କୁ ସମ୍ମାନର ସହିତ ରକ୍ଷା କରି ତିନି ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ । ତା'ପରେ ସେ ଏକ ବୃହତ୍ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଲେ । ଏହି ଯଜ୍ଞ ସମାପନ ପରେ ଧୃତରାଷ୍ଟ୍ର, କୁନ୍ତୀ ଓ ଗାନ୍ଧାରୀ ମନ୍ତ୍ରୀ ସଞ୍ଜୟଙ୍କ ସହ ବନଗମନ କଲେ । ସେଠାରେ ଦାବାନଳ ଯୋଗେ ସଞ୍ଜୟଙ୍କ ବ୍ୟତୀତ ଅନ୍ୟ ତିନି ଜଣ ପ୍ରାଣତ୍ୟାଗ କଲେ ପାଣ୍ଡବମାନେ ଏ ସମ୍ବାଦରେ ଶୋକସନ୍ତପ୍ତ ହୋଇ ଗଙ୍ଗାତୀରରେ ତର୍ପଣାଦି ସମାପନ କଲେ । ବ୍ରାହ୍ମଣମାନଙ୍କୁ ପ୍ରଚୁର ଅର୍ଥ ଦାନ କଲେ । ଯଦୁବଂଶ ଧ୍ୱଂସ ଓ ଶ୍ରୀକୃଷ୍ଣଙ୍କ ମହାପ୍ରସ୍ଥାଣ ପରେ ଯୁଧିଷ୍ଠିର, ଭ୍ରାତା ଓ ଭାର୍ଯ୍ୟାଙ୍କ ସହିତ ମହାପ୍ରସ୍ଥାନ ପାଇଁ ଯୋଗାଡ଼ କଲେ । ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତଙ୍କୁ ରାଜ୍ୟଭାର ଅର୍ପଣ କରି ହିମାଳୟ ଆଡ଼କୁ ପଦବ୍ରଜରେ ଗଲେ । ଭୀମ, ଅର୍ଜୁନ, ନକୁଳ, ସହଦେବ ଓ ଦ୍ରୌପଦୀ ନିଜର କର୍ମଫଳ କ୍ରମେ ହିମାଳୟ ପ୍ରଦେଶରେ ଗୋଟିକ ପରେ ଗୋଟିଏ ଦେହତ୍ୟାଗ କଲେ । କେବଳ ଯୁଧିଷ୍ଠିର ଦେବରାଜ ଇନ୍ଦ୍ରଙ୍କ ଆଦେଶକ୍ରମେ ସଶରୀରେ ସ୍ୱର୍ଗ ଗମନ କରିବା ପାଇଁ ସମର୍ଥ ହେଲେ (ମହାଭାରତ) । କଳିର ୬୨୩ ବର୍ଷ ଗତ ହେବା ପରେ କୁରୁ ପାଣ୍ଡବମାନେ ଆବିର୍ଭୂତ ହୋଇଥିବା କଥା ରାଜତରଙ୍ଗିଣୀ ନାମକ ଗ୍ରନ୍ଥରେ ଦୃଷ୍ଟ ହୁଏ ।

(ଚରିତାଭିଧାନ)

**ଯୁବନାଶ୍ୱ**—ସୂର୍ଯ୍ୟବଂଶୀୟ ଜନୈକ ରାଜା । ମାନ୍ଧାତାଙ୍କ ପିତା । ରାଜା ଧୁନ୍ଧୁମାରଙ୍କ ଏକ ପୁତ୍ରର ନାମ ଯୁବନାଶ୍ୱ (ହିନ୍ଦୀ ଶବ୍ଦସାଗର) । ଯୁବନାଶ୍ୱଙ୍କ ପିତାଙ୍କ ନାମ ପ୍ରସେନଜିତ୍ ଓ ମାତାଙ୍କ ନାମ ଗୌରୀ ।

**ଯୁଯୁତ୍ସୁ**—ଧୃତରାଷ୍ଟ୍ରଙ୍କର ଏକ ପୁତ୍ର । ଯୁଧିଷ୍ଠିରଙ୍କ ଧର୍ମ ଡାକ ଶୁଣି ଏ କୌରବ ପକ୍ଷ ପରିତ୍ୟାଗ କରି ପାଣ୍ଡବ ପକ୍ଷ ଅବଲମ୍ବନ କରିଥିଲେ । ପରୀକ୍ଷିତଙ୍କ ପ୍ରତିନିଧିରୂପେ ଯୁଧିଷ୍ଠିର ଏହାଙ୍କୁ ନିଯୁକ୍ତ କରି ମହାପ୍ରସ୍ଥାନ କଲେ । (ଯୁଯୁତ୍ସୁଙ୍କୁ ନିଯୋଜିଲେ ପ୍ରତିନିଧି ପଦେ—ରାଧାନାଥ, ମହାଯାତ୍ରା) ।

**ଯୋଗବାଶିଷ୍ଠ ରାମାୟଣ**—ବେଦାନ୍ତ ସମ୍ବନ୍ଧୀୟ ତଥ୍ୟ ଓ ଉପଦେଶମାନ ବର୍ଣ୍ଣିତ ହୋଇଥିବା ସଂସ୍କୃତ ଗ୍ରନ୍ଥ ବିଶେଷ । ମହର୍ଷି ବଶିଷ୍ଠ ଏହାର ବକ୍ତା ଓ

ଶ୍ରୀରାମ ଏହାର ଶ୍ରୋତା । ଏଥିରେ ବୈରାଗ୍ୟ ପ୍ରକରଣ, ମୁମୁକ୍ଷୁ ବ୍ୟବହାର ପ୍ରକରଣ, ଉତ୍ପତ୍ତି ପ୍ରକରଣ, ସ୍ଥିତି ପ୍ରକରଣ, ଉପଶମ ପ୍ରକରଣ ଓ ନିର୍ବାଣ ପ୍ରକରଣ ବର୍ଣ୍ଣିତ ହୋଇଛି । ସ୍ଥୂଳତଃ ଏହା ଛଅଗୋଟି ପ୍ରକରଣରେ ବିଭକ୍ତ । ଏ ଗ୍ରନ୍ଥରେ ଜୀବାତ୍ମା ଓ ପରମାତ୍ମା, ମୁମୁକ୍ଷୁ ବ୍ୟକ୍ତିର କର୍ତ୍ତବ୍ୟ, ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟ, ଚିତ୍ତବୃତ୍ତି, ସୁଖ ଦୁଃଖ, ଭୋକ୍ତା ଭୋଗ୍ୟ, ମନୋ ମଧ୍ୟେ ବିଶାଳ ବ୍ରହ୍ମାଣ୍ଡର ବିକାଶ, ଜୀବନ୍ମୁକ୍ତ ବ୍ୟକ୍ତିର ବିବରଣ, ଚିତ୍ତଦମନ, ଅବିଦ୍ୟା ନିରାକରଣ, ପରମାର୍ଥ ଯୋଗ, ଆତ୍ମଜ୍ଞାନୋପଦେଶ, ସମାଧି, ଅଣିମାଦି ଐଶ୍ୱର୍ଯ୍ୟ, ଜାଗ୍ରତ୍‌ସ୍ୱପ୍ନ, ସୁଷୁପ୍ତି ବର୍ଣ୍ଣିତ ଆଦି ବହୁ ଉପାଖ୍ୟାନ ସହ ବିବୃତ ହୋଇଅଛି । (ପୂର୍ଣ୍ଣଚନ୍ଦ୍ର ଭାଷାକୋଷ)

**ଯୋଗମାୟା**—ବିନ୍ଧ୍ୟାଚଳ ବାସିନୀ ଦୁର୍ଗା । ସାନ୍ଦୀପନି ମୁନିଙ୍କ ମାଆ । ବୃନ୍ଦାବନ ନିବାସୀ ଯୋଗମାୟାଙ୍କୁ ପୂର୍ଣ୍ଣମାସୀ ବୋଲି କହନ୍ତି । ଏ ମାୟା ବିସ୍ତାର କରି ରାଧାକୃଷ୍ଣଙ୍କର ମିଳନ କରାଇଥିଲେ ।

**ଯୋଜନଗନ୍ଧା**—ଋଚୀକ ଋଷିଙ୍କ ପତ୍ନୀ । ବିଶ୍ୱାମିତ୍ରଙ୍କର ଭଉଣୀ ଓ ଶୁନଃଶେଫଙ୍କ ମାଆ (ପୂର୍ଣ୍ଣଚନ୍ଦ୍ର) । ଏ ସଶରୀରେ ସ୍ୱର୍ଗାରୋହଣ ପରେ ପୃଥିବୀର ହିତ କାମନାରେ ସ୍ରୋତସ୍ୱତୀ ରୂପେ ହିମାଳୟରୁ ଉତ୍ପନ୍ନ ହୋଇଥିଲେ । ଏହି ନଦୀର ନାମ କୌଶିକୀ (ପୂର୍ଣ୍ଣଚନ୍ଦ୍ର) । ଶାନ୍ତନୁ ବିବାହ କରିଥିବା ସତ୍ୟବତୀଙ୍କ ନାମାନ୍ତର ।





**ରକ୍ତବୀଜ**—ଦୁର୍ଗାଙ୍କ ସଙ୍ଗେ ଯୁଦ୍ଧ କରି ନିହତ ହୋଇଥିବା ଶୁମ୍ଭ, ନିଶୁମ୍ଭଙ୍କ ସେନାପତି, ଅସୁର ବିଶେଷ । ଏହାର ରକ୍ତର ବିନ୍ଦୁମାନ ଭୂମିରେ ପଡ଼ିବା ମାତ୍ରେ, ତାହାରୁ ପୁଣି ଅସୁରମାନେ ଜାତ ହୋଇ ଚଣ୍ଡୀଙ୍କ ସଙ୍ଗେ ଯୁଦ୍ଧ କରୁଥିଲେ । କିନ୍ତୁ ଚଣ୍ଡୀଙ୍କର ବିଶେଷ ଶକ୍ତି ଯୁକ୍ତ ଅସୁରର ମୁଣ୍ଡ କାଟିବା ସଙ୍ଗେ ସଙ୍ଗେ ଜିହ୍ୱା ପ୍ରସାରଣପୂର୍ବକ ସବୁ ରକ୍ତ ପାନ କରିବାରୁ ତାହାର ରକ୍ତ

ଭୂର୍ଦ୍ଧରେ ଆଉ ପଡ଼ିଲା ନାହିଁ । ତେଣୁ ସେ ରାକ୍ଷସଙ୍କୁ ବିନାଶ କରିବା ପାଇଁ ଦେବୀ ସମର୍ଥା ହୋଇଥିଲେ । ଏହି ବଧ ବୃତ୍ତାନ୍ତ ମାର୍କଣ୍ଡେୟ ପୁରାଣାନ୍ତର୍ଗତ ସପ୍ତଶତୀ ଚଣ୍ଡୀରେ ବର୍ଣ୍ଣିତ ହୋଇଅଛି । (ସ୍ୱଷ୍ଟାକୋଷ)

**ରକ୍ଷରଜା (ଋକ୍ଷରାଜ)**—ବାଳି ଓ ସୁଗ୍ରୀବଙ୍କ ମାତା । ଏ ବ୍ରହ୍ମାଙ୍କ ଅଶ୍ରୁଜଳରୁ ଜାତ ହୋଇଥିଲେ । ଏ ପ୍ରଥମେ ପୁରୁଷ ଥିଲେ । ମେରୁ ଶିଖରରେ ଅବସ୍ଥିତ ସରୋବର ବିଶେଷରେ ସ୍ନାନ କରିବା ଯୋଗେ ସ୍ତ୍ରୀ ହୋଇଗଲେ । ଏହାଙ୍କ ଗର୍ଭରେ ବାଳି ଓ ସୁଗ୍ରୀବ ଜନ୍ମ ଗ୍ରହଣ କରିଥିଲେ । ପରେ ଦୈବାନୁଗ୍ରହରୁ ମାନବ ରୂପ ତ୍ୟାଗ କରି ବାନର ହେଲେ । ବ୍ରହ୍ମାଙ୍କ ଆଦେଶରେ ଏ କିଷ୍କିନ୍ଧ୍ୟାର ରାଜା ହୋଇଥିଲେ । (ସ୍ୱଷ୍ଟାକୋଷ)

**ରଘୁ**—ସୂର୍ଯ୍ୟବଂଶୀୟ ବିଖ୍ୟାତ ରାଜା । ଅଯୋଧ୍ୟାନଗରୀ ଏହାଙ୍କର ରାଜଧାନୀ ଥିଲା । ଏହାଙ୍କ ନାମାନୁସାରେ ଏହି ବଂଶର ନାମ ରଘୁବଂଶ ହୋଇଅଛି । ଏହାଙ୍କର ପିତାଙ୍କ ନାମ ଦିଲୀପ ଓ ପୁତ୍ରର ନାମ ଅଜ । ଅଜଙ୍କ ପୁତ୍ର ଦଶରଥ ଓ ଦଶରଥଙ୍କ ପୁତ୍ର ରାମଚନ୍ଦ୍ର । ମହାରାଜ ଦିଲୀପ କୁଳଗୁରୁ ବଶିଷ୍ଠଙ୍କ ଆଦେଶରେ ରାଣୀ ସୁଦକ୍ଷିଣାଙ୍କ ସହିତ ତାଙ୍କ ଆଶ୍ରମକୁ ଯାଇ ସୁରଭିତନୟା ନନ୍ଦିନୀର ସନ୍ତୋଷ ସମ୍ପାଦନ କରି ପୁତ୍ରଲାଭ କରିଥିଲେ । ଦିଲୀପ ଏକ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିଥିଲେ ଏହି ଯଜ୍ଞ ଅଶ୍ୱ ରକ୍ଷଣ ଭାର ରଘୁଙ୍କ ଉପରେ ଥିଲା । ଦେବରାଜ ଇନ୍ଦ୍ର ଏହି ଅଶ୍ୱ ଅପହରଣ କରିନେଲେ । ରଘୁ ଦେବରାଜଙ୍କୁ ପରାସ୍ତ କରି ଏହି ଅଶ୍ୱଟିକୁ ମୁକୁଳାଇ ଆଣିଥିଲେ । ମହାରାଜ ରଘୁ ସିଂହାସନ ଆରୋହଣ କରି ସର୍ବତ୍ର ଶାନ୍ତି ସ୍ଥାପନପୂର୍ବକ ଦିଗ୍‌ବିଜୟ କରିବାକୁ ବାହାରିଲେ । ସେ ଭାରତର ଦକ୍ଷିଣସ୍ଥ କେରଳ ରାଜ୍ୟ (ବର୍ତ୍ତମାନ କାନଡ଼ା, କୋଚିନ ଓ ତ୍ରିବାଙ୍କୁର), ଉତ୍ତର ପଶ୍ଚିମରେ କାମ୍ବୋଜ, କାଶ୍ମୀର ଓ ପାରସୀକ ରାଜ୍ୟ, ପୂର୍ବରେ ବଙ୍ଗଦେଶ ଓ ଆସାମ ଅନ୍ତର୍ଗତ କାମରୂପ ଓ ପଶ୍ଚିମଘାଟ ସନ୍ନିହିତ ପ୍ରଦେଶସବୁ ଜୟ କରିଥିଲେ । ଏହି ଦିଗ୍‌ବିଜୟ କରି ସେ ପ୍ରଭୂତ ଧନରାଶି ଲାଭ କରି ବିଶ୍ୱଜିତ୍ ନାମକ ଏକ ଯଜ୍ଞ ଅନୁଷ୍ଠାନ କରିଥିଲେ । (ରଘୁବଂଶ, ଚରିତାଭିଧାନ)

**ରଣ**—ପ୍ରାଚୀନ ଅସୁରରାଜ ବିଶେଷ । ଏହାଙ୍କୁ ଚର୍ଚ୍ଚିକା ଯୁଦ୍ଧରେ ବଧ କରିଥିଲେ । ରଣପୁରରେ ଏହି ଅସୁରର ନିବାସ ଥିଲା ।

**ରତି**—ଏ ଦକ୍ଷ ପ୍ରଜାପତିଙ୍କ ସ୍ୱେଦଶରୀରରୁ ନିର୍ଗତ ସ୍ୱେଦଜା କନ୍ୟା (ହରିବଂଶ ଶିବପୁରାଣ) । ଏହାଙ୍କ ସ୍ୱାମୀ ମଦନ, ହର କୋପାନଳରେ ଭସ୍ମୀଭୂତ

ହେବାରୁ ଦେବାଦେଶରେ ଏ ଶମ୍ବର ଦୈତ୍ୟ ଘରେ ମାୟାବତୀ ନାମ ଧାରଣ କରି ଅବସ୍ଥାନ କରିଥିଲେ । ପରେ ସ୍ୱାମୀ, ପ୍ରଦ୍ୟୁମ୍ନ ରୂପରେ ଜନ୍ମ ହେବାରୁ ତାଙ୍କ ସଙ୍ଗେ ମିଳିତା ହେଲେ । ରତିଙ୍କର ରୂପ ସଂସାରର ସବୁ ସ୍ତ୍ରୀଙ୍କ ମଧ୍ୟରେ ସୁନ୍ଦରତମ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି । (ସ୍ୱଃପୀକୋଷ)

**ରତିନାଥ**—(କନ୍ଦର୍ପ ଦେବ) । ହିନ୍ଦୁ ଶାସ୍ତ୍ରମାନଙ୍କରେ କନ୍ଦର୍ପ ରୂପବାନ ଆଦର୍ଶ ଯୁବକରୂପେ ବର୍ଣ୍ଣିତ । ଏହାଙ୍କ ହାତରେ ଥିବା ଧନୁ ପୁଷ୍ପରେ ନିର୍ମିତ । ଧନୁର ଗୁଣ ଭ୍ରମର ମାଳ ଓ ୫ଟି ଫୁଲ ଶରର କାର୍ଯ୍ୟ କରିଥାଏ । ଏହାଙ୍କ ପଞ୍ଚ ପୁଷ୍ପବାଣ ଯଥା—ଅରବିନ୍ଦ, ଅଶୋକ, ଚୂତ ବା ଆମ୍ରବଉଳ, ନବମଲ୍ଲିକା ବା ନଆଳୀ ଓ ରକ୍ତୋତ୍ପଳ (କାହାର କାହାର ମତରେ ନୀଳୋତ୍ପଳ) । ମନୁଷ୍ୟ-ଠାରେ ଏହି ବାଣମାନଙ୍କର ପ୍ରଦର୍ଶିତ ଗୁଣ ଅନୁସାରେ ଏମାନଙ୍କର ଯଥାକ୍ରମେ ଭିନ୍ନ ଭିନ୍ନ ନାମ ମଧ୍ୟ ଅଛି । ଯଥା—ସମ୍ମୋହନ, ଉନ୍ମାଦନ, ଶୋଷଣ, ତାପନ ଓ ସ୍ତମ୍ଭନ ।

କାମଦେବଙ୍କ ସଖା ବସନ୍ତ, ଦୂତ କୋକିଳ ଓ ପତ୍ନୀ ରତିଦେବୀ ॥ ଏମାନେ ସର୍ବଦା ଏହାଙ୍କ ସାଙ୍ଗରେ ଥାʼନ୍ତି । ସଂସାରର ପ୍ରତ୍ୟେକ ଜୀବ (କି ପୁରୁଷ, କି ସ୍ତ୍ରୀ) ଏହାଙ୍କ ବାଣର ଆକ୍ରମଣରୁ ରକ୍ଷା ପାଏନାହିଁ । ଏମନ୍ତ କି ମହାଦେବଙ୍କ ପରି ମହାଯୋଗୀ ମଧ୍ୟ ଏହାଙ୍କ ସମ୍ମୋହନ ନାମକ ବାଣର ତାଡ଼ନାରେ ପ୍ରଥମେ ଅସ୍ଥିର ହୋଇଥିଲେ । ମଦନ ମହାଦେବଙ୍କ ପ୍ରତି ବାଣ ପ୍ରୟୋଗ କରିଥିବାରୁ ମହାଦେବ କ୍ରୋଧରେ ମଦନଙ୍କୁ ଭସ୍ମ କରି ଦେଇଥିଲେ ॥ ପରେ ରତିଙ୍କର କାତର ବିଳାପ ଶୁଣି ଓ ତାଙ୍କ ସ୍ତବରେ ସନ୍ତୁଷ୍ଟ ହୋଇ ଏହାଙ୍କୁ ଭୂମିଷ୍ଠ ହେବା ପାଇଁ ବର ଦେଲେ । ଗ୍ରୀସ୍ ଦେଶୀୟ ପଣ୍ଡିତମାନେ ଏହି ଦେବତା (Eros ବା venus)ଙ୍କୁ ଯୁବକ ଓ ଅନ୍ଧରୂପରେ ଚିତ୍ରିତ କରିଅଛନ୍ତି । କାମଦେବଙ୍କର ଅନ୍ୟ ଏକ ପତ୍ନୀ (ନାମ ପ୍ରୀତି) ଥିବା କଥିତ (M. W)

ହିନ୍ଦୁ ଶାସ୍ତ୍ର (ଯଥା, ସ୍ମର ଦୀପିକା) ଅନୁସାରେ ଭିନ୍ନ ଭିନ୍ନ ତିଥିରେ ମନୁଷ୍ୟଙ୍କର (ବିଶେଷତଃ ସ୍ତ୍ରୀଙ୍କ) ଶରୀରର ନିମ୍ନୋକ୍ତ ଭିନ୍ନ ଭିନ୍ନ ସ୍ଥାନରେ ମଦନ ଅବସ୍ଥିତ ହେବାର ବର୍ଣ୍ଣିତ ହୋଇଅଛି; କାମୋଦ୍ଦୀପନାର୍ଥେ ତତ୍ତତ୍ ତିଥିରେ ସେହି ସେହି ଅଙ୍ଗମାନଙ୍କୁ ଉତ୍ତେଜିତ, ମର୍ଦ୍ଦିତ ବା କ୍ଷତ କରିବାର ବିଧି ମଧ୍ୟ ବର୍ଣ୍ଣିତ ହୋଇଅଛି । ପୁରୁଷର ଦକ୍ଷିଣାଙ୍ଗରେ ଓ ସ୍ତ୍ରୀର ବାମାଙ୍ଗରେ କାମ ଅବସ୍ଥାନ କରନ୍ତି । ଶୁକ୍ଳପକ୍ଷ ତିଥିରେ ଏବଂ କୃଷ୍ଣପକ୍ଷ ତିଥିମାନଙ୍କରେ ଏହି ଅବସ୍ଥାନମାନଙ୍କର ବିପର୍ଯ୍ୟୟ ଘଟିଥାଏ—

ପ୍ରତିପଦରେ—ପାଦାଙ୍ଗୁଷ୍ଠ, ଦ୍ୱିତୀୟାରେ—ଗୁଲ୍‌ଫ ବା ଗୋଇଠିର ଉପର, ତୃତୀୟା—ଜଙ୍ଘ, ଚତୁର୍ଥୀ—ଭଗ, ପଞ୍ଚମୀ—ନାଭି, ଷଷ୍ଠୀ—କୁଚମଣ୍ଡଳ, ସପ୍ତମୀ—ହୃଦୟ, ଅଷ୍ଟମୀ—କକ୍ଷ, ନବମୀ—କଣ୍ଠ, ଦଶମୀ—ଓଷ୍ଠ, ଏକାଦଶୀ—ଗଣ୍ଡ, ଦ୍ୱାଦଶୀ—ନେତ୍ର ତ୍ରୟୋଦଶୀ—କାନ, ଚତୁର୍ଦ୍ଦଶୀ—ଲଲାଟ ବା କପାଳ, ପୂର୍ଣ୍ଣିମା, ଅମାବାସ୍ୟା—ଶିଖା ।

ପ୍ରାଚୀନ କବିଙ୍କ ମତରେ ଭିନ୍ନ ଭିନ୍ନ ଦେଶର ରମଣୀମାନଙ୍କର ଭିନ୍ନ ଭିନ୍ନ ଅଙ୍ଗରେ ରତିପତି ପ୍ରକାଶିତ ହେବା ବିଷୟ ଗୋଟିଏ ଶ୍ଲୋକରେ ବର୍ଣ୍ଣିତ ହୋଇଅଛି, ଯଥା—

ବାଚି ଶ୍ରୀ ମାଥୁରୀଣାଂ ଜନକ ଜନପଦେ
ସ୍ଥାସ୍ନିମିନାଂ କଟାକ୍ଷେ,
ଦାନ୍ତେ ଗୌଡାଙ୍ଗନାନାଂ ସୁଲଳିତ ଜଘନେ
ସୈନ୍ଧବ ପ୍ରେୟସୀନାଂ ।
ତୈଲଙ୍ଗୀନାଂ ନିତମ୍ବେ ସଜଳ ଘନରୁଚୌ
କେରଳୀ କେଶପାଶେ,
କର୍ଣ୍ଣାଟୀନାଂ କଟୌ ଚ ସ୍ଫୁରତି ରତିପତି
ର୍ଗୁର୍ଜ୍ଜରୀଣାଂ ସ୍ତନେଷୁ ।
(ଶବ୍ଦକୋଷ)

ରତ୍ନାକର—ରାମାୟଣ ପ୍ରଣେତା ମହାମୁନି ବାଲ୍ମୀକିଙ୍କ ପୂର୍ବ ନାମ । କଥିତ ଅଛି ଯେ ରତ୍ନାକର ପ୍ରଥମେ ଦସ୍ୟୁବୃତ୍ତି କରୁଥିଲେ ଏବଂ ଜଙ୍ଗଲରେ ପଥିକମାନଙ୍କର ପ୍ରାଣ ସଂହାର କରି ସେମାନଙ୍କ ସର୍ବସ୍ୱ ଲୁଣ୍ଠନ କରି କୁଟୁମ୍ବ ପୋଷୁଥିଲେ । ଏକଦା ନାରଦ ଜଙ୍ଗଲରେ ଯାଉଥିଲେ, ତାଙ୍କୁ ରତ୍ନାକର ବଧ କରିବା ପାଇଁ ଅଗ୍ରସର ହୁଅନ୍ତେ ନାରଦ ପଚାରିଲେ—ତୁମ୍ଭେ କି ସକାଶେ ନିର୍ଦ୍ଦୋଷ ବ୍ୟକ୍ତିଙ୍କୁ ବଧ କରିବା ପାଇଁ ଉଦ୍ୟତ ହେଉଅଛ ? ରତ୍ନାକର କହିଲେ, ଏ ମୋର କୁଟୁମ୍ବପୋଷଣ ବୃତ୍ତି । ନାରଦ ପଚାରିଲେ—ତୁମେ ଯାହାଙ୍କ ପାଇଁ ବ୍ରହ୍ମହତ୍ୟାଦି ଗୁରୁତର ପାପକାର୍ଯ୍ୟ କରୁଛ, ସେମାନେ ଏ ପାପର ଅଂଶଗ୍ରହଣ କରିବେ କି ? ରତ୍ନାକର ଉତ୍ତର କଲେ—ହଁ, ଅବଶ୍ୟ କରିବେ । ନାରଦ କହିଲେ—ଆଚ୍ଛା, ତାଙ୍କୁ ଯାଇ ପଚାରି ଆସିଲ । ରତ୍ନାକର ଏ ବିଷୟ ପଚାରିବା ପାଇଁ ଘରକୁ ଗଲେ । କାଳେ ନାରଦ ପଳାଇ ଯିବେ ଏହି ଆଶଙ୍କାରେ ତାଙ୍କୁ ଗୋଟିଏ ଗଛରେ ଦୃଢ଼ରୂପେ ବାନ୍ଧିଦେଇ ଗଲେ । ଘରେ ସମସ୍ତ ପରିବାରଙ୍କୁ ଏକଥା ପଚାରନ୍ତେ ସେମାନେ କହିଲେ—ଆମ୍ଭମାନଙ୍କୁ ପୋଷିବା ତୁମର

କର୍ତ୍ତବ୍ୟ । କର୍ତ୍ତବ୍ୟ ସାଧନ ପାଇଁ ପାପ କଲେ ସେ ପାପ ତୁମର ଆତ୍ମାର ନୁହେଁ ।

ରତ୍ନାକର ଏ ଉତ୍ତର ପାଇ ଲଜ୍ଜିତ ବଦନରେ ଫେରି ଆସି ନାରଦଙ୍କୁ ବନ୍ଧନରୁ ମୁକ୍ତ କରି ତାଙ୍କ କୃତ ପାପର ପ୍ରାୟଶ୍ଚିତ୍ତ ପାଇଁ ତାଙ୍କ ପାଦତଳେ ପଡ଼ିଲେ । ନାରଦ ଦୟାପରବଶ ହୋଇ ରତ୍ନାକରଙ୍କୁ ରାମ ନାମ ଜପିବା ପାଇଁ କହିଲେ । ମାତ୍ର ନିରକ୍ଷର, ମୂର୍ଖ ଦସ୍ୟୁ ମୁଖରେ 'ରାମ ରାମ' ଉଚ୍ଚାରିତ ହେବା କଷ୍ଟ ହେଲା । ତେଣୁ ସେ ମରା ମରା ବୋଲି ଉଚ୍ଚାରଣ କଲେ । ତା'ପରେ ନାରଦ ସେଠାରୁ ଚାଲିଗଲେ । ରତ୍ନାକର ସେହି ସ୍ଥାନରେ ବସି ରହି ଏହି ନାମ ଉଚ୍ଚାରଣ କରୁ କରୁ ଷାଠିଏ ହଜାର ବର୍ଷ ବିତିଗଲା ଓ ତାଙ୍କ ଶରୀରଟି ବଲ୍ମୀକ ବା ଉଇହୁଙ୍କା ପାଲଟି ଗଲା । ଅନନ୍ତର ଏ ଯୋଗ ସିଦ୍ଧ ହୋଇ ବଲ୍ମୀକରୁ ଉଠି ବାଲ୍ମୀକି ନାମ ଧାରଣ କରି ଖ୍ୟାତି ଲାଭ କରିଥିଲେ । ଫଗାହିକ କୃତ ପରିମଳା କାବ୍ୟର ନିର୍ଣ୍ଣୟ ଯଥା—

ଯେସନ ତୋ କୃପାବଳୁ ରୌର ରତ୍ନାକର
ଜଗତେ ହୋଇଛୁ ଆଜି କାବ୍ୟ ରତ୍ନାକର ।

(ଭାଷାକୋଷ)

(ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ନିବାସୀ ୬ ଔପନ୍ୟାସିକ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରଣୀତ ବାଲ୍ମୀକି ନାମକ ଉପନ୍ୟାସ ଦେଖ) ।

**ରତ୍ନାବଳୀ**—ବତ୍ସରାଜଙ୍କ ପତ୍ନୀ; କବି ଶ୍ରୀହର୍ଷଙ୍କ ପ୍ରଣୀତ ନାଟିକା ବିଶେଷ ।

**ରଥ**—ପୂର୍ବେ ବୈଦିକଯୁଗରେ ଅର୍ଥାତ୍ ପ୍ରାୟ ଚାରି ହଜାର ବର୍ଷ ପୂର୍ବେ ଭାରତୀୟ ଆର୍ଯ୍ୟମାନେ ରଥର ବ୍ୟବହାର ଜାଣିଥିବାର ସ୍ପଷ୍ଟ ପ୍ରମାଣ ଋଗ୍‌ବେଦ ଓ ଯଜୁର୍ବେଦରୁ ମିଳେ । ରଥରେ ଅଶ୍ୱମାନେ ସାରଥି ଦ୍ୱାରା ନିୟନ୍ତ୍ରିତ ହେଉଥିଲେ । ରଥକୁ ଶିଳ୍ପୀ ଓ ସୂତ୍ରଧରମାନେ ପ୍ରସ୍ତୁତ କରୁଥିଲେ । ଯୁଦ୍ଧରଥ ଗୋଚର୍ମ ଆଦିରେ ଆଚ୍ଛାଦିତ ହେଉଥିଲା । ରଥରେ ରଥସ୍ୱାମୀଙ୍କ ପରିଚୟ-ସୂଚକ ପତାକା ଉଡ଼ୁଥିଲା । ରଥର ଅଭ୍ୟନ୍ତରରେ ଯୋଦ୍ଧାମାନଙ୍କ ଅସ୍ତ୍ରଶସ୍ତ୍ର ରକ୍ଷିତ ହେଉଥିଲା । ଅଶ୍ୱମାନେ ରଶି ଦ୍ୱାରା ରଥରେ ସଂଯୁକ୍ତ ଓ ଚାଳିତ ହେଉଥିଲେ । ପୁରାଣ ଆଦିରେ ଭିନ୍ନ ଭିନ୍ନ ରଥ ଓ ଉକ୍ତ ରଥମାନଙ୍କୁ ଟାଣିବା ପାଇଁ ଭିନ୍ନ ଭିନ୍ନ ଜନ୍ତୁ ନିୟୋଜିତ ହେବାର ଉଲ୍ଲେଖ ଅଛି । ଶ୍ରୀକୃଷ୍ଣ, ଅର୍ଜୁନ, ନଳ ଓ ରୁକ୍ମିଣୀ ଆଦି ସାରଥି ରୂପରେ ରଥ ଚଳାଇଥିବା ମଧ୍ୟ ଉଲ୍ଲେଖ ଅଛି ।

ଭିନ୍ନ ଭିନ୍ନ ଯୋଦ୍ଧାଙ୍କର ଭିନ୍ନ ଭିନ୍ନ ପତାକା ବା ଧ୍ୱଜଚହ୍ନିତ ରଥ ଥିଲା । ଯୋଦ୍ଧାମାନେ ରଥରେ ଚଢ଼ି ଧନୁର୍ବାଣ ପ୍ରୟୋଗପୂର୍ବକ ଯୁଦ୍ଧ କରୁଥିଲେ । ଏମାନଙ୍କୁ ରଥୀ ବୋଲାଯାଉଥିଲା ।

ରଥମାନ ଶୂନ୍ୟମାର୍ଗରେ ମଧ୍ୟ ଗମନାଗମନ କରୁଥିଲା । ରାବଣ ସୀତାଙ୍କୁ ପୁଷ୍ପକ ବିମାନରେ ବସାଇ ଶୂନ୍ୟମାର୍ଗରେ ଉଡିଯିବା କଥା ରାମାୟଣରେ ଉଲ୍ଲେଖ ଅଛି । ରାମଚନ୍ଦ୍ର ମଧ୍ୟ ଲଙ୍କାରୁ ସୀତାଙ୍କ ସହିତ ଉଡ଼ାଜାହାଜ ବା ତତ୍କାଳୀନ ଆକାଶଗାମୀ ଯାନରେ ଅଯୋଧ୍ୟାକୁ ଫେରିଥିଲେ । କାବ୍ୟମାନଙ୍କରେ ମଧ୍ୟ ରାଜାମାନେ ରଥରେ ଯିବା ଆସିବା କରିବା ଉଲ୍ଲେଖ ଅଛି; କିନ୍ତୁ ଐତିହାସିକ ଯୁଗରେ ରଥ ବ୍ୟବହାରର ପ୍ରମାଣ ଦେଖାଯାଏ ନାହିଁ ।

ପରବର୍ତ୍ତୀ କାଳରେ ବୁଦ୍ଧଦେବଙ୍କ ଦନ୍ତକୁ ରଥ ଦ୍ୱାରା ନିଆଯାଇ ଶୋଭାଯାତ୍ରା କରାଯିବାର ନିଦର୍ଶନ ମିଳେ । ବର୍ତ୍ତମାନ ପୁରୀର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନିଗୋଟି ରଥରେ ପୁଷ୍ୟାନକ୍ଷତ୍ରଯୁକ୍ତ ଆଷାଢ଼ ଶୁକ୍ଳ ୨ୟା ଦିନ ବିଜେ କରି ଗୁଣ୍ଡିଚା ମନ୍ଦିରକୁ ଯାଇ ସେଠାରେ ସପ୍ତାହକାଳ ଅବସ୍ଥାନ କରି ବଡ଼ ଦେଉଳକୁ ଆନୀତ ହୁଅନ୍ତି । ଗୁଣ୍ଡିଚା ମନ୍ଦିରକୁ ଯିବା ଦିନକୁ ରଥଯାତ୍ରା ଓ ଫେରିବା ଦିନକୁ ବାହୁଡ଼ାଯାତ୍ରା ବୋଲାଯାଏ । ଭୁବନେଶ୍ୱରରେ ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ଚନ୍ଦ୍ରଶେଖରଙ୍କୁ ଚୈତ୍ର ଶୁକ୍ଳ ଅଷ୍ଟମୀ (ଅଶୋକାଷ୍ଟମୀ) ଦିନ ଗୋଟିଏ ରଥରେ ଏକ ମାଇଲ ଦୂରବର୍ତ୍ତୀ ରାମେଶ୍ୱର ମନ୍ଦିରକୁ ନିଆଯାଇ ପାଞ୍ଚଦିନ ସେଠାରେ ଅବସ୍ଥାପିତ କରି ପୁଣି ବଡ଼ ଦେଉଳକୁ ବାହୁଡ଼ାଇ ଅଣାଯାଏ । ଭୁବନେଶ୍ୱରର ରଥ ଚାରି ଚକବିଶିଷ୍ଟ । ରଥର ନାମ ରୁକ୍ମଣୀ ବା ରୁକୁଣାରଥ । ଏ ରଥ ଯେଉଁଆଡ଼େ ମୁହଁ କରି ଯାଇଥାଏ ସେ ଆଡ଼କୁ ଆଉ ମୁହଁ କରି ଫେରେନାହିଁ । ବାହୁଡ଼ାଦିନ ରଥର ଆଗ ପଟର ସାଜ ସଜ୍ଜାକୁ ଆଣି ପଛ ପାଖରେ ଲଗାଇ ପଛ ପାଖକୁ ସମ୍ମୁଖ କରି ଠାକୁରଙ୍କୁ ବାହୁଡ଼ାଇ ଅଣାଯାଏ । ଏଥିପାଇଁ ଢଗ ଅଛି ଯେ 'ରୁକୁଣାରଥ ଆଉ ନ ଫେରେ ।'

ପୁରୀ ଜଗନ୍ନାଥଙ୍କ ରଥ ୧୬ ଚକବିଶିଷ୍ଟ । ଏହାର ନାମ ନନ୍ଦିଘୋଷ ରଥ । ଏହାର ପତାକା ଗରୁଡ଼ ଚହ୍ନାଙ୍କିତ ବା ଗରୁଡ଼ଧ୍ୱଜବିଶିଷ୍ଟ ।

ସୁଭଦ୍ରାଙ୍କ ରଥ ବାର ଚକ, ପଦ୍ମଧ୍ୱଜବିଶିଷ୍ଟ । ଏହାର ନାମ ଦେବୀରଥ ବା ଦେବଦଳନ ରଥ । ବଳଭଦ୍ରଙ୍କ ରଥ ବାର ଚକ ଏହାର ନାମ ତାଳଧ୍ୱଜ । ଏ ରଥରେ ଲାଙ୍ଗଳଧ୍ୱଜ ଦୃଷ୍ଟ ହୁଏ ।

ପୁରୀର ରଥଯାତ୍ରା ବୌଦ୍ଧଯାତ୍ରା ବୋଲି କେହି କେହି କହନ୍ତି । ମାତ୍ର ଉତ୍କଳ ଖଣ୍ଡର ବର୍ଣ୍ଣନା ଅନୁସାରେ ଏହା ଏକ କପୋଳକଳ୍ପିତ କଥା ବୋଲି ମନେ ହୁଏ । (ଭାଷାକୋଷ)

ଯେଉଁମାନେ ଜଗନ୍ନାଥଙ୍କ ରଥଯାତ୍ରାକୁ ଏକ ବୌଦ୍ଧ ସମାରୋହ ବୋଲି ଅଯଥା ଯୁକ୍ତି କରନ୍ତି ସେମାନେ ଯେଉଁ ପ୍ରମାଣମାନ ଦିଅନ୍ତି, ତାହାସବୁ ନିତାନ୍ତ ଅମୂଳକ । ଜଗନ୍ନାଥଙ୍କ ଏହି ରଥ ଓ ଯାତ୍ରା ସମ୍ବନ୍ଧେ ଉତ୍କଳଖଣ୍ଡ ନାମକ ପୁରାଣରେ ଯେ ପରମ ସୁନ୍ଦର ବର୍ଣ୍ଣନା ଓ ପ୍ରମାଣାବଳୀ ଦୃଷ୍ଟ ହୁଏ ତାହାର କିଞ୍ଚିତ୍ ଆଭାସ ଏହିଠାରେ ଉଲ୍ଲେଖ କରାଯାଉଛି । ପାଠକ ଉତ୍କଳଖଣ୍ଡର ପଞ୍ଚବିଂଶ ଅଧ୍ୟାୟ ଦେଖନ୍ତୁ ।

ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ଘଟିତଂ ସ୍ୟନ୍ଦନତ୍ରୟମ୍
ନାଧି ସମ୍ପାଦିତ ଦ୍ରବ୍ୟୈ (ରେବାହ୍ୱା) ବିଶ୍ୱକର୍ମଣା ।
ସ୍ୱସ୍ଥଂ ସୁଚକ୍ର ଘଟିତଂ ସୁବିସ୍ତୀର୍ଣ୍ଣଂ ସୁତୋରଣମ୍
ସୁଧ୍ୱଜଂ ସୁପତାକାଞ୍ଚ ନାନାଚିତ୍ର ମନୋହରମ୍ ।
ବିଚିତ୍ର ବିବ ମିଥୁନ ପୁତ୍ତଳୀ ବଲୟାନ୍ୱିତମ୍
ଶୁଭ ହାଟକକଳଶ୍ୟାଢ଼ଂ ସାକ୍ଷାଦ୍ରବି ରଥୋପମମ୍ ।
ମେଘ ଗମ୍ଭୀର ନିର୍ଘୋଷଂ ଦୃଢ଼ାକର୍ଷ ଗୁଣୈର୍ଯୁତଂ
ବାତରଂହୋ ହୟୈର୍ଯୁକ୍ତାଂ ଶତ ସଙ୍ଖ୍ୟୈଃ ସିତପ୍ରଭୈଃ ?
ଯଥାଶାସ୍ତ୍ରବିଧାନେନ ନାରଦେନ ପ୍ରତିଷ୍ଠିତଂ
ସୁଲଗ୍ନେ ସୁମୁହୂର୍ତ୍ତେ ଚ ସୁତିଥୌ କୃତୋତ୍ସବେ ।

ଏହି ରଥର ପ୍ରତିଷ୍ଠାକାରକ ଥିଲେ ସ୍ୱୟଂ ଦେବର୍ଷି ନାରଦ । ସେ ଯେଉଁ ବିଧାନାଦରେ ଏହା କରିଥିଲେ ତାହା ସମ୍ପୂର୍ଣ୍ଣରୂପେ ବର୍ଣ୍ଣିତ ହୋଇଛି ଉତ୍କଳଖଣ୍ଡରେ । ରଥଯାତ୍ରା ଓ ରଥ ନିର୍ମାଣର ଏପରି ପ୍ରତ୍ୟକ୍ଷ ପ୍ରମାଣଥିବା ବେଳେ ଏହାକୁ ବୌଦ୍ଧ ଯାତ୍ରା ବୋଲି କହିଦେବା କେବଳ ଏକ ଅମୂଳକ ଅଭିପ୍ରାୟ ଛଡ଼ା ଆଉ କିଛି ନୁହେଁ ।

**ରନ୍ତିଦେବ** – ଶକ୍ତିଦେବ, ରାଜା ସାଙ୍କୃତିଦେବଙ୍କ ପୁତ୍ର, ଚନ୍ଦ୍ରବଂଶୀୟ ନରପତି ବିଶେଷ । ଏ ଦଶପୁର ନାମକ ରାଜ୍ୟର ରାଜା ଥିଲେ । ଚର୍ମଣ୍ୱତୀ ନଦୀ ଏହାଙ୍କର କୀର୍ତ୍ତି ବୋଲି ପୁରାଣରେ ବର୍ଣ୍ଣିତ ହୋଇଛି । ଚର୍ମଣ୍ୱତୀ ନଦୀ ରନ୍ତିଦେବଙ୍କ କୀର୍ତ୍ତି ବୋଲି ମେଘଦୂତରେ ପୂର୍ବମେଘର ୪୬ ଶ୍ଳୋକରେ ବର୍ଣ୍ଣନା କରାଯାଇଛି । ମହାରାଜ ରନ୍ତିଦେବ ସହସ୍ର ସହସ୍ର ବୃଷ ହତ୍ୟାକରି

ଅତିଥି ବ୍ରାହ୍ମଣମାନଙ୍କୁ ଖୁଆଉଥିଲେ । ଏହି ହତ ବୃଷମାନଙ୍କ ଚର୍ମନିଃସୃତ ଶୋଣିତରୁ ଚର୍ମଣ୍ୱତୀ (ଆଧୁନିକ ଚମ୍ବଲ) ନଦୀ ଉତ୍ପନ୍ନ ହୋଇଥିଲା ।

(ଭାଷାକୋଷ)

**ରମଣକ**—ରମ୍ୟକ ବର୍ଷ । ପୌରାଣିକ ଜମ୍ବୁଦ୍ୱୀପାନ୍ତର୍ଗତ ବର୍ଷ ବା ଦେଶ ବିଶେଷ । (ଭାଷାକୋଷ)

**ରମ୍ଭା**—ସ୍ୱର୍ଗର ପ୍ରସିଦ୍ଧ ଅପ୍ସରା । ଅପୂର୍ବ ରୂପଲାବଣ୍ୟବତୀ ଓ ସଙ୍ଗୀତଶାସ୍ତ୍ରର ପାରଦର୍ଶିନୀ । ଏକଦା ରମ୍ଭା କାମାର୍ଥିନୀ ହୋଇ ନଳ କୁବେର (କୁବେର ପୁତ୍ର)ଙ୍କ ନିକଟକୁ ଯାଉଥିଲେ । ପଥ ମଧ୍ୟରେ ଲଙ୍କେଶ୍ୱର ରାବଣ ତାହାଙ୍କୁ ଆକ୍ରମଣ କରିଥିଲେ (ରାମାୟଣ—ଉତ୍ତରାକାଣ୍ଡ) । ପରେ ରମ୍ଭା ଏ ବିଷୟ ନଳ କୁବେରଙ୍କୁ ଜଣାଇବାରୁ ସେ ଅଭିଶାପ ଦେଲେ ଯେ ଅତଃପର ରାବଣ କୌଣସି ସ୍ତ୍ରୀକୁ ତାର ଇଚ୍ଛା ବିରୁଦ୍ଧରେ ରମଣ କଲେ ତତ୍କ୍ଷଣାତ୍ ପଞ୍ଚତ୍ୱପ୍ରାପ୍ତ ହେବ । ଏହି କାରଣରୁ ରାବଣ ସୀତାଙ୍କୁ ବଳପୂର୍ବକ ହରଣ କରି ନେଇଥିଲେ ମଧ୍ୟ ସୀତା ରାବଣ ହସ୍ତରୁ ଆପଣାର ସତୀତ୍ୱ ରକ୍ଷା ନିମିତ୍ତ ସମର୍ଥା ହୋଇଥିଲେ ।

ମହାଦେବଙ୍କଠାରୁ ବ୍ରହ୍ମା ସଙ୍ଗୀତ ବିଦ୍ୟା ପ୍ରାପ୍ତହୋଇ ତାହା ପ୍ରଥମେ ଯେଉଁ ପାଞ୍ଚ ଜଣଙ୍କୁ ଶିକ୍ଷା ଦେଇଥିଲେ ତହିଁ ମଧ୍ୟରୁ ରମ୍ଭା ଜଣେ ବୋଲି ପୁରାଣରେ କଥିତ । (ଭାଷାକୋଷ)

**ରାକ୍ଷସ**—ଦେବଯୋନି ବିଶେଷ, ଅସୁର । ରାମାୟଣ, ମହାଭାରତ ଓ ବେଦାଦିରେ ବର୍ଣ୍ଣିତ ରାକ୍ଷସମାନେ ନିଷ୍ଠୁର, କ୍ରୂରକର୍ମୀ, ଯଜ୍ଞନାଶକ, ମାଂସାଶୀ, କଞ୍ଚା-ମାଉଁସଖିଆ, ଅନାର୍ଯ୍ୟ ଓ ବିକଟରୂପବିଶିଷ୍ଟ ଥିଲେ ଏବଂ ଆର୍ଯ୍ୟମାନଙ୍କୁ ନାନା-ରୂପରେ ପ୍ରପୀଡ଼ିତ କରୁଥିଲେ । ଏମାନେ ରାତ୍ରିଯୋଗରେ ଆର୍ଯ୍ୟମାନଙ୍କୁ ଆକ୍ରମଣ କରି ସେମାନଙ୍କ ଧନ, ଗୋ, ସ୍ତ୍ରୀ ଆଦି ଲୁଣ୍ଠନ କରୁଥିଲେ ଓ ଯଜ୍ଞ ଭୂମିରେ ଅମେଧ୍ୟ ବସ୍ତୁମାନ ନିକ୍ଷେପ କରି, ଯଜ୍ଞ ଘୃତାଦି ପିଇ ଯଜ୍ଞ ନଷ୍ଟ କରିବା ଏମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଏମାନେ ଅତ୍ୟନ୍ତ ମାୟାବୀ ଥିଲେ ଓ ନାନାପ୍ରକାର ମାୟାରୂପ ଧାରଣ କରି ପାରୁଥିଲେ । ରାତ୍ରିରେ ଏମାନେ ଆକ୍ରମଣ କରୁଥିବାରୁ ଏମାନେ ନିଶାଚର; ଆର୍ଯ୍ୟାବର୍ତ୍ତର ଦକ୍ଷିଣ ପଶ୍ଚିମ ଦିଗ ବା ନୈର୍‌ଋତ କୋଣରେ ଏମାନଙ୍କର ବାସସ୍ଥାନ ଥିବାରୁ ନୈର୍‌ଋତ, ମାଂସ ଖାଉଥିବାରୁ ପଳାଶୀ, ରକ୍ତପାନ କରୁଥିବାରୁ ଅସ୍ରପ, ନାନାବର୍ଣ୍ଣରେ ଦେହକୁ

ରକ୍ଷିତ କରୁଥିବାରୁ କର୍ବୁର, ସନ୍ଧ୍ୟା ସମୟରେ ସକ୍ରିୟ ହୋଇ ଯୁଦ୍ଧଯାତ୍ରା କରୁଥିବାରୁ ସନ୍ଧ୍ୟାବଳ ଆଦି ନାମରେ ଆଖ୍ୟାତ ହେଉଥିଲେ ।

ପୁରାଣ ମତରେ ଏମାନେ ପ୍ରଜାପତି କଶ୍ୟପଙ୍କର ଏକ ପତ୍ନୀ ଦିତିଙ୍କଠାରୁ ଜାତ ହୋଇଥିବାରୁ ଏମାନଙ୍କୁ ଦୈତ୍ୟ କହନ୍ତି । ଦେବତା ଓ ଋଷିମାନଙ୍କଠାରୁ ଅନେକ ରାକ୍ଷସ ମଧ୍ୟ ଜାତ ହୋଇଥିଲେ । (ଯଥା—ରାବଣ, ମୁର, ହିରଣ୍ୟ) । ଆର୍ଯ୍ୟମାନେ ଏମାନଙ୍କ ସହିତ ବୈବାହିକ ସମ୍ପର୍କ ମଧ୍ୟ ରଖୁଥିଲେ । (ଭୀମ ହିଡ଼ିମ୍ବା ରାକ୍ଷସୀଙ୍କୁ ବିବାହ କରିଥିଲେ) । ଏମାନଙ୍କ ମଧ୍ୟରୁ ଅନେକେ କଠୋର ତପସ୍ୟା ବଳରେ ସିଦ୍ଧି ଲାଭ କରି ଦେବତାମାନଙ୍କୁ ପରାସ୍ତ କରୁଥିଲେ । ଦେବତାମାନଙ୍କ ସହିତ ଏମାନଙ୍କର ବରାବର ଯୁଦ୍ଧ ଲାଗି ରହୁଥିଲା । ଏଣୁ ବିଷ୍ଣୁ ନାନା ଅବତାର ଧରି ଅନେକ ଦୁର୍ଦ୍ଦାନ୍ତ ରାକ୍ଷସ ବଧ କରି ପୃଥିବୀ ପୃଷ୍ଠରେ ଶାନ୍ତି ସ୍ଥାପନ କରୁଥିଲେ । ଏମାନେ ମହାକାୟ ଓ ବିକଟରୂପୀଥିବା ବର୍ଣ୍ଣିତ ହୋଇଅଛି ।

ଆଧୁନିକ ପ୍ରତ୍ନତତ୍ତ୍ୱବିତ୍‌ମାନେ ଏହି ରାକ୍ଷସମାନଙ୍କୁ ଆଫ୍ରିକା ଦେଶୀୟ ନିଗ୍ରୋମାନଙ୍କର ପୂର୍ବପୁରୁଷ ବୋଲି କଳ୍ପନା କରିଅଛନ୍ତି । ଆର୍ଯ୍ୟମାନଙ୍କ ସଂସ୍କୃତ ଭାଷାରେ ରଥକାନ୍ତ ଖଣ୍ଡ, ସୂର୍ଯ୍ୟାରଣ୍ୟ ଦେଶ, ରାକ୍ଷସାବାସ, ସୂର୍ଯ୍ୟାରିକା ଦେଶ ନାମରେ ଯେଉଁ ଦେଶସବୁକୁ ନିର୍ଦ୍ଦେଶ କରିଥିଲେ ତାହା ଆଫ୍ରିକା ଦେଶ ବୋଲି ଆଧୁନିକ ପଣ୍ଡିତମାନେ ଅନୁମାନ କରୁଅଛନ୍ତି । ଗ୍ରୀକ୍ ଭାଷାରେ ଆଫ୍ରିକା ଦେଶର ଅର୍ଥ ଓ ସୂର୍ଯ୍ୟାରିକା (ସୂର୍ଯ୍ୟ କିରଣାକ୍ରାନ୍ତ)ର ଅର୍ଥ ଏକ । ଗ୍ରୀକ୍ ଇଥିଓପିୟ୍ ଶବ୍ଦର ଅର୍ଥ (ସୂର୍ଯ୍ୟ କିରଣରେ) ଦଗ୍ଧ ମୁଖ । ଲାଟିନ୍‌ରେ ନିଗ୍ରୋ ଶବ୍ଦର ଅର୍ଥ କୃଷ୍ଣବର୍ଣ୍ଣ । ଅଧୁନା ଅଧ ଆଫ୍ରିକା ଦେଶ ଭାରତବର୍ଷର ନୈର୍ଋତ କୋଣରେ ଅବସ୍ଥିତ । (ଭାଷାକୋଷ)

**ରାଜରାଜେଶ୍ୱରୀ**—ଦଶ ମହାବିଦ୍ୟାର ଅନ୍ତର୍ଗତ ଦେବୀ ବିଶେଷ । (ଚରିତାଭିଧାନ) ଏହାଙ୍କୁ ସାଧନା କଲେ ସାଧକ ସର୍ବ ସୁଖ ଓ ଆଧିପତ୍ୟ ଲାଭ କରେ । (ଭାଷାକୋଷ)

**ରାଜସୂୟ**—ସମ୍ରାଟମାନଙ୍କ ବିହିତ କର୍ତ୍ତବ୍ୟ ଯଜ୍ଞ ବିଶେଷ । ଏହି ଯଜ୍ଞରେ ଅଧୀନସ୍ଥ ଓ ସାମନ୍ତ ରାଜାମାନେ ଯୋଗ ଦେଇ ଭୃତ୍ୟୋଚିତ କାମ କରନ୍ତି । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ସ୍ୱୟଂ ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କ ପାଦ ପ୍ରକ୍ଷାଳନ ଭାର ନେଇଥିଲେ । (ଭାଷାକୋଷ)

**ରାଧା**—କୃଷ୍ଣ ପ୍ରେମରେ ସର୍ବୋତ୍କୃଷ୍ଟା ବୃଷଭାନୁ କନ୍ୟା । ରାଧା ମଥୁରା ନିକଟବର୍ତ୍ତୀ

ଗୋକୁଳର ଗୋପ ରାଜା (ଗନ୍ଧର୍ବରାଜ) ବୃଷଭାନୁଙ୍କ କନ୍ୟା ଓ ଆୟାନ (ଚନ୍ଦ୍ରସେଣା) ନାମକ ଗୋପାଳର ନାମମାତ୍ର ବିବାହିତା ସ୍ତ୍ରୀ । ଏହାଙ୍କ ମାତାଙ୍କ ନାମ କୀର୍ତ୍ତିଦା । ପୁନଶ୍ଚ କୌଣସି ପୁରାଣ (ଯଥା—ବ୍ରହ୍ମବୈବର୍ତ୍ତ ପୁରାଣ) ମତରେ ରାଧା ଅଯୋନିସମ୍ଭବା । ଦିନେ ବୃଷଭାନୁଙ୍କ ପତ୍ନୀ ପୋଖରୀକୁ ସ୍ନାନ କରିବାକୁ ଯାଇ ଦେଖିଲେ ଯେ, ଗୋଟିଏ ଅତି କ୍ଷୁଦ୍ର ସୁନ୍ଦରୀ କନ୍ୟା ଗୋଟିଏ କୁମୁଦ ବା କଇଁ ଫୁଲରେ ରହି ଜଳରେ ଭାସୁଅଛି । ସ୍ନେହରେ କୀର୍ତ୍ତିଦା ତାହାଙ୍କୁ ଆଣି ନିଜର କନ୍ୟାରୂପେ ପାଳନ କଲେ । ଏ ଶ୍ରୀକୃଷ୍ଣଙ୍କଠାରୁ ବଡ଼; କିନ୍ତୁ ଜନ୍ମକାଳରୁ ଏହାଙ୍କର ଚକ୍ଷୁ ମୁଦ୍ରିତ ଥିଲା । ଶିଶୁ ଶ୍ରୀକୃଷ୍ଣଙ୍କୁ ଏହାଙ୍କ ଘରକୁ ମାଇପେ କାଖେଇ କରି ନେଇଥିଲେ ଓ ଶ୍ରୀକୃଷ୍ଣଙ୍କ ଆଡ଼କୁ ରାଧା ମୁହଁ ଫେରାଇବାରୁ ତାଙ୍କ ଆଖି ଫିଟିଗଲା । କାହାର କାହାର ମତରେ କୃଷ୍ଣଙ୍କଠାରୁ ରାଧା ସାନ । ଜନ୍ମ ଦିନଠାରୁ ତିନି ଦିନ ପର୍ଯ୍ୟନ୍ତ ତାଙ୍କର ଚକ୍ଷୁ ମୁଦ୍ରିତ ହୋଇଥିଲା । ଯଶୋଦା କୃଷ୍ଣଙ୍କୁ କାଖେଇ କରି ରାଧାଙ୍କୁ ଦେଖିବାକୁ ଯାଇଥିଲେ । ରାଧା ପ୍ରଥମେ କୃଷ୍ଣଙ୍କୁ ଦେଖିଲେ ଓ ଯଶୋଦା ପ୍ରଥମେ ତାଙ୍କୁ କୃଷ୍ଣଙ୍କ ଉଚ୍ଛିଷ୍ଟ ସ୍ତନ ପାନ କରାଇଲେ । ସମ୍ପର୍କରେ ରାଧା କୃଷ୍ଣଙ୍କର ମାଇଁ ଥିଲେ, କିନ୍ତୁ ଦେବ ଅଂଶ ଧରି ଜନ୍ମ ହୋଇଥିଲେ । ଶ୍ରୀକୃଷ୍ଣଙ୍କ ବାଲ୍ୟକାଳ ଲୀଳା ଓ ରାସରେ ରାଧାହିଁ କେନ୍ଦ୍ର ଥିଲେ । ଶ୍ରୀକୃଷ୍ଣଙ୍କ ପ୍ରେମରେ ମୁଗ୍‌ଧ ହୋଇ ତାଙ୍କ ପଦରେ ରାଧା ପ୍ରେମ, ସ୍ନେହ, ଭକ୍ତି, ଜୀବନ, ଯୌବନ ସମସ୍ତ ସମର୍ପଣ କରିଥିଲେ ଓ କୃଷ୍ଣପ୍ରେମ ଲାଗି ଗୁରୁଜନ ଗଞ୍ଜଣା, ସମାଜର ଓ ପରିବାରର ନିନ୍ଦା ଆଦି ପ୍ରତି ଭ୍ରୂକ୍ଷେପ କରିନଥିଲେ । ଶ୍ରୀକୃଷ୍ଣ ଷୋଳସହସ୍ର ଗୋପିକାମାନଙ୍କୁ ନେଇ ଗୋପପୁରରେ ଯେଉଁ ରାସକ୍ରୀଡ଼ା କରିଥିଲେ ତହିଁର ନାୟିକା ରାଧା । ଶ୍ରୀକୃଷ୍ଣ ମଥୁରାକୁ ଯାଇ ସେଠାରୁ ଆପଣାର ପୈତୃକରାଜ୍ୟ ଦ୍ୱାରକାକୁ ଯିବାରୁ ଶ୍ରୀକୃଷ୍ଣ ବିରହ ରାଧିକାଙ୍କର ପ୍ରେମର ବିକାଶ ପରିପୂର୍ଣ୍ଣତା ଲାଭ କଲା । ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କର ପ୍ରେମ ବୈଷ୍ଣବମାନଙ୍କ ମତରେ ଅତୁଳନୀୟ ଓ ଶ୍ରୀକୃଷ୍ଣ ଦ୍ୱାରକାରେ ରୁକ୍ମିଣୀ ଆଦି ପାଟମହିଷୀମାନଙ୍କ ଦ୍ୱାରା ସେବିତ ଓ ବେଷ୍ଟିତ ହୋଇ ରାଜୈଶ୍ୱର୍ଯ୍ୟରେ ବୁଡ଼ିରହି ମଧ୍ୟ ରାଧାଙ୍କ ପ୍ରେମକୁ ସବୁବେଳେ ଝୁରି ହେଉଥିଲେ । ବିଜାତୀୟ ଓ ବିଜାତୀୟ ସଭ୍ୟତାଦୃପ୍ତ ଲୋକେ ରାଧାକୃଷ୍ଣଙ୍କ ପ୍ରେମରେ ଯେଉଁପରି ପାଶବ ଓ ଇନ୍ଦ୍ରିୟଲାଳସାରୂପକ ପରସ୍ତ୍ରୀ-ହରଣାତ୍ମକ ପାପର ପରିକଳ୍ପନା କରନ୍ତି, ସେହି ଲୀଳାକୁ ମହାନୁଭବ ଭକ୍ତିଶୀଳ ବୈଷ୍ଣବମାନେ ଭକ୍ତି ଓ ପବିତ୍ର ରସମିଶ୍ରିତ ଅନୁରାଗରୂପେ ବର୍ଣ୍ଣନା ଓ ଉପଲବ୍‌ଧି କରିଥାନ୍ତି । ଶ୍ରୀକୃଷ୍ଣଙ୍କୁ ଭଜିବାର ପନ୍ଥା ଓ ଆଦର୍ଶ ରାଧିକାଙ୍କର ପ୍ରେମ ବୋଲି ବୈଷ୍ଣବ ମହାପୁରୁଷମାନେ ସିଦ୍ଧାନ୍ତ କରିଅଛନ୍ତି । ଉଦାହରଣ

ସ୍ୱରୂପ ମଧ୍ୟ ଦେଖାଯାଏ ଯେ ଶ୍ରୀଚୈତନ୍ୟଦେବ (ଯେ ଇନ୍ଦ୍ରିୟବୃତ୍ତିକୁ ଘୃଣା କରୁଥିଲେ ଓ ଆପଣାର ସ୍ତ୍ରୀଙ୍କ ଛଡ଼ା ଅନ୍ୟ ସ୍ତ୍ରୀଙ୍କ ମୁଖ ଦର୍ଶନ କରୁ ନ ଥିଲେ) ରାଧାଙ୍କ ପ୍ରେମକୁ ଆଦର୍ଶ ଭକ୍ତରୂପେ କଳ୍ପନା କରି ରାଧାଙ୍କ ପରି ଅନନ୍ୟଚିତ୍ତ ହୋଇ କୃଷ୍ଣ ଭଜନ କରୁଥିଲେ । ରାଧାକୃଷ୍ଣଙ୍କ ପ୍ରେମର ପାଶବିକ ଅଂଶକୁ ବା ଆଦର୍ଶକୁ ଅନୁକରଣ କରି ଲୋକେ ଈଶ୍ୱର ଓ ପ୍ରେମର ପବିତ୍ରତାକୁ କଳୁଷିତ କରିଅଛନ୍ତି; କିନ୍ତୁ ପରକୀୟା ପ୍ରୀତି ପାଇଁ ରାଧାକୃଷ୍ଣ ପ୍ରେମର ଆଧ୍ୟାତ୍ମିକ (allegorical) ଓ ରୂପକ ତାତ୍ପର୍ଯ୍ୟହିଁ ବିଶୁଦ୍ଧ ଭକ୍ତର ଆଦର୍ଶ । ରାଧାକୃଷ୍ଣ ପ୍ରେମରେ ପାଶବିକତା ଓ ଇନ୍ଦ୍ରିୟଲାଳସା ଲେଶମାତ୍ର ନ ଥିଲା ଓ ଭକ୍ତ ପ୍ରେମର ସେହି ଅଂଶରେ ଆଧ୍ୟାତ୍ମିକ ଗୂଢ଼ ମର୍ମ ପ୍ରୟୋଗ କଲେ ଦେଖାଯିବ ଯେ, ରାଧାଙ୍କ ତନ୍ମୟତା ପରି ତନ୍ମୟତା ନ ହେଲେ ଈଶ୍ୱରଭଜନ ପରାକାଷ୍ଠା ଲାଭ କରି ପାରିବ ନାହିଁ । ରାଧାକୃଷ୍ଣଙ୍କ ପ୍ରେମ ଓ ରାସଲୀଳା ଚର୍ମ ଚକ୍ଷୁରେ ଓ ମାନବେନ୍ଦ୍ରିୟ ଦ୍ୱାରା କଦାପି ଉପଲବ୍ଧି ନୁହେଁ । ତାହା ଜ୍ଞାନଚକ୍ଷୁ ଓ ପରମ ଜ୍ଞାନରୂପ ଇନ୍ଦ୍ରିୟ ଦ୍ୱାରା ସାଧନା ଓ ଅନୁଭବ କରିବାର ଯୋଗ୍ୟ । ରାଧା ପ୍ରେମ ଇନ୍ଦ୍ରିୟାସକ୍ତ ନୁହେଁ । ଏହା ପରମ ପବିତ୍ର ଭଗବଦ୍ ଭକ୍ତିର ମୂର୍ତ୍ତି ଆଦର୍ଶ । ରାଧାଙ୍କ ସଙ୍ଗେ ରସିକତା, ଷୋଳସହସ୍ର ଗୋପୀଙ୍କ ସଙ୍ଗେ ରମଣ ଆଦି କେବଳ ରୂପକ ମାତ୍ର । ବାସ୍ତବ ଅର୍ଥ କରିବାକୁ ବସିଲେ ଦେଖାଯିବ ଯେ ଜଣେ ୧୦।୧୨ ବର୍ଷର ବାଳକ ଷୋଳସହସ୍ର ଗୋପୀଙ୍କ ସଙ୍ଗେ ରତିକ୍ରୀଡା କରିବା ଓ ଷୋଳସହସ୍ର କୃଷ୍ଣରୂପ ଧାରଣ କରିବା ବାସ୍ତବ ଜଗତରେ ଅସମ୍ଭବ; କିନ୍ତୁ ଆଧ୍ୟାତ୍ମିକ ଜଗତରେ ଏହା ସମ୍ଭବପର ଓ ସାଧ୍ୟ । ଶ୍ରୀକୃଷ୍ଣ ପୃଥିବୀରେ ଅବତାରରୂପେ ଜନ୍ମଗ୍ରହଣ କରି ପୃଥିବୀକୁ ଏହି ରତିବନ୍ଧ ଶିକ୍ଷା ଦେବାକୁ ଆସିନଥିଲେ । ସେ ଅବତାର ଗ୍ରହଣ ଦ୍ୱାରା ପୃଥିବୀରେ ଭକ୍ତିର ମାର୍ଗ ଦେଖାଇ ଯାଇଅଛନ୍ତି ଓ ତାଙ୍କର ଗୋପଲୀଳା ହିଁ ମର୍ତ୍ତ୍ୟରେ ସ୍ୱର୍ଗ ଲୀଳାର ଅଭିନୟ ଓ ରାଧା ପ୍ରେମ ହିଁ ଈଶ୍ୱର ଲାଭର ପ୍ରକୃଷ୍ଟ ପନ୍ଥା । କୃଷ୍ଣ ପ୍ରେମ ପାଇଁ ରାଧାଙ୍କ ପରି ସର୍ବସ୍ୱ ତ୍ୟାଗୀ ହେଲେ ଯାଇଁ ଭକ୍ତ ଈଶ୍ୱର ସାନ୍ନିଧ୍ୟ ଲାଭ କରିବ । ଏହି ମତ ସଂଗ୍ରାହକର କପୋଳକଳ୍ପିତ ନୁହେଁ । ଏହାହିଁ ରାଧାକୃଷ୍ଣ ଚରିତର ଚିନ୍ତାଶୀଳ ଭକ୍ତ ସମାଲୋଚକମାନଙ୍କ ମତରେ ଅସମ୍ପୂର୍ଣ୍ଣ ସାରାଂଶ ମାତ୍ର । ରାଧାକୃଷ୍ଣ ଲୀଳାକୁ କେହି କେହି ଆଧୁନିକ କପୋଳ କଳ୍ପନା ବୋଲି କହନ୍ତି; କିନ୍ତୁ ରାଧାଙ୍କ ନାମ ଓ ଶ୍ରୀକୃଷ୍ଣଙ୍କର ଗୋଲୋକରେ ରାଧାଙ୍କ ସହିତ ଲୀଳା ପୁରାତନ ବୋଲି ବାୟୁ ପୁରାଣର ୧୦୪ ଅଧ୍ୟାୟର ବର୍ଣ୍ଣିତ ହୋଇଅଛି । ପୁରାଣରେ ରାଧା ଶବ୍ଦର ବ୍ୟୁତ୍ପତ୍ତି ନିମ୍ନଲିଖିତରୂପେ ଲେଖା ହୋଇଅଛି । ର୍ + ଆ + ଧ୍ + ଆ ।

ର୍ = କୋଟି ଜନ୍ମାର୍ଜିତ ପାପ ଓ ଶୁଭାଶୁଭ କର୍ମଭୋଗ ।

ଆ = ଗର୍ଭବାସ, ମୃତ୍ୟୁ ଓ ରୋଗ,

ଧ୍ = ଆୟୁଃକ୍ଷୟ

ଆ = ସଂସାର ବନ୍ଧନ

ଯାହାଙ୍କ ସ୍ମରଣ ଓ ନାମକୀର୍ତ୍ତନ ଓ ସେବା କଲେ ମନୁଷ୍ୟ ଉପଯୁକ୍ତ ପାପାଦିରୁ ମୁକ୍ତ ହୁଏ ସେ ରାଧା; ଶ୍ରୀମଦ୍‌ଭାଗବତରେ ରାଧାଙ୍କର ଉଲ୍ଲେଖ ନାହିଁ । ବ୍ରହ୍ମବୈବର୍ତ୍ତ ଓ ଦେବୀଭାଗବତରେ ରାଧାଙ୍କ ବର୍ଣ୍ଣନା ମିଳେ । ପୁରାଣମାନଙ୍କରେ ରାଧାଙ୍କ ଜନ୍ମ ସମ୍ବନ୍ଧେ ଭିନ୍ନ ଭିନ୍ନ ବିବରଣ ଦେଖାଯାଏ । କେଉଁ କେଉଁ ପୁରାଣରେ ମଧ୍ୟ ଲେଖାଅଛି ଯେ ଶ୍ରୀକୃଷ୍ଣଙ୍କ ବାମ ଅଙ୍ଗରୁ ସେ ଉତ୍ପନ୍ନ ହୋଇଥିଲେ । ପୁଣି କାହିଁ କାହିଁ ଗୋଲୋକଧାମର ରାସମଣ୍ଡଳରେ ଏହାଙ୍କ ଜନ୍ମ ହୋଇଥିବା ଲେଖାଅଛି । ଜନ୍ମ ହେବା ସଙ୍ଗେ ସଙ୍ଗେ ଏ ଯୁବତୀ ହୋଇଥିବା କଥା ମଧ୍ୟ ଲେଖାଅଛି । ଗର୍ଗସଂହିତା ଆଦି କେତେକ ଆଧୁନିକ ଗ୍ରନ୍ଥରେ ଶ୍ରୀକୃଷ୍ଣ ରାଧିକାଙ୍କୁ ବିବାହ କରିଥିବା କଥା ଲେଖାଅଛି ।

(ହିନ୍ଦୀ ଶବ୍ଦସାଗର)

ଚରିତାଭିଧାନ ସଂଗ୍ରାହକ ଉପେନ୍ଦ୍ରଚନ୍ଦ୍ର ମୁଖୋପାଧ୍ୟାୟ ବ୍ରହ୍ମବୈବର୍ତ୍ତ-ପୁରାଣ ପ୍ରକୃତିଖଣ୍ଡରୁ ଶ୍ରୀରାଧାଙ୍କ ବିଷୟ ନେଇ ଯେଉଁ ସୁନ୍ଦର ବର୍ଣ୍ଣନା ଉଦ୍ଧାର କରିଛନ୍ତି ତାହା ନିମ୍ନରେ ଦିଆଗଲା ।

ବୈଷ୍ଣବଗଣଙ୍କ ଶ୍ରେଷ୍ଠ ଗ୍ରନ୍ଥ ଶ୍ରୀମଦ୍‌ଭାଗବତରେ ଶ୍ରୀକୃଷ୍ଣପ୍ରଣୟିନୀ ପ୍ରେମମୟୀ ରାଧିକାଙ୍କ ବିଷୟରେ କୌଣସି କଥା ଦୃଷ୍ଟ ହୁଏନାହିଁ । ଏହି ଗ୍ରନ୍ଥରେ କୃଷ୍ଣପ୍ରେମ ପ୍ରେମିକା ଏକ ସଖୀର ନାମ ମାତ୍ର ଉଲ୍ଲେଖ ଅଛି । ବିବିଧପୁରାଣରେ ମାତ୍ର ଶ୍ରୀରାଧାଙ୍କ ନାମ ଦୃଷ୍ଟ ହୁଏ । ବ୍ରହ୍ମବୈବର୍ତ୍ତ ମତରେ ଶ୍ରୀରାଧା ଗୋଲୋକଧାମରେ ଭଗବାନ ଶ୍ରୀକୃଷ୍ଣଙ୍କ ବାମପାର୍ଶ୍ୱରୁ ଉଦ୍ଭୂତ ହୋଇଥିଲେ । ଏ ଶ୍ରୀକୃଷ୍ଣଙ୍କ ପ୍ରାଣର ଅଧିଷ୍ଠାତ୍ରୀ ଦେବତା ଏବଂ ନିଜ ଶରୀରରୁ ନିର୍ଗତ ହୋଇଥିବାରୁ ପ୍ରାଣ ଅପେକ୍ଷା ଅଧିକ ପ୍ରିୟତମା । ଶ୍ରୀରାଧା ଆବିର୍ଭୂତ ହେବାମାତ୍ରେ ଷୋଡ଼ଶ ବର୍ଷ ବୟସ୍କା ଓ ନବଯୌବନାସମ୍ପନ୍ନା ହୋଇଥିଲେ । ଶ୍ରୀରାଧା ଆବିର୍ଭୂତ ହୋଇ ସମ୍ଭାଷଣପୂର୍ବକ ସହାସ୍ୟବଦନରେ ରତ୍ନ ସିଂହାସନରେ ଶ୍ରୀକୃଷ୍ଣଙ୍କ ବାମପାର୍ଶ୍ୱରେ ଆସୀନା ହେଲେ । ଏହି ସମୟରେ

ଶ୍ରୀରାଧାଙ୍କ ଲୋମକୂପରୁ ଲକ୍ଷକୋଟି ଗୋପାଙ୍ଗନା ଓ ତଦନୁରୂପ ଗୋପଗଣ ଏବଂ ସ୍ଥିର ଯୌବନସମ୍ପନ୍ନ ନାନାବର୍ଣ୍ଣ ଚିତ୍ରିତ ଗୋସମୂହ ଆବିର୍ଭୂତ ହେଲେ । ଏହି ଗୋଲୋକୋଦ୍ଭବା ଶ୍ରୀରାଧାହିଁ ସୁଦାମଙ୍କ ଶାପରେ ବୃନ୍ଦାବନରେ ଅବତୀର୍ଣ୍ଣ ହୋଇଥିଲେ । ଏକଦା ଇଚ୍ଛାମୟ ଶ୍ରୀକୃଷ୍ଣ ରମ୍ୟବନରେ ରମଣ ଅଭିଳାଷ କଲେ । ଇଚ୍ଛା ହେବା ମାତ୍ରେ ତାଙ୍କ ଦେହରୁ ଶ୍ରୀରାଧା ଉତ୍ପନ୍ନ ହେଲେ । ଏହି ସମୟରେ ଶ୍ରୀକୃଷ୍ଣ ଦୁଇ ଭାଗରେ ବିଭକ୍ତ ହୋଇ ଦକ୍ଷିଣାଙ୍ଗ ଶ୍ରୀକୃଷ୍ଣ ଓ ବାମଭାଗ ଶ୍ରୀରାଧାଙ୍କ ରୂପ ଧାରଣ କଲେ । ହରିପ୍ରିୟା ନିଜ ପତିଙ୍କୁ କାମାତୁର ଦେଖି ତାଙ୍କ ଆଡ଼କୁ ଧାବମାନ ହେଲେ ବୋଲି ତାଙ୍କୁ ରାଧା ନାମରେ ଅଭିହିତ କରାଗଲା । ରା—ଶବ୍ଦର ଅର୍ଥ ଲାଭ କରିବା—ଅର୍ଥାତ୍ ମୁକ୍ତିପଦ ଲଭିବା । ଧା—ଶବ୍ଦର ଅର୍ଥ ଧାବମାନ ହେବା ଅର୍ଥାତ୍ ଶ୍ରୀହରିଙ୍କ ପଦ ଲାଭ ପାଇଁ ଧାଇଁବା । ଭକ୍ତମାନେ 'ରା' ଶବ୍ଦ ଉଚ୍ଚାରଣ ମାତ୍ରେ ମୁକ୍ତିପଦ ପ୍ରାପ୍ତ ହୁଅନ୍ତି ଓ 'ଧା' ଶବ୍ଦ ଉଚ୍ଚାରଣ କରି ହରିଙ୍କ ପଦ ଆଡ଼କୁ ଧାବମାନ ହୁଅନ୍ତି । ତ୍ରିଲୋକ ବିଖ୍ୟାତ ମହାଲକ୍ଷ୍ମୀ ଶ୍ରୀରାଧାଙ୍କ ବାମଭାଗରୁ ଉତ୍ପନ୍ନ ଏବଂ ଏହି ମହାଲକ୍ଷ୍ମୀ ଚତୁର୍ଭୁଜ ନାରାୟଣଙ୍କ ପ୍ରିୟତମା । ଏହି ମହାଲକ୍ଷ୍ମୀ ବୈକୁଣ୍ଠରେ ବାସ କରନ୍ତି । ମହାଲକ୍ଷ୍ମୀଙ୍କ ଅଂଶରୂପିଣୀ ରାଜଲକ୍ଷ୍ମୀ ରାଜାମାନଙ୍କର ଐଶ୍ୱର୍ଯ୍ୟ ବୃଦ୍ଧି କରିଥାନ୍ତି । ରାଜଲକ୍ଷ୍ମୀଙ୍କ ଅଂଶରୂପିଣୀ ମର୍ତ୍ତ୍ୟଲକ୍ଷ୍ମୀ ମର୍ତ୍ତ୍ୟଲୋକରେ ପ୍ରତ୍ୟେକ ମାନବର ଗୃହରେ ବାସ କରିଥାନ୍ତି । ସ୍ୱୟଂ ଶ୍ରୀରାଧିକା ଶ୍ରୀକୃଷ୍ଣଙ୍କ ବକ୍ଷ ସ୍ଥଳରେ ନିରନ୍ତର ବାସ କରିଥାନ୍ତି । ଏକଦା ରାଧାନାଥ ଶ୍ରୀକୃଷ୍ଣ ଗୋଲୋକରେ ବୃନ୍ଦାବନସ୍ଥିତ ଶତଶୃଙ୍ଗ ପର୍ବତର ଏକ ଅଂଶରେ ବିରଜା ନାମ୍ନୀ ଗୋପୀ ସହିତ ବିହାର କରୁଥିଲେ । ଶ୍ରୀରାଧାଙ୍କର ଚାରି ଜଣ ଦୂତୀ ଏହି ସମ୍ବାଦ ଶ୍ରୀରାଧାଙ୍କୁ ଜଣାଇଦେଲେ । ଦୂତୀ ମୁଖରୁ ଏ ସମ୍ବାଦ ଜାଣି ସେ କ୍ରୁଦ୍ଧା ହେଲେ ଏବଂ କଣ୍ଠହାର ବର୍ଜନ କରି ସଖୀମାନଙ୍କ ସହିତ ଗମନ କଲେ । ଶ୍ରୀକୃଷ୍ଣଙ୍କ ସଖା ସୁଦାମ ଶ୍ରୀରାଧାଙ୍କ ଆଗମନବାର୍ତ୍ତା ଶ୍ରୀକୃଷ୍ଣଙ୍କୁ ଜଣାଇ ଦେଇ ଅନ୍ୟାନ୍ୟ ଗୋପମାନଙ୍କ ସହିତ ପଳାୟନ କଲେ । ସେତେବେଳେ ଶ୍ରୀକୃଷ୍ଣ ରାଧାଙ୍କ ଭୟରେ ବିରଜାଙ୍କୁ ପରିତ୍ୟାଗ କରି ଅନ୍ତର୍ହିତ ହୋଇଗଲେ । ବିରଜା କ୍ରୋଧରେ ପ୍ରାଣତ୍ୟାଗ କରି ସେହିଠାରେ ନଦୀରୂପେ ବହିଗଲେ । ଏଣେ ରାଧା ସେଠାରେ କାହାକୁ ହେଲେ ନ ଦେଖି ନିଜ ସ୍ଥାନକୁ ଫେରି ଆସିଲେ । ପରେ ସେନେ ଶ୍ରୀକୃଷ୍ଣଙ୍କ ଦେଖା ପାଇ ତାଙ୍କୁ ସମଧିକ ଭର୍ତ୍ସନା କଲେ । ସୁଦାମ କିନ୍ତୁ ଶ୍ରୀକୃଷ୍ଣଙ୍କ ନିନ୍ଦା ସହି ନପାରି ରାଧାଙ୍କୁ ତିରସ୍କାର କରିବାକୁ ଲାଗିଲେ । ଏଥିରେ ରାଧା କ୍ରୁଦ୍ଧା ହୋଇ ସୁଦାମଙ୍କୁ ଅଭିଶାପ ଦେଲେ ତୁମେ କ୍ରୂର ଅସୁରଯୋନି ଲାଭ କର । ସୁଦାମ ମଧ୍ୟ ରାଗିଯାଇ ଶ୍ରୀରାଧାଙ୍କୁ ଅଭିଶାପ

ଦେଲେ—ତୁମେ ଗୋଲୋକ ପରିବର୍ଜନ କରି ଭୂତଳରେ ଅବତୀର୍ଣ୍ଣ ହୁଅ ଏବଂ ଗୋପ ଗୃହରେ ଗୋପ କନ୍ୟାରୂପେ ଜନ୍ମଗ୍ରହଣ କରି ଶହେ ବର୍ଷ ଯାଏଁ ଶ୍ରୀକୃଷ୍ଣଙ୍କ ବିରହ ଦୁଃଖ ଭୋଗ କର । ଭଗବାନ ଭୂଭାର ହରଣ ନିମିତ୍ତ ପୃଥିବୀରେ ଅବତୀର୍ଣ୍ଣ ହୋଇ ତୁମ ସହିତ ମିଳିତ ହୁଅନ୍ତୁ । ଶ୍ରୀରାଧାଙ୍କ ଅଭିଶାପରେ ସୁଦାମ ଅସୁରଯୋନି ପ୍ରାପ୍ତ ହୋଇ ଶଙ୍ଖଚୂଡ଼ ନାମରେ ଖ୍ୟାତ ହେଲେ ଏବଂ ସୁଦାମଙ୍କ ଶାପରେ ଶ୍ରୀରାଧା ବୈଶ୍ୟବର ବୃଷଭାନୁଙ୍କ କନ୍ୟାରୂପେ ଗୋକୁଳରେ ଅବତୀର୍ଣ୍ଣ ହେଲେ । ଶ୍ରୀକୃଷ୍ଣ ଦ୍ୱିଭୁଜ ଓ ଚତୁର୍ଭୁଜ ଏହି ଦୁଇଟି ରୂପରେ ବିଭକ୍ତ । ଦ୍ୱିଭୁଜ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ସ୍ୱାମୀ ଏବଂ ଚତୁର୍ଭୁଜ ଶ୍ରୀକୃଷ୍ଣଙ୍କର ମହାଲକ୍ଷ୍ମୀ, ସରସ୍ୱତୀ, ଗଙ୍ଗା ଓ ତୁଳସୀ ପ୍ରିୟତମା ।

(୨) କୁନ୍ତୀ କୁମାରୀ ଥିବା ଅବସ୍ଥାରେ ସୂର୍ଯ୍ୟଙ୍କ ଔରସରେ ତାଙ୍କ କର୍ଣ୍ଣ ବାଟେ କୁମାର ଜାତ ହେବାରୁ କୁନ୍ତୀ ଲୋକଲଜ୍ଜା ଭୟରେ ଗୋଟିଏ ପେଡ଼ି ମଧ୍ୟରେ ଶିଶୁଟିକୁ ପୁରାଇ ନଦୀରେ ଭସାଇ ଦେଲେ । ଶିଶୁଟି ଭାସି ଯାଉଥିବା ବେଳେ ସୂତଧର ଜାତୀୟ ସାରଥି ବା ସୂତ ଅଧିରଥ ତାକୁ ଦେଖି ସେ ପେଡ଼ିଟି ନେଇ ଆପଣାର ପତ୍ନୀ ରାଧାଙ୍କୁ ଦେଲେ । ରାଧା ସେହି ପିଲାଟିକୁ ପାଳିଲେ । ଏଥିପାଇଁ କର୍ଣ୍ଣଙ୍କୁ ସୂତପୁତ୍ର ଓ ରାଧେୟ ବୋଲି କହନ୍ତି । ପ୍ରକୃତରେ ରାଧା କର୍ଣ୍ଣଙ୍କର ପାଳିତା ମାତା ।

(ଭାଷାକୋଷ)

**ରାବଣ**—ରାମାୟଣବର୍ଣ୍ଣିତ ସୀତା ହରଣକାରୀ ଲଙ୍କେଶ୍ୱର । ରାକ୍ଷସରାଜ ଦଶାନନ । ପୁଲସ୍ତ୍ୟ ପୁତ୍ର ବିଶ୍ରବା ମୁନିଙ୍କ ଔରସରେ ସୁମାଲୀ ନାମକ ରାକ୍ଷସର କନ୍ୟା ନୈକଷୀ ବା ନିକଷା ରାକ୍ଷସୀ ଗର୍ଭରୁ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ନାମକ ୩ ପୁତ୍ର ଓ ସୂର୍ପଣଖା ନାମ୍ନୀ କନ୍ୟା ଜନ୍ମିଥିଲେ । ରାବଣର ୧୦ ମୁଣ୍ଡ ଓ ୨୦ ହାତ ଥିଲା । ସପତ୍ନୀ ପୁତ୍ର କୁବେରଙ୍କର ଐଶ୍ୱର୍ଯ୍ୟ ଦେଖି ଈର୍ଷ୍ୟାନ୍ୱିତ ହୋଇ ନିକଷା ନିଜ ପୁତ୍ରଙ୍କୁ ତପସ୍ୟା ସାଧନ କରିବାକୁ ପଠାଇଲା । ରାବଣ ତପସ୍ୟା କରି ନିଜର ୧୦ ମୁଣ୍ଡକୁ କାଟି ଅଗ୍ନିରେ ପକାଇ ବ୍ରହ୍ମାଙ୍କୁ ତୁଷ୍ଟ କରାଇ ଅମରବର ମାଗିବାରୁ ବ୍ରହ୍ମା ପ୍ରଥମେ ଅସ୍ୱୀକାର କଲେ ଓ ପରେ ରାବଣ ନର ବାନରଙ୍କ ନାମ ଉଚ୍ଚାରଣ ନ କରି ଦେବଦାନବାଦି ଅନ୍ୟ ସମସ୍ତଙ୍କ ଅବଧ୍ୟ ହେବ ବୋଲି ବର ମାଗିବାରୁ ବ୍ରହ୍ମା ତଥାସ୍ତୁ ବୋଲି କହିଲେ । ତପସ୍ୟା ଶେଷ କରି ରାବଣ ଲଙ୍କାକୁ ଯାଇ କୁବେରଙ୍କୁ ବିତାଡ଼ିତ କରି ସେଠାରେ ରାକ୍ଷସ ରାଜ୍ୟ ପ୍ରତିଷ୍ଠିତ କଲା । ମୟ ଦାନବର କନ୍ୟା ମନ୍ଦୋଦରୀଙ୍କୁ ରାବଣ ବିବାହ କଲା ଓ ତାହା ଗର୍ଭରୁ ମେଘନାଦ, ଅକ୍ଷୟକୁମାର

ଆଦି ବହୁ ପୁତ୍ର ଜାତ ହେଲେ । ରାବଣ ଦିଗ୍‌ବିଜୟରେ ବାହାରି ଭୂତଳସ୍ଥ
ସମସ୍ତ ରାଜାଙ୍କୁ ଜୟ କଲା । କେବଳ ବାନରରାଜ ବାଳି, ନରରାଜ
କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଓ ମାନ୍ଧାତାଙ୍କ ଦ୍ୱାରା ପରାଜିତ ହେଲା । ପରେ ଦେବତା-
ମାନଙ୍କ ସଙ୍ଗେ ଯୁଦ୍ଧ କରି ରାବଣପୁତ୍ର ମେଘନାଦ କପଟ ଯୁଦ୍ଧରେ
ଦେବତାଙ୍କୁ ପରାସ୍ତ କରି ଇନ୍ଦ୍ରଙ୍କୁ ବନ୍ଦୀକରି ଆଣିଲା । ଏଥିପାଇଁ ମେଘନାଦର
ଅନ୍ୟ ନାମ ଇନ୍ଦ୍ରଜିତ । ପରେ ବ୍ରହ୍ମା ଆସି ମେଘନାଦକୁ ବର ଦେଇ ଇନ୍ଦ୍ରଙ୍କୁ
ବନ୍ଦୀରୁ ମୁକ୍ତ କରି ନେଲେ ।

ରାବଣ ଅତି ଅତ୍ୟାଚାରୀ ଓ ଅଧର୍ମ ପରାୟଣ ହୋଇ ଦେବକନ୍ୟା,
ଦାନବକନ୍ୟା ଓ ଋଷିକନ୍ୟାମାନଙ୍କୁ ହରଣ କରିବାରେ ଲାଗିଲା । ସେ
ତପସ୍ୱିନୀ ବେଦବତୀଙ୍କ ପ୍ରତି ବଳ ପ୍ରୟୋଗ କରିବାକୁ ଉଦ୍ୟତ ହେବାରୁ
ବେଦବତୀ ତାଙ୍କୁ ଅଭିଶାପ ଦେଇ ଅଗ୍ନିରେ ପ୍ରବେଶ କଲେ । ସେହି ବେଦବତୀ
ପରଜନ୍ମରେ ସୀତା ରୂପରେ ଜନ୍ମି ରାବଣର ମୃତ୍ୟୁର କାରଣ ହେଲେ ।
କେତେକାଳ ପରେ ରାବଣ ସ୍ୱର୍ଗ ଅପ୍‌ସରା ରମ୍ଭାଙ୍କୁ ବଳପୂର୍ବକ ଧର୍ଷଣ
କରିବାରୁ ରମ୍ଭାଙ୍କ ନାୟକ ନଳକୁବର ରାବଣକୁ ଅଭିଶାପ ଦେଲେ ଯେ
ଅତଃପର ରାବଣ କୌଣସି ରମଣୀକୁ ବଳ ପ୍ରୟୋଗ କଲେ ତାର ତତ୍‌କ୍ଷଣାତ୍
ମୃତ୍ୟୁ ହେବ । ରାବଣ ଲଙ୍କାକୁ ସ୍ୱର୍ଣ୍ଣମୟୀପୁରୀ କରିଥିଲା ଓ ଦେବ, ଗନ୍ଧର୍ବ ଓ
କିନ୍ନରମାନେ ରାବଣର ସେବାରେ ନିଯୁକ୍ତ ଥିଲେ । କିଛିଦିନ ପରେ ରାବଣ
ଭ୍ରମବଶତଃ ଆପଣାର ଏକମାତ୍ର ଭଗିନୀ ଶୂର୍ପଣଖାର ସ୍ୱାମୀ ବିଦ୍ୟୁତ୍‌ଜିହ୍ୱକୁ ବଧ
କଲା ଓ ବିଧବା ଭଗ୍ନୀକୁ ଦଣ୍ଡକାରଣ୍ୟରେ ଯଥେଚ୍ଛା ବିଚରଣ କରିବାକୁ
ଆଦେଶ ଦେଲା । ସେହି ସମୟରେ ରାମ, ଲକ୍ଷ୍ମଣ ଓ ସୀତା ଦଣ୍ଡକାରଣ୍ୟରେ
ବନବାସ କରୁଥିଲେ ଓ ଶୂର୍ପଣଖା ରାମଚନ୍ଦ୍ରଙ୍କର ପ୍ରଣୟାକାଂକ୍ଷିଣୀ ହୋଇ
ସୀତାଙ୍କୁ ଗ୍ରାସ କରିବାକୁ ଉଦ୍ୟତ ହେବାରୁ ଲକ୍ଷ୍ମଣ ତାର କାନ ନାକ କାଟି
ଦେଲେ । ଶୂର୍ପଣଖା ସେହି ରାଗରେ ଆସି ରାବଣକୁ ସୀତାଙ୍କର ରୂପଲାବଣ୍ୟ
ବର୍ଣ୍ଣନାକରି ମୁଗ୍ଧ କରାଇ ତାଙ୍କୁ ହରଣ କରି ଆଣିବାକୁ ଉତ୍ତେଜିତ କଲା
ଓ ରାବଣ ଦଣ୍ଡକାରଣ୍ୟସ୍ଥ ଜନସ୍ଥାନକୁ ଆସି ଛଦ୍ମବେଶ ଧାରଣ କରି ମାରୀଚ
ରାକ୍ଷସକୁ ମାୟା ମୃଗ କରାଇ ରାମ ଓ ଲକ୍ଷ୍ମଣ, ସୀତାଙ୍କଠାରୁ ଅନ୍ତର ହେବା
ଅବସରରେ ସୀତାଙ୍କୁ ଅପହରଣ କରି ରଥରେ ବସାଇ ଆକାଶମାର୍ଗେ
ଲଙ୍କାକୁ ନେଇଗଲା । ବାଟରେ ଗୃଧ୍ରରାଜ ଜଟାୟୁ ତାକୁ ଅଟକାଇବାକୁ
ବସିଲେ, କିନ୍ତୁ ରାବଣ ତାକୁ ଶରାଘାତରେ ମୃତପ୍ରାୟ କରି ସୀତାଙ୍କୁ ଘେନି
ଲଙ୍କାକୁ ଚାଲିଗଲା । କିନ୍ତୁ ନଳକୁବରଙ୍କ ଶାପ ଭୟରେ ସୀତାଙ୍କୁ କିଛି ହେଲେ

ବଳ ପ୍ରତ୍ୟାଗ କରିବାକୁ ସାହାସ କଲେନାହିଁ । ରାମଚନ୍ଦ୍ର ପରେ କିଷ୍କିନ୍ଧ୍ୟାର ମର୍କଟରାଜା ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା କରି କରି ସୈନ୍ୟବଳ ସହିତ ଲଙ୍କା ଆକ୍ରମଣ କଲେ । ସେ ସମୟରେ ସୀତାଙ୍କୁ ପ୍ରତ୍ୟାର୍ପଣ କରି ରାମଙ୍କର ଶରଣାପନ୍ନ ହେବାପାଇଁ ରାବଣର ଭାଇ ବିଭୀଷଣ ପରାମର୍ଶ ଦେଲେ ମଧ୍ୟ ରାବଣ, ଭଲକୁ ମନ୍ଦ ମଣେ କରି ବିଭୀଷଣଙ୍କୁ ରାଜ୍ୟରୁ ବାହାର କରିଦେଲା । ବିଭୀଷଣ ସେଠାରୁ ପଳାୟନ କରି ରାମଙ୍କର ଆଶ୍ରୟ ନେଲେ । ତତ୍ପରେ ରାମ ଓ ଲକ୍ଷ୍ମଣଙ୍କ ଦ୍ୱାରା ପୁତ୍ର, ପୌତ୍ର, ଭ୍ରାତା ଓ ସେନାପତିମାନେ ହତ ହେବା ପରେ ରାବଣ ବ୍ରହ୍ମାଙ୍କଠାରେ ବର ପ୍ରାର୍ଥନା କାଳରେ ଉପେକ୍ଷା କରି ନ ଥିବା ନର ବାନରଙ୍କ ଦ୍ୱାରା ନିହତ ହେଲେ । (ବୃତ୍ତାକୋଷ)

**ରାମ**—ଶ୍ରୀରାମଚନ୍ଦ୍ର । ବିଷ୍ଣୁଙ୍କର ତ୍ରେତାଯୁଗରେ ଅଯୋଧ୍ୟାରାଜା ଦଶରଥଙ୍କ ଜ୍ୟେଷ୍ଠ ପୁତ୍ରରୂପେ ଜନ୍ମ ଗ୍ରହଣ କରିଥିବା ଅବତାର । ବିଷ୍ଣୁଙ୍କ ସପ୍ତମ ଅବତାର ।

ପରଶୁରାମଙ୍କୁ ମଧ୍ୟ ରାମ ବୋଲି କହନ୍ତି । ଏ ବିଷ୍ଣୁଙ୍କର ଷଷ୍ଠ ଅବତାର । ଜମଦଗ୍ନି ଋଷି ଏହାଙ୍କର ପିତା ଓ ରେଣୁକା ଏହାଙ୍କର ମାତା । ପରଶୁରାମ ପୃଥିବୀ ପର୍ଯ୍ୟଟନ ୨୧ ଥର କରିଥିଲେ । ପୃଥିବୀରୁ କ୍ଷତ୍ରିୟମାନଙ୍କୁ ଲୋପ କରିବା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଶେଷରେ ରାମଚନ୍ଦ୍ରଙ୍କ ଦ୍ୱାରା ପରାଜିତ ହୋଇ ଏ ପର୍ଯ୍ୟନ୍ତ ଜୀବିତାବସ୍ଥାରେ ମହେନ୍ଦ୍ରାଚଳରେ ଅଛନ୍ତି ବୋଲି ଲୋକପ୍ରବାଦ ଅଛି । ପ୍ରମାଣ ଯଥା :—

ଅଶ୍ୱତ୍ଥାମା-ବଳି ବ୍ୟାସ-ହନୁମାନ -ବିଭୀଷଣଃ
କୃପଃ ପରଶୁରାମଶ୍ଚ ସପ୍ତୈତେ ଚିର ଜୀବିନଃ ।

ବଳରାମଙ୍କର ଅନ୍ୟ ନାମ ମଧ୍ୟ ରାମ । ଦ୍ୱାପର ଯୁଗରେ ବିଷ୍ଣୁଙ୍କ ଅଷ୍ଟମ ଅବତାର ଶ୍ରୀକୃଷ୍ଣଙ୍କର ବୈମାତୃକ ବଡ ଭାଇ । ରୋହିଣୀ ଏହାଙ୍କର ମାତା ।

**ରାମଚନ୍ଦ୍ର**—ଅଯୋଧ୍ୟାଧିପତି ମହାରାଜ ଦଶରଥଙ୍କ ଜ୍ୟେଷ୍ଠ ପୁତ୍ର । ପିତୃସତ୍ୟ ରକ୍ଷାର୍ଥେ ପତ୍ନୀ ସୀତା ଓ ବୈମାତ୍ରେୟ ଭ୍ରାତା ଲକ୍ଷ୍ମଣଙ୍କ ସହ ୧୪ ବର୍ଷ ପାଇଁ ବନବାସ ବରଣ କରିଥିଲେ । ରାମଙ୍କ ବନଗମନ ପରେ ପୁତ୍ର ବିରହ ଶୋକମଗ୍ନ ଦଶରଥ ପ୍ରାଣତ୍ୟାଗ କଲେ । ଭରତ ମାତୁଳାଳୟରୁ ଆଗମନ କରି ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କଲେ (ଦଶରଥ ଦେଖ) । ଭ୍ରାତୃବତ୍ସଳ ଭରତ ଅଯୋଧ୍ୟାରେ ଉପସ୍ଥିତ ହୋଇ ବୁଝିଲେ ଯେ ତାଙ୍କର ମାତା କୈକେୟୀ ରାମ ବନଗମନର ପ୍ରଧାନ ହେତୁ । ସେ ମାତାଙ୍କୁ ଅନେକ ତିରସ୍କାର କଲେ । ମନ୍ତ୍ରୀମାନେ ରାଜସିଂହାସନ ଆରୋହଣ କରିବାକୁ କହିବାରୁ ସେ ରାମଙ୍କୁ

ବନରୁ ଫେରାଇ ଆଣିବାକୁ ଗଲେ । ମାତ୍ର ସତ୍ୟସନ୍ଧ ରାମ ଫେରିଲେ ନାହିଁ । ଭରତ ତାଙ୍କ ପାଦୁକା ଦୁଇଟି ଧରି ଲେଉଟିଲେ ଏବଂ ଭାଇଙ୍କ ପରି ତପସ୍ୱୀ ବେଶ ଓ ଫଳମୂଳାହାର କରି ପାଦୁକା ଦୁଇଟିକୁ ସିଂହାସନରେ ରଖି ରାଜକାର୍ଯ୍ୟ ଚଳାଇଲେ । ରାମ କ୍ରମେ ଦଣ୍ଡକାରଣ୍ୟ ଆଡ଼କୁ ଗଲେ । ଦଣ୍ଡକାରଣ୍ୟରେ ଲଙ୍କାର ରାକ୍ଷସ ରାଜା ରାବଣ ସୀତାଙ୍କୁ ହରଣ କଲା । ରାମ ବାନରରାଜ ସୁଗ୍ରୀବ ଓ ହନୁମାନ୍ ଏବଂ ବାନରସେନାଙ୍କ ସହାୟତାରେ ଲଙ୍କା ଆକ୍ରମଣ କରି ରାବଣଙ୍କୁ ସବଂଶ ବଧକରି ସତୀ ସୀତାଙ୍କୁ ଉଦ୍ଧାର କଲେ । ଅଗ୍ନି ପରୀକ୍ଷା ପରେ ରାମ ସୀତାଙ୍କୁ ପୁଣି ଗ୍ରହଣ କଲେ । ଲଙ୍କାରୁ ରାମ, ସୀତା ଓ ଲକ୍ଷ୍ମଣଙ୍କ ସହିତ ଅଯୋଧ୍ୟାକୁ ଆସିଲେ । ସେତେବେଳକୁ ତାଙ୍କର ଚଉଦ ବର୍ଷ ବନବାସ ପୂରିଯାଇଥିଲା । ରାମ ଅଯୋଧ୍ୟାରେ ଅଭିଷିକ୍ତ ହୋଇ ରାଜତ୍ୱ କରିଥିଲେ । ପ୍ରଜାମାନେ ତାଙ୍କ ଶାସନରେ ଅତି ସୁଖରେ କାଳଯାପନ କରୁଥିଲେ । ଏଥିପାଇଁ ଆଜି ପର୍ଯ୍ୟନ୍ତ ରାମ ରାଜ୍ୟ ଆଦର୍ଶ ଶାସନ ଅର୍ଥରେ ବ୍ୟବହୃତ ହେଉଅଛି । ଅଯୋଧ୍ୟାକୁ ଫେରିବା ପରେ ରାବଣହୃତା ସୀତାଙ୍କ ସତୀତ୍ୱ ବିଷୟରେ ପ୍ରଜାଙ୍କ ମନରେ ସନ୍ଦେହ ଥିବା ଅବଗତ ହୋଇ ଅନ୍ତଃସତ୍ତ୍ୱା ସୀତାଙ୍କୁ ଏ ନିର୍ବାସିତା କଲେ । ନିର୍ବାସନକାଳରେ ବାଲ୍ମୀକି ଆଶ୍ରମରେ ସୀତାଙ୍କର ଲବ ଓ କୁଶ ନାମକ ଯମଜ କୁମାର ଜନ୍ମ ହେଲେ । ତତ୍ପରେ ପିତା ପୁତ୍ର ଦ୍ୱୟଙ୍କର ମିଳନ ହେଲା । ସୀତାଙ୍କୁ ଗ୍ରହଣ କରିବା ପାଇଁ ରାମଚନ୍ଦ୍ର ପୁଣି ଅଗ୍ନି ପରୀକ୍ଷା ପ୍ରସ୍ତାବ କରିବାରୁ ସୀତା ଏଥିରେ ଅସମ୍ମତା ହୋଇ ନିଜର ମାତା ପୃଥିବୀଙ୍କ ଗର୍ଭରେ ଲୀନ ହେଲେ । ତତ୍ପରେ ଦେଖି ନନ୍ଦନରେ ରାମଙ୍କୁ ଲକ୍ଷ୍ମଣ ବର୍ଜନ କରିବାକୁ ହେଲା । ତତ୍ପରେ ରାମ ପୁତ୍ରଦ୍ୱୟଙ୍କୁ ଯଥାବିଧି କୋଶଳ ରାଜ୍ୟ (କୁଶଙ୍କୁ) ଓ ଉତ୍ତର କୋଶଳ (ଲବଙ୍କୁ)ରେ ରାଜା କରି ସ୍ୱଜନ ଓ ପୁରଜନମାନଙ୍କ ସହିତ ସରଯୂ ନଦୀରେ ପ୍ରବେଶପୂର୍ବକ ଯୋଗାବଲମ୍ବନରେ ତନୁ ତ୍ୟାଗ କଲେ । (ଭାଷାକୋଷ)

**ରାମାୟଣ**—ମହର୍ଷି ବାଲ୍ମୀକି ପ୍ରଣୀତ ରାମଚରିତ ବର୍ଣ୍ଣିତ ସଂସ୍କୃତ ମହାକାବ୍ୟ । ରାମଚନ୍ଦ୍ରଙ୍କ ସମକାଳୀନ ବାଲ୍ମୀକି ପ୍ରଣୀତ ରାମାୟଣ ମହାକାବ୍ୟ ସାତକାଣ୍ଡ ବା ଭାଗରେ ବିଭକ୍ତ ଯଥା—

(୧) ଆଦିକାଣ୍ଡ ବା ବାଲକାଣ୍ଡ—ଅଯୋଧ୍ୟାର ଓ ଦଶରଥଙ୍କ ବିବରଣ, ଦଶରଥଙ୍କ ପୁତ୍ରେଷ୍ଟିଯାଗ, ରାମଜନ୍ମ, ରାମଙ୍କ ଦ୍ୱାରା ହରଧନୁ ଭଙ୍ଗ, ସୀତାଙ୍କ ବିବାହ ଓ ପରଶୁରାମ ପରାଜୟ ।

(୨) ଅଯୋଧ୍ୟାକାଣ୍ଡ—ବିବାହାନ୍ତେ ରାମ ଓ ସୀତାଙ୍କର ଅଯୋଧ୍ୟା ନିବାସ ଓ ପିତୃସତ୍ୟ ପାଳନାର୍ଥେ ବନଗମନ ।

(୩) ଅରଣ୍ୟକାଣ୍ଡ—ଦଶରଥଙ୍କ ମୃତ୍ୟୁ, ରାମ, ଲକ୍ଷ୍ମଣ ସୀତାଙ୍କର ଦଣ୍ଡକାରଣ୍ୟରେ ସ୍ଥିତି, ବିରାଧ ବଧ, ଖର ଦୂଷଣ ବଧ, ରାବଣ ଦ୍ୱାରା ସୀତା ହରଣ ।

(୪) କିଷ୍କିନ୍ଧ୍ୟାକାଣ୍ଡ—ବାନରରାଜ ସୁଗ୍ରୀବଙ୍କ ସହିତ ମିତ୍ରତା ଓ ବାଲି ବଧ

(୫) ସୁନ୍ଦରାକାଣ୍ଡ—ହନୁମାନର ଲଙ୍କା ଗମନ, ସୀତା ଠାବ, ଲଙ୍କା ଦହନ ଓ ରାମଚନ୍ଦ୍ରଙ୍କ ନିକଟକୁ ସୀତାଙ୍କ ସମ୍ବାଦ ଆନୟନ ।

(୬) ଯୁଦ୍ଧ ବା ଲଙ୍କାକାଣ୍ଡ—ରାମ ରାବଣ ଯୁଦ୍ଧ, ରାବଣ ବଧ ଏବଂ ଅଯୋଧ୍ୟା ପ୍ରତ୍ୟାଗମନ ।

(୭) ଉତ୍ତରାକାଣ୍ଡ—ଅଯୋଧ୍ୟାରେ ରାଜତ୍ୱ, ସୀତା ବନବାସ ରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞ, ଲବକୁଶଙ୍କ ରାମାୟଣ ଗାନ, ରାମଙ୍କର ଦେହତ୍ୟାଗ ।

ରାମଚନ୍ଦ୍ରଙ୍କ ଦ୍ୱାରା ନିର୍ବାସିତା ସୀତାଙ୍କ ଗର୍ଭରୁ ଯମଜ କୁମାର କୁଶ ଓ ଲବ ବାଲ୍ମୀକିଙ୍କ ତପୋବନରେ ଜାତ ହୋଇ ସେହିଠାରେ ଶିକ୍ଷାଲାଭ କରିବା ସମୟରେ ବାଲ୍ମୀକି ମୁନି ଏହି ବିରାଟ କାବ୍ୟ ରଚନା କରି ତାହା ଏହି କୁମାରଦ୍ୱୟଙ୍କୁ ମୁଖସ୍ଥ କରାଇଥିଲେ ଓ ରାମଚନ୍ଦ୍ରଙ୍କ ଅଶ୍ୱମେଧଯଜ୍ଞ ସ୍ଥଳକୁ ନିମନ୍ତ୍ରିତ ହୋଇଥିବା ବାଲ୍ମୀକି ମୁନିଙ୍କ ସଙ୍ଗେ ଯାଇଥିବା କୁମାରଦ୍ୱୟ ଅଯୋଧ୍ୟାରେ ଉପସ୍ଥିତ ହୋଇ ଉକ୍ତ ରାମାୟଣ କାବ୍ୟକୁ ଆବୃତ୍ତି କରିଥିଲେ । ମହାଭାରତ ଗ୍ରନ୍ଥର ୧୮ଟି ଖଣ୍ଡକୁ ପର୍ବ ବୋଲିଯାଏ ଓ ରାମାୟଣର ୭ଟି ଖଣ୍ଡକୁ କାଣ୍ଡ ବୋଲିଯାଏ । ସମଗ୍ର ପୃଥିବୀର ସାହିତ୍ୟରେ ରାମାୟଣ ଓ ମହାଭାରତ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛି ।

ଏହି ମୂଳ ରାମାୟଣକୁ ଅବଲମ୍ବନ ଓ ଅନୁବାଦ କରି ହିନ୍ଦୀ, ବଙ୍ଗଳା, ଓଡ଼ିଆ, ତେଲୁଗୁ, ତାମିଲ୍, ଗୁଜରାଟୀ, ମରହଟ୍ଟୀ ଆଦି ଭାଷାର ଲେଖକମାନେ ରାମାୟଣ ରଚନା କରିଅଛନ୍ତି ।

ସାଧାରଣତଃ ଭାରତରେ ୩ ପ୍ରକାର ବାଲ୍ମୀକି ରାମାୟଣ ଦେଖାଯାଏ ଯଥା—ଔଦୀଚ୍ୟ, ଦାକ୍ଷିଣାତ୍ୟ ଓ ଗୌଡ଼ୀୟ । ଏହି ତିନି ରାମାୟଣର ସର୍ଗ ସଂଖ୍ୟାରେ ଓ ପାଠରେ ବହୁତ ପ୍ରଭେଦ ଦେଖାଯାଏ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

ରାହୁ—ଚନ୍ଦ୍ର ସୂର୍ଯ୍ୟ ପ୍ରମର୍ଦ୍ଦନକାରୀ ଅସୁର ବିଶେଷ । ବିପ୍ରଚିତ୍ତି ଔରସରେ ସିଂହିକା ଗର୍ଭରୁ ଏହାର ଜନ୍ମ । ସମୁଦ୍ର ମନ୍ଥନ ପରେ ଦେବତାମାନେ ଅମୃତ ପାନ କରିବା ବେଳେ ଏକ ଅସୁର ଦେବତାମାନଙ୍କ ମେଳରେ ବସି ଅମୃତ ପାନ କରୁଥିଲା । ଚନ୍ଦ୍ର, ସୂର୍ଯ୍ୟ ଏହା ଲକ୍ଷ୍ୟ କରି ବିଷ୍ଣୁଙ୍କୁ ସମ୍ବାଦ ଦେଲେ । ବିଷ୍ଣୁ ସୁଦର୍ଶନଚକ୍ର ଦ୍ୱାରା ଏହି ଅସୁରର ମସ୍ତକ ଛେଦନ କଲେ । ମସ୍ତକଭାଗ ରାହୁ ଓ ଶରୀର ଅଂଶ କେତୁ ନାମରେ ପରିଚିତ ହେଲା । ରାହୁ ଏହି କ୍ରୋଧର ପ୍ରତିଫଳ ସ୍ୱରୂପ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଗ୍ରାସ କରିଥାଏ । (ଶ୍ରୀମଦ୍‌ଭାଗବତ)

ଯେତେବେଳେ ରାହୁ ଚନ୍ଦ୍ରକୁ ଗ୍ରାସ କରେ ସେତେବେଳେ ଚନ୍ଦ୍ରଗ୍ରହଣ, ଯେତେବେଳେ ସୂର୍ଯ୍ୟକୁ ଗ୍ରାସ କରେ ସେତେବେଳେ ସୂର୍ଯ୍ୟୋପରାଗ ହୁଏ । ଏହି ରାହୁ ଓ କେତୁକୁ ପାଶ୍ଚାତ୍ୟ ଜ୍ୟୋତିର୍ବିଦ୍‌ମାନେ ନୋଡ୍‌ସ୍ (Nodes) କହିଥାନ୍ତି । ହିନ୍ଦୁ ପଞ୍ଜିକାରେ ରାହୁ ରାକ୍ଷସ ମୁଖାକାର ଓ କେତୁ କଣ୍ଠଧର ସର୍ପାକୃତିରୂପେ ଚିତ୍ରିତ ହେବା ଦେଖାଯାଏ । (ଶବ୍ଦତତ୍ତ୍ୱାଭିଧାନ)

ରୁକ୍ମିଣୀ—ବିଦର୍ଭରାଜ ଭୀଷ୍ମକଙ୍କ ଦୁହିତା ଓ ଶ୍ରୀକୃଷ୍ଣଙ୍କ ପଟ୍ଟମହିଷୀ । ଏ ହେଉଛନ୍ତି ଲକ୍ଷ୍ମୀଙ୍କର ଅବତାର । ଏହାଙ୍କ ଭ୍ରାତା ରୁକ୍ମୀ । ଯୌବନ ପ୍ରାରମ୍ଭରେ ରୁକ୍ମିଣୀ ଅସାମାନ୍ୟ ରୂପଲାବଣ୍ୟମୟୀ ଥିଲେ । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ ରୂପ ଓ ଗୁଣ ବିଷୟ ଅବଗତ ହୋଇ ତାଙ୍କ ପ୍ରତି ଆସକ୍ତ ଥିଲେ ଏବଂ ରୁକ୍ମିଣୀ ମଧ୍ୟ ତଦ୍ରୂପ କୃଷ୍ଣଙ୍କ ରୂପ ଗୁଣରେ ଆକୃଷ୍ଟ ହୋଇ ତାହାଙ୍କର ଅନୁରାଗିଣୀ ହୋଇଥିଲେ । ରୁକ୍ମିଣୀ ତାଙ୍କର ଇଚ୍ଛା ପ୍ରକାଶ କରନ୍ତେ ରୁକ୍ମୀ ତାର ପ୍ରତିବାଦ କରି ସେଠାରେ ଭଉଣୀଙ୍କୁ ବିବାହ ନ ଦେବା ପାଇଁ ପିତାଙ୍କୁ ଜଣାଇଲେ । ଏଥିରୁ ଜଣାଯାଏ ରୁକ୍ମୀ ଶ୍ରୀକୃଷ୍ଣଙ୍କ ପ୍ରତି ଏକାନ୍ତ ବିଦ୍ୱେଷପରାୟଣ ଥିଲେ ।

ଏଣେ ପ୍ରବଳ ପରାକ୍ରାନ୍ତ ମଗଧାଧିପତି ଜରାସନ୍ଧ, ଦମଘୋଷର ପୁତ୍ର ଶିଶୁପାଳ ସହିତ ରୁକ୍ମିଣୀଙ୍କୁ ବିବାହ ଦେବା ପ୍ରସ୍ତାବ ବିଦର୍ଭପତି ଭୀଷ୍ମକଙ୍କ ନିକଟକୁ ପଠାଇଲେ । ଭୀଷ୍ମକ ଏହି ପ୍ରସ୍ତାବରେ ସମ୍ମତ ହୋଇଗଲେ । ଚେଦିରାଜ ଦମଘୋଷ ଓ ମଗଧାଧିପତି ଜରାସନ୍ଧ ଏକ ବଂଶସମ୍ଭୂତ । ଦମଘୋଷ ତନୟ ଶିଶୁପାଳ ଜରାସନ୍ଧଙ୍କ ପାଖରେ ରହି ପୁତ୍ରବତ୍ ଲାଳିତପାଳିତ ହେଉଥିଲା । ଶ୍ରୀକୃଷ୍ଣ ଜରାସନ୍ଧ ଜାମାତା କଂସଙ୍କୁ ବିନାଶ କରିଥିବା ଯୋଗେ ଶିଶୁପାଳ ତାଙ୍କ ପ୍ରତି ବିଦ୍ୱେଷାଚରଣ କରିବା ସ୍ୱାଭାବିକ । ଶ୍ରୀକୃଷ୍ଣବିଦ୍ୱେଷୀ ରୁକ୍ମୀର ପରାମର୍ଶକ୍ରମେ ବିଦର୍ଭରାଜ ଭୀଷ୍ମକ ଏ ପ୍ରସ୍ତାବରେ ସମ୍ମତ ହେବାରୁ ବର୍ତ୍ତମାନ ତଦୀୟ ରାଜଧାନୀ କୁଣ୍ଡିନ ନଗରରେ ବିବାହର ଆଡ଼ମ୍ବରପୂର୍ଣ୍ଣ ଆୟୋଜନ ହେଲା ।

ଶିଶୁପାଳ, ଶ୍ରୀକୃଷ୍ଣ ଓ ବଳରାମଙ୍କର ମାଉସୀ ପୁଅଭାଇ । ଏଥିଲାଗି ମାଉସୀଙ୍କ ମନ ତୁଷ୍ଟ ରଖିବା ପାଇଁ ଶିଶୁପାଳ ବୃଷ୍ଣିବଂଶୀୟମାନଙ୍କୁ ନିମନ୍ତ୍ରଣ କରି ସଙ୍ଗରେ ନେଇ କୁଣ୍ଡୀ କଟକକୁ ଯାଇଥିଲେ । ବିବାହର ପୂର୍ବଦିନ ରୁକ୍ମିଣୀ ଦେବାରାଧନା ସକାଶେ ରଥାରୋହଣ କରି ଦେବ ମନ୍ଦିରକୁ ଯାଉଥିବାବେଳେ ବାଟରେ ଶ୍ରୀକୃଷ୍ଣ ତାଙ୍କୁ ଦେଖି ପାରିଲେ । ଚାରି ଚକ୍ଷୁରେ ପୀରତିର ମେଳ ହେଲା । ଶ୍ରୀକୃଷ୍ଣ ବଳରାମଙ୍କ ପରାମର୍ଶ ମତେ ରୁକ୍ମିଣୀ ହରଣର ସଙ୍କଳ୍ପ କଲେ । ଯେତେବେଳେ ଅର୍ଚ୍ଚନା ସାରି ରୁକ୍ମିଣୀ ଫେରିଲେ ସେତେବେଳେ ଶ୍ରୀକୃଷ୍ଣ ସେଠାରେ ଉପସ୍ଥିତ ହୋଇ ରୁକ୍ମିଣୀଙ୍କୁ ରଥରେ ବସାଇ ଫେରିଲେ । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ହରଣ କରି ନେଉଛନ୍ତି ଦେଖି ଶିଶୁପାଳ, ଜରାସନ୍ଧ, ରୁକ୍ମୀ ପ୍ରଭୃତି ତାଙ୍କୁ ବଧ କରିବା ପାଇଁ ଅନୁଧାବନ କଲେ । ରୁକ୍ମୀ ପିତାଙ୍କ ସମକ୍ଷରେ ପ୍ରତିଜ୍ଞା କଲେ ଯେ ସେ ଶ୍ରୀକୃଷ୍ଣଙ୍କୁ ବଧ କରି ରୁକ୍ମିଣୀ ଉଦ୍ଧାର ନକଲେ ରାଜ୍ୟକୁ ଲେଉଟିବେ ନାହିଁ । ମାତ୍ର ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରି ଜରାସନ୍ଧ, ଶିଶୁପାଳ ଓ ରୁକ୍ମୀ ପରାଜିତ ହେଲେ । ଶ୍ରୀକୃଷ୍ଣଙ୍କ ଶରାଘାତରେ ରୁକ୍ମୀ ମୂର୍ଚ୍ଛିତ ହୋଇ ପଡିଲେ । ରୁକ୍ମିଣୀଙ୍କ ପ୍ରାର୍ଥନାରେ ପରିତୃପ୍ତ ହୋଇ ଶ୍ରୀକୃଷ୍ଣ ତାଙ୍କୁ ବଧ କଲେନାହିଁ । ରୁକ୍ମୀ ପ୍ରତିଜ୍ଞା ପାଳନ କରି ନପାରି ଆଉ ବିଦର୍ଭକୁ ଫେରିଲେ ନାହିଁ । ବିଦର୍ଭର ଉପକଣ୍ଠରେ ଏକ ନୂତନ ନଗରୀ ନିର୍ମାଣ କରି ସେହିଠାରେ ରହିଲେ ।

ଦ୍ୱାରକାରେ ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କ ପରିଣୟ ଯଥାବିଧି ଆଡ଼ମ୍ବର ସହକାରେ ପରିସମାପ୍ତ ହେଲା । ରୁକ୍ମିଣୀ ଶ୍ରୀକୃଷ୍ଣଙ୍କ ପ୍ରଧାନ ମହିଷୀ ଥିଲେ । ଏ ମହାଲକ୍ଷ୍ମୀ ଅଂଶରେ ଜାତ ହେବା ପ୍ରସିଦ୍ଧ ଅଛି । ଶ୍ରୀକୃଷ୍ଣଙ୍କ ଔରସରେ ଏହାଙ୍କ ଗର୍ଭରୁ ପ୍ରଦ୍ୟୁମ୍ନ, ଚାରୁଦେଷ୍ଣ, ସୁଷେଣ ପ୍ରଭୃତି ଦଶ ପୁତ୍ର ଓ ଚାରୁମତୀ ନାମ୍ନୀ କନ୍ୟା ଜନ୍ମିଥିଲେ । ରୁକ୍ମିଣୀ ତନୟ ପ୍ରଦ୍ୟୁମ୍ନ, ରୁକ୍ମୀ କନ୍ୟା ଶୁଭାଙ୍ଗୀ (ରୁକ୍ମବତୀ)ଙ୍କୁ ବିବାହ କରିଥିଲେ । ଯଦୁବଂଶ ନାଶ ପରେ ଶ୍ରୀକୃଷ୍ଣ ମାନବଲୀଳା ସମ୍ବରଣ କରନ୍ତେ ଅର୍ଜୁନ ଯଦୁବଂଶୀୟ ରାଜମହିଳାମାନଙ୍କ ସହିତ ରୁକ୍ମିଣୀଙ୍କୁ ଇନ୍ଦ୍ରପ୍ରସ୍ଥ ନେଇଗଲେ । କିନ୍ତୁ ରୁକ୍ମିଣୀ ପତିବିରହ ସହି ନ ପାରି ପ୍ରଦୀପ୍ତ ହୁତାଶନରେ ଝାସ ଦେଇ ଜୀବନ ବିସର୍ଜନ କଲେ ।

(ଚରିତାଭିଧାନ ଓ ଭାଷାକୋଷ)

**ରୁକ୍ମୀ**—ଭୀଷ୍ମକ ରାଜାଙ୍କ ଜ୍ୟେଷ୍ଠପୁତ୍ର ଓ ରୁକ୍ମିଣୀଙ୍କ ବଡ଼ ଭାଇ । ଏ ଶ୍ରୀକୃଷ୍ଣଦ୍ୱେଷୀ ଥିଲେ । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ହରଣ କରି ନେବାରୁ ଏ ତାଙ୍କ ଗତିରୋଧ କରିବାକୁ ନର୍ମଦା ତୀରରେ ଉପସ୍ଥିତ ହେଲେ । କିନ୍ତୁ ବଳରାମଙ୍କ ଦ୍ୱାରା

ପରାଜିତ ହୋଇ ଲଜ୍ଜାରେ ଆଉ ବିଦର୍ଭକୁ ଫେରି ନ ଆସି ଭୋଜକଟକ ନାମକ ନଗର ସ୍ଥାପନ କରିବାରେ ପ୍ରବୃତ୍ତ ହେଲେ । କୃଷ୍ଣବିଦ୍ୱେଷୀ ଥିଲେ ମଧ୍ୟ ଏହାଙ୍କର ରୁକ୍ମିଣୀଙ୍କ ପ୍ରତି ସ୍ନେହ କମି ନଥିଲା । ନିଜର ଭଣଜା ପ୍ରଦ୍ୟୁମ୍ନଙ୍କ ସହିତ ଏହାଙ୍କର କନ୍ୟା ରୁକ୍ମାବତୀଙ୍କର ପରିଣୟ ସମ୍ପାଦିତ ହୋଇଥିଲା । ମହାଭାରତ ଯୁଦ୍ଧର ପ୍ରାରମ୍ଭ ସମୟରେ ଏ ଆପଣାର ବୀରତ୍ୱ ଖ୍ୟାପନ ପୂର୍ବକ ପ୍ରଥମ ପାଣ୍ଡବ ପକ୍ଷରେ ଓ ପରେ କୌରବଙ୍କ ପକ୍ଷରେ ଯୋଗଦେବା ପାଇଁ ନିଜେ ପ୍ରସ୍ତାବ କଲେ । କିନ୍ତୁ ଏହାଙ୍କ ଅହମିକା ଯୋଗୁ ଉଭୟ ପକ୍ଷ ଏହାଙ୍କ ପ୍ରସ୍ତାବ ଗ୍ରହଣ କଲେନାହିଁ । ପ୍ରଦ୍ୟୁମ୍ନତନୟ ଅନିରୁଦ୍ଧଙ୍କ ସହିତ ଏହାଙ୍କର ଏକ ପୌତ୍ରୀର ବିବାହ ହୋଇଥିଲା । ସେହି ଉତ୍ସବ ଅବସରରେ ଯାଦବମାନେ ଏହାଙ୍କ ପ୍ରତିଷ୍ଠିତ ଭୋଜକଟକ ରାଜଧାନୀକୁ ନିମନ୍ତ୍ରିତ ହୋଇ ଯାଇଥିଲେ । ସେହି ସମୟରେ ରୁକ୍ମୀ ବଳରାମଙ୍କ ସହିତ ଅକ୍ଷକ୍ରୀଡ଼ାରେ ପ୍ରବୃତ୍ତ ହୋଇ ପ୍ରତାରଣା କରିବାରୁ ବଳରାମ ଏହାଙ୍କୁ ଅକ୍ଷାଘାତ (ପଶାକାଠିରେ ଆଘାତ) କଲେ । ସେହି ଆଘାତରେ ରୁକ୍ମୀ ପଞ୍ଚତ୍ୱ ପ୍ରାପ୍ତ ହେଲେ । ଏହାଙ୍କର ଅନ୍ୟ ସାନଭାଇମାନଙ୍କର ନାମ ରୁକ୍ମସେନ, ରୁକ୍ମକେଶ, ରୁକ୍ମବାହୁ, ରୁକ୍ମରଥ, ରୁକ୍ମମାଳୀ । (ହିନ୍ଦୀ ଶବ୍ଦସାଗର)

**ରୁଚ, ରୁଚୀ**—ପ୍ରଜାପତି ବିଶେଷ । ଆକୂତିଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା । ଏହାଙ୍କ ଔରସରେ ଆକୂତିଙ୍କ ଗର୍ଭରୁ ଯଜ୍ଞ ଓ ଦକ୍ଷିଣା ନାମକ ଯମଜ ପୁତ୍ର ଓ କନ୍ୟା ଜନ୍ମିଥିଲେ । ଏ ମଧ୍ୟ ରୌଚ୍ୟ ମୁନିଙ୍କ ପିତା ଥିଲେ । (ହିନ୍ଦୀ ଶବ୍ଦସାଗର)

ବିଶ୍ୱାମିତ୍ରଙ୍କର ଏକ ପୁତ୍ରଙ୍କ ନାମ ଥିଲା ରୁଚ । (ଭାଷାକୋଷ)

**ରୁଚିରା**—ରାମାୟଣ ସମୟର ଏକ ପ୍ରାଚୀନ ନଦୀ ବିଶେଷ । (ହିନ୍ଦୀ ଶବ୍ଦସାଗର)

**ରୁଚିରାଶ୍ୱ**—ଜଣେ ପୌରାଣିକ ରାଜା । ଏ ସେନଜିତ୍ ରାଜାଙ୍କର ପୁତ୍ର ଥିଲେ । (ଭାଷାକୋଷ)

**ରୁଦ୍ର**—କୂର୍ମ ପୁରାଣରେ ରୁଦ୍ରଙ୍କ ଉତ୍ପତ୍ତି ସମ୍ବନ୍ଧରେ ନିର୍ଣ୍ଣୟ ଏହିପରି—ବ୍ରହ୍ମା ସୃଷ୍ଟି ସୃଜନା କରିବା ପାଇଁ କଠୋର ତପସ୍ୟା କଲେ କିନ୍ତୁ ତପସ୍ୟାରେ କିଛି ସୁଫଳ ଫଳିଲା ନାହିଁ । ସେ ମଧ୍ୟ କୌଣସି ପ୍ରକାର ସୃଷ୍ଟି ସୃଜନା କରିବା ପାଇଁ ସମର୍ଥ ହେଲେନାହିଁ । ଏଥିରେ ତାଙ୍କର ମହାକ୍ରୋଧର ସଞ୍ଚାର ହେଲା । କ୍ରୋଧବଶତଃ ତାଙ୍କ ଚକ୍ଷୁରୁ ଅଶ୍ରୁବିନ୍ଦୁ ନିର୍ଗତ ହେଲା ଏହି ଅଶ୍ରୁବିନ୍ଦୁରୁ ଭୂତପ୍ରେତାଦି ସମ୍ଭୂତ

ହେଲେ । ଅନନ୍ତର ବ୍ରହ୍ମାଙ୍କ ମୁଖରୁ ପ୍ରାଣମୟ ରୁଦ୍ରଦେବ ଆବିର୍ଭୂତ ହେଲେ । ଏହି ରୁଦ୍ରଦେବ କୋଟି ସୂର୍ଯ୍ୟ ସମପ୍ରଭ ପ୍ରଳୟକାଳୀନ ଅଗ୍ନି ସଦୃଶ । ରୁଦ୍ରଦେବ ଆବିର୍ଭୂତ ହେବା ମାତ୍ରେ ରୋଦନ କରିବାକୁ ଲାଗିଲେ । ବ୍ରହ୍ମା କହିଲେ—ତୁମେ ରୋଦନ କରନାହିଁ । ଜନ୍ମିବା ମାତ୍ରେ ରୋଦନ କରିଥିବାରୁ ତାଙ୍କର ନାମ ହେଲା ରୁଦ୍ର । ପଦ୍ମପୁରାଣମତେ ବ୍ରହ୍ମାଙ୍କ ଭ୍ରୂ ମଧ୍ୟରୁ ରୁଦ୍ରଙ୍କର ଉତ୍ପତ୍ତି । ଏହି ପୁରାଣମତରେ ମଧ୍ୟ ଇରାବତୀ, ଧାତ୍ରୀ, ଧୃତ ପ୍ରଭୃତିଙ୍କ ଗର୍ଭରୁ ଭୂତପ୍ରେତାଦି ଜନ୍ମିଥିଲେ । କୂର୍ମପୁରାଣରେ ଲିଖିତ ହୋଇଅଛି ଯେ, ଯଦି କେହି ବିଷ୍ଣୁ ଓ ରୁଦ୍ରଙ୍କ ପ୍ରତିଭେଦ ବୁଦ୍ଧିରେ ଦୃଷ୍ଟିପାତ କରେ ତେବେ ତାହାର ନରକ ଗମନ ସୁନିଶ୍ଚିତ । ଋଗ୍‌ବେଦରେ ରୁଦ୍ର ଓ ଅଗ୍ନି ଅଭିନ୍ନ ରୂପେ ବର୍ଣ୍ଣିତ ହୋଇଛନ୍ତି । ଏହି ବେଦର ବହୁ ସ୍ଥାନରେ ରୁଦ୍ରଦେବଙ୍କ ଉଲ୍ଲେଖ ଦୃଷ୍ଟ ହୁଏ । କେଉଁଠି ମଧ୍ୟ ସେ ବରୁଣ ରୂପେ ସ୍ତୁତ ହୋଇଥିବା ଲକ୍ଷିତ ହୋଇଥାଏ । (ଚରିତାଭିଧାନ)

(୨) ଭାଗବତରେ ଭକ୍ତ କବି ଜଗନ୍ନାଥ କହନ୍ତି—

ରୋଦନ କଲୁ ଆମ୍ଭେ ଯେଣୁ ।
ତୋ ନାମ ରୁଦ୍ର ହେଉ ତେଣୁ ।

କୂର୍ମ ପୁରାଣରେ ଅଛି ଯେ ବ୍ରହ୍ମା କଳ୍ପାରମ୍ଭ କାଳରେ ବହୁ ତପସ୍ୟା କରି ପୁଣି ସୃଷ୍ଟି ଉତ୍ପନ୍ନ କରି ନ ପାରି ଅତି କ୍ରୁଦ୍ଧ ହୋଇ କାନ୍ଦିଲେ । ତାଙ୍କ ଲୋତକରୁ ଭୂତପ୍ରେତଗଣ ସୃଷ୍ଟି ହେଲେ ଓ ତାଙ୍କ ମୁଖରୁ ୧୧ ରୁଦ୍ର ଉତ୍ପନ୍ନ ହେଲେ । ଏମାନେ ଉତ୍ପନ୍ନ ହୋଇ ଉଚ୍ଚୈଃସ୍ୱରରେ ରୋଦନ କଲେ । ଏଥିପାଇଁ ଏମାନଙ୍କର ନାମ ରୁଦ୍ର ହେଲା । ମତାନ୍ତରରେ ବ୍ରହ୍ମା ସୃଷ୍ଟି ଚିନ୍ତାରେ ନିମଗ୍ନ ଥିବା ଅବସ୍ଥାରେ ତାଙ୍କ ଲଲାଟରୁ ବାଳକ ମୂର୍ତ୍ତି ଜାତ ହୋଇ ରୋଦନ କରି ଇତସ୍ତତଃ ଦୌଡ଼ା ଦୌଡ଼ି କଲା । ବ୍ରହ୍ମା ତାହାକୁ ରୁଦ୍ର ନାମରେ ଅଭିହିତ କଲେ ଓ ରୋଦନରୁ ନିବୃତ୍ତ ହେବାକୁ ଅନୁରୋଧ କଲେ । ବ୍ରହ୍ମା ଏହାଙ୍କୁ ଆଠଗୋଟି ନାମ ଦେଲେ ଭବ, ଶର୍ବ, ଈଶାନ, ପଶୁପତି, ଭୀମ, ଉଗ୍ର, ମହାଦେବ, ଶଙ୍କର । ଏ ପୁଣି ୧୧ଟି ମୂର୍ତ୍ତି ଧାରଣ କରି ଏକାଦଶ ରୁଦ୍ର ନାମରେ ବିଖ୍ୟାତ ହେଲେ । ଯଥା—ଅଜୈକପାଦ, ଅହିବ୍ରଧ୍ନ, ବିରୂପାକ୍ଷ, ସୁରେଶ୍ୱର, ଜୟନ୍ତ, ବହୁରୂପ, ତ୍ର୍ୟମ୍ବକ, ଅପରାଜିତ, ବୈବସ୍ୱତ, ସାବିତ୍ର, ହର ।

ମତାନ୍ତରେ—ଅଜ, ଏକପାଦ, ଅହିବ୍ରଧ୍ନ, ପିନାକୀ, ଅପରାଜିତ, ତ୍ର୍ୟମ୍ବକ, ମହେଶ୍ୱର, ବୃଷାକପି, ଶମ୍ଭୁ, ହର, ଈଶ୍ୱର, ପୁଣି ଭାଗବତ

ମତରେ—ମନ୍ୟୁ, ମନୁ, ମହୀନସ, ମହାନ, ଶିବ, ଋତୁଧ୍ୱଜ, ଉର୍ଦ୍ଧ୍ୱରେତଃ, ଭବ, କାଳଭବ, ବାମଦେବ, ଧୃତବ୍ରତ ।

ଗରୁଡ଼ ପୁରାଣ ମତରେ ଏମାନଙ୍କ ନାମ—ଅଜୈକପାଦ, ଅହିବ୍ରଧ୍ନ, ତ୍ୱଷ୍ଟା, ବିଶ୍ୱରୂପହରି, ବହୁରୂପ, ତ୍ର୍ୟମ୍ବକ, ଅପରାଜିତ, ବୃଷାକପି, ଶମ୍ଭୁ, କପର୍ଦ୍ଦୀ, ରୈବତ । ଏମାନେ କ୍ରୋଧରୂପ ବୋଲି କଳ୍ପିତ । ଭୂତପ୍ରେତ, ପିଶାଚ ଆଦି ଏମାନଙ୍କଠାରୁ ଉତ୍ପନ୍ନ ହୋଇଥିବା କଥିତ ।

ବେଦରେ ଅଗ୍ନିଙ୍କୁ ରୁଦ୍ର ବୋଲାଯାଇଅଛି ଓ କଥିତ ଅଛି ଯେ ଯଜ୍ଞର ଅନୁଷ୍ଠାନ କରିବା ନିମନ୍ତେ ରୁଦ୍ର ହିଁ ଯଜ୍ଞରେ ପ୍ରବେଶ କରନ୍ତି । ବେଦରେ ରୁଦ୍ରଙ୍କୁ ଅଗ୍ନିରୂପୀ, ବୃଷ୍ଟିକର ଓ ଗର୍ଜନକାରୀ ଦେବ ବୋଲି ବୋଲାଯାଇଅଛି, ପୁଣି କେଉଁ କେଉଁଠାରେ ରୁଦ୍ର ଶବ୍ଦରୁ ଇନ୍ଦ୍ର, ମିତ୍ର, ବରୁଣ ପୂଷଣ ଓ ସୋମ ଆଦି ଅନେକ ଦେବତାଙ୍କର ବୋଧ ହୁଏ । ଏକ ସ୍ଥାନରେ ରୁଦ୍ରଙ୍କୁ ରୁଦ୍ରଗଣଙ୍କ ପିତା ଓ ଅନ୍ୟ ସ୍ଥାନରେ ଅମ୍ବିକାଙ୍କୁ ଭାଇ ବୋଲି-ଯାଇଅଛି । ଏହାଙ୍କର ତିନି ନେତ୍ର ଓ ଏହାଙ୍କୁ ସର୍ବ ନିସ୍ତାରକାରୀ ଓ ସର୍ପମାନଙ୍କ ଧ୍ୱଂସକାରୀ ବୋଲାଯାଇଅଛି । (ହିନ୍ଦୀ ଶବ୍ଦସାଗର)

ବିଶ୍ୱକର୍ମାଙ୍କ ଏକ ପୁତ୍ରଙ୍କ ନାମ ମଧ୍ୟ ରୁଦ୍ର । (ହିନ୍ଦୀ ଶବ୍ଦସାଗର)

**ରୁଦ୍ରକାଳୀ**—ଦୁର୍ଗାଙ୍କର ଏକ ମୂର୍ତ୍ତି ବିଶେଷ (ହିନ୍ଦୀ ଶବ୍ଦସାଗର)

**ରୁଦ୍ରକୁଣ୍ଡ**—ବୃନ୍ଦାବନସ୍ଥିତ ଗୋଟିଏ ତୀର୍ଥର ନାମ । (ହିନ୍ଦୀ ଶବ୍ଦସାଗର)

**ରୁଦ୍ରକୋଟିତୀର୍ଥ**—ହନୁମାନଙ୍କର ତୀର୍ଥ ବିଶେଷ । କୃଷ୍ଣସିଂହ ମହାଭାରତ ବନପର୍ବରେ ଏକ ନିର୍ଣ୍ଣୟ ଦେଇଛନ୍ତି—

ରୁଦ୍ରକୋଟିତୀର୍ଥରେ ପୂର୍ବେ ଋଷିକୁଳ,
ରୁଦ୍ରଙ୍କୁ ଦେଖିବାକୁ ହେଲେ ଆସି ଠୁଳ ।

**ରୁଦ୍ରଗଣ**—ରୁଦ୍ର ଶ୍ରେଣୀଭୁକ୍ତ ଏଗାର ଗୋଟି ଦେବତା । ଶିବଙ୍କ ପାରିଷଦଗଣ । ଏମାନଙ୍କ ସଂଖ୍ୟା ୧ କୋଟି ଓ କାହା ମତରେ ୩୬ କୋଟି । ଏମାନେ ଜଟାଧାରୀ । ଏମାନଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଥାଏ; ଏମାନେ ଖୁବ୍ ବଳବାନ ଓ ଯୋଗୀମାନଙ୍କ ଯୋଗ ସାଧନର ବିଘ୍ନ ଦୂର କରନ୍ତି । (ହିନ୍ଦୀ ଶବ୍ଦସାଗର)

**ରୁଦ୍ରଚଣ୍ଡୀ**—ଦେବୀ ଚଣ୍ଡୀଙ୍କର ମୂର୍ତ୍ତି ବିଶେଷ । (ଭାଷାକୋଷ)

**ରୁଧିରାଶନ**—ରାମାୟଣୋକ୍ତ ରାକ୍ଷସ ବିଶେଷ । ଦଣ୍ଡକାରଣ୍ୟରେ ଥିବା ଖର ରାକ୍ଷସର ସେନାପତିର ନାମ । ରାମଚନ୍ଦ୍ରଙ୍କ ଦ୍ୱାରା ଖର ଦୂଷଣ ବଧ ହେବା ବେଳେ ରୁଧିରାଶନ ମଧ୍ୟ ନିହତ ହୋଇଥିଲା । (ରାମାୟଣ)

**ରୁମା, ରୋମା**—କପିପତି ସୁଗ୍ରୀବଙ୍କ ଭାର୍ଯ୍ୟା । ବୃହସ୍ପତି ଏହାଙ୍କର ପିତା । ଜ୍ୟେଷ୍ଠ ଭ୍ରାତା ବାଲି ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟା ରାଜ୍ୟରୁ ତଡ଼ିଦେବା ସମୟରେ ରୁମା ବାଲିଙ୍କ ଆଶ୍ରୟରେ ରହିଥିଲେ । ପରେ ଶ୍ରୀରାମଙ୍କ ଦ୍ୱାରା ବାଲି ନିହତ ହେବାରୁ ରୁମା ସ୍ୱୀୟ ସ୍ୱାମୀଙ୍କ ସଙ୍ଗେ ପୁନର୍ମିଳିତା ହେଲେ । (ପ୍ରଜ୍ଞାକୋଷ)

**ରୁରୁ**—ମହର୍ଷି ଚ୍ୟବନଙ୍କ ପୌତ୍ର ଓ ପ୍ରମତିଙ୍କ ପୁତ୍ର । ପ୍ରମତିଙ୍କ ଔରସରେ ଘୃତାଚୀ ନାମ୍ନୀ ଅପ୍ସରାଙ୍କ ଗର୍ଭରୁ ଏହାଙ୍କର ଜନ୍ମ । ରୁରୁଙ୍କ ପତ୍ନୀଙ୍କ ନାମ ପ୍ରମଦ୍ୱରା । ପ୍ରମଦ୍ୱରାଙ୍କ ଗର୍ଭରୁ ଶୁନକ ନାମକ ପୁତ୍ର ଜନ୍ମିଥିଲେ । ପ୍ରମଦ୍ୱରାଙ୍କ ମୃତ୍ୟୁ ହେବାମାତ୍ରେ ରୁରୁ ସ୍ୱୀୟ ଆୟୁରୁ ଅର୍ଦ୍ଧେକ ଦେଇ ତାଙ୍କୁ ଜୀବିତ କରାଇଥିଲେ । ମହର୍ଷି ଶୁନକ ବେଦାଧ୍ୟୟନସମ୍ପନ୍ନ, ତପୋନିରତ, ବ୍ରହ୍ମଜ୍ଞାନୀ, ସତ୍ୟବାଦୀ ଓ ଜିତେନ୍ଦ୍ରିୟ ଥିଲେ । ଦ୍ୱାଦଶ ବର୍ଷ ବ୍ୟାପୀ ଯଜ୍ଞର ଅନୁଷ୍ଠାତା ନୈମିଷାରଣ୍ୟସ୍ଥ କୁଳପତି ଶୌନକ ଏହି ଶୁନକଙ୍କ ପୌତ୍ର ।

(ଚରିତାଭିଧାନ)

(୨) ପୁରାଣାନୁସାରେ ମୃଗଜନ୍ତୁ ବିଶେଷ । ଏହାର ଅନ୍ୟ ନାମ ଶରଙ୍କୁଶା । ହିଂସ୍ରିତ ପ୍ରାଣୀ ରୁରୁ ରୂପ ଧାରଣ କରି ରୌରବ ନରକରେ ଓ ଇହ ଲୋକରେ ହିଂସାକାରୀ ବ୍ୟକ୍ତିଙ୍କୁ କାମୁଡ଼ନ୍ତି । (ହିନ୍ଦୀ ଶବ୍ଦସାଗର)

**ରେଣୁକା**—ଏହାଙ୍କର ଅନ୍ୟ ନାମ କୋଙ୍କଣା । ଏ ବିଦର୍ଭରାଜ ପ୍ରସେନଜିତ୍ ରାଜାଙ୍କ ଦୁହିତା । ଜମଦଗ୍ନି ଋଷିଙ୍କ ସହିତ ଏହାଙ୍କର ବିବାହ ହେବାରୁ ତାଙ୍କ ଔରସରେ ଏହାଙ୍କର ପାଞ୍ଚଗୋଟି ପୁତ୍ର ଜନ୍ମିଥିଲେ । ପରଶୁରାମ ସେମାନଙ୍କ ମଧ୍ୟରେ କନିଷ୍ଠ । ଥରେ ରେଣୁକା ସ୍ନାନାର୍ଥେ ନଦୀକୁ ଯାଇଥିଲେ । ସେଠାରେ ଗନ୍ଧର୍ବରାଜ ଚିତ୍ରରଥଙ୍କର ଅପ୍ସରାମାନଙ୍କ ସହ ଜଳକେଳି ଦର୍ଶନ କରି ଏହାଙ୍କର ଚିତ୍ତ ଚାଞ୍ଚଲ୍ୟ ଉପସ୍ଥିତ ହେଲା । ଏ ସ୍ନାନରୁ ଫେରି ଆସିଲା ପରେ ଜମଦଗ୍ନି ଯୋଗବଳରେ ଏହାଙ୍କର ଚିତ୍ତଚାଞ୍ଚଲ୍ୟ ବିଷୟ ଅବଗତ ହେଲେ ଏବଂ ଏହାଙ୍କୁ ବଧ କରିବା ନିମନ୍ତେ ନିଜର ପୁତ୍ରମାନଙ୍କୁ ଆଦେଶ ଦେଲେ । ଅଗ୍ରଜ ଚାରି ପୁତ୍ର ଏ ଆଦେଶ ପାଳନ କରିବାକୁ ଅସ୍ୱୀକାର କଲେ । କିନ୍ତୁ କନିଷ୍ଠ ପୁତ୍ର ପରଶୁରାମ ପିତାଙ୍କ ଆଦେଶ ଅନୁସାରେ ମାତାଙ୍କୁ ବଧ କଲେ । ତହୁଁ ଜମଦଗ୍ନି ପରଶୁରାମଙ୍କ ପ୍ରତି ସନ୍ତୁଷ୍ଟ ହୋଇ ବର ଦେବାକୁ

ଜନ୍ମବାରୁ ସେ ମାତାଙ୍କର ପୁନର୍ଜୀବନ ଭିକ୍ଷା କଲେ । ତଦନୁସାରେ ରେଣୁକା ଶେଷରେ ପୁଣି ଜୀଇଁ ଉଠିଲେ । ପରେ ପରଶୁରାମ ତପସ୍ୟାର୍ଥେ ଘରୁ ବାହାରି ଯିବାରୁ ଜମଦଗ୍ନି କାର୍ତ୍ତବୀର୍ଯ୍ୟଙ୍କ ଦ୍ୱାରା ହତ ହେଲେ । ପରଶୁରାମ ତପସ୍ୟାରୁ ଫେରିଆସି ମାତାଙ୍କଠାରୁ ଏହି ଦୁଃସମ୍ବାଦ ଶ୍ରବଣ କରିବା ମାତ୍ରେ ଅତ୍ୟନ୍ତ କ୍ରୁଦ୍ଧ ହୋଇଉଠିଲେ ଏବଂ ଏକବିଂଶବାର କ୍ଷତ୍ରିୟ ବଧ କରି ପୃଥିବୀକୁ ନିଃକ୍ଷତ୍ରିୟ କରିବେ ବୋଲି ପ୍ରତିଜ୍ଞା କଲେ । ରେଣୁକା ଏହାଶୁଣି ପ୍ରସନ୍ନ ଚିତ୍ତରେ ପତିଙ୍କ ଚିତାନଳରେ ପ୍ରବେଶ କରି ତନୁ ତ୍ୟାଗ କଲେ ।

(ଭାଷାକୋଷ)

**ରେଣୁକା ତୀର୍ଥ**—ହିନ୍ଦୁମାନଙ୍କର ଏକ ପବିତ୍ର ତୀର୍ଥ । କୃଷ୍ଣସିଂହ ମହାଭାରତ ବନପର୍ବରେ ବର୍ଣ୍ଣିତ ଅଛନ୍ତି—

ରେଣୁକାତୀର୍ଥରେ କରେ ଯେ ଅବଗାହ,
ପାତକ ଛାଡ଼ିଯାଏ ତ୍ୱରି ତାର ଦେହ ।

ହିନ୍ଦୀ ଶବ୍ଦସାଗର କହେ—ସହ୍ୟାଦ୍ରି ପର୍ବତରେ ଏ ତୀର୍ଥ ଅବସ୍ଥିତ ।

**ରେବତ**—ବଳରାମଙ୍କ ଶ୍ୱଶୁର, ରେବତୀଙ୍କ ପିତା । ରେବତ ଆନର୍ତ୍ତ ରାଜାଙ୍କ ପୁତ୍ର ଓ ଶର୍ଯାତିଙ୍କ ନାତି । କୁଶସ୍ଥଳୀ ଏହାଙ୍କର ରାଜଧାନୀ । ଏହାଙ୍କର ରେବତୀ ନାମ୍ନୀ ଏକ ଅପୂର୍ବ ଲାବଣ୍ୟବତୀ କନ୍ୟା ଥିଲେ । ରେବତୀଙ୍କ ବିବାହ କାଳ ଉପସ୍ଥିତ ହୁଅନ୍ତେ ରେବତ କନ୍ୟା ପାଇଁ ବର ଅନ୍ୱେଷଣ କରିବାଲାଗି ବ୍ରହ୍ମାଙ୍କ ପାଖକୁ ଗଲେ ଏବଂ ସେଠାରେ ସାମଗାନ ଶ୍ରବଣରେ ମୁଗ୍ଧ ହୋଇ ବହୁକାଳ ମୁହୂର୍ତ୍ତବତ୍ ଯାପନ କଲେ । ଶେଷରେ ସେଠାରୁ ଫେରି ବ୍ରହ୍ମାଙ୍କ ଉପଦେଶ ଅନୁସାରେ ନିଜ ଦୁହିତା ରେବତୀଙ୍କୁ ବଳରାମଙ୍କ ହସ୍ତରେ ସମର୍ପଣ କରି ତପସ୍ୟାର୍ଥେ ସୁମେରୁ ଶିଖରରେ ଆରୋହଣ କଲେ ଓ ସେଠାରୁ ସ୍ୱଦେହରେ ସ୍ୱର୍ଗଲାଭ କଲେ । (ହରିବଂଶ, ଚରିତାଭିଧାନ, ଭାଷାକୋଷ)

**ରେବତୀ**—(ରେବତ ଦେଖ) ରେବତୀଙ୍କ ଗର୍ଭରୁ ବଳରାମଙ୍କ ଔରସରେ ନିଶଠ ଓ ଉଲ୍ମୁକ ନାମକ ଦୁଇ ପୁତ୍ର ଜନ୍ମିଥିଲେ । ଯଦୁବଂଶ ଧ୍ୱଂସ ପରେ ବଳରାମଙ୍କ ଦେହାନ୍ତର ହେଲା । ରେବତୀ ସ୍ୱାମୀଙ୍କ ଅନୁମୃତା ହେଲେ ।

(ଚରିତାଭିଧାନ, ସୁବଳଚନ୍ଦ୍ର)

**ରୈବତ**—ବିନ୍ଧ୍ୟ ପର୍ବତର ପଶ୍ଚିମ ଦିଗରେ ଥିବା ପର୍ବତ ବିଶେଷ । ଦୈତ୍ୟ ବିଶେଷ ।

**ରୋମକ**—ପ୍ରାଚୀନ ରୋମ ନଗରୀର ନାମ । ପ୍ରାଚୀନ ଗ୍ରୀସ୍ ସାମ୍ରାଜ୍ୟ । ପ୍ରାଚୀନ ରୋମ, ଗ୍ରୀସ୍, ତୁରସ୍କ ଆଦି ଦେଶକୁ ଆର୍ଯ୍ୟମାନେ ରୋମକ ନାମରେ ଡାକୁଥିଲେ । (ଭାଷାକୋଷ)

**ରୋହିଣୀ**—(୧) ଚନ୍ଦ୍ରଙ୍କ ପତ୍ନୀ । ଦକ୍ଷଙ୍କ କନ୍ୟା ଓ ତାଙ୍କ ମଧ୍ୟରେ ପ୍ରଧାନ । (୨) ଶ୍ରୀକୃଷ୍ଣଙ୍କ ପିତା ବସୁଦେବଙ୍କ ଏକ ପତ୍ନୀ । ଦେବକୀଙ୍କ ସହତ୍ରୁଣୀ । ବଳରାମଙ୍କ ମାତା । ବସୁଦେବ କଂସ ଭୟରେ ସପୁତ୍ରା ରୋହିଣୀଙ୍କୁ ମଥୁରାରୁ ନେଇ ନନ୍ଦଘୋଷଙ୍କ ଘରେ ରଖି ଆସିଥିଲେ । ନନ୍ଦ ବସୁଦେବଙ୍କର ପରମ ସଖା ଥିଲେ । କଂସର ମୃତ୍ୟୁ ପର୍ଯ୍ୟନ୍ତ ରୋହିଣୀ ନନ୍ଦଙ୍କବାସରେ ଥିଲେ । ତତ୍ପରେ ବସୁଦେବଙ୍କ ସହିତ ମଥୁରାକୁ ଫେରିଆସି ବାସ କଲେ । ଯଦୁବଂଶ ଧ୍ୱଂସ ପରେ ବସୁଦେବଙ୍କ ମୃତ୍ୟୁ ହେବାରୁ ରୋହିଣୀ ସ୍ୱାମୀଙ୍କ ଅନୁଗମନ କଲେ । (ଭାଷାକୋଷ, ଚରିତାଭିଧାନ)

**ରୋହିଣୀକୁଣ୍ଡ**—ପୁରୀ ବଡ଼ ଦେଉଳ ବେଢ଼ା ମଧ୍ୟରେ ଦେଉଳର ଦକ୍ଷିଣରେ ଥିବା ଗୋଟିଏ କ୍ଷୁଦ୍ର ଜଳକୁଣ୍ଡ । ପୁରାଣରେ କଥିତ ଅଛି ଯେ ଗୋଟିଏ କାକ ଏଥିରେ ସ୍ନାନ କରି ଚତୁର୍ଭୁଜ ହୋଇଥିଲା । ସେ କୁଣ୍ଡଟିର ଦୀର୍ଘ ପ୍ରାୟ ୨ । ୩ ହାତ, ପ୍ରସ୍ଥ ୬ ହାତ ଓ ଗଭୀରତା ୨ ହାତ । ଏଥି ମଧ୍ୟରେ ଗୋଟିଏ ଚାରି ଗୋଡ଼ିଆ କୁଆର ପ୍ରସ୍ତର ମୂର୍ତ୍ତି ରକ୍ଷିତ ହୋଇଛି ଏହା କଳ୍ପବଟ ନାମକ ବଟବୃକ୍ଷର ଉତ୍ତର ପଶ୍ଚିମରେ ଓ ବିମଳାଙ୍କ ମନ୍ଦିରର ସମ୍ମୁଖରେ ଥିବା ସିଂହାର ପଛରେ ଅବସ୍ଥିତ । (ଭାଷାକୋଷ)

**ରୋହିତାଶ୍ୱ**—ଦାନବୀର ମହାରାଜ ହରିଶ୍ଚନ୍ଦ୍ରଙ୍କ ପୁତ୍ର ।

**ରୌରବ**—ନରକ ବିଶେଷ । ଏହି ନରକରେ ଗୋଘ୍ନ, ଭ୍ରୂଣହା, ବ୍ରହ୍ମହା, ସ୍ତ୍ରୀଘାତ ଓ ତୀର୍ଥରେ ଦାନଗ୍ରହଣକାରୀ ପାପୀମାନେ ପଡ଼ି ଦଣ୍ଡ ପାଆନ୍ତି ।

(ଭାଷାକୋଷ)

# ଲ, ଳ

**ଲକ୍ଷ୍ମଣ**—ଅଯୋଧ୍ୟାଧିପତି ଦଶରଥଙ୍କ କନିଷ୍ଠା ରାଣୀ ସୁମିତ୍ରାଙ୍କ ପୁତ୍ର । ରାମଚନ୍ଦ୍ରଙ୍କ ବୈମାତ୍ରେୟ ଭାଇ, ବନବାସର ସହଚର । ପୁତ୍ରେଷ୍ଟି ଯଜ୍ଞର ଚରୁକୁ ଦୁଇଭାଗ କରି ଦଶରଥ କୌଶଲ୍ୟା ଓ କୈକେୟୀଙ୍କୁ ଦେଲେ । ସେ ଦୁଇ ରାଣୀ ଆପଣା ଆପଣା ଭାଗରୁ ଗୋଟିଏ ଲେଖାଏଁ ଅଂଶ ତୃତୀୟା ରାଣୀ ସୁମିତ୍ରାଙ୍କୁ ଦେଲେ । ତହିଁ ଫଳରେ ସୁମିତ୍ରାଙ୍କ ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ନାମରେ ଦୁଇଟି ଯମଜପୁତ୍ର ଜନ୍ମିଲେ । ବାଲ୍ୟକାଳରୁ ଲକ୍ଷ୍ମଣ ରାମଚନ୍ଦ୍ରଙ୍କର ଆଜ୍ଞାବହ ଓ ଧନୁର୍ବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ । ପରେ ଏ ମହାବୀର ଓ ରଣକୁଶଳୀ ରୂପେ ଖ୍ୟାତିଲାଭ କଲେ । ୧୪ ବର୍ଷ (କାହା କାହାର ମତରେ ବାର ବର୍ଷ) ସମୟରେ ଏ ରାମଙ୍କ ସଙ୍ଗେ ବିଶ୍ୱାମିତ୍ର ଋଷିଙ୍କ ଆଶ୍ରମକୁ ଯାଇଥିଲେ । ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ବଳା ଓ ଏହାଙ୍କୁ ଅତିବଳା ନାମକ ଅସ୍ତ୍ରବିଦ୍ୟାରେ ଦୀକ୍ଷିତ କଲେ । ମାତ୍ର ଅଧ୍ୟାତ୍ମ ରାମାୟଣ ଆଦିକାଣ୍ଡ ଚତୁର୍ଥ ଅଧ୍ୟାୟରେ ଦୁଇଟିଯାକ ବିଦ୍ୟା (ବଳା ଓ ଅତିବଳା) ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ଦେବାର ସୁନ୍ଦର ଏକ ବର୍ଣ୍ଣନା ଅଛି । ଯଥା—

ଗୃହୀତ୍ୱା ଚାପତୂଣୀରବାଣଖଡ୍ଗଧରୌ ଯଯୌ
କଞ୍ଚିଦ୍ଦେଶମତିକ୍ରମ୍ୟ ରାମମାହୂୟ ଭକ୍ତିତଃ ।
ଦଦୌ ବଳାଞ୍ଚାତିବଳାଂ ବିଦ୍ୟେ ଦ୍ୱେ ଦେବନିର୍ମିତେ
ଯୟୋର୍ଗ୍ରହଣମାତ୍ରେଣ କ୍ଷୁତ୍ପିପାସା ନ ଜାୟତେ ।

ଅର୍ଥାତ୍ ରାମଚନ୍ଦ୍ର ଚାପତୂଣୀର ବାଣ ଓ ଖଡ୍ଗ ଇତ୍ୟାଦି ଧରି ଗଲେ । କେତେବାଟ ଗଲା ପରେ ବିଶ୍ୱାମିତ୍ର ତାଙ୍କୁ ପାଖକୁ ଡାକି ବଳା, ଅତିବଳା ନାମକ ଦୁଇ ଦେବବିଦ୍ୟା ପ୍ରଦାନ କଲେ । ଯାହା ଗ୍ରହଣ କଲେ କ୍ଷୁଧାପିପାସା ବାଧା ହୁଏ ନାହିଁ ।

ବିଶ୍ୱାମିତ୍ରଙ୍କ ତପୋବନରେ ରାମ ଓ ଲକ୍ଷ୍ମଣ ତାଡ଼କା ପ୍ରମୁଖ ଅନେକ ରାକ୍ଷସଙ୍କୁ ବଧ କରି, ସେଠାରୁ ମିଥିଳାର ଜନକରାଜାଙ୍କ ପାଳିତା କନ୍ୟା ସୀତାଙ୍କ ସ୍ୱୟମ୍ବର ସଭାକୁ ଗଲେ । ସେଠାରେ ରାମଚନ୍ଦ୍ର ଶିବଧନୁ ଭାଙ୍ଗି ସୀତାଙ୍କୁ ବିବାହ କଲେ ଓ ଲକ୍ଷ୍ମଣ ଊର୍ମିଳା ନାମ୍ନୀ ଜନକଙ୍କ କନିଷ୍ଠା କନ୍ୟାକୁ

ବିବାହ କଲେ। ତତ୍ପରେ ଅଯୋଧ୍ୟାକୁ ଫେରିଆସି ୧୨ ବର୍ଷ କାଳ ସୁଖରେ ରହିବା ପରେ ବିମାତାଙ୍କ ଚକ୍ରାନ୍ତରେ ୧୪ ବର୍ଷ ବନବାସ କରିବାକୁ ବାହାରିବା ସମୟରେ ତାଙ୍କ ସଙ୍ଗେ ସୀତା ଓ ଲକ୍ଷ୍ମଣ ବନଗାମୀ ହେଲେ । ଏହି ବନବାସ କାଳରେ ଲକ୍ଷ୍ମଣ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କରି ବିନିଦ୍ର ରହି ରାମଚନ୍ଦ୍ର ଓ ସୀତାଙ୍କ ସେବା କରୁଥାଆନ୍ତି ଓ ସେମାନଙ୍କୁ ଜଗିଥାଆନ୍ତି । ପଞ୍ଚବଟୀରେ ଥିବା ଅବସ୍ଥାରେ ରାବଣର ଭଉଣୀ ସୂର୍ପଣଖା ରାମଙ୍କ ପ୍ରଣୟାଭିଳାଷିଣୀ ହୋଇ ସୀତାଙ୍କୁ ଗିଳି ଦେବାକୁ ଉଦ୍ୟତା ହେବାରୁ ଲକ୍ଷ୍ମଣ ତାହାର ନାକ କାନ କାଟି ପକାଇଲେ ଓ ତାହାର ପ୍ରରୋଚନାରେ ରାବଣ ଆସି, ମାରୀଚ ନାମକ ରାକ୍ଷସକୁ ମାୟାରେ ସ୍ୱର୍ଣ୍ଣମୃଗ କରାଇ ସୀତାଙ୍କୁ ପ୍ରଲୋଭିତା କଲା। ସୀତାଙ୍କ ଅନୁରୋଧକ୍ରମେ ରାମଚନ୍ଦ୍ର ଉକ୍ତ ମାୟାମୃଗକୁ ମାରିବାକୁ ଗଲେ ଓ ଲକ୍ଷ୍ମଣଙ୍କୁ ସୀତାଙ୍କ ନିକଟରେ ଜଗାଇଦେଇ ଗଲେ । ଏହି ସମୟରେ ଉକ୍ତ ମାୟାମୃଗ ରାମଙ୍କ ଗଳାର ସ୍ୱରକୁ ଅନୁକରଣ କରି ହାହି ଲକ୍ଷ୍ମଣ (ହେ ଲକ୍ଷ୍ମଣ, ମୋତେ ରକ୍ଷା କର) ବୋଲି ଡାକିବାରୁ, ସେହି ଡାକକୁ ସୀତା ରାମଚନ୍ଦ୍ରଙ୍କର ଆର୍ତ୍ତସ୍ୱର ବୋଲି ବିଚାରି, ଲକ୍ଷ୍ମଣଙ୍କୁ ତାଙ୍କ ଅନିଚ୍ଛା ଓ ନିଷେଧ ସତ୍ତ୍ୱେ ରାମଚନ୍ଦ୍ରଙ୍କ ଅନ୍ୱେଷଣ କରିବାକୁ ଅରଣ୍ୟକୁ ପଠାଇଲେ। ଏହି ଅବସରରେ ସୀତାଙ୍କୁ ରକ୍ଷକହୀନ ଦେଖି ରାବଣ ଆସି ଛଳ ଓ ବଳପୂର୍ବକ ସୀତାଙ୍କୁ ହରି ନେଲା ।

ରାମ ଓ ଲକ୍ଷ୍ମଣ ଉକ୍ତ ମୃଗକୁ ମାରି ଫେରି ଆସି ସୀତାଙ୍କୁ ନ ପାଇ ଅନେକ ଖୋଜି ଖୋଜି ଜଟାୟୁ ନାମକ ଗୃଧ୍ରଠାରୁ ସୀତାଙ୍କୁ ରାବଣ ନେଇ ଯାଇଥିବା ସମ୍ବାଦ ପାଇଲେ। ପରେ ରାମଚନ୍ଦ୍ର ବାନରରାଜ ସୁଗ୍ରୀବଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କଲେ । ରାମ ଓ ଲକ୍ଷ୍ମଣ କପି ଓ ଭଲ୍ଲୁକମାନଙ୍କ ଦ୍ୱାରା ସମୁଦ୍ରକୁ ରାମେଶ୍ୱରଠାରେ ବନ୍ଧାଇ କପି ସୈନ୍ୟସହ ଲଙ୍କା ଆକ୍ରମଣ କଲେ। ଏ ଯୁଦ୍ଧରେ ରାବଣ ପୁଅ ଇନ୍ଦ୍ରଜିତ ପ୍ରଥମେ ଲକ୍ଷ୍ମଣଙ୍କୁ ନାଗ ପାଶରେ ବନ୍ଧନ କଲା। ଶେଷରେ ଲକ୍ଷ୍ମଣ ଇନ୍ଦ୍ରଜିତକୁ ବଧ କରିବାରୁ ରାବଣ ଶକ୍ତିଭେଦ କରି ଲକ୍ଷ୍ମଣଙ୍କୁ ସଂଜ୍ଞାହୀନ କଲା। ରାମଚନ୍ଦ୍ର ରାବଣକୁ ବଧ କରି ସୀତାଙ୍କୁ ଉଦ୍ଧାର କଲେ ଓ ସୀତା ଅଗ୍ନି ପରୀକ୍ଷା ଦ୍ୱାରା ନିଜର ସତୀତ୍ୱର ପ୍ରମାଣ ଦେଲେ ଓ ରାମ ଲକ୍ଷ୍ମଣ ସଙ୍ଗେ ଅଯୋଧ୍ୟାକୁ ଫେରିଲେ । କେତେକାଳ ପରେ ସୀତାଙ୍କ ଲଙ୍କାବାସ ଯୋଗୁଁ ତାଙ୍କ ସତୀତ୍ୱ ସମ୍ବନ୍ଧେ ପ୍ରଜାମାନେ ସନ୍ଦେହ କରୁଥିବା ଜନରବ ଶୁଣି ପ୍ରଜାରଞ୍ଜନାର୍ଥେ ସୀତାଙ୍କୁ ଅରଣ୍ୟରେ ଛାଡିଦେଇ ଆସିବାକୁ ରାମ, ଲକ୍ଷ୍ମଣଙ୍କୁ ଆଦେଶ ଦେଲେ। ବାଲ୍ମୀକି ମୁନିଙ୍କ ତପୋବନରେ ସୀତାଙ୍କ ଗର୍ଭରୁ ଲବ ଓ କୁଶ ନାମକ ଦୁଇଟି ଯମଜପୁତ୍ର ଜାତ ହେଲେ। କେତେକାଳ

ପରେ ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞର ଆୟୋଜନ କରି ମୁକ୍ତ ଯଜ୍ଞାଶ୍ୱକୁ ଜଗିବା ଭାର ଲକ୍ଷ୍ମଣଙ୍କ ଉପରେ ଅର୍ପଣ କଲେ । ସେହି ଅଶ୍ୱକୁ ଲବ, କୁଶ ଧରି ରଖିବାରୁ ଲକ୍ଷ୍ମଣଙ୍କ ସଙ୍ଗେ ଲବ କୁଶଙ୍କର ବିବାଦ ହେଲା । ପରେ ବାଲ୍ମୀକି ଆସି ଏ ବାଳକଦ୍ୱୟଙ୍କୁ ବୋଧସୋଧ କରାଇ ଯଜ୍ଞାଶ୍ୱକୁ ମୁକ୍ତ କରିଦେଲେ । ତତ୍ପରେ ସୀତାଙ୍କୁ ଆହୁରି ଥରେ ନିଜର ସତୀତ୍ୱ ପରୀକ୍ଷା ପାଇଁ ଅଗ୍ନିପରୀକ୍ଷା ଦେବା ନିମନ୍ତେ ରାମଚନ୍ଦ୍ର କହିବାରୁ ସୀତା ଏଥିରେ ଅପମାନିତା ହେଲେ ଓ ସୀତାଙ୍କ ପ୍ରାର୍ଥନାକ୍ରମେ ପୃଥିବୀ ଦୁଇଫାଳ ହୋଇ ଫାଟି ଗଲା ଓ ସୀତା ଭୂଗର୍ଭରେ ଲୀନା ହେଲେ । ଏହା ପରେ ରାମଚନ୍ଦ୍ରଙ୍କ ଆଦେଶରେ ଲକ୍ଷ୍ମଣଙ୍କର ଦୁଇ ପୁତ୍ର ଅଙ୍ଗଦ ଓ ଚନ୍ଦ୍ରକେତୁ ଦୁଇଟି ସ୍ୱାଧୀନ ରାଜ୍ୟର ରାଜା ହେଲେ । ଇତି ମଧ୍ୟରେ ଦିନେ ରାମଚନ୍ଦ୍ର କାଳପୁରୁଷ ସଙ୍ଗେ ନିର୍ଜନ କଥାବାର୍ତ୍ତା ହେଉଥିବା ସମୟରେ ଯେଉଁ ଲୋକ ସେଠାରେ ଯାଇଁ ପହଞ୍ଚିବ ତାଙ୍କୁ ରାମଚନ୍ଦ୍ର ତ୍ୟାଗ କରିବେ ବୋଲି କାଳପୁରୁଷ ରାମଙ୍କୁ ସତ୍ୟ କରାଇଥିଲେ । ଏହି ସମୟରେ ଦୁର୍ବାସା ଉପସ୍ଥିତ ହୋଇ ରାମଚନ୍ଦ୍ରଙ୍କ ସଙ୍ଗେ ଦେଖା କରିବାକୁ କହିବାରୁ ଲକ୍ଷ୍ମଣ ତାଙ୍କୁ ପ୍ରଥମେ ମନା କଲେ । ପରେ ଋଷି ଅଭିଶାପ ଦେବାକୁ ଉଦ୍ୟତ ହେବାରୁ ଅଗତ୍ୟା ଲକ୍ଷ୍ମଣ ଯାଇ ରାମଚନ୍ଦ୍ରଙ୍କୁ ଦୁର୍ବାସା ଆଗମନ ବିଷୟ ଜଣାଇଲେ । ରାମଚନ୍ଦ୍ର ସତ୍ୟ ପାଳନ କରି ଲକ୍ଷ୍ମଣଙ୍କୁ ତ୍ୟାଗ କଲେ । ଲକ୍ଷ୍ମଣ ଅଯୋଧ୍ୟା ପରିତ୍ୟାଗ କରି ସରଯୂ ନଦୀରେ ଯୋଗାବଲମ୍ବନ ପୂର୍ବକ ତନୁ ତ୍ୟାଗ କଲେ । ରାମାୟଣରେ ବର୍ଣ୍ଣିତ ଲକ୍ଷ୍ମଣଙ୍କର ଭ୍ରାତୃଭକ୍ତି ଅତୁଳନୀୟ ଓ ଆଜି ପର୍ଯ୍ୟନ୍ତ ଭ୍ରାତୃଭକ୍ତିର ଆଦର୍ଶରୂପେ ଭାରତରେ କୀର୍ତ୍ତିତ ।

(ଭାଷାକୋଷ)

(୨) ଦୁର୍ଯୋଧନଙ୍କ ଏକ ପୁତ୍ର । ମହାଭାରତ ଯୁଦ୍ଧ ତ୍ରୟୋଦଶ ଦିବସରେ ଏ ଅର୍ଜୁନତନୟ ଅଭିମନ୍ୟୁଙ୍କ ଦ୍ୱାରା ହତ ହୋଇଥିଲେ ।

(ଭାଷାକୋଷ)

**ଲକ୍ଷ୍ମଣା**—ଦୁର୍ଯୋଧନଙ୍କ କନ୍ୟା । ଏହାଙ୍କ ସ୍ୱୟମ୍ବର କାଳରେ କୃଷ୍ଣତନୟ ଶାମ୍ବ ଏହାଙ୍କୁ ହରଣ କରିଥିଲେ, କିନ୍ତୁ କୌରବମାନଙ୍କ ଦ୍ୱାରା ଶାମ୍ବ ପରାଜିତ ଓ ବନ୍ଦୀ ହେଲେ ।

**ଲକ୍ଷ୍ମୀ**—ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରକୃତି ଖଣ୍ଡରେ ଲକ୍ଷ୍ମୀଙ୍କ ବିଷୟରେ ଯେଉଁ ମନୋହର ବର୍ଣ୍ଣନା କରାଯାଇଛି, ତାହା ନିମ୍ନରେ ଉଦ୍ଧାର କରାଗଲା ।

ସୃଷ୍ଟି ପୂର୍ବେ ରାସମଣ୍ଡଳସ୍ଥ ପରମାତ୍ମା ଶ୍ରୀକୃଷ୍ଣଙ୍କ ବାମ ଭାଗରୁ ଲକ୍ଷ୍ମୀ ଉତ୍ପନ୍ନ ହୋଇଥିଲେ । ଏହି ଦେବୀ ଅପୂର୍ବ ରୂପଲାବଣ୍ୟସମ୍ପନ୍ନା । ଏହାଙ୍କର

କଟି କ୍ଷୀଣ, ସ୍ତନଦ୍ୱୟ କଠିନ ଓ ନିତମ୍ବ ବିଶାଳ ଓ ସର୍ବଦା ଯୌବନସମ୍ପନ୍ନା । ଏହାଙ୍କୁ ଦେଖିଲେ ଦ୍ୱାଦଶ ବର୍ଷୀୟା ବୋଲି ବୋଧ ହୁଏ । ଏହି ଦେବୀ ଉତ୍ପନ୍ନ ହୋଇଥିଲେ ଈଶ୍ୱରଙ୍କ ଇଚ୍ଛାରେ ଦୁଇଟି ରୂପରେ ବିଭକ୍ତ ହୋଇ । ଏ ଦୁଇଟିଯାକ ମୂର୍ତ୍ତି ବୟସ, ଆକାର, ଭୂଷଣ, ପ୍ରଭା ଓ ସ୍ୱର ମାଧୁର୍ଯ୍ୟରେ ସମାନ । ଜଣକର ନାମ ଲକ୍ଷ୍ମୀ, ଅନ୍ୟଟିର ନାମ ରାଧିକା । ଲକ୍ଷ୍ମୀ ଶ୍ରୀକୃଷ୍ଣଙ୍କ ବାମାଂଶରୁ ଓ ରାଧିକା ଭଗବାନଙ୍କ ଦକ୍ଷିଣାଂଶରୁ ଜାତ । ଶ୍ରୀକୃଷ୍ଣ ଏ ଦୁଇ ମୂର୍ତ୍ତିର ଅଭିଳାଷ ପୂର୍ତ୍ତି କରିବା ପାଇଁ ଦକ୍ଷିଣାଂଶଜ ଦ୍ୱିଭୁଜମୂର୍ତ୍ତି ରାଧିକାଙ୍କୁ ଏବଂ ବାମାଂଶଜ ଚତୁର୍ଭୁଜ ମୂର୍ତ୍ତି ଲକ୍ଷ୍ମୀଙ୍କୁ ଗ୍ରହଣ କରିଥିଲେ । ଏହିରୂପେ ଦ୍ୱିଭୁଜ ଶ୍ରୀକୃଷ୍ଣ ରାଧିକାକାନ୍ତ ଏବଂ ଚତୁର୍ଭୁଜ ନାରାୟଣ ଲକ୍ଷ୍ମୀକାନ୍ତ ରୂପେ ପ୍ରସିଦ୍ଧ ହେଲେ । ଶ୍ରୀକୃଷ୍ଣ, ରାଧିକା ଗୋପ ଗୋପିକା ପରିବୃତ୍ତ ହୋଇ ଗୋଲୋକ ଧାମରେ ରହିଲେ । କିନ୍ତୁ ଚତୁର୍ଭୁଜ ନାରାୟଣ ଲକ୍ଷ୍ମୀଙ୍କ ସହିତ ବୈକୁଣ୍ଠକୁ ଗମନ କଲେ । କୃଷ୍ଣ ଓ ନାରାୟଣ ଉଭୟେ ସର୍ବାଂଶରେ ସମତୁଲ୍ୟ । ଲକ୍ଷ୍ମୀ ଅପରୂପରେ ଦେବୀଗଣଙ୍କ ମଧ୍ୟରେ ଶ୍ରେଷ୍ଠା ବୋଲି ମହାଲକ୍ଷ୍ମୀ ନାମରେ ଅଭିହିତ ହୁଅନ୍ତି । ବୈକୁଣ୍ଠଧାମ ତାଙ୍କର ଆବାସ ବୋଲି ନିର୍ଣ୍ଣୀତ ହେଲା । ସେ ନାରାୟଣଙ୍କୁ ପ୍ରେମରେ ଆବଦ୍ଧ କରି ସକଳ ରମଣୀମାନଙ୍କ ମଧ୍ୟରେ ପ୍ରଧାନ ବୋଲି ପରିଗଣିତ ହେଲେ । ଏହି ଦେବୀ ସ୍ୱର୍ଗରେ ଇନ୍ଦ୍ରଙ୍କ ସମ୍ପତ୍ତି-ରୂପେ ସ୍ୱର୍ଗଲକ୍ଷ୍ମୀ, ପାତାଳ ଓ ମର୍ତ୍ତ୍ୟରେ ରାଜନମଣ୍ଡଳୀମାନଙ୍କ ସମୀପରେ ରାଜଲକ୍ଷ୍ମୀ, ଗୃହସ୍ଥମାନଙ୍କ ଗୃହରେ ଗୃହଲକ୍ଷ୍ମୀ, ଗୋଗଣର ପ୍ରସୂତିରୂପେ ସୁରଭି, କ୍ଷୀରୋଦ ସାଗରଙ୍କ କନ୍ୟାରୂପେ ପଦ୍ମିନୀ, ଶ୍ରୀରୂପିଣୀ ଏବଂ ଚନ୍ଦ୍ରମଣ୍ଡଳରେ, ବିଭୂଷଣରେ, ରତ୍ନରେ, ଫଳରେ, ରାଜରାଣୀରେ, ସମସ୍ତ ଶସ୍ୟରେ, ବସ୍ତ୍ରରେ, ଦେବପ୍ରତିମାରେ, ମଙ୍ଗଳ ଘଟରେ, ହୀରକ, ଚନ୍ଦନ ଓ ନୂତନ ମେଘର ଶୋଭାରୂପେ ଅବସ୍ଥାନ କରିଥିଲେ । ଲକ୍ଷ୍ମୀଦେବୀହିଁ ଏକମାତ୍ର ଶୋଭାର ଆଧାର । ଯେଉଁ ସ୍ଥାନରେ ଲକ୍ଷ୍ମୀ ନାହାନ୍ତି ସେ ସ୍ଥାନ ଶ୍ରୀହୀନ ଓ ଅଶୋଭନୀୟ ।

ଏକଦା ମହର୍ଷି ଦୁର୍ବାସା ବୈକୁଣ୍ଠ ଧାମରୁ କୈଳାସ ଶିଖରକୁ ଗମନ କଲେ । ଦେବରାଜ ଇନ୍ଦ୍ର ତାଙ୍କୁ ଦେଖି ଭକ୍ତିର ସହିତ ପ୍ରଣାମ କଲେ । ଦୁର୍ବାସା ପ୍ରୀତ ହୋଇ ଦେବରାଜଙ୍କୁ ଗୋଟିଏ ପାରିଜାତ ପୁଷ୍ପହାର ଦେଲେ । ଐଶ୍ୱର୍ଯ୍ୟ ମଦମତ୍ତ ଇନ୍ଦ୍ର ଏହି ମାଳଟି ନିଜେ ବ୍ୟବହାର ନକରି ତାଙ୍କ ବାହାନ ଐରାବତ ଗଜର ମସ୍ତକରେ ସ୍ଥାପନ କଲେ । ଗଜ ତ ମୂର୍ଖ, ସେ ଏହି ମାଳାଟିକୁ ଭୂତଳରେ ନିକ୍ଷେପ କରିଦେଲା । ଦୁର୍ବାସା ତ କ୍ରୋଧର ଏକ

ଅବତାର, ସେଥିରେ ପୁଣି ଇନ୍ଦ୍ରଙ୍କ ଦୁର୍ବ୍ୟବହାର, ତାଙ୍କର କ୍ରୋଧର ପରସୀମା ରହିଲା ନାହିଁ । ସେ ରକ୍ତାକ୍ତ ନେତ୍ରରେ ଇନ୍ଦ୍ରଙ୍କୁ ଅଭିଶାପ ଦେଲେ – ତୁମ୍ଭର ରାଜ୍ୟ ଅଚିରେ ଲକ୍ଷ୍ମୀଭ୍ରଷ୍ଟ ହେବ । ପୁଣି ଏ ପୁଷ୍ପ ଯାହାର ମସ୍ତକରେ ନ୍ୟସ୍ତ କରାଯାଇଅଛି ସେ ସର୍ବାଗ୍ରେ ପୂଜିତ ହେବ । ଶିବଙ୍କ ଶିଶୁ ମସ୍ତକ ଛିନ୍ନ ହେଲେ ଏହି ହସ୍ତୀ ମୁଣ୍ଡ ସେଥିରେ ଯୋଜିତ ହେବ ।

ମହର୍ଷିଙ୍କ ଅଭିଶାପରେ ସ୍ୱର୍ଗ ଶ୍ରୀଭ୍ରଷ୍ଟ ହେଲା । ସ୍ୱର୍ଗଲକ୍ଷ୍ମୀ କୁପିତା ହୋଇ ବୈକୁଣ୍ଠକୁ ଯାଇ ମହାଲକ୍ଷ୍ମୀଙ୍କ ଅଙ୍ଗରେ ଅନ୍ତର୍ହିତା ହେଲେ । ଇନ୍ଦ୍ରାଦି ଦେବତାମାନେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ବ୍ରହ୍ମା ଇନ୍ଦ୍ରାଦି ଦେବତା-ମାନଙ୍କ ସହିତ ଲକ୍ଷ୍ମୀନାରାୟଣଙ୍କ ନିବାସ ବୈକୁଣ୍ଠ ଧାମକୁ ଗମନ କଲେ । ବ୍ରହ୍ମା ବିଷ୍ଣୁଙ୍କ ସମୀପରେ ଦୁର୍ବାସାଙ୍କ ଶାପ ବୃତ୍ତାନ୍ତ ବର୍ଣ୍ଣନା କଲେ । ବିଷ୍ଣୁ ପୁନର୍ବାର ଲକ୍ଷ୍ମୀ ପ୍ରଦାନର ଆଶା ଦେଇ କହିଲେ—ହେ ଦେବବୃନ୍ଦ, ଆପଣମାନେ କରାଣ ହୁଅନ୍ତୁ ନାହିଁ । ମୁଁ ବର୍ତ୍ତମାନ ଆପଣମାନଙ୍କ ସ୍ୱର୍ଗଲକ୍ଷ୍ମୀଙ୍କୁ ଫେରାଇ ଦେବାକୁ ସ୍ୱୀକୃତ ହେଲି । ମାତ୍ର ଲକ୍ଷ୍ମୀ କିପରି ସ୍ଥାନରେ, କିପରି ଅବସ୍ଥାରେ ଅବସ୍ଥାନ କରିବେ ସେ ବିଷୟରେ ଆପଣମାନଙ୍କୁ ଉପଦେଶ ଦେଉଛି ଶୁଣନ୍ତୁ । "ଯେଉଁ ସ୍ଥାନରେ ଶଙ୍ଖାଦି ବାଦ୍ୟ, ତୁଳସୀ ଜଳରେ ଶାଳଗ୍ରାମ ଶିଳାର ଅର୍ଚ୍ଚନା ଏବଂ ଭୂସୁର ବ୍ରାହ୍ମଣମାନଙ୍କୁ ଭୋଜନ ଦିଆ ନହୁଏ, ସେ ସ୍ଥାନରେ ଲକ୍ଷ୍ମୀ ଅବସ୍ଥାନ କରନ୍ତି ନାହିଁ । ଯେଉଁଠାରେ ମୋର ବା ମୋ ଭକ୍ତମାନଙ୍କର ନିନ୍ଦା ହୁଏ, ଲକ୍ଷ୍ମୀଦେବୀ ମହାକ୍ରୋଧରେ ସେ ସ୍ଥାନ ପରିତ୍ୟାଗ କରନ୍ତି । ଯେଉଁ ମୂର୍ଖ ମୋ ପ୍ରତି ଭକ୍ତିହୀନ ହୋଇ ହରିବାସର ଏକାଦଶୀ ତିଥିରେ ଏବଂ ମୋ ଜନ୍ମ ଦିବସରେ ଭୋଜନ କରେ, ତା ଗୃହରୁ ମହାଲକ୍ଷ୍ମୀ ପଳାୟନ କରନ୍ତି । ଯେ ବ୍ୟକ୍ତି ପଣ ଗ୍ରହଣ କରି ମୋର ନାମ ବିକ୍ରୟ କରେ, ପଣ ଗ୍ରହଣ କରି କନ୍ୟା ବିକ୍ରୟ କରେ ଏବଂ ଯଥା ସମୟରେ ଉପସ୍ଥିତ ଅତିଥିକୁ ସେବା ପୂଜା କରେ ନାହିଁ ମୋର ପ୍ରିୟତମା ଲକ୍ଷ୍ମୀ ତା ଗୃହ ବର୍ଜନ କରିଥାନ୍ତି । ଯେଉଁ ଲୋକ ବ୍ରାହ୍ମଣ ହୋଇ ଦାରିଦ୍ର୍ୟ ପ୍ରଯୁକ୍ତ ଅବସ୍ଥାରେ ଶୂଦ୍ରର ଶବ ଦହନ କରେ, କମଳାଳୟା କ୍ରୋଧପୂର୍ବକ ତାହାର ଗୃହ ତ୍ୟାଗ କରିଥାନ୍ତି । ଯେ ବ୍ରାହ୍ମଣ ହୋଇ ଯବନର ପୂଜା କରେ କିମ୍ବା ଦେବମୂର୍ତ୍ତିଙ୍କ ପୂଜା କରି ଅର୍ଥୋପାର୍ଜନ କରିଥାଏ, ଅଥବା ଶୂଦ୍ରର ପୌରୋହିତ୍ୟ କାର୍ଯ୍ୟ କରେ ତାହାର ଜଳସ୍ପର୍ଶ ଭୟରେ ଲକ୍ଷ୍ମୀ ସେମାନଙ୍କର ଗୃହ ତ୍ୟାଗ କରନ୍ତି । ବ୍ରାହ୍ମଣ ହୋଇ ଯେ ଶୂଦ୍ରମାନଙ୍କର ସୂପକାର କାର୍ଯ୍ୟ କରେ ଓ ହଳ ତୁଳାଏ ତାହାଠାରୁ ଜଳପାନ ଭୟରେ ଲକ୍ଷ୍ମୀ ତାହାକୁ ପରିବର୍ଜନ କରନ୍ତି । ଯେଉଁ

ବ୍ରାହ୍ମଣ ବିଶ୍ୱାସଘାତକ, ମିତ୍ରହନ୍ତା, ନରଘାତୀ, କୃତଘ୍ନ ବା ଅଗମ୍ୟ ଗମନକାରୀ, ଲକ୍ଷ୍ମୀ ତାହାର ଗୃହ ତ୍ୟାଗ କରନ୍ତି । ଯେଉଁ ବ୍ରାହ୍ମଣ ବ୍ରତ ଉପବାସ ସନ୍ଧ୍ୟା ବିରହିତ ଏବଂ ଅଶୁଚି ଅବସ୍ଥାରେ କାଳ କଟାଏ ପୁଣି ହରି ଭକ୍ତିବିହୀନ ହୁଏ ଲକ୍ଷ୍ମୀ ତାହାର ଗୃହରେ ରହନ୍ତି ନାହିଁ । ଯେଉଁ ସ୍ଥାନରେ ଶଙ୍ଖଧ୍ୱନି, ତୁଳସୀ ଦ୍ୱାରା ଶାଳଗ୍ରାମ ଆରାଧନା, ଶିବପୂଜା, ଶୁଭଙ୍କର ଶିବନାମ କୀର୍ତ୍ତନ ଏବଂ ଶୃଗୋନ ହୁଏ ସେହି ସ୍ଥାନ ଲକ୍ଷ୍ମୀ ନିବାସର ଏକାନ୍ତ ଯୋଗ୍ୟ ।

ଶ୍ରୀକୃଷ୍ଣ ଦେବତାମାନଙ୍କୁ ଏହି କଥା କହି ନିଜ ପ୍ରିୟା ଲକ୍ଷ୍ମୀଙ୍କ ଏକ ଅଂଶ କ୍ଷୀରୋଦ ସାଗରରେ ଜନ୍ମ ହେବା ପାଇଁ ନିର୍ଦ୍ଦେଶ ଦେଲେ । ବ୍ରହ୍ମାଦି ଦେବତାମାନେ ସମୁଦ୍ରମନ୍ଥନ କରି ଲକ୍ଷ୍ମୀଙ୍କୁ ପୁନର୍ବାର ଲାଭ କରି ଆନନ୍ଦିତ ହେଲେ । ଏହି ମନ୍ଥନରେ ମନ୍ଦରାଚଳ ମନ୍ଥନଦଣ୍ଡ, କୂର୍ମଦେବ ପାତ୍ର, ଅନନ୍ତନାଗ ମନ୍ଥନରଜ୍ଜୁ ହୋଇଥିଲେ । ଏହି ମନ୍ଥନ ଫଳରେ ଧନ୍ୱନ୍ତରି, ସୁରା, ଉଚ୍ଚୈଃଶ୍ରବା ଅଶ୍ୱ, ଐରାବତହସ୍ତୀ, ସୁଦର୍ଶନଚକ୍ର ଏବଂ ଲକ୍ଷ୍ମୀ ଉଦ୍ଭବ ହେଲେ । ବ୍ରହ୍ମା ଶିବାଦି ଦେବତାମାନଙ୍କ ଦ୍ୱାରା ଲକ୍ଷ୍ମୀ ବନ୍ଦିତା ଓ ପୂଜିତା ହୋଇ ବ୍ରହ୍ମଶାପମୋଚନ ନିମିତ୍ତ ଦେବତାମାନଙ୍କ ଗୃହ ପ୍ରତି ଦୃଷ୍ଟିପାତ କଲେ । ଲକ୍ଷ୍ମୀ ସନ୍ତୁଷ୍ଟା ହୋଇ ଦେବତାମାନଙ୍କୁ ଅଭୟ ଦେଲେ ଓ ସେମାନେ ପୁନର୍ବାର ତାହାଙ୍କୁ ପ୍ରାପ୍ତ ହୋଇ ଆନନ୍ଦରେ ରହିଲେ ।

ନାରାୟଣଙ୍କ ଭିନ୍ନ ଭିନ୍ନ ଅବତାରରେ ଏହି ଲକ୍ଷ୍ମୀ ଭିନ୍ନ ଭିନ୍ନ ରୂପେ ଜନ୍ମଗ୍ରହଣ କରି ବିଷ୍ଣୁଙ୍କ ମନୋହାରିଣୀ ହୋଇଥାନ୍ତି ।

**ଲଙ୍କା** —ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଲଙ୍କା ବିଷୟରେ ଯେଉଁ ସନ୍ଦର୍ଭ ଦିଆଯାଇଛି, ତାହା ବାଲ୍ମୀକି ରାମାୟଣ ଯୁଦ୍ଧ କାଣ୍ଡରୁ ସଂଗୃହୀତ । ଏଠାରେ ସେହି ନିର୍ଣ୍ଣିଷ୍ଟି ଉଦ୍ଧାର କରାଯାଉଛି ।

ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ଲଙ୍କା, ଲବଣସମୁଦ୍ର ବେଷ୍ଟିତ ତ୍ରିକୂଟ ପର୍ବତର ଉପରିସ୍ଥିତ ବିଶ୍ୱକର୍ମା ନିର୍ମିତ ନଗର । ଏହା ଦୀର୍ଘରେ ୨୦ ଯୋଜନ (୮୦ କୋଶ) ପ୍ରସ୍ଥରେ ଦଶ ଯୋଜନ (୪୦ କୋଶ) ଓ ସ୍ୱର୍ଣ୍ଣପ୍ରାଚୀର ବେଷ୍ଟିତା ଏହି ପ୍ରାଚୀରର ଚାରିପାଖେ କୁମ୍ଭୀରପୂର୍ଣ୍ଣ ପରିଖା; ନଗରର ଚାରି ପାଖରେ ଚାରିଗୋଟି ସ୍ୱର୍ଣ୍ଣ ଦ୍ୱାର; ପ୍ରତି ଦ୍ୱାରରେ ପ୍ରଶସ୍ତ ଯନ୍ତ୍ର ସେତୁ (Drawbridge) ଥିଲା । ଋଷିମାନେ "ପୁଷ୍ପେଷୁ ଚମ୍ପା, ନଗରୀଷୁ ଲଙ୍କା, ନାରୀଷୁ ରମ୍ଭା, ପୁରୁଷେଷୁ ବିଷ୍ଣୁଃ" ବୋଲି କହିଅଛନ୍ତି । ଏ ନଗର ଅତୁଳ ଐଶ୍ୱର୍ଯ୍ୟମୟ ଓ ସ୍ୱର୍ଣ୍ଣମୟ ମନ୍ଦିରମାନଙ୍କରେ ପୂର୍ଣ୍ଣ ଥିଲା । ଏଥିରେ ସୁରମ୍ୟ ହର୍ମ୍ୟ

ଶ୍ରେଣୀ ଓ ସୁସଜ୍ଜିତ ରାଜପଥମାନ ଶୋଭାପାଉଥିଲା ଏବଂ ଅଷ୍ଟତଳ ପ୍ରାସାଦ-
ମାନ (Sky Scarpers) ମଧ୍ୟ ଥିଲା । ବିବିଧ ଉଦ୍ୟାନ, କୁଞ୍ଜ, ଲତାଗୃହ,
ପାନାଗାର, ନୃତ୍ୟଶାଳା, ଚନ୍ଦ୍ରାଗାର, ବୃକ୍ଷବାଟିକା, ରଙ୍ଗଭୂମି, ଭୂଗର୍ଭସ୍ଥ
ଗୃହ, ଚୈତ୍ୟ ଓ ବିମାନ ଆଦି ଦ୍ୱାରା ସେହି ସୁରମ୍ୟ ନଗର ଶୋଭା ପାଉଥିଲା ।
ରାତ୍ରିରେ ନଗରର ସର୍ବାଂଶ ଦୀପମାଳା ଦ୍ୱାରା ଜାଜ୍ୱଲ୍ୟମାନ ହେଉଥିଲା । ଏ
ନଗର ପ୍ରଥମେ ବରୁଣଙ୍କ ଅଧିକୃତ ଥିଲା । ରାବଣ ତପସ୍ୟା ପରେ ବରଲାଭ
କରି ଏଠାରୁ ବରୁଣଙ୍କୁ ତଡ଼ି ନିଜର ରାଜଧାନୀ ସ୍ଥାପନ କଲା । ଏଠାରେ ଚିର
ବସନ୍ତ ବିରାଜିତ ଥିଲା । ଏଥିର ଅଶୋକବନସ୍ଥ ଗୋଟିଏ କୁଞ୍ଜରେ ରାବଣ
ସୀତାଙ୍କୁ ଅସୁରୀମାନଙ୍କ ଦ୍ୱାରା ଅବରୁଦ୍ଧା କରି ରଖିଥିଲା । ଏହି ଲଙ୍କା ମଧ୍ୟରେ
କୃଷ୍ଣ ଗଣ୍ଡକୀ ନାମକ ଗୋଟିଏ ନଦୀ ଥିଲା ଓ ଏ ଲଙ୍କାପୁରୀର ବାହାରେ
ସୁବେଳ ବା ସୁବଳସ୍ଥା ନାମକ ପର୍ବତରେ କପିସେନାଙ୍କ ସହିତ ରାମଚନ୍ଦ୍ର
ଅବସ୍ଥାନ କରିଥିଲେ । ସୀତାଙ୍କୁ ଠାବ କରିବାକୁ ଆସିବା ଉପଲକ୍ଷେ
ହନୁମାନର ଲାଙ୍ଗୁଡ଼ରେ ଗୁଡ଼ିଆ ହୋଇଥିବା ତେଲିଲୁଗା କନାରେ ଲଗା
ଯାଇଥିବା ନିଆଁରେ ଲଙ୍କାପୁରୀ ପୋଡି ଭସ୍ମ ହୋଇଗଲା । କିନ୍ତୁ ରାବଣ
ବିଶ୍ୱକର୍ମାଙ୍କୁ ଆଜ୍ଞା ଦେଇ ରାତିକ ଭିତରେ ପୁଣି ସ୍ୱର୍ଣ୍ଣମୟପୁର ତିଆରି
କରାଇଦେଲା ।

ବର୍ତ୍ତମାନ କାଳର ଭାରତର ଦକ୍ଷିଣସ୍ଥ ସିଂହଳ ବା ଶ୍ରୀଲଙ୍କା (Ceylon)
ଦ୍ୱୀପକୁ ପଣ୍ଡିତମାନେ ଲଙ୍କା ଥିବା ଅନୁମାନ କରନ୍ତି । କଲମ୍ବୋ 'ଲଙ୍କାଦର୍ଶ'
ପତ୍ରିକାର ସମ୍ପାଦକ ଖଣ୍ଡିଏ ସିଂହଳୀ ପାଣ୍ଡୁଲିପିରେ ଲଙ୍କାର ପୌରାଣିକ
ଇତିହାସ ଲେଖାଥିବାର ପ୍ରମାଣ ପାଇଅଛନ୍ତି ।

**ଲଙ୍କିନୀ, ଲଙ୍କେଶ୍ୱରୀ**—ରାବଣାଧିଷ୍ଠିତ ଲଙ୍କା ନଗରୀର ଅଧିଷ୍ଠାତ୍ରୀ ଦେବୀ ।
ହନୁମାନ ସୀତାଙ୍କୁ ଠାବ କରିବାପାଇଁ ପ୍ରଚ୍ଛନ୍ନରୂପ ଧରି ସନ୍ଧ୍ୟାବେଳେ
ଲଙ୍କାରେ ପ୍ରବେଶ କରିବା ସମୟରେ ତାଙ୍କୁ ଏ ଠାକୁରାଣୀ ବାଟ ଓଗାଳି
ଥିଲେ । ତହୁଁ ହନୁମାନ ତାଙ୍କୁ ବିଧୁଡ଼ାଏ ମାରିବାରୁ ସେ ମୂର୍ଚ୍ଛିତା ହେଲେ ।
ତତ୍ପରେ ସଜ୍ଞାପ୍ରାପ୍ତ ହୋଇ ହନୁମାନଙ୍କୁ ବରଦେଲେ ଯେ ତୋ କାର୍ଯ୍ୟ ସିଦ୍ଧ
ହେଉ । କେତେକ ପଣ୍ଡିତଙ୍କ ମତରେ ଏ ରାବଣ ଦ୍ୱାରା ଲଙ୍କାପୁରକୁ
ଜଗିବାରେ ନିଯୁକ୍ତ ଜଣେ ରାକ୍ଷସୀ ଥିଲେ । (ହିନ୍ଦୀ ଶବ୍ଦସାଗର)

**ଲବ**—ରାମଚନ୍ଦ୍ରଙ୍କ ଯମଜପୁତ୍ର ମଧ୍ୟରୁ ଅନ୍ୟତମ । ଲଙ୍କାରୁ ଫେରିବା ପରେ
ଲୋକ ନିନ୍ଦାକୁ ଡରି ରାମଚନ୍ଦ୍ର ଅନ୍ତଃସତ୍ତ୍ୱା ସୀତାଙ୍କୁ ବାଲ୍ମୀକି ମୁନିଙ୍କ ଆଶ୍ରମରେ

ପରିବର୍ଜନ କରିଥିଲେ । ସେହିଠାରେ ତାଙ୍କ ଗର୍ଭରୁ ଯେଉଁ ଦୁଇଟି ଯମଜ ପୁତ୍ର ଜାତ ହେଲେ ସେମାନଙ୍କ ମଧ୍ୟରୁ ଲବ କନିଷ୍ଠ ଓ କୁଶ ଜ୍ୟେଷ୍ଠ । ବାଲ୍ମୀକି ମୁନି ଏ ଦୁହିଁଙ୍କୁ ରାଜକୁମାରୋଚିତ ସମସ୍ତ ବିଦ୍ୟା ଶିକ୍ଷା ଦେଲେ । ଋଷି ନିଜେ ରାମାୟଣ ରଚନା କରି ରାଜକୁମାରଦ୍ୱୟଙ୍କୁ ତାହା କଣ୍ଠସ୍ଥ କରାଇଲେ । ରାମଚନ୍ଦ୍ର ଅଶ୍ୱମେଧାର୍ଥ ମୋଚନ କରିଥିବା ଯଜ୍ଞାଶ୍ୱକୁ ଏ ଦୁହେଁ ଅଟକାଇ ରଖିବାରୁ ଲକ୍ଷ୍ମଣଙ୍କ ସହିତ ଏମାନଙ୍କର ବିବାଦ ଉପସ୍ଥିତ ହୁଅନ୍ତେ ବାଲ୍ମୀକି ଏ କୁମାରଦ୍ୱୟଙ୍କୁ ବୁଝାଇ ଲକ୍ଷ୍ମଣଙ୍କୁ ଯଜ୍ଞାଶ୍ୱ ପ୍ରତ୍ୟର୍ପଣ କଲେ । ଅଶ୍ୱମେଧକୁ ନିମନ୍ତ୍ରିତ ଋଷିଙ୍କ ସଙ୍ଗେ ରାଜକୁମାରଦ୍ୱୟ ଅଯୋଧ୍ୟାକୁ ଯାଇ ରାମାୟଣ ପାଠ କରିବାରୁ ରାମଚନ୍ଦ୍ର ସେମାନଙ୍କୁ ଆପଣା ପୁତ୍ର ବୋଲି ଅନୁମାନ କରି ବାଲ୍ମୀକିଙ୍କଠାରୁ ସେମାନଙ୍କ ପରିଚୟ ପାଇ ପରେ ବାଲ୍ମୀକିଙ୍କ ପରାମର୍ଶରେ ସୀତାଙ୍କୁ ଗ୍ରହଣ କରିବା ନିମନ୍ତେ ଅଯୋଧ୍ୟା ଅଣାଇ ଆଉ ଥରେ ଅଗ୍ନି ପରୀକ୍ଷା କରିବାକୁ ସ୍ୱୀକାର କରନ୍ତେ, ସୀତା ଏହା ଅସ୍ୱୀକାର କରି ପୃଥିବୀ ଗର୍ଭରେ ଲୀନ ହେଲେ । ରାମଚନ୍ଦ୍ର ପୁତ୍ରଦ୍ୱୟଙ୍କୁ ଗ୍ରହଣ କରି କୁଶଙ୍କୁ କୋଶଳ ରାଜ୍ୟର ଓ ଲବଙ୍କୁ ଉତ୍ତର କୋଶଳର ରାଜପଦରେ ଅଭିଷିକ୍ତ କଲେ । ଲବ ନିଜ ନାମାନୁସାରେ ଲବକୋଟ (ଆଧୁନିକ ଲାହୋର) ନିର୍ମାଣ କରି ସେଠାରେ ରାଜଧାନୀ ସ୍ଥାପନ କଲେ । (ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଲବଣ**—ଲବଣାସୁର, ମଧୁରାକ୍ଷସର ଔରସରେ କୁମ୍ଭୀନସୀ ରାକ୍ଷସୀର ଗର୍ଭରୁ ଜାତ ହୋଇଥିଲା । ଏ ଆପଣା ପିତା ନିକଟରୁ ଶିବଦତ୍ତ ତ୍ରିଶୂଳ ପ୍ରାପ୍ତ ହୋଇ ତହିଁର ବଳରେ ଅତ୍ୟନ୍ତ ଅତ୍ୟାଚାରୀ ହୋଇଉଠିଲା ଏବଂ ଉକ୍ତ ଅସ୍ତ୍ରର ସହାୟତାରେ ମହାବୀର ମାନ୍ଧାତାଙ୍କୁ ସସୈନ୍ୟ ନଷ୍ଟ କଲା । ଏହାର ଦୌରାତ୍ମ୍ୟ କ୍ରମଶଃ ଅସହ୍ୟ ହେବାରୁ ଯମୁନାକୂଳବାସୀ ଚ୍ୟବନାଦି ମୁନିମାନେ ରାମଚନ୍ଦ୍ରଙ୍କର ଶରଣାପନ୍ନ ହେଲେ । ମଧୁକୈଟଭ ରାକ୍ଷସଙ୍କୁ ବଧ କରିବା ସମୟରେ ବିଷ୍ଣୁଙ୍କ ବ୍ୟବହୃତ ଶରମାନ ରାମଚନ୍ଦ୍ର ଶତ୍ରୁଘ୍ନଙ୍କୁ ଦେଇ ଏହାକୁ ବଧ କରିବା ପାଇଁ ପଠାଇଲେ । ଶତ୍ରୁଘ୍ନ ଏ ରାକ୍ଷସକୁ ମଧୁବନରେ ନିହତ କରି ସେଠାରେ ରାଜ୍ୟ ସ୍ଥାପନ କଲେ । ଏହି ଲବଣ ରାକ୍ଷସ ମଧୁପୁରୀ ସ୍ଥାପନ କରିଥିଲା । ପରେ ତାହା ମଥୁରା ନାମରେ ପ୍ରସିଦ୍ଧ ହେଲା ।

(ହିନ୍ଦୀ ଶବ୍ଦସାଗର)

**ଲଳିତା**—(୧) ଶ୍ରୀରାଧାଙ୍କ ଅଷ୍ଟସହଚରୀ ମଧ୍ୟରେ ପ୍ରଧାନ । (୨) ପଦ୍ମପୁରାଣୋକ୍ତ ନଦୀ ବିଶେଷ । କାଳିକା ପୁରାଣରେ ଲେଖାଅଛି ଯେ ନିମି ରାଜଙ୍କ ଶାପରୁ ବଶିଷ୍ଠ ଦେହହୀନ ହେବା ସମୟରେ ସେ କାମରୂପ ଦେଶର ସନ୍ଧ୍ୟାଚଳ ପର୍ବତରେ

ଘୋର ତପସ୍ୟା କଲେ । ଏଥିରେ ବିଷ୍ଣୁ ପ୍ରସନ୍ନ ହୋଇ ବର ଦେଲେ । ବର ପ୍ରଭାବରେ ବଶିଷ୍ଠ ଗୋଟିଏ ଅମୃତକୁଣ୍ଡ ନିର୍ମାଣ କଲେ । ଏହି କୁଣ୍ଡ ପୂର୍ବରେ ଲଳିତା ନାମରେ ଏକ ନଦୀ ଥିଲା । ଏହି ନଦୀକୁ ଶିବ ମର୍ତ୍ତ୍ୟକୁ ଆଣିଥିଲେ । ବୈଶାଖ ଶୁକ୍ଳଚତୁର୍ଦ୍ଦଶୀ ଦିନ ଏଥିରେ ସ୍ନାନ କରିବା ମହା ପୁଣ୍ୟପ୍ରଦ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ଲୋକାଲୋକ**—ସୂର୍ଯ୍ୟକିରଣ ଦ୍ୱାରା ଏକଦେଶ ଆଲୋକିତ ଓ ସୂର୍ଯ୍ୟକିରଣ ନ ପଡ଼ିବାରୁ ଅନ୍ୟଦେଶ ଅନ୍ଧକାରାଚ୍ଛନ୍ନ ବ୍ରହ୍ମାଣ୍ଡ ବେଷ୍ଟନକାରୀ ହିନ୍ଦୁ ପୁରାଣୋକ୍ତ ପର୍ବତମାଳା । ଏ ପର୍ବତ ସପ୍ତଦ୍ୱୀପା ପୃଥିବୀକୁ ବେଷ୍ଟନ କରିଥିବା ଓ ସପ୍ତ ସମୁଦ୍ରର ଶେଷ ସୀମାର ଚାରିପାଖରେ ଘେରି ରହିଥିବା କଥା ପୁରାଣରେ ବର୍ଣ୍ଣିତ ହୋଇଅଛି । ଏ ପର୍ବତମାଳାର ଉପତ୍ୟକା ଦେବତାମାନଙ୍କର କ୍ରୀଡ଼ାସ୍ଥଳ । ବୃତ୍ରାସୁର ବଧକରି ଇନ୍ଦ୍ର ବ୍ରହ୍ମହତ୍ୟା ପାତକଗ୍ରସ୍ତ ହୋଇ ଏହି ପର୍ବତ ଅତଳମ ପୂର୍ବକ ଅନ୍ଧକାରମୟ ପ୍ରଦେଶକୁ ପଳାୟନ କରିଥିଲେ ।

(ଭାଷାକୋଷ)

**ଲୋପାମୁଦ୍ରା**—ମହର୍ଷି ଅଗସ୍ତିଙ୍କ ପତ୍ନୀ । ଅଗସ୍ତି ମନୋମତ ପତ୍ନୀ ପାଇବା ଆଶାରେ ସକଳ ପ୍ରାଣୀମାନଙ୍କର ଉତ୍କୃଷ୍ଟ ଅଂଶମାନ ଗ୍ରହଣ କରି ଏହି କନ୍ୟାକୁ ସୃଷ୍ଟି କରି ଏହାଙ୍କୁ ପାଳନ କରି ବଢ଼ାଇବା ପାଇଁ ବିଦର୍ଭ ରାଜାଙ୍କ ନିକଟରେ ଛାଡ଼ିଥିଲେ ଓ ଯଥା ସମୟରେ ଉକ୍ତ କନ୍ୟାର ପାଣିଗ୍ରହଣ କଲେ । କଥିତ ଅଛି ଯେ ଲୋପାମୁଦ୍ରା ସ୍ୱାମୀଙ୍କ ନିକଟରେ ଧନ ପ୍ରାର୍ଥନା କରିବାରୁ ଅଗସ୍ତି ଦୈତ୍ୟରାଜ ଇଲ୍ୱଲକୁ ନିହତ କରି ପ୍ରଭୂତ ଧନରାଶି ଆଣି ଏହାଙ୍କୁ ଦାନ କରିଥିଲେ । ଧନଲାଭ ପାଇଁ ମଧ୍ୟ ଅଗସ୍ତି ମହର୍ଷି ଲକ୍ଷ୍ମୀଙ୍କୁ କରିଥିବା ସ୍ତୁତିରୁ ତାଙ୍କ ଧନଲାଳସା କଥା ସ୍ପଷ୍ଟ ଜଣାଯାଏ । ଧନ ସଂସାରରେ ଯେ ଏକ ମୂଲ୍ୟବାନ ପଦାର୍ଥ ତାହା ଅଗସ୍ତି ଉତ୍ତମରୂପେ ବୁଝି ପାରିଥିଲେ ।

(ଅଗସ୍ତିକୃତ ମହାଲକ୍ଷ୍ମୀ ସ୍ତୋତ୍ର ଦ୍ରଷ୍ଟବ୍ୟ, ଭାଷାକୋଷ)

**ଲୋମପାଦ**—ରାମାୟଣ ବର୍ଣ୍ଣିତ ଅଙ୍ଗଦେଶର ରାଜା । ଏ ଦଶରଥଙ୍କ ମିତ୍ର ଥିଲେ । ଦଶରଥଙ୍କ କନ୍ୟା ଶାନ୍ତା ଏହାଙ୍କ ଗୃହରେ ରହି ପାଳିତ ହେଉଥିଲେ । ବ୍ରହ୍ମଶାପବଶତଃ ଲୋମପାଦଙ୍କ ରାଜ୍ୟରେ ଅନାବୃଷ୍ଟି ଓ ଦୁର୍ଭିକ୍ଷ ପଡ଼ିବାରୁ ଜରତା ଆଦି ବାରନାରୀଙ୍କୁ ପଠାଇ ରାଜା ବିଭାଣ୍ଡକ ଋଷିପୁତ୍ର ଋଷ୍ୟଶୃଙ୍ଗଙ୍କୁ ଅଣାଇ ଯଜ୍ଞ କରିବାରୁ ବର୍ଷା ହେଲା । ଋଷ୍ୟଶୃଙ୍ଗ ଲୋମପାଦଙ୍କ ପାଳିତା କନ୍ୟା ଶାନ୍ତାଙ୍କୁ ବିବାହ କଲେ । ଲୋମପାଦଙ୍କ ରାଜଧାନୀ ନାମ ଚମ୍ପାବତୀ ବା ଚମ୍ପା ନଗରୀ । କେହି କେହି ଏହାଙ୍କୁ

ଲୋମପାଦପୁର ବୋଲି କହନ୍ତି । ଏହି ଋଷ୍ୟଶୃଙ୍ଗଙ୍କ ଦ୍ୱାରା ଦଶରଥ ପୁତ୍ରେଷ୍ଟି ଯଜ୍ଞ କରି ରାମଚନ୍ଦ୍ରାଦିଙ୍କୁ ପୁତ୍ରରୂପେ ପାଇଥିଲେ ।

**ଲୋମଶ**—ବିଖ୍ୟାତ ମହର୍ଷି । ଏକଦା ଏହି ବ୍ରହ୍ମର୍ଷି ଦେବସଭାରେ ଉପସ୍ଥିତ ହୋଇ ଦେଖିଲେ ଅର୍ଜୁନ ଇନ୍ଦ୍ରଙ୍କ ଅର୍ଦ୍ଧାସନରେ ବସିଅଛନ୍ତି । ଏଥିଲାଗି ସେ ମନେ ମନେ ଚିନ୍ତାକଲେ—କ୍ଷତ୍ରିୟ ହୋଇ ଅର୍ଜୁନ କିପରି ଇନ୍ଦ୍ରାସନର ଉପଯୁକ୍ତ ହେଲେ ? ଇନ୍ଦ୍ର ଏହି କଥା ଜାଣିପାରି କହିଲେ—ବ୍ରହ୍ମର୍ଷେ, ଯେଉଁ ପ୍ରଶ୍ନ ଆପଣଙ୍କ ମନରେ ଉଦ୍ଭବ ହୋଇଛି ତାହାର ଉତ୍ତର ଶୁଣନ୍ତୁ । ଏହି କୁନ୍ତୀ ପୁତ୍ର କେବଳ ମନୁଷ୍ୟ ନୁହନ୍ତି, ଏହାଙ୍କଠାରେ ଦେବତ୍ୱ ମଧ୍ୟ ଅଛି । ମୋ ଔରସରେ କୁନ୍ତୀଙ୍କ ଗର୍ଭରୁ ଏ ଜନ୍ମ ହୋଇଛନ୍ତି । ବର୍ତ୍ତମାନ କୌଣସି କାରଣବଶତଃ ଅସ୍ତ୍ରଲାଭ ଆଶାରେ ସେ ଏଠାକୁ ଆସିଛନ୍ତି । କି ଆଶ୍ଚର୍ଯ୍ୟ, ଆପଣ ମଧ୍ୟ ଏଡ଼େ ପ୍ରାଚୀନ ଋଷିଙ୍କୁ ଜାଣନ୍ତି ନାହିଁ । ହୃଷୀକେଶ ଓ ଧନଞ୍ଜୟ ଏହି ପୁରାତନ ଋଷିଦ୍ୱୟ ତ୍ରିଲୋକରେ ନରନାରାୟଣ ବୋଲି ବିଖ୍ୟାତ । କାର୍ଯ୍ୟବଶତଃ ଏମାନେ ପୃଥିବୀରେ ଅବତୀର୍ଣ୍ଣ ହୋଇଆନ୍ତି । ବଦରୀ ନାମକ ଆଶ୍ରମପଦ ଏହି ବିଷ୍ଣୁ ଓ ବିଷ୍ଣୁଙ୍କର ନିବାସ । ଏମାନେ ପୃଥିବୀର ଭାର ଉଶ୍ୱାସ କରିବେ । ଇନ୍ଦ୍ର ଏହା କହି ଲୋମଶଙ୍କୁ କାମ୍ୟକ ବନରେ ଥିବା ଯୁଧିଷ୍ଠିରଙ୍କ ପାଖକୁ ଯିବା ପାଇଁ ଅନୁରୋଧ କଲେ । ଯୁଧିଷ୍ଠିର ଯେପରି ଅର୍ଜୁନଙ୍କ ପାଇଁ ବ୍ୟାକୁଳ ନ ହୁଅନ୍ତି ସେଥିଲାଗି ଅର୍ଜୁନଙ୍କ ସୁସମ୍ବାଦ ପ୍ରଦାନ କରିବା ଇନ୍ଦ୍ରଙ୍କର ଉଦ୍ଦେଶ୍ୟ ଥିଲା । ଦେବରାଜଙ୍କ ଅନୁରୋଧ କ୍ରମେ ମହର୍ଷି କାମ୍ୟକ ବନକୁ ଯାଇ ଯୁଧିଷ୍ଠିରଙ୍କୁ ଏ ସମ୍ବାଦ ଜଣାଇଥିଲେ । (ମହାଭାରତ ବନପର୍ବ, ଚତଭାଭିଧାନ)

ଭାଷାକୋଷରୁ ଏକ ନିର୍ଣ୍ଣୟ ମିଳେ । ତାହା ଏହି—ଲୋମଶ ମାର୍କଣ୍ଡେୟ ଋଷିଙ୍କ କନିଷ୍ଠ ଭ୍ରାତା । ପାଣ୍ଡବମାନଙ୍କ ବନବାସ ସମୟରେ ଏ ସେମାନଙ୍କୁ ନେଇ ନାନା ତୀର୍ଥ ଭ୍ରମଣ କରିଥିଲେ । ପାଣ୍ଡବମାନଙ୍କୁ ବିବିଧ ଉପଦେଶମୟ ପୌରାଣିକ ଉପାଖ୍ୟାନମାନ ଶୁଣାଇଥିଲେ । ଏ ଅମର ବୋଲି କଳ୍ପିତ ।

**ଲୋମହର୍ଷଣ**—ବିଖ୍ୟାତ ପ୍ରାଚୀନ ଋଷି । ଏହାଙ୍କ ପିତାଙ୍କ ନାମ ସୂତ । ସୂତ, ଭଗବାନ୍ ବେଦବ୍ୟାସଙ୍କ ଶିଷ୍ୟ । ବ୍ୟାସଦେବ ପୁରାଣସଂହିତା ଇତ୍ୟାଦି ରଚନା କରି ସୂତଙ୍କୁ ଶିକ୍ଷା ଦେଇଥିଲେ । କଳ୍କି ପୁରାଣରୁ ନିର୍ଣ୍ଣୟ ମିଳେ ଯେ ବଳରାମଙ୍କ ଦ୍ୱାରା ଏ ହତ ହୋଇଥିଲେ । ଯଥା—

ତଥା କ୍ଷେତ୍ରେ ସୂତପୁତ୍ରୋ ନିହତୋ ଲୋମ ହର୍ଷଣଃ
ବଳରାମାସ୍ତ୍ରଯୁକ୍ତାତ୍ମା ନୈମିଷେୟୋଭୂତ୍ ସ୍ୱବଶ୍ୟାସ୍ତୁ ।

ପୌରାଣିକ ବିଷୟଗୁଡ଼ିକ ବ୍ୟାଖ୍ୟା କରି ଶ୍ରୋତାମାନଙ୍କର ରୋମୋଦ୍‌ଗମ କରାଇ ପାରୁଥିବାରୁ ଏହାଙ୍କ ନାମ ଲୋମହର୍ଷଣ ହୋଇଥିଲା । ପରେ ଏହି ନାମ ବଂଶଗତ ହୋଇଗଲା । କଲ୍‌କି ପୁରାଣରେ ଏହାଙ୍କ ପୁତ୍ରଙ୍କୁ ମଧ୍ୟ ଲୋମହର୍ଷଣ ଏହି ବିଶେଷଣ ଦିଆଯାଇଥିଲା । କେହି କେହି ସୂତଙ୍କୁ ମଧ୍ୟ ଲୋମହର୍ଷଣ କହନ୍ତି ।

**ଲୋଳା**—ମଧୁଦୈତ୍ୟର ମାତାଙ୍କ ନାମ । (ଭାଷାକୋଷ)

**ଲୌହିତ୍ୟା**—କବି ରାଧାନାଥ ମହାଯାତ୍ରା କାବ୍ୟରେ ଏକ ସୁନ୍ଦର ବର୍ଣ୍ଣନା ଦେଇଛନ୍ତି—ଲୌହିତ୍ୟା ତରଙ୍ଗେ ଧୌତ ପ୍ରାଗ୍‌ଜ୍ୟୋତିଷ ପୁଣ୍ୟ । ଆସାମର କାମରୂପଦେଶର ଉତ୍ତରଦିଗରେ ଥିବା ଏକ ନଦୀ ।



# ଶ

**ଶକଟ, ଶକଟାସୁର**—ଏ କଂସ ଦ୍ୱାରା ଗୋପପୁରକୁ ପ୍ରେରିତ ହୋଇ ସେଠାରେ ଶକଟରୂପ ଧାରଣ କରି ଶ୍ରୀକୃଷ୍ଣଙ୍କୁ ମାରି ପକାଇବାକୁ ବସିଥିଲା, କିନ୍ତୁ ଶ୍ରୀକୃଷ୍ଣ ତାକୁ ବଧ କଲେ । ଶକଟାସୁର କଂସର ଅନୁଚର ଦୈତ୍ୟ ବିଶେଷ ।
(ଭାଷାକୋଷ)

**ଶକୁନି**—ସୁବଳ ରାଜାଙ୍କ ପୁତ୍ର । ଶକୁନି ଅଧିକାଂଶ ସମୟ ହସ୍ତିନା ନଗରୀରେ ରହୁଥିଲେ ଓ ଭଣଜାର ମନ୍ତ୍ରୀତ୍ୱ କରୁଥିଲେ । ଏ ଅସତ୍‌ପ୍ରକୃତିର ଏବଂ ପରର ଅନିଷ୍ଟ ସାଧନରେ ସର୍ବଦା ଆସକ୍ତ ରହୁଥିଲେ । ଗାନ୍ଧାର (ଆଧୁନିକ କାନ୍ଦାହାର) ଦେଶାଧିପତି ସୁବଳ ଏହାଙ୍କର ପିତା । ଗାନ୍ଧାରୀ ଉଅଁସୀ କନ୍ୟା ଥିବାରୁ ତାଙ୍କର ବୈଧବ୍ୟଯୋଗ ଅନିବାର୍ଯ୍ୟ ଦେଖି ପିତା ସୁବଳ ତାଙ୍କୁ ପ୍ରଥମେ ଗୋଟାଏ ଶାହାଡ଼ା (ଶାଖୋଟ) ଗଛ ସଙ୍ଗେ ବିବାହ କରାଇଦେଲେ, କିନ୍ତୁ ସଙ୍ଗେ ସଙ୍ଗେ ସେ ଶାହାଡ଼ା ଗଛଟି ମରିଗଲା । ଏହି ପ୍ରକାରେ ଗାନ୍ଧାରୀଙ୍କ ବୈଧବ୍ୟ ଦଶା କଟିଯିବା ପରେ ଧୃତରାଷ୍ଟ୍ରଙ୍କ ସହିତ ତାଙ୍କର ବିବାହ ହେଲା ।

ଦୁର୍ଯ୍ୟୋଧନଙ୍କ ସଙ୍ଗେ ଭୀମଙ୍କର କଳହ ହେବାରୁ ଏବଂ ଦୁର୍ଯ୍ୟୋଧନ ଭୀମଙ୍କୁ ଅପମାନ ଦେବାରୁ ଭୀମ ଦୁର୍ଯ୍ୟୋଧନଙ୍କୁ ଗୋଳକ ପୁତ୍ର (ବିଧବା ପୁତ୍ର) ବୋଲି କହିଲେ । ଦୁର୍ଯ୍ୟୋଧନ ଏଥିରେ ମର୍ମାହତ ହୋଇ ଏଥିର କାରଣ ଅନୁସନ୍ଧାନ କଲେ ଏବଂ ମାତାଙ୍କଠାରୁ ତାଙ୍କ ବିବାହ ପ୍ରସଙ୍ଗୀୟ ପୂର୍ବୋକ୍ତ କଥା ଅବଗତ ହୋଇ ପ୍ରତିହିଂସା ସାଧନାର୍ଥେ ସୁବଳରାଜା ଓ ତାଙ୍କ ପରିବାରବର୍ଗଙ୍କୁ ଧ୍ୱଂସ କରିବା ନିମିତ୍ତ ଉପାୟ ଚିନ୍ତା କଲେ । ପରେ ସେମାନଙ୍କୁ କପଟରେ ନିମନ୍ତ୍ରଣ କରି ଆଣି ଗୋଟିଏ ଅମୁହାଁ ଘରେ ପୁରାଇ ଅନାହାରରେ ମାରି ପକାଇଲେ । ଶେଷକୁ କେବଳ ମାତ୍ର ଶକୁନି ବଞ୍ଚି ରହିଲେ । ଶକୁନି ସର୍ବଜ୍ଞ ଥିଲେ । ଦୁର୍ଯ୍ୟୋଧନ ତାଙ୍କର ବିଚକ୍ଷଣତା ସମ୍ବନ୍ଧେ ନାନା ପ୍ରମାଣ ପାଇ ତାଙ୍କୁ କାରାରୁ ମୁକ୍ତ ଦେଇ ମନ୍ତ୍ରୀ ପଦରେ ବରଣ କଲେ । ଶକୁନି ଆପଣାର ମୃତ ପିତାଙ୍କ ଅସ୍ଥିକୁ ସଂଗ୍ରହ କରି ସେହି ଅସ୍ଥିରେ ପଶାକାଠି ତିଆରି କରି ରଖିଲେ । ସେ ପଶା କାଠିର ଏକ ଅସାଧାରଣ ଗୁଣ ଥିଲା । ଶକୁନି ଯେଉଁ ପଟ ଡାକି କାଠି ଗଡ଼ାଇ ଦେଉଥିଲେ ସେଥିରେ ସେହି ଦାନ ପଡ଼ୁଥିଲା । ଦୁର୍ଯ୍ୟୋଧନ ଶକୁନିର ବଂଶ ନାଶ କରିଥିବାରୁ ସେ ଦୁର୍ଯ୍ୟୋଧନର ବଂଶ ନିର୍ମୂଳ କରିବେ ବୋଲି ମନେ ମନେ ଦୃଢ଼ ସଙ୍କଳ୍ପ କଲେ ଏବଂ ଉପରେ କପଟ ବନ୍ଧୁତାର ଛଳନା କରି ଦୁର୍ଯ୍ୟୋଧନଙ୍କୁ ମନ୍ତ୍ରଣା ଦେଲେ । ତାଙ୍କରି ମନ୍ତ୍ରଣାରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ଅନିଷ୍ଟ ସାଧନ କରିବାକୁ ଉତ୍ତେଜିତ ହେଲେ । ଶକୁନି ଦ୍ୟୁତକ୍ରୀଡ଼ାରେ (ପଶାଖେଳରେ) ଅତ୍ୟନ୍ତ ନିପୁଣ ଥିଲେ । ତାଙ୍କରି ପ୍ରରୋଚନାରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ପଣ ରଖି ପଶା ଖେଳିବାକୁ ଡାକିଲେ । ଉପଯୁକ୍ତ ପଶାକାଠି ଦ୍ୱାରା କପଟ ଦ୍ୟୁତ ଖେଳି ଶକୁନି ଯୁଧିଷ୍ଠିରଙ୍କୁ ପରାଜିତ କରି ପାଣ୍ଡବମାନଙ୍କୁ ରାଜ୍ୟଚ୍ୟୁତ ଓ ବନବାସୀ କରାଇଲେ । ପାଣ୍ଡବମାନେ ବନବାସରୁ ଫେରି ଆସିବା ପରେ ଏହାଙ୍କ ପ୍ରରୋଚନାରେ ଦୁର୍ଯ୍ୟୋଧନ ସେମାନଙ୍କୁ ବିନା ଯୁଦ୍ଧରେ ପାଞ୍ଚଖଣ୍ଡି ଗ୍ରାମ ତ ଦୂରର କଥା, ସୂଚ୍ୟଗ୍ର ପରିମିତ ସ୍ଥାନ ସୁଦ୍ଧା ଛାଡ଼ିଦେବାକୁ ରାଜି ହେଲେନାହିଁ । ଏହାର ଫଳ ସ୍ୱରୂପ ମହାଭାରତ ଯୁଦ୍ଧ ଆରମ୍ଭ ହେଲା ଓ ସେଥିରେ ଶକୁନିଙ୍କ ପିତୃହନ୍ତା ଦୁର୍ଯ୍ୟୋଧନ ନିହତ ହେଲେ ଓ ଶେଷରେ କୁରୁକୁଳ ଓ ପାଣ୍ଡୁକୁଳ ଧ୍ୱଂସ ହେଲେ । ଏହିରୂପେ ଶକୁନି ନିଜର ପିତୃଋଣ ପରିଶୋଧ କଲେ । କିନ୍ତୁ କୁରୁକ୍ଷେତ୍ର ଯୁଦ୍ଧର ଅଷ୍ଟାଦଶ ଦିବସରେ ସେ ନିଜେ କନିଷ୍ଠ ପାଣ୍ଡବ ସହଦେବଙ୍କ ଦ୍ୱାରା ନିହତ ହେଲେ । (ଭାଷାକୋଷ)

**ଶକୁନ୍ତଳା**—ପୌରବ ବଂଶୀୟ ବିଖ୍ୟାତ ରାଜା ଦୁଷ୍ମନ୍ତଙ୍କ ମହିଷୀ । ବିଶ୍ୱାମିତ୍ରଙ୍କ ଔରସରେ ମେନକା ନାମ୍ନୀ ଅପ୍ସରା ଗର୍ଭରୁ ଏହାଙ୍କର ଜନ୍ମ । ଜନ୍ମମାତ୍ରେ

ମେନକା ଏହାଙ୍କୁ ମାଳିନୀ ନଦୀକୂଳରେ ପରିତ୍ୟାଗ କରି ସ୍ୱର୍ଗକୁ ପ୍ରସ୍ଥାନ କଲେ । ମହର୍ଷି କଣ୍ୱ ଏହାଙ୍କୁ ପ୍ରତିପାଳନ କରିଥିଲେ । ମହାକବି କାଳିଦାସ ଏହାଙ୍କୁ ଅବଲମ୍ବନ କରି ପ୍ରସିଦ୍ଧ ନାଟକ "ଅଭିଜ୍ଞାନ ଶାକୁନ୍ତଳ" ରଚନା କରିଥିଲେ । (ଦୁଷ୍ମନ୍ତ ଓ କଣ୍ୱ ଦେଖ)

**ଶକ୍ତି**—ବଶିଷ୍ଠ ମୁନିଙ୍କ ଜ୍ୟେଷ୍ଠପୁତ୍ର ଓ ପରାଶରଙ୍କ ପିତା । (ପରାଶର ଦେଖ)

**ଶକ୍ତାବତୀ**—କୃଷ୍ଣଙ୍କ ଅଷ୍ଟପାଟରାଣୀରୁ ଜଣେ । ସତ୍ୟଭାମାଙ୍କ ନାମାନ୍ତର ।

**ଶଙ୍କୁ**—(୧) ବ୍ରହ୍ମାଙ୍କ ମାନସପୁତ୍ର । ବ୍ରହ୍ମବୈବର୍ତ୍ତ ପୁରାଣ ଶ୍ରୀକୃଷ୍ଣ ଖଣ୍ଡ ତ୍ରିଂଶ ଅଧ୍ୟାୟରେ ଲେଖାଅଛି, ପିତାମହ ବ୍ରହ୍ମା ଙ୍କର ବଳରେ ଦେହରୁ ବ୍ରହ୍ମତେଜ ପ୍ରଦୀପ୍ତ, ବେଦ ବେଦାଙ୍ଗବିତ୍ ତପସ୍ୟା ନିରତ ପୁତ୍ରମାନଙ୍କୁ ସୃଷ୍ଟି କରିଥିଲେ । ସେମାନଙ୍କର ନାମ ଯଥା—ଅତ୍ରି, ପୁଲସ୍ତ୍ୟ, ପୁଲହ, ମରୀଚି, ଭୃଗୁ, ଅଙ୍ଗିରା, କ୍ରତୁ, ବଶିଷ୍ଠ, ବୋଢ଼ୁ, କପିଳ, ଆସୁରି, କବି, ଶଙ୍କୁ, ଶଙ୍ଖ, ପଞ୍ଚଶିଖ ଓ ପ୍ରଚେତା ।

(୨) ତ୍ରିଶଙ୍କୁ ନାମକ ରାଜା । ହରିଶ୍ଚନ୍ଦ୍ରଙ୍କ ପିତା ।

(୩) ଉଗ୍ରସେନଙ୍କ ପୁତ୍ର ବିଶେଷ । (ହିନ୍ଦୀ ଶବ୍ଦସାଗର)

(୪) ପ୍ରାଚୀନକାଳର ବାଦ୍ୟ ବିଶେଷ । (ହିନ୍ଦୀ ଶବ୍ଦସାଗର)

**ଶଙ୍ଖ**—(୧) ବ୍ରହ୍ମାଙ୍କ ମାନସପୁତ୍ର । ହିନ୍ଦୁ ଧର୍ମଶାସ୍ତ୍ର ପ୍ରଣେତା ମୁନିଙ୍କ ମଧ୍ୟରେ ଅନ୍ୟତମ । (ଶଙ୍କୁ ଦେଖ)

(୨) ରାଜା ବିରାଟଙ୍କର ଏକ ପୁତ୍ରର ନାମ ।

(୩) ଅଷ୍ଟନାଗ ମଧ୍ୟରୁ ଏକ ନାଗ । ଯଥା—ଅନନ୍ତ, ବାସୁକି, ପଦ୍ମ, ମହାପଦ୍ମ, ତକ୍ଷକ, କୁଳୀର, କର୍କଟ, ଶଙ୍ଖ (ବିଶ୍ୱକୋଷ)

**ଶଙ୍ଖଚୂଡ଼**—ଅସୁର ବିଶେଷ । ମହାଦେବଙ୍କ ଦ୍ୱାରା ଏହି ଅସୁର ନିହତ ହୋଇଥିଲା । ଏହାର ପତ୍ନୀ ନାମ ତୁଳସୀ (ତୁଳସୀ ଓ ରାଧା ଦେଖ) । ମତାନ୍ତରରେ ଏହି ଶଙ୍ଖଚୂଡ଼ର ନାମ ଜଳନ୍ଧର ।

**ଶଙ୍ଖନିଧି**—ବିଶ୍ୱକୋଷ ନିର୍ଦ୍ଦିଷ୍ଟ କରିଛନ୍ତି ଯେ ଏହା ସମୁଦ୍ରଜାତ କୁବେରଙ୍କ ନିଧି ବିଶେଷ । ମାର୍କଣ୍ଡେୟ ପୁରାଣ ୬୮ ଅଧ୍ୟାୟରେ ଲେଖାଅଛି ଯେ,

୮ ପ୍ରକାର ନିଧି ମଧ୍ୟରେ ଶଙ୍ଖ ଅଷ୍ଟମ ନିଧି । ଏହା ରଜଃ ଓ ତମୋଗୁଣ ବିଶିଷ୍ଟ । ଏହାର ଅଧୀଶ୍ୱର ରଜଃ ଓ ତମୋଗୁଣ ବିଶିଷ୍ଟ ହୁଏ । ସେ ସର୍ବଦା କେବଳ ଆତ୍ମପରିତୋଷରତ; ଏ ମନ୍ତ୍ରୀ, ସୁହୃଦ, ଭାର୍ଯ୍ୟା, ଭ୍ରାତା, ପୁତ୍ର, ପୁତ୍ରବଧୂ ଆଦି ସ୍ୱଜନଙ୍କ ଅନ୍ନବସ୍ତ୍ରାଦି ପ୍ରତି କିଛି ମାତ୍ର ଦୃଷ୍ଟିପାତ କରେନାହିଁ । ସର୍ବଦା ଆତ୍ମପରିତୃପ୍ତି ପାଇଁ ବ୍ୟସ୍ତ ଥାଏ । (ବିଶ୍ୱକୋଷ)

**ଶଚୀ**—ପୁଲୋମଜା ଶଚୀନ୍ଦ୍ରାଣୀ—ଅମରକୋଷ ଏହି ନିର୍ଣ୍ଣୟ ଦିଏ । ଅର୍ଥାତ୍ ଇନ୍ଦ୍ରଙ୍କ ସ୍ତ୍ରୀର ନାମ ଶଚୀ । ସେ ଦାନବରାଜ ପୁଲୋମାଙ୍କ କନ୍ୟା । ଇନ୍ଦ୍ରଙ୍କ ଔରସରେ ଏହାଙ୍କ ଗର୍ଭରୁ ଜନ୍ମିଥିବା ପୁତ୍ରର ନାମ ଜୟନ୍ତ । ଇନ୍ଦ୍ରପଦ ତପସ୍ୟାଲବ୍ଧ, ସେହି ହେତୁରୁ କାଳକ୍ରମେ ଅନେକଙ୍କ ଭାଗ୍ୟରେ ଇନ୍ଦ୍ରତ୍ୱ ଲାଭ ହୋଇ ପାରେ କିନ୍ତୁ ସେ ଇଚ୍ଛା ସେ ଇନ୍ଦ୍ର ହେଲେ ମଧ୍ୟ ଶଚୀ ଇନ୍ଦ୍ରଙ୍କର ପଦବୀସମ୍ପର୍କିତ ସ୍ତ୍ରୀ ପତ୍ନୀ ଅର୍ଥାତ୍ Official wife.

(୨) ଶ୍ରୀ ଚୈତନ୍ୟଦେବଙ୍କ ମାତାର ନାମ ଶଚୀଦେବୀ ।

**ଶଚୀତୀର୍ଥ**—ପ୍ରାଚୀନ ତୀର୍ଥ ବିଶେଷ (ହିନ୍ଦୀ ଶବ୍ଦସାଗର), "ଅଭିଜ୍ଞାନ ଶାକୁନ୍ତଳ" ନାଟକର ପଞ୍ଚମାଙ୍କରେ ଲେଖାଅଛି ଯେ ଶକୁନ୍ତଳା ଦୁଷ୍ମନ୍ତଙ୍କ ନିକଟକୁ ଆସିବାବେଳେ ଶଚୀତୀର୍ଥର ଇନ୍ଦ୍ର ଘାଟରେ ସ୍ନାନ କରିବେଳେ ଦୁଷ୍ମନ୍ତପ୍ରଦତ୍ତ ମୁଦ୍ରିକାଟିକୁ ହଜାଇ ଦେଇଥିଲେ । ଏହା ଗଙ୍ଗା ନଦୀର ଏକ ଅବତରଣ ଘାଟ ବୋଲି ଟୀକାକାର ଲେଖିଅଛନ୍ତି । (ବିଶ୍ୱକୋଷ)

**ଶତଘ୍ନୀ**—ଏକକାଳୀନ ଶତସଂଖ୍ୟକ ସୈନ୍ୟ ବିନାଶକାରୀ ପ୍ରାଚୀନ ଭାରତର ଯୁଦ୍ଧାସ୍ତ୍ର ବିଶେଷ । ମହାଭାରତରେ ଏ ଅସ୍ତ୍ରର ଉଲ୍ଲେଖ ଅଛି । କୃଷ୍ଣସିଂହ ମହାଭାରତ ବନ ପର୍ବରେ ନିର୍ଣ୍ଣିସ୍ତ ଦିଅନ୍ତି—'ଶତଘ୍ନୀ ଭେଦି ଲୌହଚର୍ମ ଗଦା ଶୂଳ ।' ବୈଶମ୍ପାୟନୋକ୍ତ ଧନୁର୍ବେଦର ପଞ୍ଚମ ଅଧ୍ୟାୟରେ ଏହି ଅସ୍ତ୍ର ସମ୍ବନ୍ଧରେ ନିମ୍ନଲିଖିତ ବର୍ଣ୍ଣନା ଅଛି—ଏହା କଣ୍ଟକିତ, ଲୌହସାର ନିର୍ମିତ, ମୁଦ୍‌ଗର ଭଳି ସୁଦୃଢ଼ ଓ ବର୍ତ୍ତୁଳ । ଚାରିହସ୍ତ ପରିମିତ ଲମ୍ବ, ମୁଠାଯୁକ୍ତ । ଗଦାକୁ ପ୍ରୟୋଗ କାଳରେ ଯେଉଁପରି ବଲ୍‌ଗଣ ବା ଆସ୍ଫାଳନ କରିଯାଏ ଏହାର ବଲ୍‌ଗଣ ମଧ୍ୟ ତଦ୍ରୂପ ।

ମତାନ୍ତରରେ ବଡ଼ ପଥର ବା କାଠର କୁନ୍ଦା ବା ଖୋଳରେ ବହୁତ ଗୁଳା ଓ କଣ୍ଟା ଭରତି କରି ଶତଘ୍ନୀ ତିଆରି କରିଯାଉଥିଲା । ଏହାକୁ ଶତ୍ରୁ ଉପରକୁ ଫିଙ୍ଗା ଯାଉଥିଲା । (ହିନ୍ଦୀ ଶବ୍ଦସାଗର)

ମଲ୍ଲୀନାଥ ରଘୁବଂଶର (୧୨।୭୫)ର ଟୀକାରେ ଲୌହ କଣ୍ଟକଙ୍କିତ ଯଷ୍ଟି ବିଶେଷକୁ ଶତଘ୍ନୀରୂପେ ନିର୍ଦ୍ଦେଶ ଦେଇଛନ୍ତି ବୋଲି ବିଶ୍ୱକୋଷର ମତ ।
(ଭାଷାକୋଷ)

**ଶତାନନ୍ଦ**—ମହର୍ଷି ଗୌତମଙ୍କ ଜ୍ୟେଷ୍ଠ ପୁତ୍ର । ଏ ଅହଲ୍ୟାଙ୍କ ଗର୍ଭରୁ ଜନ୍ମି ଥିଲେ । ଯେତେବେଳେ ରାମଚନ୍ଦ୍ର ଧନୁର୍ଭଙ୍ଗ ପାଇଁ ମିଥିଳାରେ ପଦାର୍ପଣ କଲେ, ସେ ସମୟକୁ ଶତାନନ୍ଦ ରାଜର୍ଷି ଜନକଙ୍କର ପୌରୋହିତ୍ୟ କରୁଥିଲେ । ଶିବ ଧନୁର୍ଭଙ୍ଗ ସମ୍ବାଦ ଏହାଙ୍କ ଦ୍ୱାରା ଅଯୋଧ୍ୟାରେ ପ୍ରେରିତ ହୋଇଥିଲା ।
(ରାମାୟଣ . ଆଦିକାଣ୍ଡ)

ବିଶ୍ୱକୋଷ ନିର୍ଣ୍ଣୟ ଦିଏ ଯେ ଇନ୍ଦ୍ର ଅହଲ୍ୟାଙ୍କ ସତୀତ୍ୱ ନାଶ କରନ୍ତେ ତାଙ୍କୁ ବଧ କରିବା ପାଇଁ ଗୌତମ ଶତାନନ୍ଦଙ୍କୁ ଆଦେଶ ଦେଇ ତପସ୍ୟାର୍ଥେ ବନକୁ ଗଲେ । ଶତାନନ୍ଦ ପିତାଦେଶପାଳନ ଓ ମାତୃବଧ ଏହି ଦୁଇ ବିଷମ ସମସ୍ୟାରେ ପଡ଼ି ହତବୁଦ୍ଧି ହେଉଥିବାବେଳେ ଗୌତମ ବନରୁ ଫେରି ଅହଲ୍ୟା ନିରପରାଧା ବୋଲି ଜାଣି ପାରିଲେ । ଶତାନନ୍ଦ ତାଙ୍କର ଆଦେଶ ପାଳନ କରି ନାହାନ୍ତି ଦେଖି ସେ ଆନନ୍ଦିତ ହେଲେ । (ଭାଷାକୋଷ)

**ଶତାନୀକ**—(୧) ମତ୍ସ୍ୟ ଦେଶାଧିପତି ବିରାଟଙ୍କ କନିଷ୍ଠ ଭ୍ରାତା ।
(ମହାଭାରତ, ବିରାଟପର୍ବ)

(୨) ଚତୁର୍ଥ ପାଣ୍ଡବ ନକୁଳଙ୍କ ପୁତ୍ର । ଦ୍ରୌପଦୀ ଏହାଙ୍କର ମାତା । ଭାରତ ଯୁଦ୍ଧର ଶେଷଦିନ ରାତ୍ରିରେ ଦ୍ରୋଣ ପୁତ୍ର ଅଶ୍ୱତ୍ଥାମା ପାଣ୍ଡବ ଶିବିରରେ ପ୍ରବେଶ କରି ଏହାଙ୍କୁ ହତ୍ୟା କରିଥିଲେ ।

(୩) ଜନମେଜୟ ରାଜାଙ୍କ ପୁତ୍ର ସହସ୍ରାନୀକଙ୍କ ପିତା । ଏ ଚତୁର୍ଥ ଯୁଗରେ ରାଜତ୍ୱ କରୁଥିବା ଚନ୍ଦ୍ରବଂଶୀୟ ଦ୍ୱିତୀୟ ରାଜା ।

(୪) ସୁଦାସ ରାଜାଙ୍କ ପୁତ୍ର । (ଭାଗବତ)

(୫) ବ୍ୟାସ ଶିଷ୍ୟ ମୁନି ବିଶେଷ । (ହିନ୍ଦୀ ଶବ୍ଦସାଗର)

**ଶତାୟୁଷ**—ପୁରୁରବାଙ୍କ ଏକ ପୁତ୍ରର ନାମ (ହିନ୍ଦୀ ଶବ୍ଦସାଗର) । ମହାଭାରତ ଓ ବିଷ୍ଣୁପୁରାଣ ମତେ—ଉର୍ବଶୀଙ୍କ ଏକ ପୁତ୍ର ।

**ଶତ୍ରୁଘ୍ନ**—ଅଯୋଧ୍ୟାଧିପତି ଦଶରଥଙ୍କ ସର୍ବକନିଷ୍ଠ ପୁତ୍ର । ସୁମିତ୍ରା ଏହାଙ୍କର ମାତା । ଲକ୍ଷ୍ମଣ ଏହାଙ୍କ ସହୋଦର, ରାମଚନ୍ଦ୍ର ଏହାଙ୍କର ବୈମାତ୍ରେୟ

ଭ୍ରାତା । ଜନକକନ୍ୟା ଶ୍ରୁତକୀର୍ତ୍ତି ଏହାଙ୍କର ପତ୍ନୀ । ଶତ୍ରୁଘ୍ନ ମଧୁରାକ୍ଷସର ପୁତ୍ର ଲବଣଙ୍କୁ ଶୂଳହୀନ ଅବସ୍ଥାରେ ଆକ୍ରମଣ କରି ବଧ କଲେ ଏବଂ ମଧୁବନ ଧ୍ୱଂସ କରି ସେଠାରେ ମଧୁରା ବା ମଥୁରାପୁରୀ ନିର୍ମାଣ କରିଥିଲେ । ନବନିର୍ମିତ ନଗରୀରେ ପୁତ୍ର ଦୁହିଁଙ୍କୁ ରାଜା କରି ସେ ଅଯୋଧ୍ୟାକୁ ଫେରି ଆସିଲେ । ରାମଚନ୍ଦ୍ରଙ୍କ ସହିତ ସରଯୂରେ ଦେହ ବିସର୍ଜନ କରି ସ୍ୱର୍ଗକୁ ପ୍ରସ୍ଥାନ କଲେ । ଏହାଙ୍କ ଦୁଇ ପୁତ୍ରଙ୍କ ନାମ ସୁବାହୁ ଓ ଶତ୍ରୁଘାତୀ । (ରାମାୟଣ)

**ଶନି**—ସୂର୍ଯ୍ୟଙ୍କ ଔରସରେ ଛାୟାଙ୍କ ଗର୍ଭଜାତ ସନ୍ତାନ । ପୁରାଣ ମତରେ ଚନ୍ଦ୍ର-ଗୁପ୍ତଙ୍କ କନ୍ୟା ଏହାଙ୍କର ପତ୍ନୀ ଥିଲେ । ସ୍ତ୍ରୀଙ୍କ ଋତୁରକ୍ଷା କରି ନ ପାରିବା ଯୋଗୁଁ ଏହାଙ୍କ ସ୍ତ୍ରୀ ଏହାଙ୍କୁ ଅଭିଶାପ ଦେଲେ ଯେ ଏ ଯେଉଁ ବସ୍ତୁକୁ ଚାହିଁବେ ତାହା ବିନଷ୍ଟ ହେବ । ପାର୍ବତୀଙ୍କର ଗଣେଶ ଜନ୍ମ ହେବାରୁ ଏ ବିଷ୍ଣୁଙ୍କ ଆଦେଶରେ ନବଜାତ ଗଣେଶଙ୍କୁ ଦେଖିବାକୁ ଗଲେ ଓ ଗଣେଶଙ୍କ ମସ୍ତକରେ ଏହାଙ୍କ ଦୃଷ୍ଟି ପଡ଼ିବାରୁ ତାଙ୍କର ମୁଣ୍ଡଟି ଉଡ଼ିଗଲା । ଦେବତା-ମାନେ ଉତ୍ତରଶିରା ଗୋଟିଏ ହାତୀର ମୁଣ୍ଡ ଆଣି ଗଣେଶଙ୍କ ଗଣ୍ଡିରେ ଲଗାଇ-ଦେଲେ ଓ ତତ୍ପରେ ଗଣେଶ ଗଜାନନ ହେଲେ । ପାର୍ବତୀଙ୍କ ଶାପରୁ ଏ ଖଞ୍ଜ ହୋଇଗଲେ । (ବ୍ରହ୍ମବୈବର୍ତ୍ତ-ଗଣେଶଖଣ୍ଡ, ଭାଷାକୋଷ)

**ଶବରୀ**—ତ୍ରିକାଳଦର୍ଶିନୀ ତାପସୀ ବିଶେଷ । ଏ ଶବର ଜାତିର ଶ୍ରମଣୀନାମ୍ନୀ ତପସ୍ୱିନୀ ଥିଲେ । ରାବଣ ହୃତା ସୀତାଙ୍କ ଅନ୍ୱେଷଣକାରୀ ରାମଚନ୍ଦ୍ର ଏହାଙ୍କ ଆଶ୍ରମରେ ପହଞ୍ଚିବାରୁ ଏ ରାମଚନ୍ଦ୍ରଙ୍କୁ ଅଭ୍ୟର୍ଥନା କଲେ ଓ ତାଙ୍କ ସମ୍ମୁଖରେ ଚିତାଗ୍ନିରେ ପ୍ରବେଶ କଲେ । (ହିନ୍ଦୀ ଶବ୍ଦସାଗର)

ଅଧ୍ୟାତ୍ମ ରାମାୟଣରେ ଶବରୀଙ୍କୁ ରାମଚନ୍ଦ୍ର ନବଧା ଭକ୍ତି ବିଷୟରେ ଉପଦେଶ ଦେଇଥିଲେ । (ଅଧ୍ୟାତ୍ମ ରାମାୟଣ ଅରଣ୍ୟକାଣ୍ଡ ଦଶମ ଅଧ୍ୟାୟର ୨୦ ଶ୍ଳୋକଠାରୁ ୩୨ ଶ୍ଳୋକ ପର୍ଯ୍ୟନ୍ତ ଦ୍ରଷ୍ଟବ୍ୟ) ।

**ଶବଳା**—ବଶିଷ୍ଠଙ୍କ କାମଧେନୁ । ଏହି କାମଧେନୁକୁ ନେବାପାଇଁ ଗାଧି ରାଜପୁତ୍ର ମହାରାଜ ବିଶ୍ୱାମିତ୍ର ବଶିଷ୍ଠଙ୍କୁ ମାଗିଥିଲେ । କିନ୍ତୁ ବଶିଷ୍ଠ ଅସମ୍ମତ ହେବାରୁ ବିଶ୍ୱାମିତ୍ର ତାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଶବଳା ଅସଂଖ୍ୟ ସୈନ୍ୟ ପ୍ରସବ କରିବାରୁ ବିଶ୍ୱାମିତ୍ର ଶେଷରେ ପରାସ୍ତ ହୋଇ ଫେରିଗଲେ ।

(ବଶିଷ୍ଠ ଦେଖ)

**ଶବ୍ଦଭେଦୀବାଣ**—ଶବ୍ଦକାରକ ଅଦୃଶ୍ୟ ବ୍ୟକ୍ତି, ପଶୁ ବା ବସ୍ତୁକୁ ବିଦ୍ଧ କରିବାକୁ ସମର୍ଥ ବାଣ । ଅର୍ଜୁନ ଓ ଦଶରଥ ଶବ୍ଦଭେଦୀବାଣ ମାରିବା ଶିକ୍ଷା କରିଥିଲେ । ଅର୍ଜୁନ ଏହି ବାଣ ବଳରେ ଘୋଷିଂହ୍ଲ ଦୈତ୍ୟ ସତ୍ୟଭାମାଙ୍କୁ ହରି ନେବା-ବେଳେ ତାର ପଥରୁଦ୍ଧ କରି ପାରିଥିଲେ । ଦଶରଥ ଅନ୍ଧମୁନିଙ୍କ ପୁତ୍ର ଶ୍ରବଣକୁମାରଙ୍କୁ ଏହି ବାଣ ଦ୍ୱାରା ହତ୍ୟା କରିଥିଲେ ।

**ଶମୀକ**—ଏକ କ୍ଷମାଶୀଳ ତପଃ ପ୍ରଭାବ ସମ୍ପନ୍ନ ଋଷି । ମହାରାଜା ପରୀକ୍ଷିତ ଦିନେ ମୃଗୟାକୁ ଯାଇ ଏକ ଶରବିଦ୍ଧ ମୃଗର ଅନୁସରଣ କରୁ କରୁ ଏହି ଋଷିଙ୍କ ଆଶ୍ରମରେ ପହଞ୍ଚିଲେ । ଏହାଙ୍କୁ ପଳାୟିତ ମୃଗ ବିଷୟରେ ମଧ୍ୟ ପ୍ରଶ୍ନ କଲେ । ମୌନାବଲମ୍ବୀ ଋଷି କୌଣସି ଉତ୍ତର ନ ଦେବାରୁ ରାଜା କ୍ରୁଦ୍ଧ ହୋଇ ଏକ ମୃତସର୍ପ ତାଙ୍କ ଗଳାରେ ଲମ୍ବାଇ ଦେଲେ । ଏପରି ଅପମାନିତ ହୋଇ ସୁଦ୍ଧା କ୍ଷମାଶୀଳ ଋଷି ରାଜାଙ୍କୁ କିଛି କହିଲେ ନାହିଁ । ତାଙ୍କର ଶିଶୁ ପୁତ୍ର ଶୃଙ୍ଗୀ ସଙ୍ଗୀମାନଙ୍କ ସହିତ ଖେଳୁଥିଲା । ସମବୟସ୍କମାନଙ୍କଠାରୁ ପିତାଙ୍କ ଦୁର୍ଦ୍ଦଶା କଥା ଶୁଣି ସେ କ୍ରୁଦ୍ଧ ହୋଇ ଶାପଦେଲା—ଯେ ମୋ ପିତାଙ୍କ ଗଳାରେ ମୃତସର୍ପ ଗଳାଇ ଦେଇଛି ସେ ସାତ ଦିନ ଭିତରେ ସର୍ପରାଜ ତକ୍ଷକଙ୍କ ଦଂଶନରେ ପ୍ରାଣତ୍ୟାଗ କରୁ । ଶମୀକ ଏ କଥା ଶୁଣି ପୁତ୍ରକୁ ନାନାପ୍ରକାର ଭର୍ତ୍ସନା କଲେ ଏବଂ ନାନାବିଧ ଉପଦେଶ ମଧ୍ୟ ଦେଲେ । ମାତ୍ର ପୁତ୍ର କୌଣସି ପ୍ରକାରେ ମଧ୍ୟ ଅଭିଶାପ ପ୍ରତ୍ୟାହାର କଲେ ନାହିଁ । ଶମୀକ ଦୁଃଖିତ ହୋଇ ପରୀକ୍ଷିତଙ୍କୁ ଏହି ଦୁଃସମ୍ବାଦ ଜଣାଇ ଦେଲେ ଏବଂ କିପରି ତକ୍ଷକ ଦଂଶନରୁ ସେ ରକ୍ଷା ପାଇବେ ସେଥିପାଇଁ ସତର୍କ କରିଦେଲେ ଓ ନାନାବିଧ ଉପଦେଶ ଦେଲେ । କିନ୍ତୁ ଏହାର କିଛି ଫଳ ହେଲା ନାହିଁ । ନିର୍ଦ୍ଦିଷ୍ଟ ଦିନ ତକ୍ଷକ ଦଂଶନରେ ପରୀକ୍ଷିତ ପ୍ରାଣତ୍ୟାଗ କଲେ ।

(ପରୀକ୍ଷିତ ଓ କଶ୍ୟପ ଦେଖ)

**ଶମ୍ବର**—ଅସୁର ବିଶେଷ । ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କ ହାତରେ ନିହତ ହେବା କଥା ଶମ୍ବରକୁ ପୂର୍ବରୁ ଜଣାଥିଲା । ତେଣୁ ସେ ପ୍ରଦ୍ୟୁମ୍ନ ଜନ୍ମ ହେବାର ଷଷ୍ଠଦିନରେ ତାଙ୍କୁ ସୂତିକାଗାରରୁ ଚୋରାଇ ଆଣି ସମୁଦ୍ରରେ ପକାଇଦେଲା । ତତ୍‌କ୍ଷଣାତ୍ ଗୋଟିଏ ମାଛ ତାଙ୍କୁ ଗିଳିଦେଲା । ଦୈବବଶତଃ ସେ ମାଛଟିକୁ କେଉଟ ଧରି ଅସୁର ଘରକୁ ଆଣିଲା । କନ୍ଦର୍ପ ପତ୍ନୀ ରତିଦେବୀ ମାୟାବତୀ ନାମ ଧାରଣ କରି ସେହି ଅସୁର ଘରେ ଥିଲେ । ସେ ମାଛଟିକୁ କାଟି ତାହା ପେଟ ଭିତରୁ ଆପଣାର ସ୍ୱାମୀ ପ୍ରଦ୍ୟୁମ୍ନଙ୍କୁ ପାଇ ତାଙ୍କୁ ଯତ୍ନପୂର୍ବକ ଲାଳନ

ପାଳନ କଲେ. ଆସୁରୀ ବିଦ୍ୟା ଶିକ୍ଷା ମଧ୍ୟ ଦେଲେ । କ୍ରମେ ପ୍ରଦ୍ୟୁମ୍ନ ଷୋଡ଼ଶ ବର୍ଷରେ ପଦାର୍ପଣ କରନ୍ତେ ମାୟାବତୀ ତାଙ୍କୁ ସକଳ ବୃତ୍ତାନ୍ତ ଜଣାଇଲେ । ତହୁଁ ପ୍ରଦ୍ୟୁମ୍ନ (ଯେ ପୂର୍ବ ଜନ୍ମରେ କନ୍ଦର୍ପ ଥାଇ ମହାଦେବଙ୍କ କୋପାନଳରେ ଭସ୍ମୀଭୂତ ହୋଇଥିଲେ, ) ଶମ୍ବରାସୁରର ପ୍ରାଣ ସଂହାର କରି ରତିଦେବୀଙ୍କୁ ପୁନର୍ବାର ସ୍ତ୍ରୀରୂପେ ପ୍ରାପ୍ତ ହେଲେ । (ଭାଷାକୋଷ)

**ଶମ୍ବୂକ**—ଜନୈକ ଶୂଦ୍ର ତପସ୍ୱୀ । ଏ ତ୍ରେତାଯୁଗରେ ସ୍ୱର୍ଗକାମନା କରି କଠୋର ତପସ୍ୟା କରୁଥିଲା । ମାତ୍ର ଶୂଦ୍ରର ତପଶ୍ଚର୍ଯ୍ୟାରେ ଅଧିକାର ନ ଥିବାରୁ ରାଜ୍ୟରେ ପାପସଞ୍ଚାର ହେଲା ଏବଂ ଏହି ପାପର ଫଳରେ ଗୋଟିଏ ବ୍ରାହ୍ମଣ କୁମାର ଅକାଳରେ ପ୍ରାଣତ୍ୟାଗ କଲା । ପିତା ମୃତ ପୁତ୍ରକୁ ଘେନି ରାଜା ରାମଚନ୍ଦ୍ରଙ୍କ ନିକଟରେ ପହଞ୍ଚିବାରୁ ରାମଚନ୍ଦ୍ର ଏବଂଭୂତ ଅକାଳ ମୃତ୍ୟୁର କାରଣ ଅନୁସନ୍ଧାନ କରିବାକୁ ଯାଇ ଅରଣ୍ୟ ମଧ୍ୟରେ ଦେଖିଲେ ଏହି ଶୂଦ୍ର ମୁନି ଗୋଡକୁ ଉପରକୁ ଟେକି ମୁଣ୍ଡକୁ ତଳକୁ ରଖି ନିଜ ଦେହକୁ ଟାଙ୍ଗି ତପସ୍ୟା କରୁଅଛି । ଏହା ଦେଖି ରାମଚନ୍ଦ୍ର ସେହି ତପସ୍ୱୀର ମୁଣ୍ଡ କାଟିଦେଲେ । ଏଥିଯୋଗୁଁ ବ୍ରାହ୍ମଣପୁତ୍ର ବଞ୍ଚିଲା ଓ ଶୂଦ୍ର ତପସ୍ୱୀ ସ୍ୱର୍ଗକୁ ଗଲା ।
(ରାମାୟଣ, ରଘୁବଂଶ, ଭାଷାକୋଷ)

**ଶମ୍ଭଳ**—ଭାରତର ପ୍ରାଚୀନ ଗ୍ରାମ ବିଶେଷ । ବିଶ୍ୱକୋଷ ନିର୍ଣ୍ଣୟ ଦିଅନ୍ତି— ମହାଭାରତର ବନପର୍ବରେ ଏ ଗ୍ରାମର ନାମ ଉଲ୍ଲେଖ ଅଛି । କେହି କେହି ଉତ୍ତର ପ୍ରଦେଶର ମୋରଦାବାଦ ଅଞ୍ଚଳର କୌଣସି ଗ୍ରାମ ବୋଲି କହନ୍ତି । ଭାଗବତ (୧୨ । ୨ । ୧୮)ରେ ଏହି ଗ୍ରାମରେ ବିଷ୍ଣୁ କଲ୍କି ଅବତାର ଗ୍ରହଣ କରିବେ ବୋଲି ସଙ୍କେତ କରାଯାଇଅଛି । ବିଷ୍ଣୁ କଲ୍କିରୂପରେ ଏଠାରେ ଅବତୀର୍ଣ୍ଣ ହୋଇ ବନ୍ଧୁବାନ୍ଧବ ସହ ସହସ୍ର ବର୍ଷ ଅବସ୍ଥାନ କରିବେ । ସ୍କନ୍ଦପୁରାଣରେ ଶମ୍ଭଳମାହାତ୍ମ୍ୟରେ ଏ ତୀର୍ଥର ପରିଚୟ ପ୍ରଦତ୍ତ ହୋଇଅଛି ।
(ଭାଷାକୋଷ)

**ଶରଭଙ୍ଗ**—ରାମାୟଣବର୍ଣ୍ଣିତ ଋଷି ବିଶେଷ । ଏହି ମୁନି ଦଣ୍ଡକାରଣ୍ୟରେ ତପସ୍ୟା କରୁଥିଲେ । ବନବାସ କାଳରେ ରାମଚନ୍ଦ୍ର ଏହାଙ୍କ ଆଶ୍ରମରେ ଉପସ୍ଥିତ ହୋଇ ଦେଖିଲେ ଯେ, ଏହାଙ୍କୁ କଠୋର ତପସ୍ୟାଲବ୍ଧ ବ୍ରହ୍ମଲୋକକୁ ନେବାପାଇଁ ସ୍ୱୟଂ ଇନ୍ଦ୍ରଦେବ ଆସି ଉପସ୍ଥିତ ହୋଇଅଛନ୍ତି । କିନ୍ତୁ ଏହାଙ୍କ ନିକଟରେ ଉପସ୍ଥିତ ହୋଇଥିବା ଅତିଥି ରାମଚନ୍ଦ୍ରଙ୍କୁ ସତ୍କାର କରିବାପାଇଁ ଋଷି ଇନ୍ଦ୍ରଙ୍କ ସଙ୍ଗେ ବ୍ରହ୍ମଲୋକକୁ ଯିବା କାର୍ଯ୍ୟ ସ୍ଥଗିତ ରଖିଲେ ଓ ରାମଚନ୍ଦ୍ରଙ୍କୁ

କହିଲେ ଯେ ମୁଁ ମୋ ତପସ୍ୟା ବଳରେ ଯେଉଁ ପୁଣ୍ୟଲୋକମାନ ଅର୍ଜନ କରିଅଛି ସେ ସମସ୍ତଙ୍କୁ ଆପଣ ଗ୍ରହଣ କରନ୍ତୁ । ରାମଚନ୍ଦ୍ର ଏଥିରେ ଅସମ୍ମତ ହେଲେ । ପରେ ରାମଚନ୍ଦ୍ରଙ୍କୁ ତାଙ୍କର ଆଶ୍ରୟସ୍ଥାନ ସେ ନିର୍ଦ୍ଦେଶ କରିଦେଲେ ଓ ତାଙ୍କ ସମ୍ମୁଖରେ ଅଗ୍ନି ସ୍ଥାପନପୂର୍ବକ ମନ୍ତ୍ରୋଚ୍ଚାରଣ କରି ତେଥିରେ ଆହୁତ ଦେଇ ଶେଷରେ ଆପଣା ଶରୀରକୁ ମଧ ସେଥିରେ ଝାସଦେଲେ । ତାଙ୍କ ଦେହ ଉକ୍ତ ଅଗ୍ନିରେ ଭସ୍ମୀଭୂତ ହେବାରୁ ଗୋଟିଏ ଉଜ୍ଜ୍ୱଳବର୍ଣ୍ଣବିଶିଷ୍ଟ କୁମାର ଉତ୍ପନ୍ନ ହେଲେ । ଉକ୍ତ କୁମାର ବହ୍ନି ମଧ୍ୟରୁ ଉଠି ସଶରୀରେ ବ୍ରହ୍ମଲୋକକୁ ଗମନ କଲେ । (ରାମାୟଣ ଅରଣ୍ୟକାଣ୍ଡ, ଭାଷାକୋଷ)

**ଶରଯୂ**—ଅଯୋଧ୍ୟା ଦେଶସ୍ଥ ନଦୀ ବିଶେଷ । ରାମ ଲକ୍ଷ୍ମଣ ଏହି ନଦୀରେ ଝାସଦେଇ ସ୍ୱର୍ଗାରୋହଣ କରିଥିଲେ । ମହାପୁରୁଷ ତୁଳସୀ ଦାସଙ୍କ ଆଶ୍ରମ ମଧ ଏ ନଦୀ କୂଳରେ ଥିଲା ।

**ଶର୍ମିଷ୍ଠା**—ଦୈତ୍ୟପତି ବୃଷପର୍ବାଙ୍କ କନ୍ୟା । ରାଜା ଯଯାତିଙ୍କ କନିଷ୍ଠା ପତ୍ନୀ । ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କର ଏ ସଖୀ ଥିଲେ । ଦେବଯାନୀ ଯଯାତିଙ୍କୁ ବିବାହ ହୋଇ ତାଙ୍କ ନଗରକୁ ଯିବାବେଳେ ଶର୍ମିଷ୍ଠା ତାଙ୍କ ସଙ୍ଗରେ ଗଲେ । ଯଯାତି ଶର୍ମିଷ୍ଠାଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ଗୋପନରେ ବିବାହ କଲେ । ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରହ୍ୟୁ, ଅନୁ ଓ ପୁରୁ ନାମକ ତିନି ପୁତ୍ର ଜନ୍ମିଥିଲେ । ଯଯାତିଙ୍କ ଅନ୍ତେ ପୁରୁ ରାଜସିଂହାସନ ଆରୋହଣ କଲେ ।

**ଶର୍ଯ୍ୟାତ**—ରାଜା ବିଶେଷ । ବୈବସ୍ୱତ ମନୁଙ୍କ ପୁତ୍ର । ଏକଦା ଶର୍ଯ୍ୟାତ ମୃଗୟା-ବ୍ୟପଦେଶରେ ଚ୍ୟବନ ମହର୍ଷିଙ୍କ ଆଶ୍ରମରେ ପହଞ୍ଚିଲେ । ସେଠାରେ ଏହାଙ୍କ କନ୍ୟା ସୁକନ୍ୟା ବାଲ୍ୟଚପଳତା ବଶତଃ ଚ୍ୟବନଙ୍କ ଆଖି ଫୁଟାଇ ଦେବାରୁ ମୁନିବର କ୍ରୁଦ୍ଧ ହୋଇ ଏହାଙ୍କ ସୈନ୍ୟସାମନ୍ତଙ୍କ ମଳତ୍ୟାଗ ବନ୍ଦ କରିଦେଲେ । ଅବଶେଷରେ ମୁନିଙ୍କ କ୍ରୋଧ ଶାନ୍ତ ପାଇଁ ଶର୍ଯ୍ୟାତ ଆପଣା କନ୍ୟାକୁ ଚ୍ୟବନଙ୍କ ସହିତ ବିବାହ କରାଇଥିଲେ । (ଭାଷାକୋଷ)

**ଶଲ୍ୟ**—ମଦ୍ରରାଜ । ଏହାଙ୍କ ଭଗ୍ନୀ ମାଦ୍ରୀ ପାଣ୍ଡୁଙ୍କର ଦ୍ୱିତୀୟା ପତ୍ନୀ । ଦ୍ରୌପଦୀ ସ୍ୱୟମ୍ବର ସମୟରେ ଭୀମଙ୍କ ସହିତ ମଲ୍ଲଯୁଦ୍ଧ କରି ମଦ୍ର ପରାସ୍ତ ହୋଇଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଏ ପାଣ୍ଡବ ପକ୍ଷରେ ଯୋଗଦେବାକୁ ମନସ୍ଥ କରିଥିଲେ । ମାତ୍ର କୌଶଳକ୍ରମେ ଦୁର୍ଯ୍ୟୋଧନ ଏହାଙ୍କୁ ନିଜ ପକ୍ଷକୁ ନେଇଗଲେ । ମାତ୍ର

ଯୁଧିଷ୍ଠିର ଯୁଦ୍ଧର ପ୍ରାକ୍‌କାଳରେ ଯେତେବେଳେ ତାଙ୍କ ପଦ ବନ୍ଦନା କଲେ ପରିତୁଷ୍ଟ ହୋଇ ଶଲ୍ୟ 'ଯୁଦ୍ଧରେ ବିଜୟୀ ହୁଅ ବୋଲି ଆଶୀର୍ବାଦ କରିଥିଲେ' ୧୬ ଓ ୧୭ ଦିନ ଯୁଦ୍ଧରେ ଶଲ୍ୟ କର୍ଣ୍ଣଙ୍କ ସାରଥୀ ହେବା ସ୍ୱୀକାର କରିଥିଲେ । ଏଥିଲାଗି କର୍ଣ୍ଣ ଓ ଶଲ୍ୟଙ୍କ ଭିତରେ ଯେଉଁ କଳହ ହେଲା ତାହା କୃଷ୍ଣସିଂହ ମହାଭାରତ କର୍ଣ୍ଣ ପର୍ବରେ ଏକ କୌତୂହଳପୂର୍ଣ୍ଣ ବାକ୍‌ଯୁଦ୍ଧ । କର୍ଣ୍ଣଙ୍କ ମୃତ୍ୟୁ ପରେ ଶଲ୍ୟ ସେନାପତିରୂପେ ଯୁଦ୍ଧ ଚଳାଇ ଯୁଦ୍ଧର ୧୮ ଦିନ ଯୁଧିଷ୍ଠିରଙ୍କ ଦ୍ୱାରା ନିହତ ହେଲେ । (ମହାଭାରତ)

**ଶାକମ୍ଭରୀ**—ଦୁର୍ଗାଙ୍କର ଏକ ନାମ । ମାର୍କଣ୍ଡେୟପୁରାଣ ଅନ୍ତର୍ଗତ ଦେବୀ-ମହାତ୍ମ୍ୟ ବା ଚଣ୍ଡୀ ଗ୍ରନ୍ଥରେ ୧୧ଶ ଅଧ୍ୟାୟରେ ଦୁର୍ଗା ଦେବତାମାନଙ୍କୁ କହିଅଛନ୍ତି ଯେ ଯେତେବେଳେ ପୃଥିବୀରେ ୧୦୦ ବର୍ଷ କାଳ ଅନାବୃଷ୍ଟି ହେବ, ସେହି ସମୟରେ ଅଯୋନିଜାରୂପେ (ସତୀରୂପେ) ପୃଥିବୀରେ ଆବିର୍ଭୂତା ହୋଇ ମୁଁ ମୋ ନିଜ ଦେହ ସମ୍ଭୂତ ପ୍ରାଣ ଧାରକ ଶାକ ଦ୍ୱାରା ଦୁର୍ଭିକ୍ଷପ୍ରପୀଡ଼ିତ ଲୋକମାନଙ୍କୁ ଭରଣପୋଷଣ କରି ବଞ୍ଚାଇବି । ଏଥିପାଇଁ ମୋ ନାମ ଶାକମ୍ଭରୀ ହେବ । ସେହି କାଳରେ ମୁଁ ଦୁର୍ଗମାଖ୍ୟ ଅସୁରକୁ ବିନାଶ କରିବି ଏବଂ ସେହି ହେତୁରୁ ମୋର ନାମ ଦୁର୍ଗା ହେବ ।

(୨) ତୀର୍ଥ ବିଶେଷ । ଆଜମୀର ଅନ୍ତର୍ଗତ ନଗରୀ ବିଶେଷ । ଏଠାରେ ପୁରୁହୂତାଦେବୀ ମାସକୁ ମାସ ଥରେମାତ୍ର ଶାକାହାର କରି ସହସ୍ର ବର୍ଷ ଅତିବାହିତ କରିଥିଲେ । ସେଠାକୁ ଆଗତ ମହର୍ଷିମାନଙ୍କୁ ଶାକ ଦ୍ୱାରା ସତ୍‌କାର କରିଥିବାରୁ ନଗରଟିର ଏପରି ନାମକରଣ ହୋଇଅଛି । (ଭାଷାକୋଷ)

**ଶାଣ୍ଡିଲ୍ୟ**—ଜଣେ ଗୋତ୍ର ପ୍ରବର୍ତ୍ତକ ଋଷି ।

**ଶାନ୍ତନୁ**—ଭରତ ଯୁଦ୍ଧର ବିଖ୍ୟାତ ମହାବୀର ଭୀଷ୍ମଙ୍କ ପିତା । ପ୍ରତୀପ ହେଉଛନ୍ତି ଶାନ୍ତନୁଙ୍କ ଜନକ । ଗଙ୍ଗାଦେବୀ ଶାନ୍ତନୁଙ୍କୁ ପତି ସ୍ୱୀକାର କରିଥିଲେ । ତାହାଙ୍କ ଗର୍ଭରୁ ଭୀଷ୍ମ ନାମକ ଏକ ପୁତ୍ର ଜନ୍ମିଥିଲେ । (ବସୁ ଦେଖ) ଶାନ୍ତନୁ ବସୁରାଜ (କାହାରି କାହାରି ମତରେ ଦାସରାଜ)ଙ୍କ କନ୍ୟା ସତ୍ୟବତୀଙ୍କ ରୂପଲାବଣ୍ୟରେ ମୁଗ୍ଧ ହୋଇ ତାହାଙ୍କୁ ବିବାହ କରିବାକୁ ଇଚ୍ଛା କରିଥିଲେ । ମାତ୍ର ବସୁରାଜ ବୃଦ୍ଧ ଶାନ୍ତନଙ୍କୁ ଉକ୍ତ କନ୍ୟା ସଂପ୍ରଦାନ କରିବାକୁ ଇଚ୍ଛା କଲେନାହିଁ । ଶାନ୍ତନୁ ଯଦି ପ୍ରତିଜ୍ଞା କରିବେ ସତ୍ୟବତୀ ଗର୍ଭଜାତ ପୁତ୍ର ରାଜ୍ୟର ଦାୟାଦ ହେବେ ବୋଲି ତେବେ ସେ କନ୍ୟା ଦେବେ ବୋଲି

ମଜ୍ଜିଲେ । ବୃଦ୍ଧ ଶାନ୍ତନୁ ଏ କଥାରେ ଦୋଳାୟମାନ ହୋଇଥିଲେ, ମାତ୍ର ଭୀଷ୍ମ ଏହା ଶୁଣିପାରି ପିତାଙ୍କୁ ବିବାହ ହେବାପାଇଁ ଅନୁରୋଧ କଲେ । ନିଜେ ଭୀଷ୍ମ ବିବାହ କରିବେ ନାହିଁ କି ରାଜତ୍ୱ ଗ୍ରହଣ କରିବେ ନାହିଁ ବୋଲି ବଦ୍ଧପରିକର ହେଲେ । ଜୀବନବ୍ୟାପୀ ଭୀଷ୍ମ ଏ ପ୍ରତିଜ୍ଞାଭ୍ରଷ୍ଟ ହୋଇନଥିଲେ । ସତ୍ୟବତୀଙ୍କ ଗର୍ଭରୁ ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦ ଜନ୍ମ ହୋଇଥିଲେ ।

**ଶାନ୍ତା**—ଅଯୋଧ୍ୟାଧିପତି ଦଶରଥଙ୍କ କନ୍ୟା । ମିତ୍ର ଅଙ୍ଗରାଜ ଲୋମପାଦ ଏହାଙ୍କୁ ପାଳିତା କନ୍ୟାରୂପେ ରଖିଥିଲେ । ମହର୍ଷି ଋଷ୍ୟଶୃଙ୍ଗ ଏହି ଶାନ୍ତାଙ୍କର ସ୍ୱାମୀ ।
(ରାମାୟଣ)

**ଶାମ୍ବ**—ଜାମ୍ବବତୀଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ପୁତ୍ର । ଏହାଙ୍କୁ ବଳରାମ ସ୍ନେହପୂର୍ବକ ଶିକ୍ଷା ଦେଇଥିଲେ । ଦୁର୍ଯ୍ୟୋଧନଙ୍କ କନ୍ୟା ଲକ୍ଷ୍ମଣାଙ୍କୁ ଏ ବଳପୂର୍ବକ ହରଣ କରିବାରୁ କୌରବମାନେ ଏହାଙ୍କୁ ପରାସ୍ତ କରି ବନ୍ଦୀ କରିଥିଲେ, ମାତ୍ର କୌରବ ସଖା ବଳରାମ ହସ୍ତିନାପୁରକୁ ଯାଇ ଏହାଙ୍କୁ ମୁକ୍ତ କରାଇ ଲକ୍ଷ୍ମଣା ସହିତ ବିବାହ କରାଇଥିଲେ । ଏ ବଜ୍ରନାଭପୁର ଯାଇ ପ୍ରଦ୍ୟୁମ୍ନଙ୍କୁ ଶମ୍ବରାସୁର ବଧରେ ସାହାଯ୍ୟ କରିଥିଲେ । ଶ୍ରୀକୃଷ୍ଣଙ୍କ ଅନ୍ୟ ପୁତ୍ରମାନେ ରଙ୍ଗ ରହସ୍ୟ କରିବା ଉଦ୍ଦେଶ୍ୟରେ ଏହାଙ୍କୁ ନାରୀବେଶ କରି ଏହାଙ୍କ ପେଟରେ ଲୁଗାତଳେ ଗୋଟିଏ ଲୌହପାତ୍ର ରଖି ତା ଉପରେ ଲୁଗା ଗୁଡ଼ାଇ ଦେବାରୁ ଗୋଟିଏ ଆସନ୍ନପ୍ରସବା ନାରୀ ପରି ଦେଖାଗଲେ । ଜଗନ୍ନାଥ ଦାସ ଭାଗବତରେ ଅଛି—

'ଶାମ୍ବକୁ ନାରୀ ବେଶ କରି ।
ଉଦରେ ଲୌହ ପାତ୍ର ଭରି ॥'

କୁମାରମାନେ ସେଠାରେ ଉପସ୍ଥିତ ବିଶ୍ୱାମିତ୍ର ଆଦି ଋଷିମାନଙ୍କଠାରୁ ନାରୀ ବେଶଧାରୀ ଶାମ୍ବଙ୍କୁ ନେଇ ଥଟ୍ଟା କରିବା ଉଦ୍ଦେଶ୍ୟରେ ପଚାରିଲେ— ଏ ନାରୀ ଗର୍ଭରୁ ପୁଅ କି ଝିଅ କିଏ ଜନ୍ମିବ କହିଲ ? ଋଷିମାନେ କୁମାର-ମାନଙ୍କ ଧୃଷ୍ଟତା ଜାଣି କ୍ରୁଦ୍ଧ ହେଲେ ଓ ଶାପ ଦେଲେ ଯେ ଏହା ଗର୍ଭରୁ ଏକ ଲୌହମୂଷଳ ଜାତ ହେବ ଓ ଉକ୍ତ ଲୌହମୂଷଳ ଯଦୁବଂଶ ଧ୍ୱଂସ କରିବ । କୁମାରମାନେ ମଥୁରା ରାଜା ଉଗ୍ରସେନଙ୍କୁ ଏ ସମସ୍ତ ବିଷୟ ଜଣାଇଲେ । ସେ କହିଲେ, ଏ ମୂଷଳକୁ ନେଇ ସମୁଦ୍ର ପାଣିରେ ପର୍ବତ ପୃଷ୍ଠରେ ଘୋରି କ୍ଷୟ କର । ତଦନୁସାରେ କୁମାରମାନେ ଏ ମୂଷଳଟିକୁ ନେଇ ପର୍ବତରେ ଘଷିବାରୁ ଲୌହଚୂର୍ଣ୍ଣ ସମୁଦ୍ର ଜଳରେ ମିଶି ଭାସି ଭାସି

ସମୁଦ୍ର ତୀରରେ ଲାଗିଲା ଓ ସେଠାରେ ଏରକା ବନ (ପନ୍ଦର ବଣ) ଜାତ ହେଲା । ଏତେ ଘୋର ଘୋଷ ସୁଦ୍ଧା ଅବଶେଷରେ ମୁଷଳରୁ ଖଣ୍ଡେ ଲୁହା ବାକି ରହିଗଲା । କୁମାରମାନେ ତାକୁ ସମୁଦ୍ର ଗର୍ଭକୁ ଫିଙ୍ଗି ଦେଲେ । ତାକୁ ଗୋଟିଏ ମାଛ ଗିଳି ଦେଲା । ଜଣେ କେଉଟ ସେ ମାଛକୁ ଜାଲରେ ଧରି ଆଣି ଜାରା ନାମକ ଶବରକୁ ଦେଲା । ମାଛ ପେଟରୁ ସେ ଲୁହାଖଣ୍ଡିକ ପାଇ ଜାରାଶବର ସେଥିରେ ଗୋଟିଏ ଶର ତିଆରି କରିଥିଲା ଓ ଶବର ଦ୍ୱାରା ନିକ୍ଷିପ୍ତ ସେହି ବାଣରେ ବିଦ୍ଧ ହୋଇ ଶ୍ରୀକୃଷ୍ଣ ନରକଳେବର ତ୍ୟାଗ କଲେ । ଉକ୍ତ ଏରକା ବନରେ ଯଦୁବଂଶର ସମସ୍ତେ ହଣାହଣି ହୋଇ ମଲେ ।

(ଭାଗବତ ୧୧ଶ ସ୍କନ୍ଧ)

ଶାମ୍ବ ଗୁରୁଜନମାନଙ୍କୁ ଅପମାନ ଦେବାରୁ ସେମାନଙ୍କ ଶାପରେ ସେ କୁଷ୍ଠୀ ହୋଇଗଲେ । ଶାକଦ୍ୱୀପରୁ ବ୍ରାହ୍ମଣ ଆଣାଇ ସୂର୍ଯ୍ୟ ପୂଜା କରି ଆରୋଗ୍ୟଲାଭ କଲେ । ଶାମ୍ବ କୋଣାର୍କ ତୀର୍ଥରେ ସୂର୍ଯ୍ୟପୂଜା କରୁଥିବା କଥା ମହାଭାରତରେ ଦୃଷ୍ଟ ହୁଏ । ଗୋଟିଏ ସୂର୍ଯ୍ୟ ପୁରାଣର ନାମ ଶାମ୍ବ ପୁରାଣ, ଏ ଉପପୁରାଣ ନାରଦ ଶାମ୍ବଙ୍କୁ କହିଥିଲେ । ଏହି ପୁରାଣରେ ସୂର୍ଯ୍ୟସ୍ତବରାଜସ୍ତୋତ୍ର ଓ ସୂର୍ଯ୍ୟଙ୍କ ଏକବିଂଶତି ନାମ ଅଛି । (ଭାଷାକୋଷ)

**ଶାର୍ଦ୍ଦୂଳ**—ରାକ୍ଷସ ବିଶେଷ । ରାମଚନ୍ଦ୍ର ଲଙ୍କା ଅଭିଯାନ କରିବା ପୂର୍ବରୁ ସୁବେଲାଦ୍ରିରେ ସୈନ୍ୟସାମନ୍ତମାନଙ୍କ ସହିତ ରହିଥିଲେ । ରାବଣ ଆଦେଶରେ ଶାର୍ଦ୍ଦୂଳ ଲଙ୍କା ଗଡ଼ ପାଚେରି ଉପରେ ଠିଆ ହୋଇ ରାମଚନ୍ଦ୍ରଙ୍କ ସୈନ୍ୟ ସଂଖ୍ୟା କଳନା କରିଥିଲା । ସେ ବିଧାତାଙ୍କ ପ୍ରସାଦରୁ ଗୋଟିଏ ଅଞ୍ଜନ ପାଇଥିଲା । ସେ ଅଞ୍ଜନ ଆଖିରେ ଲଗାଇଲେ ସହସ୍ର ଯୋଜନ ଦୂରରେ ଥିବା ପଦାର୍ଥ ସେ ଅକ୍ଲେଶରେ ଦେଖି ପାରୁଥିଲା । (ରାମାୟଣ—ଲଙ୍କାକାଣ୍ଡ)

**ଶାଲ୍ୱ**—ପ୍ରବଳ ପ୍ରତାପଶାଳୀ ରାଜା ବିଶେଷ । କାଶୀରାଜଙ୍କ ତିନିଗୋଟି କନ୍ୟା ହରଣ ସମୟରେ ଭୀଷ୍ମଙ୍କ ସହିତ ଏହାଙ୍କର ଯୁଦ୍ଧ ହୋଇଥିଲା । ଶାଲ୍ୱ ପରାସ୍ତ ହେଲେ । ଭୀଷ୍ମ ତିନିଗୋଟିଯାକ କନ୍ୟା ନେଇ ହସ୍ତିନାକୁ ଆସିଲେ । ଜ୍ୟେଷ୍ଠା ଅମ୍ବା ଶାଲ୍ୱଙ୍କୁ ମନେ ମନେ ପତିରୂପେ ବରଣ କରିଥିବାରୁ ଭୀଷ୍ମ ତାଙ୍କୁ ପରିତ୍ୟାଗ କଲେ । ଅମ୍ବା ଶାଲ୍ୱ ରାଜାଙ୍କ ନିକଟକୁ ଗଲେ ମଧ୍ୟ ତାହାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେଲେ । ଶାଲ୍ୱ ଶିଶୁପାଳଙ୍କର ପରମ ବନ୍ଧୁ ଥିଲେ । ଶ୍ରୀକୃଷ୍ଣଙ୍କ ଦ୍ୱାରା ଶିଶୁପାଳ ବଧ ହେବା ପରେ ଶାଲ୍ୱ ଦ୍ୱାରକା ଆକ୍ରମଣ କରି ରାଜ୍ୟ ଅବରୋଧ କଲେ । ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରି ନିହତ ହେଲେ ।

(ଚରିତାଭିଧାନ ଓ ହିନ୍ଦୀ ଶବ୍ଦସାଗର)

**ଶିଖଣ୍ଡୀ**—ଦ୍ରୁପଦରାଜଙ୍କ ନପୁଂସକ ଭାବାପନ୍ନ ପୁତ୍ର । ଏହି କ୍ଲୀବରୂପୀ ଶିଖଣ୍ଡୀଙ୍କୁ ରଥର ଅଗ୍ରଭାଗରେ ସ୍ଥାପନ କରି ଅର୍ଜୁନ ଭାରତ ଯୁଦ୍ଧର ଦଶମ ଦିନରେ ଭୀଷ୍ମଙ୍କ ପତନ ସାଧନ କରିଥିଲେ । ଭୀଷ୍ମଙ୍କର ପ୍ରତିଜ୍ଞା ଥିଲା ଯେ ସେ କୌଣସି ସ୍ତ୍ରୀ ପ୍ରତି ଶର ନିକ୍ଷେପ କରିବେ ନାହିଁ । ମହାରଥୀ ଭୀଷ୍ମଙ୍କ ପତନ ନିମିତ୍ତ ଅର୍ଜୁନ ଏହି କୂଟନୀତି ପ୍ରୟୋଗ କରି ଜୟଯୁକ୍ତ ହୋଇଥିଲେ ।

ଶିଖଣ୍ଡୀ ପୂର୍ବଜନ୍ମରେ କାଶୀରାଜଙ୍କ ଜ୍ୟେଷ୍ଠା କନ୍ୟା ଅମ୍ବା ଥିଲେ । ସେ ଭୀଷ୍ମଙ୍କ ଦ୍ୱାରା ପରିତ୍ୟକ୍ତା ହେବା ପରେ ଶାଲ୍ୱ ତାଙ୍କୁ ଗ୍ରହଣ କରିବାକୁ ଅସମ୍ମତ ହେବାରୁ ସେ ପୁନର୍ବାର ଭୀଷ୍ମଙ୍କ ପାଖକୁ ଆସିଲେ । ମାତ୍ର ଭୀଷ୍ମ ତାଙ୍କୁ ଗ୍ରହଣ କଲେ ନାହିଁ । ତେଣୁ ସେ ପ୍ରତିହିଂସା ସାଧନ ପାଇଁ ଅରଣ୍ୟରେ ତପସ୍ୟା କଲେ । ଅବଶେଷରେ ଇଷ୍ଟ ଦେବତାଙ୍କଠାରୁ ବର ପାଇଲେ ଯେ ସେ ଅନ୍ୟ ଜନ୍ମରେ ଭୀଷ୍ମଙ୍କ ବଧର ଏକମାତ୍ର କାରଣ ହୋଇ ପାରିବେ । ବର ଲାଭ ପରେ ସେ ଦେହ ତ୍ୟାଗ କରି ଦ୍ରୁପଦଙ୍କ ଗୃହରେ ଶିଖଣ୍ଡୀ ରୂପେ ଜନ୍ମ ଗ୍ରହଣ କରିଥିଲେ । ଦ୍ରୁପଦ ଏହି ନପୁଂସକ ଭାବାପନ୍ନ ପୁତ୍ରଙ୍କୁ ଦଶାର୍ଣ୍ଣ ଦେଶର ରାଜକୁମାରୀଙ୍କ ସହିତ ବିବାହ କରାଇଦେଲେ । ବିବାହ ପରେ ଏହାଙ୍କର କ୍ଲୀବତ୍ୱ ପ୍ରକାଶ ପାଇବାରୁ ସେ ଲଜ୍ଜାରେ ଘର ଛାଡ଼ି ବଣକୁ ପଳାଇଲେ । ସେଠାରେ କୁବେରଙ୍କ ଏକ ଅନୁଚର ସହିତ ତାଙ୍କର ସାକ୍ଷାତ ହୁଅନ୍ତେ ଶିଖଣ୍ଡୀ ତାଙ୍କୁ ନିଜର ଦୁଃଖ ନିବେଦନ କଲେ । କୁବେରାନୁଚର ଦୟା ପରବଶ ହୋଇ ତାଙ୍କୁ ଜୀବିତଥିବା ପର୍ଯ୍ୟନ୍ତ ନିଜର ପୁରୁଷତ୍ୱ ପ୍ରଦାନ କଲେ । ଶିଖଣ୍ଡୀ ଆନନ୍ଦରେ ଗୃହକୁ ଫେରି ସୁଖରେ କାଳ କଟାଇଲେ ।

ଭାରତ ଯୁଦ୍ଧର ଶେଷ ଦିନ ପାଣ୍ଡବ ଶିବିରରେ ଅଶ୍ୱତ୍ଥାମା କର୍ତ୍ତୃକ ଯେଉଁ ନୈଶ ହତ୍ୟାକାଣ୍ଡ ଘଟିଥିଲା ସେଥିରେ ଶିଖଣ୍ଡୀ ଅଶ୍ୱତ୍ଥାମାଙ୍କ ଦ୍ୱାରା ନିହତ ହେଲେ । (ଚରିତାଭିଧାନ)

**ଶିନି**—ଯଦୁବଂଶୀୟ ବିଖ୍ୟାତ ବୀରପୁରୁଷ । ବସୁଦେବଙ୍କ ସହିତ ଦେବକୀଙ୍କ ବିବାହ ହେବାଲାଗି ଏ ବଳପୂର୍ବକ ଦେବକୀଙ୍କୁ ନେଇ ଆସିଥିଲେ । ଏ ଉପଲକ୍ଷେ ସୋମଦତ୍ତଙ୍କ ସହିତ ଶିନିଙ୍କର ଯୁଦ୍ଧ ହୋଇଥିଲା । ଯୁଦ୍ଧରେ ସୋମଦତ୍ତ ପରାଜିତ ହେଲେ । ଏହାଙ୍କର ପୁତ୍ର ସତ୍ୟକ ଓ ନାତି ମହାବୀର ସାତ୍ୟକି ।

(ଚରିତାଭିଧାନ)

**ଶିବ**—ହିନ୍ଦୁମାନଙ୍କ ଦେବତାମାନଙ୍କ ମଧ୍ୟରେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ଆସନ ଅତି ଉଚ୍ଚରେ । ଶିବଙ୍କର ଦୁଇ ପତ୍ନୀ ପ୍ରଥମା ସତୀ ଓ ଦ୍ୱିତୀୟା ଗୌରୀ । ସତୀ

ପିତୃଯଜ୍ଞରେ ଯୋଗଦେଇ ପତି ନିନ୍ଦା ଯୋଗେ ଦେହ ତ୍ୟାଗ କରି ହିମାଳୟଙ୍କ ଗୃହରେ ଜାତ ହୋଇଥିଲେ । ପର୍ବତ ରାଜକନ୍ୟା ପାର୍ବତୀ (ଉମା) ଶିବଙ୍କୁ ଆରାଧନା କରି ତାହାଙ୍କୁ ପତିରୂପେ ଲାଭ କରିଥିଲେ । ଏହାଙ୍କର ଦୁଇଟି ପୁତ୍ର— ପ୍ରଥମ କାର୍ତ୍ତିକେୟ, ଅପର ଗଣେଶ ।

ମହାଦେବଙ୍କ ଲିଙ୍ଗପୂଜା ବିଷୟରେ ପଦ୍ମପୁରାଣ ଉତ୍ତର ଖଣ୍ଡରେ ଏକ ସୁନ୍ଦର ଉପାଖ୍ୟାନ ଦୃଷ୍ଟ ହୁଏ । ତାହା ନିମ୍ନରେ ଦିଆଗଲା ।

ଦେବାଦିଦେବ ମହାଦେବ ଭାର୍ଯ୍ୟା ସହିତ ଏହି ବିଗର୍ହିତ ରୂପ କାହିଁକି ପ୍ରାପ୍ତ ହେଲେ, ମହାରାଜ ଦିଲୀପ, ମହର୍ଷି ବଶିଷ୍ଠଙ୍କୁ ଏହି ପ୍ରଶ୍ନ ପଚାରିଥିଲେ । ମହର୍ଷି ବଶିଷ୍ଠ କହିଲେ—ପୂର୍ବକାଳରେ ସ୍ୱାୟମ୍ଭୁବ ମନ୍ୱନ୍ତରରେ ଋଷିମାନେ ମନ୍ଦର ପର୍ବତରେ ଏକ ବିରାଟ ଯଜ୍ଞ ଅନୁଷ୍ଠାନ କରୁଥିଲେ । ସେହି ଯଜ୍ଞରେ ସମସ୍ତ ଋଷିମାନେ ସମବେତ ହୋଇ ପରସ୍ପର ମଧ୍ୟରେ ଆଲୋଚନା କଲେ ବେଦବିଦ୍ ବ୍ରାହ୍ମଣମାନଙ୍କ ପକ୍ଷେ କେଉଁ ଦେବତା ପୂଜନୀୟ । ଋଷିମାନେ ଏହାର ମୀମାଂସା କରି ନ ପାରି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପରାମର୍ଶ ଏଥିଲାଗି ଏକାନ୍ତ ଆବଶ୍ୟକ ବୋଲି ନିର୍ଦ୍ଧାରଣ କଲେ । ବର୍ତ୍ତମାନ ସେମାନେ ସେହି ସେହି ଦେବତାମାନଙ୍କ ପାଖକୁ ଯିବା ଲାଗି ଉଦ୍ୟତ ହେଲେ । ସମସ୍ତେ ପ୍ରଥମେ ଗଲେ ଶିବଙ୍କ ନିକଟକୁ । କୈଳାସ ଗମନ କରି ସେମାନେ ଦେଖିଲେ ଦ୍ୱାର ରୁଦ୍ଧ ହୋଇଛି । ନନ୍ଦୀ ଦ୍ୱାରଦେଶର ରକ୍ଷକରୂପେ ନିଯୁକ୍ତ ହୋଇଛନ୍ତି । ଋଷିମାନେ ତାଙ୍କୁ କହିଲେ—'ତୁମେ ବର୍ତ୍ତମାନ ଯାଇ ଆମ୍ଭମାନଙ୍କ ଆଗମନ-ବାର୍ତ୍ତା ଦେବାଦିଦେବ ମହାଦେବଙ୍କୁ ଜ୍ଞାପନ କର । ଆମ୍ଭେମାନେ ସମସ୍ତେ ତାଙ୍କୁ ପ୍ରଣାମ କରିବା ପାଇଁ ଏଠାରେ ଏକତ୍ରିତ ହୋଇଛୁଁ ।' ନନ୍ଦୀ ସେତେ-ବେଳେ ପରୁଷବାକ୍ୟରେ ଅବଜ୍ଞାର ସହିତ ସେହି ଅମିତତେଜା ଋଷିମାନଙ୍କୁ କହିଲେ—'ତୁମ୍ଭମାନଙ୍କର ଯଦି ଜୀବନ ପ୍ରତି ଆଶା ଅଛି, ତେବେ ଶୀଘ୍ର ଏଠାରୁ ବାହାରି ଯାଅ । ଦେବାଦିଦେବଙ୍କ ସହିତ ସାକ୍ଷାତ ଲାଭ କରିବାର ଏ ସମୟ ନୁହେଁ । ସେ ବର୍ତ୍ତମାନ ଦେବୀ ପାର୍ବତୀଙ୍କ ସହିତ କ୍ରୀଡ଼ାରତ ଅଛନ୍ତି ।' ନନ୍ଦୀଙ୍କର ଏ କଥା ଶୁଣି ଋଷିମାନେ ବହୁ ସମୟ ଅପେକ୍ଷା କଲେ ମଧ୍ୟ ଶିବଙ୍କ ସାକ୍ଷାତ ପାଇ ପାରିଲେ ନାହିଁ । ତଦନନ୍ତର ପ୍ରବଳ ତପୋଦୃପ୍ତ ମହର୍ଷି ଭୃଗୁ ଅତ୍ୟନ୍ତ କ୍ରୁଦ୍ଧ ହୋଇ ମହାଦେବଙ୍କୁ ନିମ୍ନୋକ୍ତ ଶାପ ପ୍ରଦାନ କରି କହିଲେ— ହେ ଶଙ୍କର, ତୁମେ ନାରୀ ସହିତ ପ୍ରମତ୍ତ ହୋଇ ଆମ୍ଭମାନଙ୍କର ଅବଜ୍ଞା କରିଛ । ଏଥିଲାଗି ତୁମ୍ଭର ମୂର୍ତ୍ତି ଯୋନି ଲିଙ୍ଗ ସ୍ୱରୂପ ହେବ । ତୁମ୍ଭ ନିକଟରେ ବ୍ରାହ୍ମଣମାନେ ଉପସ୍ଥିତ ହୋଇଛନ୍ତି, ଏହା ତୁମ୍ଭେ ଜାଣି ପାରିଲ ନାହିଁ ।

ଏଥିନିମିତ୍ତ ଭୃଗୁଙ୍କ ପ୍ରଦତ୍ତ ହୋଇଥିବା ଜଳ, ଅନ୍ନ, ପୁଷ୍ପ, ପତ୍ର ପ୍ରଭୃତି ଅଗ୍ରାହ୍ୟ ମଧ୍ୟରେ ଗଣ୍ୟ ହେବ ଏବଂ ବ୍ରାହ୍ମଣମାନେ ଭୃଗୁଙ୍କୁ ପୂଜା କରିବେ ନାହିଁ । ଯଦି ପୂଜା କରନ୍ତି ତାହାହେଲେ ଅବ୍ରାହ୍ମଣତ୍ୱ ପ୍ରାପ୍ତ ହେବେ । ସେମାନେ ପାଷଣ୍ଡ ମଧ୍ୟରେ ଗଣ୍ୟ ହେବେ । ଭୃଗୁ ଏହିପରି ଶାପ ଦେଇ ଋଷିମାନଙ୍କ ସହିତ ବ୍ରହ୍ମଲୋକକୁ ଗମନ କଲେ ।

ଆହୁରି ଲିଙ୍ଗ ପୁରାଣରୁ ପ୍ରମାଣ ମିଳେ ଯେ ଦେବର୍ଷି ନାରଦ ଭୃଗୁ-ଦେବଙ୍କ ପବିତ୍ର ତୀର୍ଥସବୁ ସନ୍ଦର୍ଶନ କରି ସେହି ସେହି ସ୍ଥାନରେ ଲିଙ୍ଗ ପୂଜା କରିଥିଲେ । (ଲିଙ୍ଗ ପୁରାଣ ୧ମ ଖଣ୍ଡ) ଏହି ଲିଙ୍ଗ କଣ ଏବଂ କାହିଁକି ତାହା ସଂସାରରେ ପୂଜ୍ୟ ବୋଲି ଗଣେଶ ତାହା ସୂତଙ୍କ କଥାରୁ ସ୍ପଷ୍ଟରୂପେ ଜଣାପଡ଼େ । (ଲିଙ୍ଗପୁରାଣ ପୂର୍ବଖଣ୍ଡ) ଏହି ଲିଙ୍ଗ ସାଧାରଣତଃ ଦୁଇ ପ୍ରକାର, ନିର୍ଗୁଣ ଓ ନିର୍ଗୁଣ । ଶିବ ଅଲିଙ୍ଗ ଓ ଜଗତ୍‌କାରଣ ସ୍ୱରୂପ ଶିବହିଁ ଲିଙ୍ଗ ॥ ଏହି ଅଲିଙ୍ଗ ଶିବରୁ ଲିଙ୍ଗ ଶିବଙ୍କର ଉତ୍ପତ୍ତି । ସେ ସ୍ଥୂଳ, ସୂକ୍ଷ୍ମ, ଜନ୍ମରହିତ, ମହାଭୂତସ୍ୱରୂପ ଓ ଜଗତ୍‌କାରଣ । (ଚରିତାଭିଧାନ)

**ଶିବଦୂତୀ**—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମହାତ୍ମ୍ୟ ବା ଚଣ୍ଡୀର ଅଷ୍ଟମ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ଯେ ଶୁମ୍ଭ ନିଶୁମ୍ଭ ଅସୁରଦ୍ୱୟଙ୍କୁ ବିନାଶ କରିବା ପୂର୍ବରୁ ଦୁର୍ଗା ସକଳଦେବତାମାନଙ୍କର ତେଜ ଗ୍ରହଣ ପୂର୍ବକ ଚଣ୍ଡୀରୂପ ଧାରଣ କରି ଉକ୍ତ ଅସୁରଦ୍ୱୟଙ୍କ ନିକଟକୁ ମହାଦେବଙ୍କ ଦ୍ୱାରା ପ୍ରଥମେ ସମ୍ବାଦ ପଠାଇଥିଲେ ଯେ ତୁମ୍ଭେମାନେ ଯେବେ ବଞ୍ଚିରହିବାକୁ ଇଚ୍ଛା ତେବେ ଦେବତାମାନଙ୍କ ପ୍ରତି ଅତ୍ୟାଚାର କରନାହିଁ ଓ ପାତାଳପୁରକୁ ଯାଇ ସେଠାରେ ବାସ କର । ଯେବେ ଏହା ନ କରିବ ତେବେ ତୁମ୍ଭମାନଙ୍କ ମାଂସ ଦ୍ୱାରା ମୋ ଶିବାଗଣ ତୃପ୍ତି ଲାଭ କରିବେ । ସ୍ୱୟଂ ଶିବ ଦେବୀଙ୍କ ଦ୍ୱାରା ଦୂତ କର୍ମରେ ନିଯୁକ୍ତ ହୋଇଥିବାରୁ ସେହି କାଳରୁ ଦୁର୍ଗାଙ୍କର ଶିବଦୂତୀ ନାମ ଖ୍ୟାତ ହେଲା । ଦୁର୍ଗାଙ୍କର ରୂପାନ୍ତର ଧାରିଣୀ ଯୋଗିନୀ ବିଶେଷଙ୍କୁ ମଧ୍ୟ ଶିବଦୂତୀ କହନ୍ତି । (ଭାଷାକୋଷ)

ଶବ୍ଦକୋଷ ମତରେ ଅଷ୍ଟଯୋଗିନୀ ମଧ୍ୟରେ ଶିବଦୂତୀ ଶେଷ ଯୋଗିନୀ । ଅଷ୍ଟଯୋଗିନୀ ଯଥା – ବ୍ରାହ୍ମଣୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ନାରସିଂହୀ, ଐନ୍ଦ୍ରୀ ଓ ଶିବଦୂତୀ ।

**ଶିବ**—ରାଜା ଉଶୀନରଙ୍କ ପୁତ୍ର ଓ ମହାରାଜ ଯଯାତିଙ୍କ ଦୌହିତ୍ର । ଏହାଙ୍କ ଉଦ୍ଦେଶ୍ୟରେ ସୁବଳଚନ୍ଦ୍ର ବଙ୍ଗଳା ଅଭିଧାନରେ ଯେଉଁ ନିର୍ଣ୍ଣୟ ଦୃଷ୍ଟ ହୁଏ,

ତାହା କର୍ଣ୍ଣଙ୍କ ଦାନ ପରୀକ୍ଷାରେ ଦେଖାଯାଏ । ଏହା କେତେଦୂର ସତ୍ୟ ବା ପ୍ରମାଣିକ ଘଟଣା ତାହା ନିର୍ଦ୍ଧାରଣ କରିବା ଆମ୍ଭମାନଙ୍କ ପକ୍ଷେ ଅସମ୍ଭବ । ମାତ୍ର ହିନ୍ଦୀ ଶବ୍ଦସାଗର ନିର୍ଣ୍ଣିତ ପ୍ରକୃତ ପୌରାଣିକ ଭିତ୍ତି ଉପରେ ଲିଖିତ ହୋଇଥିବାରୁ ତାହା ଏଠାରେ ଲେଖାଗଲା ।

ଶିବିଙ୍କ ଧର୍ମ ପରୀକ୍ଷା ପାଇଁ ଇନ୍ଦ୍ର ଛଞ୍ଚାଣ ଓ ଅଗ୍ନି କପୋତ ହୋଇ ଆସିଲେ । କପୋତ, ଛଞ୍ଚାଣ ଆକ୍ରମଣରୁ ଜୀବନ ରକ୍ଷା କରିବା ପାଇଁ ଶିବିଙ୍କ ଆଶ୍ରୟ ନେଲା । ଶିବି ଶେଷରୁ ତାର ଜୀବନ ରକ୍ଷା କରିବାପାଇଁ ନିଜ ଦେହରୁ ମାଂସ ଖଣ୍ଡେ ଖଣ୍ଡେ କାଟି ଗୋଟିଏ ତରାଜୁର ଏକ ପାଖରେ କପୋତ ଓ ଅନ୍ୟ ପାଖରେ ମାଂସଖଣ୍ଡ ମାନ ପକାଇ ତଉଲିବାକୁ ଲାଗିଲେ । ଯେତେ ମାଂସ କାଟିଲେ ମଧ୍ୟ କପୋତ ସହିତ ସମାନ ନ ହେବାରୁ ରାଜା ନିଜେ ତୁଳାଦଣ୍ଡରେ ବସିଲେ । ଏଥିରେ ଇନ୍ଦ୍ର ଓ ଅଗ୍ନି ସନ୍ତୁଷ୍ଟ ହୋଇ ନିଜର ପରିଚୟ ଦେଇ, ଆଶୀର୍ବାଦ କରି ଅନ୍ତର୍ହିତ ହେଲେ । ସେହିଦିନୁ ଶିବିରାଜା ଧର୍ମାତ୍ମାରୂପେ ପରିଚିତ ହେଲେ ।

**ଶିଶୁପାଳ**— ଚେଦିରାଜ ଦମଘୋଷଙ୍କ ପୁତ୍ର । ଶିଶୁପାଳ ଶ୍ରୀକୃଷ୍ଣଙ୍କ ପିତୃସ୍ୱସ୍ର ତନୟ । ଏହାଙ୍କର କନିଷ୍ଠ ସହୋଦର ନାମ ଦନ୍ତାବକ୍ର । ଶିଶୁପାଳଙ୍କ ମାତା ଜାଣିଥିଲେ ଯେ ଶ୍ରୀକୃଷ୍ଣଙ୍କ ହସ୍ତରେ ତାଙ୍କ ପୁତ୍ରର ମୃତ୍ୟୁ ହେବ । ଏଥିଲାଗି ସେ ଶ୍ରୀକୃଷ୍ଣଙ୍କୁ ପୁତ୍ରର ଶହେ ଦୋଷ କ୍ଷମା କରିବା ପାଇଁ ଅନୁରୋଧ କରିଥିଲେ । ଶ୍ରୀକୃଷ୍ଣ ପିଉସୀଙ୍କ କଥାରେ ସ୍ୱୀକୃତ ହୋଇଥିଲେ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ବହୁବାର ଶ୍ରୀକୃଷ୍ଣ ନିନ୍ଦା କରିବା ଯୋଗୁଁ ସେହି ଶ୍ରୀକୃଷ୍ଣଙ୍କ ହାତରେହିଁ ଶିଶୁପାଳଙ୍କର ମୃତ୍ୟୁ ଘଟିଲା । ଶିଶୁପାଳଙ୍କ ମାତାଙ୍କ ନାମ ନିର୍ଣ୍ଣୟ କରିବାରେ ଦୁଇଟି ମତ ଦୃଷ୍ଟ ହୁଏ । ଚରିତାଭିଧାନରେ ଏହାଙ୍କ ନାମ ସୁପ୍ରଭା ଏବଂ ଭାଷାକୋଷ ୬ଷ୍ଠ ଖଣ୍ଡରେ ଏହାଙ୍କ ନାମ ଶ୍ରୁତଶ୍ରବା ।

**ଶିଶୁମାର**—ଜନୈକ ପ୍ରଜାପତି । ଭାଗବତରେ ନିର୍ଣ୍ଣିତ ଦେଖାଯାଏ – 'ଯେ ଶିଶୁମାର ପ୍ରଜାପତି, ତା କନ୍ୟା ଭ୍ରମି ଗୁଣବତୀ । ରୂପେ କମଳା ସମସରି, ବିବାହେ କନ୍ୟା ଧ୍ରୁବେ ବରି ।' ଶିଶୁମାର ପ୍ରଜାପତିଙ୍କ କନ୍ୟା ଭ୍ରମି ଧ୍ରୁବଙ୍କୁ ବିବାହ କରିଥିଲେ । ଏହାଙ୍କ ଗର୍ଭରୁ ଧ୍ରୁବଙ୍କର କଳ୍ପ ଓ ବତ୍ସର ନାମକ ଦୁଇ ପୁତ୍ର ଜନ୍ମିଥିଲେ ।

**ଶୁକ**—ଲଙ୍କାଧିପତି ରାବଣଙ୍କ ମନ୍ତ୍ରୀ ବିଶେଷ । ରାବଣର ଦୁଇ ମନ୍ତ୍ରୀ ଥି' ଶୁକ ଓ ସାରଣ । ରାବଣ ଆଦେଶରେ ଶୁକ ରାମଚନ୍ଦ୍ରଙ୍କ ସୈନ'

କରିବା ପାଇଁ ବାନର ବେଶଧରି ଶିବିରକୁ ଯାଇଥିଲେ । ସେଠାରେ ବନ୍ଦୀ ହୋଇ ତାଙ୍କୁ ବନ୍ଧି ପାରି ଧଇଲେ । କିନ୍ତୁ ରାମଚନ୍ଦ୍ର ତାଙ୍କ ପ୍ରତି ସଦ୍‌ବ୍ୟବହାର କରି ଛାଡ଼ିଦେଲେ ।

**ଶୁକଦେବ**—ବେଦବିଭାଗକର୍ତ୍ତା ମହର୍ଷି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସଙ୍କ ପୁତ୍ର । ଏକଦା ବେଦବ୍ୟାସ ହୋମ କରିବା ପାଇଁ ଅଗ୍ନି ପ୍ରଜ୍ୱଳିତ କରିବା ଅଭିପ୍ରାୟରେ ଦୁଇଖଣ୍ଡ ଅରଣି (ଯଜ୍ଞକାଷ୍ଠ) ଘର୍ଷଣ କରୁଥିଲେ । ଏହି ସମୟରେ ଘୃତାଚୀନାମ୍ନୀ ଏକ ଅପ୍‌ସରା ତାଙ୍କର ନୟନଗୋଚର ହେଲା । ମହର୍ଷି ଧୈର୍ଯ୍ୟର ସହିତ ଇନ୍ଦ୍ରିୟ ଚାଞ୍ଚଲ୍ୟ ଦମନ କରିବା ପାଇଁ ଚେଷ୍ଟା କଲେ, ମାତ୍ର ହୃଦୟର ବେଗ ବଶତଃ ତାହାଙ୍କର ରେତଃ ଅରଣି ମଧ୍ୟରେ ପ୍ରବିଷ୍ଟ ହେଲା । ଘୃତାଚୀ ବ୍ୟାସଙ୍କୁ ଦେବସ୍ତ ଦେଖି ଭୀତତ୍ରସ୍ତ ହୋଇ ଶୁକପକ୍ଷୀ ରୂପ ଧାରଣ କରି ସେଠାରୁ ପଳାଇ ଗଲା । ବ୍ୟାସଦେବ ପୂର୍ବବତ୍ ଅରଣୀ ମନ୍ଥନ କରିବାକୁ ଲାଗିଲେ । ଯଜ୍ଞ କାଷ୍ଠରୁ ଜ୍ୱଳନ୍ତ ଅଗ୍ନିଶିଖା ପ୍ରଭା ବିସ୍ତାର କରି ଶୁକଦେବ ବହିର୍ଗତ ହେଲେ । ପୁତ୍ରର ଜନ୍ମ ସମୟରେ ବ୍ୟାସ ଶୁକପକ୍ଷିଣୀ ଅପ୍‌ସରାକୁ ଦେଖିଥିଲେ ବୋଲି ପୁତ୍ରର ନାମ ଦେଲେ ଶୁକଦେବ । ମହାଦେବ ସ୍ୱୟଂ ଶୁକଦେବଙ୍କ ଉପନୟନ କ୍ରିୟା ସମ୍ପାଦନ କରିଥିଲେ । ଦେବରାଜ ଇନ୍ଦ୍ର ତାଙ୍କୁ କମଣ୍ଡଳୁ ଓ ଦେବାସନ ପ୍ରଦାନ କରିଥିଲେ । ଶୁକଦେବ ସେହି ସ୍ଥାନରେ ସମାହିତ ହୋଇ ଅବସ୍ଥାନ କରିବାକୁ ଲାଗିଲେ । ବ୍ରହ୍ମଚର୍ଯ୍ୟପରାୟଣ ଶୁକ ପିତାଙ୍କଠାରୁ ମୋକ୍ଷଧର୍ମ ଅଧ୍ୟୟନ କରିବାରେ ନିଯୁକ୍ତ ହେଲେ । କିଛି ଦିନ ପରେ ବ୍ୟାସ ତାଙ୍କୁ କହିଲେ—ଯଦି ମୋକ୍ଷଧର୍ମ ସମ୍ବନ୍ଧେ ତୁମ୍ଭର କିଛି ସନ୍ଦେହ ଥାଏ, ତେବେ ମୋର ଯଜମାନ ମିଥିଳାଧିପତି ଜନକଙ୍କ ନିକଟକୁ ଗଲେ ସେ ସବୁ ସନ୍ଦେହ ଭଞ୍ଜନ କରିଦେଇ ପାରିବେ । ପିତାଙ୍କ ଆଦେଶରେ ଶୁକ ମିଥିଲା ଗମନ କରି ଜନକଙ୍କଠାରୁ ମୋକ୍ଷଧନ ଜ୍ଞାନ ଲାଭ କରିଥିଲେ । ଏହାପରେ ସେ ବ୍ୟାସାଶ୍ରମକୁ ଫେରି ଆସିଲେ । ବ୍ରହ୍ମର୍ଷି, ମହର୍ଷି ଓ ଦେବର୍ଷି-ମାନଙ୍କ ସହିତ ବ୍ରହ୍ମତତ୍ତ୍ୱ ସମ୍ବନ୍ଧେ ଆଲାପକରି ଶୁକଙ୍କର ବହୁବର୍ଷ ଅତିବାହିତ ହେଲା । ଏହାପରେ ବ୍ୟାସଦେବ ବ୍ରହ୍ମତତ୍ତ୍ୱ ପ୍ରଚାର କରିବା ପାଇଁ ପୁତ୍ରଙ୍କୁ ଆଦେଶ ଦେଲେ । ଅନନ୍ତର ଶୁକଦେବ ସତ୍ତ୍ୱ ରଜ ଓ ତମୋଗୁଣ ପରିତ୍ୟାଗ ପୂର୍ବକ ନଶ୍ୱର ଦେହ ବିସର୍ଜନ କରି ଆତ୍ମାକୁ ପରଂବ୍ରହ୍ମରେ ଲୀନ କରିଥିଲେ । ମହାପୁରୁଷଙ୍କ ଦେହତ୍ୟାଗ ସମୟରେ ଉଲ୍‌କାପାତ, ଦିଗ୍‌ଦାହ, ଭୂମିକମ୍ପ ପ୍ରଭୃତି ଦୁର୍ଲକ୍ଷଣ ଜଗତର ଅଶୁଭ ସୂଚନା କରିଥିଲା । (ମହାଭାରତ)

**ଶୁକ୍ରାଚାର୍ଯ୍ୟ**—ଦୈତ୍ୟଗୁରୁ । ମହର୍ଷି ଭୃଗୁ ଏହାଙ୍କର ପିତା । ଏହାଙ୍କ କନ୍ୟାଙ୍କ

ନାମ ଦେବଯାନୀ ଓ ଅରଜା । ଷଣ୍ଡ ଓ ଅମର୍କ ନାମରେ ଏହାଙ୍କର ଦୁଇ ପୁତ୍ର ଥିଲେ । ଦେବଗୁରୁ ବୃହସ୍ପତିଙ୍କ ପୁତ୍ର କଚ ଏହାଙ୍କ ପାଖରୁ ମୃତସଞ୍ଜୀବନୀ ବିଦ୍ୟା ଶିକ୍ଷା କରିଥିଲେ । ବଳିରାଜାଙ୍କ ଦାନ ଦେବା ସମୟରେ ଏ ଦାନ ବିଷୟରେ ବ୍ୟାଘାତ ଘଟାଇଥିବାରୁ ଏହାଙ୍କର ଗୋଟିଏ ଆଖି ନଷ୍ଟ ହୋଇଥିଲା । ଦଣ୍ଡକ ଦେଶର ରାଜା ଶୁକ୍ରଙ୍କର ଅରଜା ନାମ୍ନୀ କନ୍ୟାକୁ ବଳପୂର୍ବକ ନେଇଯିବା ଫଳରେ ଶୁକ୍ରଙ୍କ ଶାପରେ ଉକ୍ତ ରାଜା ଭସ୍ମ ହୋଇଗଲେ ଓ ତାଙ୍କ ରାଜ୍ୟ ଦଣ୍ଡକାରଣ୍ୟରେ ପରିଣତ ହେଲା । ରାଜା ଯଯାତି ଶୁକ୍ରଙ୍କ କନ୍ୟା ଦେବଯାନୀଙ୍କୁ ବିବାହ କରିଥିଲେ । ଶୁକ୍ର ନୀତିଶାସ୍ତ୍ରର ପ୍ରଣେତା ।(ଚରିତାଭିଧାନ, ଭାଷାକୋଷ)

**ଶୁନଃ ଶେଫ**—ମହର୍ଷି ଋଚୀକଙ୍କ ମଧ୍ୟମ ପୁତ୍ର । ମହାରାଜ ଅମ୍ବରୀଷଙ୍କ ନରମେଧ ଯଜ୍ଞରେ ଏ ବଳିରୂପେ ନୀତ ହୋଇଥିଲେ । ବାଟରେ ମହର୍ଷି ବିଶ୍ୱାମିତ୍ରଙ୍କ ଆଶ୍ରମ ପଡିଲା । ବିଶ୍ୱାମିତ୍ର କୃପାପରବଶ ହୋଇ ଏହାଙ୍କୁ ଅଗ୍ନିସ୍ତବ ଶିକ୍ଷା ଦେଲେ । ଏହି ସ୍ତବରେ ଅଗ୍ନି ପରିତୁଷ୍ଟ ହୋଇ ତାଙ୍କୁ ଯଜ୍ଞାଗ୍ନିରୁ ରକ୍ଷା କଲେ । ପରେ ବିଶ୍ୱାମିତ୍ର ଏହାଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରିଥିଲେ ।

**ଶୁମ୍ଭ**—ଅତି ପରାକ୍ରାନ୍ତ ଅସୁର ବିଶେଷ । ଶୁମ୍ଭ ଓ ନିଶୁମ୍ଭ ଦୁଇ ଭାଇ । ଏମାନେ ପ୍ରବଳ ପରାକ୍ରାନ୍ତ ହୋଇ ଦେବତାମାନଙ୍କ ଶ୍ରୀ ହରଣ କରି ଦେବଲୋକ ଅଧିକାର କରିଥିଲେ । ଦେବତାମାନେ ଭୟରେ ଦୁର୍ଗାଙ୍କର ଶରଣ ପଶିବାରୁ ଦୁର୍ଗା,ଧୂମ୍ରଲୋଚନ, ଚଣ୍ଡମୁଣ୍ଡ, ରକ୍ତବୀଜ ନାମକ ଏହାର ସେନାପତିମାନଙ୍କୁ ଓ ଏହାର ସାନଭାଇ ନିଶୁମ୍ଭକୁ ବଧ କଲେ । ଶୁମ୍ଭ,ଦୁର୍ଗାଙ୍କ ନିକଟକୁ ସୁଗ୍ରୀବ ନାମକ ଦୂତ ପଠାଇ ସମ୍ବାଦ ଦେଲେ ଯେ ତୁମ୍ଭେ ମୋତେ ବା ମୋ ଭାଇକୁ ବିବାହ କର । ଦୁର୍ଗା କହିଲେ—ମୁଁ ପ୍ରତିଜ୍ଞା କରିଛି ମୋତେ ଯେ ଯୁଦ୍ଧରେ ପରାଜିତ କରିବ ସେ ମୋତେ ବିବାହ କରିବ । (ସପ୍ତଶତୀଚଣ୍ଡୀ)

ବାମନପୁରାଣ ମତରେ କଶ୍ୟପଙ୍କ ଦନୁ ନାମ୍ନୀ ଭାର୍ଯ୍ୟା ଗର୍ଭରୁ ଜ୍ୟେଷ୍ଠ-ପୁତ୍ର ଶୁମ୍ଭ ଓ କନିଷ୍ଠ ପୁତ୍ର ନିଶୁମ୍ଭ ଜାତ ହୋଇଥିଲେ । ପୁରାଣ ମତରେ ଶୁମ୍ଭ ପ୍ରହ୍ଲାଦର ପୌତ୍ର ଓ ଗବେଷ୍ଠୀର ପୁତ୍ର । (ବିଶ୍ୱକୋଷ)

**ଶୁଷେଣ (ସୁଷେଣ)**—ବାନରରାଜ । ବାନରପତି ବାଲି ଏହାଙ୍କ କନ୍ୟା ତାରାଙ୍କୁ ବିବାହ କରିଥିଲେ । ସୁଷେଣଙ୍କ ପରାମର୍ଶକ୍ରମେ ହନୁମାନ ବିଶଲ୍ୟ-କରଣୀ ଆଣିବା ଯୋଗେ ଏହି ଔଷଧର ପ୍ରଭାବରୁ ଶକ୍ତିଦ୍ୱାରା ଆହତ ଲକ୍ଷ୍ମଣ ପୁନର୍ଜୀବନ ଲାଭ କରିଥିଲେ । (ରାମାୟଣ, ଚରିତାଭିଧାନ)

**ଶୂରସେନ**—ଯଦୁବଂଶୀୟ ରାଜା, ଶ୍ରୀକୃଷ୍ଣଙ୍କ ପିତାମହ । ଏହାଙ୍କର ବସୁଦେବ ନାମକ ପୁତ୍ର ଓ ଦୁଇଟି କନ୍ୟା ଜନ୍ମ ହୋଇଥିଲେ । ପ୍ରଥମ କନ୍ୟା ପୃଥା । ପୃଥାଙ୍କୁ ଶୂରସେନ ପୂର୍ବ ପ୍ରତିଜ୍ଞା ରକ୍ଷାର୍ଥେ ସ୍ୱୀୟ ମିତ୍ର କୁନ୍ତୀଭୋଜ ରାଜାଙ୍କୁ ଦେଇଥିଲେ ଏବଂ ପୃଥା କୁନ୍ତୀଭୋଜଙ୍କ ଦ୍ୱାରା ଲାଳିତା ପାଳିତା ହୋଇ କୁନ୍ତୀ ନାମରେ ପରିଚିତା ହେଲେ । ଶୂରସେନଙ୍କ ଅପର କନ୍ୟା ଶ୍ରୁତଶ୍ରବାଙ୍କୁ ଚେଦିରାଜ ବିବାହ କରିଥିଲେ । ଏହାଙ୍କ ଗର୍ଭରୁ ଶିଶୁପାଳ ଜନ୍ମିଥିଲେ ।

ମଥୁରାପୁରୀ ଓ ତତ୍‌ସନ୍ନିହିତ ଦେଶର ପ୍ରାଚୀନ ନାମ ମଧ୍ୟ ଶୂରସେନ ।
(ଭାଷାକୋଷ)

**ଶୂର୍ପଣଖା**—ଲଙ୍କେଶ୍ୱର ରାବଣର ଭଉଣୀ । ରାମାୟଣ ଯୁଦ୍ଧର ଏ ମୂଳକାରଣ ।
(ରାବଣ)

**ଶୃଙ୍ଗବେରପୁର**—ଗଙ୍ଗାକୂଳସ୍ଥ ଏକ ପ୍ରାଚୀନ ନଗର । ବିଶ୍ୱକୋଷ ମତରେ ଏହା କୋଶଳ ରାଜ୍ୟର ସୀମାର ବାହାରେ ଗଙ୍ଗାର ଉତ୍ତର ତୀରରେ ଅବସ୍ଥିତ ପ୍ରାଚୀନ ନଗରୀ ଓ ନିଷାଦରାଜ ଗୁହକଙ୍କର ପୁରୀ ଥିଲା । ରାମଚନ୍ଦ୍ର ସୁମନ୍ତ୍ରଙ୍କୁ ଏହିଠାରେ ବିଦାୟ ଦେଇ ବନଗମନ କରିଥିଲେ । ଏହାର ଆଧୁନିକ ନାମ ଚଣ୍ଡାଲଗଡ଼ ବା ଶିଙ୍ଗ୍ରୋର । ଆଧୁନିକ ମିର୍ଜାପୁର ନିକଟରେ ଏହା ଅବସ୍ଥିତ ଥିଲା । ରାମାୟଣରେ ଏହି ନଗରର ନାମୋଲ୍ଲେଖ ଅଛି । ଏହା ପ୍ରୟାଗଠାରୁ ୨୨ ମାଇଲ ଉତ୍ତର ପଶ୍ଚିମରେ ଅବସ୍ଥିତ । ଏକ ସମୟରେ ଏଠାରେ ସୌର ସମ୍ପ୍ରଦାୟର ମନ୍ଦିର ଥିଲା । (ଭାଷାକୋଷ)

**ଶୈବ୍ୟା**—ମହାରାଜ ହରିଶ୍ଚନ୍ଦ୍ରଙ୍କ ମହିଷୀ । ମହର୍ଷି ବିଶ୍ୱାମିତ୍ର ମହାରାଜ ହରିଶ୍ଚନ୍ଦ୍ରଙ୍କ ଧର୍ମବୁଦ୍ଧି, ଆତ୍ମତ୍ୟାଗ ଓ କଷ୍ଟସହିଷ୍ଣୁତା ପରୀକ୍ଷାର୍ଥେ ଏମାନଙ୍କୁ ନାନାକଷ୍ଟ ଓ ଯାତନା ଦେଇଥିଲେ । ମହିଷୀ ଶୈବ୍ୟା ଏକ ବ୍ରାହ୍ମଣର କ୍ରୀତଦାସୀ ହୋଇ ରହିଥିଲେ । ଏହି ଅବସ୍ଥାରେ ତାଙ୍କର ଏକମାତ୍ର ପୁତ୍ର ରୋହିତାଶ୍ୱ ପ୍ରାଣତ୍ୟାଗ କରିଥିଲେ । ମୃତ ପୁତ୍ରର ଶବ ଶ୍ମଶାନକ୍ଷେତ୍ରରେ ରଖି ଶୈବ୍ୟା ଆର୍ତ୍ତସ୍ୱରରେ ବିଳାପ କରିବାକୁ ଲାଗିଲେ । ଏହି ଶ୍ମଶାନରେ ମହାରାଜ ହରିଶ୍ଚନ୍ଦ୍ର ଚଣ୍ଡାଳର କାର୍ଯ୍ୟ କରୁଥିଲେ । ଅନତିବିଳମ୍ବେ ସେହି ଶ୍ମଶାନ ସ୍ଥଳରେ ପତିପତ୍ନୀଙ୍କର ମିଳନ ହେଲା । ବିଶ୍ୱାମିତ୍ର ଏମାନଙ୍କ ପ୍ରତି ସନ୍ତୁଷ୍ଟ ଓ ସଦୟ ହେଲେ । ରୋହିତାଶ୍ୱ ପୁନର୍ଜୀବନ ଲାଭକଲେ । ହରିଶ୍ଚନ୍ଦ୍ର ପୁନରାୟ ରାଜ୍ୟ ପ୍ରାପ୍ତ ହୋଇ ଅବଶିଷ୍ଟ ଜୀବନ ସୁଖରେ ଅତିବାହିତ କଲେ ।

**ଶୌନକ**—ତପୋବଳସଂପନ୍ନ ଋଷି ବିଶେଷ । ନୈମିଷାରଣ୍ୟରେ ଏହାଙ୍କ ଦ୍ୱାରା ଦ୍ୱାଦଶବର୍ଷବ୍ୟାପୀ ଏକ ଯଜ୍ଞ ଅନୁଷ୍ଠିତ ହୋଇଥିଲା । ଏ ଜଣେ ବୈଦିକ ଆଚାର୍ଯ୍ୟ ଥିଲେ । ଅନେକ ବୈଦିକ ଓ ଲୌକିକ ଗ୍ରନ୍ଥର ରଚୟିତାରୂପେ ଏ ପ୍ରସିଦ୍ଧ । (ସ୍ୱପାକୋଷ)

**ଶ୍ୱେତକୀ**—ଧର୍ମପରାୟଣ ଓ ଯାଗଶୀଳ ନରପତି । ଏହାଙ୍କ ଦ୍ୱାରା ଶତବର୍ଷବ୍ୟାପୀ ଏକ ବଡ଼ ଯଜ୍ଞ ଅନୁଷ୍ଠିତ ହୋଇଥିଲା । ଶିବାଂଶ ଜାତ ମହର୍ଷି ଦୁର୍ବାସା ଏହି ଯଜ୍ଞର ପୁରୋହିତ ଥିଲେ । ଅଗ୍ନିଦେବ ଏହି ଯଜ୍ଞରେ ଅପରିମିତ ହବିର୍ଭାଗ ପାଇ ରୋଗଗ୍ରସ୍ତ ହୋଇ ବ୍ରହ୍ମାଙ୍କର ଶରଣାଗତ ହେବାରୁ ଅଗ୍ନିଙ୍କୁ ଖାଣ୍ଡବବନ ଭକ୍ଷଣ କରିବା ପାଇଁ ସେ ପରାମର୍ଶ ଦେଲେ । ଅଗ୍ନି ସାତଥର ପର୍ଯ୍ୟନ୍ତ ଖାଣ୍ଡବବନ ଦଗ୍ଧ କରିବାକୁ ଚେଷ୍ଟାକରି ବିଫଳମନୋରଥ ହେଲେ । ଅନନ୍ତର କୃଷ୍ଣ ଓ ଅର୍ଜୁନଙ୍କ ସାହାଯ୍ୟରେ ଖାଣ୍ଡବବନ ଭକ୍ଷଣ କରିବା ପାଇଁ ସେ ସମର୍ଥ ହେଲେ । (ଅର୍ଜୁନ ଦେଖ)

**ଶ୍ୱେତକେତୁ**—ମହର୍ଷି ଉଦ୍ଦାଳକଙ୍କ ପୁତ୍ର ।

**ଶ୍ୱେତଗଙ୍ଗା**—ପୁରୁଷୋତ୍ତମ ତୀର୍ଥର ପୁଷ୍କରିଣୀ ବିଶେଷ ।

**ଶ୍ୱେତଦ୍ୱୀପ**—ହିନ୍ଦୁ ପୁରାଣୋକ୍ତ ୧୧ ଗୋଟି ଉପଦ୍ୱୀପ ମଧ୍ୟରୁ ଏକତମ । ଭାଗବତ ଦଶମସ୍କନ୍ଧ ୮୭ ଅଧ୍ୟାୟରୁ ଏହା ବୈକୁଣ୍ଠାଖ୍ୟ ବିଷ୍ଣୁଧାମସ୍ଥ ଦ୍ୱୀପ ବିଶେଷ ବୋଲି ଅନୁମିତ ହୁଏ । ଅଧ୍ୟାତ୍ମରାମାୟଣ ଓ ବ୍ରହ୍ମପୁରାଣରେ ଅଛି ଯେଉଁମାନେ ବିଷ୍ଣୁ ପୂଜାରତ ଓ ବିଷ୍ଣୁଙ୍କ ହସ୍ତରେ ନିହତ ହୁଅନ୍ତି ସେମାନେ ଦେହାନ୍ତେ ଏହି ଦ୍ୱୀପରେ ଯାଇ ବାସ କରନ୍ତି । ରାବଣ ତ୍ରିଲୋକ ଜୟ ପରେ ନାରଦଙ୍କୁ ପଚାରି ଏ ସ୍ଥାନକୁ ଜୟ କରିବା ମାନସରେ ଗଲା । ଏଠାରେ ଥିବା ବ୍ୟକ୍ତିମାନେ ମହାକାୟ, ମହାବଳ ଓ ଅଜେୟ । ଏ ଦ୍ୱୀପ ସୀମାରେ ପହଞ୍ଚିବା କ୍ଷଣି ରାବଣ ରଥର ଗତି ବନ୍ଦ ହେଲା । ଏଠା ପୁରୁଷଙ୍କ କଥା ଦୂରେ ଥାଉ ଜଣେ ସ୍ତ୍ରୀ ରାବଣର ହାତକୁ ଧରି ଅଟକାଇ ଦେଲେ ଓ ହସି ହସି ପଚାରିଲେ—ତୁମେ କିଏ ଓ ଏଠାକୁ କାହିଁକି ଆସିଛ ? ରାବଣ ବହୁ ଚେଷ୍ଟାରେ ଉକ୍ତ ସ୍ତ୍ରୀଙ୍କ ହାତରୁ ଆପଣାକୁ ମୁକ୍ତ କଲା ଏବଂ ଅତ୍ୟନ୍ତ ବିସ୍ମିତ ହେଲା । ମନେ ମନେ ସ୍ଥିରକଲା ସୀତାଙ୍କୁ ହରଣ କରି ବିଷ୍ଣୁଙ୍କୁ କୁପିତ କରି ତାଙ୍କ ହାତରେ ମଲେ ମୁଁ ଏହି ଦ୍ୱୀପକୁ ଆସିବି । ଏହା ସ୍ଥିର ସେ ବୈଦେହୀ ହରଣରେ ପ୍ରବୃତ୍ତ ହେଲା । (ସ୍ୱପାକୋଷ)

**ଶ୍ୱେତବରାହ**—ସୃଷ୍ଟିର କଳ୍ପମାନଙ୍କ ମଧ୍ୟରୁ ଏକ କଳ୍ପର ନାମ । ଭାଗବତ ତୃତୀୟ ସ୍କନ୍ଧ ୧୧ଶ ଅଧ୍ୟାୟ ୩୭ ଶ୍ଳୋକ ଦେଖ । ଏହା ବ୍ରହ୍ମାଙ୍କ ସୃଷ୍ଟିର ଆଦ୍ୟ ଯୁଗର ପ୍ରଥମ କଳ୍ପ । ଏଥିର ପରିମାଣ ୪୩୨ କୋଟି ବର୍ଷ । ଏହି କଳ୍ପର ସପ୍ତବିଂଶ ଯୁଗ ଅତୀତ ହୋଇ ଅଷ୍ଟାବିଂଶ ଯୁଗ ବର୍ତ୍ତମାନ ଚାଲୁଅଛି । ଏ କଳ୍ପରେ ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମଜ, ତାମସ, ରୈବତ ଓ ଚାକ୍ଷୁଷ ମନୁମାନଙ୍କର ଅଧିକାର ଶେଷ ହୋଇଅଛି । ବର୍ତ୍ତମାନ ବୈବସ୍ୱତ ନାମକ ସପ୍ତମ ମନୁଙ୍କ ଅଧିକାର ଚାଲୁଛି । ଶ୍ୱେତବରାହ କଳ୍ପର ଆରମ୍ଭ ହେଲାବେଳେ ଏ ସୃଷ୍ଟି ହୋଇ ନ ଥିଲା । ଏ କଳ୍ପାରମ୍ଭର ୧ କୋଟି ୭୦ ଲକ୍ଷ, ୬୪ ହଜାର ବର୍ଷ ପରେ ଏ ପୃଥିବୀ ସୃଷ୍ଟି ହେଲା । (ଭାଷାକୋଷ)

**ଶ୍ୟାମା**—କାଳୀ, ଏହାଙ୍କ ପୂଜା କାର୍ତ୍ତିକ ଅମାବାସ୍ୟା ଅର୍ଦ୍ଧରାତ୍ରିରେ ଅନୁଷ୍ଠିତ ହୁଏ । ଏ କୃଷ୍ଣବର୍ଣ୍ଣା, ଚତୁର୍ଭୁଜା, ମୁଣ୍ଡମାଳିନୀ, ଶିବୋପରି ଦଣ୍ଡାୟମାନା ଓ ଲୋଳଜିହ୍ୱା ବିଶିଷ୍ଟା । (ଭାଷାକୋଷ)

**ଶ୍ରାବଣ**—ଦଶରଥଙ୍କ ଦ୍ୱାରା ଅଜ୍ଞାତରେ ଶରାହତ ଓ ମୃତ ବୈଶ୍ୟସୁତ । ଯାହାଙ୍କ ବୃଦ୍ଧ ପିତା ଓ ମାତାଙ୍କ ଅଭିଶାପରେ ଦଶରଥ ପୁତ୍ରବିୟୋଗ ଦୁଃଖରେ ମୃତ ହେଲେ । (ରାମାୟଣ, ଭାଷାକୋଷ)

**ଶ୍ରାବସ୍ତୀ**—ରାମାୟଣୋକ୍ତ ନଗରୀ ବିଶେଷ । ଉତ୍ତର କୋଶଳସ୍ଥ ଲବଙ୍କ ରାଜଧାନୀ । ଧର୍ମପତ୍ତନ ନାମକ ନଗରର ନାମାନ୍ତର । କେହି କେହି ଏହାକୁ ଶ୍ରାବନ୍ତୀ ବୋଲି କହନ୍ତି । (ବିଶ୍ୱକୋଷ)

**ଶ୍ରୀକୃଷ୍ଣ**—(କୃଷ୍ଣ ଦେଖ) ।

**ଶ୍ରୀବତ୍ସ**—ଜନୈକ ରାଜା । ଏ ଅଯୋଧ୍ୟା, ମତାନ୍ତରେ ପ୍ରାଗ୍‌ଦେଶର ରାଜା । ଏହାଙ୍କ ପିତା ଚିତ୍ରବର, ପତ୍ନୀ ଚିତ୍ରସେନର କନ୍ୟା ଚିନ୍ତାଦେବୀ । ଶନି ଓ ଲକ୍ଷ୍ମୀଙ୍କ କଳହ ସମାଧାନରେ ଶନି ଏହାଙ୍କ ପ୍ରତି ବିଶେଷ କୁପିତ ହୋଇ ନାନାପ୍ରକାର କଷ୍ଟ ଦେଇଥିଲେ । ମାତ୍ର ଲକ୍ଷ୍ମୀଙ୍କ କୃପାରୁ ସେ ପୁଣି ରାଜା ହୋଇ ସୁଖରେ ବାସ କଲେ ।

**ଶ୍ରୁତକୀର୍ତ୍ତି**—ଶତ୍ରୁଘ୍ନଙ୍କ ପତ୍ନୀ । ରାଜା କୁଶଧ୍ୱଜ ଜନକଙ୍କ ଦୁହିତା । ସୁବାହୁ ଓ ଶତ୍ରୁଘାତୀ ଏହାଙ୍କର ଦୁଇ ପୁତ୍ର । (ଶତ୍ରୁଘ୍ନ ଦେଖ)

**ଶ୍ଳୋକ**—କଥିତ ଅଛି ଯେ ଏକଦା ବାଲ୍ମୀକି ଋଷି ଅରଣ୍ୟ ଭିତରେ ବୁଲୁ ବୁଲୁ ଦେଖିଲେ ଯେ ଜଣେ ନିଷାଦ କେଳିରତ କ୍ରୌଞ୍ଚ ମିଥୁନ ମଧ୍ୟରୁ ଅଣ୍ଡିରା କ୍ରୌଞ୍ଚଟିକୁ

ମାରି ପକାଇଲା । ମାଈ ପକ୍ଷୀଟି ଶୋକାର୍ତ୍ତଧ୍ୱନି କଲା । ମହର୍ଷି ଏହି ଧ୍ୱନି ଶୁଣି ଶୋକସନ୍ତପ୍ତ ହେଲେ ଓ ବ୍ୟାଧ ପ୍ରତି କୁପିତ ହୋଇ ହଠାତ୍ ବ୍ୟାଧକୁ ଶାପ ଦେଲେ—

ମା ନିଷାଦ ! ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ ।
ଯତ୍ କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତଂ ।

ଅର୍ଥାତ୍ ରେ ବ୍ୟାଧ, ତୁ ଯେହେତୁ କାମମୋହିତ କ୍ରୌଞ୍ଚଦମ୍ପତି ମଧ୍ୟରୁ ଗୋଟିକୁ ବଧ କଲୁ ସେହି ହେତୁରୁ ତୋର ଚିରକାଳ ନରସମାଜରେ ପ୍ରତିଷ୍ଠା ଲାଭ ନ ହେଉ । ଏହି ଶାପବାଣୀ ବୀଣାଯନ୍ତ୍ରର ବିନା ସାହାଯ୍ୟରେ ସମାକ୍ଷର ବିଶିଷ୍ଟ ହୋଇ ମହର୍ଷିଙ୍କ କଣ୍ଠରୁ ନିଃସୃତ ହେଲା ଓ ସେହି ଦିନଠାରୁ ଏହା ଶୋକରୁ ସୃଷ୍ଟ ହୋଇଥିବାରୁ ଶ୍ଲୋକ ଆଖ୍ୟା ପାଇଲା । (ଭାଷାକୋଷ)





**ଷଣ୍ଡ**—ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର । ଭକ୍ତ-ପ୍ରଧାନ ପ୍ରହ୍ଲାଦଙ୍କ ଗୁରୁ ।
(ପ୍ରହ୍ଲାଦ ଦେଖ)

**ଷଷ୍ଠୀଦେବୀ**—ଏ ଦୁର୍ଗା ବା ପ୍ରକୃତିଙ୍କ ଷଷ୍ଠୀକଳା ଓ ସ୍କନ୍ଦ ଭାର୍ଯ୍ୟା । ଏ ଷୋଡ଼ଶ ମାତୃକାଙ୍କ ମଧ୍ୟରେ ପ୍ରଧାନ । ଏହାଙ୍କ ଅନ୍ୟ ନାମ ଦେବସେନା । ଏହାଙ୍କ ପ୍ରସାଦରେ ପୁତ୍ର ପୌତ୍ରାଦି ଲାଭ ହୁଏ । ଏ ଜଗତରେ ଶିଶୁମାନଙ୍କ ପାଳିକା ଓ ରକ୍ଷାକାରିଣୀ । ପିଲା ଜନ୍ମର ଷଷ୍ଠ ଓ ଏକୋଇଶାଦିନ ଏହାଙ୍କ ପୂଜା କରାଯାଏ । ଅପୁତ୍ର ବ୍ୟକ୍ତି ଏକ ବର୍ଷ ଷଷ୍ଠୀଦେବୀଙ୍କ ସ୍ତବ ଶ୍ରବଣ କଲେ ପୁତ୍ରଲାଭ ହୁଏ ଓ ରୁଗ୍ଣ ସନ୍ତାନ ନିରୋଗ ହୁଏ । ସନ୍ତାନବତୀ ରମଣୀମାନଙ୍କର ପ୍ରତି ମାସର ଶୁକ୍ଳ ଷଷ୍ଠୀରେ ନିଜ ନିଜର ସନ୍ତାନଙ୍କ ମଙ୍ଗଳାର୍ଥେ ଷଷ୍ଠୀବ୍ରତ କରିବା ବିଧାନ ଅଛି ।

ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି ଯେ ଭର୍ତ୍ତାଙ୍କ ଚକ୍ଷୁରେ ଏ ସୁନ୍ଦରୀ ଓ ଯୁବତୀରୂପ ଧାରଣ କରନ୍ତି ଏବଂ ଶିଶୁମାନଙ୍କ ରକ୍ଷିକାରୂପେ ମାତୃରୂପା, କନ୍ୟାରୂପା, ରକ୍ଷଣରୂପା, ବୃଦ୍ଧାରୂପା, ଓ ଯୋଗିନୀସ୍ୱରୂପା ହୁଅନ୍ତି ।

ସୂତିକାଗାରରେ ଶିଶୁ ଜନ୍ମର ଷଷ୍ଠ ଦିବସରେ କାନ୍ଥରେ ଏହାଙ୍କ ରୂପ ଗଢ଼ାଯାଇ ବା ପିତୁଳା ସ୍ଥାପିତ ହୋଇ ପୂଜା କରାଯାଏ । ଏ ସୁପୁତ୍ରଦା, ସୁଖଦା । କଥିତ ଅଛି ଯେ ଶିଶୁମାନଙ୍କୁ ଏ ସର୍ବଦା ଜଗିଥାଆନ୍ତି ଓ ଶିଶୁ ଶୋଇପଡ଼ିଲେ ତାକୁ ଉଠାଇ ଦିଅନ୍ତି ଓ ଶିଶୁ ଶୋଇଲା ବେଳେ ତାକୁ ହସାନ୍ତି ଓ କନ୍ଦାନ୍ତି । ପ୍ରତି ଶୁକ୍ଳ ଷଷ୍ଠୀରେ ବିଶେଷତଃ ଭାଦ୍ର ଶୁକ୍ଳ ଷଷ୍ଠୀ ଦିନ ଷଷ୍ଠୀ ଓଷାରେ ଏହାଙ୍କ ପୂଜା ହୁଏ । ଏହାଙ୍କୁ ଶାଳଗ୍ରାମ ଶିଳାରେ, ଘଟରେ ବଟମୂଳରେ ପୂଜା କରାଯାଏ ଓ କାନ୍ଥରେ ମାଟିରେ ପିତୁଳା ସ୍ଥାପନ କରି ପୂଜା କରାଯାଏ । ଏହାଙ୍କ ଧ୍ୟାନରେ ଏ ଶ୍ୱେତଚମ୍ପକବର୍ଣ୍ଣାଭା, ରତ୍ନଭୂଷଣ ଭୂଷିତା ଓ ପବିତ୍ରରୂପା ବୋଲି ବର୍ଣ୍ଣିତ ହୋଇଛନ୍ତି ।

ବ୍ରହ୍ମବୈବର୍ତ୍ତପୁରାଣ ପ୍ରକୃତି ଖଣ୍ଡରେ ଏହାଙ୍କ ପୂଜା ବିଧାନ ଓ ସ୍ତୁତିସ୍ତୋତ୍ର ଆଦି ବର୍ଣ୍ଣିତ ହୋଇଅଛି ।



# ସ

**ସଂଜ୍ଞା**—ସୂର୍ଯ୍ୟ ପତ୍ନୀ । ବିଶ୍ୱକର୍ମାଙ୍କ ଦୁହିତା । ସୂର୍ଯ୍ୟଦେବ ଏହାଙ୍କର ପାଣିଗ୍ରହଣ କରିଥିଲେ । କଥିତ ଅଛି ଯେ, ଏ ସୂର୍ଯ୍ୟଦେବଙ୍କ ପ୍ରଖର ତେଜ ସହିବାକୁ ଅକ୍ଷମ ହୋଇ ନିଜର ତୁଲ୍ୟାକୃତି ଛାୟାନାମ୍ନୀ ଏକ ସ୍ତ୍ରୀ ସୃଷ୍ଟି କରି ତାଙ୍କୁ ସୂର୍ଯ୍ୟଙ୍କ ନିକଟରେ ରଖି ଦେଇ ନିଜେ ଗୋପନରେ ପିତ୍ରାଳୟକୁ ପ୍ରସ୍ଥାନ କଲେ । ଏହି ଛାୟାଙ୍କ ଗର୍ଭରେ ଶନିଗ୍ରହଙ୍କର ଜନ୍ମ ହେଲା । ପରେ ବିଶ୍ୱକର୍ମା ଏହା ଅବଗତ ହୋଇ ତାଙ୍କୁ ତିରସ୍କାର କରିବାରୁ ସେ ଅଭିମାନରେ ପିତୃଗୃହ ପରିତ୍ୟାଗ କରି ଉତ୍ତର କୁରୁବର୍ଷ ଦେଶରେ ଅଶ୍ୱିନୀ (ଘୋଟକୀ) ରୂପ ଗ୍ରହଣ କରି ବିଚରଣ କଲେ । ଅନନ୍ତର ସୂର୍ଯ୍ୟଦେବ ତପୋବଳରେ

ଏହା ଜାଣିପାରି ସେ ଅଶ୍ୱରୂପ ଧାରଣ କରି ସେହି ସ୍ଥାନରେ ଯାଇ ଅଶ୍ୱିନୀ ରୂପଧାରିଣୀ ସଂଜ୍ଞାଙ୍କ ସଙ୍ଗେ ମିଳିତ ହେଲେ ଏବଂ ସେଠାରେ ତାଙ୍କ ଔରସରେ ସଂଜ୍ଞାଙ୍କ ଗର୍ଭରୁ ଯମଜ ପୁତ୍ର ଅଶ୍ୱିନୀକୁମାର ଜାତ ହେଲେ । ଅଶ୍ୱିନୀ ରୂପଧାରଣ କରିବା ପୂର୍ବରୁ ସଂଜ୍ଞାଙ୍କ ଗର୍ଭରେ ସୂର୍ଯ୍ୟଙ୍କ ଔରସରେ ବୈବସ୍ୱତ ମନୁ, ଯମ ଓ ଯମୁନାଙ୍କର ଜନ୍ମ ହୋଇଥିଲା । (ସୂର୍ଯ୍ୟପୁରାଣ, ଭାଷାକୋଷ)

**ସଂହିତା**—ମନ୍ୱାଦି ସ୍ମୃତି, ସ୍ମୃତିଶାସ୍ତ୍ର । ମନ୍ୱାଦି ସମସ୍ତ ସଂହିତାର ସଂଖ୍ୟା କୋଡ଼ିଏ । ଏହି ସ୍ମୃତି ଗ୍ରନ୍ଥଗୁଡ଼ିକର ନାମ, ଯଥା—'ମନୁ, ଅତ୍ରି, ବିଷ୍ଣୁ, ହାରୀତ, ଯାଜ୍ଞବଲ୍‌କ୍ୟ, ଉଶନା, ଅଙ୍ଗିରା, ଯମ, ଆପସ୍ତମ୍ଭ, ସମ୍ୱର୍ତ୍ତ, କାତ୍ୟାୟନ, ବୃହସ୍ପତି, ପରାଶର, ବ୍ୟାସ, ଶଙ୍ଖ, ଲିଖିତ, ଦକ୍ଷ, ଗୌତମ, ଶତାତପ ଓ ବଶିଷ୍ଠ ।

ଏମାନଙ୍କ ମଧ୍ୟରୁ ମନୁ, ଯାଜ୍ଞବଲ୍‌କ୍ୟ ଓ ପରାଶରଙ୍କ ସଂହିତାରେ ଲିଖିତ ବିଧିମାନ ଦେଶରେ ପରିଚାଳିତ ହେଉଅଛି । ଭୃଗୁଙ୍କ ନାମ ସ୍ମୃତିକାରଙ୍କ ମଧ୍ୟରେ ନ ଥିଲେ ହେଁ ଭୃଗୁ ଜଣେ ସଂହିତାକାର । ବେଦର ଶାଖା ବିଶେଷକୁ ମଧ୍ୟ ସଂହିତା କୁହାଯାଏ । (ଭାଷାକୋଷ)

**ସଗର**—ସୂର୍ଯ୍ୟବଂଶୀୟ ରାଜା ବିଶେଷ । ସଗର ଅଯୋଧ୍ୟାରେ ରାଜତ୍ୱ କରୁଥିଲେ । ସେ ଧର୍ମାତ୍ମା ଓ ପ୍ରଜାରଞ୍ଜକ ନରପତି ଥିଲେ । ବିଦର୍ଭର ରାଜକନ୍ୟା କେଶିନୀ ତାଙ୍କର ମହିଷୀ । ସଗରଙ୍କ ଦ୍ୱିତୀୟ ପତ୍ନୀଙ୍କ ନାମ ସୁମତି । ଏହି ଦୁଇ ପତ୍ନୀଙ୍କ ସହିତ ସଗର ହିମାଳୟ ପର୍ବତରେ କଠୋର ତପସ୍ୟା କରୁଥିଲେ । ଭୃଗୁ ତାଙ୍କ ତପସ୍ୟାରେ ତୃପ୍ତ ହୋଇ ସଗରଙ୍କୁ ବରଦେଲେ 'ତୁମର ଏକ ପତ୍ନୀ ଗର୍ଭରୁ ବଂଶକର ପୁତ୍ର ଜାତ ହେବ ଏବଂ ଅପର ପତ୍ନୀ ଗର୍ଭରୁ ମହାବଳଶାଳୀ ଷାଠିଏ ସହସ୍ର ପୁତ୍ର ଜନ୍ମ ଗ୍ରହଣ କରିବେ ।' ପ୍ରଥମା ପତ୍ନୀ କେଶିନୀଙ୍କ ପ୍ରାର୍ଥନାମତେ ତାଙ୍କ ଗର୍ଭରୁ ଅସମଞ୍ଜ ନାମକ ଏକ ପୁତ୍ର ଜନ୍ମିଥିଲେ । ଏହି ପୁତ୍ର ପ୍ରଜାବର୍ଗଙ୍କୁ ଅତ୍ୟନ୍ତ ପୀଡ଼ା ଦେବାରୁ ସଗର ତାଙ୍କୁ ନଗରରୁ ବହିଷ୍କୃତ କରିଦେଲେ । ଅଂଶୁମାନ୍ ଏହି ଅସମଞ୍ଜଙ୍କ ପୁତ୍ର । ସଗରଙ୍କ ଦ୍ୱିତୀୟା ପତ୍ନୀ ସୁମତି ତୁମ୍ବୀ ଫଳାକାର ଏକ ମାଂସପିଣ୍ଡ ପ୍ରସବ କଲେ । ଏହି ମାଂସପିଣ୍ଡଟିକୁ ଘୃତକୁଣ୍ଡ ମଧ୍ୟରେ ରଖିବା ଦ୍ୱାରା ସେଥିରୁ ଷାଠିଏ ସହସ୍ର ପୁତ୍ର ଉତ୍ପନ୍ନ ହେଲେ ।

ଏକଦା ସଗର ଏକ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଲେ । ଇନ୍ଦ୍ର ରାକ୍ଷସ ମୂର୍ତ୍ତି ଧାରଣ କରି ଏହି ଯଜ୍ଞାଶ୍ୱକୁ ଅପହରଣ କରିନେଲେ । ସଗରଙ୍କ ଷାଠିଏ

ସହସ୍ର ପୁତ୍ର ଅଶ୍ୱ ଅନ୍ୱେଷଣାର୍ଥେ ସମସ୍ତ ପୃଥିବୀ ପରିଭ୍ରମଣ କରି ପାତାଳରେ ଉପସ୍ଥିତ ହେଲେ । ସେମାନେ ସେଠାରେ ଦେଖିଲେ କଣେ ତପୋମଗ୍ନ ଋଷିଙ୍କ ନିକଟରେ ଯଜ୍ଞାଶ୍ୱଟି ବନ୍ଧା ହୋଇରହିଛି । ସେହି ଋଷିଙ୍କ ନାମ କପିଳ । ସଗର ପୁତ୍ରମାନେ ତାଙ୍କୁ ଅଶ୍ୱଚୌର ବିବେଚନା କରି ଯଥେଷ୍ଟ ଅବମାନନା କଲେ । ମୁନି କ୍ରୁଦ୍ଧ ହୋଇଉଠିଲେ । ସେ ଅଭିଶାପାନଳରେ ସଗରଙ୍କ ଷାଠିଏ ସହସ୍ର ପୁତ୍ରଙ୍କୁ ଭସ୍ମ କରିଦେଲେ । ପୁତ୍ରମାନେ ଶୀଘ୍ର ଫେରିଲେ ନାହିଁ ଜାଣି ସଗର ସ୍ୱୀୟ ପୌତ୍ର ଅଂଶୁମାନଙ୍କୁ ସେମାନଙ୍କ ଅନୁସନ୍ଧାନାର୍ଥେ ପ୍ରେରଣ କଲେ । ଅଂଶୁମାନ ପାତାଳକୁ ଯାଇ କପିଳଙ୍କୁ ଭେଟିଲେ । ସେ ତାଙ୍କୁ ନାନା ପ୍ରକାର ଅନୁନୟ କରିବା ଦ୍ୱାରା କପିଳ ପରିତୁଷ୍ଟ ହେଲେ । କପିଳଙ୍କ ଆଦେଶରେ ଅଂଶୁମାନ ଯଜ୍ଞାଶ୍ୱ ଧରି ଫେରିଲେ । ବାଟରେ ଆସୁ ଆସୁ ପକ୍ଷୀରାଜ ଗରୁଡ଼ଙ୍କ ସହିତ ଅଂଶୁମାନଙ୍କର ସାକ୍ଷାତ ହେଲା । କପରି ଭାବରେ ଗଙ୍ଗାଙ୍କୁ ଆଣିଲେ ତାଙ୍କ ପିତୃପୁରୁଷମାନେ ଉଦ୍ଧାର ହେବେ ସେହି ବିଷୟରେ ଗରୁଡ଼ ତାଙ୍କୁ ଉପଦେଶ ଦେଲେ । ଅଶ୍ୱ ସହିତ ଅଂଶୁମାନ ଅଯୋଧ୍ୟାରେ ପହଞ୍ଚିଲେ । ରାଜା ସଗର ଅଶ୍ୱମେଧ ଯଜ୍ଞ ସମାପନ କରି ତିରିଶ ସହସ୍ର ବର୍ଷ ରାଜତ୍ୱ କରି ସ୍ୱର୍ଗଯାତ୍ରା କଲେ । ଏହି ବଂଶରେ ଭଗୀରଥ ଜନ୍ମଗ୍ରହଣ କରି ଗଙ୍ଗାଙ୍କୁ ଆନୟନ ପୂର୍ବକ ପିତୃପୁରୁଷଙ୍କର ଉଦ୍ଧାରସାଧନ କଲେ । (ଚରିତାଭିଧାନ)

ଏହି ରାଜାଙ୍କ ନାମ ସଗର କାହିଁକି ହେଲା, ସେ ବିଷୟରେ ଏକ ସୁନ୍ଦର ଉପାଖ୍ୟାନ ଦୃଷ୍ଟ ହୁଏ ।

ଭାଗବତ କହେ—ଗରଳ ସଙ୍ଗେ ଜନ୍ମ ଯେଣୁ,
ସଗର ନାମ ହେଉ ତେଣୁ ।

ସଗର ସୂର୍ଯ୍ୟବଂଶୀୟ ରାଜା ବାହୁକଙ୍କ ପୁତ୍ର । ବାହୁକ ହୃତରାଜ୍ୟ ଓ ହୃତସର୍ବସ୍ୱ ହୋଇ ବନକୁ ପ୍ରସ୍ଥାନ କଲେ ଓ ସେହି ବନରେ ତାଙ୍କର ମୃତ୍ୟୁ ହେଲା । ଏହି ସମୟରେ ଏହାଙ୍କ ରାଣୀ ଯାଦବୀ ଗର୍ଭବତୀ ଥିଲେ । ଯାଦବୀଙ୍କୁ ତାଙ୍କ ସପତ୍ନୀ ଖାଦ୍ୟଦ୍ରବ୍ୟ ସଙ୍ଗେ ଗରଳ ଖାଇବାକୁ ଦେଲେ, ତଥାପି ତାଙ୍କର ଗର୍ଭପାତ ହେଲନାହିଁ ଏବଂ ଯଥାକାଳରେ ଔର୍ବମୁନିଙ୍କ ଆଶ୍ରମରେ ତାଙ୍କ ଗର୍ଭରୁ ସଗର ଜାତ ହେଲେ । ସେହି ସଙ୍ଗେ ସଙ୍ଗେ ଯାଦବୀଙ୍କୁ ତାଙ୍କ ସଉତୁଣୀ ଦେଇଥିବା ଗରଳ ମଧ୍ୟ ଗର୍ଭରୁ ପଡ଼ିଲା । ବିଷକୁ ସଂସ୍କୃତରେ ଗର ବୋଲି କହନ୍ତି । ଗର ସହିତ ମାତୃଗର୍ଭରୁ ଜନ୍ମ ହୋଇଥିବାରୁ ଏହାଙ୍କର ଏପରି ନାମ ହେଲା । ଅର୍ଥାତ୍ ଗର ସହିତ ବର୍ତ୍ତିମାନ ଯେ ସେ ସଗର । (ଭାଷାକୋଷ)

**ସଞ୍ଜୟ**—ଗବଲ୍‌ଗଣ ନାମକ ମୁନିଙ୍କ ପୁତ୍ର । ଏ ଅନ୍ଧରାଜ ଧୃତରାଷ୍ଟ୍ରଙ୍କର ପରାମର୍ଶଦାତା ଥିଲେ । ବ୍ୟାସଦେବଙ୍କ ପ୍ରସାଦରୁ ସଞ୍ଜୟ ଦିବ୍ୟଚକ୍ଷୁ ଲାଭ କରି ମହାଭାରତ ଯୁଦ୍ଧର ଘଟଣାବଳୀ ଧୃତରାଷ୍ଟ୍ରଙ୍କ ଆଗରେ ବର୍ଣ୍ଣନା କରିଥିଲେ । ଯୁଦ୍ଧାବସାନ ହୁଅନ୍ତେ ସଞ୍ଜୟ ଧୃତରାଷ୍ଟ୍ରଙ୍କ ସହିତ ଯୁଧିଷ୍ଠିରଙ୍କ ରାଜତ୍ୱ ସମୟରେ ହସ୍ତିନାପୁର ନଗରରେ ବାସ କରିଥିଲେ । ପରେ ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀଦେବୀଙ୍କ ସହିତ ସେ ବନଗମନ କଲେ । କିଯ୍ଦତ୍‌କାଳ ପରେ ବନରେ ହଠାତ୍ ପ୍ରବଳ ଦାବାନଳ ଜଳିଉଠିଲା । ଏହି ବନାଗ୍ନିରେ ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀ ପୋଡି ହୋଇ ମରିଗଲେ । ସଞ୍ଜୟ ପଳାଇ ଯାଇ ହିମାଳୟ ପ୍ରଦେଶରେ ଅବଶିଷ୍ଟ ସମୟ ଯାପନ କରି ଦେହତ୍ୟାଗ କଲେ । କୁରୁସୈନ୍ୟ ଧ୍ୱଂସ ହେବା ପରେ ସାତ୍ୟକୀ ସଞ୍ଜୟଙ୍କୁ ନିଧନ କରିବାକୁ ଉଦ୍ୟତ ହେବାରୁ ବ୍ୟାସଦେବ ତାହାଙ୍କୁ ରକ୍ଷା କରିଥିଲେ ।

(ଚରିତାଭିଧାନ ଓ ଭାଷାକୋଷ)

**ସତୀ**—ଦକ୍ଷ କନ୍ୟା, ମହାଦେବଙ୍କ ପତ୍ନୀ । ଏ ଦକ୍ଷ ପ୍ରଜାପତିଙ୍କ କନ୍ୟା ଥାଇ ମହାଦେବଙ୍କୁ ବିବାହ କରିଥିଲେ । କିନ୍ତୁ ମହାଦେବ ପ୍ରଣାମାଦି ଦ୍ୱାରା ଦକ୍ଷଙ୍କୁ ସମ୍ମାନ ପ୍ରଦର୍ଶନ ନ କରିବାରୁ ଦକ୍ଷ ତାଙ୍କ ଉପରେ ବିରକ୍ତ ହୋଇ ତାଙ୍କୁ ଅପମାନ ଦେବାପାଇଁ ଏକ ଯଜ୍ଞ ଆରମ୍ଭ କଲେ । ସେହି ଯଜ୍ଞକୁ ଦକ୍ଷ ତ୍ରିଲୋକର ଅନ୍ୟ ସମସ୍ତଙ୍କୁ ନିମନ୍ତ୍ରଣ କଲେ, ମାତ୍ର ଶିବଙ୍କୁ ନିମନ୍ତ୍ରଣ କଲେ-ନାହିଁ । ନିମନ୍ତ୍ରଣ କରିବାର ଭାର ନାରଦ ମୁନିଙ୍କ ଉପରେ ଥିଲା । ସେ ଗୋପନରେ କୈଳାସକୁ ଯାଇ ଏ ଯଜ୍ଞର ସମ୍ବାଦ ସତୀଙ୍କୁ ଦେଲେ । ସତୀ ଅନିମନ୍ତ୍ରିତା ହୋଇ ସୁଦ୍ଧା ପିତୃଗୃହଙ୍କ ଦେଖିବାକୁ ଯାଇ ପିତୃ ଗୃହରେ ଦକ୍ଷଙ୍କ ମୁହଁରୁ ସ୍ୱାମୀଙ୍କ ନିନ୍ଦା ଶୁଣି ତାହା ସହି ନ ପାରି ଯଜ୍ଞ କୁଣ୍ଡରେ ଝାସଦେଇ ପ୍ରାଣତ୍ୟାଗ କଲେ । ସତୀଙ୍କ ସଙ୍ଗେ ଯାଇଥିବା ନନ୍ଦୀ ସତୀଙ୍କ ମୃତ୍ୟୁ ସମ୍ବାଦ ଘେନି କୈଳାସରେ ପହଞ୍ଚିବାରୁ ମହାଦେବ ସତୀଙ୍କ ବିୟୋଗବାର୍ତ୍ତା ଶୁଣି କ୍ରୋଧରେ ଉନ୍ମତ୍ତ ହୋଇ ସ୍ୱୀୟ ଜଟା ଛେଦନପୂର୍ବକ ତହିଁରୁ ବୀରଭଦ୍ର ନାମକ ଭୈରବକୁ ସୃଷ୍ଟି କରି ସ୍ୱଗଣ ସମଭିବ୍ୟାହାରରେ ଦକ୍ଷ ଗୃହରେ ପହଞ୍ଚିଲେ । ଶିବାନୁଚରମାନେ ନାନା ଅତ୍ୟାଚାର କରି ଦକ୍ଷ ଯଜ୍ଞକୁ ନଷ୍ଟ କଲେ ଓ ଦକ୍ଷଙ୍କୁ ବଧ କଲେ । ପରେ ବ୍ରହ୍ମାଙ୍କ ଅନୁରୋଧରେ ଦକ୍ଷଙ୍କ ଗଣ୍ଡିରେ ଛିନ୍ନ ମସ୍ତକ ପରିବର୍ତ୍ତେ ଗୋଟିଏ ଛାଗମୁଣ୍ଡ ଯୋଜନା କରି ମହାଦେବ ଦକ୍ଷଙ୍କୁ ଜିଆଇଁ ଦେଲେ । ମହାଦେବ ସତୀଙ୍କ ମୃତ ଦେହକୁ ତ୍ରିଶୂଳ ଉପରେ ଧାରଣ କରି ବ୍ରହ୍ମାଣ୍ଡ ସାକ ବୁଲିଲେ । ଏହା ଦେଖି ବିଷ୍ଣୁ

ସୁଦର୍ଶନଚକ୍ର ପେଷି ଉକ୍ତ ସତୀଙ୍କ ଶବକୁ ଖଣ୍ଡ ଖଣ୍ଡ କଲେ ଓ ଉକ୍ତ ଶବର ଭିନ୍ନ ଭିନ୍ନ ଅଙ୍ଗ ଯେଉଁ ଯେଉଁଠାରେ ପଡ଼ିଲା ସେହି ସେହି ସ୍ଥାନମାନ ଗୋଟିଏ ଲେଖାଏଁ ପୀଠ ଓ ଉପପୀଠରେ ପରିଣତ ହେଲା । ଉକ୍ତ ପୀଠମାନ ହିନ୍ଦୁମାନଙ୍କର ମହାତୀର୍ଥରୂପେ ଅଦ୍ୟାବଧି ଭାରତର ଭିନ୍ନ ଭିନ୍ନ ସ୍ଥାନରେ ବିରାଜିତ ଅଛି । (ପୀଠ ଦେଖ) ଏହା ପରେ ସତୀ ପରଜନ୍ମରେ ହିମାଳୟଙ୍କ ସ୍ତ୍ରୀ ମେନାଙ୍କ ଗର୍ଭରୁ ପାର୍ବତୀରୂପରେ ଜନ୍ମଗ୍ରହଣ କରି କଠୋର ତପଃ ସାଧନପୂର୍ବକ ପୁଣି ଶିବଙ୍କୁ ସ୍ୱାମୀରୂପେ ପାଇଲେ ।

(ଭାଷାକୋଷ, ମହାଦେବ ଦାସକୃତ ମାର୍କଣ୍ଡେୟପୁରାଣ)

**ସତ୍ରାଜିତ୍ (ଶତ୍ରାଜିତ୍)**—ଶ୍ରୀକୃଷ୍ଣଙ୍କ ଶ୍ୱଶୁର । ସତ୍ୟଭାମାଙ୍କ ପିତା । ସୂର୍ଯ୍ୟଦେବ ସନ୍ତୁଷ୍ଟ ହୋଇ ଏହାଙ୍କୁ ସ୍ୟମନ୍ତକମଣିଦାନ କରିଥିଲେ । ଏ ପୁଣି ନିଜ ସହୋଦର ପ୍ରସେନଜିତ୍‌ଙ୍କୁ ଏହା ଦେଇଥିଲେ । ପ୍ରସେନଜିତ୍ ମୃଗୟାରେ ସିଂହକର୍ତ୍ତୃକ ହତ ହେବାରୁ ଏହାକୁ ଜାମ୍ବବାନ ପାଇଥିଲେ । ଜାମ୍ବବାନଙ୍କୁ ପରାଜିତ କରି ଶ୍ରୀକୃଷ୍ଣ ପୁଣି ଏମଣିକୁ ଆଣି ସତ୍ରାଜିତ୍‌ଙ୍କୁ ଦେଲେ । ଅକ୍ରୂରଙ୍କ ପ୍ରରୋଚନାରେ ଶତଧନ୍ୱା, ସତ୍ରାଜିତଙ୍କୁ ବଧ କରି ଏ ମଣିକୁ ହରଣ କଲେ । (ଭାଷାକୋଷ)

**ସତ୍ୟବତୀ**—ମହର୍ଷି କୃଷ୍ଣଦ୍ୱୈପାୟନଙ୍କ ମାତା । ଶାନ୍ତନୁଙ୍କ ଦ୍ୱିତୀୟା ପତ୍ନୀ ।

(ପରାଶର, ବସୁ, ଶାନ୍ତନୁ, ଭୀଷ୍ମ ଓ କୃଷ୍ଣଦ୍ୱୈପାୟନ ଦେଖ)

**ସତ୍ୟବାନ୍**—ଶାଲ୍ୱଦେଶର ରାଜା ଦ୍ୟୁମତ୍ସେନଙ୍କ ପୁତ୍ର । ଏହାଙ୍କ ମାତାଙ୍କ ନାମ ଶୈବ୍ୟା । ଦୈବ ଦୁର୍ବିପାକବଶତଃ ଦ୍ୟୁମତ୍ସେନ ଚକ୍ଷୁହୀନ ହୋଇଗଲେ ଏବଂ କୁଚକ୍ରୀ ମନ୍ତ୍ରୀମାନଙ୍କ ଷଡ଼ଯନ୍ତ୍ର ଯୋଗେ ରାଜ୍ୟଚ୍ୟୁତ ହୋଇ ପତ୍ନୀ ଓ ଶିଶୁପୁତ୍ର ସତ୍ୟବାନଙ୍କ ସହିତ ଅରଣ୍ୟରେ ଆଶ୍ରୟ ଗ୍ରହଣ କରିଥିଲେ । ଏକଦା ମଦ୍ରଦେଶାଧିପତି ଅଶ୍ୱପତି ନିଜର କନ୍ୟା ସାବିତ୍ରୀଙ୍କ ସହିତ ଏହି ବନକୁ ଆଗମନ କଲେ । ଏହିଠାରେ ରୂପଯୌବନ ସମ୍ପନ୍ନା ସାବିତ୍ରୀ ମାତୃପିତୃଭକ୍ତ ସତ୍ୟବାନଙ୍କ ଗୁଣରେ ଓ ଧର୍ମ ଭାବରେ ମୁଗ୍ଧ ହୋଇ ତାହାଙ୍କୁ ପତିରୂପରେ ବରଣ କଲେ । ସତ୍ୟବାନ୍ କିନ୍ତୁ ଅଳ୍ପାୟୁ ଥିଲେ । ବିବାହ ବର୍ଷ ପୂରଣହେବା ଦିନ ତାଙ୍କର ମୃତ୍ୟୁ ହେଲା । ପତିପରାୟଣା ସାବିତ୍ରୀ ନିଜର ପାତିବ୍ରତ୍ୟ ପ୍ରଭାବରେ ଯମରାଜଙ୍କୁ ସମ୍ମୋହିତ କରି ତାଙ୍କ ନିକଟରୁ ତିନୋଟି ବର ମାଗିଲେ । ଏହି ବର ପ୍ରଭାବରେ ସେ ନିଜ ସ୍ୱାମୀଙ୍କୁ ପୁନର୍ଜୀବନ ଦାନ କରି ଓ ରାଜ୍ୟପ୍ରାପ୍ତ ହେଲେ । ଅଶ୍ୱପତି ଶତ ପୁତ୍ରର ଜନକ ହେଲେ । ନିଜେ ସାବିତ୍ରୀ ଶତ ପୁତ୍ରର ଜନନୀ ହୋଇ ପରମ ସୁଖରେ ସ୍ୱାମୀଙ୍କ

ସନ୍ତୃପ୍ତ କାଳଯାପନ କଲେ । ସେହି ସାବିତ୍ରୀ ସାଧ୍ୱୀ ନାରୀଙ୍କର ଆଦର୍ଶ । ଅଦ୍ୟାବଧି ଏ ଦେଶର ସଧବାମାନେ ସାବିତ୍ରୀଙ୍କ ପରି ସାଧ୍ୱୀ ହେବେ ବୋଲି ସାବିତ୍ରୀ ଅମାବାସ୍ୟା ଦିନ ନିଷ୍ଠାର ସହ ସାବିତ୍ରୀବ୍ରତ ପାଳନ କରନ୍ତି ।

(ଚରିତାଭିଧାନ ଓ ଭାଷାକୋଷ)

**ସତ୍ୟବ୍ରତ**—ତ୍ରିଶଙ୍କୁଙ୍କ ନାମାନ୍ତର । ସୂର୍ଯ୍ୟବଂଶୀୟ ଜନୈକ ରାଜା ।

**ସତ୍ୟଭାମା**—ସତ୍ରାଜିତ୍ ରାଜାଙ୍କ କନ୍ୟା । ଶ୍ରୀକୃଷ୍ଣଙ୍କ ଅଷ୍ଟପାଟବଂଶୀ ମଧ୍ୟରୁ ଏକତମା । ଏହାଙ୍କ ଅନୁରୋଧ ପୂରଣ କରିବା ପାଇଁ ଶ୍ରୀକୃଷ୍ଣ ଇନ୍ଦ୍ରଙ୍କ ସହିତ ଯୁଦ୍ଧ କରି ସ୍ୱର୍ଗରୁ ଇନ୍ଦ୍ରଙ୍କ ନନ୍ଦନକାନନରୁ ପାରିଜାତ ବୃକ୍ଷ ଆଣି ଏହାଙ୍କୁ ଉପହାର ଦେଇଥିଲେ । ଏ ପୁଣ୍ୟକବ୍ରତ ଅନୁଷ୍ଠାନ କରି ଶ୍ରୀକୃଷ୍ଣଙ୍କୁ ପାରିଜାତ ବୃକ୍ଷରେ ବନ୍ଧନ କରିଥିଲେ । ଏହାଙ୍କ ଗର୍ଭରେ ଶ୍ରୀକୃଷ୍ଣଙ୍କ ଔରସରେ ଭାନୁ ଆଦି ସାତ ପୁତ୍ର ଜାତ ହୋଇଥିଲେ । ଯଦୁବଂଶର ଧ୍ୱଂସ ଓ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପରେ ଯଦୁବଂଶୀୟା ମହିଳାମାନଙ୍କ ସଙ୍ଗେ ଅର୍ଜୁନ ଏହାଙ୍କୁ ଦ୍ୱାରିକାରୁ ହସ୍ତିନାପୁରକୁ ନେଇ ଯାଇଥିଲେ । ପରେ ଏ ବନବାସିନୀ ହୋଇ ତପଶ୍ଚରଣପୂର୍ବକ ଜୀବନର ଶେଷ ଅଂଶ ଅତିବାହିତ କଲେ ।

ଶ୍ରୀକୃଷ୍ଣଙ୍କ ଅଷ୍ଟ ପାଟମହିଷୀଙ୍କ ନାମ ଯଥା—ରୁକ୍ମିଣୀ, ସତ୍ୟଭାମା, କାଳିନ୍ଦୀ, ଶୁଚିସ୍ମିତା, ମିତ୍ରବିନ୍ଦା, ଜାମ୍ବବତୀ, ନାଗ୍ନଜିତୀ, ସୁଲକ୍ଷଣା ।

(ଭାଷାକୋଷ)

**ସତ୍ୟଯୁଗ**—(ଯୁଗ ନୋଃ ଦେଖ) ।

**ସନକ**—ମୁନି ବିଶେଷ । ବ୍ରହ୍ମାଙ୍କର ସାତଗୋଟି ମାନସପୁତ୍ର ମଧ୍ୟରୁ ଏକତମ, ବୈଶ୍ୱଦେବ ଓ ଶ୍ରାଦ୍ଧାଦିରେ ଯେଉଁ ସପ୍ତଦିବ୍ୟମନୁଷ୍ୟଙ୍କୁ ତର୍ପଣ କରାଯାଏ ସେମାନଙ୍କ ମଧ୍ୟରୁ ଏ ଜଣେ । ସପ୍ତମନୁଷ୍ୟଙ୍କ ନାମ ଯଥା—ସନକ, ସନନ୍ଦ, ସନାତନ, କପିଳ, ବୋଢୁ, ଆସୁରି, ପଞ୍ଚଶିଖ । ପୁରାଣ ମତରେ ଏମାନେ ମନୁଷ୍ୟମାନଙ୍କର ପୂର୍ବପୁରୁଷ ଓ ଜନଲୋକବାସୀ । ମତାନ୍ତରରେ ବ୍ରହ୍ମାଙ୍କର ମାନସପୁତ୍ର ମଧ୍ୟରୁ ସନକ ଏକତମ । ଚାରି ମାନସପୁତ୍ରଙ୍କ ନାମ—ସନକ, ସନନ୍ଦ, ସନାତନ ଓ ସନତ୍କୁମାର । ଏମାନେ ବ୍ରହ୍ମାଙ୍କ ଆଦେଶ ଅନୁସାରେ ମନୁଷ୍ୟମାନଙ୍କୁ ସୃଷ୍ଟି କଲେ । (ଭାଗବତ ୩ୟ ସ୍କନ୍ଧ, ୧୨ଶ ଅଧ୍ୟାୟ) । ନିବୀତ ହୋଇ ଅର୍ଥାତ୍ ପଇତାକୁ ମାଳପରି ବେକରେ ଲମ୍ବାଇ ଉତ୍ତର ମୁଖ ହୋଇ ଏହି ସପ୍ତଦିବ୍ୟ ମନୁଷ୍ୟମାନଙ୍କୁ ତଣ୍ଡୁଳୋଦକରେ ତର୍ପଣ କରିବାକୁ ହୁଏ । (ଭାଷାକୋଷ)

**ସନତ୍କୁମାର**—ଋଷି ବିଶେଷ । ବ୍ରହ୍ମାଙ୍କ ମାନସପୁତ୍ର ବିଶେଷ । ମହାଭାରତ ଓ ହରିବଂଶରେ ଏହାଙ୍କର ନାମୋଲ୍ଲେଖ ଅଛି । ଏ ମହାତପା ଓ ପରମଧାର୍ମିକ ଥିଲେ । ଏଥିଲାଗି ଋଷିମାନେ ଏହାଙ୍କୁ ଶ୍ରଦ୍ଧା ଓ ବିଶ୍ୱାସ କରୁଥିଲେ । ରାଜର୍ଷି ବୈଣ୍ୟଙ୍କ ଅଶ୍ୱମେଧଯଜ୍ଞ କାଳରେ ଗୌତମ ଓ ଅତ୍ରିଙ୍କ ମଧ୍ୟରେ ବିତଣ୍ଡା ଉପସ୍ଥିତ ହେବାରୁ ତହିଁର ମୀମାଂସା ନିମନ୍ତେ ଉଭୟ ପକ୍ଷ ଏହାଙ୍କୁ ମଧ୍ୟସ୍ଥ ମାନିବାରୁ ଏ ଉକ୍ତ ବିବାଦକୁ ନିଷ୍ପତ୍ତି କରିଥିଲେ ।

ଧର୍ମଦେବଙ୍କ ସ୍ତ୍ରୀ ଅହିଂସାଙ୍କଠାରୁ ଚାରିଗୋଟି ପୁତ୍ର ଜାତ ହୋଇଥିଲେ ଓ ପରେ ଏମାନଙ୍କୁ ବ୍ରହ୍ମାଦତ୍ତକ ପୁତ୍ରରୂପେ ଗ୍ରହଣ କରି ପ୍ରଜା ସୃଷ୍ଟି କରାଇଲେ । ଏମାନଙ୍କ ନାମ ଯଥାକ୍ରମେ ସନତ୍କୁମାର, ସନାତନ, ସନକ ଓ ସନନ୍ଦ ବା ସନନ୍ଦନ । ଧର୍ମଙ୍କ ଔରସରେ ଅହିଂସାଙ୍କ ଗର୍ଭରେ ଜନ୍ମ ହୋଇଥିବା ଆଉ ଚାରିଗୋଟି ପୁତ୍ରଙ୍କ ନାମ, ଯଥା—କପିଳ, ବୋଢୁ, ଆସୁରି ଓ ପଞ୍ଚଶିଖ । ଏହି ଆଠ ଜଣଙ୍କ ମଧ୍ୟରୁ ସନତ୍କୁମାରଙ୍କ ଛଡ଼ା ଅନ୍ୟ ସାତ ଜଣଙ୍କୁ ସପ୍ତମନୁଷ୍ୟ ନାମରେ ଶ୍ରାଦ୍ଧ, ବୈଶ୍ୱଦେବ ଓ ତର୍ପଣରେ ବଳି ଉଦକାଦି ଦିଆଯାଏ । ଏମାନଙ୍କ ଆଖ୍ୟାନ ମହାଭାରତୀୟ ହରିବଂଶ, ବାମନପୁରାଣ ୫୭।୫୮ ଅଧ୍ୟାୟ, ବ୍ରହ୍ମବୈବର୍ତ୍ତ କୃଷ୍ଣଜନ୍ମ ଖଣ୍ଡ ୧୨୯ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । (ବିଶ୍ୱକୋଷ)

**ସନନ୍ଦନ**—ବ୍ରହ୍ମାଙ୍କର ମାନସପୁତ୍ର । ସନନ୍ଦଙ୍କର ନାମାନ୍ତର ।

**ସନାତନ**— ବ୍ରହ୍ମାଙ୍କର ମାନସପୁତ୍ର । (ସନତ୍କୁମାର ଦେଖ)

**ସନ୍ଧ୍ୟାଚଳ**—ପୌରାଣିକ ପର୍ବତ ବିଶେଷ । କାଳିକାପୁରାଣ ୫୦ ଓ ୮୧ ଅଧ୍ୟାୟରେ ଏହି ପର୍ବତରୁ ନିର୍ଗତକାନ୍ତା ବା ସନ୍ଧ୍ୟା ନାମ୍ନୀ ନଦୀର ବିଷୟ ଲିଖିତ ଅଛି । ବଶିଷ୍ଠ ଏହିଠାରେ ସନ୍ଧ୍ୟା କରିଥିଲେ ବୋଲି ଏହାର ଏପରି ନାମ ହୋଇଅଛି । ଏହି ପର୍ବତ କାମରୂପ (ଆସାମ) ଦେଶରେ ଥିବାର ଉଲ୍ଲେଖ ଅଛି । ଏହି ପର୍ବତରୁ ବାହାରିଥିବା ସନ୍ଧ୍ୟାନଦୀରେ ସ୍ନାନ କଲେ ମନୁଷ୍ୟ ଚିରାୟୁ ଓ ନିରୋଗ ହୁଏ । (ବିଶ୍ୱକୋଷ)

**ସପ୍ତଜିହ୍ୱା**—ଅଗ୍ନିଙ୍କର ସାତଗୋଟି ଜିହ୍ୱାର ନାମ—କାଳୀ, କରାଳୀ, ମନୋଜବା, ସୁଲୋହିତା, ସୁଧୂମ୍ରବର୍ଣ୍ଣା, ସ୍ଫୁଲିଙ୍ଗିନୀ ବା ଉଗ୍ରା, ବିଶ୍ୱରୂପିଣୀ ବା ବିଶ୍ୱନନ୍ଦା ବା ପ୍ରଦୀପ୍ତା । ଅନ୍ୟ ମତରେ ସପ୍ତଜିହ୍ୱାର ନାମ ଯଥା—ଆବହ, ପ୍ରବହ, ଉଦ୍‌ବହ, ସଂବହ, ବିବହ, ନିବହ, ପରିବହ । ଏହି ସାତଗୋଟି ବାୟୁ ଅଗ୍ନିର ୭ ଗୋଟି ଜିହ୍ୱାରୂପେ କଥିତ ।

କର୍ମ ବିଶେଷରେ ଏହି ସପ୍ତଜିହ୍ୱାଙ୍କର ନାମାନ୍ତର ମଧ୍ୟ ଅଛି । ଯଥା—
(କ) ହିରଣ୍ୟା, କନକା, ରକ୍ତା, କୃଷ୍ଣା, ସୁପ୍ରଭା, ବହୁରୂପା, ଅତିରକ୍ତା ।
(ଖ) ଶ୍ୱେତ, ପୀତ, ରକ୍ତ, କୃଷ୍ଣ, ନୀଳ, ଧୂମ୍ର, ପାଟଳ ।

**ସପ୍ତଦ୍ୱୀପ** – ପୁରାଣୋକ୍ତ ପୃଥିବୀର ୭ଗୋଟି ଦ୍ୱୀପ । ଏଗୁଡ଼ିକର ନାମ ଯଥା—ଜମ୍ବୁ, ପ୍ଲକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର । ଏମାନେ ପୁରାଣୋକ୍ତ ସପ୍ତସମୁଦ୍ର ମଧ୍ୟରେ ଅବସ୍ଥିତ ଓ ଏମାନଙ୍କର ରାଜା ମଧ୍ୟ ସାତ ଜଣ । ଭାରତବର୍ଷ ଜମ୍ବୁଦ୍ୱୀପ ଅନ୍ତର୍ଗତ । ପ୍ରତ୍ୟେକ ଦ୍ୱୀପରେ କେତେଗୁଡ଼ିଏ ବର୍ଷ ବା ଦେଶ ଅଛି । ଏହି ସପ୍ତଦ୍ୱୀପ ମେରୁ ପର୍ବତକୁ ବେଷ୍ଟନ କରି ଅବସ୍ଥିତ । ଏହି ସପ୍ତଦ୍ୱୀପର ମଧ୍ୟସ୍ଥଳରେ ଜମ୍ବୁଦ୍ୱୀପ ଅବସ୍ଥିତ ।

ଭାଗବତ କହେ—

> ସେ ରାଜ୍ୟ ରଥଚକ୍ରେ କଲେ ।
> ହୋଇଲା ଯେତେକ ବିସ୍ତାର ॥
> ତେଣୁ ସପତ ସିନ୍ଧୁ ହେଲେ ।
> ପୃଥିବୀ ସାତ ଭାଗ କଲେ ॥
> ଶାକ ଶାଲ୍ମଳୀ ଜମ୍ବୁ ପ୍ଲକ୍ଷ ।
> କୁଶ ପୁଷ୍କର ଆଉ କ୍ରୌଞ୍ଚ ॥

ଭୂଗୋଳରେ ଦ୍ୱୀପ ବୋଇଲେ ଯାହା ବୁଝିବାକୁ ହୁଏ ଏ ଦ୍ୱୀପମାନ ତାହା ନୁହେଁ । ଯେଉଁ ଭୂଖଣ୍ଡ ଚାରିଆଡ଼େ ଜଳବେଷ୍ଟିତ ତାହା ଦ୍ୱୀପ, ଏହାହିଁ ଭୌଗୋଳିକ ସଂଜ୍ଞା । କିନ୍ତୁ ହିନ୍ଦୁ ପୁରାଣୋକ୍ତ ଏ ଦ୍ୱୀପମାନ ଗୋଲାକାର ପାଣି ଓ ତାହାର ଦୁଇଧାରରେ ଜଳ ବେଷ୍ଟିତ ବଳୟ ବା ଅଙ୍ଗୁରୀୟକ ତୁଲ୍ୟ ଭୂଭାଗ (rings) ଅବସ୍ଥିତ ।

ମେରୁ ଗିରିକୁ ବେଢ଼ି ଗୋଟିଏ ସମୁଦ୍ର ବଳୟ ଓ ତାକୁ ବେଢ଼ି ଗୋଟିଏ ଦ୍ୱୀପ ବଳୟ; ତାକୁ ବେଢ଼ି ପୁଣି ଗୋଟିଏ ସମୁଦ୍ର ବଳୟ ଓ ତାକୁ ବେଢ଼ି ପୁଣି ଗୋଟିଏ ଦ୍ୱୀପ ବଳୟ—ଏହିପରି ମେରୁଗିରିକୁ କେନ୍ଦ୍ର କରି ୭ ଗୋଟି ସମୁଦ୍ର ଓ ୭ଗୋଟି ଦ୍ୱୀପ ବଳୟାକାରରେ ବେଢ଼ିଥିବା ପୁରାଣରେ ଲେଖାଅଛି । ଏହି ସପ୍ତଦ୍ୱୀପରେ ମଧ୍ୟ ସାତଗୋଟି ରାଜାପଣ କରୁଥିଲେ । ଏମାନଙ୍କୁ ସପ୍ତଦ୍ୱୀପପତି ବୋଲାଯାଏ । ଏମାନଙ୍କର ନାମ ଯଥା—ଅଗ୍ନିଧ୍ର, ମେଧାତିଥି, ବପୁଷ୍ମାନ୍, ଜ୍ୟୋତିଷ୍ମାନ୍, ଦ୍ୟୁତିମାନ୍, ଭବ୍ୟ ଓ ସବନ ।

(ଭାଷାକୋଷ)

**ସପ୍ତର୍ଷି**—ସାତ ଜଣ ପ୍ରଧାନ ଋଷି । ଏମାନଙ୍କ ନାମ ଯଥା—ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ ଓ ବଶିଷ୍ଠ । ଏମାନଙ୍କର ପତ୍ନୀମାନଙ୍କର ନାମ ଯଥାକ୍ରମେ ସମ୍ଭୂତି, ଅନସୂୟା, କ୍ଷମା, ପ୍ରୀତି, ସନ୍ନତି, ଲଜ୍ଜା ଓ ଅରୁନ୍ଧତୀ । ପଦ୍ମପୁରାଣ ସ୍ୱର୍ଗଖଣ୍ଡ ୧୧ଶ ଅଧ୍ୟାୟରେ ଲେଖାଅଛି ଯେ, ଏ ଋଷିମାନେ ଜଗତ୍‌ରେ ପ୍ରଜା ସୃଷ୍ଟି ପାଇଁ ବିଧାତାଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ଏମାନେ ବ୍ରହ୍ମାଙ୍କର ମାନସପୁତ୍ର । ଏମାନଙ୍କୁ ମଧ୍ୟ ସପ୍ତବ୍ରାହ୍ମଣ ବୋଲଯାଏ । ଏମାନେ ଲୋକପିତା । ଏମାନଙ୍କ ସ୍ତ୍ରୀମାନେ ଲୋକମାତା ନାମରେ ଖ୍ୟାତା । ଏମାନଙ୍କ ତପସ୍ୟା ଦ୍ୱାରା ତ୍ରିଭୁବନ ଅସ୍ଥ ହୋଇ ରହିଅଛି । ଏମାନେ ସର୍ବଦା ତ୍ରିସନ୍ଧ୍ୟାରେ ଉପାସନା ଓ ଗାୟତ୍ରୀ ଜପ କରୁଅଛନ୍ତି ବୋଲି କଥିତ ।

(ଭାଷାକୋଷ)

**ସପ୍ତସମୁଦ୍ର**—ହିନ୍ଦୁ ପୁରାଣ ମତରେ ମେରୁଗିରିର ଚାରିପାଖେ ଗୋଟିଏ ଲେଖାଏଁ ଦ୍ୱୀପକୁ ଯଥାକ୍ରମେ ଘେରିଥିବା ସାତଗୋଟି ସମୁଦ୍ର । ଏହି ସପ୍ତ ସାଗରଙ୍କ ନାମ ସଂଖ୍ୟା ଯଥା—ଲବଣ, ଇକ୍ଷୁ ବା ମଧୁ, ସୁରା, ଘୃତ, ଦଧି, କ୍ଷୀର ବା ଦୁଗ୍ଧ ଓ ଜଳ ସମୁଦ୍ର । ଏହି ସମୁଦ୍ରମାନ ମେରୁ ପର୍ବତକୁ କେନ୍ଦ୍ର କରି ଯଥାକ୍ରମେ ସପ୍ତଦ୍ୱୀପକୁ ବେଷ୍ଟନ କରିଅଛନ୍ତି । ଏଥିମଧ୍ୟରୁ କ୍ଷୀରସାଗର ମଧ୍ୟ-ସ୍ଥିତ ବୈକୁଣ୍ଠରେ ବିଷ୍ଣୁଙ୍କର ନିବାସ । (ଭାଷାକୋଷ)

**ସବ୍ୟ**—ଅଙ୍ଗିରା ଋଷିଙ୍କ ଏକ ପୁତ୍ର ବୋଲି ଶବ୍ଦକୋଷର ମତ । ଅଙ୍ଗିରା ଇନ୍ଦ୍ରଙ୍କୁ ପୁତ୍ରରୂପେ ଲାଭ କରିବାକୁ କାମନା କରି ଦେବାରାଧନା କରିଥିଲେ । ଇନ୍ଦ୍ର ତାହାଙ୍କ ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ସେହି ପୁତ୍ର ସବ୍ୟ ନାମରେ ପରିଚିତ । ଏ ଋଗ୍ ବେଦର ୧-୫୧ । ୫୭ ସୂକ୍ତର ମନ୍ତ୍ରଦ୍ରଷ୍ଟା ଋଷି ।

(ଭାଷାକୋଷ)

**ସବ୍ୟସାଚୀ**—ଅର୍ଜ୍ଜୁନଙ୍କ ନାମାନ୍ତର । କୃଷ୍ଣସିଂହ ମହାଭାରତ ବିରାଟ ପର୍ବରେ ଏହାର ନିର୍ଣ୍ଣୟ ଯଥା –

ବାମ ଡାହାଣରେ ପାରଇ ଯେଣୁ ବିନ୍ଧି ।
ସବ୍ୟସାଚୀ ନାମ ମୋ ଜଗତେ ପ୍ରସିଦ୍ଧି ॥

**ସମନ୍ତ ପଞ୍ଚକ**—କୁରୁକ୍ଷେତ୍ର ପ୍ରଦେଶର ନାମ । ପରଶୁରାମ ୨୧ ଥର କ୍ଷତ୍ରିୟ-ମାନଙ୍କୁ ବିନାଶ କରି କ୍ଷତ୍ରିୟ ରକ୍ତ ଦ୍ୱାରା ପାଞ୍ଚଗୋଟି ହ୍ରଦ ପୂର୍ଣ୍ଣ କରିଥିବାରୁ ଏହି ନାମ । କୃଷ୍ଣସିଂହ ମହାଭାରତରେ କହନ୍ତି—

କ୍ଷତ୍ରିୟଙ୍କ ରକତେ ସମନ୍ତ ପଞ୍ଚକ,
ତୀର୍ଥେ ପାଞ୍ଚହ୍ରଦ ଯେ ଦ୍ୱିଜ ନାୟକ ।

କୁରୁକ୍ଷେତ୍ରସ୍ଥ ତୀର୍ଥ ବିଶେଷକୁ ମଧ୍ୟ ସମନ୍ତପଞ୍ଚକ କହନ୍ତି । ଯଥା—

ବହୁତ ତୀର୍ଥମାନ ପରିକ୍ରମ କରି,
ସମନ୍ତ ପଞ୍ଚକକୁ ନଧା ମୁଁ ଦେଖିଲି ।
(କୃଷ୍ଣସିଂହ ମହାଭାରତ ଓ ଭାଷାକୋଷ)

**ସମାଧି**—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମହାତ୍ମ୍ୟରେ ବର୍ଣ୍ଣିତ ବୈଶ୍ୟ । ସୂର୍ଯ୍ୟବଂଶୀୟ ରାଜା ସୁରଥ ରାଜ୍ୟଚ୍ୟୁତ ହୋଇ ମେଧସ ଋଷିଙ୍କ ଆଶ୍ରମରେ ଉପସ୍ଥିତ ହେବା ସମୟରେ ଅସାଧୁ ସ୍ତ୍ରୀ ପୁତ୍ରଙ୍କ ଦ୍ୱାରା ଗୃହରୁ ତାଡ଼ିତ, ସମାଧି ନାମକ ବୈଶ୍ୟ ସେଠାରେ ପହଞ୍ଚିଲ । ସେ କହିଲ ଯେ ମୋତେ ମୋ ସ୍ତ୍ରୀ ପୁତ୍ରାଦି ସବୁ ଛାଡ଼ି ଦେଇଅଛନ୍ତି । ତଥାପି ମୋ ମନ ସେମାନଙ୍କ ପ୍ରତି ମମତାଶୂନ୍ୟ ହେଉ ନାହିଁ । ସେମାନଙ୍କ କୁଶଳ ସମ୍ବାଦ ଶୁଣିବାକୁ ଓ ଜାଣି-ବାକୁ ମନ ଉଦ୍‌ବିଗ୍ନ ହେଉଅଛି । ସୁରଥ ରାଜା ମଧ୍ୟ ରାଜ୍ୟରୁ ବିତାଡ଼ିତ ହୋଇ ସୁଦ୍ଧା ରାଜ୍ୟ ପ୍ରତି ଓ ସ୍ୱୀୟ ଅମାତ୍ୟାଦିଙ୍କ ପ୍ରତି ମମତାଶୂନ୍ୟ ହୋଇ ନ ଥାନ୍ତି । ମେଧସ ମୁନି ବୈଶ୍ୟର ଏ ମମତା ଶୁଣି ଏହା ମହାମାୟାଙ୍କ ପ୍ରଭାବ ଓ ଏ ମହାମାୟାହିଁ ଦୁର୍ଗାଦେବୀ ବୋଲି କହିଲେ । ମୁନି ଦୁର୍ଗାଙ୍କର ଭିନ୍ନ ଭିନ୍ନ ସମୟରେ ଅବତାର ଓ ଦୁଷ୍ଟ ରାକ୍ଷସାଦି (ମହିଷାସୁର, ଶୁମ୍ଭ, ନିଶୁମ୍ଭ, ରକ୍ତବୀଜ ଆଦି)ଙ୍କ ବଧ ବିଷୟ ବର୍ଣ୍ଣନା କଲେ । ଏହା ଶୁଣି ରାଜା ଓ ବୈଶ୍ୟଙ୍କ ମନରେ ନିର୍ବେଦ ଉପସ୍ଥିତ ହେଲା । ସେମାନେ ନଦୀତୀରରେ ଦେବୀଙ୍କ ମୃଣ୍ମୟୀ ମୂର୍ତ୍ତି ନିର୍ମାଣ କରି ଦେବୀସୂକ୍ତ ଜପକରି ଦେବୀଙ୍କ ଆରାଧନା କଲେ । ଏହିରୂପେ ୩ ବର୍ଷ ବ୍ୟାପୀ ଦେବ୍ୟା-ରାଧନା ଓ ଦେବୀପୂଜା କରିବାରୁ ଦେବୀ ଆବିର୍ଭୂତା ହୋଇ ସେ ଦୁଇଜଣଙ୍କୁ ବର ଦେଲେ । ରାଜା, ନଷ୍ଟ ରାଜ୍ୟ ପ୍ରାପ୍ତ ହେଲେ ଓ ବୈଶ୍ୟ ଦିବ୍ୟଜ୍ଞାନ ଲଭ କରି ମାୟାପାଶରୁ ମୁକ୍ତ ହେଲେ । (ଭାଷାକୋଷ)

**ସମ୍ପାତି**—ଅରୁଣଙ୍କ ପୁତ୍ର ଓ ଜଟାୟୁଙ୍କ ବଡ଼ ଭାଇ । ବିଶ୍ୱକୋଷ ଓ ଚରିତାଭିଧାନ ଏକ ସମ ନିର୍ଣ୍ଣୟ ଦିଅନ୍ତି ଯଥା—ଅରୁଣଙ୍କ ପତ୍ନୀଙ୍କ ନାମ ଶ୍ୟେନୀ ଓ ଦୁଇ ପୁତ୍ର ଯଥାକ୍ରମେ ସମ୍ପାତି ଓ ଜଟାୟୁ । ରାମାୟଣ କିଷ୍କିନ୍ଧ୍ୟା କାଣ୍ଡରେ ୫୬ ସର୍ଗଠାରୁ ୬୨ ସର୍ଗ ପର୍ଯ୍ୟନ୍ତ ଏମାନଙ୍କ ବିବରଣ ବର୍ଣ୍ଣିତ ହୋଇଅଛି । ଇନ୍ଦ୍ରଙ୍କ ଦ୍ୱାରା ବୃତ୍ରାସୁର ବଧ ପରେ ଇନ୍ଦ୍ରଙ୍କୁ ଜୟ କରିବାକୁ ସମ୍ପାତି ଓ ଜଟାୟୁ

ସ୍ୱର୍ଗପୁରୀକୁ ଗମନ କଲେ । ଯୁଦ୍ଧ କରୁ କରୁ ଏମାନେ ସୂର୍ଯ୍ୟଙ୍କ ସମ୍ମୁଖୀନ ହେଲେ । ଜଟାୟୁ ସୂର୍ଯ୍ୟଙ୍କ ପ୍ରଖରକିରଣ ସହ୍ୟ କରି ନ ପାରି ସନ୍ତପ୍ତ ହେବାରୁ ସମ୍ପାତି ଜଟାୟୁଙ୍କୁ ପକ୍ଷ ଦ୍ୱାରା ଆଚ୍ଛାଦନ କଲା । ସୂର୍ଯ୍ୟକିରଣ ସମ୍ପାତରେ ସମ୍ପାତିର ପକ୍ଷ ପୋଡିଗଲା ଓ ସେ ବିନ୍ଧ୍ୟ ପର୍ବତରେ ପଡିଗଲା । ବାନରଗଣ ସୀତାଙ୍କ ଅନ୍ୱେଷଣରେ ପ୍ରବୃତ୍ତ ହେବାବେଳେ ରାବଣ ଦ୍ୱାରା ସୀତାହରଣ ବୃତ୍ତାନ୍ତ ସମ୍ପାତିଠାରୁ ଶୁଣିଲେ ।

ଅଧ୍ୟାତ୍ମରାମାୟଣର କିଷ୍କିନ୍ଧ୍ୟାକାଣ୍ଡ ଅଷ୍ଟମ ଅଧ୍ୟାୟରେ କିନ୍ତୁ ଏ ଉପାଖ୍ୟାନ ବର୍ଣ୍ଣନରେ ଅଳ୍ପ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ସମ୍ପାତି ନିଜେ ବାନରମାନଙ୍କ ସମ୍ମୁଖରେ ତାଙ୍କର ଦୁର୍ଦ୍ଦଶା ବର୍ଣ୍ଣନ କରି କହୁଛନ୍ତି—ପୂର୍ବ-କାଳରେ ମଧ୍ୟ ଯୌବନ ସମୟରେ ମୁଁ ଓ ମୋର ଭାଇ ଜଟାୟୁ ବଳଦର୍ପିତ ହୋଇ ବଳ ପରୀକ୍ଷା ନିମିତ୍ତ ଅହଙ୍କାରବଶତଃ ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ଯିବା ପାଇଁ ଆକାଶମାର୍ଗରେ ଉଡିଲୁ । ଉଭୟେ ବହୁ ସହସ୍ର ଯୋଜନ ଯିବା ପରେ। ଜଟାୟୁ ସୂର୍ଯ୍ୟ ତାପରେ ମୂର୍ଚ୍ଛିତ ପ୍ରାୟ ହୋଇଗଲେ । ତାଙ୍କୁ ମୋହରୁ ରକ୍ଷ କରିବା ପାଇଁ ମୁଁ ପକ୍ଷ ଦ୍ୱାରା ଆଚ୍ଛାଦନ କଲି । ସୂର୍ଯ୍ୟକିରଣରେ ମୋର ପକ୍ଷ ଦଗ୍ଧ ହୋଇଗଲା । ତେଣୁ ମୁଁ ଆକାଶମାର୍ଗରୁ ଚ୍ୟୁତ ହୋଇ ବିନ୍ଧ୍ୟ ପର୍ବତ ଶିଖରରେ ପଡ଼ିଲି । ହେ ବାନରଶ୍ରେଷ୍ଠ ଗଣ, ଦୂରରୁ ପଡିବା ଯୋଗେ ମୁଁ ସେଠାରେ ତିନିଦିନ ମୂର୍ଚ୍ଛିତ ହୋଇ ରହିଲି । ପରେ ଚୈତନ୍ୟଲାଭ କଲି ସତ, ମାତ୍ର ପକ୍ଷହୀନତା ଯୋଗୁଁ ଚଳି ପାରିଲି ନାହିଁ । ପରେ ଧୀରେ ଧୀରେ ଆଖି ଫିଟାଇ ମୁଁ ନିକଟରେ ଏକ ଋଷି ଆଶ୍ରମ ଦେଖି ସେଠାକୁ ଗଲି । ସେହି ଆଶ୍ରମରେ ଚନ୍ଦ୍ରମା ବୋଲି ଏକ ଋଷି ଥିଲେ ସେ ମୋତେ ଧର୍ମୋପଦେଶ ଦେଇ କହିଥିଲେ ରାମଦୂତମାନଙ୍କୁ ଦେଖିବା ମାତ୍ରେ ତୁମର ନୂତନ ପକ୍ଷ ହେବ । ଏବେ ଦେଖ ତୁମ୍ଭମାନଙ୍କ ସାକ୍ଷାତରେ ମୋର ନବୀନ ପକ୍ଷ ଜନ୍ମି-ଲାଣି । ତୁମ୍ଭେମାନେ ଅବଶ୍ୟ ସୀତାଙ୍କୁ ଦେଖି ପାରିବ । ଏହା କହି ସମ୍ପାତି ଆକାଶମାର୍ଗରେ ଉଡ଼ିଗଲେ । କୌଣସି କୌଣସି ରାମାୟଣରେ ଅଛି ସମ୍ପାତିଙ୍କ ପୁଅ ସୁପାର୍ଶ୍ୱ ହନୁମାନାଦିଙ୍କୁ କାନ୍ଧରେ ବସାଇ ଲଙ୍କା ଦେଖାଇଥିଲେ ।

**ସମ୍ବରଣ**—ଚନ୍ଦ୍ରବଂଶୀୟ ବିଖ୍ୟାତ ନରପତି । ଏ ପଞ୍ଚାଳରାଜାଙ୍କ ଦ୍ୱାରା ପରାଜିତ ହୋଇ ରାଜ୍ୟ ହରାଇଥିଲେ, ପରେ ବଶିଷ୍ଠଙ୍କୁ ପୁରୋହିତ କରି ବହୁ ଚେଷ୍ଟାରେ ରାଜ୍ୟ ପାଇଲେ । ଏ ସୂର୍ଯ୍ୟନନ୍ଦିନୀ ତପତୀଙ୍କୁ ବିବାହ କରିବା ପାଇଁ ଲାଳାୟିତ ହେବାରୁ ବଶିଷ୍ଠ ସୂର୍ଯ୍ୟଲୋକକୁ ଯାଇ ସୂର୍ଯ୍ୟଙ୍କ ଅନୁମତି ଗ୍ରହଣପୂର୍ବକ ତପତୀଙ୍କୁ

ଏହାଙ୍କ ସଙ୍ଗେ ବିବାହିତା କରାଇଲେ ଓ ଏହାଙ୍କ ଗର୍ଭରୁ କରୁର (କାହା କାହା ମତରେ ପୁରୁ) ନାମକ ବିଖ୍ୟାତ କୁମାର ଜନ୍ମଗ୍ରହଣ କରିଥିଲେ ।
(ଚରିତାଭିଧାନ ଓ ଭାଷାକୋଷ)

**ସମ୍ବର୍ତ୍ତ**—କଳ୍ପାନ୍ତ ମହାପ୍ରଳୟ । ସପ୍ତ ପ୍ରକାର ମେଘରୁ ଏକତମ । ପ୍ରଳୟକାଳୀନ ସାତଗୋଟି ମେଘରୁ ଗୋଟିଏ । ମୁନି ବିଶେଷ । ଏ ମହର୍ଷି ଅଙ୍ଗିରାଙ୍କ ପୁତ୍ର ଓ ବୃହସ୍ପତିଙ୍କ ସାନ ଭାଇ । ବୃହସ୍ପତିଙ୍କର ଏହାଙ୍କ ପ୍ରତି ବିଦ୍ୱେଷ ଥିବାରୁ ଏ ଗୃହତ୍ୟାଗ କରି ବହୁ ଦେଶ ପର୍ଯ୍ୟଟନ କରିଥିଲେ । ଏହାଙ୍କ ପୌରୋହିତ୍ୟରେ ମରୁତ୍ତରାଜା ନିର୍ବିଘ୍ନରେ ଯଜ୍ଞ ସମ୍ପାଦନ କରିବାରୁ ଇନ୍ଦ୍ର ଉକ୍ତ ଯଜ୍ଞରେ ବିଘ୍ନ ଘଟାଇବାକୁ ଅସମର୍ଥ ହୋଇ ଶେଷରେ ମରୁତ୍ତଙ୍କ ସଙ୍ଗେ ସଖ୍ୟ ସ୍ଥାପନ କଲେ । ଏହି ଋଷି ତପସ୍ୟା ଦ୍ୱାରା ବିଶେଷ ଆତ୍ମୋନ୍ନତି ଲାଭ କରିଥିଲେ ।
(ଭାଷାକୋଷ ଓ ଚରିତାଭିଧାନ)

**ସମ୍ବର୍ତ୍ତକ**—ବଳଦେବଙ୍କ ଲଙ୍ଗଳର ନାମ । ବଡ଼ବାନଳ । ମେଘ ବିଶେଷ । କଳ୍ପାନ୍ତକାଳୀନ ଅଗ୍ନି । (ଭାଷାକୋଷ)

**ସରମା**—(୧) କଶ୍ୟପଙ୍କ ପତ୍ନୀ ବିଶେଷ । ଏହାଙ୍କ ଗର୍ଭରୁ ଭ୍ରମସ୍ୱାଦ ଜନ୍ମ ହୋଇଥିଲେ ।

(୨) ଗନ୍ଧର୍ବରାଜ ଶୈଳୂଷଙ୍କ କନ୍ୟା ଓ ରାବଣ ଭ୍ରାତା ବିଭୀଷଣଙ୍କ ପତ୍ନୀ । ସରମା ମାନସରୋବର କୂଳରେ ଜନ୍ମଗ୍ରହଣ କରିବା ସମୟରେ ଉକ୍ତ ସରୋବର ଜଳ ବଢ଼ିଲା ଏବଂ ନବଜାତ ଶିଶୁର ଦେହକୁ ବଢ଼ିପାଣି ଲାଗିବାର ଉପକ୍ରମ ହେବାରୁ ସରମାଙ୍କ ମାତା ଉକ୍ତ ସରୋବରକୁ ସମ୍ବୋଧନ କରି ଡାକ ପକାଇଲେ ‘ସରଃ, ମା ବର୍ଦ୍ଧସ୍ୱ’ (ଅର୍ଥାତ୍ ହେ ସରୋବର, ତୁ ଆଉ ବଢ଼ନା) ଏଥିଯୋଗୁଁ ଏହି ବାକ୍ୟର ଆଦ୍ୟ ଦୁଇଟି ପଦକୁ ଅବଲମ୍ବନ କରି କନ୍ୟାର ନାମକରଣ ହୋଇଥିଲା । ସରମା ଧର୍ମପରାୟଣା ଥିଲେ ଓ ରାବଣ ଦ୍ୱାରା ହୃତା ସୀତାଙ୍କୁ ସରମା ସର୍ବଦା ସାନ୍ତ୍ୱନା ଦେଉଥିଲେ । ରାବଣ ମୃତ୍ୟୁ ଅନ୍ତେ ବିଭୀଷଣ ଲଙ୍କାର ରାଜା ହେଲେ ଓ ସରମା ରାଜମହିଷୀ ହେଲେ । ଏହାଙ୍କ ପୁତ୍ର ତରଣୀସେନ ଧର୍ମଶୀଳ ଓ ସାଧୁ ଥିଲେ । (ଭାଷାକୋଷ)

**ସରଯୂ**—ଅଯୋଧ୍ୟା ପ୍ରଦେଶସ୍ଥ ନଦୀ ବିଶେଷ । ଋକ୍‌ବେଦ, ମହାଭାରତ ଓ ରାମାୟଣରେ ଏ ନଦୀର ନାମୋଲ୍ଲେଖ ଅଛି । ମାନସରୋବରରୁ ଏ ନଦୀ ନିଃସୃତ ହୋଇ ହିମାଳୟକୁ ଭେଦ କରି ଗଙ୍ଗାରେ ମିଶିଅଛି । ଅଯୋଧ୍ୟା

ନଗରୀ ଏହି ନଦୀକୂଳରେ ଅବସ୍ଥିତ । ସମୁଦାୟ ନଦୀର ନାମ ଘର୍ଘରା ବା ଘୋଘରା । ମାତ୍ର ଅଯୋଧ୍ୟାରେ ନଦୀର ଯେଉଁ ଅଂଶ ପ୍ରବାହିତ ତାକୁ ସରଯୂ ବୋଲଯାଏ । ରାମଚନ୍ଦ୍ର ଓ ତଦୀୟ ଭ୍ରାତାମାନେ ଏହି ନଦୀରେ ପ୍ରବେଶ କରି ଯୋଗାବଲମ୍ବନ ପୂର୍ବକ ଦେହ ତ୍ୟାଗ କରିଥିଲେ । ବୈଦ୍ୟଶାସ୍ତ୍ର ମତରେ ଏହି ନଦୀର ଜଳ ସ୍ୱାଦୁ, ଜଳ ଓ ପୁଷ୍ଟି ପ୍ରଦାୟକ । (ଭାଷାକୋଷ)

**ସରସ୍ୱତୀ**—(୧) ବିଷ୍ଣୁଙ୍କ ଏକତମ ପତ୍ନୀ । ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ । ପୁରାଣ-ମତରେ ଏ ଧର୍ମଦେବଙ୍କ ବାମପାର୍ଶ୍ୱରୁ ଆବିର୍ଭୂତା ହୋଇଥିଲେ । ଏ ଶୁକ୍ଳବର୍ଣ୍ଣା, ମକର ବା ହଂସ ସମାରୂଢ଼ା, ଶ୍ୱେତପଦ୍ମାସନା, ବୀଣା ପୁସ୍ତକ ଧାରିଣୀ ଓ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ । ମାଘ ଶୁକ୍ଳ ପଞ୍ଚମୀ ବା ଶ୍ରୀପଞ୍ଚମୀ ଦିନ ଓ ଶିଶୁମାନଙ୍କ ବିଦ୍ୟାରମ୍ଭ କାଳରେ ଏହାଙ୍କର ପୂଜା କରାଯାଏ । ବ୍ରହ୍ମବୈବର୍ତ୍ତ ପୁରାଣରେ ଏ ଦେବୀଙ୍କ ଉତ୍ପତ୍ତି ବିଷୟରେ ଲେଖାଅଛି ଯେ ପରମାତ୍ମାଙ୍କ ମୁଖରୁ ଶୁକ୍ଳବର୍ଣ୍ଣା, ବୀଣାଧାରିଣୀ ଓ କୋଟି ଚନ୍ଦ୍ରପ୍ରଭା ଦେବୀ ଆବିର୍ଭୂତା ହେଲେ । ଏ ଦେବୀ ଶ୍ରୁତି ଓ ଶାସ୍ତ୍ର ମଧ୍ୟରେ ଶ୍ରେଷ୍ଠା ଓ ପଣ୍ଡିତ-ମାନଙ୍କ ପୂଜ୍ୟା । ଏ ବାଗଧିଷ୍ଠାତ୍ରୀ ଦେବୀ । ଏହି ପୁରାଣରେ ଗଣେଶ ଖଣ୍ଡରେ ଲେଖାଅଛି ଯେ ସୃଷ୍ଟି କାଳରେ ସର୍ବଶକ୍ତିମାନ ଈଶ୍ୱରଙ୍କ ଇଚ୍ଛାନୁସାରେ ପଞ୍ଚଧା ବିଭକ୍ତା ହେଲେ, ଯଥା—ରାଧା, ପଦ୍ମା, ସାବିତ୍ରୀ, ଦୁର୍ଗା ଓ ସରସ୍ୱତୀ । ଏମାନଙ୍କ ମଧ୍ୟରୁ ବାକ୍ ଅଧିଷ୍ଠାତ୍ରୀ, ଶାସ୍ତ୍ରଜ୍ଞାନ ଦାୟିନୀ, କୃଷ୍ଣକଣ୍ଠୋଦ୍ଭବା ଦେବୀ ସରସ୍ୱତୀ । ଶ୍ରୀକୃଷ୍ଣ ପ୍ରଥମେ ଏ ଦେବୀଙ୍କ ପୂଜା କରିଥିଲେ । ଏ ଦେବୀଙ୍କ ଆରାଧନାରେ ମୂର୍ଖ ପଣ୍ଡିତ ହୁଏ । ମାଘ ମାସର ଶୁକ୍ଳ ପଞ୍ଚମୀରେ ଓ ଶିଶୁଙ୍କ ବିଦ୍ୟାରମ୍ଭ କାଳରେ ଏ ଦେବୀଙ୍କର ପୂଜା କରାଯାଏ । ଶ୍ରୀକୃଷ୍ଣଙ୍କ ଉପଦେଶ କ୍ରମେ ଏ ଦେବୀ ନାରାୟଣଙ୍କୁ ଭଜନା କଲେ । ମାଘମାସ ଶୁକ୍ଳ ପଞ୍ଚମୀର ସରସ୍ୱତୀ ପୂଜା ଶ୍ରୀକୃଷ୍ଣଙ୍କ ଦ୍ୱାରା ପ୍ରବର୍ତ୍ତିତ । (ବିଶ୍ୱକୋଷ)

(୨) ଦୁର୍ଗାଙ୍କର ଏକ ନାମ । ଦେବୀ ଭାଗବତରେ ଅଛି ଯେ ଅନନ୍ତ ଶକ୍ତି, ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ସରସ୍ୱତୀ, ଲକ୍ଷ୍ମୀ ଓ କାଳୀ ଏହି ତିନୋଟି ଶକ୍ତି ପ୍ରଦାନ କଲେ । ଅନନ୍ତ ଶକ୍ତି ବ୍ରହ୍ମାଙ୍କୁ କହିଲେ ତୁମ୍ଭେ ଏହି ଦିବ୍ୟରୂପା, ଚାରୁହାସିନୀ, ରଜୋଗୁଣଯୁକ୍ତା, ଶ୍ୱେତାମ୍ବରଧାରିଣୀ, ଶ୍ୱେତ ସର୍ବାଙ୍ଗବାସିନୀ ମହା ସରସ୍ୱତୀ ନାମ୍ନୀ ଶକ୍ତିଙ୍କୁ କ୍ରୀଡ଼ା ସହଚରୀ ରୂପେ ଗ୍ରହଣ କର ।

(ବିଶ୍ୱକୋଷ)

(୩) ଆର୍ଯ୍ୟାବର୍ତ୍ତର ନଦୀ ବିଶେଷ । କୃଷ୍ଣସିଂହ ମହାଭାରତ ବନ ପର୍ବରେ ବର୍ଣ୍ଣିତ ହୋଇଛି—

ସରସ୍ୱତୀ ସମୁଦ୍ର ସଙ୍ଗମରେ ସ୍ନାନ
କଲେ ଫଳ ଲକ୍ଷେ ସହସ୍ରେ ଗାଈ ଦାନ ॥

ହିନ୍ଦୁ ପୁରାଣୋକ୍ତ ପୁଣ୍ୟ ସଲିଳା ୭ଟି ନଦୀ (ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ, କାବେରୀ) ମଧ୍ୟରୁ ଏହା ଗୋଟିଏ । ଦେବପୂଜା ବା ସଙ୍କଳ୍ପାଦିରେ 'ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ, ନର୍ମଦେ ସିନ୍ଧୁ କାବେରୀ' ଏହି ବାକ୍ୟ ଦ୍ୱାରା ଏ ନଦୀମାନଙ୍କୁ ଆବାହନ କରି ପୂଜାର୍ଥେ ଜଳରେ ଏହି ସାତୋଟି ନଦୀର ଜଳକୁ କଳ୍ପନା କରି ତଦ୍ୱାରା ପୂଜା କରାଯାଏ । ମନୁ ଲେଖିଅଛନ୍ତି ଯେ, ସରସ୍ୱତୀ ଓ ଦୃଷଦ୍ୱତୀ ନାମ୍ନୀ ଦେବ-ନଦୀଦ୍ୱୟର ମଧ୍ୟବର୍ତ୍ତୀ ଦେଶକୁ ବ୍ରହ୍ମାବର୍ତ୍ତ ଏବଂ ଏହି ଦେଶର ପ୍ରଚଳିତ ଆଚାରକୁ ସଦାଚାର ବୋଲାଯାଏ । ମହାଭାରତ ଓ ବ୍ରହ୍ମବୈବର୍ତ୍ତ ପୁରାଣରେ ସମୁଦାୟ ନଦୀଙ୍କ ମଧ୍ୟରେ ଏ ନଦୀ ଅତି ପବିତ୍ର ବୋଲି କଥିତ । ବ୍ରହ୍ମବୈବର୍ତ୍ତ ପୁରାଣରେ ଏ ନଦୀର ଉତ୍ପତ୍ତି ବିବରଣ ନିମ୍ନଲିଖିତରୂପେ ବର୍ଣ୍ଣିତ ହୋଇ-ଅଛି । ଲକ୍ଷ୍ମୀ, ସରସ୍ୱତୀ ଓ ଗଙ୍ଗା ହରିପ୍ରିୟା ଥିଲେ । ଏକଦା ବିଷ୍ଣୁଙ୍କର ଗଙ୍ଗାଙ୍କ ପ୍ରତି ବେଶି ପ୍ରେମ ଥିବା ଦେଖି ସରସ୍ୱତୀ ଗଙ୍ଗାଙ୍କ ଉପରେ ରାଗ କରି ଅଭିଶାପ ଦେଲେ । ସେହି ଅଭିଶାପ ଫଳରେ ଗଙ୍ଗା ନଦୀ ରୂପ ଧାରଣ କଲେ । ଗଙ୍ଗା ଏଥିରେ କ୍ରୁଦ୍ଧା ହୋଇ ସରସ୍ୱତୀଙ୍କୁ ଅଭିଶାପ ଦେବାରୁ ସେ ମଧ୍ୟ ନଦୀ ହେଲେ । ବେଦ ଓ ପୁରାଣାଦିରୁ ଦେଖାଯାଏ ଯେ ଏକାଧିକ ଅଞ୍ଚଳରେ ସରସ୍ୱତୀ ନଦୀର ଅବସ୍ଥାନ କଳ୍ପିତ ହୋଇଥିଲା । ବୈଦିକ ଯୁଗର ଆର୍ଯ୍ୟମାନେ ଉତ୍ତର ପଶ୍ଚିମ ଭାରତରେ ସିନ୍ଧୁନଦୀ କୂଳରେ ପଞ୍ଚନଦ ପ୍ରଦେଶରେ ଉପନିବେଶ ସ୍ଥାପନ କଲେ । ତତ୍ପରେ କ୍ରମଶଃ ପୂର୍ବ ଆଡ଼କୁ ଅଗ୍ରସର ହୋଇ ପୁଣ୍ୟ ସଲିଳା ସରସ୍ୱତୀ ତୀରରେ ବାସ କଲେ । ଋଗ୍‌ବେଦ ସଂହିତାରୁ ଜଣାଯାଏ ଯେ, ଏ ନଦୀ ମଧ୍ୟ ଏସିଆରୁ ବାହାର ଆର୍ଯ୍ୟମାନଙ୍କ ଉପନିବେଶ ବାଟେ ପ୍ରବାହିତ ହେଉଥିଲା ଓ ଏହି ନଦୀର ଜଳ ସାହାଯ୍ୟରେ ଆର୍ଯ୍ୟମାନେ ଶସ୍ୟାଦି ଉତ୍ପାଦନ କରି ସମୃଦ୍ଧିମନ୍ତ ହୋଇ ଏ ନଦୀକୁ ଦେବନଦୀରୂପେ ପୂଜା କରୁଥିଲେ । ତତ୍ପରେ ସେମାନେ ଆହୁରି ପୂର୍ବକୁ ଆସି ଆଉ ଗୋଟିଏ ନଦୀକୁ ସରସ୍ୱତୀ ରୂପେ ପୂଜା କଲେ । ତତ୍ପରେ ପୁଣି ଆହୁରି ପୂର୍ବକୁ ଆସି ଆଉ ଗୋଟିଏ ନଦୀକୁ ସରସ୍ୱତୀ ନାମ ଦେଲେ ବୋଲି କହାଯାଏ । ସରସ୍ୱତୀ ନଦୀ ଆଲ୍ଲାହାବାଦ (ପ୍ରୟାଗ) ଠାରେ ଗଙ୍ଗା ଓ ଯମୁନା ସଙ୍ଗେ ମିଳିତ ହୋଇ ତ୍ରିବେଣୀ ସୃଷ୍ଟି କରିଥିଲା । ବର୍ତ୍ତମାନ ସରସ୍ୱତୀ ନଦୀର ଚିହ୍ନ ପ୍ରୟାଗଠାରେ ମିଳେ ନାହିଁ । ବେଦୋକ୍ତ ସରସ୍ୱତୀ ନାମ୍ନୀ ନଦୀ ସିମଳା ଦକ୍ଷିଣସ୍ଥ ସିର୍‌ମୁର

ରାଜ୍ୟର ପର୍ବତମାଳାରୁ ବାହାରି କୁରୁକ୍ଷେତ୍ର ବାଟେ କର୍ଣ୍ଣାଲ ଜିଲ୍ଲା ଓ ପଟିଆଲା ରାଜ୍ୟ ବାଟେ ସିର୍ସା ଜିଲ୍ଲାର କାଗାର (ଦୃଷଦ୍‌ବତୀ) ନଦୀରେ ମିଶି ରାଜପୁତନାର ମରୁ ପ୍ରଦେଶରେ ବିଲୀନ ହୋଇଅଛି । ବୈଦିକଯୁଗରେ ଏ ନଦୀ ବହି ଯାଇ ପ୍ରୟାଗଠାରେ ଗଙ୍ଗା ଯମୁନା ସଙ୍ଗମରେ ଗଙ୍ଗାରେ ପଡୁଥିଲା । ବର୍ତ୍ତମାନ ଯେଉଁ ଯେଉଁ ସ୍ଥାନରେ ସରସ୍ୱତୀ ଅନ୍ତଃସଲିଳା (ଅଦୃଶ୍ୟ) ହୋଇଅଛି, ପୁରାଣରେ ସେ ସ୍ଥାନମାନଙ୍କୁ ବିନଶନ ବୋଲାଯାଏ । ଆଉ ଗୋଟିଏ ସରସ୍ୱତୀ ନଦୀ ରାଜାପୁତନାର ଆବୁ ପାହାଡ଼ରୁ ବାହାରି ପାଲନପୁର ଓ ରାଧନପୁର ରାଜ୍ୟ ବାଟେ ବୋହି ଯାଇଅଛି (ସ୍କନ୍ଦପୁରାଣ, ରେବାଖଣ୍ଡ) । ଆଉ ଗୋଟିଏ ସରସ୍ୱତୀନଦୀ ବଙ୍ଗଦେଶର ହୁଗୁଲି ଜିଲ୍ଲାର ସପ୍ତଗ୍ରାମ ବାଟେ ଯାଇ ଗଙ୍ଗାରେ ପଡ଼ୁଥିଲା । ଏହା ବର୍ତ୍ତମାନ ଗୋଟିଏ ନାଲର ଆକାର ଧାରଣ କରିଅଛି । ଏ ନଦୀ ଗଙ୍ଗାରେ ଶୌହାଟି ନିକଟରେ ପଡ଼ିବା ସ୍ଥାନରେ ତିନୋଟି ସ୍ରୋତ ମିଳିତ ହୋଇଥିବାରୁ ଏ ସ୍ଥାନର ନାମ ମଧ୍ୟ ତ୍ରିବେଣୀ ଓ ଏହା ତୀର୍ଥରୂପେ ପରିଚିତ । ଋଗ୍‌ବେଦରେ ସରସ୍ୱତୀ ସମୁଦ୍ରବାହିନୀ ବୋଲି ଲେଖାଅଛି ଓ ବୈଦିକ କାଳରେ ଏ ଦେବତାରୂପେ ପୂଜିତା ହେଉଥିଲେ । ବେଦର ପରବର୍ତ୍ତୀ ବାଜସନେୟୀ ସଂହିତା ଓ ବ୍ରାହ୍ମଣରେ ସରସ୍ୱତୀଙ୍କୁ ବାଗ୍‌ଦେବୀ ବୋଲାଯାଇଅଛି । ପୁରାଣମାନଙ୍କରେ ସରସ୍ୱତୀଙ୍କୁ ବ୍ରହ୍ମାଙ୍କ କନ୍ୟା ଓ କେତେକ ଗ୍ରନ୍ଥରେ ବ୍ରହ୍ମାଙ୍କ ସ୍ତ୍ରୀ ଓ ମହାଭାରତରେ ଦକ୍ଷପ୍ରଜାପତିଙ୍କ କନ୍ୟା ବୋଲି କୁହାଯାଇଅଛି । (ବିଶ୍ୱକୋଷ)

(୪) ସାୟଂ ସନ୍ଧ୍ୟାରେ ଗାୟତ୍ରୀ ଜପ ସମୟରେ ବ୍ରାହ୍ମଣମାନଙ୍କର ଧ୍ୟେୟା ଦେବୀ । ଏହାଙ୍କର ବୃଦ୍ଧାବସ୍ଥା, କୃଷ୍ଣବର୍ଣ୍ଣ ଦେହ, କୃଷ୍ଣାମ୍ବର, ବୃଷବାହନ ଓ ତିନି ଲୋଚନ । ଏହାଙ୍କ ହସ୍ତରେ ତ୍ରିଶୂଳ ଓ ଡମ୍ବରୁ । ଏ ରବି ମଣ୍ଡଳ ମଧ୍ୟସ୍ଥା ଓ ରୁଦ୍ର, ରୁଦ୍ର ଦେବତାରୂପେ କଳ୍ପିତା ।

(୫) ବ୍ରହ୍ମାଣୀ । ଦେବୀଭାଗବତ ମତରେ ସରସ୍ୱତୀ ବ୍ରହ୍ମାଙ୍କ ସ୍ତ୍ରୀ । କିନ୍ତୁ ବ୍ରହ୍ମବୈବର୍ତ୍ତ ଅନୁସାରେ ଲକ୍ଷ୍ମୀ ଓ ସରସ୍ୱତୀ ଉଭୟେ ନାରାୟଣଙ୍କ ପତ୍ନୀ । କୌଣସି କୌଣସି ପୁରାଣରେ ଅଛି ଯେ ସରସ୍ୱତୀ ବ୍ରହ୍ମାଙ୍କ କନ୍ୟା କିନ୍ତୁ ଏକ ସମୟରେ ବ୍ରହ୍ମା ସ୍ୱୀୟ କନ୍ୟାକୁ ଦେଖି କାମ ମୋହିତ ହେଲେ । ପରେ ଅତି କଷ୍ଟରେ କାମବେଗ ଦମନ କରି କାମଦେବଙ୍କୁ ଅଭିଶାପ ଦେଲେ । ଉକ୍ତ ଅଭିଶାପ ଫଳରେ ମହାଦେବଙ୍କ ନୟନାନଳରେ କାମଦେବ ଭସ୍ମୀଭୂତ ହେଲେ । (ବିଶ୍ୱକୋଷ, ରୂପାକୋଷ)

**ସର୍ପସତ୍ର**—ତକ୍ଷକ ସର୍ପ ଦ୍ୱାରା ଦଷ୍ଟ ହୋଇ ମୃତ ହୋଇଥିବା ପରୀକ୍ଷିତ ରାଜାଙ୍କ ପୁତ୍ର ଜନମେଜୟଙ୍କ ଦ୍ୱାରା ଅନୁଷ୍ଠିତ ସର୍ପବଂଶ କ୍ଷୟକର ଯାଗ ବିଶେଷ । (ଭାଷାକୋଷ)

**ସର୍ବକର୍ମା**—ଅଯୋଧ୍ୟାଧିପତି ସୌଦାସ (କଲ୍ମାଷପାଦ)ଙ୍କର କ୍ଷେତ୍ରଜ ପୁତ୍ର । (ଚରିତାଭିଧାନ)

**ସର୍ବଦମନ**—ମହାରାଜ ଦୁଷ୍ମନ୍ତଙ୍କ ଔରସରେ ରାଣୀ ଶକୁନ୍ତଳାଙ୍କ ଗର୍ଭଜାତ ପୁତ୍ରର ବାଲ୍ୟକାଳୀନ ନାମ । ପରେ ଏହି ସର୍ବଦମନ ଭରତ ନାମ ଧାରଣ କରି ରାଜ ସିଂହାସନରେ ବସିଲେ । ତାଙ୍କ ନାମ ଅନୁସାରେ ଏ ଦେଶର ନାମ ଭାରତବର୍ଷ ହୋଇଅଛି ।

**ସହଦେବ**—ପାଣ୍ଡୁରାଜାଙ୍କ ପଞ୍ଚମ ପୁତ୍ର । ପଞ୍ଚମ ପାଣ୍ଡବ । ପାଣ୍ଡୁରାଜାଙ୍କ କନିଷ୍ଠା ପତ୍ନୀ ମାଦ୍ରୀଙ୍କ ଗର୍ଭରୁ ଅଶ୍ୱିନୀକୁମାରଦ୍ୱୟଙ୍କ ଔରସ ଜାତ ନକୁଳ, ସହଦେବ ନାମକ ଯମଜ ଭ୍ରାତୃଦ୍ୱୟଙ୍କ ମଧ୍ୟରୁ ଏକତମ ।

ମାଦ୍ରୀ ପାଣ୍ଡୁଙ୍କ ସହମୃତା ହେବାରୁ ଏ ଦୁଇ ଭାଇ ବିମାତା କୁନ୍ତୀଙ୍କ ଯତ୍ନରେ ଲାଳିତ ପାଳିତ ହୋଇ ବୈମାତ୍ରେୟ ଭ୍ରାତାମାନଙ୍କ ସହିତ କୃପ ଓ ଦ୍ରୋଣାଚାର୍ଯ୍ୟଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କଲେ । ସହଦେବ ଅସିମୁଷ୍ଟି ଧାରଣରେ ବିଶେଷ କୃତିତ୍ୱ ଲାଭ କରିଥିଲେ । ଦ୍ରୌପଦୀଙ୍କ ଗର୍ଭରେ ଏହାଙ୍କ ଔରସରେ ଶ୍ରୁତସେନ ନାମକ ପୁତ୍ର ଜନ୍ମିଥିଲେ । ଏ ଭାନୁମତୀ ନାମ୍ନୀ ଯଦୁବଂଶୀୟ କନ୍ୟାଙ୍କୁ ବିବାହ କରିଥିଲେ ଓ ଆଜୀବନ ଯୁଧିଷ୍ଠିରଙ୍କ ସେବକ ଥିଲେ । ପାଣ୍ଡବମାନଙ୍କ ଅଜ୍ଞାତବାସ କାଳରେ ଏ ବିରାଟରାଜାଙ୍କ ତନ୍ତୀପାଳ ନାମଧାରୀ ଗୋଶାଳାରକ୍ଷକ ରୂପରେ କାର୍ଯ୍ୟ କରୁଥିଲେ । ଯୁଧିଷ୍ଠିରଙ୍କ ରାଜସୂୟଯଜ୍ଞ କାଳରେ ଏ ଦକ୍ଷିଣ ଅଞ୍ଚଳରେ ରାଜାମାନଙ୍କଠାରୁ କର ଆଦାୟ କରିଥିଲେ । କୁରୁକ୍ଷେତ୍ର ଯୁଦ୍ଧର ଅଷ୍ଟାଦଶ ଦିବସରେ ଏ ଶକୁନିଙ୍କୁ ହତ କରିଥିଲେ । ଏ ଯୁଧିଷ୍ଠିରଙ୍କ ମହାପ୍ରସ୍ଥାନରେ ସହଗାମୀ ହୋଇ ଅତ୍ୟଧିକ ପାଣ୍ଡିତ୍ୟାଭିମାନ ଜନିତ ପାପଯୋଗୁଁ ସ୍ୱର୍ଗ ପର୍ଯ୍ୟନ୍ତ ଯାଇ ନ ପାରି ସୁମେରୁ ଶିଖରରେ ପତିତ ହେଲେ । (ଭାଷାକୋଷ)

(୨) ଭାଗବତମତରେ ମଗଧରାଜ ଜରାସନ୍ଧଙ୍କ ପୁତ୍ର । ପିତାଙ୍କ ମୃତ୍ୟୁ ଅନ୍ତେ ସହଦେବ ମଗଧର ରାଜା ହୋଇଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଏ କୌରବଙ୍କ ପକ୍ଷ ଗ୍ରହଣ କରି ଚତୁର୍ଥ ଦିବସରେ ଅଭିମନ୍ୟୁଙ୍କ ଦ୍ୱାରା ନିହତ ହେଲେ ।

(୩) ହରିବଂଶ ମତେ ବୃଷୀଶୃଙ୍ଗଜାଙ୍କ ଓ ସୋମଦତ୍ତଙ୍କ ପୁତ୍ର ।

(୪) ବ୍ରହ୍ମବୈବର୍ତ୍ତ ପୁରାଣମତେ ଅଗ୍ନିହୋତ୍ର, ବ୍ୟାଧିସଂଘ ମର୍ଦ୍ଦକ ଓ ଶାକୁନ ଶାସ୍ତ୍ର ରଚୟିତାଙ୍କ ନାମ (ବିଶ୍ୱକୋଷ)

**ସହ୍ୟ**—ପଶ୍ଚିମଘାଟ ପର୍ବତ । ଏହି ପର୍ବତ ପୌରାଣିକ କୁଳାଚଳ ମଧ୍ୟରୁ ଏକତମ । ଏହା ବୋମ୍ବେଇ ପ୍ରେସିଡେନ୍ସିରେ ଅବସ୍ଥିତ । ତାପ୍ତୀ ନଦୀଠାରୁ ଗୋଆ ପର୍ଯ୍ୟନ୍ତ ଏ ପର୍ବତମାଳା ବିସ୍ତୃତ । ଏହାର ଅନ୍ୟ ନାମ ପଶ୍ଚିମଘାଟ ପର୍ବତ । (ବିଶେଷ ବିବରଣ ପାଇଁ ବିଶ୍ୱକୋଷ ଦେଖ, ବିଶ୍ୱକୋଷ)

**ସାତ୍ୱତ**—ଜନୈକ ରାଜା । ଯଦୁବଂଶୀୟ ଅଂଶୁରାଜଙ୍କ ପୁତ୍ର । ଏ ଅତିଶୟ ବିଷ୍ଣୁଭକ୍ତ, ପ୍ରତାପୀ, ମହାତ୍ମା, ଦାନନିରତ, ଧନୁର୍ବେଦବିତ୍ ଥିଲେ ଓ କୁଣ୍ଡଗୋଳାଦି ସମ୍ବନ୍ଧେ ଏ ଗୋଟିଏ ସ୍ମୃତିଶାସ୍ତ୍ର ପ୍ରବର୍ତ୍ତିତ କରିଥିଲେ । ଏହାଙ୍କ ନାମାନୁସାରେ ସେହି ଶାସ୍ତ୍ର ଚଳୁଅଛି । ଏହାଙ୍କର ପାଞ୍ଚଗୋଟି ପୁତ୍ର ମଧ୍ୟରୁ ଜଣଙ୍କର ନାମ ଭୋଜ । (ବିଶ୍ୱକୋଷ)

**ସାତ୍ୟକି**—ଯଦୁବଂଶୀୟ ବିଖ୍ୟାତ ଯୋଦ୍ଧା । ଏହାଙ୍କର ଅନ୍ୟ ନାମ ଯୁଯୁଧାନ । ପିତାଙ୍କର ନାମ ସତ୍ୟକ । ପିତାମହଙ୍କ ନାମ ଶିନି ଏବଂ ଏହାଙ୍କ ପୁତ୍ରର ନାମ ଅଙ୍ଗଦ । କୁରୁକ୍ଷେତ୍ର ଯୁଦ୍ଧରେ ଏ ପାଣ୍ଡବପକ୍ଷରେ ଥିଲେ । କୌରବପକ୍ଷ ବୀର ଭୂରିଶ୍ରବା ଏହାଙ୍କ ଦ୍ୱାରା ନିହତ ହୋଇଥିଲେ । ଏ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ । ଯଦୁବଂଶ ଧ୍ୱଂସ ପରେ ଏ ମଧ୍ୟ ଦେହତ୍ୟାଗ କଲେ । (ଚରିତାଭିଧାନ)

**ସାନ୍ଦି (ନ୍ଦୀ) ପନି**—ମୁନି ବିଶେଷ । କୃଷ୍ଣ ଓ ବଳରାମଙ୍କ ଗୁରୁ । ବାରାଣସୀ ନିକଟବର୍ତ୍ତୀ ଅବନ୍ତୀ ନଗରରେ ଏହାଙ୍କ ଆଶ୍ରମ ଥିଲା । ଏ ସର୍ବ ଶାସ୍ତ୍ରରେ ବିଚକ୍ଷଣ ଥିଲେ । ଶ୍ରୀକୃଷ୍ଣ ଓ ବଳରାମ ଏହାଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କରି କଅଣ ଗୁରୁ ଦକ୍ଷିଣା ଦେବେ ବୋଲି ଏହାଙ୍କୁ ପଚାରିବାରୁ ଏ ଏହାଙ୍କ ପୁତ୍ରର ଉଦ୍ଧାର ପ୍ରାର୍ଥନା କରିଥିଲେ । ପ୍ରଭାସ ତୀର୍ଥସ୍ଥ ସମୁଦ୍ରରେ ସ୍ନାନ କରିବା ସମୟରେ ଏହାଙ୍କ ପୁତ୍ରଙ୍କୁ ଶଙ୍ଖରୂପଧର ପଞ୍ଚଜନ ନାମକ ଦୈତ୍ୟ ହରଣ କରି ନେଇଥିଲା । ଗୁରୁଙ୍କ ଅନୁରୋଧକ୍ରମେ ଶ୍ରୀକୃଷ୍ଣ ସମୁଦ୍ରକୁ ଯାଇ ସେ ପୁତ୍ରର ଅସ୍ଥି ସଂଗ୍ରହ କରି ଯମପୁରକୁ ଯାଇ, ଯମଙ୍କୁ ପରାସ୍ତ କରି ସେ ପୁତ୍ରକୁ ପୂର୍ବ ଶରୀର ପ୍ରଦାନ କରାଇ ମୁକୁଳାଇ ଆଣି ଗୁରୁଙ୍କଠାରେ ଅର୍ପଣ କଲେ । ଶ୍ରୀକୃଷ୍ଣ

ଦ୍ୱାରକାକୁ ଯାଇ ରାଜା ହେବା ପରେ ସାନ୍ଦୀପନ ସେଠାକୁ ଯାଇ ଯଦୁବଂଶୀୟ-ମାନଙ୍କର ପୁରୋହିତ ହୋଇଥିଲେ । (ବିଷ୍ଣୁପୁରାଣ, ଭାଷାକୋଷ)

**ସାପ**—ପୁରାଣ ମତରେ ଦକ୍ଷ ପ୍ରଜାପତିଙ୍କ କନ୍ୟା ଓ କଶ୍ୟପ ମୁନିଙ୍କ ଏକତମା ପତ୍ନୀ କଦ୍ରୁଙ୍କ ଗର୍ଭରୁ ଏମାନେ ଜାତ ହୋଇଥିଲେ । ନାଗରାଜ ବାସୁକି ସହସ୍ର ଫଣାଧାରୀ, ଏ ପୃଥିବୀକୁ ଟେକି ଧରିଛନ୍ତି । ଅଦ୍ଭୁତ ଫଣାଧାରୀ ଅନନ୍ତ ବିଷ୍ଣୁଙ୍କର ଶଯ୍ୟାରୂପେ କ୍ଷୀରସାଗରରେ ଥିବା କଥା ପୁରାଣରେ ଦୃଷ୍ଟ ହୁଏ । ରାଜକବି କୃଷ୍ଣସିଂହ ମହାଭାରତ ଆଦିପର୍ବରେ ସର୍ପବଂଶ ଓ ଭିନ୍ନ ଭିନ୍ନ ନାମ ବିଷୟରେ ଯେଉଁ ନିର୍ଣ୍ଣୟ ଦେଇଛନ୍ତି । ତାହା ନିମ୍ନରେ ଦିଆଗଲା ।—

ବହୁତ ଭୁଜଙ୍ଗମ ଅଛନ୍ତି ମହୀରେ,  
କେତେ ତାହା ବିସ୍ତାରି କହିବା ସଭାରେ ।  
ପ୍ରଥମେ କଦ୍ରୁସୁତ ଶେଷଦେବ ହେଲେ,  
ତାହାଙ୍କର ଅନୁଜ ବାସୁକି ବୋଲାଇଲେ ।  
ଐରାବତ, ତକ୍ଷକ, କର୍କୋଟ, ଧନଞ୍ଜୟ,  
ମଣିନାଗ, ପୂରଣ, ଆଢ଼, କାଳକେୟ ।  
ପିଞ୍ଜରକ, ଏଲାପତ୍ର, ନୀଳ ଅନୀଳ,  
ବାମନ, କଲମାଷ, ଆର୍ଯ୍ୟକ, ଶବଲ ।  
ଉଗ୍ରକ, କଳଶ, ପୋତକ, ସୁରମୁଖ,  
ବିମଳ, ପିଣ୍ଡକ, ଯେ ଆପ୍ତ, ଦଧିମୁଖ ।  
ଶଙ୍ଖ, ବାଳଶିଖ, ନିଷ୍ଠାବକ, କରେଟକ,  
ପିଙ୍ଗଳ, ନହୁଷ, ଯେ ମୁଦ୍‌ଗର ପିଣ୍ଡକ ।  
ବାହ୍ୟକର୍ଣ୍ଣ, ହସ୍ତୀପଦ, ଯେ ଅଶ୍ୱତର,  
କୁଠର, ସମ୍ବୃତ୍ତିକ, କୁଷାଣ୍ଡକ, କୁଞ୍ଜର ।  
ଶଙ୍ଖମୁଖ, ପିଣ୍ଡାରକ, ଯେ କ୍ଷେମକ,  
କର୍କଶ, ଆକର୍କଶ, ବିଲ୍ୱଲ, ହିଲକ ।  
କୁଷ୍ଠୋଦର, ମହୋଦର, କରବୀର,  
ପୁଷ୍ପଦଂଷ୍ଟ୍ର, ବିଲ୍ୱ, ପାଣ୍ଡୁର ଶଙ୍ଖଶିର ।  
ମୂଷକାଦ, ପୂର୍ଣ୍ଣଭଦ୍ର, ହରିଦ୍ରକ,  
ଶ୍ରୀବହ, ଅପରାଜିତ, ଯେ ଜ୍ୟୋତିକ ।  
କଉରବ୍ୟ, ଧୃତରାଷ୍ଟ୍ର, ଶଙ୍ଖ ପିଣ୍ଡ,  
ବିରଜା, ସୁବାହୁ, ଫରକ, ଅଳାପିଣ୍ଡ ।

ହସ୍ତିପିଣ୍ଡ, ସୁମୁଖ, ହୋମଗନ୍ଧ, କୁଠର,
କୌଣପାଶନ, କୁମୁଦ, ଢଣ୍ଡିଭ, ପ୍ରଭୃ କର ।
କଦମ୍ବ, କର୍ଦ୍ଦମ, ବହୁ, ମୂଳକ, ନାଗ,
ଏମାନେଟି ନାଗମାନଙ୍କ ମହାଭାଗ । (ଭାଷାକୋଷ)

**ସାବତ୍ରୀ**—ସୂର୍ଯ୍ୟମଣ୍ଡଳର ଅଧିଷ୍ଠାତ୍ରୀ ଦେବତା । (୨) ବେଦମାତା; ଗାୟତ୍ରୀ ମନ୍ତ୍ରାଧିଷ୍ଠାତ୍ରୀ ଦେବୀଙ୍କର ଦ୍ୱିପହରକାଳୀନ ଧ୍ୟେୟରୂପ । ଏ ଯୁବତୀ, ଶୁକ୍ଳବର୍ଣ୍ଣା, ତ୍ରୁରୂପା, ଚତୁର୍ଭୁଜା, ଶୁକ୍ଳାମ୍ବରଦ୍ୱୟୋପେତା, ଗରୁଡ଼ପୃଷ୍ଠସ୍ଥିତା, ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣୀ ଓ ବିଷ୍ଣୁ ଦୈବତା ଅଟନ୍ତି । ବ୍ରାହ୍ମଣମାନେ ମଧ୍ୟାହ୍ନ ସନ୍ଧ୍ୟା ସମୟରେ ଗାୟତ୍ରୀ ଜପିବା ପୂର୍ବରୁ ଏହାଙ୍କୁ ଧ୍ୟାନ କରନ୍ତି ।

ଏ ବ୍ରହ୍ମାଙ୍କ ପତ୍ନୀ । ସବିତା (ସୂର୍ଯ୍ୟ) ଙ୍କ ଔରସରେ ତତ୍ ପତ୍ନୀ ପୃଶ୍ନୀଙ୍କ ଗର୍ଭରୁ ଏ ଜନ୍ମିଥିଲେ । ଏ ବେଦମାନଙ୍କୁ ପ୍ରସବ କରିଥିଲେ । ଏହାଙ୍କର ଅନ୍ୟ ନାମ ଶତରୂପା, ଗାୟତ୍ରୀ, ସରସ୍ୱତୀ, ବ୍ରହ୍ମାଣୀ । ଭାରତର ଭିନ୍ନ ଭିନ୍ନ ତୀର୍ଥରେ ଏ ଭିନ୍ନ ଭିନ୍ନ ନାମରେ ପୂଜିତା ହେଉଅଛନ୍ତି । ଯଥା—ପୁଷ୍କରରେ ସାବତ୍ରୀ, ବାରାଣସୀରେ ବିଶାଳାକ୍ଷୀ, ପ୍ରୟାଗରେ ଲଳିତା, ଏକାମ୍ରକାନନରେ କୀର୍ତ୍ତିମତୀ, ବିନ୍ଧ୍ୟାଚଳରେ ସୀତା, ପୁରୀକ୍ଷେତ୍ରରେ ବିମଳା ଇତ୍ୟାଦି ।

(ଭାଷାକୋଷ)

(୩) ଧର୍ମଙ୍କ ପତ୍ନୀ ଓ ଦକ୍ଷଙ୍କ କନ୍ୟା; କଶ୍ୟପଙ୍କ ସ୍ତ୍ରୀ ।

(ହିନ୍ଦୀ ଶବ୍ଦସାଗର)

(୪) ଅଷ୍ଟାବକ୍ରଙ୍କ କନ୍ୟା (ହିନ୍ଦୀ ଶବ୍ଦସାଗର)

(୫) ସାବତ୍ରୀ ମଦ୍ରଦେଶର ରାଜା ଅଶ୍ୱପତିଙ୍କ କନ୍ୟା, ସତ୍ୟବାନଙ୍କର ପତ୍ନୀ । ସେ ବିବାହଯୋଗ୍ୟ ବୟସ ପ୍ରାପ୍ତ ହେବାରୁ ପିତା ଅଶ୍ୱପତି ତାହାଙ୍କୁ ଉପଯୁକ୍ତ ପତି ମନୋନୀତ କରିବା ପାଇଁ ଅନୁମତି ଦେଲେ । ଏ ଅମାତ୍ୟ-ମାନଙ୍କ ସହିତ ବହୁ ସ୍ଥାନ ପର୍ଯ୍ୟଟନ କରି ଉପଯୁକ୍ତ ପାତ୍ର ପାଇଲେ ନାହିଁ । ଅବଶେଷରେ ଅରଣ୍ୟ ମଧ୍ୟରେ ସତ୍ୟବାନ ଯେଉଁ ଆଶ୍ରମରେ ଥିଲେ ସେଠାକୁ ଆସିଲେ ଏବଂ ତାଙ୍କୁ ଦେଖି ପତିରୂପେ ମନେ ମନେ ବରଣ କରିନେଲେ । ଅଶ୍ୱପତି ନାରଦଙ୍କ ମୁଖରୁ ସତ୍ୟବାନ ଅଳ୍ପାୟୁ ବୋଲି ଶୁଣି କନ୍ୟାଙ୍କୁ ଅନ୍ୟ ପତି ବରଣ କରିବା ପାଇଁ କହିଲେ । ମାତ୍ର ସାବତ୍ରୀ ଅନ୍ୟ କାହାରିକୁ ବରଣ କରି ପାରିବେ ନାହିଁ ବୋଲି ଅଟଳ ରହିଲେ । ତେଣୁ ସତ୍ୟବାନଙ୍କ ସହିତ ସାବତ୍ରୀଙ୍କ ପରିଣୟ ସଂପାଦିତ ହେଲା । ପରେ ସାବତ୍ରୀ ନିଜ ପାତିବ୍ରତ୍ୟ

ବଳରେ ମୃତ ପତିଙ୍କୁ ଯମଙ୍କଠାରୁ ଫେରାଇ ଆଣି ପରମ ସୁଖରେ ରହିଲେ ।
(ସତ୍ୟବାନ ଦେଖ)

**ସାରଣ**—ଲଙ୍କାଧିପତି ରାବଣଙ୍କର ମନ୍ତ୍ରୀ (ଶୁକ ଦେଖ)

**ସିଂହିକା**—କଶ୍ୟପ ପତ୍ନୀ । ଦକ୍ଷରାଜ କନ୍ୟା ବିଶେଷ । ମହର୍ଷି କଶ୍ୟପଙ୍କ ଔରସରେ ଏହାଙ୍କ ଗର୍ଭରୁ ଗନ୍ଧର୍ବଗଣ ଓ ରାହୁ ଜନ୍ମିଥିଲେ ।

ରାମାୟଣରେ ବର୍ଣ୍ଣିତ ଜଣେ ରାକ୍ଷସୀ । ଏ ଲଙ୍କା ନିକଟସ୍ଥ ସାଗର ଗର୍ଭରେ ବାସ କରୁଥିଲା ଏବଂ ଆକାଶରେ ଚଳପ୍ରଚଳ ହେଉଥିବା ଜୀବଜନ୍ତୁଙ୍କ ଛାୟା, ଜଳ ଉପରେ ପଡିଲେ ଏହି ରାକ୍ଷସୀ ମାୟା ବଳରେ ଉକ୍ତ ଜୀବଜନ୍ତୁଙ୍କୁ ଆକର୍ଷଣ କରି ଆଣି ଖାଉଥିଲା । ହନୁମାନ ସୀତାଙ୍କୁ ଠାବ କରିବା ପାଇଁ ସାଗର ଉପରେ ଲଙ୍କାକୁ ଉଡ଼ିଗଲା ବେଳେ ତାଙ୍କର ଛାଇ ଉପରେ ପଡ଼ିବାରୁ ସିଂହିକା ହନୁମାନଙ୍କୁ ଆକର୍ଷଣ କରି ଗିଳି ଦେଲା । କିନ୍ତୁ ହନୁମାନ ନିଜ ବିକ୍ରମରେ ରାକ୍ଷସୀର ପେଟ ଚିରି ବାହାରି ଆସିଲେ, ଫଳରେ ରାକ୍ଷସୀ ମରିଗଲା । (ବିଶ୍ୱକୋଷ)

ଚରିତାଭିଧାନରେ ସିଂହିକାକୁ ରାହୁ ମାତା ବୋଲି ନିର୍ଣ୍ଣୟ କରାଯାଇଛି ।

**ସିନ୍ଧୁ**—ଅନ୍ଧମୁନିଙ୍କ ପୁତ୍ର । ମହାରାଜ ଦଶରଥ ମୃଗୟାର୍ଥେ ବିଚରଣ କରୁଥିବା ବେଳେ ମୃଗ ଭ୍ରମରେ ଶବ୍ଦ ଭେଦୀ ବାଣ ଦ୍ୱାରା ଏହାଙ୍କୁ ବଧ କରିଥିଲେ ।
(ଚରିତାଭିଧାନ)

**ସୀତା**—ବିଦେହରାଜ ସୀରଧ୍ୱଜ ଜନକଙ୍କ କନ୍ୟା । ଅଯୋଧ୍ୟାଧିପତି ଶ୍ରୀରାମଙ୍କ ପତ୍ନୀ । ସୀତା ସ୍ୱାମୀଙ୍କ ସହିତ ରାଜଭୋଗ ପରିତ୍ୟାଗ କରି ଚଉଦ ବର୍ଷ ବନବାସ କରିଥିଲେ । ବନବାସ ତେର ବର୍ଷ ଭୋଗ ହେବା ପରେ ସେ ଲଙ୍କାପତି ରାବଣଙ୍କ ଦ୍ୱାରା ଅପହୃତା ହୋଇଥିଲେ । ରାମଚନ୍ଦ୍ର ବାନର ସେନାଙ୍କ ସହିତ ଲଙ୍କା ଆକ୍ରମଣ କଲେ । ଘୋର ଯୁଦ୍ଧ ପରେ ରାବଣ ସବଂଶ ନିହତ ହେଲା ଓ ସୀତା ମୁକ୍ତ ହେଲେ । କିନ୍ତୁ ରାମଚନ୍ଦ୍ର ସୀତାଙ୍କ ଚରିତ୍ରରେ ସନ୍ଦେହମନା ହୋଇ ତାଙ୍କୁ ଗ୍ରହଣ କରିବାପାଇଁ ଅନିଚ୍ଛୁକ ହେଲେ । ସୀତା କ୍ଷୁବ୍ଧ ହୋଇ ଅଗ୍ନିରେ ଝାସ ଦେଲେ, କିନ୍ତୁ ଅଗ୍ନିଦେବ ବିଶୁଦ୍ଧ ଚରିତା ସୀତାଙ୍କୁ ଗ୍ରହଣ ନ କରି ରାମଙ୍କୁ ଫେରାଇ ଦେଲେ । ରାମଚନ୍ଦ୍ର ଅଗ୍ନିପରୀକ୍ଷିତା ସୀତାଙ୍କୁ ଗ୍ରହଣ କରି ଅଯୋଧ୍ୟାକୁ ଫେରିଆସି ଭରତଙ୍କଠାରୁ ରାଜ୍ୟଭାର ଗ୍ରହଣ କଲେ । ସୀତା ଅନ୍ତଃସତ୍ତ୍ୱା ଥିଲେ । ରାମ ତାଙ୍କ ଚରିତ୍ରରେ ନିଃସନ୍ଦିଗ୍ଧ ହେଲେ ମଧ୍ୟ ପ୍ରଜାରଞ୍ଜନ ପାଇଁ ସେହି ଅବସ୍ଥାରେ ସୀତାଙ୍କୁ ତ୍ୟାଗ କରିବାକୁ ବାଧ୍ୟ

ହେଲେ । ସୀତା ବାଲ୍ମୀକି ତପୋବନ ସନ୍ନିକଟ ତମସାନଦୀ ତୀରସ୍ଥ ଅରଣ୍ୟରେ ରାମଙ୍କ ଆଦେଶ ମତେ ଲକ୍ଷ୍ମଣଙ୍କ ଦ୍ୱାରା ପରିତ୍ୟକ୍ତ ହେଲେ । ରୋରୁଦ୍ୟମାନା ସୀତାଙ୍କୁ ବାଲ୍ମୀକି ଆଶ୍ୱାସନା ଦେଇ ସ୍ୱ ଆଶ୍ରମକୁ ନେଇ-ଗଲେ । ସେଠାରେ ସୀତାଙ୍କର ଲବ ଓ କୁଶ ନାମକ ଯମଜ ପୁତ୍ର ଜାତ ହେଲେ । ବିଧିପୂର୍ବକ ସେମାନଙ୍କର ସଂସ୍କାର କରାଇ ବାଲ୍ମୀକି ସେହି ଶିଶୁ-ଦ୍ୱୟଙ୍କୁ ଶିକ୍ଷା ଦେଲେ । ଏହି ସମୟରେ ରାମଚନ୍ଦ୍ର ଏକ ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କଲେ । କୁଶ, ଲବ ବାଲ୍ମୀକିଙ୍କ ସହିତ ସେଠାକୁ ଗଲେ ଏବଂ ଯଜ୍ଞ ସଭାରେ ରାମାୟଣ ଗାନ କରିଥିଲେ । ରାମ ବାଲ୍ମୀକିଙ୍କ ମୁଖରୁ ସେମାନ-ଙ୍କର ପରିଚୟ ପାଇ ସୀତାଙ୍କୁ ଗ୍ରହଣ କରିବାପାଇଁ ଇଚ୍ଛା ପ୍ରକାଶ କଲେ । ବାଲ୍ମୀକି ଶିଷ୍ୟଙ୍କୁ ପଠାଇ ସୀତାଙ୍କୁ ସଭାକୁ ଅଣାଇଲେ । ମାତ୍ର ଖଳ ବ୍ୟକ୍ତି-ମାନେ ଏଥିରେ ଅନ୍ତରାୟ ହେବାରୁ ରାମଚନ୍ଦ୍ର ପୁନର୍ବାର ଅଗ୍ନିପରୀକ୍ଷା ଦେବା ପାଇଁ ସୀତାଙ୍କୁ କହିଲେ, ମାତ୍ର ସୀତା ସେହି ସଭାରେ ମର୍ମାହତା ହୋଇ ଉଚ୍ଚସ୍ୱରରେ କହି ଉଠିଲେ "ଯଦି ମୋର ବାକ୍ୟରେ, ମନରେ କିମ୍ବା କାର୍ଯ୍ୟରେ ପତି ବିମଳଭାବ ନ ଥାଏ ତେବେ ମା' ବସୁଧେ, ତୁମେ ତୁମ ଗର୍ଭରେ ମୋତେ ସ୍ଥାନ ଦିଅ ।" ଏହି କଥା କହିବାମାତ୍ରେ ଭୂମି ଭେଦ କରି ଗୋଟିଏ ସିଂହାସନ ଉଠିଆସିଲା ଏବଂ ଧରଣୀ ଦେବୀ ସୀତାଙ୍କୁ ଆପଣା କୋଳରେ ସ୍ଥାପନ କରି ପାତାଳରେ ପ୍ରବେଶ କଲେ ।

(ରାମାୟଣ ଓ ଚରିତାଭିଧାନ)

**ସୁକନ୍ୟା**—ମହାରାଜ ଶର୍ଯ୍ୟାତିଙ୍କ କନ୍ୟା ଓ ଚ୍ୟବନ ମହର୍ଷିଙ୍କ ସ୍ତ୍ରୀ ।

(ଚ୍ୟବନ ଦେଖ)

**ସୁକାନ୍ତ**—(୧) ମୁନି ବିଶେଷ । ଏହାଙ୍କ ତପଃ ପ୍ରଭାବରୁ ମହାନଦୀ ଜାତ ହୋଇଥିବା ପୌରାଣିକ କିମ୍ବଦନ୍ତୀ ଅଛି । (୨) ବିଦ୍ୟୁଜ୍ଜିହ୍ୱା ରାକ୍ଷସର ଭଗ୍ନୀ । ଏହି ରାକ୍ଷସୀ ରାବଣ ପ୍ରରୋଚନାରେ ମାୟାସୀତା ରୂପ ଧାରଣ କରିଥିଲା ।

**ସୁକେଶ**—ଜନୈକ ଧର୍ମଶୀଳ ରାକ୍ଷସ । ବିଦ୍ୟୁତ୍କେଶ ଏହାର ପିତା । ଗନ୍ଧର୍ବ-କନ୍ୟା ଦେବବତୀଙ୍କୁ ବିଦ୍ୟୁତ୍କେଶ ବିବାହ ହୋଇଥିଲା । ମାଲ୍ୟବାନ, ସୁମାଳୀ ଓ ମାଳୀ ଏହାଙ୍କର ପୁତ୍ର । ବିଦ୍ୟୁତ୍କେଶ ବଂଶରେ ଜାତ, ମାଳୀ ସୁମାଳୀ ସେ ମାଲ୍ୟବନ୍ତ—ବୈଦେହୀଶ ବିଳାସରେ ଉପେନ୍ଦ୍ରଭଞ୍ଜଙ୍କ ନିର୍ଣ୍ଣୟ ।

**ସୁଗ୍ରୀବ**—(୧) ସୂର୍ଯ୍ୟଙ୍କ ଔରସରେ ଏହାଙ୍କର ଜନ୍ମ । ଏ କପିରାଜ । ପର୍ବତ ବେଷ୍ଟିତା କିଷ୍କିନ୍ଧ୍ୟା ନଗରୀ ଏହାଙ୍କର ରାଜଧାନୀ । ଏହାଙ୍କ ଜ୍ୟେଷ୍ଠ ଭ୍ରାତା

ବାଲି ସୁଗ୍ରୀବଙ୍କୁ ରାଜ୍ୟରୁ ବାହାର କରିଦେଇ ତଦୀୟ ପତ୍ନୀ ରୁମାଙ୍କୁ ବଳପୂର୍ବକ ଗ୍ରହଣ କରିଥିଲେ । ରାମଚନ୍ଦ୍ର ବାଲିଙ୍କୁ ବଧ କରି ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟା ରାଜ୍ୟର ରାଜା କଲେ । ସୁଗ୍ରୀବଙ୍କ ସହାୟତାରେ ରାମ ରାକ୍ଷସରାଜ ରାବଣଙ୍କୁ ସବଂଶ ବଧ କରି ସୀତାଙ୍କୁ ଉଦ୍ଧାର କରିଥିଲେ । ବୃଦ୍ଧାବସ୍ଥାରେ ସୁଗ୍ରୀବ ଜ୍ୟେଷ୍ଠ-ଭ୍ରାତାଙ୍କ ପୁତ୍ର ଅଙ୍ଗଦଙ୍କୁ ରାଜ୍ୟଭାର ସମର୍ପଣ କରି ରାମଚନ୍ଦ୍ରଙ୍କ ସହିତ ସରଯୂରେ ଦେହ ତ୍ୟାଗ କରିଥିଲେ । ଏ ପରିଶେଷରେ ସୂର୍ଯ୍ୟଙ୍କ ମଣ୍ଡଳରେ ପ୍ରବିଷ୍ଟ ହେଲେ । (ରାମାୟଣ, ଚରିତାଭିଧାନ, ଭାଷାକୋଷ)

(୨) ଦେବୀ ମହାତ୍ମ୍ୟ ବା ଚଣ୍ଡୀରେ ବର୍ଣ୍ଣିତ ଅସୁର ବିଶେଷ । ଶୁମ୍ଭ ନିଶୁମ୍ଭଙ୍କ ଦୂତରୂପେ ସୁଗ୍ରୀବ ହିମାଚଳକୁ ଯାଇ ଦେବୀଙ୍କ ଆଗରେ ନିଜ ରାଜାଙ୍କ ଅଭିପ୍ରାୟ ବ୍ୟକ୍ତ କରିଥିଲେ ।

**ସୁଗ୍ରୀବୀ**—ତାମ୍ରା ଗର୍ଭଜାତା କଶ୍ୟପ କନ୍ୟା (ଗରୁଡ଼ ପୁରାଣ) । ତାମ୍ରାଙ୍କର ୬ଟି କନ୍ୟା । ଯଥା—ସୁଙ୍କା, ଶ୍ୟେନୀ, ଭାସୀ, ସୁଗ୍ରୀବୀ, ଶୁଚୀ ଓ ଗୃଧ୍ରିକା । ସୁଗ୍ରୀବୀ ଠାରୁ ପକ୍ଷୀମାନେ ଜନ୍ମିଥିଲେ । (ଭାଷାକୋଷ)

**ସୁଦକ୍ଷିଣା**—ସୂର୍ଯ୍ୟବଂଶୀୟ ରାଜା ଦିଲୀପଙ୍କ ପତ୍ନୀ । ବିଶ୍ୱବିଖ୍ୟାତ ବୀର ରଘୁ ଏହାଙ୍କ ଦାମ୍ପତ୍ୟର ସନ୍ତାନ । ଶ୍ରୀକୃଷ୍ଣଙ୍କ ଏକ ପତ୍ନୀଙ୍କ ନାମ ମଧ୍ୟ ସୁଦକ୍ଷିଣା ।

(ଭାଷାକୋଷ)

**ସୁଦର୍ଶନ**—ବିଷ୍ଣୁଙ୍କ ଚକ୍ରର ନାମ । ପୁରାଣରେ ଲିଖିତ ଅଛି ଯେ, ମହାଦେବଙ୍କ ଆଦେଶ ଅନୁସାରେ ବିଶ୍ୱକର୍ମା ସବୁ ଦେବତାଙ୍କ ତେଜରୁ ସାର ସଂଗ୍ରହ କରି ଏ ଚକ୍ର ତିଆର କରି ମହାଦେବଙ୍କୁ ଦେଇଥିଲେ । ଦୈତ୍ୟମାନଙ୍କ ବିନାଶାର୍ଥେ ମହାଦେବ ଏହି ଚକ୍ରକୁ ବିଷ୍ଣୁଙ୍କୁ ଅର୍ପଣ କଲେ । ଏହାରଅରର ସଂଖ୍ୟା । ବାର ଏହା ଷଟ୍ କୋଣ ବଳୟଯନ୍ତ୍ର ସଂଯୁତ । ବିଷ୍ଣୁ ମନ୍ଦିରର ଚୂଡ଼ାରେ ଏହି ଚକ୍ରର ଧାତୁମୟ ମୂର୍ତ୍ତି ରଖାଯାଏ । ପୁରୀର ବଡ଼ ଦେଉଳରେ 'ଚତୁର୍ଦ୍ଧାମୂର୍ତ୍ତି' ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସହ ଏ ସୁଦର୍ଶନ ଚକ୍ର ବିରାଜିତ ଅଛି । ଚତୁର୍ଭୁଜ ବିଷ୍ଣୁ ଗୋଟିଏ ହାତରେ ସର୍ବଦା ଏହି ଚକ୍ରକୁ ଧାରଣ କରନ୍ତି ଏବଂ ଏହା ଦ୍ୱାରା ଦୁଷ୍ଟ ଦଳନ ଓ ଶିଷ୍ଟ ପାଳନ କରିଥାନ୍ତି ।

(ଭାଷାକୋଷ)

(୨) ଲଙ୍କା ଯୁଦ୍ଧରେ ମହୋଦର ରାକ୍ଷସ ଯେଉଁ ହାତୀ ଉପରେ ବସି ଯୁଦ୍ଧ କରିଥିଲା, ତାହାର ନାମ ସୁଦର୍ଶନ ।

**ସୁଦାମା**—ଶ୍ରୀକୃଷ୍ଣ ବାଲ୍ୟ ସହଚର ଜନୈକ ଦରିଦ୍ର ବ୍ରାହ୍ମଣ । ଏ ପିଲାଦିନେ ଶ୍ରୀକୃଷ୍ଣଙ୍କ ସହିତ ସାନ୍ଦିପନି ମୁନିଙ୍କ ଆଶ୍ରମରେ ବିଦ୍ୟାଶିକ୍ଷା କରିଥିଲେ । ଏ ଶ୍ରୀକୃଷ୍ଣଙ୍କର ଜଣେ ପ୍ରଧାନ ଭକ୍ତ ଓ ସର୍ବଦା ଶ୍ରୀକୃଷ୍ଣଙ୍କଠାରେ ଚିତ୍ତବୃତ୍ତି ଅର୍ପଣ କରିଥିଲେ । ଅତି ଅଭାବଗ୍ରସ୍ତ ହେବାରୁ ସ୍ତ୍ରୀଙ୍କ ଐକାନ୍ତିକ ଅନୁରୋଧରେ ଏ ଦ୍ୱାରକାର ରାଜା ହୋଇଥିବା ତାଙ୍କ ବାଲ୍ୟ ବନ୍ଧୁ ଶ୍ରୀକୃଷ୍ଣଙ୍କ ନିକଟକୁ ଗଲେ । ଶ୍ରୀକୃଷ୍ଣଙ୍କୁ ଉପହାର ଦେବା ପାଇଁ ସ୍ତ୍ରୀ ଗଣ୍ଠିଏ ଖୁଦଭଜା ଏହାଙ୍କୁ ଦେଇଥିଲେ । ଶ୍ରୀକୃଷ୍ଣ ସୁଦାମାଙ୍କଠାରୁ ତାହା ଅତି ସ୍ନେହରେ ଗ୍ରହଣ କରି ତାଙ୍କର ଦାରିଦ୍ର୍ୟ ମୋଚନ କରିଥିଲେ । ଜଣେ ପ୍ରାଚୀନ କବି କହନ୍ତି— 'ଗଣ୍ଡାଏ ଖୁଦ ପାଇଁକି ଗୋବିନ୍ଦ ଅଶେଷ ସମ୍ପଦ ଦାତା ।' କୌତୁକ ଶିରୋମଣି ଯଦୁମଣି ସ୍ତୁତିଧ୍ୱନି କରିଥାନ୍ତି—'କମଳା ପତି ରମାଙ୍କୁ ଅକଥନ, ସୁଦାମାଙ୍କୁ ବିପୁଳ ସମ୍ପଦେ ମଣ୍ଡିଦେଲ ହେ ନୀଳାଚଳ ।' ମାତ୍ର ସୁଦାମା ଏ ଧନ ସମ୍ପତ୍ତିରେ ମୁଗ୍ଧ ନ ହୋଇ ଅତି ଭକ୍ତିର ସହିତ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରିଥିଲେ । ଅଦ୍ୟାବଧି ଏହାଙ୍କ ଗୃହ ସୁଦାମାପୁରୀ ନାମରେ ହିନ୍ଦୁଙ୍କର ଗୋଟିଏ ପ୍ରଧାନ-ତୀର୍ଥ ରୂପେ ପରିଗଣିତ । (ଭାଷାକୋଷ)

**ସୁଦେଷ୍ଣ**—ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ପୁତ୍ର । (ହିନ୍ଦୀ ଶବ୍ଦସାଗର)

**ସୁଦେଷ୍ଣା**—କୀଚକଙ୍କ ଭଗିନୀ । ବିରାଟ ରାଜାଙ୍କ ପଟ୍ଟ ମହିଷୀ । ଅଜ୍ଞାତବାସ ବେଳେ ଦ୍ରୌପଦୀ ଏହାଙ୍କ ନଅରରେ ସୈରିନ୍ଧ୍ରୀରୂପେ ଆତ୍ମଗୋପନ କରିଥିଲେ । (ମହାଭାରତ)

**ସୁଦ୍ୟୁମ୍ନ**—ବୈବସ୍ୱତ ମନୁଙ୍କ ପୁତ୍ର । କଥିତ ଅଛି ଯେ, ହିମାଳୟରେ ପାର୍ବତୀଙ୍କ ସହ ହରଙ୍କର ରତିକ୍ରୀଡ଼ା ହେଉଥିବା ସମୟରେ ସୁଦ୍ୟୁମ୍ନ ସେଠାରେ ମୃଗୟାଲାଗି ପହଞ୍ଚିଲେ ଏବଂ ମହାଦେବଙ୍କ ଶାପ ଫଳରେ ସେ ସ୍ତ୍ରୀ ରୂପରେ ପରିଣତ ହୋଇ ଅରଣ୍ୟରେ ବୁଲିଲେ । ବୁଲୁ ବୁଲୁ ବୁଧଙ୍କ ସଙ୍ଗେ ତାଙ୍କର ଭେଟ ହେଲା । ବୁଧଙ୍କ ଔରସରେ ଏହାଙ୍କ ଗର୍ଭରୁ ପୁରୁରବା ଜାତ ହେଲେ । ପରେ ବୁଧଙ୍କ ଆରାଧନାରେ ତୁଷ୍ଟ ହୋଇ ମହାଦେବ ଦୟା କରିବାରୁ ଏ ପୁଣି ପୁରୁଷରୂପରେ ପରିଣତ ହେଲେ ।

(ଅଗ୍ନିପୁରାଣ-ସାଗରୋପାଖ୍ୟାନ, ଭାଷାକୋଷ)

**ସୁଧନ୍ୱା**—ଭାଷାକୋଷରେ ଏ ବିଷୟରେ ଶ୍ରୀ ଜଗନ୍ନାଥ ତ୍ରିପାଠୀ, ବି.ଟି. ଯେଉଁ ସନ୍ଦର୍ଭ ଦେଇଛନ୍ତି ତାହା ଏଠାରେ ଅବିକଳ ଉଦ୍ଧାର କରାଗଲା ।

ଭଦ୍ରାବତୀପୁରରେ ହଂସଧ୍ୱଜ ନାମରେ ଜଣେ ରାଜା ଥିଲେ । ସେ ଥିଲେ ପରମ ବୈଷ୍ଣବ ଏବଂ ତାଙ୍କର ଦୁଇ ପୁତ୍ର ସୁରଥ ଓ ସୁଧନ୍ୱା ମଧ୍ୟ ଠିକ୍ ସେହିପରି ବିଷ୍ଣୁଭକ୍ତ ଥିଲେ ।

ଯୁଧିଷ୍ଠିରଙ୍କ ସଂକଳ୍ପିତ ଅଶ୍ୱମେଧ ଯଜ୍ଞର ଅର୍ଜ୍ଜୁନରକ୍ଷିତ ଅଶ୍ୱ ନାନାଦେଶ ଭ୍ରମଣ କରି ଏହି ଭଦ୍ରାବତୀପୁରରେ ପହଞ୍ଚିଲା । ବିଷ୍ଣୁଭକ୍ତ ହଂସଧ୍ୱଜ, କୃଷ୍ଣଙ୍କ ଦର୍ଶନ ଲାଭର ମହାସୁଯୋଗ ଉପସ୍ଥିତ ହେବା ଦେଖି ଉକ୍ତ ଅଶ୍ୱକୁ ବନ୍ଧନ କଲେ । କେବଳ ଏତିକି ନୁହେଁ, ସେ କୃଷ୍ଣସଖା ଅର୍ଜ୍ଜୁନଙ୍କୁ ଧରିବା ଲାଗି ପ୍ରସ୍ତୁତ ହେଲେ । ଯୁଦ୍ଧ ଲାଗି ବିପୁଳ ଆୟୋଜନ ହେଲା । ରାଜା ଘୋଷଣା କଲେ, ଯେ ଅର୍ଜ୍ଜୁନଙ୍କ ବିରୁଦ୍ଧରେ ଯୁଦ୍ଧରେ ଯୋଗଦାନ ନ କରିବ, ତାହାକୁ ନିକଟ ଆତ୍ମୀୟ ହେଲେ ସୁଦ୍ଧା ତପ୍ତ ତୈଳପୂର୍ଣ୍ଣ କଟାହରେ ନିକ୍ଷେପ କରାଯିବ ।

ହରିଭକ୍ତ ମହାବୀର ସୁଧନ୍ୱା ମଧ୍ୟ ଯୁଦ୍ଧ ଲାଗି ସମୁତ୍ସୁକ ହେଲେ । ଯୁଦ୍ଧାର୍ଥେ ପ୍ରସ୍ତୁତ ହୋଇ ପତ୍ନୀ ଓ ଜନନୀଙ୍କ ସଙ୍ଗେ ଦେଖା କରିବାକୁ ଗଲେ । ପତ୍ନୀଙ୍କ ନିକଟରୁ ବିଦାୟ ନେଇ ଆସୁ ଆସୁ ଟିକିଏ ବିଳମ୍ବ ହୋଇଗଲା ।

ଏଣେ ଯଥା ସମୟରେ ପୁତ୍ରଙ୍କୁ ଉପସ୍ଥିତ ହେବା ନ ଦେଖି ହଂସଧ୍ୱଜ ପୂର୍ବ ପ୍ରତିଜ୍ଞାନୁସାରେ ସୁଧନ୍ୱାଙ୍କୁ ତପ୍ତ ତୈଳପୂର୍ଣ୍ଣ କଟାହରେ ନିକ୍ଷେପ କରିବାକୁ ଆଦେଶ ଦେଲେ ।

କୃଷ୍ଣଭକ୍ତ ସୁଧନ୍ୱା ପିତୃ ଆଦେଶ ପାଳନ କରିବାରେ ବିଚଳିତ ହେଲେ ନାହିଁ । ତାହାଙ୍କୁ ତପ୍ତ ତୈଳପୂର୍ଣ୍ଣ କଟାହରେ ନିକ୍ଷିପ୍ତ କରାଗଲା । କିନ୍ତୁ ଭକ୍ତକୁ ବିଷ୍ଣୁ ରକ୍ଷା କଲେ । କିଛିକ୍ଷଣ ପରେ ସୁଧନ୍ୱା କୃଷ୍ଣ ନାମ ମୁଖରେ ଉଚ୍ଚାରଣ କରୁ କରୁ ତପ୍ତ କଟାହରୁ ବାହାରିଲେ । ଏହା ଦେଖି ସମସ୍ତେ ବିସ୍ମିତ ହେଲେ ।

ତତ୍ପରେ ଯୁଦ୍ଧ ଆରମ୍ଭ ହେଲା । ଅର୍ଜ୍ଜୁନ କୌଣସିମତେ ସୁଧନ୍ୱାଙ୍କୁ ପରାଜିତ କରି ପାରିଲେ ନାହିଁ । ସୁଧନ୍ୱାଙ୍କ ବାଣାଘାତରେ ଅର୍ଜ୍ଜୁନଙ୍କ ରଥ ବହୁଦୂର ଉଡ଼ି ଯିବାରୁ ଅର୍ଜ୍ଜୁନ କାତର ସ୍ୱରରେ କୃଷ୍ଣଙ୍କୁ ଧ୍ୟାନ କଲେ । ଶେଷରେ ଶ୍ରୀକୃଷ୍ଣଙ୍କ କୌଶଳରେ ସୁଧନ୍ୱାଙ୍କ ମସ୍ତକ ଦେହରୁ ଚ୍ୟୁତ ହୋଇ କୃଷ୍ଣଙ୍କ ପଦକମଳରେ ପଡ଼ି ହରି ନାମ ଉଚ୍ଚାରଣ କଲା । ଏହିପରି ସୁଧନ୍ୱାଙ୍କର ମୁକ୍ତି ହେଲା ।

**ସୁଧର୍ମା**—ଦେବସଭା, ଇନ୍ଦ୍ରଙ୍କ ଦରବାର ଗୃହ ।

**ସୁନନ୍ଦ**—ଶ୍ରୀକୃଷ୍ଣଙ୍କ ପାର୍ଶ୍ୱଚର ଗୋପାଳ ବିଶେଷ । ବଳଭଦ୍ରଙ୍କ ମୁଷଳର ନାମ ।

**ସୁନନ୍ଦା**—(୧) ପାଣ୍ଡବଙ୍କ ପତ୍ନୀ ବିଶେଷ । (୨) ଇନ୍ଦୁମତୀଙ୍କ ସ୍ୱୟମ୍ବର କାଳରେ ତାଙ୍କ ସହିତ ରାଜସଭାକୁ ଯାଇଥିବା ସଖୀଙ୍କ ନାମ । (୩) କୃଷ୍ଣଙ୍କର ଜଣେ ପତ୍ନୀ (ହି. ଶ.) (୪) ଚେଦିରାଜ ସୁବାହୁଙ୍କ ଭଉଣୀ (ହିନ୍ଦୀ ଶବ୍ଦସାଗର) (୫) ଭରତଙ୍କ ସ୍ତ୍ରୀ । (ହିନ୍ଦୀ ଶବ୍ଦସାଗର)

**ସୁନୀତ**—ରାଜା ସୁବଳଙ୍କ ପୁତ୍ର । (ଭାଷାକୋଷ)

**ସୁନୀତି**—ଉତ୍ତାନପାଦ ରାଜାଙ୍କର ପ୍ରଥମା ସ୍ତ୍ରୀ । ବାଳଭକ୍ତ ଧ୍ରୁବଙ୍କ ମାତା ।

**ସୁନ୍ଦ**—ରାକ୍ଷସ ବିଶେଷ । ଏହାର ପିତା ନିସୁନ୍ଦ, ଭାଇର ନାମ ଉପସୁନ୍ଦ । ତାଡ଼କା ରାକ୍ଷସୀ ସୁନ୍ଦର ସ୍ତ୍ରୀ । ସୁବାହୁ ଓ ମାରୀଚ ଏହି ଦମ୍ପତିର ସନ୍ତାନ । ସୁନ୍ଦ ଓ ଉପସୁନ୍ଦ ଏ ଦୁଇ ଭାଇ ତିଲୋତ୍ତମା ଅପ୍‌ସରାକୁ ଲାଭ କରିବା ପାଇଁ ପ୍ରତିଦ୍ୱନ୍ଦୀ ହୋଇ ପରସ୍ପର ଯୁଦ୍ଧ କରି ମଲେ । (ହି.ଶ. ଓ ଚଣ୍ଡୀଭିଧାନ) ରାମଚନ୍ଦ୍ରଙ୍କ ସଙ୍ଗେ ଲଙ୍କା ଯାଇଥିବା ବାନର ଯୋଦ୍ଧା ବିଶେଷ । (ଭାଷାକୋଷ)

**ସୁପର୍ଣ୍ଣ**—ପକ୍ଷୀରାଜ ଗରୁଡ଼ଙ୍କ ନାମାନ୍ତର । ଅମୃତ ହରଣ କଲାବେଳେ ଗରୁଡ଼ ବଜ୍ର ଦ୍ୱାରା ଆହତ ହୋଇ ପୁଣି ହାସ୍ୟ ମୁଖରେ କହିଲେ—'ଦେଖ, ଦେବରାଜ, ବଜ୍ରାଘାତରେ ମୋର କିଛି ଅନିଷ୍ଟ ହୋଇ ନାହିଁ, କିନ୍ତୁ ବଜ୍ରର ସମ୍ମାନ ନିମିତ୍ତ ମୁଁ ଗୋଟିଏ ପକ୍ଷ ପରିତ୍ୟାଗ କରୁଅଛି ।' ଏହି ପକ୍ଷଟିକୁ ସୁନ୍ଦର ଦେଖି ଦେବତାମାନେ ଗରୁଡ଼ଙ୍କୁ ସୁପର୍ଣ୍ଣ ନାମ ଦେଲେ । (ଭାଷାକୋଷ)

**ସୁପାର୍ଶ୍ୱ, ସୁପାଲୁଣ**—ସମ୍ପାତିଙ୍କ ପୁତ୍ର । ସୀତାନ୍ୱେଷଣକାରୀ ହନୁମାନାଦି ଅଷ୍ଟ ବୀରଙ୍କୁ କାନ୍ଧରେ ବସାଇ ସମୁଦ୍ର ଆର ପାରରୁ ଲଙ୍କା ଦେଖାଇଥିଲେ ବୋଲି ରାମାୟଣ କିଷ୍କିନ୍ଧ୍ୟା କାଣ୍ଡରୁ ଜଣାଯାଏ ।

**ସୁବର୍ଣ୍ଣଷ୍ଠୀବୀ**—ସୃଞ୍ଜୟଙ୍କ ପୁଅ । (ସୃଞ୍ଜୟ ଦେଖ)

**ସୁବାହୁ**—(୧) ସ୍କନ୍ଦଙ୍କର ଜଣେ ପାର୍ଷଦ । (ହି. ଶ.)
(୨) ଧୃତରାଷ୍ଟ୍ରଙ୍କ ପୁତ୍ର ଓ ଚେଦିର ରାଜା । (ହି.ଶ.)
(୩) ଶ୍ରୀକୃଷ୍ଣଙ୍କ ପୁତ୍ର ବିଶେଷ ।
(୪) ବିଶ୍ୱାମିତ୍ରଙ୍କ ତପୋଭଙ୍ଗକାରୀ ମାରୀଚର ଭାଇ ଓ ତାଡ଼କା-ରାକ୍ଷସୁଣୀର ପୁତ୍ର ।

(୫) ଦଶରଥଙ୍କ ସାରଥିଙ୍କ ନାମ ।

(୬) ଶତ୍ରୁଘ୍ନଙ୍କ ପୁତ୍ର ।

ସୁବାହୁ ଶ୍ରୁତ ସେନସାର,
ହୋଇବେ ଶତ୍ରୁଘ୍ନ କୁମର । (ଭାଗବତ)

(୭) ପ୍ରାଚୀନ ଭାରତର ଜଣେକ ରାଜା । କୁବଳୟାଶ୍ୱଙ୍କ ପୁତ୍ର ।

**ସୁବେଳ, ସୁବଳୟ୍ୟ**—ଲଙ୍କାର ତ୍ରିକୂଟ ପର୍ବତ । ଏହା ଲଙ୍କାରେ ଅବସ୍ଥିତ ଓ ଦୁଇ ଯୋଜନ ବିସ୍ତୃତ । ରାମଚନ୍ଦ୍ର କପିସେନାସହ ଏହା ନିକଟରେ ରହିଥିଲେ ଓ ଏହା ଉପରେ ଆରୋହଣ କରି ଲଙ୍କାପୁରୀକୁ ଦର୍ଶନ କରି ବିସ୍ମୟମୁଗ୍ଧ ହୋଇଥିଲେ । ଏହି ପର୍ବତରେ ଲୁଚି ରହି ରାବଣର ଅନୁଚର ଶାର୍ଦ୍ଦୂଳ ନାମକ ରାକ୍ଷସ ଓ ଦଶ ଜଣ ଅନୁଚର ରାମଚନ୍ଦ୍ରଙ୍କ ଗତିବିଧି ପର୍ଯ୍ୟବେକ୍ଷଣ କରି ରାବଣକୁ ଜଣାଇଥିଲେ । (ଭାଷାକୋଷ)

**ସୁଭଦ୍ରା**—ଶ୍ରୀକୃଷ୍ଣଙ୍କ ବୈମାତ୍ରେୟ ଭଗିନୀ । ତୃତୀୟ ପାଣ୍ଡବ ଅର୍ଜ୍ଜୁନଙ୍କ ପତ୍ନୀ । ସୁଭଦ୍ରା ବସୁଦେବଙ୍କ ଔରସରେ ରୋହିଣୀଙ୍କ ଗର୍ଭରୁ ଜନ୍ମିଥିଲେ । ଶ୍ରୀକୃଷ୍ଣଙ୍କ ଅଭିପ୍ରାୟ ଅନୁସାରେ ଅର୍ଜ୍ଜୁନ ଏହାଙ୍କୁ ହରଣ କରି ବିବାହ କରିଥିଲେ । ଏହାଙ୍କ ଗର୍ଭଜାତ ଅଭିମନ୍ୟୁ କୁରୁକ୍ଷେତ୍ରରେ ଅସୀମ ବୀରତ୍ୱ ଦେଖାଇ ସପ୍ତ-ରଥୀଙ୍କ ଦ୍ୱାରା ଅନ୍ୟାୟ ଯୁଦ୍ଧରେ ହତ ହେଲେ । (ଚରିତାଭିଧାନ)

**ସୁମନ୍ତୁ**—(୧) ଅଥର୍ବବେଦର ଶାଖା ପ୍ରବର୍ତ୍ତକ ଓ ସ୍ମୃତି ପ୍ରଣେତା ମୁନି ବିଶେଷ (ଭାଗବତ) । ଏ ବେଦବ୍ୟାସଙ୍କ ଶିଷ୍ୟ ଥିଲେ । ଏହାଙ୍କ ନାମ ସ୍ମରଣ କଲେ ଉପରେ ବଜ୍ର ପଡ଼େ ନାହିଁ । (୨) ଜହ୍ନୁଙ୍କର ଏକ ପୁତ୍ର । (ଭାଷାକୋଷ)

**ସୁମନ୍ତ୍ର**—କଳ୍କି ଅବତାରରେ କଳ୍କିଦେବଙ୍କର ଜ୍ୟେଷ୍ଠ ଭ୍ରାତା ତିନି ଜଣଙ୍କ ମଧ୍ୟରୁ ଜଣେ । ଅନ୍ୟ ଦୁଇ ଭାଇଙ୍କ ନାମ କବି ଓ ପ୍ରାଜ୍ଞ (କଳ୍କିପୁରାଣ) । ଦଶରଥଙ୍କ ମନ୍ତ୍ରୀ ବିଶେଷ ଓ ସାରଥି । ଅନ୍ତରୀକ୍ଷଙ୍କର ଏକ ପୁତ୍ର ।
(ହିନ୍ଦୀ ଶବ୍ଦସାଗର)

**ସୁମନ୍ୟୁ**—ପରଶୁରାମଙ୍କ ଶିଷ୍ୟ ବିଶେଷ । ଗନ୍ଧର୍ବ ବିଶେଷ ।

**ସୁମାଳୀ**—ସୁକେଶ ନାମକ ଧର୍ମଶୀଳ ରାକ୍ଷସର ପୁତ୍ର । ରାବଣର ମାତାମହ । ଏହି ରାକ୍ଷସ ଓ ଏହାର ଭ୍ରାତା ମାଳୀ ଓ ମାଲ୍ୟବାନ, ତପସ୍ୟା କରି ଅଜେୟ

ହୋଇଥିଲେ । ଏହି ଧନ ଭରଙ୍କ ଆଦେଶରେ ବିଶ୍ୱକର୍ମା ଲଙ୍କା ନିର୍ମାଣ କରିଥିଲେ । ଏମାନେ ଦେବତାମାନଙ୍କୁ ଉତ୍ପୀଡ଼ନ କରିବାରୁ ବିଷ୍ଣୁ ଏହାଙ୍କୁ ପରାସ୍ତ କଲେ । ତେଣୁ ଏମାନେ ପଳାଇ ଯାଇ ପାତାଳରେ ଲୁଚିଲେ । ସୁମାଳୀ କୁବେରଙ୍କ ପିତା ବିଶ୍ରବାଙ୍କୁ ଆପଣା କନ୍ୟା ନିକଷା ବା କୈକଷୀଙ୍କୁ ବିବାହ ଦେଲେ । ବିଶ୍ରବାଙ୍କ ଔରସରେ ନିକଷାଙ୍କ ଗର୍ଭରୁ ରାବଣ, କୁମ୍ଭକର୍ଣ୍ଣ, ସୂର୍ପଣଖା ଓ ବିଭୀଷଣ ଜାତ ହେଲେ । ରାବଣ ତପସ୍ୟା କରି ବ୍ରହ୍ମାଙ୍କଠାରୁ ବର ପାଇ ଦେବତାମାନଙ୍କୁ ଜିଣି ଲଙ୍କା ଅଧିକାର କରି ରାଜତ୍ୱ କଲେ ଓ ତାଙ୍କ ସଙ୍ଗେ ସୁମାଳୀ ଆସି ରହିଲେ । ରାବଣ ଦିଗ୍‌ବିଜୟ କରିବାକୁ ଲଙ୍କାରୁ ଅନ୍ୟତ୍ର ଯାଇଥିବା ସମୟରେ ଅଷ୍ଟମ ବସୁ ସାବିତ୍ରଙ୍କ ଦ୍ୱାରା ସୁମାଳୀ ନିହତ ହେଲେ । (ଭାଷାକୋଷ)

**ସୁମିତ୍ରା**—ଅଯୋଧ୍ୟାଧିପତି ଦଶରଥଙ୍କ ତୃତୀୟା ରାଣୀ । ଲକ୍ଷ୍ମଣ ଓ ଶତ୍ରୁଘ୍ନ ଏହାଙ୍କର ପୁଅ । ରାମଙ୍କ ବନବାସ ଗମନ ବେଳେ ସୁମିତ୍ରା ନିଜ ପୁତ୍ର ଲକ୍ଷ୍ମଣଙ୍କୁ ରାମଙ୍କ ସହିତ ବନକୁ ଯିବା ପାଇଁ ଅନୁମତି ଦେଇ କହିଲେ—

ରାମଂ ଦଶରଥଂ ବିଦ୍ଧି ମାଂ ବିଦ୍ଧି ଜନକାତ୍ମଜାଂ ।
ଅଯୋଧ୍ୟାମଟବୀଂ ବିଦ୍ଧି ଗଚ୍ଛ ପୁତ୍ର ଯଥା ସୁଖଂ ।

(ରାମାୟଣ)

**ସୁମୁଖ**—ନାଗ ବିଶେଷ । ଇନ୍ଦ୍ରଙ୍କ ସାରଥି ମାତଲି ଏହାଙ୍କ ସହିତ ନିଜ କନ୍ୟା ଗୁଣକେଶୀଙ୍କୁ ବିବାହ ଦେଇଥିଲେ । ପକ୍ଷୀରାଜ ଗରୁଡ଼ ସୁମୁଖଙ୍କୁ ଭକ୍ଷଣ କରିବା ପାଇଁ ସ୍ଥିର କରିଥିଲେ । ଏହି ବିବାହ ନିଷ୍ପନ୍ନ ହେବା ଦ୍ୱାରା ତାଙ୍କର ଅଭିପ୍ରାୟ ସିଦ୍ଧିରେ ବ୍ୟାଘାତ ହେଲା । ଗରୁଡ଼, ଇନ୍ଦ୍ର ଓ ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହୋଇ ତର୍ଜନ ଗର୍ଜନ କରି ନିଜର ବଳବତ୍ତା ପ୍ରକାଶ କଲେ । ବିଷ୍ଣୁ ଗରୁଡ଼ଙ୍କ ଉପରେ ନିଜର ହସ୍ତ ସ୍ଥାପନ କରିବା ମାତ୍ରେ ସେହି ଭାରରେ ଗରୁଡ଼ ପୀଡ଼ିତ ହୋଇ ବିନୀତ ହେଲେ । ସେହିଦିନଠାରୁ ଗରୁଡ଼ ଓ ସୁମୁଖ ଉଭୟଙ୍କ ମଧ୍ୟରେ ସଖ୍ୟ ସ୍ଥାପିତ ହେଲା । (ଚରିତାଭିଧାନ)

**ସୁମେଧାଃ**—ଚାକ୍ଷୁଷ ମନ୍ୱନ୍ତରର ଏକ ଋଷି (ହି. ଶ.) । ପିତୃଲୋକଙ୍କ ଗଣ ବିଶେଷ ।

**ସୁମେରୁ**—ପୁରାଣୋକ୍ତ ଭୂମଧ୍ୟସ୍ଥ ପର୍ବତ ବିଶେଷ । ମେରୁଗିରି । ଭାଗବତ ଅନୁସାରେ ଏହା ପର୍ବତରାଜ । ପୌରାଣିକ ଭୂମଣ୍ଡଳର ସାତ ଦ୍ୱୀପ ମଧ୍ୟରୁ

ଜମ୍ବୁଦ୍ୱୀପର ନଅଗୋଟି ବର୍ଷ ମଧ୍ୟରୁ ଇଲାବୃତ୍ତ ନାମକ ଅଭ୍ୟନ୍ତରସ୍ଥ ବର୍ଷରେ ଏ ପର୍ବତ ଅବସ୍ଥିତ । ଏହା କନକ ମଣ୍ଡିତ ଥିବାରୁ ଏହାର ନାମ ହେମାଦ୍ରି । ଏହାର ସାନୁରେ ନାନା ରତ୍ନ ଥିବାରୁ ଏହାର ନାମ ରତ୍ନସାନୁ । ଏହାର ଶୃଙ୍ଗରେ ଦେବତାମାନେ ବିହାର କରୁଥିବାରୁ ଏହାର ନାମ ସୁରାଳୟ, ଅମରାଦ୍ରି । ଏହା ପୃଥିବୀରେ ଥିବାରୁ ଏହାର ନାମ ଭୂସ୍ୱର୍ଗ । ଏହାର ଉଚ୍ଚତା ୮୪ ହଜାର ଯୋଜନ । ଏଥି ମଧ୍ୟରୁ ଭୂତଳରେ ୧୬ ହଜାର ଯୋଜନ ଅଛି । ଏହାର ଶୃଙ୍ଗ ୩ ଗୋଟି । ଏହାର ମଧ୍ୟମ ଶୃଙ୍ଗ ସ୍ଫଟିକ ଓ ବୈଦୂର୍ଯ୍ୟମୟ, ପୂର୍ବ ଶୃଙ୍ଗ ଇନ୍ଦ୍ରନୀଳମୟ ଓ ପଶ୍ଚିମ ଶୃଙ୍ଗ ମାଣିକ୍ୟମୟ । ଭାଗବତ ୫ । ୧୧, ମତ୍ସ୍ୟପୁରାଣ ୯୫, ନୃସିଂହପୁରାଣ ୩୦ ଓ କୂର୍ମପୁରାଣ ୪୩ ଅଧ୍ୟାୟରେ ଏ ପର୍ବତର ବିବରଣ ଅଛି । ଏହି ପର୍ବତର ପୂର୍ବରେ ଦେବଧାନୀ ନାମକ ଇନ୍ଦ୍ରପୁରୀ, ପଶ୍ଚିମରେ ନମ୍ଲୋଚନୀ ନାମକ ବରୁଣପୁରୀ ଓ ଉତ୍ତରରେ ବିଭାବରୀ ନାମକ ସୋମପୁରୀ ଅଛି । ଏହାର ପୂର୍ବପାର୍ଶ୍ୱ ଶ୍ୱେତବର୍ଣ୍ଣ, ପଶ୍ଚିମ ପୀତ, ଉତ୍ତର ରକ୍ତବର୍ଣ୍ଣ ଓ ଦକ୍ଷିଣପାର୍ଶ୍ୱ ଅନ୍ଧକାରମୟ । ଏହାର ପଶ୍ଚିମରେ ଭଦ୍ରାଶ୍ୱ, ଭାରତ ଓ କେତୁମାଳ ଦେଶ, ଉତ୍ତରରେ କୁରୁଦେଶ ଅଛି । (ଭାଷାକୋଷ)

**ସୁରଥ**—ଚୈତ୍ରବଂଶ ସମୁଦ୍ଭବ ଚନ୍ଦ୍ରବଂଶୀୟ ରାଜା । ଚନ୍ଦ୍ରଙ୍କ ଔରସରେ ଗୁରୁ ପତ୍ନୀ ତାରାଙ୍କ ଗର୍ଭରୁ ବୁଧ ଜନ୍ମିଥିଲେ । ବୁଧଙ୍କଠାରୁ ଚୈତ୍ର ଓ ଚୈତ୍ରଙ୍କ-ଠାରୁ ସୁରଥଙ୍କ ଜନ୍ମ ହୋଇଥିଲା । ସୁରଥ ଶତ୍ରୁମାନଙ୍କ ଦ୍ୱାରା ରାଜ୍ୟଭ୍ରଷ୍ଟ ହୋଇ ତପୋବନକୁ ଗଲେ । ସେଠାରେ ଗୃହତ୍ୟାଗୀ ସମାଧି ବୈଶ୍ୟଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଉଭୟେ ମେଧା ନାମକ ମୁନିଙ୍କଠାରୁ ମହାମାୟା ବା ଦୁର୍ଗାଙ୍କ ବୃତ୍ତାନ୍ତ ଓ ଦେବୀଙ୍କ କର୍ତ୍ତୃକ ମହିଷାସୁର, ରକ୍ତବୀଜ, ଶୁମ୍ଭ, ନିଶୁମ୍ଭ ଆଦି ରାକ୍ଷସମାନଙ୍କ ବଧ ବିବରଣ ଶୁଣି ପ୍ରଥମେ ମୃଣ୍ମୟୀ ପ୍ରତିମା ସ୍ଥାପନ କରି ଶାରଦୀୟ, ଦୁର୍ଗାପୂଜା ଆରମ୍ଭ କଲେ ଏବଂ ଦେବୀଙ୍କ ବରରେ ନଷ୍ଟରାଜ୍ୟ ପ୍ରାପ୍ତ ହୋଇ ଦେହାନ୍ତେ ସ୍ୱର୍ଗକୁ ଗଲେ । ପର ଜନ୍ମରେ ସାବର୍ଣ୍ଣି ମନୁ ହୋଇ ଜନ୍ମିଲେ । ସମାଧିଙ୍କର ମୁକ୍ତିଲାଭ ହେଲା । (ମାର୍କଣ୍ଡେୟ ପୁରାଣୋକ୍ତ ଦେବୀମାହାତ୍ମ୍ୟ ବା ଚଣ୍ଡୀରେ ଏବଂ ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡରେ ଏ ବିଷୟ ବର୍ଣ୍ଣିତ ହୋଇଅଛି) !

ସୁରଥଙ୍କ ପୁତ୍ର ଜୟଦ୍ରଥଙ୍କ ଜନ୍ମ କାଳରେ ଦେବବାଣୀ ହେଲା ଯେ, ନବଜାତ କୁମାର ଗୁଣୀ ଓ ଶତ୍ରୁହନ୍ତା ହେବେ । ତାହା ଶୁଣି ସୁରଥ କହିଥିଲେ—ଯେ ଜୟଦ୍ରଥ ମୁଣ୍ଡକାଟି ଭୂତଳରେ ପକାଇଦେବ, ତାର ଶିର ଶତଧା ଛିନ୍ନ ହେବ । ଭଗବାନ ଶ୍ରୀକୃଷ୍ଣଙ୍କ ଆଦେଶକ୍ରମେ ମହାଭାରତ ଯୁଦ୍ଧରେ

ଅର୍ଜ୍ଜୁନ ଜୟଦ୍ରଥଙ୍କର ମୁଣ୍ଡ କାଟି ଅର୍ଘ୍ୟ ଦେବା କାଳରେ ସୁରଥଙ୍କ ଅଞ୍ଜଳିରେ ତାହା ପକାଇ ଦେଲେ । ସୁରଥଙ୍କ ହାତରୁ ଜୟଦ୍ରଥଙ୍କ ମୁଣ୍ଡ ଭୂତଳରେ ଖସି ପଡ଼ିବାରୁ ସୁରଥଙ୍କ ମୁଣ୍ଡ ଶତଧା ଛିନ୍ନ ହେଲା ।

ହିନ୍ଦୀ ଶବ୍ଦସାଗର ନିର୍ଣ୍ଣୟ କରନ୍ତି ଯେ ଦ୍ରୁପଦଙ୍କର ଏକ ପୁତ୍ର, ଜନ୍ମେଜୟଙ୍କର ଏକ ପୁତ୍ର, ଚମ୍ପକପୁରୀର ରାଜା ହଂସଧ୍ୱଜଙ୍କର ମଧ୍ୟ ସୁରଥ ନାମକ ଏକ ପୁତ୍ର ଥିଲେ । (ହିନ୍ଦୀକୋଷ)

**ସୁରଭି**—ଦକ୍ଷରାଜାଙ୍କ କନ୍ୟା । ମହର୍ଷି କଶ୍ୟପ ଏହାଙ୍କର ସ୍ୱାମୀ । ଏହାଙ୍କ ଗର୍ଭରୁ ପୃଥିବୀର ଯାବତୀୟ ଚତୁଷ୍ପଦ ଜନ୍ତୁ ଜନ୍ମିଥିଲେ । ଏ ପାତାଳରେ ବରୁଣାଳୟରେ ବାସ କରିଥିଲେ । ଏହାଙ୍କ ସ୍ତନରୁ ସର୍ବଦା କ୍ଷୀର ଧାର ସ୍ରବୁଥିଲା । ଏହି କ୍ଷୀରଧାରରୁ କ୍ଷୀରୋଦସାଗର ନାମକ ସରୋବରର ଉତ୍ପତ୍ତି । ଏହି କ୍ଷୀରୋଦସାଗରରୁ ଚନ୍ଦ୍ର, ଲକ୍ଷ୍ମୀ, ଅମୃତ ଓ ପିତୃଗଣଙ୍କ ସୁଧାମନ୍ତ ଜନ୍ମିଥିଲେ । ଏହାଙ୍କୁ ପୂଜା କଲେ ପୂଜକ ସର୍ବ କାମ ପ୍ରାପ୍ତ ହୁଅନ୍ତି । ଏହାଙ୍କ କନ୍ୟା ଓ ବଶିଷ୍ଠ ଋଷିଙ୍କ ହୋମଧେନୁ ନନ୍ଦିନୀଙ୍କୁ, ଦିଲ୍ଲୀପ ଓ ସୁଦକ୍ଷିଣା ପୂଜା କରି ରଘୁଙ୍କୁ ପୁତ୍ରରୂପେ ପ୍ରାପ୍ତ ହୋଇଥିଲେ । ବ୍ରହ୍ମବୈବର୍ତ୍ତ ପ୍ରକୃତିଖଣ୍ଡରେ ୪୭ଶ ଅଧ୍ୟାୟରେ ନାରଦ ଭଗବାନଙ୍କ ସମ୍ବାଦରେ ଲେଖାଅଛି ଯେ ବୃନ୍ଦା ଅରଣ୍ୟରେ ଗୋପାଙ୍ଗନା ପରିବୃତ ହୋଇ ରାଧାନାଥ ରାଧିକାଙ୍କ ସଙ୍ଗେ କ୍ରୀଡ଼ା କରିବାକୁ ଯିବା ସମୟରେ ତାଙ୍କର କ୍ଷୀରପାନ ପାଇଁ ଇଚ୍ଛା ହେଲା ଏବଂ ତତ୍‌କ୍ଷଣାତ୍ ରାଧାନାଥଙ୍କ ବାମପାର୍ଶ୍ୱରୁ ସବତ୍ସା ସୁରଭ ଧେନୁଙ୍କର ଆବିର୍ଭାବ ହେଲା । ସୁଦାମ ନାମକ ଗୋପବାଳକ ରତ୍ନଭାଣ୍ଡରେ ଏହାଙ୍କଠାରୁ ଦୁଗ୍ଧ ଦୋହନ କଲେ । ରାଧାନାଥ ସେହି କଦୁଷ୍ଣ ଦୁଗ୍ଧପାନ କରି ତୃପ୍ତିଲାଭ କଲେ । ଦୁଗ୍ଧଦୋହନ-କାଳରେ ଦୁଗ୍ଧ, ଭାଣ୍ଡରୁ ଉଚ୍ଛୁଳି ପଡ଼ିଲା । ତଦ୍ୱାରା ଗୋଲୋକରେ ଶତ ଯୋଜନ ବିସ୍ତୀର୍ଣ୍ଣ କ୍ଷୀରସରୋବର ଉତ୍ପନ୍ନ ହେଲା । ଏହା ରାଧିକା ଓ ଗୋପୀନାଥଙ୍କର କ୍ରୀଡ଼ା ସରୋବର । ପରେ ଭଗବାନଙ୍କ ଇଚ୍ଛାରେ ସୁରଭଙ୍କ ଲୋମ କୂପରୁ ଲକ୍ଷକୋଟି କାମଧେନୁ ଉତ୍ପନ୍ନ ହେଲେ । ଦୀପାବଳୀ ଅମାବାସ୍ୟାର ପରଦିନ ଓ ମତାନ୍ତରେ କୋଜାଗରୀ ବା କୁମାରପୂର୍ଣ୍ଣିମାଦିନ ଗୋଅଧିକାରୀ ବ୍ୟକ୍ତିମାନେ ସୁରଭଙ୍କ ପୂଜା କରିବେ ।

(ବିଶ୍ୱକୋଷ, ଭାଷାକୋଷ)

**ସୁରସା**—ନାଗ ମାତା । ବାଲ୍ମୀକି ରାମାୟଣର ନିର୍ଣ୍ଣୟ—ଏ ସମୁଦ୍ରରେ ରହୁଥିଲେ । ହନୁମାନ୍ ସୀତାଙ୍କୁ ଠାବ କରିବାକୁ ସମୁଦ୍ର ଡେଇଁ ଗଲାବେଳେ ଏ ଦେବ ଗନ୍ଧର୍ବଙ୍କ ଅନୁରୋଧରେ ରାକ୍ଷସୀ ରୂପ ଧାରଣ କରି କ୍ଷଣକାଳ

ହନୁମାନଙ୍କ ବଳ ପରୀକ୍ଷା କରିବା ପାଇଁ ତାଙ୍କୁ ବାଧା ଦେଇଥିଲେ । ହନୁମାନ୍ ଅତି କ୍ଷୁଦ୍ର ରୂପ ଧାରଣ କରି ଏହାଙ୍କ ପେଟରେ ପଶି ପୁଣି ବାହାରି ପଡ଼ିଲେ । ଏହା ଦେଖି ସୁରସା ଅତିଶୟ ପ୍ରୀତା ହେଲେ ।
(ଭାଷାକୋଷ)

**ସୁଲୋଚନା**—ପଦ୍ମପୁରାଣୋକ୍ତ ମାଧବରାଜଙ୍କ ପତ୍ନୀ । ଏ ପ୍ଲକ୍ଷ ଦ୍ୱୀପ ରାଜା ଗୁଣାକରଙ୍କ କନ୍ୟା । ଏହାଙ୍କୁ ମାଧବ ରାଜା ଗାନ୍ଧର୍ବ ବିଧିରେ ବିବାହ କରିଥିଲେ । ଏ ଆଦର୍ଶ ପତ୍ନୀରୂପେ ସମ୍ମାନିତା (ଭାଷାକୋଷ) । ହିନ୍ଦୀ ଶବ୍ଦସାଗର ନିର୍ଣ୍ଣୟ ଦଏ ସେ ବାସୁକିଙ୍କ କନ୍ୟା ଓ ମେଘନାଦଙ୍କ ସ୍ତ୍ରୀଙ୍କ ନାମ ସୁଲୋଚନା ।

**ସୁଶର୍ମା**—ତ୍ରିଗର୍ତ୍ତରାଜ । ମତ୍ସ୍ୟ ଦେଶାଧିପତି ବିରାଟ ଏହାଙ୍କ ରାଜ୍ୟ ଅଧିକାର କରି ନେଇଥିଲେ । ସୁଶର୍ମା ରାଜ୍ୟଚ୍ୟୁତ ହୋଇ କୁରୁରାଜ ଦୁର୍ଯ୍ୟୋଧନଙ୍କ ଆଶ୍ରୟରେ ଥିଲେ । ଏହି ସମୟରେ କୀଚକ ବିରାଟରାଜାଙ୍କ ସେନାପତି ଥିଲେ ସେଥିଲାଗି ଦୁର୍ଯ୍ୟୋଧନ ବିରାଟ ରାଜ୍ୟ ଆକ୍ରମଣ କରିବା ପାଇଁ ସାହାସ କରୁ ନଥିଲେ । କୀଚକଙ୍କ ମୃତ୍ୟୁ ପରେ ଦୁର୍ଯ୍ୟୋଧନ ସୁଶର୍ମାଙ୍କ ସହିତ ସୈନ୍ୟଦଳ ଧରି ବିରାଟଙ୍କ ଦକ୍ଷିଣ ଗୋ ଗୃହ ଆକ୍ରମଣ କଲେ । ସ୍ୱୟଂ ବିରାଟ ଧେନୁ ରକ୍ଷା ପାଇଁ ସୁଶର୍ମା ସହିତ ଯୁଦ୍ଧ କଲେ । ମାତ୍ର ସୁଶର୍ମା ତାଙ୍କୁ ପରାଜିତ ଓ ବନ୍ଦୀ କରି ନିଜ ରାଜ୍ୟ ଅଭିମୁଖରେ ଯାତ୍ରା କଲେ । ପାଣ୍ଡବମାନେ ଏତିକିବେଳେ ଅଜ୍ଞାତବାସ କରୁଥିଲେ ବିରାଟ ରାଜ୍ୟରେ । ଯୁଧିଷ୍ଠିରଙ୍କ ଆଦେଶକ୍ରମେ ଭୀମ ସୁଶର୍ମାଙ୍କୁ ପରାସ୍ତ କରି ବିରାଟଙ୍କୁ ଉଦ୍ଧାର କଲେ । କୁରୁକ୍ଷେତ୍ର ଯୁଦ୍ଧରେ ସୁଶର୍ମା କୌରବ ପକ୍ଷରେ ଥିଲେ । ସଂଶପ୍ତକ ଯୁଦ୍ଧରେ ଅର୍ଜ୍ଜୁନଙ୍କ ଦ୍ୱାରା ଏ ନିହତ ହେଲେ । (ଚରିତାଭିଧାନ ଓ ଭାଷାକୋଷ)

**ସୁଶ୍ରୁତ**—ହିନ୍ଦୁ ଚିକିତ୍ସାଶାସ୍ତ୍ର ପ୍ରଣେତା ଓ ବିଶ୍ୱାମିତ୍ର ମୁନିଙ୍କ ପୁଅ । ଏ କାଶୀକୁ ଯାଇ ଧନ୍ୱନ୍ତରୀଙ୍କ ଅବତାର ଦିବୋଦାସଙ୍କ ଠାରୁ ଚିକିତ୍ସା ଶାସ୍ତ୍ର ଶିକ୍ଷା କରିଥିଲେ । ଦ୍ୱାପର ଯୁଗରେ ସୁଶ୍ରୁତ ଋଷିଙ୍କ ପ୍ରଣୀତ ଶ୍ରୁତସଂହିତା ନାମକ ଚିକିତ୍ସା ଗ୍ରନ୍ଥବିଶେଷ । (ଭାଷାକୋଷ)

**ସୁଷେଣ, ସୁସେନ**—ନଳଙ୍କ ଶ୍ୱଶୁର (ସୁଷେଣ ଦେଖ)

**ସୂର୍ଯ୍ୟ**—ପ୍ରଜାପତି ଋଷି କଶ୍ୟପଙ୍କ ପୁତ୍ର । ଅଦିତିଙ୍କ ଗର୍ଭରୁ ଏ ଜନ୍ମ ହୋଇଥିଲେ । ବିଶ୍ୱକର୍ମା ନନ୍ଦିନୀ ସଂଜ୍ଞା ଏହାଙ୍କର ପତ୍ନୀ । ଏହାଙ୍କ ଗର୍ଭରୁ

ସୂର୍ଯ୍ୟଙ୍କ ଔରସରେ ବୈବସ୍ୱତ ମନୁ ଓ ଯମ ନାମକ ଦୁଇ ପୁତ୍ର ଏବଂ ଯମୁନା ନାମ୍ନୀ ଏକ କନ୍ୟା ଜନ୍ମିଥିଲେ । ସୂର୍ଯ୍ୟଙ୍କ ଅପର ପତ୍ନୀ ଛାୟା ଶନି ଓ ତପତୀଙ୍କର ମାତା (ଛାୟା ଦେଖ) । କପିରାଜ ସୁଗ୍ରୀବ ଓ ଦାନବୀର କର୍ଣ୍ଣ ସୂର୍ଯ୍ୟଙ୍କର ପୁତ୍ର । ପକ୍ଷୀରାଜ ଗରୁଡଙ୍କ ଭାଇ ଅରୁଣ ଏହାଙ୍କର ସାରଥି । ରାବଣ ତ୍ରିଲୋକ ବିଜୟ ଉପଲକ୍ଷେ ସୂର୍ଯ୍ୟଲୋକରେ ପହଞ୍ଚିବାରୁ ସୂର୍ଯ୍ୟ ପ୍ରକାରାନ୍ତରେ ରାବଣ ନିକଟରେ ପରାଜୟ ସ୍ୱୀକାର କରିଥିଲେ । ଏକଦା ଜମଦଗ୍ନି ସ୍ୱପତ୍ନୀ ରେଣୁକାଙ୍କ ସହିତ ନର୍ମଦା ତଟରେ ଦିବା ମୈଥୁନରେ ରତ ଥିବା ସମୟରେ ସୂର୍ଯ୍ୟ ବ୍ରାହ୍ମଣ ରୂପରେ ଉପସ୍ଥିତ ହୋଇ ତାଙ୍କ ମୈଥୁନରେ ବାଧା ଦେବାରୁ ଜମଦଗ୍ନି ସୂର୍ଯ୍ୟଙ୍କୁ ଶାପ ଦେଲେ ଯେ, ତୁମ୍ଭେ ରାହୁଗ୍ରସ୍ତ ହେବ । ସେହି ଶାପଯୋଗୁଁ ସୂର୍ଯ୍ୟ ରାହୁଗ୍ରସ୍ତ ହୁଅନ୍ତି ।

ବେଦ ମତରେ ବ୍ରାହ୍ମଣମାନେ ସନ୍ଧ୍ୟା କରିବା ସମୟରେ ସୂର୍ଯ୍ୟମଣ୍ଡଳ ମଧ୍ୟବର୍ତ୍ତୀ ସରସିଜାସନ ସନ୍ନିବିଷ୍ଟ ନାରାୟଣଙ୍କୁ ଧ୍ୟାନ କରନ୍ତି । ଗାୟତ୍ରୀ, ସାବିତ୍ରୀ ଓ ସରସ୍ୱତୀ ଦେବୀମାନେ ମଧ୍ୟ ସୂର୍ଯ୍ୟମଣ୍ଡଳ ମଧ୍ୟସ୍ଥା । ବ୍ରାହ୍ମଣମାନଙ୍କର ଗାୟତ୍ରୀମନ୍ତ୍ର କେବଳ ସୂର୍ଯ୍ୟଙ୍କୁ ନାରାୟଣ ରୂପରେ କଳ୍ପନା କରି ସ୍ତବ କରିବା ମନ୍ତ୍ର । ସୂର୍ଯ୍ୟଙ୍କର ବାରମାସରେ ପୂଜନୀୟ ରୂପ ଓ ନାମ ଯଥା :—ମାର୍ଗଶିର-ମିତ୍ର, ପୌଷ-ବିଷ୍ଣୁ ସନାତନ, ମାଘ-ଅରୁଣ, ଫାଲ୍‌ଗୁନ-ସୂର୍ଯ୍ୟ, ଚୈତ୍ର-ବେଦାଙ୍ଗ, ବୈଶାଖ-ଭାନୁ, ଜ୍ୟେଷ୍ଠ-ଇନ୍ଦ୍ର, ଆଷାଢ଼-ରବି, ଶ୍ରାବଣ-ଗଭସ୍ତି, ଭାଦ୍ର-ଯମ, ଆଶ୍ୱିନ-ସ୍ୱର୍ଣ୍ଣରେତା, କାର୍ତ୍ତିକ-ଦିବାକର । ଅଧିମାସ-ପୁରୁଷ (ଆଦିତ୍ୟ ହୃଦୟ) । ଓଡ଼ିଶାର କୋଣାର୍କରେ ସୂର୍ଯ୍ୟମନ୍ଦିର ନିର୍ମିତ ହୋଇଥିଲା । ଏହିଠାରେ ଶାମ୍ବ ସୂର୍ଯ୍ୟ ପୂଜା କରି କୁଷ୍ଠ ବ୍ୟାଧିମୁକ୍ତ ହୋଇଥିଲେ । ହିନ୍ଦୁ ମତରେ ସୂର୍ଯ୍ୟଙ୍କ ରଥର ଗୋଟିଏ ଚକ ଓ ଏହା ସାତଗୋଟି ଘୋଡ଼ା ଦ୍ୱାରା ଚାଳିତ ।

ଏକ ଚକ୍ର ରଥୋଯସ୍ୟ ଦିବ୍ୟଃ କନକ ଭୂଷଣଃ ।
ସ ମେ ଭବତୁ ସୁପ୍ରୀତଃ ପଦ୍ମହସ୍ତୋ ଦିବାକରଃ ।

(ଚରିତାଭିଧାନ ଓ ଭାଷାକୋଷ)

**ସୂର୍ଯ୍ୟବଂଶ**—ସୂର୍ଯ୍ୟଙ୍କଠାରୁ ଜାତ ସନ୍ତାନ ପରଂପରାକ୍ରମ ବଂଶ । ପରମେଶ୍ୱରଙ୍କଠାରୁ ବ୍ରହ୍ମା, ବ୍ରହ୍ମାଙ୍କଠାରୁ ମରୀଚି, ମରୀଚିଙ୍କ ପୁତ୍ର କଶ୍ୟପ, କଶ୍ୟପଙ୍କ ପୁତ୍ର ସୂର୍ଯ୍ୟ, ସୂର୍ଯ୍ୟଙ୍କ ପୁତ୍ର ବୈବସ୍ୱତ ମନୁ (ଏ ସତ୍ୟଯୁଗରେ ଭାରତର ରାଜା ଥିଲେ), ଏହାଙ୍କ ପୁତ୍ର ଇକ୍ଷ୍ୱାକୁ ଓ ତାହାଙ୍କ ବଂଶଧରମାନେ (ଯଥା—ଦିଲୀପ,

ଅଜ, ରଘୁ ଓ ଦଶରଥ) ତ୍ରେତା ଯୁଗରେ ରାଜା ଥିଲେ । ତ୍ରେତା ଓ ଦ୍ୱାପର ସନ୍ଧିରେ ଦଶରଥଙ୍କ ପୁତ୍ର ରାମଚନ୍ଦ୍ର ଜନ୍ମ ହେଲେ ତାହାଙ୍କ ପୁତ୍ର କୁଶ ଓ ତାଙ୍କ ବଂଶଧରମାନେ କଳିଯୁଗର ସହସ୍ରବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ ।

ଭାରତର ଦୁଇ ପ୍ରାଚୀନ ରାଜବଂଶ (ଚନ୍ଦ୍ରବଂଶ ଓ ସୂର୍ଯ୍ୟବଂଶ) ମଧ୍ୟରୁ ଏହା ଏକତମ । ଜନକରାଜା ମତାନ୍ତରରେ ଚନ୍ଦ୍ରବଂଶୀୟ ଥିଲେ । ବିବାହ ସୂତ୍ରରେ (ଜନକଙ୍କ କନ୍ୟା ସହିତ ଦଶରଥଙ୍କ ପୁତ୍ରମାନଙ୍କ ବିବାହ ଦ୍ୱାରା) ଚନ୍ଦ୍ର ଓ ସୂର୍ଯ୍ୟବଂଶ ମିଳିତ ହେଲେ । (ସୂର୍ଯ୍ୟ ଓ ଚନ୍ଦ୍ରବଂଶର ବଂଶରକ୍ଷା ପାଇଁ ରାୟ ବାହାଦୂର ରାଜକିଶୋର ଦାସଙ୍କ ଭାରତଭଗର ନବମ ଖଣ୍ଡ କୋଷ୍ଠପତ୍ର ଦେଖନ୍ତୁ) । ଜ୍ଞାନକୋଷ ୭ମ ଭାଗ ୮୭୩-୮୪ ପୃଷ୍ଠାରେ ଏହାର ଏକ ଅବିକଳ ନକଲ ଦିଆଯାଇଛି ।

**ସୃଞ୍ଜୟ** —ମହାରାଜ ଶୈତ୍ୟଙ୍କ ପୁତ୍ର । ମହର୍ଷି ପର୍ବତ ଓ ଦେବର୍ଷି ନାରଦଙ୍କ ସହିତ ଏହାଙ୍କର ବନ୍ଧୁତା ଥିଲା । ଦିନେ ଏହି ସୁନ୍ଦରସ୍ୱ ରାଜା ସୃଞ୍ଜୟଙ୍କ ଗୃହରେ ଉପସ୍ଥିତ ହେଲେ । ତାଙ୍କର ଗୋଟିଏ ଅବିବାହିତା କନ୍ୟା ସେମାନଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ନାରଦଙ୍କ ଅନୁରୋଧ ମତେ ରାଜା ଉକ୍ତ କନ୍ୟାଟିକୁ ତାଙ୍କୁ ବିବାହ ଦେବାକୁ ସ୍ୱୀକାର କଲେ । ମହର୍ଷି ପର୍ବତ ଏଣେ ସେ କନ୍ୟାଟିକୁ ଲାଭ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ସେ ନାରଦଙ୍କୁ ଶାପ ଦେଲେ ଓ ନାରଦ ତାଙ୍କୁ ପ୍ରତିଅଭିଶାପ ମଧ୍ୟ ଦେଲେ । ଉଭୟଙ୍କ ଶାପ ଫଳରେ ଏକ ଅନ୍ୟକୁ ଛାଡ଼ି ସ୍ୱର୍ଗକୁ ଯାଇ ପାରିଲେ ନାହିଁ । ଶେଷରେ ନାରଦଙ୍କୁ କନ୍ୟାଟିକୁ ବିବାହ କଲେ । ସୃଞ୍ଜୟ ବହୁକାଳ ଯାଏ ଅପୁତ୍ରିକ ଥିଲେ । ନାରଦଙ୍କ ବର ପ୍ରସାଦରୁ ତାଙ୍କର ପରେ ସୁବର୍ଣ୍ଣଷ୍ଠୀବୀ ବୋଲି ଏକ ମହାତେଜସ୍ୱର ପୁତ୍ର ଜନ୍ମିଲେ । ଏହାଙ୍କର ମୂତ୍ର, ପୁରୀଷ, କ୍ଳେଦ ଓ ସ୍ୱେଦ ସମୁଦାୟ କାଞ୍ଚନମୟ । ଦସ୍ୟୁମାନେ ସୁବର୍ଣ୍ଣ ପ୍ରାପ୍ତି ଆଶାରେ ରାଜ ସଦନରେ ପଶି ତାଙ୍କୁ ଚୋରାଇ ନେଲେ ଏବଂ ଅରଣ୍ୟରେ ତାଙ୍କୁ ଖଣ୍ଡ ଖଣ୍ଡ କରି କାଟି ବାଣ୍ଟି ନେଲେ । କିନ୍ତୁ ସେମାନେ ବିଫଳ ହେଲେ ପୁନା କପାଇ ପରସ୍ପର ମଧ୍ୟରେ କଳହ କରି ମଲେ । ପୁତ୍ର ଶୋକାତୁର ସୃଞ୍ଜୟ ଅଧୈର୍ଯ୍ୟ ହୋଇପଡ଼ିଲେ । ନାରଦ ତାଙ୍କୁ ଅନେକ ଉପଦେଶ ଦେଲେ । କିନ୍ତୁ ରାଜା ଶାନ୍ତ ପାଇଲେ ନାହିଁ । ଅବଶେଷରେ ନାରଦ ସୁବର୍ଣ୍ଣଷ୍ଠୀବୀଙ୍କୁ ପୁଣି ବଞ୍ଚାଇଦେଲେ । (ମହାଭାରତ)

(୨) ମନୁଙ୍କର ଏକ ପୁତ୍ରର ନାମ । (ହିନ୍ଦୀ ଶବ୍ଦସାଗର)

(୩) ଧୃଷ୍ଟଦ୍ୟୁମ୍ନ ଯେଉଁ ରାଜ ବଂଶରେ ଜନ୍ମିଥିଲେ ତାର ନାମ । (ହିନ୍ଦୀ ଶବ୍ଦସାଗର) (୪) ଯଯାତି ବଂଶୀୟ କାଳନର ରାଜାଙ୍କ ଏକ ପୁତ୍ର ।

(ହିନ୍ଦୀ ଶବ୍ଦସାଗର, ଚରିତାଭିଧାନ, ଭାଷାକୋଷ)

**ସୋମ**—ବ୍ରହ୍ମାଙ୍କ ମାନସପୁତ୍ର ଅତ୍ରିଙ୍କର ପୁଅ । ଏ ଦକ୍ଷଙ୍କର ୨୭ କନ୍ୟା (ନକ୍ଷତ୍ରଙ୍କୁ) ବିବାହ କରିଥିଲେ । ଏହି ସତାଇଶ ପତ୍ନୀଙ୍କ ମଧ୍ୟରେ ରୋହିଣୀ ଶ୍ରେଷ୍ଠା । (ବଂଶ ସପ୍ତାଧିକ ଭାଗବତ । ବଧୂ ରୋହିଣୀ ତାଙ୍କ ପ୍ରିୟବତୀ । ବି. ବି.-ଉପେନ୍ଦ୍ରଭଞ୍ଜ) । ସୋମ ଅନ୍ୟ ସ୍ତ୍ରୀମାନଙ୍କୁ ଅନାଦର କରି ରୋହିଣୀଙ୍କୁ ଅଧିକ ସ୍ନେହ କରୁଥିଲେ ଓ ତାଙ୍କୁ ମନରେ ସମଧିକ ଆଦର ମଧ୍ୟ କରୁଥିଲେ । ଦକ୍ଷଙ୍କ କନ୍ୟାମାନେ ପିତାଙ୍କ ନିକଟରେ ସୋମଙ୍କ ବିରୁଦ୍ଧରେ ଅଭିଯୋଗ କଲେ । ଦକ୍ଷଙ୍କ ଶାପରେ ସୋମ ବିନାଶ ପ୍ରାପ୍ତ ହେବାରୁ ସମଗ୍ର ବ୍ରହ୍ମାଣ୍ଡ ଉଚ୍ଛନ୍ନ ହେବାକୁ ବସିଲା । ଦେବତାମାନେ ଏହା ଦେଖି ବିଷ୍ଣୁଙ୍କ ଶରଣାପନ୍ନ ହେଲେ ଓ ବିଷ୍ଣୁଙ୍କ ଆଦେଶରେ ଦେବାସୁରମାନେ ସମୁଦ୍ର ମନ୍ଥନ କରିବାରୁ ସମୁଦ୍ରରୁ ସୋମ (ଚନ୍ଦ୍ର) ପୁଣି ଜାତ ହେଲେ । ସୋମଙ୍କର ୧୬ କଳା ମଧ୍ୟରୁ ପୂର୍ଣ୍ଣିମା ପରଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ଗୋଟିଏ ଗୋଟିଏ କଳାକୁ ଦେବତା-ମାନେ ପାନ କରନ୍ତି ଓ ଶେଷରେ ଗୋଟିଏ କଳା ରହିଯାଏ । ତାହା ଯାଇଁ ସୂର୍ଯ୍ୟ ମଣ୍ଡଳରେ ପଶେ ଏବଂ ଶୁକ୍ଳ ପକ୍ଷରେ ସୂର୍ଯ୍ୟ ପ୍ରତି ରାତ୍ରିରେ ସୋମଙ୍କ-ଠାରେ ଗୋଟିଏ ଲେଖାଏଁ କଳା ଯୋଗକରି ପୂର୍ଣ୍ଣିମା ସୁଦ୍ଧା ସୋମଙ୍କୁ ପୂର୍ଣ୍ଣ ୧୬ କଳା ଯୁକ୍ତ କରନ୍ତି । ସୋମ ବାୟୁକୋଣ, ସ୍ତ୍ରୀ, ବୈଶ୍ୟଜାତି, ସତ୍ତ୍ୱଗୁଣ, ଲବଣ ରସ, ମୃଗଶିରା ନକ୍ଷତ୍ର ଓ ସମୁଦ୍ରମାନଙ୍କର ଅଧିପତି । ପୁରାଣ ମତରେ ଏହାଙ୍କ ଶରୀର ଏକ ହସ୍ତ ପ୍ରମାଣ, ପରିଧାନ ଶ୍ୱେତବସ୍ତ୍ର, ବର୍ଣ୍ଣ ଶୁକ୍ଳ । ଏହାଙ୍କର ଏକ ହସ୍ତରେ ବରନାମକ ଅସ୍ତ୍ର ଓ ଅନ୍ୟ ହସ୍ତରେ ଗଦା । ଏହାଙ୍କ ରଥର ଅଶ୍ୱ ସଂଖ୍ୟା ୧୦ । ଏ ଶ୍ୱେତପଦ୍ମ ମଧ୍ୟସ୍ଥିତ ଉପାଧି ଦୈବତ, ଜଳ ପ୍ରତ୍ୟାଧି ଦୈବତ ଓ ସୂର୍ଯ୍ୟାଭିମୁଖ । ସୋମ ଔଷଧିମାନଙ୍କୁ ପୁଷ୍ଟ କରନ୍ତି । ଏହି ଔଷଧିକୁ ଗାଭୀମାନେ ଭକ୍ଷଣ କରି ଦୁଗ୍ଧ ଦିଅନ୍ତି । ଏହି କ୍ଷୀର ଅମୃତରୂପ ଧାରଣ କରିବାରୁ ବ୍ରାହ୍ମଣମାନେ ଏତଦ୍ୱାରା ହୋମ (ଯଜ୍ଞ) କରନ୍ତି ଓ ହୋମ ଦ୍ୱାରା ସୋମଙ୍କର କଳାମାନ ବୃଦ୍ଧି ହୁଏ ଓ ଉକ୍ତ କଳାମାନଙ୍କୁ ଦେବତାମାନେ ପାନ କରି ଜୀବନ ଧାରଣ କରନ୍ତି । ସୋମଙ୍କ ଔରସରେ ଗୁରୁପତ୍ନୀ ତାରାଙ୍କ ଗର୍ଭରୁ ବୁଧ ଜନ୍ମ ହୋଇଥିଲେ । (ଚନ୍ଦ୍ର ଦେଖ)

(୨) ବୈଦିକ କାଳରେ ଆରାଧିତ ଦେବତା ବିଶେଷଙ୍କ ନାମ ସୋମ (ହିନ୍ଦୀ ଶବ୍ଦସାଗର) । ଋକ୍ ବେଦରେ ଏହାଙ୍କର ଅନେକ ସ୍ତୁତି ଅଛି । ଇନ୍ଦ୍ର ଓ

ବରୁଣଙ୍କ ପରି ଏହାଙ୍କର ମାନବୀୟ ରୂପ କଳ୍ପିତ ହୋଇ ନଥିଲା । ଏ ସୂର୍ଯ୍ୟଙ୍କ ପରି ପ୍ରକାଶମାନ, ବହୁ ବେଗବାନ୍, ନେତା, ଯୋଦ୍ଧା, ଅନ୍ନ, ସଂପତ୍ତି ଓ ଗୋଧନ ଦାନକାରୀ ବୋଲି କଳ୍ପିତ । ଏ ଇନ୍ଦ୍ରଙ୍କ ସଙ୍ଗେ ଇନ୍ଦ୍ରଙ୍କ ରଥରେ ବସି ଯୁଦ୍ଧକୁ ଯାଉଥିଲେ ଓ କେଉଁ କେଉଁ ସ୍ଥଳରେ ଏ ଇନ୍ଦ୍ରଙ୍କ ସାରଥି ଥିଲେ ବୋଲି କଳ୍ପନା କରାଯାଇଛି । ଆର୍ଯ୍ୟମାନଙ୍କ ଇରାନୀ ଶାଖାର ବ୍ୟକ୍ତି-ମାନେ ମଧ୍ୟ ଏହାଙ୍କୁ ପୂଜା କରୁଥିଲେ । ଜେନ୍ଦାବେସ୍ତା ଗ୍ରନ୍ଥରେ ଏହାଙ୍କ ନାମ ହ ଓ ମ ବା ହୋମ ହୋଇଅଛି । (ହିନ୍ଦୀ ଶବ୍ଦସାଗର)

ଅଥର୍ବ ବେଦରେ ଓ ଶତପଥ ବ୍ରାହ୍ମଣରେ ସୋମ ଦେବତାଙ୍କୁ ଚନ୍ଦ୍ର ବୋଲାଯାଇଅଛି । (ବିଶ୍ୱକୋଷ)

ହିନ୍ଦୀ ଶବ୍ଦସାଗର ମତରେ ଯଜ୍ଞ ନିମିତ୍ତ ସୋମରସ ଚମୂତ୍ରି ବାହାର କରିବାର ଦିନକୁ ସୋମବାର ବୋଲି କହନ୍ତି । ପୁଣି ଯେଉଁ ଯଜ୍ଞରେ ସୋମରସ ଆହୁତି ଦିଆଯାଏ ତାହା ସୋମ ଯଜ୍ଞ ନାମରେ ଅଭିହିତ ହୁଏ । ହନୁମାନଙ୍କ ମତରେ ମାଲକୋଶ ରାଗର ଏକ ପୁତ୍ର ଅର୍ଥାତ୍ ରାଗିଣୀ ବିଶେଷ ।

**ସୋମଗିରି**—(୧) ଉତ୍ତର ସମୁଦ୍ରସ୍ଥିତ ଦେବଗଣଙ୍କ ଅଗମ୍ୟ ଓ ଅଲଙ୍ଘ୍ୟ ପୁରାଣୋକ୍ତ ପର୍ବତ ବିଶେଷ ।

(୨) ରାମାୟଣ କିଷ୍କିନ୍ଧ୍ୟା କାଣ୍ଡ ବର୍ଣ୍ଣିତ ଦେବାଧି ଦେବ ଶଙ୍କରଙ୍କ ଆଳୟ । ପୃଥିବୀର ଉତ୍ତର ସୀମାନ୍ତରେ ଅବସ୍ଥିତ ପର୍ବତ । (ଭାଷାକୋଷ)

(୩) ସୁମେରୁସ୍ଥ ଚିର ପ୍ରତିଫଳିତ ଚନ୍ଦ୍ରାଲୋକ (ବିଶ୍ୱକୋଷ) । ହିନ୍ଦୀ ଶବ୍ଦସାଗର ମତରେ ଏହାକୁ ମେରୁ ଜ୍ୟୋତି ବା ମେରୁପ୍ରଭା କହନ୍ତି । ଇଂରାଜୀରେ Aurora Borialis.

(୪) ପୂଜନୀୟ ବଲ୍ଲମଟ୍ଟଲ ଠାକୁରଙ୍କ ମନ୍ତ୍ରଗୁରୁ ଜଣେ ସନ୍ନ୍ୟାସୀ—ସୋମଗିରି ଗୁରୁଦେବ ।

**ସୋମତୀର୍ଥ**—ତ୍ରିକାଣ୍ଡ ଶେଷ ମତରେ ପ୍ରଭାସ ତୀର୍ଥ । ଭାରତର ପଶ୍ଚିମ ପ୍ରଦେଶସ୍ଥ ତୀର୍ଥ ବିଶେଷ । ବିଶ୍ୱକୋଷ ନିର୍ଣ୍ଣିତ୍ୟ ଦଏ—ଏଠାରେ ସୋମ ବା ଚନ୍ଦ୍ର ଦୀର୍ଘକାଳ ତପସ୍ୟା କରି ଯକ୍ଷ୍ମାରୋଗମୁକ୍ତ ହୋଇ ସ୍ୱୀୟ ପ୍ରଭାକୁ ପୁନଃ ପ୍ରାପ୍ତ ହୋଇଥିବାରୁ ଏ ତୀର୍ଥକୁ ସୋମତୀର୍ଥ କହନ୍ତି । ବୈଶାଖ ମାସ ଶୁକ୍ଳ ଦ୍ୱାଦଶୀ ଦିନ ଏ ତୀର୍ଥରେ ସ୍ନାନ କଲେ ମହାପୁଣ୍ୟଲାଭ ହୁଏ । ଏହି ସ୍ଥାନ ଅଧୁନା ବମ୍ବେର

ପ୍ରେସିଡ଼େନ୍‌ସି କାଣାଡ଼ା ଉପକୂଳର ବନ୍ଦୁର ବା ପିଣ୍ଡାପୁରା ନାମକ ସ୍ଥାନ ନିକଟରେ ଅବସ୍ଥିତ ।

ରାଜକବି କୃଷ୍ଣସିଂହ ମହାଭାରତ ବନପର୍ବରେ ନିର୍ଣ୍ଣୟ ଦିଅନ୍ତି—

ଜମ୍ବୁନ୍ଦୀରେ ଯେ ସୋମତୀର୍ଥ ରହିଛନ୍ତି ।
ତହିଁରେ ସ୍ନାନ କଲେ ଜନମ ଲୁହନ୍ତି ।

**ସୋମଦତ୍ତ**—ପ୍ରାଚୀନ ଭାରତର ଜନୈକ ରାଜା । ଏହାଙ୍କ ପିତା ବାହ୍ଲିକ ଓ ପୁତ୍ର ଭୂରିଶ୍ରବା । ଦେବକ ରାଜକନ୍ୟା ଦେବକୀଙ୍କ ସ୍ୱୟମ୍ବର ସଭାରେ ଏ ଥିଲେ । ଯଦୁବଂଶୀୟ ବୀରଶିନି ବସୁଦେବଙ୍କ ପାଇଁ ଦେବକୀଙ୍କୁ ବଳପୂର୍ବକ ହରଣ କରିବାକୁ ଉଦ୍ୟତ ହେବାରୁ ଏ ଶିନିଙ୍କୁ ବାଧା ଦେଲେ, କିନ୍ତୁ ପରାସ୍ତ ହୋଇ ସଭାରେ ଶିନିଙ୍କଠାରୁ ଗୋଇଠା ଖାଇଲେ । ଅପମାନରେ ମ୍ରିୟମାଣ ହୋଇ ଏ ତପସ୍ୟା କଲେ ଓ ମହାଦେବଙ୍କଠାରୁ ବର ପାଇଲେ ଯେ, ଏହାଙ୍କ ପୁତ୍ର ଶିନିଙ୍କ ପୌତ୍ରଙ୍କୁ ପରାସ୍ତ କରି ଗୋଇଠା ମାରିବେ । ମହାଭାରତ ଯୁଦ୍ଧରେ ଏ କୌରବମାନଙ୍କ ପକ୍ଷରେ ଯୁଦ୍ଧ କରି ଚତୁର୍ଦ୍ଦଶ ଦିବସରେ ନିଶା ଯୁଦ୍ଧରେ ସାତ୍ୟକିଙ୍କ ଦ୍ୱାରା ନିହତ ହୋଇଥିଲେ । (ଭାଷାକୋଷ)

**ସୋମନାଥ**—ଗୁଜୁରାଟ ପ୍ରଦେଶର ନଗର ବିଶେଷ ଓ ସେଠାରେ ପ୍ରତିଷ୍ଠିତ ଶିବ ଲିଙ୍ଗଙ୍କ ନାମ । ଏହି ନଗର ଦେଓପତ୍ତନ, ପ୍ରଭାସପତ୍ତନ ଓ ବେରବେଲପତ୍ତନ ନାମରେ ମଧ୍ୟ ଖ୍ୟାତ । ଏହା ବମ୍ବେର ଅଧୀନ କାଠିଆବାଡ଼ ଅନ୍ତର୍ଗତ ଯୁନାଗଡ଼ ରାଜ୍ୟର ଗୋଟିଏ ପ୍ରାଚୀନ ନଗର । ଏ ନଗର ସୋମନାଥ ଦେବଙ୍କ ମନ୍ଦିର ନିମିତ୍ତ ଖ୍ୟାତ । ଏହି ମନ୍ଦିରରେ ଦେବ ଦେବ ଶିବଙ୍କ ଲିଙ୍ଗ ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛି । ଏହାର ପଶ୍ଚିମରେ ଭାଟକୁଣ୍ଡ ନାମକ ଜଳାଶୟ ଅଛି । ପ୍ରବାଦ ଅଛି ଶ୍ରୀକୃଷ୍ଣ ଏହି ଜଳରେ ତନୁ ତ୍ୟାଗ କରିଥିଲେ । ଗିର୍ଣ୍ଣାର ପର୍ବତ ଏହି ମନ୍ଦିରଠାରୁ ଅଳ୍ପ ଦୂରରେ ଅବସ୍ଥିତ । ଏ ଶିବମୂର୍ତ୍ତି ବହୁମୂଲ୍ୟ ପ୍ରସ୍ତରରେ ନିର୍ମିତ ହୋଇଥିଲା । ସୋମନାଥ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରେ ଏକତମ ।

ଗଜନୀର ମାମୁଦ ୧୦୨୪ ଖ୍ରୀଷ୍ଟାବ୍ଦରେ ଏ ମନ୍ଦିର ବିଧ୍ୱସ୍ତ କରିଥିଲେ । ଇତିହାସ ପ୍ରକରଣରେ ସୋମନାଥ ମନ୍ଦିର ଲୁଣ୍ଠନ ବିଷୟରେ ବିସ୍ତୃତ ବିବରଣୀ ଦିଆଯିବ ।

**ସୋମବଂଶ**—ପ୍ରାଚୀନ ଭାରତର ରାଜବଂଶ ବିଶେଷ । ଗରୁଡ଼ ପୁରାଣ ମତରେ—ବ୍ରହ୍ମା ନାରାୟଣଙ୍କ ପୁତ୍ର । ବ୍ରହ୍ମାଙ୍କ ପୁତ୍ର ଅତ୍ରି । ଅତ୍ରିଙ୍କ ପୁତ୍ର

ସୋମ । ସୋମଙ୍କ ଔରସରେ ବୃହସ୍ପତିଙ୍କ ପତ୍ନୀ ତାରାଙ୍କଠାରୁ ବୁଧ ଜନ୍ମିଥିଲେ । ପୁରୁରବା ବୁଧଙ୍କ ପୁତ୍ର । ପୁରୂରବାଙ୍କ ଔରସରେ ଉର୍ବଶୀଙ୍କଠାରୁ ଛଅ ପୁଅ ଜନ୍ମିଲେ । ସେହି ପୁତ୍ର କନ୍ୟା ପରଂପରାଙ୍କ ବଂଶର ବିଭିନ୍ନ ଶାଖାରେ ବିଶ୍ୱାମିତ୍ର, କନ୍ୟା ସତ୍ୟବତୀ, ଯମଦଗ୍ନି, ପରଶୁରାମ, ନହୁଷ, ଦେବକ, ଉଗ୍ରସେନ, ପଣ୍ଡୁ, ବସୁଦେବ, ବୃଷ୍ଣି ସାତ୍ୟକି, ସତ୍ରସ୍ୱ, କୃଷ୍ଣ, ବଳରାମ, ଧୃତରାଷ୍ଟ୍ର, ପାଣ୍ଡବ, କୌରବ, ଜନମେଜୟ, ଦୁଷ୍ମନ୍ତ, ଭରତ, ଭୀମସେନ, ଅଭିମନ୍ୟୁ, ପରୀକ୍ଷିତ ଆଦି ଜନ୍ମିଥିଲେ ।

**ସୋମଯାଗ**—ବ୍ରହ୍ମବୈବର୍ତ୍ତ ଶ୍ରୀକୃଷ୍ଣ ଜନ୍ମଖଣ୍ଡ ୬୦ ଅଧ୍ୟାୟରେ ଏ ଯଜ୍ଞର ନିର୍ଦ୍ଦେଶ କରାଯାଇଛି । ଏହି ଯଜ୍ଞ ଦ୍ୱାରା ବ୍ରହ୍ମହତ୍ୟା ପାପରୁ ଲୋକ ମୁକ୍ତିଲାଭ କରେ । ଯାଜକ ପ୍ରଥମ ବର୍ଷ ସୋମଲତା ରସ ପାନ କରି, ଦ୍ୱିତୀୟ ବର୍ଷରେ କେବଳ ଜଳପାନ କରି ଏ ଯାଗ ତିନି ବର୍ଷରେ ଶେଷ କରନ୍ତି । ଯାହାର ତିନି ବର୍ଷର ପୁରୁଣା ଧାନ ଘରେ ବ୍ୟୟିତ ନହୋଇ ସଞ୍ଚିତ ଥିବ, ସେ ଏହି ଯାଗ କରି ତିନି ବର୍ଷର ସଞ୍ଚିତ ଧାନକୁ ଅନ୍ନ ଓ ଦକ୍ଷିଣାରୂପେ ବାଣ୍ଟିବେ ।

**ସୋମରୋଗ**—ଆୟୁର୍ବେଦୀୟ ଗ୍ରନ୍ଥ ଭାବପ୍ରକାଶରେ ଦୃଷ୍ଟ ହୁଏ ଯେ ଏହା ସ୍ତ୍ରୀରୋଗ ବିଶେଷ । ଏହି ରୋଗରେ ସର୍ବଦେହସ୍ଥ ଜଳୀୟ ପଦାର୍ଥ ମୂତ୍ରରୂପେ ଅତ୍ୟଧିକ ପରିମାଣରେ ନିର୍ଗତ ହୁଏ । ଏଥିରେ ଶିରୋବ୍ୟଥା, ମୁଖ ଓ ତାଳୁର ଶୁଷ୍କତା, ମୂର୍ଚ୍ଛା, ଜୃମ୍ଭା, ପ୍ରଲାପ, ଭୋଜନ ଓ ପାନରେ ଅତୃପ୍ତି ହୁଏ । ସୋମର ଅର୍ଥ ଜଳ, ସ୍ତ୍ରୀମାନଙ୍କ ଦେହରୁ ପ୍ରସ୍ରାବ ଦ୍ୱାରା ବିଶେଷ ଜଳ କ୍ଷୟ ହୋଇବାରୁ ଏହି ନାମ ଦିଆଯାଇଅଛି । ଏହା ଅତ୍ୟଧିକ ସହବାସ, ଅତି ଶୋକ ଓ ଅତି ଶ୍ରମରୁ ଜନ୍ମେ । ଏହା ସ୍ତ୍ରୀମାନଙ୍କ ମୂତ୍ରାତିସାର ରୋଗ । ଏ ରୋଗରେ ମୂତ୍ରମାର୍ଗରେ ସ୍ୱଚ୍ଛ, ନିର୍ମଳ, ବେଦନାହୀନ, ନିର୍ଗନ୍ଧ, ଶୀତଳ, ଶ୍ୱେତବର୍ଣ୍ଣ ସ୍ରାବ ନିର୍ଗତ ହୁଏ ।

ପୁରୁଷର ଏହିଭଳି ରୋଗ ହେଲେ ତାକୁ ବହୁମୂତ୍ର କହନ୍ତି ।

**ସୋମଲତା**—ପୂର୍ବେ ଯଜ୍ଞରେ ଋଷିମାନେ ଏହି ଲତାର ରସକୁ ପାନ କରୁଥିଲେ । ଏହି ଲତାରେ ୧୫ଟି କ୍ଷୁଦ୍ର ପତ୍ର ଥାଏ । ଚନ୍ଦ୍ରକଳାର ବୃଦ୍ଧି ଅନୁସାରେ ଏହାର ଗୋଟିଏ ଲେଖାଏଁ ପତ୍ର ଉଦ୍‌ଗତ ହୁଏ ଓ ହ୍ରାସ ଅନୁସାରେ ଗୋଟିଏ ଲେଖାଏଁ ପତ୍ର ଝଡ଼େ । ସୋମଲତା ଚତୁର୍ବିଂଶତି ପ୍ରକାରର । ତନ୍ମଧ୍ୟରୁ ଯାହାର ଗନ୍ଧ ଘୃତ ପରି ତାହାର ନାମ ଅଂଶୁମାନ୍ ।

ଯାହାର କନ୍ଦ କଦଳୀ କନ୍ଦ ପରି ତାହାର ନାମ ରଜତପ୍ରଭା । ରସୁଣ ପତ୍ର ପରି ଯାହାର ପତ୍ର ତାହାର ନାମ ମୁଞ୍ଜବାନ୍ । ଯାହାର ବର୍ଣ୍ଣ ସ୍ୱର୍ଣ୍ଣ ବର୍ଣ୍ଣ ଓ ଯାହା ଜଳରେ ଉତ୍ପନ୍ନ ହୁଏ ତାହାର ନାମ ଚନ୍ଦ୍ରମା । ଯେଉଁ ଲତା ସାପକାତି ପରି ତାହାର ନାମ ଗୁରୁଡ଼ାହୃତ ଓ ଶ୍ୱେତାକ୍ଷ । କନ୍ତୁ ସମସ୍ତ ଜାତର ପନ୍ଦର ଗୋଟି ପତ୍ର ଓ ପତ୍ରର ପୂର୍ବୋକ୍ତ ହ୍ରାସବୃଦ୍ଧି ଲକ୍ଷିତ ହୁଏ । ନାମଭେଦ ଓ ରୂପଭେଦ ହେଲେ ମଧ୍ୟ ସମସ୍ତଙ୍କର ଗୁଣ ସମାନ । ମହେନ୍ଦ୍ର, ମଳୟ, ଶ୍ରୀପର୍ବତ, ଦେବଗିରି, ହିମାଳୟ, ପାରିପାତ୍ର, ସହ୍ୟ ଓ ବିନ୍ଧ୍ୟ ପ୍ରଭୃତି ପର୍ବତରେ ଏବଂ କାଶ୍ମୀ ଦେଶସ୍ଥ କ୍ଷୁଦ୍ର ସାନସରୋବରରେ ଏ ଲତାର ଉତ୍ପତ୍ତି ହୁଏ ବୋଲି ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି । ବେଦ ଆଦି ପ୍ରାଚୀନ ଗ୍ରନ୍ଥମାନଙ୍କରେ ସୋମଲତାର ବହୁ ଉଲ୍ଲେଖ ଅଛି । ଏଥିର ରସ ହଳଦିଆ ଓ ମାଦକ । ଏହାକୁ ବୈଦିକ ଋଷିମାନେ ପାନ କରୁଥିଲେ । ଏହା ପାନ କଲେ ଜରା, ମୃତ୍ୟୁ, ପାପ ଓ ବ୍ୟାଧିରୁ ମୁକ୍ତ ମିଳୁଥିଲା । ଏହା ଅମୃତସମ ବୋଲି ବର୍ଣ୍ଣିତ ହୋଇଅଛି । ଚରକ ଓ ସୁଶ୍ରୁତ ଗ୍ରନ୍ଥରେ ଏ ଲତାର ଓ ରସର ଉଲ୍ଲେଖ ଅଛି । ମାତ୍ର ସେ ଗ୍ରନ୍ଥଦ୍ୱୟର ରଚନା ସମୟରୁ ଏହା ଦୁଷ୍ପ୍ରାପ୍ୟ ହୋଇଥିବା ଜଣାଯାଏ । ବର୍ତ୍ତମାନ କାଳରେ ଏବଂବିଧ ଗୁଣବିଶିଷ୍ଟ ଲତା ଦୁର୍ଲଭ । ଚନ୍ଦ୍ରଙ୍କ ତିଥି ଅନୁସାରେ ସୋମଲତାର ବୃଦ୍ଧି କ୍ଷୟ ହେଉଥିବା ଦୃଷ୍ଟିରୁ ଋଷିମାନେ ଚନ୍ଦ୍ରଙ୍କୁ ସୋମଲତାର ଅଧିଦେବତା ରୂପେ କଳ୍ପନା କରିଥିଲେ । (ଭାଷାକୋଷ)

**ସୋମାୟନ**—ବୈଦିକ ବ୍ରତ ବିଶେଷ । ଏହି ବ୍ରତରେ ୨୭ ଦିନ ଗୋଦୁଗ୍ଧ ପାନ ଓ ତିନ ଦିନ ଉପବାସ କରାଯାଏ । ଯାଜ୍ଞବଲ୍କ୍ୟ ସ୍ମୃତି ଅନୁସାରେ ବ୍ରତକାରୀ ପ୍ରଥମ ସାତଦିନ ଗାଈର ୪ ସ୍ତନରୁ ଦ୍ୱିତୀୟ ସପ୍ତାହରେ ୩ ସ୍ତନରୁ, ତୃତୀୟ ସପ୍ତାହରେ ୨ ସ୍ତନରୁ ଓ ପରବର୍ତ୍ତୀ ୬ ଦିନ ୧ ସ୍ତନରୁ ଦୁହାଁଯିବା ଦୁଗ୍ଧ ପାନ କରିବେ ଓ ଶେଷରେ ୩ ଦିନ ନିର୍ଜଳ ଉପବାସ କରିବେ ।

(ହିନ୍ଦୀ ଶବ୍ଦସାଗର, ଭାଷାକୋଷ)

**ସୋମହୁତ**—ଭାର୍ଗବ ଋଷିଙ୍କ ନାମାନ୍ତର । (ହିନ୍ଦୀ ଶବ୍ଦସାଗର)

**ସୋମେଶ୍ୱର**—(୧) କାଶୀର ଶିବଲିଙ୍ଗ ବିଶେଷ । ସୋମଙ୍କ ଦ୍ୱାରା ଏ ପ୍ରତିଷ୍ଠିତ ହୋଇଥିଲେ । (୨) ପ୍ରାଚୀନ କବି ବିଶେଷଙ୍କ ନାମ (ବିଶ୍ୱକୋଷ) । (୩) ସଙ୍ଗୀତ ରାତ୍ନାକରର ଜନୈକ ଆଚାର୍ଯ୍ୟ (ହିନ୍ଦୀ ଶବ୍ଦସାଗର) । (୪) ସର୍ବ-

ଦର୍ଶନ ସଂଗ୍ରହର ସର୍ବେଶ୍ୱର ଦର୍ଶନରେ ଉଲ୍ଲିଖିତ ଜନୈକ ଦାର୍ଶନିକ (ବିଶ୍ୱକୋଷ) । (୫) ଜୈମିନୀୟ ନ୍ୟାୟମାଳା ଗ୍ରନ୍ଥ ରଚୟିତା । (୬) ତତ୍ତ୍ୱାଲୋକ ଓ ପଞ୍ଚତ୍ରିଂଶିକା ନାମକ ଗ୍ରନ୍ଥଦ୍ୱୟର ରଚୟିତା (ବିଶ୍ୱକୋଷ) । (୭) ଯୋଗ ଜ୍ୟୋତିଙ୍କ ଶିଷ୍ୟ ଶ୍ରୁତ ଶବ୍ଦାର୍ଥ ସମୁଚ୍ଚୟ ଗ୍ରନ୍ଥର ପ୍ରଣେତା । (ବିଶ୍ୱକୋଷ) । (୮) ଭୋଜରାଜ କୃତ ସିଦ୍ଧାନ୍ତ ସଂଗ୍ରହର ଟୀକାକାର (ବିଶ୍ୱକୋଷ) । (୯) କୁମାରିଲ ଭଟ୍ଟଙ୍କ ତନ୍ତ୍ରବାର୍ତ୍ତିକର ସର୍ବାନବଦ୍ୟକାରିଣୀ ଟୀକାର ଗ୍ରନ୍ଥକାର (ବିଶ୍ୱକୋଷ) । (୧୦) ଶ୍ରୀକୃଷ୍ଣଙ୍କର ନାମାନ୍ତର ।

(ଭାଷାକୋଷ)

**ସୌତ୍ରାନ୍ତିକ**—ବୌଦ୍ଧ ସମ୍ପ୍ରଦାୟ ବିଶେଷ । (ଭାଷାକୋଷ)

**ସୌତ୍ରାମଣି**—ଯାଗ ବିଶେଷ । ଯଜୁର୍ବେଦର କାଣ୍ୱ ଶାଖାର ୨୧।୨୨।୨୩ ପଂକ୍ତିରେ ଏହି ଯାଗର ମନ୍ତ୍ର ଓ ବିଧି ଲେଖା ଅଛି ଏବଂ ଏହି ଯାଗର କ୍ରମ କାତ୍ୟାୟନ ସୂତ୍ର ଭାଷ୍ୟରେ ଲେଖାଅଛି ଯେ "ସୁ ଏବଂ ମହାଯନ୍ତ୍ରଂ ଅଭିଶ୍ୟନ୍ତି" ଏହି ପ୍ରକୃତି ପ୍ରତ୍ୟୟ ଦ୍ୱାରା ସୌତ୍ରାମଣି ଶବ୍ଦ ନିଷ୍ପନ୍ନ ହୋଇଅଛି । ଏହି ଯାଗରେ ମନ୍ତ୍ରପାଠ ପୂର୍ବକ ସୁରସନ୍ଧାନ କରିବାକୁ ହୁଏ । ଏହି ଯାଗର ଋଷି ପ୍ରଜାପତି, ଦେବତା ସୁର, ଛନ୍ଦ ଅନୁଷ୍ଟୁପ୍ । (ଭାଷାକୋଷ)

**ସୌଦାସ**—ଇକ୍ଷ୍ୱାକୁବଂଶୀୟ ଅଯୋଧ୍ୟାଧିପତି । ଏହାଙ୍କର ଅପର ନାମ କଲ୍ମଷପାଦ । (କଲ୍ମଷପାଦ ଦେଖ)

**ସୌପ୍ତିକ**—ମହାଭାରତର ପର୍ବ ବିଶେଷ । ମହାଭାରତର ୧୮ଶ ପର୍ବମାନଙ୍କର ନାମ—ଆଦି, ସଭା, ବନ, ବିରାଟ, ଉଦ୍ୟମ ବା ଉଦ୍‌ଯୋଗ, ଭୀଷ୍ମ, ଗୁରୁ ବା ଦ୍ରୋଣ, ରବିଜ ବା କର୍ଣ୍ଣ, ଆତ୍ରକ ବା ଶଲ୍ୟ, ସୌପ୍ତିକ, ସ୍ତ୍ରୀ, ଶାନ୍ତି, ଅନୁଶାସନ, ଅଶ୍ୱମେଧ, ବ୍ୟାସାଶ୍ରମ, ମୂଷଳ, ମହାପ୍ରସ୍ଥାନ, ସ୍ୱର୍ଗାରୋହଣ ।

ମହାଭାରତ ଯୁଦ୍ଧ ଶେଷ ହେବା ପରେ କୁରୁବଂଶୀୟ ବୀରମାନେ ପାଣ୍ଡବଙ୍କ ଶିବିରରେ ପ୍ରବେଶ କରି ରାତ୍ରିରେ ମହାଭାରତ ଯୁଦ୍ଧରୁ ବର୍ତ୍ତିଥିବା କୃତବର୍ମା, ଅଶ୍ୱତ୍ଥାମା ଓ କୃପଙ୍କ ହତ୍ୟା କରିଥିବାର ବିଷୟ ସୌପ୍ତିକ ପର୍ବରେ ବର୍ଣ୍ଣିତ ହୋଇଅଛି । (ଭାଷାକୋଷ)

**ସୌବଳ**—ସୁବଳ ଅର୍ଥାତ୍ ଗାନ୍ଧାର ଦେଶରାଜାଙ୍କ ଅପତ୍ୟ । କୂଟନୀତିଜ୍ଞ ଶକୁନି, ଦୁର୍ଯ୍ୟୋଧନଙ୍କ ମାମୁଁ ।

**ସୌବଳୀ**—ସୁବଳଙ୍କ କନ୍ୟା ଗାନ୍ଧାରୀ । ଧୃତରାଷ୍ଟ୍ରଙ୍କ ପତ୍ନୀ । (ଗାନ୍ଧାରୀ ଦେଖ)

**ସୌବୀର**—ସୁଖାର ଦେଶଜାତ ଦ୍ରବ୍ୟ ଓ ସୁଖର ପ୍ରଦେଶର ରାଜା । ଏହା ସିନ୍ଧୁନଦ ନିକଟବର୍ତ୍ତୀ ଦେଶ । (ହି. ଶ.)

**ସୌବୀରକ**—ଯବ ବା ଗହମକୁ ୮ ଗୁଣ ପାଣିରେ ବଡ଼ୁଗାଳ ସଢ଼ାଇଲେ ଯେଉଁ କାଞ୍ଜି ହୁଏ ତାକୁ ସୌଖାରକ କହନ୍ତି । ରାଜ ନିର୍ଘଣ୍ଟର ନିର୍ଣ୍ଣୟ—ଏହା ଅମ୍ଳ, କେଶ୍ୟ; ବଲକାରକ, ଅଗ୍ନି ବର୍ଦ୍ଧକ, ମଳଭେଦକ, ଜ୍ୱରନିବାରକ, ସନ୍ତର୍ପଣ । ଏହା ମସ୍ତକଦୋଷ, ଜରା, ଶୈଥିଲ୍ୟ, ଅଗ୍ନିଶୂଳ, ଅର୍ଶ ଓ ଗ୍ରହଣୀନାଶକ ।

ସୁଖାର ଦେଶବାସୀ ଏ କାଞ୍ଜିକୁ ଅତି ସୁଖ ପାଉଥିଲେ (ହିନ୍ଦୀ ଶବ୍ଦସାଗର) । ଜୟଦ୍ରଥଙ୍କ ଅନ୍ୟ ନାମ ଥିଲା ସୌଖାରକ । (ଆପ୍ଟେ)

**ସୌଭର**—ତପୋବଳସମ୍ପନ୍ନ ଋଷି । ସଂସାରୀ ହେବାପାଇଁ ଇଚ୍ଛା ପ୍ରକାଶ କରି ତପୋବଳରେ ଦିବ୍ୟ ଦେହ ଧରି ସୂର୍ଯ୍ୟବଂଶୀୟ ରାଜା ମାନଧାତା (ମାନ୍ଧାତା)ଙ୍କ କନ୍ୟାମାନଙ୍କୁ ବିବାହ କଲେ । ସେମାନଙ୍କୁ ତପୋବନକୁ ନେଇ ବହୁକାଳ ଗୃହଧର୍ମ କଲେ । ଏମାନଙ୍କ ଗର୍ଭରେ ସୌଭରଙ୍କ ଔରସରୁ ଅନେକ ପୁତ୍ର କନ୍ୟା ଜନ୍ମିଥିଲେ । ତତ୍ପରେ ମୁନି ବିଷୟ-ବିମୁଖ ହୋଇ ପୁନର୍ବାର ତପସ୍ୟାରେ ନିବିଷ୍ଟ ରହିଲେ । (ଚରିତାଭିଧାନ ଓ ଭାଷାକୋଷ)

**ସ୍କନ୍ଦ**—ଶିବଙ୍କ ପୁତ୍ର କାର୍ତ୍ତିକେୟ । (କୁମାର ଦେଖ) ଗ୍ରହ ବିଶେଷ । ଏହା ଜ୍ୱର ବାଲଗ୍ରହ ବିଶେଷର ନାମାନ୍ତର । ସ୍କନ୍ଦଗ୍ରହ ବାଳକକୁ ଆକ୍ରମଣ କଲେ ବାଳକ କେତେବେଳେ ଉଦ୍‌ବିଗ୍ନ ଓ କେତେବେଳେ ଜାସଯୁକ୍ତ ହୋଇ ରୋଦନ କରେ ଏବଂ ନଖ ଓ ଦାନ୍ତ ଦ୍ୱାରା ନିଜର ବା ଧାତ୍ରୀର ଗାତ୍ର ବିଦାରଣ କରେ । ଊର୍ଦ୍ଧ୍ୱ ଦିଗକୁ ଦୃଷ୍ଟି କରେ, ଦାନ୍ତ ରଗଡ଼େ, ଆର୍ତ୍ତନାଦ ଓ ଓଷ୍ଠ ଦଂଶନ କରେ, ପୂର୍ବ ପରି ଆହାର କରିପାରେ ନାହିଁ । ଶିଶୁର ଜୃମ୍ଭା, ବଲହ୍ରାସ, ଦେହର ମଳିନତା, ଜ୍ଞାନାବରୋଧ, ଭ୍ରୂଦ୍ୱୟର କମ୍ପନ, ପୁନଃ ପୁନଃ ଫେନୋଦ୍‌ଗମ, ଅତ୍ୟନ୍ତ ନିଦ୍ରାନାଶ, ସ୍ୱରଭଙ୍ଗ, ଅତିସାର ଏବଂ ଶରୀରରେ ମତ୍ସ୍ୟ ଓ ରକ୍ତ ପରି ଦୁର୍ଗନ୍ଧ ହୁଏ ।

ବିଶେଷ ଲକ୍ଷଣ—ସ୍କନ୍ଦଗ୍ରହ ପ୍ରପୀଡିତ ବାଳକର ଅଙ୍ଗ ଶିଥିଳ, ରକ୍ତ ଗନ୍ଧଯୁକ୍ତ ହୁଏ ଓ ସେ ସ୍ତନପାନରୁ ରହିତ ହୁଏ । ତାହାର ମୁଖ ବକ୍ର । ଚରଣ ଆହତ, ନେତ୍ର ଜଳପ୍ଲାବିତ, ହସ୍ତଦ୍ୱୟ ମୁଷ୍ଟିବଦ୍ଧ ଓ କଠିନ ହୁଏ ଏବଂ ସେହି ବାଳକ ଉଦ୍‌ବିଗ୍ନ ହୋଇ ଅଳ୍ପ ଅଳ୍ପ ରୋଦନ କରେ ।

(ବିଶ୍ୱକୋଷ, ଭାଷାକୋଷ)

**ସ୍କନ୍ଦପୁରାଣ**—ଏହା ବ୍ୟାସଦେବଙ୍କ ସଙ୍କଳିତ । ଏହି ପୁରାଣରେ ଶ୍ଳୋକ ସଂଖ୍ୟା ୮୧୧୦୦ । ଏଥିରେ ସନତ୍କୁମାର ସଂହିତା, ସୂତ ସଂହିତା, ଶଙ୍କର ସଂହିତା, ବୈଷ୍ଣବ ସଂହିତା, ବ୍ରାହ୍ମ ସଂହିତା, ସୌର ସଂହିତା ନାମକ ୬୭ ସଂହିତା ଓ ମାହେଶ୍ୱରଖଣ୍ଡ, ବୈଷ୍ଣବଖଣ୍ଡ, ବ୍ରାହ୍ମଖଣ୍ଡ, କାଶୀଖଣ୍ଡ, ରେବାଖଣ୍ଡ, ତାପୀଖଣ୍ଡ ଓ ପ୍ରଭାସଖଣ୍ଡ ଅଛି । ଏହି ପୁରାଣର କାଶୀଖଣ୍ଡ ଅନ୍ୟ ଖଣ୍ଡମାନଙ୍କ ଅପେକ୍ଷା ପ୍ରସିଦ୍ଧ । (ହିନ୍ଦୀ ଶବ୍ଦସାଗର) ଏଥିରେ ଉତ୍କଳଖଣ୍ଡରେ ଉତ୍କଳର ତୀର୍ଥମାନଙ୍କ କଥା ଉଲ୍ଲେଖ ଅଛି । ବିଶେଷତଃ ଓଡ଼ିଶାର ଶ୍ରୀଜଗନ୍ନାଥ ମନ୍ଦିର, ପୂଜାବିଧାନ, ବ୍ରତକଥା, ମୂର୍ତ୍ତି ସେ ସମ୍ପର୍କୀୟ ଅନେକ ଉପାଖ୍ୟାନର ବର୍ଣ୍ଣନା ମିଳେ । ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କ ଉପଦେଶ ଅନୁସାରେ ଶ୍ରୀଜଗନ୍ନାଥଙ୍କର ସ୍ଥାନ ନିରୂପଣ କିପରି କଲେ, ଏହାର ବିସ୍ତୃତ ବିବରଣ ଏହି ଖଣ୍ଡରେ ମିଳେ । ଓଡ଼ିଶାର ଜଗନ୍ନାଥ ଧାମର ପ୍ରାଚୀନ ଇତିହାସ ଜାଣିବା ପାଇଁ ଏହା ଅତ୍ୟନ୍ତ ଉପାଦେୟ ଓ ଏକ ବଳିଷ୍ଠ ପ୍ରାମାଣିକ ଗ୍ରନ୍ଥ ।

ସ୍କନ୍ଦପୁରାଣର ବିଶେଷ ବିବରଣ ଜାଣିବାକୁ ଅଭିଳାଷ ଥିଲେ ପଣ୍ଡିତ ଜଗନ୍ନାଥ ରଥ ସାହିତ୍ୟାଚାର୍ଯ୍ୟ, ସାହିତ୍ୟାଳଂକାର, ବିଦ୍ୟାଭୂଷଣଙ୍କ ଲିଖିତ ଓ ଶ୍ରୀକୃଷ୍ଣକେଶଷ୍ଟ ପୁରାଣରେ ମୁଦ୍ରିତ ଗ୍ରନ୍ଥପ୍ରବେଶ ନାମକ ପ୍ରବନ୍ଧ ଦେଖନ୍ତୁ ।

**ସ୍ନାତକ**—ଗୁରୁ ଗୃହରେ ବ୍ରହ୍ମଚର୍ଯ୍ୟ ଓ ବେଦାଧ୍ୟୟନ ସମାପନପୂର୍ବକ ଗୃହସ୍ଥାଶ୍ରମକୁ ସମାବର୍ତ୍ତନ କରିବା ଉପଲକ୍ଷେ ମଙ୍ଗଳସ୍ନାନ କରିଥିବା ବ୍ୟକ୍ତି । (ଭାଷାକୋଷ)

ପ୍ରାଚୀନକାଳରେ ଦ୍ୱିଜବାଳକ ଗୁରୁକୁଳରେ ବେଦାଦି ଅଧ୍ୟୟନ ସମାପନ କରି ୨୫ ବର୍ଷ ବୟସରେ ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପାଇଁ ନିଜ ପରିବାରକୁ ଫେରି ଆସୁଥିଲେ । ସ୍ନାତକ ତ୍ରିବିଧ—ଯଥା, ବ୍ରତ ସ୍ନାତକ, ବିଦ୍ୟା ସ୍ନାତକ ଓ ଉଭୟ ସ୍ନାତକ ।

(୧) ବ୍ରତ ସ୍ନାତକ—୨୫ ବର୍ଷ ପର୍ଯ୍ୟନ୍ତ ଯେ ବ୍ରହ୍ମଚର୍ଯ୍ୟାଚରଣପୂର୍ବକ ବେଦାଧ୍ୟୟନ ସମାପ୍ତ କରି ନପାରି ଘରକୁ ଫେରି ଯାଉଥିଲେ ।

(୨) ବିଦ୍ୟା ସ୍ନାତକ—ଯେ ବ୍ରହ୍ମଚର୍ଯ୍ୟାଚରଣପୂର୍ବକ ୨୫ ବର୍ଷ ବୟସ ହେଲେ ମଧ୍ୟ ଗୁରୁ ଗୃହରେ ରହି ବେଦାଧ୍ୟୟନ କରୁଥିଲେ ଓ ଘରକୁ ଫେରୁ ନଥିଲେ ।

(୩) ଉଭୟ ସ୍ନାତକ—ବ୍ରହ୍ମଚର୍ଯ୍ୟପାଳନପୂର୍ବକ ଯେ ବେଦପାଠ ଶେଷ କରି ଗୃହସ୍ଥାଶ୍ରମରେ ପ୍ରବେଶ କରୁଥିଲେ । ଆଦି ଭାରତରେ ପ୍ରତିଷ୍ଠିତ ଗୁରୁକୁଳ

ଓ ଋଷିକୁଳରେ ବିଦ୍ୟାଧ୍ୟୟନ କରି ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ବାଳକକୁ ସ୍ନାତକ ଉପାଧି ଦିଆଯାଏ । (ହି. ଶ.)

**ସ୍ନାନ**—ସ୍ନାନ ସାତ ପ୍ରକାର । ଯଥା—(୧) ମାନ୍ତ୍ର ବା ମନ୍ତ୍ରସ୍ନାନ—ମନ୍ତ୍ରପାଠପୂର୍ବକ ଜଳଲେପନ ବା ପ୍ରକୃତ ସ୍ନାନ । (୨) ବାୟୁସ୍ନାନ—ବାୟୁ ଦ୍ୱାରା ଶରୀରକ୍ଷାଳନ । (୩) ଭୌମସ୍ନାନ—ଦେହରେ ମାଟି ବୋଳି ସ୍ନାନ କରିବା । (୪) ଆଗ୍ନେୟ-ସ୍ନାନ—ଧୂଆଁ ଦ୍ୱାରା ଦେହ ଧୂପନ କିମ୍ବା ଦେହରେ ଭସ୍ମ ବୋଳିହେବା । (୫) ଦିବ୍ୟ ବା ସୂର୍ଯ୍ୟାଲୋକରେ ସ୍ନାନ । (୬) ବାରୁଣସ୍ନାନ—ଧୂଳି ବା ଗୋରଜ ଦ୍ୱାରା ଶରୀରକ୍ଷାଳନ । (୭) ମାନସସ୍ନାନ—କାଳ୍ପନିକ ସ୍ନାନ ।

ଏହି ସ୍ନାନ ଶବ୍ଦବିଶିଷ୍ଟ ଅନେକ ପ୍ରକାର ଶବ୍ଦ ଭାଷାରେ ଅଛି । ସେଥିମଧ୍ୟରୁ କେତେଗୁଡ଼ିଏ ଅତି ପ୍ରଚଳିତଶବ୍ଦ ନିମ୍ନରେ ଦିଆଯାଉଛି । ଯଥା—

ଶିରଃସ୍ନାନ—ମୁଣ୍ଡଧୋଇ ଗାଧୋଇବା, ସ୍ତ୍ରୀମାନଙ୍କର ଋତୁସ୍ନାନ ବା ଶୁଦ୍ଧସ୍ନାନ, ପ୍ରାତଃସ୍ନାନ, ତୀର୍ଥସ୍ନାନ, ଦେବସ୍ନାନ—ଜ୍ୟେଷ୍ଠ ପୂର୍ଣ୍ଣିମାରେ ବିଗ୍ରହ ପ୍ରତିମାଙ୍କ ସ୍ନାନବିଧି; ମନ୍ତ୍ରସ୍ନାନ, ଗଙ୍ଗାସ୍ନାନ, ରକ୍ତସ୍ନାନ, ମୋକ୍ଷସ୍ନାନ—ସୂର୍ଯ୍ୟ ବା ଚନ୍ଦ୍ରଗ୍ରହଣ ମୁକ୍ତ ହେବା ପରେ ହିନ୍ଦୁମାନଙ୍କ ସ୍ନାନାଚାର ବା ଗ୍ରହଣସ୍ନାନ—ସୂର୍ଯ୍ୟ ବା ଚନ୍ଦ୍ରଗ୍ରହଣ ଲାଗିବା ବେଳେ ହିନ୍ଦୁମାନେ କରୁଥିବା ସ୍ନାନ, ପ୍ରେତସ୍ନାନ - ମୃତ ବ୍ୟକ୍ତିଙ୍କ ପ୍ରେତ ଉଦ୍ଦେଶ୍ୟରେ କରାଯିବା ସ୍ନାନ । ନିତ୍ୟସ୍ନାନ, ନୈମିତ୍ତିକସ୍ନାନ—କୌଣସି ବିଶେଷ ନିମିତ୍ତ ଉପଲକ୍ଷରେ ଅର୍ଥାତ୍ ଗ୍ରହଣ ସମୟରେ ବା କୁଟୁମ୍ବର କେହି ମୃତ ହେଲେ କରାଯିବା ସ୍ନାନ, ଜାତସ୍ନାନ, ମହାସ୍ନାନ—ଦେବପ୍ରତିମାଙ୍କ ସ୍ନାନ, ଦେବ ମନ୍ଦିରରେ କୌଣସି ଅଶୁଚିଜନକ ଘଟଣା ଘଟିଲେ ଅର୍ଥାତ୍ ମନ୍ଦିର ମଧ୍ୟରେ କେହି ଝାଡ଼ା ଫେରିଲେ ବା ପରିସ୍ରା କରିଦେଲେ କିମ୍ବା କୌଣସି ଅଶୁଚି ବ୍ୟକ୍ତି ଦେବତାଙ୍କ ସ୍ପର୍ଶ କଲେ ଦେବତାଙ୍କୁ ଗାଧୋଇଦେବା କର୍ମକୁ ମହାସ୍ନାନ କହନ୍ତି । କାମ୍ୟସ୍ନାନ—ପ୍ରାୟଶ୍ଚିତ୍ତ, ଅଭିଷେକ, ଉପନୟନ, କର୍ଣ୍ଣବେଧ, ଇତ୍ୟାଦି କାମ୍ୟକର୍ମ ଉପଲକ୍ଷରେ କରାଯିବା ସ୍ନାନ । ସମୁଦ୍ର ବା ସାଗରସ୍ନାନ, ନଦୀସ୍ନାନ, ଅଶୌଚସ୍ନାନ, ସଦ୍ୟସ୍ନାନ, ମକରସ୍ନାନ ବା ମାଘସ୍ନାନ, କାର୍ତ୍ତିକସ୍ନାନ, ପ୍ରୟାଗସ୍ନାନ, ତ୍ରିବେଣୀସ୍ନାନ । (ଭାଷାକୋଷ)

**ସ୍ନାନମଣ୍ଡପ**—ଜ୍ୟେଷ୍ଠପୂର୍ଣ୍ଣିମା ଦିନ ଯେଉଁ ମଣ୍ଡପରେ ଶ୍ରୀକ୍ଷେତ୍ର ବେଢ଼ା ଭିତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ସ୍ନାନ କରାଯାଏ ।

**ସ୍ୱଧା**—(୧) ଶ୍ରାଦ୍ଧର ଅଧିଷ୍ଠାତ୍ରୀ ଦେବୀ । ମାତୃକା ଦେବୀ ବିଶେଷ; ପିତୃଲୋକଙ୍କ ପତ୍ନୀ ।

(୨) ଏ ବ୍ରହ୍ମାଙ୍କ ମାନସୀ କନ୍ୟା । ଏ ସୁସ୍ଥିର ଯୌବନା, ଶ୍ୱେତ-ଚମ୍ପକବର୍ଣ୍ଣା, ଗୁଣବତୀ, ବିଦ୍ୟାବତୀ ଓ ରୂପବତୀ । ଏହାଙ୍କ ନାମ ଉଚ୍ଚାରଣ କଲେ ପିତୃଲୋକେ ପିଣ୍ଡ ପାଆନ୍ତି । ଏହାଙ୍କୁ ପ୍ରଥମେ ଅର୍ଚ୍ଚନା ନ କରି ଶ୍ରାଦ୍ଧ କଲେ ଉକ୍ତ ପିଣ୍ଡକୁ ପିତୃଲୋକେ ପାଆନ୍ତି ନାହିଁ । ଏହାଙ୍କ ପୂଜାର ମନ୍ତ୍ର—ଓଁ ହ୍ରୀଂ ଶ୍ରୀଂ କ୍ଲୀଂ ସ୍ୱଧା ଦେବ୍ୟୈ ସ୍ୱାହା । (ବ୍ରହ୍ମବୈବର୍ତ୍ତ, ପ୍ରକୃତିଖଣ୍ଡ)

(୩) ଅଗ୍ନିଦେବଙ୍କ ପତ୍ନୀ ବିଶେଷ ।

(୪) ଗୌର୍ଯାଦି ମାତୃକା ଭେଦ (ବିଶ୍ୱକୋଷ)—ନାନ୍ଦୀମୁଖୀ ଶ୍ରାଦ୍ଧରେ ବା ଷଷ୍ଠୀଦେବୀଙ୍କର ପୂଜାରେ ଏହାଙ୍କ ପୂଜା କରାଯାଏ । ଏ ଦେବୀ ସର୍ବଦା ସମସ୍ତଙ୍କର ମଙ୍ଗଳକାମନା କରନ୍ତି । ଶ୍ରୀମଦ୍ଭାଗବତ ମତରେ ଏ ଦକ୍ଷକନ୍ୟା । ଏହାଙ୍କର ଦୁଇଟି କନ୍ୟା – ଯମୁନା ଓ ଧାରିଣୀ । ଏ ଦୁଇ କନ୍ୟା ତପସ୍ୱିନୀ ହୋଇ ତପସ୍ୟାରେ କାଳାତିପାତ କରନ୍ତି । ଏମାନେ ସନ୍ତାନ ସନ୍ତତିହୀନା (ଭାଷାକୋଷ)

**ସ୍ୱୟଂପ୍ରଭା**—ଅପ୍ସରା ବିଶେଷ, ମେରୁସାବର୍ଣ୍ଣି ଋଷିଙ୍କ କନ୍ୟା । ଏ ମୟଦାନବର ପ୍ରଣୟିନୀ । ହେମା ଅପ୍ସରାଙ୍କ ପ୍ରିୟ ସହଚରୀ । ହେମାଙ୍କ ଅନୁରୋଧକ୍ରମେ ଏ ମୟଦାନବଙ୍କ ନଗରୀର ଜଗୁଆଳ ଥିଲେ । ମୟଦାନବଙ୍କ ଔରସରେ ଏହାଙ୍କ ଗର୍ଭରୁ ମନ୍ଦୋଦରୀ ଜନ୍ମିଥିଲେ । ସୀତାନ୍ୱେଷଣରତ ହନୁମାନଙ୍କ ସଙ୍ଗେ ମୟଦାନବଙ୍କ ପୁରଠାରେ ଏହାଙ୍କର ଭେଟ ହୋଇଥିଲା । (ଭାଷାକୋଷ)

ଅଧ୍ୟାତ୍ମ ରାମାୟଣ କିଷ୍କିନ୍ଧ୍ୟା କାଣ୍ଡର ଷଷ୍ଠ ଅଧ୍ୟାୟରେ ଏହାଙ୍କ ବିଷୟରେ ଯେଉଁ ସନ୍ଦର୍ଭ ଦୃଷ୍ଟ ହୁଏ ତାହା ଭିନ୍ନ ପ୍ରକାରର । ଅଙ୍ଗଦ ପ୍ରଭୃତି ଅଷ୍ଟବୀର ସୀତାନ୍ୱେଷଣ କରିବା ପାଇଁ ଗଲେ । ହନୁମାନ ମଧ୍ୟ ସେମାନଙ୍କ ସଙ୍ଗରେ ଥିଲେ । ସେମାନେ ଅରଣ୍ୟ ମଧ୍ୟରେ କ୍ଷୁଧା ପିପାସାର୍ତ୍ତ ହୋଇ ସେଠାରେ ଟୋପାଏ ପାଣି ପାଇଲେ ନାହିଁ । ତୃଷା ଯୋଗେ ସେମାନେ ଶୁଷ୍କ କଣ୍ଠତାଳୁ ହୋଇ ବୁଲିଲେ । ନିକଟରେ ତୃଣ ଗୁଳ୍ମାବୃତ ଏକ ମହତ୍ ଗହ୍ୱର ସେମାନଙ୍କର ଦୃଷ୍ଟିଗୋଚର ହେଲା । ସେଥିରୁ ଆର୍ଦ୍ରପକ୍ଷ ବକ ଓ ହଂସମାନେ ବାହାରି ଆସୁଥିଲେ । ଆମ୍ଭେମାନେ ଏହି ମହାଗୁହାରେ ପ୍ରବେଶ କରିବା ବୋଲି ହନୁମାନ ଚିତ୍କାର କରି ଉଠିଲେ ଓ ଭିତରକୁ ପଶିଗଲେ, ପରେ ଅନ୍ୟ ବାନରମାନେ ହାତ ଧରାଧରି ହୋଇ ସେ ଗୁହା ଭିତରକୁ ଗଲେ । କିଛିଦୂର ଅନ୍ଧକାର ମଧ୍ୟରେ ଯିବା ପରେ ସେମାନେ ଗୋଟିଏ ସ୍ୱଚ୍ଛ ସଲିଳ-ପୂର୍ଣ୍ଣ ସରୋବର ଦେଖିଲେ । ତା'ପରେ ବୃକ୍ଷଲତା, ବିବିଧ ଗୁଣସମ୍ପନ୍ନ ମଣି

ବସ୍ତ୍ରାଦି ପୂର୍ଣ୍ଣ ବୃକ୍ଷଶ୍ରେଣୀ ସେମାନଙ୍କର ଦୃଷ୍ଟିଗୋଚର ହେଲା । ସେହି ବୃକ୍ଷ ମଧ୍ୟରେ ଦ୍ରୋଣ (ପରିମାଣ ବିଶେଷ) ପରିମିତ ମଧୁ ଓ ବେଦ ଭୋଗ୍ୟ ଅନ୍ନ ରହିଛି । ମାତ୍ର କେହି ଲୋକ ନାହାନ୍ତି । ଏହା ଦେଖି ସେମାନେ ବିସ୍ମିତ ହେଲେ । କିୟତ୍କ୍ଷଣ ପରେ ଜଣେ ତପସ୍ୱିନୀ ସେମାନଙ୍କର ଦୃଷ୍ଟିଗୋଚର ହେଲେ । ବାନରମାନେ ଭୟ ଓ ଭକ୍ତି ସହିତ ତାଙ୍କର ପଦ ବନ୍ଦନା କଲେ । ସେହି ଯୋଗିନୀ ବାନରମାନଙ୍କ ପରିଚୟ ଜାଣିବା ପାଇଁ ପ୍ରଶ୍ନ କଲେ— 'ତୁମ୍ଭେମାନେ କିଏ ? କେଉଁଠାରୁ ଆସିଛ ? କାହାର ଦୂତ କାର୍ଯ୍ୟରେ ନିଯୁକ୍ତ ହୋଇଛ ? ମୋ ଅଧିକୃତ ସ୍ଥାନକୁ ତୁମ୍ଭେମାନେ କାହିଁକି ବା ବଳପୂର୍ବକ ଆସିଲ ।' ହନୁମାନ କହିଲେ—'ଆମ୍ଭେ ଅଯୋଧ୍ୟାରାଜ ଦଶରଥାତ୍ମଜ ରାମଙ୍କର ଦୂତ । ସୀତା ଅନ୍ୱେଷଣ ପାଇଁ ଆସି କ୍ଷୁଧା ତୃଷ୍ଣାରେ ବାଟ ଭୁଲିଯାଇ ଏଠାକୁ ଆସିଛୁ । ଆପଣ କିଏ ସେ ? ଏଠାରେ ଜନଶୂନ୍ୟ ସ୍ଥାନରେ କାହିଁକି ଯୋଗ-ସାଧନ କରୁଛନ୍ତି ।' ଯୋଗିନୀ ଏହା ଶୁଣି ବାନରମାନଙ୍କ କ୍ଷୁଧା ପିପାସା ନିବାରଣ କରିବା ପାଇଁ ସକଳ ପ୍ରକାର ବନ୍ଦୋବସ୍ତ କରିଦେଲେ । ତୁମ୍ଭେ-ମାନେ ଖାଇ ପିଇ ଆସ, ମୁଁ ମୋର ପରିଚୟ ଦେବି ।

ପାନାହାର ପରେ ହନୁମାନ ଯୋଗିନୀଙ୍କୁ ପ୍ରଶ୍ନ କଲେ । ଯୋଗିନୀ କହିଲେ—'ପୂର୍ବେ ବିଶ୍ୱକର୍ମାଙ୍କ ଦୁହିତା ହେମା ନୃତ୍ୟ ଦ୍ୱାରା ଶିବଙ୍କୁ ତୃପ୍ତ କରିଥିବାରୁ ମହେଶ୍ୱର ତାଙ୍କୁ ଏହି ଦିବ୍ୟପୁର ଦାନ କରିଥିଲେ । ମୁଁ ତାଙ୍କର ସହଚରୀ । ମୋକ୍ଷ ଆକାଂକ୍ଷାରେ ଚିନ୍ତା ପରାୟଣା ହୋଇ ଏଠାରେ ଅଛି । ମୋ ନାମ ସ୍ୱୟଂପ୍ରଭା, ଦିବ୍ୟମନ୍ତ୍ର ମୋର ପିତା । ସେ ବ୍ରହ୍ମଲୋକ ଯିବା ସମୟରେ ମୋତେ କହିଗଲେ—'ତୁ ଏହି ପ୍ରାଣୀଶୂନ୍ୟ ସ୍ଥାନରେ ବସି ତପସ୍ୟା କର । ଅବ୍ୟୟ ନାରାୟଣ ଭୂଭାର ହରଣ ପାଇଁ ତ୍ରେତାଯୁଗରେ ଦଶରଥଙ୍କ ପୁତ୍ର ହୋଇ ଜନ୍ମଲାଭ କରିବେ । ସେ ପିତୃ ସତ୍ୟରକ୍ଷାର୍ଥେ ଅରଣ୍ୟବାସୀ ହେବେ । ଲଙ୍କେଶ୍ୱର ରାବଣ ତାଙ୍କ ପତ୍ନୀ ସୀତାଙ୍କୁ ଅପହରଣ କରିନେବେ । ସେଥିଲାଗି ବାନର ଦୂତମାନେ ସୀତାଙ୍କୁ ଅନ୍ୱେଷଣ କରି ଆସିବେ । ସେମାନେ ଏଠାକୁ ଆସିଲେ ତୁ ତାଙ୍କର ଅଭ୍ୟର୍ଥନା କରିବୁ ଓ ରାମଙ୍କୁ ଦେଖି ମୋକ୍ଷ ପାଇବୁ । ଏବେ ସେହି ସମୟ ହେଲା, ମୁଁ ଯାଉଛି । ତୁମ୍ଭେମାନେ ଚକ୍ଷୁ ବୁଜ ଏଠାରୁ ବାହାରି ଯାଅ ।

**ସ୍ୱୟଂ ହରକରୀ**—ପୁରାଣ ବର୍ଣ୍ଣିତା ଜଣେ ସ୍ତ୍ରୀ । ବ୍ରହ୍ମାଙ୍କ ମାନସପୁତ୍ର ଦୁଃସହଙ୍କ ଔରସରେ ତାଙ୍କ ପତ୍ନୀ ନିର୍ମାଷ୍ଟିଙ୍କ ଗର୍ଭଜାତ ଆଠ କୁମାର ଓ ଆଠ କନ୍ୟାଙ୍କ ମଧ୍ୟରୁ ଏକତମା କନ୍ୟା । ପୁରାଣ ମତରେ ଏହି କନ୍ୟାମାନେ ଗୃହସ୍ଥମାନଙ୍କ

ଖଳାରୁ ଧାନ, ଗୋଷ୍ଠନରୁ ଦୁଗ୍ଧ ଓ ଅର୍ଦ୍ଧ ପକ୍ୱ ଅନ୍ନ, ଖଳରୁ ତୈଳ ଓ କପାରୁ ସୂତାକୁ ଅପହରଣ କରନ୍ତି । ଶାସ୍ତ୍ରୋକ୍ତ ବିଧି ଦ୍ୱାରା ଏମାନଙ୍କର ଶାନ୍ତିବିଧାନ କରାଯାଏ । (ଭାଷାକୋଷ)

**ସ୍ୱର୍ଗ**—ହିନ୍ଦୁ ପୁରାଣ ମତରେ ସ୍ୱର୍ଗ ଦେବତାମାନଙ୍କର ବାସସ୍ଥାନ । ଏଠାରେ ରୋଗ, ଶୋକ, କ୍ରୋଧ, କ୍ଷୁଧା, ପିପାସା, ଗ୍ଲାନି, ଜନ୍ମ, ଜରା, ମୃତ୍ୟୁ ଆଦି ନାହିଁ । ଏହା ସୂର୍ଯ୍ୟଲୋକର ଉପରେ ଓ ଧ୍ରୁବଲୋକର ନିମ୍ନରେ ଅବସ୍ଥିତ । ଏଠାରେ ଦେବତାମାନେ ବାସ କରନ୍ତି । ଦେବରାଜ ଇନ୍ଦ୍ର ଏଠାରେ ରାଜତ୍ୱ କରନ୍ତି । ଜୀବନଚନ୍ଦ୍ରା କବିତାରେ ଭକ୍ତକବି ମଧୁସୂଦନଙ୍କ ନିର୍ଣ୍ଣୟ—

ଯହିଁ ଦେବେ ଭୁଞ୍ଜନ୍ତି ଅମୃତ
ବିଭୁ ପାଦପଦ୍ମ ପାଶେ ପୁଣ୍ୟ ଜ୍ୟୋତିର୍ମୟ ବାସେ
ରୋଗ, ଶୋକ, ପାପ, ଦୁଃଖ ଯହିଁ ପରାହତ
ସେ ସୁଧାମ ଲାଗି ଆତ୍ମା ସଦା ପିପାସିତ ।

ପ୍ରତ୍ୟେକ ଧର୍ମଶାସ୍ତ୍ରରେ ଏହି ସ୍ୱର୍ଗର କଥା ଉଲ୍ଲେଖ ଅଛି । ଶାସ୍ତ୍ରକାରମାନେ ସ୍ୱର୍ଗକୁ ପୁଣ୍ୟର ସ୍ଥାନ ଓ ନରକକୁ ପାପର ସ୍ଥାନ ବୋଲି ବର୍ଣ୍ଣନା କରିଛନ୍ତି ।

**ସ୍ୱର୍ଗଙ୍ଗା**—ପୁରାଣ ମତରେ ସ୍ୱର୍ଗରେ ବହୁଥିବା ଗଙ୍ଗା ନଦୀ । ଏହାର ଅନ୍ୟ ନାମ ମନ୍ଦାକିନୀ ।

**ସ୍ୱର୍ଗଦ୍ୱାର**—ସ୍ୱର୍ଗକୁ ଯିବା ବାଟ । ସ୍ୱର୍ଗ ପ୍ରବେଶର ପଥ । ପୁରୀର ସମୁଦ୍ରକୂଳସ୍ଥ ଶ୍ମଶାନ ବିଶେଷ । ଅଯୋଧ୍ୟାରେ ସରଯୂ ନଦୀର ଏକ ସ୍ନାନଘାଟ ।

**ସ୍ୱର୍ଣ୍ଣଦୀ**—ଏହି ନଦୀ ଉପରେ ଦକ୍ଷିଣବାସିନୀ ଦେବୀ ଓ ମହାଦେବ ବିରାଜିତ । ଏଥିରେ ସ୍ନାନ କଲେ ଗଙ୍ଗା ସ୍ନାନର ଫଳ ହୁଏ । (କାଳିକା ପୁରାଣ)
ସିତଗଙ୍ଗା; ଆସାମ ଦେଶର କାମାକ୍ଷାର ପୂର୍ବଭାଗରେ ବହୁଥିବା ନଦୀ ।
(ଭାଷାକୋଷ)

**ସ୍ୱାୟମ୍ଭୁବ ମନୁ**—ସୃଷ୍ଟିବୃଦ୍ଧି ପାଇଁ ବ୍ରହ୍ମା ଏହାଙ୍କୁ ନିଜର ଦକ୍ଷିଣ ଅଙ୍ଗରୁ ଜାତ କଲେ ଓ ବାମାଙ୍ଗରୁ ଶତରୂପା ନାମ୍ନୀ କନ୍ୟାଙ୍କୁ ଜାତ କରି ସ୍ୱାୟମ୍ଭୁବଙ୍କୁ ବିବାହ ଦେଲେ । ଏହି ବିବାହରୁ ଆକୂତି ଓ ଦେବହୂତି ଏବଂ ପ୍ରସୂତି ନାମରେ ତିନିଗୋଟି କନ୍ୟା ତଥା ପ୍ରିୟବ୍ରତ ଓ ଉତ୍ତାନପାଦ ନାମରେ ଦୁଇ

ପୁତ୍ର ଜାତ ହେଲେ । ପିତା ଏହି ଅକୃତ କନ୍ୟାକୁ ରୁଚିଙ୍କୁ ଓ ଦେବହୂତିଙ୍କୁ ଦକ୍ଷ ପ୍ରଜାପତିଙ୍କୁ ଦେଲେ । ଦକ୍ଷ ପ୍ରଜାପତିଙ୍କ ଔରସରେ ୧୬ ଗୋଟି ପୁତ୍ର ଓ ୨୪ ଗୋଟି କନ୍ୟା ଜନ୍ମିଲେ ଓ ଏହିମାନଙ୍କଠାରୁ ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ, ବୃକ୍ଷ, ଲତା, ସରୀସୃପ ଆଦି ଜନ୍ମିଲେ । କ୍ରମେ ପୃଥିବୀରେ ପ୍ରାଣୀମାନେ ମାଡ଼ି ଗଲେ । (ମାର୍କଣ୍ଡେୟ ପୁରାଣ, ଶ୍ରୀକୋଷ)

**ସ୍ୱାରୋଚିଷ**—ଦ୍ୱିତୀୟ ମନୁ । ଶ୍ରୀମଦ୍ଭାଗବତ ମତରେ ଏ ଅଗ୍ନି ସୁତ ଥିଲେ । ଏହାଙ୍କଠାରୁ ସ୍ୱର ପୁତ୍ର ଓ ୭ ଋଷି ଯଥା—ଦତ୍ତୋଲି, ଚ୍ୟବନ, ସ୍ତମ୍ଭ, ପ୍ରାଣ, କଶ୍ୟପ, ଊର୍ଜ ଓ ବୃହସ୍ପତି ଜନ୍ମିଥିଲେ (ମତ୍ସ୍ୟପୁରାଣ) । ମାର୍କଣ୍ଡେୟ ପୁରାଣରେ ଏହାଙ୍କ ନାମ ଦ୍ୟୁତିମାନ୍ ବୋଲି ଉକ୍ତ ହୋଇଅଛି ।
(ହିନ୍ଦୀ ଶବ୍ଦସାଗର, ଶ୍ରୀକୋଷ)

**ସ୍ୱାହା**—ଦକ୍ଷ କନ୍ୟା ଓ ଅଗ୍ନିଦେବଙ୍କ ପତ୍ନୀ । ମତାନ୍ତରରେ ଏ ପ୍ରକୃତି ଦେବୀଙ୍କଠାରୁ ଜାତ ବୋଲି ପ୍ରମାଣ ମିଳେ । ଫଳତଃ ଏ ଅଗ୍ନିଙ୍କର ଦାହିକାଶକ୍ତି । ବିଷ୍ଣୁଙ୍କୁ ସ୍ୱାମୀ ରୂପେ ପାଇବା ପାଇଁ ଏ କଠୋର ତପସ୍ୟା କରୁଥିଲେ, ମାତ୍ର ଅଗ୍ନିଙ୍କୁ ସ୍ୱାମୀରୂପେ ଗ୍ରହଣ କରିବାକୁ ବିଷ୍ଣୁ ଉପଦେଶ ଦେଲେ । ବ୍ରହ୍ମା ମଧ୍ୟ ଏହି ଅନୁରୋଧ କଲେ ଏବଂ ବର ଦେଲେ ଯେ ଦେବତାଙ୍କ ନାମରେ ମନ୍ତ୍ର ଶେଷରେ ସ୍ୱାହା ଶବ୍ଦ ଉଚ୍ଚାରଣ ପୂର୍ବକ ଆହୁତି ଦେଲେ ଦେବତାମାନେ ଏହା ପାଇବେ । ଏହି ବର ପାଇ ସ୍ୱାହା ଅଗ୍ନିଙ୍କ ପତ୍ନୀ ହେଲେ । ଅଗ୍ନିଙ୍କ ଔରସରେ ଏହାଙ୍କ ଗର୍ଭରୁ ଦକ୍ଷିଣ, ଗାର୍ହପତ୍ୟ ଓ ଆହ୍ୱବନୀୟ ନାମକ ତିନିଗୋଟି ବୈଦିକ ଅଗ୍ନି ଜାତ ହେଲେ । (ଅଗ୍ନି ଦେଖ, ଶ୍ରୀକୋଷ)

**ସୁରାରି**—ମହାଦେବଙ୍କ ନାମାନ୍ତର । ଅସୁର ପ୍ରପୀଡ଼ିତ ଦେବତାମାନଙ୍କ ପ୍ରେରଣାରେ ମଦନ, ଧ୍ୟାନନିରତ ମହାଦେବଙ୍କ ପ୍ରତି ସମ୍ମୋହନ ନାମକ ବାଣ ପ୍ରୟୋଗ କରିବାକୁ ଓ ସେହି ସମୟରେ କୁମାରୀ ପାର୍ବତୀ ମହାଦେବଙ୍କୁ ସ୍ୱାମୀରୂପେ ପାଇବା ଆଶାରେ ଯୋଗସାଧନରତ ମହାଦେବଙ୍କ ସେବାରେ ନିରତ ହୋଇଥିବା ବେଳେ କାମଦେବ ଉପସ୍ଥିତ ହୋଇ ମହାଦେବଙ୍କ ପ୍ରତି ବାଣ ପ୍ରୟୋଗ କଲେ । ତଦ୍ଦ୍ୱାରା ମହାଦେବଙ୍କର କିଞ୍ଚିତ୍ ଧୈର୍ଯ୍ୟଚ୍ୟୁତ ହୋଇଥିଲା । ପରେ ସେ ଆପଣାକୁ ସଯତ୍ନ କରି ତାଙ୍କ ଚିତ୍ତ ବିଶୃଙ୍ଖଳର କାରଣ ଅନୁସନ୍ଧାନ କରିବା ଫଳରେ ମଦନଙ୍କୁ ଦେଖିଲେ ଓ ମଦନଙ୍କ ଉପରେ କ୍ରୁଦ୍ଧ ହୋଇ ତାଙ୍କ ପ୍ରତି କୋପଦୃଷ୍ଟି ନିକ୍ଷେପ କରିବାରୁ ସେହି ଦୃଷ୍ଟି ସଙ୍ଗେ ମହାଦେବଙ୍କ କପାଳ ମଧ୍ୟସ୍ଥ ତୃତୀୟ ନେତ୍ରରୁ କୋପାନଳ ଜାତ

ଚହ୍ମାଇ ମଦନଙ୍କୁ ଭସ୍ମ କରଦେଲ ।
(ନୃସିଂହ ପୁରାଣ, କୁମାରସମ୍ଭବ କାବ୍ୟ, ଭାଷାକୋଷ)

ସ୍ମୃତ—ବେଦରେ ଯାହା ଅଛ ତାହାର ସ୍ମରଣ ବା ଚନ୍ତନ ଫଳରେ ଏ ଗ୍ରନ୍ଥମାନ ଲଖିତ ହୋଇଥିବାରୁ ଏମାନଙ୍କର ଏପର ନାମକରଣ ହୋଇଅଛ । ସ୍ମୃତରେ ଧର୍ମ, ଦର୍ଶନ, ଆଚ୍ଚର, ବ୍ୟବହାର ପ୍ରାୟଶ୍ଚିତ୍ତ, ଶାସନନୀତ ଆଦର ବର୍ଣ୍ଣନ ହୋଇଅଛ ।

ସ୍ମୃତ ତନୋଟି ଶ୍ରେଣୀରେ ବଭକ୍ତ । ଯଥା—(୧) ସାତ୍ତ୍ୱିକ—ବଶିଷ୍ଠ, ହାରୀତ, ବ୍ୟାସ, ପରାଶର, ଭରଦ୍ୱାଜ, କାଶ୍ୟପ । ଏ ସ୍ମୃତମାନ ମୁକ୍ତିଦ । (୨) ରାଜସ—ଚ୍ୟବନ, ଯାଜ୍ଞବଲ୍କ୍ୟ, ଆତ୍ରେୟ, ଦାକ୍ଷ, କାତ୍ୟାୟନ ବୈଷ୍ଣବ ଏମାନେ ସ୍ୱର୍ଗଦ । (୩) ତାମସ—ଗୌତମ, ବାର୍ହସ୍ପତ୍ୟ, ସଂବର୍ତ୍ତ ଯମ, ସାଂଖ୍ୟ, ଔଶନସ ଏମାନେ ନରକପ୍ରଦ ।

ହନ୍ଦୁମାନଙ୍କ ଧର୍ମ ସମ୍ବନ୍ଧୀୟ ତତ୍ତ୍ୱମାନ, ଶ୍ରୁତ, ସ୍ମୃତ ଓ ପୁରାଣମାନଙ୍କରେ ନହତ ଅଛ ।

ସତ୍ୟଯୁଗରେ ମନୁଙ୍କ ପ୍ରବର୍ତ୍ତିତ ଧର୍ମ, ତ୍ରେତାରେ ଗୌତମଙ୍କ, ଦ୍ୱାପରରେ ଧର୍ମଙ୍କ ଓ ଶଙ୍ଖଙ୍କ ଏବଂ କଳିଯୁଗରେ ପରାଶରଙ୍କ ଧର୍ମ ପାଳନୀୟ ।

ହନ୍ଦୁମାନଙ୍କ ଧର୍ମଗ୍ରନ୍ଥ ଦୁଇ ଭାଗରେ ବଭକ୍ତ—ଶ୍ରୁତ ଓ ସ୍ମୃତ । ବେଦ, ବେଦର ବ୍ରାହ୍ମଣ ଭାଗ ଓ ଉପନଷଦ୍ । ବେଦାନ୍ତ ଶ୍ରୁତର ଅନ୍ତର୍ଗତ । ଅନ୍ୟ ଧର୍ମଶାସ୍ତ୍ରମାନଙ୍କୁ ସ୍ମୃତ ବୋଲଯାଏ । ନମ୍ନଲଖିତ ଗ୍ରନ୍ଥମାନ ସ୍ମୃତର ଅନ୍ତର୍ଗତ (୧) ଛଅ ବେଦାଙ୍ଗ, (୨) ଗୃହ୍ୟ, ଅଶ୍ୱଲାୟନ, ସାଂଖ୍ୟାୟନ, ଗୋଭଲ, ପାରସ୍କର, ବୌଧାୟନ, ଭାରଦ୍ୱାଜ ଓ ଆପସ୍ତମ୍ବାଦସୂତ୍ର । (୩) ମନୁ, ଯାଜ୍ଞବଲ୍କ୍ୟ, ଅତ୍ରି, ବୈଷ୍ଣବ, ଔଶନସ୍, ଅଙ୍ଗିରା, ଯମ କାତ୍ୟାୟନ, ବୃହସ୍ପତ, ପରାଶର, ପରାଶର ବ୍ୟାସ, ଦାକ୍ଷ, ଗୌତମ, ବଶିଷ୍ଠ, ନାରଦ ଓ ଭୃଗୁ ଆଦଙ୍କ ରଚତ ଧର୍ମଶାସ୍ତ୍ର । (୪) ରାମାୟଣ, ମହାଭାରତ ଆଦ ଗ୍ରନ୍ଥ ବଶେଷ (୫) ଅଷ୍ଟାଦଶ ପୁରାଣ ଓ (୬) ସବୁପ୍ରକାର ନୀତଶାସ୍ତ୍ର ଗ୍ରନ୍ଥ ।
(ହନ୍ଦୀ ଶବ୍ଦସାଗର)

ଦକ୍ଷ କନ୍ୟା ଅଙ୍ଗିରା ପତ୍ନୀଙ୍କ ଗର୍ଭରୁ ଉତ୍ପନ୍ନା କନ୍ୟା ।
(ହନ୍ଦୀ ଶବ୍ଦସାଗର ଓ ଭାଷାକୋଷ)

**ସ୍ୟମନ୍ତକ**—ପୁରାଣ ପ୍ରସିଦ୍ଧ ମଣି ବିଶେଷ । ସତ୍ରାଜିତ ନାମକ ଜଣେ ଯାଦବଙ୍କ ତପସ୍ୟା ଦ୍ୱାରା ସୂର୍ଯ୍ୟ ନାରାୟଣ ପ୍ରସନ୍ନ ହୋଇ ଏ ମଣିକୁ ସତ୍ରାଜିତଙ୍କୁ ଉପହାର ଦେଇଥିଲେ । ଏ ମଣି ସୂର୍ଯ୍ୟଙ୍କ ପରି ପ୍ରଭାବିଶିଷ୍ଟ ଥିଲା ଓ ପ୍ରତିଦିନ ଅଧିକାରୀଙ୍କୁ ୮ଭାର (୧୬ ହଜାର ପଲ) ସ୍ୱର୍ଣ୍ଣ ଆଣି ଦେଉଥିଲା । ଏ ମଣି ଯେଉଁ ସ୍ଥାନରେ ରହୁଥିଲା, ସେ ସ୍ଥାନକୁ ରୋଗ, ଶୋକ, ଦାରିଦ୍ର୍ୟ ଆଦି ଆକ୍ରମଣ କରୁ ନ ଥିଲା । ଯାଦବମାନଙ୍କ ଅନୁରୋଧ ଅନୁସାରେ ଶ୍ରୀକୃଷ୍ଣ ରାଜା ଉଗ୍ରସେନଙ୍କୁ ଭେଟି ଦେବା ପାଇଁ ଏ ମଣିକୁ ସତ୍ରାଜିତଙ୍କୁ ମାଗିଲେ, କିନ୍ତୁ ସତ୍ରାଜିତ ତାହା ଦେଲେନାହିଁ । ଦିନେ ସେ ମଣିକୁ କଣ୍ଠରେ ଧାରଣ କରି ସତ୍ରାଜିତଙ୍କ ଭାଇ ପ୍ରସେନଜିତ ମୃଗୟାକୁ ଯାଇଥିଲେ । ବନରେ ପ୍ରସେନଜିତଙ୍କୁ ଏକ ସିଂହ ମାରି ପକାଇ ସେ ମଣିକୁ ନେଇଗଲା । ସିଂହ ସେ ମଣିକୁ ଧାରଣ କରି ଗୋଟିଏ ଗୁମ୍ଫା ଭିତରେ ପଶିବାରୁ ସେ ଗୁମ୍ଫା ଆଲୋକିତ ହେଲା । ଏହା ଦେଖି ଋକ୍ଷରାଜ ଜାମ୍ବବାନ ସେ ସିଂହକୁ ବଧ କରି ତାଠାରୁ ସେ ମଣିଟି ନେଇଗଲେ । ଏଣେ ପ୍ରସେନଜିତ ବନରେ ମରିଯିବାରୁ ଶ୍ରୀକୃଷ୍ଣଙ୍କୁ ସତ୍ରାଜିତ ସନ୍ଦେହ କରି ତାଙ୍କ ନାମରେ କଳଙ୍କ ରଟନା କଲେ ଯେ ଶ୍ରୀକୃଷ୍ଣ ଏହି ମଣି ଲୋଭରେ ପ୍ରସେନଜିତଙ୍କୁ ମାରିପକାଇଛନ୍ତି । ଶ୍ରୀକୃଷ୍ଣ ଏହି କଳଙ୍କରୁ ରକ୍ଷା ପାଇବା ପାଇଁ ଜାମ୍ବବାନଙ୍କ ସଙ୍ଗେ ଯୁଦ୍ଧ କଲେ । ଜାମ୍ବବାନ ଶ୍ରୀକୃଷ୍ଣଙ୍କୁ ସାକ୍ଷାତ ଭଗବାନ ବୋଲି ଉପଲବ୍ଧି କରି ନିଜ କନ୍ୟା ଜାମ୍ବବତୀଙ୍କ ସହିତ ଏ ମଣିକୁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରି ତାଙ୍କଠାରେ ଶରଣ ପଶିଲେ । ଶ୍ରୀକୃଷ୍ଣ ସେ ମଣି ଆଣି ସତ୍ରାଜିତଙ୍କୁ ଦେଲେ । ସତ୍ରାଜିତ ବୃଥାରେ ଶ୍ରୀକୃଷ୍ଣଙ୍କ ନାମରେ କଳଙ୍କ ରଟନା କରିଥିବାରୁ ସେଥିପାଇଁ ଲଜ୍ଜିତ ହୋଇ ନିଜ କନ୍ୟା ସତ୍ୟଭାମାଙ୍କୁ ଓ ଏ ମଣିକୁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କଲେ । ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ପତ୍ନୀରୂପେ ଗ୍ରହଣ କଲେ, କିନ୍ତୁ ଏ ମଣିକୁ ସତ୍ରାଜିତଙ୍କୁ ଫେରାଇଦେଲେ । ଅନନ୍ତର ସତ୍ରାଜିତଙ୍କୁ ବଧ କରି ଏ ମଣିକୁ ଶତଧନ୍ୱା ନେଇଗଲେ । ଶତଧନ୍ୱାଙ୍କୁ ଶ୍ରୀକୃଷ୍ଣ ବଧ କରି ଏ ମଣିକୁ ଆଣି ସତ୍ୟଭାମାଙ୍କୁ ଦେଲେ । କଥିତ ଅଛି ଯେ ଶ୍ରୀକୃଷ୍ଣ ଭାଦ୍ର ଚତୁର୍ଥୀ (ଗଣେଶ ଚତୁର୍ଥୀ) ଦିନ ଚନ୍ଦ୍ର ଦର୍ଶନ କରିଥିବାରୁ ତାଙ୍କଠାରେ ମଣିହରଣରୂପ ମିଥ୍ୟା କଳଙ୍କ ଲାଗିଥିଲା । ଏଥିପାଇଁ ସେଦିନ ଚତୁର୍ଥୀ ଚନ୍ଦ୍ର ଦର୍ଶନ ନିଷିଦ୍ଧ ।

(ହିନ୍ଦୀ ଶବ୍ଦସାଗର)

ଗଣେଶଚତୁର୍ଥୀ ଦିନ ହଠାତ୍ ଚନ୍ଦ୍ର ଦର୍ଶନ କଲେ ସ୍ୟମନ୍ତକ ଉପାଖ୍ୟାନ ପାଠକଲେ ଚନ୍ଦ୍ର ଦର୍ଶନ ଜନିତ ଦୋଷରୁ ମୁକ୍ତ ମିଳେ ।

(ତଥ୍ୟାଦି ଉତ୍ସ, ଭାଷାକୋଷ)

**ସ୍ରୁକ୍**—କାଷ୍ଠ ନିର୍ମିତ ଯଜ୍ଞପାତ୍ର ବିଶେଷ । ଦେଶଜ ଭାଷାରେ ଏହାର ନାମ ସ୍ରୁକ୍ ବା ସ୍ରୁଚ । ଏହା ବଟପତ୍ରାକାର, ଚକ୍ରାକାର, ଅର୍ଦ୍ଧଚନ୍ଦ୍ରାକୃତ ଓ ଶରକାର । ଏହା ଭର୍ଜଚ ବା ଅଶ୍ୱତ୍ଥ କାଷ୍ଠରେ ନିର୍ମିତ ହୁଏ । ଏହା ଦ୍ୱାରା ଘୃତ ଅଗ୍ନିରେ ଢଳାଯାଏ । ସ୍ରୁବ ଅପେକ୍ଷା ଏହା ଚଉଡ଼ା ଓ ମନୁଷ୍ୟର ବାହୁ ପରିମିତ । ପ୍ରାୟ ଦେଢ଼ହାତ ଲମ୍ବ ହୁଏ । (ଶବ୍ଦ ରତ୍ନାବଳୀ)

ଦେଢ଼ ହାତ ଲମ୍ବା ଗୋଟିଏ ଦାଣ୍ଡର ଅଗ୍ରଭାଗରେ ଶରପତ୍ର ଚଉଡ଼ା କାଠର ପାତ୍ର ଲାଗିଥାଏ । ଏହି ପାତ୍ରର ଅଗ୍ରରେ ସୁକ୍ଷ୍ମଗୋଟି ଛିଦ୍ର ହୋଇଥାଏ । ଏହି ଛିଦ୍ରବାଟେ ସୂକ୍ଷ୍ମଧାର ହୋଇ ଘିଅ ଅଗ୍ନିରେ ପଡ଼େ । ସାଧାରଣ ଆହୁତି ଦେବା ପାଇଁ ସ୍ରୁବ ବ୍ୟବହୃତ ହୁଏ । କିନ୍ତୁ ପୂର୍ଣ୍ଣାହୁତି ଦେବା ବେଳକୁ ସ୍ରୁକ୍ ବ୍ୟବହୃତ ହୁଏ । ସ୍ରୁବରେ ଅଧଛଟାଙ୍କି ପର୍ଯ୍ୟନ୍ତ ଘିଅ ଧରେ । କିନ୍ତୁ ସ୍ରୁକ୍‌ରେ ଅଧପା ବା ତିନି ଛଟାଙ୍କି ଘିଅ ରହିପାରେ । ହୋମ ଶେଷରେ ଅଗ୍ନି ଉପରେ ଫଳ (ନଡ଼ିଆ ଆଦି) ସ୍ଥାପନ କରି ତହିଁ ଉପରେ ସ୍ରୁକ୍ ଦ୍ୱାରା ଘିଅ ଆହୁତି ଦିଆଯାଏ । (ଭାଷାକୋଷ)

**ସ୍ରୁବ**—କାଷ୍ଠ ନିର୍ମିତ ଯଜ୍ଞପାତ୍ର ବିଶେଷ । ଏହା ଏକ ହସ୍ତ ପରିମିତ ଓ ପଲାଶ ବା ଖଇର କାଠରେ ନିର୍ମିତ ହୁଏ । ଏହାର ଦେହଟି ସରୁ ହୋଇ ବଳା ହୋଇଥାଏ । ଏହାର ମୁଣ୍ଡରେ ଗୋଟିଏ ଗୋଲକ ଥାଏ ଓ ସେହି ଗୋଲକର ଅନ୍ତର୍ଭାଗ ଖୋଲା ହୋଇ ଫମ୍ପା ହୋଇଥାଏ । ଏଥିରେ ଘିଅ ପୂର୍ଣ୍ଣ କରି ଅଗ୍ନିରେ ଢାଳାଯାଏ । (ଭାଷାକୋଷ)



**ହଂସ**—ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ଜନୈକ ଦୁଷ୍ଟ କ୍ଷତ୍ରିୟ ବୀର । ଏହାର ଭାଇର ନାମ ଡିମ୍ବକ । ଏ ଦୁଇ ଭାଇ ତପସ୍ୟା ଦ୍ୱାରା ମହାଦେବଙ୍କଠାରୁ ବର ଓ ଅସ୍ତ୍ର ପାଇ ଅଜେୟ ହେଲେ ଓ କ୍ରମଶଃ ସମସ୍ତଙ୍କ ଉପରେ ଅତ୍ୟାଚାର କଲେ ।

ଦିନେ ଏମାନେ ଦୁର୍ବାସାଙ୍କଠାରୁ କୌପୀନ ଖଣ୍ଡିକ ଛଡ଼ାଇ ନେବାରୁ ମୁନି ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ଆଗେ ଫେରାଦ ହେଲେ ଓ କୃଷ୍ଣ ହଂସକୃତ ଏ ଅବମାନନାର ପ୍ରତିଶୋଧ ନେବା ପାଇଁ ପ୍ରତିଶ୍ରୁତ ହେଲେ । କେତେଦିନ ପରେ ହଂସର ପିତା ରାଜସୂୟ ଯଜ୍ଞ କରିବାରୁ ହଂସ ଯାଇ ଶ୍ରୀକୃଷ୍ଣଙ୍କଠାରୁ ବର ମାଗିଲା । ଶ୍ରୀକୃଷ୍ଣ ନାହିଁ କଲେ । ଏହା ସହିତ ଶ୍ରୀକୃଷ୍ଣଙ୍କର ପୁଷ୍କର କ୍ଷେତ୍ରରେ ଯୁଦ୍ଧ ହେଲା । ହଂସ କୃଷ୍ଣଙ୍କ ଦ୍ୱାରା ନିହତ ହେଲା ଓ ତାର ଭାଇ ଡ଼ିମ୍ବକ ଭ୍ରାତୃଶୋକରେ ଯମୁନାରେ ଝାସ ଦେଇ ମଲେ ।

(ଡ଼ିମ୍ବକ ଦେଖ ଭାଗବତ, ହରିବଂଶ ଓ ଭାଷାକୋଷ)

**ହଂସନାଭ**—ମାର୍କଣ୍ଡେୟପୁରାଣ ଅନ୍ତର୍ଗତ ପର୍ବତ ବିଶେଷ ।

**ହନୁମାନ**—ରାମଚନ୍ଦ୍ରଙ୍କ ପରମ ଭକ୍ତ କପି ବୀର । ପବନଦେବଙ୍କ ଔରସରେ ଅଞ୍ଜନା ଗର୍ଭରୁ ଏହାଙ୍କର ଜନ୍ମ । ଏ ପ୍ରଥମେ ଲଙ୍କାକୁ ଗମନ କରି ସୀତାଙ୍କର ସନ୍ଧାନ କରିଥିଲେ । ଲଙ୍କା ଯୁଦ୍ଧରେ ଏହାଙ୍କର ଅସୀମ ବୀରତ୍ୱ ପ୍ରକାଶିତ ହୋଇଥିଲା । (ରାମ ଦେଖ)

(୨) ଶ୍ରୀରାମଙ୍କ ଦୂତ ବାନର, ଅଞ୍ଜନା ଗର୍ଭରୁ ପବନଦେବ (ମତାନ୍ତରେ ମହାଦେବ)ଙ୍କ ଔରସ ଜାତ ବାନର ବିଶେଷ । ଏ ସୁଗ୍ରୀବଙ୍କ ଭଣଜା, ଏହାଙ୍କ ମାତାଙ୍କ ନାମ ଅଞ୍ଜନା । ଏ ବାୟୁଦେବତାଙ୍କ ପୁତ୍ର । ଏ ପ୍ରଥମେ ବାନରରାଜ ବାଳିଙ୍କ ସେନାପତି ଥିଲେ । ବାଳିଙ୍କ ରାଜ୍ୟରୁ ବିତାଡ଼ିତ ହେବା ପରେ ସୁଗ୍ରୀବଙ୍କ ପାରିଷଦ ହେଲେ । ସୀତା ହରଣ ପରେ ରାମଚନ୍ଦ୍ର ସୁଗ୍ରୀବ ସହିତ ମିତ୍ର ହେବାରୁ ଏ ସୀତାଠାବ କରିବାକୁ ଦୂତରୂପେ ଦକ୍ଷିଣକୁ ଯାଇ ଲଙ୍କାର ଅଶୋକବନରେ ସୀତାଙ୍କୁ ଠାବ କରି, ତାଙ୍କୁ ଶ୍ରୀରାମଙ୍କ ସମ୍ବାଦ ଦେଇ, ତାଙ୍କଠାରୁ ଲେଉଟି ସମ୍ବାଦ ଓ ସଙ୍କେତ ଆଣି ଶ୍ରୀରାମଙ୍କୁ ଦେଇଥିଲେ । ଏ ନିଜ ଲାଙ୍ଗୁଡ଼ରେ କନା ଗୁଡାଇ ତେଲ ଢ଼ଳାଇ ତହିଁରେ ନିଆଁ ଲଗାଇ ଲଙ୍କାଦହନ କରିଥିଲେ । ଏ ଅତ୍ୟନ୍ତ ବଳଶାଳୀ ଥିଲେ ଓ ଭାରତବର୍ଷରୁ ଲଙ୍କାକୁ ଡେଇଁଥିଲେ । ଲକ୍ଷ୍ମଣଙ୍କ ଶକ୍ତିଭେଦ ହେବାରୁ ଏ ଅମର ମହୌଷଧି ଆଣିବାକୁ ଯାଇ ଗନ୍ଧମାଦନ ପର୍ବତକୁ ଉପାଡ଼ି ନିଜ ମୁଣ୍ଡରେ ବୋହି ଲଙ୍କାକୁ ଆଣିବାରୁ ଲକ୍ଷ୍ମଣଙ୍କର ପ୍ରାଣ ରକ୍ଷା ହେଲା । ଏ ରାବଣଙ୍କ ରାକ୍ଷସସେନା ସଙ୍ଗେ ଖୁବ୍ ବୀରତ୍ୱ ସହକାରେ ଯୁଦ୍ଧ କରିଥିଲେ । ରାମଚନ୍ଦ୍ର ଦେହତ୍ୟାଗ କରିବା ସମୟରେ ଏହାଙ୍କୁ ଅମର ବର ଦେଇଥିଲେ । ଦ୍ୱାପରଯୁଗରେ ଭୀମଙ୍କ ସଙ୍ଗେ ଗନ୍ଧମାଦନ ପର୍ବତରେ ଏହାଙ୍କର ଭେଟ ହୋଇଥିଲା । ଏ ମହାବୀର ଥିଲେ

ଓ ଆଜି ପର୍ଯ୍ୟନ୍ତ ହିନ୍ଦୁମାନେ ଏହାଙ୍କୁ 'ମହାବୀର ଠାକୁର' ରୂପେ ପୂଜା କରନ୍ତି । ପୃଥିବୀ ଇତିହାସରେ ଏହାଙ୍କ ପରି ତ୍ୟାଗଶୀଳ ଭୃତ୍ୟ ବିରଳ । (ସେ) ଏ ରାମଭକ୍ତମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ।

(ରାମାୟଣ କିଷ୍କିନ୍ଧ୍ୟା, ସୁନ୍ଦରକାଣ୍ଡ, ଭାଷାକୋଷ)

**ହୟଗ୍ରୀବ**—(୧) ଶାଳଗ୍ରାମ ବିଶେଷ । (୨) ଦୈତ୍ୟ ବିଶେଷ । ଏ ଅସୁରକୁ ବିଷ୍ଣୁ ମତ୍ସ୍ୟାବତାରରେ ବଧ କରି ମଧୁକୈଟଭଙ୍କ ଦ୍ୱାରା ହୃତ ବେଦକୁ ଉଦ୍ଧାର କରିଥିଲେ । (ମହାଭାରତ, କାଳିକାପୁରାଣ)

ମାୟାବୀ ପ୍ରଚଣ୍ଡ ଦାନବ ।
ନାମ ତାହାର ହୟଗ୍ରୀବ ॥

(ଭାଗବତ)

(୩) ବିଷ୍ଣୁଙ୍କ ଅବତାର ବିଶେଷ ମତାନ୍ତରରେ ନୃସିଂହ ଅବତାର ।
ହୟଗ୍ରୀବ ମହାପ୍ରଭୁ ପ୍ରତାପେ—(ଯଦୁମଣି)

**ହରିବର୍ଷ**—ପୁରାଣୋକ୍ତ ଜମ୍ବୁଦ୍ୱୀପରେ ନବବର୍ଷ ବା ମହାଦେଶ ମଧ୍ୟରୁ ଏକତମ । ପ୍ରାଚୀନ ଆରବିଆ ଦେଶ । ଏହାର ଦକ୍ଷିଣରେ ଇଲାବୃତ ବର୍ଷ । ଏହା ନିଷଧ ଓ ହେମକୂଟ (ସୁମେରୁ) ପର୍ବତଦ୍ୱୟ ମଧ୍ୟରେ ଅବସ୍ଥିତ । ଏଠାରେ ଭଗବାନ ନରହରିରୂପ ଧାରଣ କରି ଅବସ୍ଥାନ କରୁଅଛନ୍ତି ।

(ଭାଗବତ, ଭାଷାକୋଷ)

**ହରିଶ୍ଚନ୍ଦ୍ର**—(ବିଶ୍ୱାମିତ୍ର ଦେଖ) ଅଯୋଧ୍ୟାରାଜ ହରିଶ୍ଚନ୍ଦ୍ର ବିଶ୍ୱାମିତ୍ରଙ୍କ ଦ୍ୱାରା ନାନା ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲେ । (ଭାଷାକୋଷ)

**ହର୍ଯ୍ୟଶ୍ୱ**—(୧) ଅଯୋଧ୍ୟାର ରାଜା । ଏ ମହାରାଜ ଯଯାତିଙ୍କ କନ୍ୟା ମାଧବୀର ପାଣିଗ୍ରହଣ କରିଥିଲେ । ଏହାଙ୍କର ବସୁ ନାମକ ପୁତ୍ର ଜାତ ହୋଇଥିଲେ ।

(ଗାଲବ ଦେଖ)

(୨) ପଞ୍ଚାଳର ଜନୈକ ରାଜା । ଏହାଙ୍କର ପାଞ୍ଚଗୋଟି ପୁତ୍ର ଜନ୍ମ ହେବାରୁ ଏହି ପାଞ୍ଚ ଜଣଙ୍କ ଦ୍ୱାରା ରାଜ୍ୟ ସୁଶାସିତ ହେବାର ଆଶା କରି ଏ ଆଉ ପୁତ୍ର କାମନା କଲେ ନାହିଁ । ଫଳତଃ ଏହି ପାଞ୍ଚ ପୁତ୍ରଙ୍କ ଦ୍ୱାରା ରାଜ୍ୟ ସୁଶାସିତ ହେବାରୁ ରାଜ୍ୟର ନାମ ପଞ୍ଚାଳ ହେଲା ।

(ଚରିତାଭିଧାନ, ଭାଷାକୋଷ)

**ହସ୍ତିନା**—ଚନ୍ଦ୍ରବଂଶୀୟ ହସ୍ତୀ ନାମକ ରାଜାଙ୍କ ନିର୍ମିତ ରାଜଧାନୀ । ଆଧୁନିକ ଦିଲ୍ଲୀର ପ୍ରାଚୀନ ନାମ । କୁରୁ ପାଣ୍ଡବଙ୍କ ରାଜଧାନୀ । ଆଧୁନିକ ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ, ଏହା ଆଧୁନିକ ଦିଲ୍ଲୀନଗରୀର ୨୮ କୋଶ ଦୂରରେ ଥିଲା । (ହିନ୍ଦୀ ଶବ୍ଦସାଗର)

**ହାରୀତ**—ବିଖ୍ୟାତ ହିନ୍ଦୁ ଧର୍ମଶାସ୍ତ୍ର ପ୍ରଣେତା । ଏହାଙ୍କ ପ୍ରଣୀତ ମୂଳ ଗ୍ରନ୍ଥର ନାମ 'ହାରୀତ ସଂହିତା' । ଏ ଜାବାଲି ଋଷିଙ୍କ ପୁତ୍ର ଥିଲେ ।
(ହିନ୍ଦୀ ଶବ୍ଦସାଗର ଚରିତାଭିଧାନ)

**ହାହା**—ଦେବତାମାନଙ୍କ ସ୍ତବରେ ନିଯୁକ୍ତ ଗନ୍ଧର୍ବମାନଙ୍କ ମଧ୍ୟରୁ ହାହା ଏକ ଶ୍ରେଣୀ । କେତେକ ଦେବ ଗନ୍ଧର୍ବମାନଙ୍କ ଶ୍ରେଣୀ ଯଥା—ହାହା, ହୁହୁ, ବିଶ୍ୱାବସୁ, ତୁମ୍ବୁରୁ, ଚିତ୍ରରଥ, ଏମାନେ ଦେବତାମାନଙ୍କ ଉପାସନା କରି ଗୀତ ଗାଆନ୍ତି । (ଭାଷାକୋଷ)

**ହିଡ଼ମ୍ବ**—ବିକଟ ଓ ମହାକାୟ ରାକ୍ଷସ ବିଶେଷ । ଜତୁଗୃହ ଦାହ ସମୟରେ ପାଣ୍ଡବମାନେ ବାରଣାବତରୁ ପଳାଇ ଯିବାବେଳେ ବନ ମଧ୍ୟରେ ଅନ୍ୟ ପୁଅମାନଙ୍କ ସଙ୍ଗେ କୁନ୍ତୀ ନିଦ୍ରା ଗଲେ ଓ ଭୀମ ଜଗି ବସିଲେ । ସେ ବଣରେ ବାସ କରୁଥିବା ନରମାଂସଭୋଜୀ ହିଡ଼ମ୍ବାସୁର କ୍ଷୁଧାର୍ତ୍ତ ହୋଇ ପାଣ୍ଡବମାନଙ୍କୁ ବଧ କରିବାକୁ ତାହାର ଭଗିନୀ ହିଡ଼ମ୍ବାକୁ ପଠାଇଲା । କିନ୍ତୁ ହିଡମ୍ବା ପାଣ୍ଡବମାନଙ୍କୁ ଦେଖିବାକୁ ଆସି ଭୀମଙ୍କୁ ଦେଖି ତାଙ୍କ ରୂପରେ ଓ ବଳରେ ମୁଗ୍ଧ ହୋଇ ତାଙ୍କ ପ୍ରଣୟ ପ୍ରାର୍ଥନା କଲା ଓ ହିଡମ୍ବରାକ୍ଷସ କବଳରେ ପାଣ୍ଡବମାନେ ନ ପଡିବେ ବୋଲି ଭୀମଙ୍କୁ ସତର୍କ କରିଦେଲା । ତତ୍ପରେ ଭଉଣୀ ନ ଫେରିବା ଦେଖି ହିଡମ୍ବ ନିଜେ ସେ ସ୍ଥାନରେ ଉପସ୍ଥିତ ହୋଇ ଭଗିନୀକୁ ଭୀମଙ୍କଠାରେ ଆସକ୍ତା ହେବାର ଦେଖି ମାରିବାକୁ ବସିଲା । ଭୀମ ଏହା ଦେଖି ସେ ରାକ୍ଷସ ସଙ୍ଗେ ଯୁଦ୍ଧ କରି ତାକୁ ବଧ କଲେ ଓ ହିଡ଼ମ୍ବାକୁ ପତ୍ନୀରୂପେ ଗ୍ରହଣ କଲେ । (ମହାଭାରତ, ଆଦିପର୍ବ)

**ହିଡମ୍ବା**—ହିଡମ୍ବ ରାକ୍ଷସର ଭଉଣୀ । ଏ ଭୀମଙ୍କ ପ୍ରତି ପ୍ରଣୟାସକ୍ତ ହେବାରୁ ଭୀମ ମାତା ଓ ଭ୍ରାତାମାନଙ୍କ ପରାମର୍ଶରେ ଏହାକୁ ପତ୍ନୀରୂପେ ଗ୍ରହଣ କଲେ । ହିଡମ୍ବା ଭୀମଙ୍କୁ ପୃଷ୍ଠରେ ନେଇ ନାନା ଅଡ଼େ ଶୂନ୍ୟରେ ଭ୍ରମଣ କରି ରମ୍ୟସ୍ଥାନମାନଙ୍କରେ ବିହାର କଲା ଓ ଭୀମଙ୍କ ଔରସରେ ଏହା ଗର୍ଭରୁ ଘଟୋତ୍କଚ ନାମକ ପୁତ୍ର ଜନ୍ମିଥିଲା । (ହିଡମ୍ବ ଓ ଘଟୋତ୍କଚ ଦେଖ)

**ହିମାଳୟ**—ପୁରାଣ ମତରେ ହିମାଳୟ ନଗାଧିରାଜ । ଏ ପିତୃଗଣଙ୍କ କନ୍ୟା ମେନା ବା ମେନକାଙ୍କୁ ବିବାହ କରିଥିଲେ । ମେନାଙ୍କ ଗର୍ଭରୁ ମୈନାକ ନାମକ ପୁତ୍ର, ଗଙ୍ଗା ଓ ପାର୍ବତୀ ନାମ୍ନୀ ଦୁଇ କନ୍ୟା ଜନ୍ମିଥିଲେ ।
(ଭୂଗୋଳ ପ୍ରକରଣରେ ଅନ୍ୟାନ୍ୟ ବିଷୟ ଦ୍ରଷ୍ଟବ୍ୟ)

**ହିରଣ୍ୟକଶିପୁ**—ଦୈତ୍ୟପତି । ନୃସିଂହରୂପୀ ବିଷ୍ଣୁଙ୍କ ଦ୍ୱାରା ଏହାଙ୍କର ମୃତ୍ୟୁ ହୋଇଥିଲା । (ପ୍ରହ୍ଲାଦ ଦେଖ)

**ହିରଣ୍ୟାକ୍ଷ**—ଦୈତ୍ୟପତି ହିରଣ୍ୟକଶିପୁର ଭ୍ରାତା । ବରାହରୂପୀ ବିଷ୍ଣୁଙ୍କ ଦ୍ୱାରା ଏ ନିହତ ହୋଇଥିଲେ । (ବରାହ ଦେଖ)

**ହେମା**—ସ୍ୱର୍ଗର ଏକ ଅପ୍ସରା । ମୟଦାନବଙ୍କ ଔରସରେ ଏହାଙ୍କ ଗର୍ଭରୁ ଲଙ୍କେଶ୍ୱର ରାବଣଙ୍କ ମହିଷୀ ମନ୍ଦୋଦରୀ ଜନ୍ମିଥିଲେ । (ଚରିତାଭିଧାନ)

**ହୈହୟ**—ଜଣେ ପରାକ୍ରାନ୍ତ ରାଜା (କାର୍ତ୍ତବୀର୍ଯ୍ୟ ଦେଖ) । ମହାଭାରତ, ହରିବଂଶ ଓ ଦେବୀ ଭାଗବତରେ ଭିନ୍ନ ଭିନ୍ନ ସ୍ଥାନରେ ବର୍ଣ୍ଣିତ ଉପାଖ୍ୟାନମାନଙ୍କରୁ ହୈହୟ ବଂଶର ବିବରଣ ସଂଗୃହୀତ ହୋଇପାରେ । ଦେବୀ ଭାଗବତ ଷଷ୍ଠ ଅଧ୍ୟାୟ (୧୬ଶଠାରୁ ୨୬ଶ ଶ୍ଲୋକ)ରେ ବର୍ଣ୍ଣିତ ହୋଇଅଛି ଯେ, ଚନ୍ଦ୍ରବଂଶୀୟ ରାଜା ଯଯାତି ତାଙ୍କ ଶ୍ୱଶୁର ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପ ଫଳରେ ବାର୍ଦ୍ଧକ୍ୟ ପ୍ରାପ୍ତ ହେବାରୁ ପିତାଙ୍କ ବାର୍ଦ୍ଧକ୍ୟକୁ ଗ୍ରହଣ କରି ତାଙ୍କ ଯୌବନ ପିତାଙ୍କୁ ଦେବାକୁ ଯଯାତି ତାଙ୍କ ପୁତ୍ରମାନଙ୍କୁ (ଶର୍ମିଷ୍ଠାଙ୍କ ଗର୍ଭଜାତ ଦ୍ରୁହ୍ୟ, ଅନୁ ଓ ପୁରୁ ଏବଂ ଦେବଯାନୀଙ୍କ ଗର୍ଭଜାତ ତୁର୍ବସୁ ଓ ଯଦୁ)ଙ୍କୁ କହିଲେ । ଏ ପ୍ରସ୍ତାବରେ ଅନ୍ୟ ପୁତ୍ରମାନେ ରାଜି ହେଲେନାହିଁ କିନ୍ତୁ ପୁରୁ ରାଜି ହୋଇ ପିତାଙ୍କ ବାର୍ଦ୍ଧକ୍ୟ ଗ୍ରହଣ କଲେ ଓ ପିତାଙ୍କୁ ନିଜର ଯୌବନ ପ୍ରଦାନ କଲେ । ଯଯାତି ପୁରୁଙ୍କ ଉପରେ ପ୍ରସନ୍ନ ହୋଇ ତାଙ୍କର ହସ୍ତିନାପୁର ସିଂହାସନ ପୁରୁଙ୍କୁ ଦେଲେ ଓ ପୁରୁ ପୈତୃକ ବଂଶର ଅଧିକାରୀ ହେଲେ । ତୁର୍ବସୁ ରାଜ୍ୟର ଦକ୍ଷିଣ ପୂର୍ବ ଅଂଶ ଓ ଯଦୁ ଉତ୍ତର ପୂର୍ବାଂଶ ପାଇଲେ । ଦ୍ରୁହ୍ୟ ପଶ୍ଚିମାଂଶ ଓ ଅନୁ ଉତ୍ତରାଂଶ ପାଇଲେ । (ହରିବଂଶ ୧ମ ଅଧ୍ୟାୟ)

ତୁର୍ବସୁ ଅପୁତ୍ରିକ ଥିବାରୁ ଅରଣ୍ୟକୁ ଯାଇ ପୁତ୍ର ଲାଭାର୍ଥେ ନାରାୟଣଙ୍କୁ ପ୍ରାର୍ଥନା କଲେ ।

ଥରେ ସୂର୍ଯ୍ୟଙ୍କ ପୁତ୍ର ରେବନ୍ତ ଇନ୍ଦ୍ରଙ୍କ ଉଚ୍ଚୈଃଶ୍ରବା ଅଶ୍ୱ ଉପରେ ଚଢ଼ି ବିଷ୍ଣୁ ଦର୍ଶନାର୍ଥେ ବୈକୁଣ୍ଠକୁ ଯାଉଥିଲେ । ଲକ୍ଷ୍ମୀ ସେ ଘୋଡ଼ାକୁ ଦେଖି ଏପରି

ଉନ୍ମସ୍ତା ହୋଇଗଲେ ଯେ, ସେ ବିଷ୍ଣୁଙ୍କ ପ୍ରଶ୍ନର ଉତ୍ତର ଦେଲେନାହିଁ । ବିଷ୍ଣୁ କ୍ରୁଦ୍ଧ ହୋଇ ଲକ୍ଷ୍ମୀଙ୍କୁ ଶାପ ଦେଲେ । ସେହି ଶାପ ଫଳରେ ଲକ୍ଷ୍ମୀ କେତେକାଳ ଘୋଟକୀ (ହୟା) ହୋଇ ପୃଥିବୀରେ ବିଚରଣ କଲେ । ଲକ୍ଷ୍ମୀ ଘୋଟକୀ ରୂପରେ ତମସା ଓ ଯମୁନା ସଙ୍ଗମ ସ୍ଥଳରେ ରହିଥିଲେ । ମହାଦେବ ତାଙ୍କର ଏ ଦୁରବସ୍ଥା ଦେଖି ଦୟାର୍ଦ୍ର ହୋଇ ଏ ଦୁଃଖରୁ ଲକ୍ଷ୍ମୀଙ୍କୁ ମୁକ୍ତ କରିବା ସକାଶେ ବିଷ୍ଣୁଙ୍କୁ ଅନୁରୋଧ କଲେ ଓ ବିଷ୍ଣୁ ସ୍ୱୀକୃତ ହେଲେ । ଏହି ସମୟରେ ତୁର୍ବସୁ ନାରାୟଣଙ୍କ ପରି ଗୋଟିଏ ପୁତ୍ର ଲାଭ କରିବା ପାଇଁ ବିଷ୍ଣୁଙ୍କୁ ବର ମାଗିଲେ । ବିଷ୍ଣୁ ଅଶ୍ୱରୂପ ଧାରଣ କରି ଅଶ୍ୱିନୀରୂପିଣୀ ଲକ୍ଷ୍ମୀଙ୍କ ସଙ୍ଗେ ମିଳିତ ହେଲେ । ଏହି ସଙ୍ଗମ ଫଳରେ ଗୋଟିଏ କୁମାର ଜନ୍ମ ଗ୍ରହଣ କଲେ ଓ ସନ୍ତାନଙ୍କ ଜନ୍ମ ପରେ ଲକ୍ଷ୍ମୀ ଓ ବିଷ୍ଣୁ ଯାଇ ବୈକୁଣ୍ଠରେ ବାସ କଲେ । ବିଷ୍ଣୁ ତୁର୍ବସୁଙ୍କୁ ଏହି କୁମାର ଦାନକଲେ । ତାଙ୍କୁ ଏକବୀର ନାମ ଦିଆଗଲା । ହୟା ଓ ହୟଙ୍କ ସଙ୍ଗମରୁ ଜାତ ହୋଇଥିବାରୁ ତାଙ୍କର ଅନ୍ୟନାମ ହୈହୟ ହେଲା । ସେ ତୁର୍ବସୁଙ୍କ ସିଂହାସନ ଆରୋହଣ କଲେ ଓ ତାଙ୍କ ନାମ ଅନୁସାରେ ସେହି ରାଜବଂଶର ନାମ ହୈହୟବଂଶ ହେଲା । ଏ ରୈଭ୍ୟଙ୍କ କନ୍ୟା ଏକାବଳୀଙ୍କୁ ବିବାହ କଲେ ଓ ଏ କନ୍ୟାଙ୍କୁ ହରଣ କରିବାକୁ ଉଦ୍ୟତ କାଳକେତୁ ରାକ୍ଷସକୁ ବଧ କଲେ ।

ଏ ଏକବୀରଙ୍କ ପୁତ୍ର କୃତବୀର୍ଯ୍ୟ ଓ କୃତବୀର୍ଯ୍ୟଙ୍କ ପୁତ୍ର କାର୍ତ୍ତବୀର୍ଯ୍ୟ ।
(ଧର୍ମରାଜ୍ୟ ନାମକ ଇଂରେଜୀ ପତ୍ରିକାର ତା ୭ । ୧୨ । ୩୯ ସଂଖ୍ୟାରୁ ଉଦ୍ଧୃତ, ଭାଷାକୋଷ)

**ହ୍ରାଦ** – ହିରଣ୍ୟକଶିପୁଙ୍କ ସବ କନିଷ୍ଠ ପୁତ୍ରଙ୍କ ନାମ । ଅନ୍ୟ ପୁତ୍ରଙ୍କ ନାମ ପ୍ରହ୍ଲାଦ, ଅନୁହ୍ରାଦ ଓ ସହ୍ରାଦ । (ନୃସିଂହ ପୁରାଣ)

**ହ୍ରାଦିନୀ**—ରାମାୟଣୋକ୍ତ ନଦୀ ବିଶେଷ (ହିନ୍ଦୀ ଶବ୍ଦସାଗର)

**ହ୍ଲାଦିନୀ**—ନଦୀ ବିଶେଷ । ତନ୍ତ୍ରୋକ୍ତ ଶକ୍ତି ବିଶେଷର ନାମ । ଏହା ମନୁଷ୍ୟର ଦେହ ଅଭ୍ୟନ୍ତରରେ ଥାଏ ଓ ଯୋଗ ସାଧନ ଦ୍ୱାରା ଏହାକୁ ଜାଗ୍ରତ କରାଯାଏ । (ଭାଷାକୋଷ)



**କ୍ଷମା** – ପୃଥିବୀ । ଦକ୍ଷ କନ୍ୟା ଓ ପୁଲହଙ୍କ ସ୍ତ୍ରୀ ।

**କ୍ଷୀରସାଗର**—ହିନ୍ଦୁମାନେ ପୃଥିବୀର ସମୁଦ୍ରକୁ ସାତୋଟି ବୋଲି ଗଣନା କରନ୍ତି—(୧) ଲବଣ, (୨) ଇକ୍ଷୁ; (୩) ଦଧି, (୪) ଦୁଗ୍ଧ, (୫) ମଧୁ, (୬) ମଦିରା ଓ (୭) ଘୃତ । ଏହି ସାତୋଟି ସାଗରରେ ସାତ ପ୍ରକାର ପଦାର୍ଥ ଜଳରୂପେ ଥିଲା । ପୁରାଣରେ ଅଛି ଯେ ଦୁଗ୍ଧ ସମୁଦ୍ର ଭିତରେ ବିଷ୍ଣୁଙ୍କ ବାସସ୍ଥାନ ବୈକୁଣ୍ଠ ଅବସ୍ଥିତ । ମନ୍ଦରଗିରିକୁ ମନ୍ଥନ ଦଣ୍ଡ ଓ ବାସୁକିଙ୍କୁ ମନ୍ଥନରଜ୍ଜୁ କରି ଏକ ପାଖରେ ଅସୁର ଓ ଏକ ପାଖରେ ଦେବତାମାନେ ସେ ଦଉଡ଼ିକୁ ଧରି କ୍ଷୀରସମୁଦ୍ରକୁ ମନ୍ଥନ କରିବାରୁ ଏଥିରୁ ଲକ୍ଷ୍ମୀ, ଚନ୍ଦ୍ର, କୌସ୍ତୁଭମଣି, ଉଚ୍ଚୈଃଶ୍ରବା ଅଶ୍ୱ, ଐରାବତ ହସ୍ତୀ, ଅମୃତ, ଶତଦଳ ପଦ୍ମ, ପାରିଜାତ ଫୁଲ ଓ କାଳକୂଟ ବିଷ ବାହାରିଥିଲା ।

**କ୍ଷୀରାବ୍ଧିଶାୟୀ**—ଶ୍ରୀ ବିଷ୍ଣୁଙ୍କର ନାମାନ୍ତର । କ୍ଷୀରସାଗରସ୍ଥ ବୈକୁଣ୍ଠରେ ବାସ କରନ୍ତି ବୋଲି ବିଷ୍ଣୁଙ୍କର ଏହି ନାମ । ପୁରାଣରେ ଅଛି ଯେ ମହାପ୍ରଳୟ କାଳରେ ବିଷ୍ଣୁ ଅନନ୍ତ ବା ବାସୁକିନାଗର କୁଣ୍ଡଳୀକୃତ ଦେହରେ ଶଯ୍ୟାରଚନା କରି ପ୍ରଳୟାର୍ଣ୍ଣବ (କ୍ଷୀରସାଗର)ରେ ଶୁଥିଲେ ଓ ତାଙ୍କ ନାଭିକମଳରୁ ନାଡ଼ ବାହାର ହେଲା ଓ ସେଥିରେ ପଦ୍ମଫୁଲଟିଏ ଫୁଟିଲା । ସେହି କମଳରୁ ବ୍ରହ୍ମା ଜାତ ହୋଇ ପୁନର୍ବାର ପୃଥିବୀ ସୃଷ୍ଟି କଲେ । (ଭାଷାକୋଷ)

**କ୍ଷେତ୍ର**—ସିଦ୍ଧ ବା ପୁଣ୍ୟମୟସ୍ଥାନ, ତୀର୍ଥସ୍ଥାନ, ଧାମ, ଭାରତରେ ଅନେକ ପ୍ରସିଦ୍ଧ କ୍ଷେତ୍ର ଅଛି । ଯଥା—ଗୟା, କାଶୀ, ପ୍ରୟାଗ, ମଥୁରା, ବୃନ୍ଦାବନ, ପୁରୀ, ଭୁବନେଶ୍ୱର, କୁରୁକ୍ଷେତ୍ର, ରାମେଶ୍ୱର, ଗଙ୍ଗାସାଗର, ଇତ୍ୟାଦି ।

ଓଡ଼ିଶାରେ ମଧ୍ୟ ଅନେକଗୁଡ଼ିଏ କ୍ଷେତ୍ର ଅଛି ଯଥା—ପୁରୀ—ବିଷ୍ଣୁ ବା ଶଙ୍ଖକ୍ଷେତ୍ର, ଭୁବନେଶ୍ୱର—ଶିବକ୍ଷେତ୍ର, କୋଣାର୍କ—ଅର୍କକ୍ଷେତ୍ର, ଯାଜପୁର—ବିରଜାକ୍ଷେତ୍ର, କେନ୍ଦ୍ରାପଡ଼ା—ତୁଳସୀକ୍ଷେତ୍ର ଇତ୍ୟାଦି । (ଭାଷାକୋଷ)

**କ୍ଷେତ୍ରପାଳ** —ତୀର୍ଥକ୍ଷେତ୍ରର ସୀମାକୁ ଯେଉଁ ଦେବତା ଥାନ୍ତି, ଯଥା -ପୁରୀର କ୍ଷେତ୍ରସ୍ୱାମୀ ଜଗନ୍ନାଥ, କିନ୍ତୁ କ୍ଷେତ୍ରପାଳ ବାଲିଲୋକନାଥ, ଭୁବନେଶ୍ୱର କ୍ଷେତ୍ରସ୍ୱାମୀ ଲିଙ୍ଗରାଜ, କିନ୍ତୁ କ୍ଷେତ୍ରପାଳ ଅନନ୍ତ ବାସୁଦେବ । (ଭାଷାକୋଷ)

**କ୍ଷେତ୍ରାଧିପ** —ତୀର୍ଥର ପ୍ରଧାନ ବା ଅଧିଷ୍ଠାତ୍ରୀ ଦେବତା (୯) ଅପଦେବତାଙ୍କ ଅତ୍ୟାଚାରରୁ ଗ୍ରାମ ବା ନଗରକୁ ରକ୍ଷା କରିବା ପାଇଁ ଗ୍ରାମ ବା ନଗରର ଉତ୍ତର ପୂର୍ବରେ ସ୍ଥାପିତ ନଗ୍ନ ଦେବତାମୂର୍ତ୍ତି । (ଏହା ତ୍ରିନେତ୍ର, ଦୁଇ, ଚାରି, ଛଅ ବା ଆଠ ଭୁଜବିଶିଷ୍ଟ, ଘଣ୍ଟା, କପାଳ, ଡମ୍ବୁର, ଖେଟକ, ନାଗପାଶ. ଧନୁ ଓ ସାୟକଧାରୀରୂପେ ଚିତ୍ରିତ । (ଭାଷାକୋଷ)

